# ଭାଗବତ




## ଶ୍ରୀ କୁଳମଣି ଜେନା

ଧର୍ମଗ୍ରନ୍ଥ ଷ୍ଟୋର

# ଭା ଗ ବ ତ

ଶ୍ରୀ କୁଳମଣି ଜେନା



ଓଡ଼ିଶା ବୁକ୍ ଷ୍ଟୋର

କଟକ

ଭାଗବତ
ଲେଖିକା
ଶ୍ରୀ କୁଳମଣି ଜେନା
ପ୍ରକାଶକ
ଶ୍ରୀ ଗୋବିନ୍ଦଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ-୭୫୩୦୦୨
ମୁଦ୍ରାକର
ଶ୍ରୀ ପ୍ରତାପ କୁମାର ଦାସ
ବ୍ରଜେନ୍ଦ୍ର ପ୍ରେସ,
କଟକ-୭୫୩୦୦୧
ଅଲଂକରଣ
ଶ୍ରୀ ଅସିତ ମୁଖାର୍ଜୀ
ପ୍ରଥମ ପ୍ରକାଶ :
କାର୍ତ୍ତିକ ପୂର୍ଣ୍ଣିମା ୧୯୭୭
ମୂଲ୍ୟ : ସତର ଟଙ୍କା ମାତ୍ର



**BHAAGABATA**

*Written by* :
**Sri Kulamoni Jena**
*Published by*
**Sri Govind Charan Patra**
Orissa Book Store
Cuttack-753002
*Printed by* :
**Sri Pratap Kumar Das**
At : Brajendra Press,
Cuttack-753001
*Design by* :
**Sri Asit Mukherjee**
First Publication : 1977
**PRICE : Rupees Seventeen only**

## ଲେଖକଙ୍କର ନିଜ କଥା

ଆମ ପୌରାଣିକ ସାହିତ୍ୟରେ 'ଗ୍ରନ୍ଥ-ତ୍ରୟୀ' ଭାବରେ ରାମାୟଣ ଓ ମହାଭାରତ ସହିତ ଶ୍ରୀମଦ୍ ଭାଗବତ ସଂଯୁକ୍ତ ହୋଇଆସିଅଛି । ଦୁଇଟି ସ୍ୱତନ୍ତ୍ର ପୁସ୍ତକରେ ରାମାୟଣ ଓ ମହାଭାରତର ମୁଖ୍ୟ କଥାବସ୍ତୁକୁ ସଂକ୍ଷିପ୍ତ ଗଳ୍ପାକାରରେ ରଚନା କରିସାରିବା ପରେ, ସହୃଦୟ ପାଠକମାନଙ୍କ ନିକଟରେ ଆଉ ଖଣ୍ଡିଏ ଅନୁରୂପ ଉପାଦେୟ ପୁସ୍ତକ ପରିବେଷଣ କରିବାର ଏକ ଅଦମ୍ୟ ଲୋଭନୀୟ ପ୍ରଲୋଭନର ବଶବର୍ତ୍ତୀ ହୋଇ 'ଗ୍ରନ୍ଥତ୍ରୟୀ'ର ଅବଶିଷ୍ଟ ଗ୍ରନ୍ଥ, ଶ୍ରୀମଦ୍ ଭାଗବତ ପ୍ରତି ଆକୃଷ୍ଟ ହେଲି । ଏହି କାର୍ଯ୍ୟଟି ଯେ ଅତି ଜଟିଳ, ଏହା ପ୍ରଥମେ ମୁଁ ଅନୁମାନ କରିପାରି ନଥିଲି; ଫଳରେ ଏହି ଉଚ୍ଚକୋଟିର ଗ୍ରନ୍ଥକୁ ଯଥାର୍ଥରେ ଅଧିଗତ କରିବା ନିମନ୍ତେ ଆବଶ୍ୟକୀୟ ଅଧ୍ୟୟନ ଓ ଅନୁଭୂତି ଯେ ମୋର ନାହିଁ, ପ୍ରତିସ୍ଥଳରେ ଏହା ମୁଁ ମର୍ମେ ମର୍ମେ ଉପଲବ୍ଧି କରିଅଛି ।

ଆମ ଦେଶର ଘରେ ଘରେ ସୁପରିଚିତ ଓ ସୁପୂଜିତ ଅଷ୍ଟାଦଶ ପୁରାଣ-ମାନଙ୍କ ମଧ୍ୟରୁ ଶ୍ରୀମଦ୍ ଭାଗବତ ଅନ୍ୟତମ ହୋଇଥିଲେ ମଧ୍ୟ ଅନ୍ୟାନ୍ୟ ଶାସ୍ତ୍ରମାନଙ୍କ ତୁଳନାରେ ପବିତ୍ରତମ ଗ୍ରନ୍ଥ ଭାବରେ ଏହା ସର୍ବାଧିକ ସମ୍ମାନର ଅଧିକାରୀ ଏବଂ କହିବାକୁ ଗଲେ, ଆଧ୍ୟାତ୍ମିକ ସାହିତ୍ୟ ଓ ଚେତନାର ଏହା ମଉଡ଼ମଣି । ଗଳ୍ପ-କଥନର ଶୈଳୀରେ ଶ୍ରୀମଦ୍ ଭାଗବତର ସମସ୍ତ ବୃତ୍ତାନ୍ତକୁ ସଂକ୍ଷିପ୍ତାକାରରେ ପୁନଃ ପ୍ରକାଶ କରିବା ଥିଲା ମୋର ଅଭିପ୍ରେତ; କିନ୍ତୁ ରାମାୟଣ ଓ ମହାଭାରତ ଆଦି ଅନ୍ୟାନ୍ୟ ପୌରାଣିକ ଗ୍ରନ୍ଥ ପରି ଶ୍ରୀମଦ୍ ଭାଗବତର ମୁଖ୍ୟ ଆଖ୍ୟାନ ବସ୍ତୁ ଥିଲେ ମଧ୍ୟ ଏହା ଗଳ୍ପ-ପ୍ରଧାନ ନୁହେଁ । ମରଣଶୀଳ ମନୁଷ୍ୟଙ୍କ ପକ୍ଷରେ ଯାହା ସର୍ବଶ୍ରେଷ୍ଠ ଓ ସର୍ବାଦୌ କରଣୀୟ, ସେହି ପରମ କଲ୍ୟାଣକର ପ୍ରଶ୍ନର ପୃଷ୍ଠଭୂମିରେ ସମଗ୍ର ଶ୍ରୀମଦ୍ ଭାଗବତ ସୁପରିକଳ୍ପିତ ହୋଇଥିବାରୁ ଏହି ମହାନ୍ ଗ୍ରନ୍ଥର ଛତ୍ରେ ଛତ୍ରେ ଅପୂର୍ବ ଜ୍ଞାନ, ଭକ୍ତି, ସାଧନା, ବୈରାଗ୍ୟ ଏବଂ ଦର୍ଶନ ଆଦି ସମ୍ପର୍କିତ ବିପୁଳ ଅନୁଭୂତି, ଅଜସ୍ର ଉପଦେଶ ଏବଂ ଅନନ୍ୟ ଭକ୍ତିରସ ରୂପକ ଅସରନ୍ତି ମନ୍ଦାକିନୀର ଢେଉଁ ଚିତ୍ତୋଲ୍ଲାସକର ଶାଶ୍ୱତ ସ୍ଥାବରି-ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ, ସେସବୁ ମଧ୍ୟରେ କାହାଣୀ-ସତ୍ତା ଅନ୍ୱେଷଣ କରିବା ନିଶ୍ଚିତ ଅବିମୃଷ୍ୟକାରିତା ! ତଥାପି ଗଳ୍ପ-କଥନର ଶୈଳୀରେ ଏହି ପୁସ୍ତକଟି ରଚିତ ହୋଇଥିଲେ ମଧ୍ୟ ଏବଂ ଏହି ସୀମିତ କଳେବର ମଧ୍ୟରେ ସମସ୍ତ କଥା ସନ୍ନିବେଶିତ କରିବା ସମ୍ଭବ ହୋଇ ନ ଥିବା ସତ୍ତ୍ୱେ

ଶ୍ରୀମଦ୍ ଭାଗ[illegible]ର ସୌନ୍ଦର୍ଯ୍ୟ ଓ ମହତ୍ତ୍ୱ ଯେପରି ଅବିକୃତଭାବରେ ଅକ୍ଷୁର୍ଣ୍ଣ ରହେ ସେଥିପ୍ରତି ମୁଁ ବିଶେଷ ଦୃଷ୍ଟି ଦେଇଅଛି । ଯେଉଁମାନେ ମୂଳ ସଂସ୍କୃତ ଭାଗବତ ପାଠ କରିପାରି ନାହାନ୍ତି ସେହିମାନଙ୍କ ମନରେ ପ୍ରାଥମିକ [illegible] ସୃଷ୍ଟି କରିବା ଉଦ୍ଦେଶ୍ୟରେ ଏହା ଉଦ୍ଦିଷ୍ଟ । ଏହା ସମ୍ପୂର୍ଣ୍ଣ ଭାଗବତ ନୁହେଁ । ଏହି ପୃଷ୍ଠଭୂମିରେ ପାଠକମାନଙ୍କ ନିକଟରେ ଏହି ପୁସ୍ତକଟି ଯଥାଯୋଗ୍ୟ ଆଦର ଲାଭକଲେ ଲେଖକର ଲକ୍ଷ୍ୟ ଓ ଶ୍ରମ ସାର୍ଥକ ହେବ ।

ଏହି ପୁସ୍ତକଟି ମୂଳ ସଂସ୍କୃତ ଭାଗବତର ଅବଲମ୍ବନରେ ଲିଖିତ ହୋଇଅଛି । ଏଥିପାଇଁ ଗୀତା ପ୍ରେସ ଓ ଆର୍ଯ୍ୟଶାସ୍ତ୍ର ପ୍ରକାଶିତ ସଂସ୍କୃତ ଭାଗବତ ଓ ତହିଁର ଅନୁବାଦର ସହାୟତା ନେଇଅଛି । ଏହି ପୁସ୍ତକ ରଚନା ଓ ପ୍ରକାଶ କାଳରେ ଯାଜପୁରର ଶ୍ରୀ ପରମେଶ୍ୱର ଜେନା, ଶ୍ରୀ ଗୋବିନ୍ଦଚନ୍ଦ୍ର ମହାନ୍ତି ଏବଂ ଶ୍ରୀ ଗିରିଜା ପ୍ରସାଦ ନିବାସ ପ୍ରମୁଖ ଆଡ଼ଭୋକେଟ୍‌ମାନେ, ମଧୁସୂଦନ ଲ' କଲେଜର ଶ୍ରୀ ଶ୍ୟାମସୁନ୍ଦର ଷଡ଼ଙ୍ଗୀ ଓ ଶ୍ରୀ ଶ୍ରୀଧର ନାୟକ, କୁଆଁସର ପୁରର ଶ୍ରୀ ଜ୍ଞାନେନ୍ଦ୍ର ବଲ୍ଲଭ ରାୟ (ବନ), ନିକିରାଇର ଶ୍ରୀ ମଧୁସୂଦନ ସିଂ, ଆଠଗଡ଼ର ଶ୍ରୀ ଗୋଲକ ବିହାରୀ ଦାଶ, ଏବଂ ଆସ୍କାର କବିରାଜ ଶ୍ରୀ ଅନ୍ତର୍ଯ୍ୟାମୀ ପ୍ରଧାନ ପ୍ରମୁଖ ସମୟୋପଯୋଗୀ ସାହାଯ୍ୟ, ସହଯୋଗ ଓ ପରାମର୍ଶମାନ ପ୍ରଦାନ କରିଅଛନ୍ତି । ଏହି ପୁସ୍ତକର ଶୋଭାବର୍ଦ୍ଧନ କରିଥିବା ସୁଦୃଶ୍ୟ ପ୍ରଚ୍ଛଦପଟଟି ଓଡ଼ିଶାର ସ୍ୱନାମଧନ୍ୟ ଶିଳ୍ପୀ ଶ୍ରୀ ଅସିତ ମୁଖାର୍ଜୀଙ୍କର କୃତ । ଓଡ଼ିଶା ବୁକ୍ ଷ୍ଟୋରର ସୁଯୋଗ୍ୟ ସ୍ୱତ୍ୱାଧିକାରୀ ଓ ବୟୋବୃଦ୍ଧ ପ୍ରକାଶକ ଶ୍ରୀ ଗୋବିନ୍ଦଚରଣ ପାତ୍ରଙ୍କ ସ୍ୱତଃସ୍ଫୂର୍ତ୍ତ ଉଦାରତା ଫଳରେ ଏହି ପୁସ୍ତକଟିର ଆତ୍ମପ୍ରକାଶ ସମ୍ଭବପର ହୋଇପାରିଅଛି ।

ଏହି ପୁସ୍ତକର ପ୍ରକାଶ ଅବସରରେ ମୋତେ ଉପରୋକ୍ତ ଭାବରେ ଅନୁଗୃହୀତ କରିଥିବା ସେହି ମହାଶୟ ବନ୍ଧୁମାନଙ୍କ ନିକଟରେ ମୋର ବିନମ୍ର କୃତଜ୍ଞତା ଜ୍ଞାପନ କରୁଅଛି । ଇତି ।

କାର୍ତ୍ତିକ ପୂର୍ଣ୍ଣିମା
ତା ୧୬।୧୧।୧୯୬୭ } କୁଳମଣି ଜେନା

।। ଉତ୍ସର୍ଗ ।।

ପରମ ପୂଜନୀୟ

**ବାପା ଓ ବୋଉଙ୍କ**

କରକମଳରେ

**।। କୁଳମଣି ।।**

# ସୂଚୀପତ୍ର

## ପରୀକ୍ଷିତଙ୍କ ପ୍ରତି ବ୍ରହ୍ମ ଅଭିଶାପ

ଭଗବାନଙ୍କର କି ବିଚିତ୍ର ଲୀଳା !

ଭୟବିହ୍ୱଳ ଚିତ୍ତରେ ଅଭିମନ୍ୟୁଙ୍କର ପତ୍ନୀ ଉତ୍ତରା ଦ୍ରୁତଗତିରେ ଧାବିତ ହୋଇ ଯେତେବେଳେ ଭଗବାନ କୃଷ୍ଣଙ୍କୁ ପ୍ରାର୍ଥନା କରି କହିଥିଲେ, "ହେ ମହାଯୋଗି, ହେ ଦେବଦେବ, ହେ ଜଗତ୍ପତି, ହେ ଆର୍ତ୍ତତ୍ରାଣ, ରକ୍ଷାକର, ରକ୍ଷାକର । ହେ ଭଗବାନ, ହେ ପ୍ରଭୁ, ଦେଖ, ଏକ ଅତ୍ୟନ୍ତ ତେଜୋଦୀପ୍ତ ଲୌହମୟ ଦାରୁଣ ଅସ୍ତ୍ର ମୋ ଆଡ଼କୁ କିପରି କ୍ଷିପ୍ର ବେଗରେ ମାଡ଼ି ଆସୁଅଛି । ହେ ବିଭୁ, ହେ ଜଗନ୍ନାଥ, ଏହି ଅସ୍ତ୍ର ମୋତେ ଦଗ୍ଧ କରୁ, ସେଥିପାଇଁ ମୋ ମନରେ ସାମାନ୍ୟତମ ଭୟ ନାହିଁ; କିନ୍ତୁ ମୁଁ ଯେ ଗର୍ଭବତୀ, ମୋର ଗର୍ଭସ୍ଥ ସନ୍ତାନକୁ ଏହି ଭୀଷଣ ଅସ୍ତ୍ରର ଆକ୍ରମଣରୁ ତୁମେ ରକ୍ଷାକର । ହେ ବିଶ୍ୱାତ୍ମା, ହେ ହରି, ଏହି ବିପଦରୁ ରକ୍ଷା କରିପାରିବାର ଶକ୍ତି ତୁମ ଛଡ଼ା କାହାରି ନାହିଁ । ତୁମେ ରକ୍ଷାକର, ରକ୍ଷାକର ।" ଆସନ୍ନ-ପ୍ରସବା ଉତ୍ତରାର ସେହି କରୁଣ ଆକୁଳ ନିବେଦନରେ ଦୟାପରବଶ ହୋଇ କୁରୁବଂଶର ଏକମାତ୍ର ଭାବୀ ବଂଶଧରକୁ ସେହି ନିଶ୍ଚିତ ମୃତ୍ୟୁରୁ ରକ୍ଷା କରିବା ନିମନ୍ତେ ପରମ ଦୟାଳୁ ଭଗବାନ ନିଜର ଅସୀମ ମାୟାଶକ୍ତି ବଳରେ ଉତ୍ତରାର ଗର୍ଭ ମଧ୍ୟରେ ନିଜେ ଦିବ୍ୟପୁରୁଷ ରୂପରେ ପ୍ରବେଶ କରି ସେହି ଗର୍ଭସ୍ଥ ସନ୍ତାନକୁ ନିଜର ଅଭେଦ୍ୟ ମାୟା-କବଚରେ ଆବୃତ କରିଥିଲେ ଓ ସୂର୍ଯ୍ୟରଶ୍ମି ଶିଶିରକୁ ବିନାଶ କଲାପରି ନିଜର ତେଜ ଓ ଗଦା ଗୁଳନାରେ

ଅଶ୍ୱତ୍ଥାମାନିକ୍ଷିପ୍ତ ସେହି ଭୀଷଣ ଓ ତେଜସ୍ୱୀ ବ୍ରହ୍ମାସ୍ତ୍ରର ଆକ୍ରମଣରୁ ପ୍ରତିହତ କରି ଉତ୍ତରାଙ୍କ ଗର୍ଭର ଯେଉଁ ସନ୍ତାନକୁ ଏକଦା ସେ ରକ୍ଷା କରିଥିଲେ, ଭଗବାନଙ୍କର ଆଶୀର୍ବାଦରେ ସୁରକ୍ଷିତ ସେହି ଉତ୍ତରା-ଗର୍ଭ-ଜନ୍ମୂତ ମହାରାଜ ପରୀକ୍ଷିତ ଶେଷରେ ବ୍ରହ୍ମଶାପଗ୍ରସ୍ତ ହୋଇଅଛନ୍ତି ? ବାସ୍ତବିକ ଏହା ବିଶ୍ୱାସ କରି ହୁଏନାହିଁ !

ମନୁ-ପୁତ୍ର ଇକ୍ଷ୍ୱାକୁଙ୍କ ପରି ଯେ ପ୍ରଜାପାଳନରେ ସୁଦକ୍ଷ, ଦଶରଥଙ୍କ ପୁତ୍ର ରାମଙ୍କ ପରି ଯେ ସତ୍ୟନିଷ୍ଠ ଓ ବ୍ରାହ୍ମଣ ହିତୈଷୀ, ଉଶୀନର ରାଜା ଶିବିଙ୍କ ପରି ଯେ ଅନୁପମ ଦାତା ଓ ଶରଣାଗତବତ୍ସଳ, ରାଜା ଦୁଷ୍ମନ୍ତଙ୍କ ପୁତ୍ର ଭରତଙ୍କ ପରି ଯେ ଜ୍ଞାତି-କୀର୍ତ୍ତି-ବର୍ଦ୍ଧନକାରୀ, ବଳ, ବୀର୍ଯ୍ୟ ଓ ଶୌର୍ଯ୍ୟରେ ଯେ ମହାବୀର ଅର୍ଜୁନଙ୍କର ସମତୁଲ୍ୟ, ଅଗ୍ନି ସଦୃଶ ଦୁର୍ଦ୍ଧର୍ଷ, ସାଗର ସଦୃଶ ଦୁରତିକ୍ରମଣୀୟ, ସିଂହ ସଦୃଶ ପରାକ୍ରମଶାଳୀ, ବସୁଧା ସଦୃଶ କ୍ଷମାଶୀଳ, ପିତା-ମାତାଙ୍କ ପରି ସହିଷ୍ଣୁ, ଭଗବାନ ବ୍ରହ୍ମାଙ୍କ ପରି ସର୍ବସ୍ନେହୀ, ଭଗବାନ ଶିବଙ୍କ ସଦୃଶ ସଦା ପ୍ରସନ୍ନଚିତ୍ତ, ଭଗବାନ ବିଷ୍ଣୁଙ୍କ ପରି ଶରଣାଗତବତ୍ସଳ ଓ ଆଶ୍ରୟଦାତା, ଭଗବାନ କୃଷ୍ଣଙ୍କ ପରି ଯେ ମହିମାମଣ୍ଡିତ, ରନ୍ତିଦେବଙ୍କ ପରି ଉଦାରଚିତ୍ତ, ପ୍ରହ୍ଲାଦଙ୍କ ପରି ଭଗବତ୍ ତଦ୍‌ଗତପ୍ରାଣ, ଯଯାତିଙ୍କ ପରି ପରମଧାର୍ମିକ ଏବଂ ବଳିଙ୍କ ପରି ଧୈର୍ଯ୍ୟଶୀଳ ସେହି ସକଳ ସଦ୍‌ଗୁଣର ଅଧିକାରୀ ମହାରାଜ ପରୀକ୍ଷିତ ବ୍ରହ୍ମଶାପରେ ଅଭିଶପ୍ତ ହୋଇଅଛନ୍ତି ? ବ୍ରହ୍ମଶାପ ଫଳରେ ମାତ୍ର ସାତଦିନ ମଧ୍ୟରେ ତାଙ୍କର ଇହଲୀଳା ଶେଷ ହେବ ? ଏହା କ'ଣ ସତ୍ୟ !! ଏପରି ଏକ କଳ୍ପନାତୀତ କଥା କିପରି ସମ୍ଭବ ହେଲା ?

ମହାରାଜ ପରୀକ୍ଷିତ ବ୍ରହ୍ମଶାପ-ଗ୍ରସ୍ତ ହୋଇଅଛନ୍ତି, ଏହି କଥା ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ଘଟଣା ପ୍ରବାହର ଆକସ୍ମିକତା ସମସ୍ତଙ୍କୁ ସ୍ତବ୍ଧ କରିଦେଲା । କ୍ଷଣକ ମଧ୍ୟରେ ସମସ୍ତେ କିମ୍ଭୂତ ହୋଇଗଲେ । ଧର୍ମପଥ ଅନୁସରଣ କରି ଉତ୍ତମରୂପେ ରାଜକାର୍ଯ୍ୟ ଓ ପ୍ରଜାପାଳନ କରୁଥିବା ପରମଧାର୍ମିକ ମହାରାଜ ପରୀକ୍ଷିତଙ୍କ ଜୀବନରେ ଏପରି ପରମ ଦୁର୍ଭାଗ୍ୟ ଯେ କାହିଁକି ଦେଖାଦେଲା, ତାହା ଜାଣିବାକୁ ଦୁଃଖାଭିଭୂତ ସହାନୁଭୂତି-ଶୀଳ ରାଜ୍ୟବାସୀଙ୍କ ମନରେ ଅପୂର୍ବ ବ୍ୟାକୁଳତା ଦେଖାଦେଲା ।

କୁରୁକ୍ଷେତ୍ର ଯୁଦ୍ଧରେ ଯୁଧିଷ୍ଠିର ପ୍ରମୁଖ ପାଣ୍ଡବମାନେ ବିଜୟୀ ହେବାରୁ ସେମାନେ ଇନ୍ଦ୍ରପ୍ରସ୍ଥ ସହିତ ହସ୍ତିନାର ରାଜପଦ ଲାଭ କରିଥିଲେ । ଜ୍ୟେଷ୍ଠ ପାଣ୍ଡବ ଯୁଧିଷ୍ଠିର ନିଜର ଭାଇମାନଙ୍କ ସହଯୋଗରେ ଉତ୍ତମରୂପେ ରାଜ୍ୟ ପାଳନ କରୁଥିବା ସମୟରେ ଭଗବାନ କୃଷ୍ଣ ନିଜର ଇହଲୀଳା ସାଙ୍ଗ କରିଥିଲେ । ଭଗବାନ କୃଷ୍ଣ ଥିଲେ ପାଣ୍ଡବମାନଙ୍କର ପରମ ହିତୈଷୀ; ତେଣୁ ତାଙ୍କର ତିରୋଧାନ ପରେ ଧର୍ମପ୍ରାଣ ମହାରାଜ ଯୁଧିଷ୍ଠିର ପ୍ରମୁଖ ପାଣ୍ଡବମାନେ ସସ୍ତ୍ରୀକ ନିଜ ନିଜର ଇହଲୀଳା ଶେଷ କରିବାକୁ ଇଚ୍ଛା ପୋଷଣ କରି ରାଜସିଂହାସନ ତଥା ରାଜ୍ୟ ତ୍ୟାଗ କଲେ । ପାଣ୍ଡବମାନେ ରାଜସିଂହାସନ ପରିତ୍ୟାଗ କରି ଯିବା ସମୟରେ ସେମାନଙ୍କର ଏକମାତ୍ର ବଂଶଧର ଅଭିମନ୍ୟୁ-ପୁତ୍ର ପରୀକ୍ଷିତଙ୍କୁ ହସ୍ତିନାର ରାଜସିଂହାସନରେ ଅଭିଷିକ୍ତ କରିଯାଇଥିଲେ । ପରୀକ୍ଷିତ ରାଜୋଚିତ ସକଳ ସଦ୍‌ଗୁଣର ଅଧିକାରୀ ଥିଲେ । ସେ ଶାସ୍ତ୍ରାନୁମୋଦିତ ଧର୍ମ-ପଥ ଅବଲମ୍ବନ କରି ଏବଂ ବ୍ରାହ୍ମଣମାନଙ୍କ ପ୍ରଦତ୍ତ ସୁପରାମର୍ଶ ଅନୁସାରେ ସୁଚାରୁରୂପେ ରାଜକାର୍ଯ୍ୟ ତଥା ପ୍ରଜାପାଳନ କରି ବହୁ କୀର୍ତ୍ତି ଅର୍ଜ୍ଜନ କରିଥିଲେ । ସେ ସନ୍ତୋଷଜନକ ଭାବରେ ରାଜ୍ୟଶାସନ କରୁଥିବା ସମୟରେ ତାଙ୍କ ଜୀବନରେ ଗୋଟିଏ ପରମ ଦୁର୍ଭାଗ୍ୟକର ଘଟଣା ଘଟିଗଲା ।

ମହାରାଜ ପରୀକ୍ଷିତ ରାଜକାର୍ଯ୍ୟ ପରିଚାଳନା କରୁଥିବା ସମୟରେ ଶୁଣିବାକୁ ପାଇଲେ ଯେ, ତାଙ୍କ ରାଜ୍ୟରେ ଦୁଷ୍ଟମତି କଳି ପ୍ରବେଶ କରିଅଛି । କଳିର ସଂସ୍ପର୍ଶରେ ଆସିଲେ ରାଜ୍ୟରୁ ସତ୍ୟ ଓ ଧର୍ମ ଲୋପ ପାଇଯିବ ବୋଲି ଆଶଙ୍କା କରି ମହାରାଜ ପରୀକ୍ଷିତ ଦିଗ୍‌ବିଜୟରେ ବାହାରି ରାଜ୍ୟର ପ୍ରତିଟି ସ୍ଥାନରେ କଳିର ଅନ୍ୱେଷଣ କଲେ ।

ଧନକର କଥା ।

ସରସ୍ୱତୀ ନଦୀ କୂଳରେ ଅବସ୍ଥିତ କୁରୁକ୍ଷେତ୍ରରେ ପରୀକ୍ଷିତ ଯାତ୍ରା କରୁଥିବା ସମୟରେ ଦେଖିବାକୁ ପାଇଲେ ଯେ, ରାଜବେଶଧାରୀ ଏକ ଶୂଦ୍ର ଗୋଟିଏ ବୃଷଭ ଓ ଗୋଟିଏ ଗାଭୀକୁ ନିର୍ମମ ଭାବରେ

ପ୍ରହାର ଓ ପଦାଘାତ କରୁଅଛୁ । ବୃଷଭଟିର ଚାରିଗୋଡ଼ ମଧ୍ୟରୁ ତିନି ଗୋଟି ଗୋଡ଼-ଭାଙ୍ଗିଯାଇଥିଲା । ଅବଶିଷ୍ଟ ଗୋଟିଏ ଗୋଡ଼ରେ ବୃଷଭଟି ବହୁ କଷ୍ଟରେ ଘୋଷାରି ଘୋଷାରି ସେହି ଗାଭୀ ନିକଟକୁ ଯାଇ ସମବେଦନା ପ୍ରକାଶ କରି କହିଲା, 'ଭଦ୍ରେ, ତୁମେ ରୁଗ୍‌ଣ ନୁହଁ ତ ? ତୁମର ମୁଖମଣ୍ଡଳ ଅତ୍ୟନ୍ତ ମଳିନ ଓ ବିଷାଦଗ୍ରସ୍ତ ଦେଖାଯାଉଅଛି । ବହୁ ଦୁଃଖରେ ଦୁଃଖିନୀ ଥିବାପରି ତୁମେ ଜଣାପଡୁଅଛ । କାହାପାଇଁ ଦୁଃଖ କରୁଅଛ ? ତୁମର ଏହି ଦୁରବସ୍ଥାର କାରଣ କ'ଣ ? ମୋର ଗୋଡ଼ ମଧ୍ୟରୁ ତିନିଗୋଟି ଗୋଡ଼ ସମ୍ପୂର୍ଣ୍ଣ ଭାଙ୍ଗିଯାଇ ମାତ୍ର ଗୋଟିଏ ଗୋଡ଼ ଅବଶିଷ୍ଟ ଅଛି, ତେଣୁ ମୋର ଏହି ଶୋଚନୀୟ ଦୁରବସ୍ଥା ପାଇଁ ଦୁଃଖ କରୁ ନାହଁ ତ ? ଶୂଦ୍ରମାନେ ରାଜା ହୋଇ ତୁମ ଉପରେ ପ୍ରଭୁତ୍ୱ ବିସ୍ତାର କରିବେ ବୋଲି ଭାବି ଦୁଃଖ କରୁଅଛ କି ? ଯଜ୍ଞାଦି ଲୋପ ପାଇଆସୁଥିବାରୁ ଓ ଦେବତାମାନଙ୍କର ତେଣୁ ଯଜ୍ଞ-ଭାଗ ବନ୍ଦ ହୋଇଯାଉଥିବାରୁ ସେମାନଙ୍କ ପାଇଁ ଦୁଃଖ କରୁଅଛ କି ? ଇନ୍ଦ୍ର ବୃଷ୍ଟି କରୁ ନ ଥିବାରୁ ଅନାବୃଷ୍ଟିକ୍ଳିଷ୍ଟ ପ୍ରଜାମାନଙ୍କର ଦୁର୍ଦ୍ଦଶା ଦେଖି ଦୁଃଖ କରୁଅଛ? ହେ ବସୁଧା, ସ୍ୱାମୀମାନେ ସେମାନଙ୍କର ପତ୍ନୀମାନଙ୍କୁ ରକ୍ଷା କରୁ ନଥିବାରୁ, ପିତାମାନେ ପୁତ୍ରମାନଙ୍କୁ ରକ୍ଷା କରିବା ପରିବର୍ତ୍ତେ ପୀଡ଼ିତ କରୁଥିବାରୁ, ବ୍ରାହ୍ମଣମାନେ ଅନ୍ୟାୟ କାର୍ଯ୍ୟ କରୁଥିବାରୁ ଏବଂ ବ୍ରାହ୍ମଣପ୍ରତି ଶ୍ରଦ୍ଧା-ଭାବ ପୋଷଣ କରୁ ନଥିବା ରାଜାଙ୍କ ଅଧୀନରେ ବ୍ରାହ୍ମଣମାନେ ସେବକ ଭାବରେ କାର୍ଯ୍ୟ କରୁଥିବାରୁ ଦୁଃଖ କରୁଅଛ କି ? ପାପରତ କ୍ଷତ୍ରିୟାଧମଙ୍କ ଦ୍ୱାରା ରାଜ୍ୟ ପ୍ରଭୃତ କ୍ଷତିର ସମ୍ମୁଖୀନ ହେଉଥିବାରୁ ଏବଂ ମନୁଷ୍ୟମାନଙ୍କୁ ସ୍ଥାନ-କାଳ-ପାତ୍ର ବିଚାର ନ କରି ସ୍ୱେଚ୍ଛାଚାରୀ ଭାବରେ ଯେଉଁଠି ନା ସେଠି ଭୋଜନ, ପାନ, ନିବାସ, ସ୍ନାନ ଏବଂ ମୈଥୁନାଦି କରୁଥିବାର ଦେଖି ଦୁଃଖ କରୁଅଛ କି ? ମା ବସୁଧା, ତୁମର ଗୁରୁଭାର ହରଣ କରିବା ନିମନ୍ତେ ଯେ ଅବତାର ଗ୍ରହଣ କରି ମାତ୍ର ଅଳ୍ପଦିନ ତଳେ ଇହଲୀଳା ସାଙ୍ଗ କରି ଅଛନ୍ତି, ସେହି କରୁଣାମୟ ଭଗବାନଙ୍କର ବିରହଜନିତ ଦୁଃଖ ସହ୍ୟ କରି ନ ପାରି ତାଙ୍କର ପୁଣ୍ୟ ଲୀଳାସକଳ ସ୍ମରଣ କରି କ'ଣ ଦୁଃଖ ପାଉଛ ? ଦିନ ଥିଲା ଯେତେବେଳେ ତୁମର ସୌଭାଗ୍ୟକୁ ଦେବତାମାନେ ସମ୍ମାନ ଦେବା ସଙ୍ଗେ ସଙ୍ଗେ ଈର୍ଷା ମଧ୍ୟ କରୁଥିଲେ, ଆଜି ତୁମେ ସେହି ବିରଳ ସୌଭାଗ୍ୟ-ସୁଖରୁ କାହିଁକି ବଞ୍ଚିତ ହେଲ ? ଦୁଃଖର ଭାରରେ ତୁମେ

କୃଶ ହୋଇଗଲଣି । ତୁମର ଏହି ମାନସିକ ଦୁଃଖର କାରଣ ମୋତେ ଦୟାକରି କହିବ କି ?'

ଗାଭୀରୂପଧାରିଣୀ ବସୁନ୍ଧରା କହିଲେ, "ହେ ଧର୍ମ, ମୋତେ ଯେଉଁ କଥା ତୁମେ ପଚାରୁଛ, ତାହା କ'ଣ ତୁମକୁ ଅଜଣା ଅଛି ? ଭଗବାନ ସକଳ ଗୁଣ ଓ ଜ୍ଞାନର ଅଧିକାରୀ । ତାଙ୍କଠାରେ ସତ୍ୟ, ଶୌଚ, ଦୟା, କ୍ଷମା, ତ୍ୟାଗ, ସନ୍ତୋଷ, ସରଳତା, ମନ ଓ ଇନ୍ଦ୍ରିୟ ସ୍ଥିରତା, ତପସ୍ୟା, ସାମ୍ୟ, ତିତିକ୍ଷା, ଉଦାରତା, ଉଦାସୀନତା, ଶାସ୍ତ୍ରଜ୍ଞାନ, ଆତ୍ମଜ୍ଞାନ, ବୈରାଗ୍ୟ, ଐଶ୍ୱର୍ଯ୍ୟ, ଶୌର୍ଯ୍ୟ, ତେଜ, ବଳ, ସ୍ମୃତି, ସ୍ୱାତନ୍ତ୍ର୍ୟ, କୌଶଳ, କାନ୍ତି, ଧୈର୍ଯ୍ୟ, ସ୍ଥୈର୍ଯ୍ୟ, କରୁଣା, ପ୍ରାଗଲଭ୍ୟ ବିନୟ, ଶୀଳ, ମନ-ଜ୍ଞାନ-କର୍ମ ଶକ୍ତି, ଯନ୍ତ୍ର, ଶାନ୍ତାନୁରକ୍ତି, କୀର୍ତ୍ତି, ଏବଂ ଅନ୍ୟାନ୍ୟ ମହିମାମୟ ଗୁଣାବଳୀ ପ୍ରଭୃତି ସୁପରିଲକ୍ଷିତ ହେଉଥିଲା । ସେହି ଭଗବାନ ଶ୍ରୀନିବାସ ଇହଲୀଳା ସମ୍ବରଣ କରି ଯିବା ପରେ ପରେ ସକଳ ପାପର ମୂଳ କଳି ଆଜି ଇହଜଗତକୁ କବଳିତ କରିଅଛି; ତାହା ଦେଖି ମୋ ମନରେ ଅଶେଷ ଦୁଃଖଲାଭ କରୁଅଛି । ହେ ଅମରୋତ୍ତମ, ମୁଁ ନିଜପାଇଁ, ତୁମପାଇଁ, ଏପରି କି ସମସ୍ତ ଦେବଦେବୀ, ମୁନିଋଷି, ପିତୃପୁରୁଷ, ସକଳ ଜାତି ଓ ସକଳ ଆଶ୍ରମ ପାଇଁ ଶୋକ କରୁଅଛି । ମହାପୁରୁଷମାନେ ଯାହାଙ୍କୁ ପରମ ଭକ୍ତି ସହକାରେ ନିୟମିତ ସେବା କରିଥାନ୍ତି, ବ୍ରହ୍ମା ପ୍ରମୁଖ ଦେବତାମାନେ ଯାହାଙ୍କର କୃପା-କଟାକ୍ଷ ଲାଭ କରିବା ନିମନ୍ତେ ଯୁଗ ଯୁଗ ଧରି କାମନା ଓ ସେଥି ପାଇଁ କଠୋର ତପସ୍ୟା କରିଥାନ୍ତି, ଲକ୍ଷ୍ମୀ ନିଜର ପ୍ରିୟ ଆବାସସ୍ଥଳୀ ପଦ୍ମବନକୁ ପରିତ୍ୟାଗ କରି ଆନ୍ତରିକ ଭକ୍ତି ଓ ଅନୁରାଗ ସହକାରେ ଯାହାଙ୍କର ଚରଣକମଳକୁ ସେବା କରିଥାନ୍ତି, ସେହି କୃପାମୟ ଭଗବାନଙ୍କର ବଜ୍ର-ଅଙ୍କୁଶ-ଧ୍ୱଜ-ପଦ୍ମ ଲାଞ୍ଛିତ ପରମ ରମଣୀୟ ଚରଣ ଯୁଗଳର ବିରଳ ସ୍ପର୍ଶ ମୋର ସର୍ବାଙ୍ଗରେ ଶୋଭା ପାଉଥିଲା, ମୁଁ ମଧ୍ୟ ସେହି ଅପୂର୍ବ ସୌଭାଗ୍ୟ ଲାଭରେ ଅତ୍ୟନ୍ତ ଆତ୍ମହରା ହେଉଥିଲି ଓ ନିଜକୁ ବିଶେଷ ଗୌରବାନ୍ୱିତ ମନେ କରୁଥିଲି, ଭଗବାନଙ୍କର ସ୍ୱଧାମଯାତ୍ରା ପରେ ମୁଁ ଆଜି ସେହି ସୌଭାଗ୍ୟରୁ ସମ୍ପୂର୍ଣ୍ଣ ବଞ୍ଚିତା । ଧର୍ମ ଓ ଧର୍ମାନୁଷ୍ଠାନ ବିରୋଧୀ ଅସୁରମାନଙ୍କର ବହୁଳ ସଂଖ୍ୟା ଓ ଅତ୍ୟାଚାରରେ ମୁଁ ଅତ୍ୟନ୍ତ ପୀଡ଼ିତ ହେଉଥିବା ବେଳେ ସେହି ପରମପାମର ଅସୁରମାନଙ୍କୁ ବିନାଶ

କରି ଯେଉଁ କରୁଣାମୟ ଭଗବାନ ମୋର ଦୁଃଖ ଲାଘବ କରିଥିଲେ, ତୁମକୁ ଭଗ୍ନପାର୍ଶ୍ୱ ଦେଖି ନିଜର ଅମିତ ଶକ୍ତି ବଳରେ ତୁମ ଶରୀରକୁ ପୂର୍ବପାଦରେ ପୂର୍ଣ୍ଣାଙ୍ଗ କରିବା ନିମନ୍ତେ ଯେଉଁ ଇଚ୍ଛାମୟ ଭଗବାନ ଯଦୁବଂଶରେ ଅବତୀର୍ଣ୍ଣ ହୋଇ ପରମ ରମଣୀୟ ରୂପ ଧାରଣ କରି ବହୁ ଲୀଳା ଆଚରଣ କରିଥିଲେ, ସେହି ଭଗବାନ କୃଷ୍ଣଙ୍କର ବିଚ୍ଛେଦ ସହ୍ୟ କରିବା କୌଣସି ରମଣୀ ପକ୍ଷରେ ସହଜ କିମ୍ବା ସମ୍ଭବ ନୁହେଁ । ଯେଉଁ ପରମ ପ୍ରେମମୟ ଭଗବାନ ନିଜର ପ୍ରେମପୂର୍ଣ୍ଣ କଟାକ୍ଷ, ସ୍ମିତହାସ୍ୟ ଏବଂ ପ୍ରେମପୂର୍ଣ୍ଣ ସୁମଧୁର ସମ୍ଭାଷଣରେ ନିଜର ଅଭିମାନିନୀ ପ୍ରେୟସୀମାନଙ୍କର ପ୍ରେମ ପ୍ରସୂତ ଅଭିମାନ ଓ ଗୁମାନକୁ ହରଣ କରୁଥିଲେ ଏବଂ ମୋର ପୃଷ୍ଠ ଦେଶରେ ପଦଚାଳନା କରି ଯେଉଁ ଭଗବାନ ମୋର ସର୍ବାଙ୍ଗରେ ଅପୂର୍ବ ଆନନ୍ଦ ଓ ଶିହରଣ ସୃଷ୍ଟି କରୁଥିଲେ, ସେହି ପୁରୁଷୋତ୍ତମଙ୍କର ବିରହକୁ ମୁଁ ସହଜ ଭାବରେ ଗ୍ରହଣ କରି ପାରୁ ନାହିଁ । ଭଗବାନଙ୍କର ସେହି ସ୍ମୃତି ଓ ବିରହ ମୋ ମନରେ ବାରମ୍ବାର ଅସହ୍ୟ ଶୋକ ଓ ଅବସାଦ ଉଦ୍ରେକ କରୁଅଛି ।'

ସେହି ବୃଷଭ ଥିଲେ ସ୍ୱୟଂ ଧର୍ମଦେବ ଏବଂ ସେହି ଗାଭିଟି ଥିଲେ ମାତା ବସୁଧା ।

ମହାରାଜା ପରୀକ୍ଷିତ ଦିଗ୍‌ବିଜୟରେ ଯାଉଥିବା ସମୟରେ ରାଜବେଶ ପରିହିତ ଶୂଦ୍ରକୁ ସେହି ଗାଭି ଓ ବୃଷଭଙ୍କୁ ନିର୍ମମ ଭାବରେ ପଦାଘାତ ଓ ବେତ୍ରାଘାତ କରୁଥିବାର ଦେଖିଲେ । ପରୀକ୍ଷିତଙ୍କର ଦୁଃଖ ଓ କ୍ରୋଧର ସୀମା ରହିଲା ନାହିଁ; ସେ ସଙ୍ଗେ ସଙ୍ଗେ ନିଜର ରଥରୁ ଅବତରଣ କରି ଗୁରୁ ଗମ୍ଭୀର ସ୍ୱରରେ ସେହି ଅବିବେକୀ ଶୂଦ୍ରକୁ ସମ୍ବୋଧନ କରି ପ୍ରଶ୍ନକଲେ, 'ତୁ କିଏ ? ମୋର ଆଶ୍ରିତ ଏହି ପୃଥିବୀରେ ଦୁର୍ବଳ ତଥା ଅସହାୟଙ୍କ ଉପରେ ତୁ ଏପରି ଅତ୍ୟାଚାର କରୁଅଛୁ କାହିଁକି ? ନାଟ ପ୍ରଦର୍ଶନ କରୁଥିବା ବ୍ୟକ୍ତିଙ୍କ ପରି ରାଜ-ସୁଲଭ ବେଶଭୂଷାରେ ନିଜକୁ ଆଚ୍ଛାଦିତ କରିଥିଲେ ମଧ୍ୟ ତୁ ଯେ ଶୂଦ୍ର, ଏହା ବୁଝିବାରେ ମୋର ସାମାନ୍ୟତମ କଷ୍ଟ ହେଉ ନାହିଁ । ତୋର ଏହି କାର୍ଯ୍ୟ ମୋ ପକ୍ଷରେ ଅତ୍ୟନ୍ତ ଅସହ୍ୟ । ଭଗବାନ ଶ୍ରୀକୃଷ୍ଣଙ୍କର ସ୍ୱଧାମକୁ ଯାତ୍ରା କରିବା ପରେ ପରେ ଗାଣ୍ଡିବଧାରୀ ମହାବୀର ଅର୍ଜ୍ଜୁନ

ସ୍ୱର୍ଗାରୋହଣ କରିବାରୁ, ସେମାନଙ୍କର ଅନୁପସ୍ଥିତିରେ ଉତ୍ସାହିତ ହୋଇ ତୁ ଏପରି ନିରପରାଧ ପ୍ରାଣୀମାନଙ୍କୁ ନିର୍ଜ୍ଜନରେ ଅକଥନୀୟ ନିର୍ଯ୍ୟାତନା ଦେଉଅଛୁ । ତୋ ପରି ପାପୀ ପ୍ରତି ମୃତ୍ୟୁ ଦଣ୍ଡ ହିଁ ହେବ ସମୁଚିତ ଶାସ୍ତି ।'

ସେହି ଶୂଦ୍ରପ୍ରତି ଏହିପରି କଠୋର ଭାଷା ପ୍ରୟୋଗ କରି ମହାରାଜ ପରୀକ୍ଷିତ ବୃଷଭ ଓ ଗାଭୀକୁ ସମ୍ବୋଧନ କରି ଅତ୍ୟନ୍ତ ସହାନୁଭୂତିପୂର୍ଣ୍ଣ ମଧୁର ଭାଷାରେ କହିଲେ, 'ବୃଷଭ, ତୁମର ବର୍ଣ୍ଣ ମୃଣାଳ ସଦୃଶ ଧବଳ, ଅଥଚ ତୁମର ତିନିଗୋଟି ଗୋଡ଼ ଭାଙ୍ଗି ଯାଇଅଛି ଏବଂ ଗୋଟିଏ ମାତ୍ର ଗୋଡରେ ତୁମେ ବିଚରଣ କରୁଅଛ । କୌରବ ବଂଶୀୟ ରାଜାମାନଙ୍କର ଭୁଜବଳରେ ସୁରକ୍ଷିତ ଏହି ସସାଗରା ଧରା ମଧ୍ୟରେ ଦୁଃଖରେ ଜୀବନ ଯାପନ କରୁଥିବା ଜୀବ ଏକାନ୍ତ ବିରଳ ଥିଲାବେଳେ, ତୁମେ ତା'ର ଏକ ଆଶ୍ଚର୍ଯ୍ୟକର ବ୍ୟତିକ୍ରମ । ତୁମର ଅବସ୍ଥା ଦେଖି ମୋତେ ଦୁଃଖ ଲାଗୁଛି । ଏହି ପାଷାଣ୍ଡ ଶୂଦ୍ର ତୁମର ଆଉ କୌଣସି କ୍ଷତି କରିପାରିବ ନାହିଁ । ତୁମେ ଆଉ ଭୟ କର ନାହିଁ । ମା, ତୁମେ ମଧ୍ୟ କାନ୍ଦ ନାହିଁ । ଦୁଷ୍ଟ, ଦୁର୍ବୃତ୍ତ-ମାନଙ୍କୁ ଶାସନ କରିବା ନିମନ୍ତେ ମୁଁ ଉପସ୍ଥିତ ଅଛି । ଯେଉଁ ରାଜ୍ୟର ପ୍ରଜା ଓ ଆଶ୍ରିତମାନେ ଦୁର୍ବୃତ୍ତମାନଙ୍କ ଦ୍ୱାରା ପୀଡ଼ିତ ଓ ଭୟଭୀତ ହୁଅନ୍ତି, ସେହି ରାଜା ଅଯୋଗ୍ୟ ଏବଂ ତାଙ୍କର ସମସ୍ତ କୀର୍ତ୍ତି, ସୌଭାଗ୍ୟ, ଆୟୁ ଏବଂ ପାରଲୌକିକ ପୁଣ୍ୟ ସମୂହ ନଷ୍ଟ ହୋଇଯାଏ । ଆର୍ତ୍ତ ଓ ବିପନ୍ନମାନଙ୍କର ଦୁଃଖ ନିବାରଣ କରିବା ହିଁ ପ୍ରତ୍ୟେକ ରାଜାଙ୍କର ପ୍ରଥମ ଓ ପରମ କର୍ତ୍ତବ୍ୟ । ଏହି ହିଂସାକାରୀକୁ ମୁଁ ଉପଯୁକ୍ତ ଶାସ୍ତି ଦେବି, ତେଣୁ ମା, ତୁମେ ଦୁଃଖ କର ନାହିଁ । ହେ ବୃଷଭ, ତୁମର ଚାରିଗୋଟି ଗୋଡ଼ ମଧ୍ୟରୁ ତିନିଗୋଟି ଗୋଡକୁ ଏପରି କିଏ ଛେଦନ କରିଅଛି ? ତୁମେ ସାଧୁ ଓ ନିରପରାଧ । ତୁମକୁ ଏପରି ଦୁଃଖ ଦେବାଦ୍ୱାରା ଯଶସ୍ୱୀ ପାଣ୍ଡବମାନଙ୍କର କୀର୍ତ୍ତି ବହୁଭାବରେ କଳଙ୍କିତ ହୋଇଅଛି, ତେଣୁ ତୁମେ ସେହି ଦୁଷ୍ଟର ନାମ ପ୍ରକାଶ କରି, ବିନା ଦୋଷରେ ଯେ ସାଧୁମାନଙ୍କୁ ପୀଡ଼ିତ କରେ ଓ ତାଙ୍କର ଅନିଷ୍ଟ ସାଧନ କରେ, ସେ ଦେବତା ହେଲେ ମଧ୍ୟ ଶାସନଯୋଗ୍ୟ । ଦୁର୍ଜ୍ଜନର ଉପଯୁକ୍ତ ଶାସନ ବିଧାନରେ ହିଁ ସଜ୍ଜନମାନଙ୍କର ଅଶେଷ କଲ୍ୟାଣ ସାଧିତ ହୋଇଥାଏ । ସ୍ୱଧର୍ମନିରତ ସାଧୁମାନଙ୍କୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଉଚ୍ଛୃଙ୍ଖଳ ଓ ଅସାଧୁ ପ୍ରକୃତିର ଲୋକଙ୍କୁ ଶାସ୍ତି ଦେବା ହିଁ ରାଜାମାନଙ୍କର ପରମ ଧର୍ମ ।'

ମହାରାଜା ପରୀକ୍ଷିତଙ୍କର ସେହି ସହାନୁଭୂତିପୂର୍ଣ୍ଣ ଧର୍ମସଙ୍ଗତ ଅଭୟବାଣୀର ପ୍ରତ୍ୟୁତ୍ତରରେ ଧର୍ମରୂପୀ ବୃଷଭ କହିଲେ, 'ହେ ପୁରୁଷର୍ଷଭ, ଯେଉଁ ଧର୍ମପ୍ରାଣ ପାଣ୍ଡବମାନଙ୍କର ଅଲୌକିକ ଗୁଣାବଳୀରେ ଆକୃଷ୍ଟ ହୋଇ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ସେମାନଙ୍କର ଦୂତରୂପରେ କାର୍ଯ୍ୟ କରିବାକୁ କୌଣସି କୁଣ୍ଠା କରି ନ ଥିଲେ, ସେହି ମହିମାମୟ ପାଣ୍ଡବମାନଙ୍କର ଆପଣ ସୁଯୋଗ୍ୟ ବଂଶଧର ହୋଇଥିବାରୁ, ଆପଣଙ୍କ ପକ୍ଷରେ ଆର୍ତ୍ତମାନଙ୍କୁ ଅଭୟ ପ୍ରଦାନ କରିବା ହିଁ ସମୀଚୀନ । ସକଳ ସୁଖ ଓ ଦୁଃଖର କାରଣ ଭାବରେ ଯୋଗୀମାନେ ଆତ୍ମାକୁ, ଦୈବଜ୍ଞମାନେ ଗ୍ରହ ବା ଦେବତାଙ୍କୁ, କର୍ମଵାଦୀମାନେ ନିଜର କର୍ମକୁ ଏବଂ ନାସ୍ତିକମାନେ ନିଜର ସ୍ୱଭାବକୁ ଦାୟୀ କରିଥାନ୍ତି; କିନ୍ତୁ ଯେଉଁମାନେ ଈଶ୍ୱର ବିଶ୍ୱାସୀ ସେମାନେ ସବୁବେଳେ ମନ ଓ ବାକ୍ୟର ଅଗୋଚରରେ ବାସକରୁଥିବା ପରମେଶ୍ୱରଙ୍କଠାରୁ ସମସ୍ତ ସୁଖ ଓ ଦୁଃଖ ସୃଷ୍ଟି ହୋଇଅଛି ବୋଲି କହିଥାନ୍ତି । ଆପଣଙ୍କର ରୁଚି ଓ ବିଚାରାନୁସାରେ ଏହି କାରଣଗୁଡ଼ିକ ମଧ୍ୟରୁ ଯେଉଁଟିକୁ ଯଥାର୍ଥ ବୋଲି ମନେ କରୁଅଛନ୍ତି, ତାହାକୁ ଆମର ଏହି ଦୁରବସ୍ଥାର କାରଣ ବୋଲି ଜାଣନ୍ତୁ ।'

ବୃଷଭରୂପୀ ଧର୍ମଙ୍କଠାରୁ ଏପରି କଥା ଶୁଣି ମହାରାଜା ପରୀକ୍ଷିତ ସାମାନ୍ୟ ଚିନ୍ତାକରି କହିଲେ, 'ହେ ଧର୍ମଜ୍ଞ ! କେବେ କାହାରି ଅନିଷ୍ଟ ଚିନ୍ତା କରିବ ନାହିଁ କି, ନିଜର ହତ୍ୟାକାରୀର ନାମ ମଧ୍ୟ ପ୍ରକାଶ କରିବ ନାହିଁ; କାରଣ ତଦ୍ଦ୍ୱାରା ପାପ ହେବ, ସମ୍ଭବତ ସେହି ସୁନୀତିର ତୁମେ ଉପାସକ ହୋଇଥିବାରୁ କାହାଯୋଗୁ ତୁମେ ଏପରି ଶୋଚନୀୟ ଦୁର୍ଦ୍ଦଶାର ସମ୍ମୁଖୀନ ହେଲ ତା'ର ନାମ ପ୍ରକାଶ କରିବା ଦୂରରେ ଥାଉ, ତା' ସମ୍ପର୍କରେ ସାମାନ୍ୟ ସୂଚନା ମଧ୍ୟ ଦେଲ ନାହିଁ; ସେଥିରୁ ବୁଝୁଛି ତୁମେ ନିଶ୍ଚୟ ସ୍ୱୟଂ ଧର୍ମ । ତୁମର ମୁଖ ନିଃସୃତ କଥା ବାସ୍ତବିକ ଧର୍ମ-ସଙ୍ଗତ । ସତ୍ୟ ଯୁଗରେ ଧର୍ମର ଚାରିଗୋଟି ପାଦ ଥିଲା, ସେ ଗୁଡ଼ିକର ନାମ ହେଲା : ତପସ୍ୟା, ପବିତ୍ରତା, ଦୟା ଓ ସତ୍ୟ । ସମ୍ପ୍ରତି କ୍ରମେ ଗର୍ବ, ବିଷୟାସକ୍ତି, ମଦ୍ୟପାନାଦି ମତ୍ତତା ଓ ଦୁର୍ଗୁଣ ଦ୍ୱାରା ଧର୍ମର ତିନିଗୋଟି ପାଦ ଭଗ୍ନ ହୋଇଅଛି; କେବଳ ରହିଛି ସତ୍ୟ ନାମକ ଗୋଡ଼ିଟି, ଯାହା ଦ୍ୱାରା ତୁମେ କୌଣସି ମତେ ନିଜକୁ ରକ୍ଷା କରିଅଛ; କିନ୍ତୁ ମିଥ୍ୟା ଦ୍ୱାରା ବଳୀୟାନ ହୋଇ ସଦା ଅଧର୍ମପରାୟଣ ଏହି ଶୂଦ୍ରରୂପୀ କଳି ତୁମର

ଅବଶିଷ୍ଟ ଗୋଡ଼ଟିକୁ ମଧ୍ୟ ଯେ ନଷ୍ଟ କରି ଦେବାକୁ ବସିଅଛି, ତାହା ମୁଁ ଉତ୍ତମ ରୂପେ ବୁଝିପାରୁଛି । ଏହି ଗାଈଟି ନିଶ୍ଚୟ ସ୍ୱୟଂ ବସୁନ୍ଧରା, ଯାହାଙ୍କର ଗୁରୁଭାରକୁ ଭଗବାନ ଶ୍ରୀକୃଷ୍ଣ ଲାଘବ କରି ତାଙ୍କୁ ଅପୂର୍ବ ସୌଭାଗ୍ୟଶ୍ରୀରେ ବିମଣ୍ଡିତା କରିଥିଲେ । ବ୍ରାହ୍ମଣଙ୍କ ପ୍ରତି ଅଶ୍ରଦ୍ଧାବାନ୍ ଥିବା ଶୂଦ୍ରମାନେ ରାଜପଦ ଅଧିକାର କରି ପୃଥିବୀକୁ ଭୋଗ କରିବେ, ଏହା ଆଶଙ୍କା କରି ଅନାଥିନୀ ବସୁନ୍ଧରା ସମ୍ଭବତଃ ସେଥିପାଇଁ ଏପରି କ୍ରନ୍ଦନ କରୁଅଛନ୍ତି । ଯାହା ହେଉ, ତୁମେ ଶୋକ ପରିହାର କର ।'

ଏହିପରି ଭାବରେ ମହାରାଜା ପରୀକ୍ଷିତ ଧର୍ମ ଓ ବସୁନ୍ଧରାଙ୍କୁ ଅଭୟ ପ୍ରଦାନ କରି ଅଧର୍ମର ମୂଳସ୍ୱରୂପ ରାଜ-ପୋଷାକରେ ଅଚ୍ଛାଦିତ ହୋଇଥିବା ସେହି ଶୂଦ୍ର ରୂପୀ କଳିକୁ ଶାସ୍ତି ପ୍ରଦାନ କରିବା ନିମନ୍ତେ ଖଡ୍‌ଗ ଉତ୍ତୋଳନ କଲେ । କଳି ପ୍ରାଣଭୟରେ ପରୀକ୍ଷିତଙ୍କର ଚରଣ ପ୍ରାନ୍ତରେ ମଥା ନତ କରି ଶରଣ ଭିକ୍ଷା କଲା । ମହାରାଜା ପରୀକ୍ଷିତ ଅତ୍ୟନ୍ତ ଦୟାଳୁ ଓ କ୍ଷମାଶୀଳ ଥିଲେ । ତେଣୁ ଶରଣଭିକ୍ଷା କରୁଥିବା କଳିକୁ ହତ୍ୟା କରିବାକୁ ସମୀଚୀନ ମନେ କଲେ ନାହିଁ ।

ମହାରାଜ ପରୀକ୍ଷିତ କହିଲେ, 'ତୁମେ ଶରଣଭିକ୍ଷା କରୁଛ, ତେଣୁ ତୁମକୁ ମୁଁ ହତ୍ୟା କରିବି ନାହିଁ; କିନ୍ତୁ ଏଠାରେ ଧର୍ମବିରୋଧୀ କାର୍ଯ୍ୟ-ମାନ ଆଚରଣ କରୁଥିବାରୁ ମୋ ରାଜ୍ୟରେ ତୁମର ସ୍ଥାନ ନାହିଁ । ମୋର ଏହି ବ୍ରହ୍ମାବର୍ତ୍ତ ରାଜ୍ୟ ଧର୍ମ ଓ ସତ୍ୟର ଦେଶ ଏବଂ ଏହି ରାଜ୍ୟ ଭଗବାନ-ଙ୍କର ପୁଣ୍ୟ ଆବାସସ୍ଥଳୀ । ଏଠାରେ ଅବସ୍ଥାନ କରିବାର ସୁଯୋଗ ପାଇଲେ ତୁମେ ଦେଶବାସୀଙ୍କୁ ସତ୍ୟ ଓ ଧର୍ମପଥରୁ ବିଚ୍ୟୁତ ଓ ଦୂଷିତ କରିବାର ସୁଯୋଗ ଲାଭ କରିବ । ତେଣୁ ତୁମେ ମୋର ଏହି ରାଜ୍ୟରେ ରହିପାରିବ ନାହିଁ ।'

କଳି ବିନୀତ ଭାବରେ ଅନୁରୋଧ ଜଣାଇ କହିଲା, "ହେ ଧର୍ମ-ପ୍ରାଣ ମହାରାଜ, ଆପଣଙ୍କର ରାଜ୍ୟ ସୁବିସ୍ତୃତ, ଚତୁର୍ଦ୍ଦିଗମୟ ଏବଂ ସର୍ବବ୍ୟାପୀ । ଆପଣଙ୍କର ରାଜ୍ୟ ତ୍ୟାଗ କଲେ ମୁଁ କେଉଁଠାରେ ରହିବି ବାସ କରିବି, ଭାବିପାରୁ ନାହିଁ । ସମଗ୍ର ପୃଥିବୀ ବର୍ତ୍ତମାନ ଆପଣଙ୍କର ରାଜ୍ୟ, ତେଣୁ ମୁଁ କେଉଁଠାରେ ବାସ କରିପାରିବି, ଆପଣ ତାହା ଦୟାକରି ନିର୍ଦ୍ଦେଶ କରନ୍ତୁ ।"

ମହାରାଜ ପରୀକ୍ଷିତ କହିଲେ, 'ବେଶ୍, ଯେଉଁ ସ୍ଥାନରେ ଦ୍ୟୁତ-କ୍ରୀଡ଼ା, ମଦ୍ୟପାନ, ପରସ୍ତ୍ରୀ-ସଙ୍ଗ, ହିଂସା ଏପରି ଚତୁର୍ବିଧ ପାପକାର୍ଯ୍ୟ ହେଉଥିବ, ତୁମେ ସେହିଠାରେହିଁ ଅବସ୍ଥାନ କରିବ; କିନ୍ତୁ ଅନ୍ୟତ୍ର ନୁହେଁ ।'

ଧର୍ମପ୍ରାଣ ମହାରାଜ ପରୀକ୍ଷିତଙ୍କ ରାଜ୍ୟରେ ଏପରି ପାପ କାର୍ଯ୍ୟ ହେଉଥିବାର ସ୍ଥାନ ଏକାନ୍ତ ବିରଳ ଥିଲା; ତେଣୁ ନିଜର ବାସସ୍ଥାନ ସମ୍ପର୍କରେ ଆଶଙ୍କା ପ୍ରକାଶ କରି ବାସୋପଯୋଗୀ ଅନ୍ୟ ସ୍ଥାନ ନିର୍ଦ୍ଦେଶ କରିବାକୁ କଳି ପୁନର୍ବାର ରାଜାଙ୍କୁ ଅନୁରୋଧ କରିବାରୁ ପରୀକ୍ଷିତ ଦୟାପରବଶ ହୋଇ କହିଲେ, "ଯେଉଁଠାରେ ସୁବର୍ଣ୍ଣ ଥିବ, ଯେଉଁଠାରେ ମିଥ୍ୟା, ଗର୍ବ, ଆସକ୍ତି, ହିଂସା ଏବଂ ଶତ୍ରୁତା ରହିଥିବ, ସେହିଠାରେ ତୁମେ ବାସ କର ।"

ମହାରାଜ ପରୀକ୍ଷିତଙ୍କର ସେହି ଆଦେଶମତେ ଅଧର୍ମର ହେତୁ କଳି ସେହିଦିନଠାରୁ ସେହି ସ୍ଥାନମାନଙ୍କରେ ବାସ କରିବାକୁ ଲାଗିଲା । କଲ୍ୟାଣକାମୀ ବ୍ୟକ୍ତିମାନେ ଏବଂ ରାଜ୍ୟର ପାଳନକର୍ତ୍ତା ରାଜାମାନେ କଳିକୁ ପ୍ରଦତ୍ତ ହୋଇଥିବା ଦ୍ରବ୍ୟ ଓ ଦୁର୍ଗୁଣରୁ ଯେପରି ଦୂରରେ ରହିବେ ବା ରହିବାକୁ ଚେଷ୍ଟା କରିବେ, ସେଥିପାଇଁ କଳିର ବାସସ୍ଥାନକୁ ଉପରୋକ୍ତ ସ୍ଥାନମାନଙ୍କରେ ପରୀକ୍ଷିତ ସୀମିତ କରିବାକୁ ଚାହିଁଲେ । ବୃଷଭରୂପୀ ଧର୍ମଙ୍କର ଭାଙ୍ଗି ଯାଇଥିବା ତିନିଗୋଟି ଗୋଡ଼କୁ ତପସ୍ୟା, ପବିତ୍ରତା ଓ ଦୟାଦି ଦ୍ୱାରା ପୁନର୍ବାର ସେ ସଂଯୁକ୍ତ କରିଦେଲେ ଏବଂ ଗାଭୀ ରୂପୀ ବସୁଧାଙ୍କୁ ଅଭୟ ପ୍ରଦାନ କରି ପ୍ରସନ୍ନ କରାଇଲେ ।

ଏହି ଘଟଣାର କିଛିକାଳ ପରେ, ଦିନେ ମହାରାଜ ପରୀକ୍ଷିତ ମୃଗୟା ଉଦ୍ଦେଶ୍ୟରେ ଅରଣ୍ୟରେ ବିଚରଣ କରୁଥିବା ସମୟରେ ଏକ ପଳାୟମାନ ଦ୍ରୁତଗାମୀ କୃଷ୍ଣସାର ମୃଗକୁ ଦେଖିବାକୁ ପାଇଲେ ଏବଂ ତା' ଉଦ୍ଦେଶ୍ୟରେ ଶର ନିକ୍ଷେପ କରୁ କରୁ ସେହି ମୃଗଟି ଦ୍ରୁତଗତିରେ ପରୀକ୍ଷିତଙ୍କ ଦୃଷ୍ଟି ସମ୍ମୁଖରୁ ଅଦୃଶ୍ୟ ହେବାରୁ, ସେ ମୃଗର ଅନୁଧାବନ କଲେ । ଅରଣ୍ୟର ଦୁର୍ଗମ ପଥରେ ବହୁ ସମୟ ଧରି ଅନୁସନ୍ଧାନ କଲେ ମଧ୍ୟ, ମହାରାଜ ପରୀକ୍ଷିତ ମୃଗଟିର କୌଣସି ସନ୍ଧାନ ପାଇ ପାରିଲେ ନାହିଁ; ବରଂ ଅନୁଧାବନଜନିତ ଶ୍ରମରେ ଅତ୍ୟନ୍ତ କ୍ଳାନ୍ତ, ଶ୍ରାନ୍ତ ଏବଂ

କ୍ଷୁଧାତୃଷାରେ ଅତ୍ୟଧିକ ପୀଡ଼ିତ ଓ ଅବସନ୍ନ ହୋଇପଡ଼ିଲେ । ନିଜର ପିପାସା ନିବୃତ୍ତି ନିମନ୍ତେ ଜଳାଶୟର ଅନ୍ୱେଷଣ କରୁ କରୁ ମହାରାଜ ପରୀକ୍ଷିତ ସେହି ଅରଣ୍ୟ ମଧ୍ୟରେ ଶମୀକ ନାମକ ଜନୈକ ଋଷିଙ୍କ ଆଶ୍ରମରେ ଯାଇ ପହଁଞ୍ଚିଲେ । ସେତେବେଳେ ଶମୀକ ଆଶ୍ରମରେ ଏକାକୀ ଉପସ୍ଥିତ ଥିଲେ ମଧ୍ୟ ତପସ୍ୟାରେ ମଗ୍ନ ଥିଲେ । ସେଥିଯୋଗୁ ରାଜାଙ୍କର ଆଗମନ ବିଷୟ ସେ ଆଦୌ ଜାଣି ପାରିଲେ ନାହିଁ; ତେଣୁ ରାଜାଙ୍କ ଉଦ୍ଦେଶ୍ୟରେ ଯଥୋଚିତ ସ୍ୱାଗତ ସମ୍ବର୍ଦ୍ଧନା କେହି ଜ୍ଞାପନ କଲେ ନାହିଁ । ଏକେ ତ ମହାରାଜ ପରୀକ୍ଷିତ କ୍ଷୁଧା ପିପାସାରେ ଅତ୍ୟନ୍ତ କାତର ହୋଇ ପଡ଼ିଥିଲେ, ଦ୍ୱିତୀୟରେ ଆଶ୍ରମରେ ତାଙ୍କପ୍ରତି ସ୍ୱାଗତ ସତ୍କାର ନ ହେବାରୁ ପରୀକ୍ଷିତ ନିଜକୁ ଉପରି ଅବଜ୍ଞାତ ଓ ଅପମାନିତ ମନେ କରି ଅସ୍ୱାଭାବିକ ଭାବରେ କ୍ରୋଧରେ ଜଳିଉଠିଲେ । ମହାରାଜ ପରୀକ୍ଷିତ ଅତ୍ୟଧିକ କ୍ଷୁଧା, ତୃଷା ଓ କ୍ଲାନ୍ତିରେ ହତଜ୍ଞାନ ହୋଇ ପଡ଼ିଥିଲେ; ତାଙ୍କ ମନରେ ଧାରଣା ହେଲା ଯେ, ତାଙ୍କୁ ଅପମାନିତ କରିବା ନିମନ୍ତେ ମହର୍ଷି ଜାଣିଶୁଣି ନୀରବତା ଅବଲମ୍ବନ କରି ତପସ୍ୟାର ଛଳନା କରୁଅଛନ୍ତି । ମହର୍ଷିଙ୍କ ବ୍ୟବହାରରେ ଅପମାନିତ ଓ ବିରକ୍ତ ହୋଇ ପରୀକ୍ଷିତ ଆଶ୍ରମରୁ ବାହୁଡ଼ିଗତ ହେବା ସମୟରେ ସମ୍ମୁଖରେ ଏକ ମୃତ ସର୍ପ ପଡ଼ିଥିବାର ଦେଖି ତାକୁ ନିଜ ଧନୁର ଅଗ୍ରଭାଗ ଦ୍ୱାରା ଉଠାଇ ଆଣି ତପସ୍ୟାର ଛଳନା କରୁଥିବା ମହର୍ଷି ଶମୀକଙ୍କ ଗଳାରେ ଲମ୍ବାଇ ଦେଇ ଚାଲି ଆସିଲେ । ଶମୀକ ସମାଧିସ୍ଥ ଅବସ୍ଥାରେ ଥିବାରୁ ମୃତ ସର୍ପ ବିଷୟ ମଧ୍ୟ କିଛି ଜାଣିପାରିଲେ ନାହିଁ ।

ମହର୍ଷି ଶମୀକଙ୍କର ଶୃଙ୍ଗୀ ନାମରେ ଏକ ପୁତ୍ର ଥିଲେ । ଶୃଙ୍ଗୀଙ୍କର ବୟସ ଅଳ୍ପ ହେଲେ କ'ଣ ହେବ ସେ ଥିଲେ ଯେପରି ବ୍ରହ୍ମଜ୍ଞ, ସେହିପରି ଥିଲେ ଅପୂର୍ବ ତେଜସ୍ୱୀ । ସାଙ୍ଗସାଥୀମାନଙ୍କ ସହ କ୍ରୀଡ଼ାରତ ଥିବା ସମୟରେ, ତାଙ୍କର ତପସ୍ୟାରତ ପିତାଙ୍କ ଗଳାରେ ମହାରାଜା ପରୀକ୍ଷିତ ମୃତସର୍ପ ଲମ୍ବାଇ ଦେଇ ପିତାଙ୍କ ପ୍ରତି ଏପରି ଅମର୍ଯ୍ୟାଦା ପ୍ରଦର୍ଶନ କରିଥିବା କଥା ଜାଣିବାକୁ ପାଇ ସେ କ୍ରୋଧରେ କମ୍ପିଉଠିଲେ । କ୍ରୋଧର ଆତିଶଯ୍ୟରେ ତାଙ୍କର ଚକ୍ଷୁ ରକ୍ତବର୍ଣ୍ଣ ଧାରଣ କଲା । ସେ ସଙ୍ଗେ ସଙ୍ଗେ କୈଶିକୀ ନଦୀର ଜଳରେ ଆଚମନ କରି ଉଚ୍ଚ ସ୍ୱରରେ କହିଲେ,

'ପ୍ରଜାମାନଙ୍କର ରାଜା ହିଁ ରକ୍ଷାକର୍ତ୍ତା । ରାଜାମାନଙ୍କ ନିକଟରେ ବ୍ରାହ୍ମଣ-ମାନେ ଦେବତା ସ୍ୱରୂପ ପୂଜ୍ୟ । ହାୟ, ହାୟ ବ୍ରାହ୍ମଣମାନଙ୍କ ପ୍ରତି ରାଜାର କି ଦୁର୍ବ୍ୟବହାର ! ଭଗବାନ କୃଷ୍ଣଙ୍କର ତିରୋଧାନ ପରେ ପରେ ରାଜାମାନେ ସତେ କି ଉଚ୍ଛୃଙ୍ଖଳ ହୋଇଗଲେ ! ଏହି ବିପଥଗାମୀ ରାଜାଙ୍କୁ ଆଜି ମୁଁ ଉପଯୁକ୍ତ ଶାସ୍ତି ଦେବି । ମୁଁ ଅଭିଶାପ ଦେଉଛି, ଯେଉଁ କୁଳାଙ୍ଗାର ମୋର ନିରପରାଧ ପିତାଙ୍କ ପ୍ରତି ଏପରି ଅମର୍ଯ୍ୟାଦା ପ୍ରଦର୍ଶନ କରିଅଛି, ଆଜିଠାରୁ ସାତ ଦିନ ମଧ୍ୟରେ ମହାସର୍ପ ତକ୍ଷକ ତାକୁ ଦଂଶନ କରିବ ।'

ଏହିପରି ଅଭିଶାପ ପ୍ରଦାନ କରି ଶୃଙ୍ଗୀ ନୀରବ ରହିଲେ । ତାଙ୍କର ଖେଳରେ ଆଉ ମନ ଲାଗିଲା ନାହିଁ; ତେଣୁ ଆଶ୍ରମକୁ ଫେରି ଆସିଲେ । ସେତେବେଳ ପର୍ଯ୍ୟନ୍ତ ମହର୍ଷି ଶମୀକ ତପସ୍ୟାରେ ବସିଥାନ୍ତି । ପିତାଙ୍କ ଗଳାରେ ମୃତସର୍ପ ସେତେବେଳ ପର୍ଯ୍ୟନ୍ତ ପଡ଼ିରହିଥିବା ଦେଖି ଶୃଙ୍ଗୀଙ୍କର ଧୈର୍ଯ୍ୟ ଚ୍ୟୁତି ଘଟିଲା । ସେ ଉଚ୍ଚ ସ୍ୱରରେ କ୍ରନ୍ଦନ କରିବାକୁ ଲାଗିଲେ ।

କିଛି ସମୟ ପରେ ମହର୍ଷି ଶମୀକ ତପସ୍ୟା ସମାପ୍ତ କରି ଆସନ ତ୍ୟାଗ କରିବା ପରେ ନିଜର ପୁତ୍ର ପ୍ରଦତ୍ତ ସେହି ଅଭିଶାପ ବିଷୟ ଅବଗତ ହୋଇ ତାଙ୍କର ବିରକ୍ତିର ସୀମା ରହିଲା ନାହିଁ । ସେ ପୁତ୍ରକୁ ସମ୍ବୋଧନ କରି କହିଲେ, "ବାବା, ମହାରାଜ ପରୀକ୍ଷିତଙ୍କ ପରି ଧର୍ମପ୍ରାଣ, ପ୍ରଜାବତ୍ସଳ ଏବଂ ପୁଣ୍ୟାତ୍ମା ରାଜା ଏକାନ୍ତ ବିରଳ । ଅତି ସାମାନ୍ୟ ଦୋଷରେ ତାଙ୍କ ପ୍ରତି ଏପରି କଠୋର ଅଭିଶାପ ପ୍ରଦାନ କରିବା ଆଦୌ ଉଚିତ ହୋଇ ନାହିଁ । ତଦ୍ଦ୍ୱାରା ତୁ ମହାପାପ ଅର୍ଜନ କରିଅଛୁ । ସାଧାରଣ ମନୁଷ୍ୟଙ୍କ ସହ ତୁ ରାଜାଙ୍କୁ ସମକକ୍ଷ କରିପାରିଲୁ କିପରି, ବୁଝିପାରୁ ନାହିଁ । ତୁ ଅପରିପକ୍ୱ ବାଳକ; ତେଣୁ ତୁ ଜାଣିପାରୁ ନାହୁଁ ଯେ, ପ୍ରଜାପାଳନ କରିବା ନିମନ୍ତେ ସ୍ୱୟଂ ଭଗବାନ ନରପତି ରୂପରେ ଆବିର୍ଭୂତ ହୋଇଥାନ୍ତି । ରାଜା ନ ଥିଲେ ରାଜ୍ୟ ଅରାଜକ ହୁଏ ଏବଂ ଅରାଜକ ରାଜ୍ୟ ଅଚିରେ ପାପରେ ପୂର୍ଣ୍ଣ ହୋଇ ଅବଶେଷରେ ସମସ୍ତଙ୍କ ସହିତ ବିନାଶପ୍ରାପ୍ତ ହୋଇଥାଏ । ପରୀକ୍ଷିତ ଜଣେ ସାଧାରଣ ରାଜା ନୁହନ୍ତି । ସେ ଧର୍ମାତ୍ମା, ଯଶସ୍ୱୀ, ଭଗବାନଙ୍କର ପରମଭକ୍ତ ଓ

ରାଜର୍ଷି ଅଶ୍ୱମେଧ ଆଦି ବିଭିନ୍ନ ଯଜ୍ଞ ଅନୁଷ୍ଠାନ କରି ସେ ଅଶେଷ ପୁଣ୍ୟର ଅଧିକାରୀ ହୋଇଅଛନ୍ତି । ସେ ନିର୍ଦ୍ଦୋଷ । ବିଶେଷ କରି କ୍ଷୁଧା ଓ ତୃଷାରେ ଅତ୍ୟଧିକ ପୀଡ଼ିତ ଏବଂ ପଥଶ୍ରାନ୍ତ ହୋଇ ଜଳ ଅନ୍ୱେଷଣରେ ଏଠାକୁ ସେ ଆସିଥିଲେ । ଏପରି ଅବସ୍ଥାରେ ସେ ଯଦି କିଛି ଭୁଲ କରିଥାନ୍ତି, ତାହା ନିଶ୍ଚୟ କ୍ଷମଣୀୟ; ସେଥିପାଇଁ ତାଙ୍କୁ ଏପରି ଅଭିଶାପଗ୍ରସ୍ତ କରିବା ଉଚିତ ହୋଇନାହିଁ । ବାବା, ତୁ ଆଜି କ'ଣ କଲୁ ! ହେ ଭଗବାନ୍, ଏହି ଅପରିପକ୍ୱ ବାଳକର ଏହି ଅପରିଣାମ-ଦର୍ଶୀ ଆଚରଣ ପାଇଁ ତାକୁ କ୍ଷମାକର, ପ୍ରଭୁ !! ଭଗବତ୍ ଭକ୍ତମାନଙ୍କୁ ଯଦି କେହି ତିରସ୍କାର କରେ କିମ୍ବା ଅଭିଶାପ ଦିଏ କିମ୍ବା ତାଙ୍କ ପ୍ରତି କେହି ଅମର୍ଯ୍ୟାଦା ପ୍ରଦର୍ଶନ କରେ, ତେବେ ସାମର୍ଥ୍ୟ ଥିଲେ ମଧ୍ୟ ଭଗବତ୍ ଭକ୍ତମାନେ ତା'ର କୌଣସି ପ୍ରତିବିଧାନ କରନ୍ତି ନାହିଁ । ସେଥିଯୋଗୁ ଉଦାରଚିତ୍ତ ମହାରାଜ ପରୀକ୍ଷିତ ମୋର ଏହି ଅପରିଣାମ-ଦର୍ଶୀ ପୁତ୍ରକୁ ହୁଏତ ପ୍ରତିଅଭିଶାପ ଦେବେ ନାହିଁ; କିନ୍ତୁ ଏହି ନିଷ୍ପାପ ବାଳକ ପ୍ରଦତ୍ତ ଏହି ଦାରୁଣ ଅଭିଶାପର ପ୍ରତିବିଧାନ କିପରି ସମ୍ଭବ, ତାହା ତ ମୁଁ ଦେଖିପାରୁ ନାହିଁ । ତେବେ ନିଷ୍ପାପ ରାଜାଙ୍କର ପ୍ରାଣରକ୍ଷା ନିମନ୍ତେ କ'ଣ କରାଯାଇ ପାରିବ !!!'

ମହର୍ଷି ଶମୀକଙ୍କର ଆଚରଣ ଅତ୍ୟନ୍ତ ଆଦର୍ଶ ସ୍ଥାନୀୟ ଥିଲା । ପୁତ୍ରର କାର୍ଯ୍ୟରେ ସେ ଅତ୍ୟନ୍ତ ଚିନ୍ତିତ ଓ ମର୍ମାହତ ହେଲେ; କିନ୍ତୁ ତାଙ୍କ ପ୍ରତି ଯେ ପରୀକ୍ଷିତ ଅଵିଚାର କରିଥିଲେ ସେ ସମ୍ପର୍କରେ ସେ କୌଣସି ଦୁଃଖ କଲେ ନାହିଁ କି କୌଣସି ମନ୍ଦଚିନ୍ତା ମନକୁ ଆଣିଲେ ନାହିଁ । ବରଂ ମହାରାଜ ପରୀକ୍ଷିତଙ୍କର କଲ୍ୟାଣ କିପରି ସାଧିତ ହେବ ସେହି କଥା ସେ ଚିନ୍ତା କରିବାକୁ ଲାଗିଲେ । ପରେ ମହାରାଜ ପରୀକ୍ଷିତଙ୍କୁ ଅନ୍ତତଃପକ୍ଷେ ପୁତ୍ର ପ୍ରଦତ୍ତ ସେହି ଦାରୁଣ ଅଭିଶାପ ସମ୍ପର୍କରେ ଅବଗତ କରାଇ ଦେବାକୁ ଶମୀକ ଉପଯୁକ୍ତ ମନେ କଲେ ।

ମହାରାଜ ପରୀକ୍ଷିତ ମହର୍ଷି ଶମୀକଙ୍କ ଆଶ୍ରମରୁ ଫେରିବା ପରେ ପରେ ରାଜନଗରକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ରାଜପୁରୀକୁ ସେ ଫେରି-ଆସିଥିଲେ ମଧ୍ୟ ତାଙ୍କୁ କିଛି ଭଲ ଲାଗିଲା ନାହିଁ । ନିରପରାଧ ତପସ୍ୟାରତ ମହର୍ଷିଙ୍କ ପ୍ରତି କ୍ରୋଧ ପରବଶ ହୋଇ ସେ ଯେଉଁ

ଅଭଦ୍ରୋଚିତ ବ୍ୟବହାର ପ୍ରଦର୍ଶନ କରି ଆସିଲେ, ସେଥିର ବିଷୟ ତାଙ୍କ ମନରେ ବାରମ୍ବାର ଉଦିତ ହେବାକୁ ଲାଗିଲା ଏବଂ ସେହି କଥା ଭାବି ଭାବି ସେ ନିଜ ଆଚରଣ ପାଇଁ ମନେ ମନେ ଅନୁତାପ କରିବାକୁ ଲାଗିଲେ । ରାଜା ହୋଇ ସାଧାରଣ ଦୁର୍ବୃତ୍ତଙ୍କ ପରି ଏପରି ଅନ୍ୟାୟାଚରଣ କରିବା ତାଙ୍କ ପକ୍ଷରେ ଘୋର ନିନ୍ଦାର ବିଷୟ ବୋଲି ଭାବି ତାଙ୍କର ଦୁଃଖ ଓ ଅନୁଶୋଚନାର ଅନ୍ତ ରହିଲା ନାହିଁ । ବ୍ରାହ୍ମଣମାନେ ସାକ୍ଷାତ ଦେବତା ସ୍ୱରୂପ । ବିଶେଷତଃ ଜଣେ ତପପ୍ରଭାବଶାଳୀ ବ୍ରାହ୍ମଣଙ୍କ ପ୍ରତି ସେ ଯେଉଁ ଅନ୍ୟାୟ ଓ ଅଶୋଭନୀୟ ଆଚରଣ ପ୍ରଦର୍ଶନ କଲେ, ତାର ପରିଣାମ ଯେ କି ଭୟାନକ ଓ ଗୁରୁତର ହୋଇପାରେ, ସେହି ଆଶଙ୍କାରେ ମହାରାଜ ପରୀକ୍ଷିତ ବିଶେଷ ଭାବରେ ଉଦ୍‌ବିଗ୍ନ ହୋଇ ପଡ଼ିଲେ । ନିଜପରି ଭବିଷ୍ୟତରେ ଏପରି ଆଚରଣର ପୁନରାବୃତ୍ତି କେବେ ତାଙ୍କ ଜୀବନରେ ନ ଘଟେ, ସେଥିପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା ଜଣାଇବା ସଙ୍ଗେ ସଙ୍ଗେ ମହର୍ଷି ଶମୀକଙ୍କ ପ୍ରତି କରିଥିବା ଦୁର୍ବ୍ୟବହାରର ଉପଯୁକ୍ତ ଶାସ୍ତି ସେ ଲଭ କଲେ ଯାଇ ତଦ୍ଦ୍ୱାରା ତାଙ୍କର ସମୁଚିତ ପ୍ରାୟଶ୍ଚିତ୍ତ ହେବ ବୋଲି ସେ ଚିନ୍ତା କଲେ ।

ମହାରାଜ ପରୀକ୍ଷିତ ଏହିପରି ଭାବରେ ଚିନ୍ତିତ ଥିବା ସମୟରେ ମହର୍ଷି ଶମୀକଙ୍କ ଦ୍ୱାରା ପ୍ରେରିତ ହୋଇଥିବା ଏକ ବାର୍ତ୍ତାବହ ପରୀକ୍ଷିତଙ୍କ ସହ ସାକ୍ଷାତ କରି ଋଷିପୁତ୍ରଙ୍କ ଦ୍ୱାରା ସେ କିପରି ଦାରୁଣ ଅଭିଶାପରେ ଅଭିଶପ୍ତ ହୋଇଅଛନ୍ତି, ତାହା ତାଙ୍କୁ ଜଣାଇଲେ । ବାର୍ତ୍ତାବହଠାରୁ ସେହି ଭୟାନକ ଦୁଃସମ୍ବାଦ ପାଇ ମଧ୍ୟ ମହାରାଜ ପରୀକ୍ଷିତ ସାମାନ୍ୟ ବିଚଳିତ ହେଲେ ନାହିଁ; ବରଂ ତାଙ୍କର ସେହି ଅପରିଣାମଦର୍ଶୀ ଅଶୋଭନୀୟ ଆଚରଣ ପାଇଁ ତାଙ୍କ ପ୍ରତି ସମୁଚିତ ଶାସ୍ତି ବିଧାନ ହୋଇଅଛି ବୋଲି ବିବେଚନା କରି ସେ ଆନନ୍ଦିତ ହେଲେ ।

ଅଭିଶାପ ପ୍ରଦାନ ଦିନଠାରୁ ସପ୍ତମ ଦିବସରେ ତାଙ୍କର ମୃତ୍ୟୁ ହେବ ବୋଲି ଜାଣିବା ମାତ୍ରେ ମହାରାଜ ପରୀକ୍ଷିତଙ୍କ ମନରୁ ପାର୍ଥିବ ଭୋଗ ସମ୍ବନ୍ଧୀୟ ସମସ୍ତ କାମନା ଓ ବାସନା ଆପଣାଛାଏଁ ଲୋପ

ଯାଇଗଲା ଏବଂ ତାହା ବଦଳରେ ତାଙ୍କର ମନରେ ଅପୂର୍ବ ବୈରାଗ୍ୟ ଭାବ ଜାତ ହେଲା । ଅଭିଶାପଗ୍ରସ୍ତ ହୋଇଥିବାରୁ ନିଜକୁ ରାଜସିଂହାସନ ପାଇଁ ଅନୁପଯୁକ୍ତ ବୋଲି ପରୀକ୍ଷିତ ମନେ କଲେ । ଉପବାସ ବ୍ରତ ଆଚରଣ କରି ପବିତ୍ର ଗଙ୍ଗାନଦୀ କୂଳରେ ଉପବେଶନ କରି ଏକାଗ୍ର ଚିତ୍ତରେ ଭଗବାନ କୃଷ୍ଣଙ୍କର ପଦାରବିନ୍ଦକୁ ଧ୍ୟାନ କରି ଜୀବନର ଅବଶିଷ୍ଟ ଦିନଗୁଡ଼ିକୁ ଅତିବାହିତ କରିବାକୁ ପରୀକ୍ଷିତ ସ୍ଥିର କଲେ ।

ଭବସଂସାରରୁ ମୁକ୍ତି ଲାଭ କରିବାକୁ କାମନା କରୁଥିବା ମୁମୁକ୍ଷୁ ବ୍ୟକ୍ତିଙ୍କ ପକ୍ଷରେ ବିଶେଷ କରି ଦେହ ଓ ମନକୁ ଶୁଦ୍ଧପୂତ କରିବା ଦିଗରେ ତୁଳସୀ ଦଳଯୁକ୍ତ-ହରି ପାଦପଦ୍ମ-ବିନିର୍ଗତ ପବିତ୍ର ଗଙ୍ଗାନଦୀ ଓ ତହିଁର ପବିତ୍ର ତଟଦେଶ ଯେ ଉତ୍କୃଷ୍ଟ ସ୍ଥାନ, ଏଥିରେ ସନ୍ଦେହ ନାହିଁ । ନିଜର ପୁତ୍ର ଜନମେଜୟଙ୍କ ହସ୍ତରେ ରାଜ୍ୟ ଭାର ଦେଇ, ରାଜ୍ୟ ଓ ରାଜସିଂହାସନରୁ ନିଜର ସମସ୍ତ ସମ୍ପର୍କ ଛିନ୍ନ କରି ସେହି ପରମ ପବିତ୍ର ଗଙ୍ଗା ନଦୀର ଦକ୍ଷିଣ କୂଳରେ ମହାରାଜ ପରୀକ୍ଷିତ ଉତ୍ତର ଦିଗକୁ ମୁଖକରି କୁଶାସନ ଉପରେ ଉପବେଶନ କରି ଉପବାସ ବ୍ରତ-ପାଳନ ଆରମ୍ଭ କଲେ ଏବଂ ପରମ ଭକ୍ତିର ସହିତ ଭଗବାନ କୃଷ୍ଣଙ୍କୁ ମନେ ମନେ ଧ୍ୟାନ କରିବାକୁ ଲାଗିଲେ ।

# ଶୁକଦେବଙ୍କୁ ପରୀକ୍ଷିତଙ୍କର ପ୍ରଶ୍ନ

ମହାରାଜ ପରୀକ୍ଷିତଙ୍କ ପରି ପରମ ଧର୍ମପ୍ରାଣ ଓ ପ୍ରଜାନୁରକ୍ତ ମହାରାଜ ବ୍ରହ୍ମଶାପରେ ଅଭିଶପ୍ତ ହୋଇଅଛନ୍ତି ଏବଂ ସେହି ବ୍ରହ୍ମଶାପ ଫଳରେ ମାତ୍ର ସାତଦିନ ମଧ୍ୟରେ ତାଙ୍କୁ ସର୍ପାଘାତରେ ମୃତ୍ୟୁ ବରଣ କରିବାକୁ ପଡ଼ିବ, ଏହି ଦାରୁଣ ଦୁଃସମ୍ବାଦ ମୁହୂର୍ତ୍ତକ ମଧ୍ୟରେ ଚତୁର୍ଦ୍ଦିଗରେ ଅଦ୍ଭୁତ ବେଗରେ ଖେଳିଗଲା । ସେହି ଦୁର୍ଭାଗ୍ୟଜନକ ସମ୍ବାଦ ସମସ୍ତଙ୍କୁ ସ୍ତମ୍ଭୀଭୂତ କରିଦେଲା । ମହାରାଜ ପରୀକ୍ଷିତଙ୍କର ବିଭିନ୍ନ ଐଶ୍ୱରିକ ସଦ୍‌ଗୁଣର ପରିପ୍ରେକ୍ଷିରେ ସେହି ଆକସ୍ମିକ ଅଭିଶାପ ବୃତ୍ତାନ୍ତ କପରି ଅସଙ୍ଗତ ଜଣାପଡ଼ୁଥିଲା । ପରୀକ୍ଷିତଙ୍କ ସମ୍ପର୍କରେ ସେହି ବ୍ରହ୍ମ ଅଭିଶାପସମ୍ବଳିତ ଦାରୁଣ ଦୁଃସମ୍ବାଦ ଶୁଣିବା ମାତ୍ରେ ବିଭିନ୍ନ ସ୍ଥାନରୁ ମହର୍ଷି, ଦେବର୍ଷି, ରାଜର୍ଷି ଏବଂ ବ୍ରାହ୍ମଣ ତଥା ଅନ୍ୟମାନେ ଅତ୍ୟନ୍ତ ସହାନୁଭୂତିଶୀଳ ହୋଇ ପରୀକ୍ଷିତଙ୍କୁ ଦର୍ଶନ କରିବା ନିମନ୍ତେ ଆଗମନ କରିବାକୁ ଲାଗିଲେ । ଅତି ଅଳ୍ପ ସମୟ ମଧ୍ୟରେ ମହାପ୍ରଭାବଶାଳୀ ଭଗବତ୍‌ପ୍ରାଣ ମହତ୍ ପୁରୁଷମାନଙ୍କର ଅପୂର୍ବ ସମାବେଶରେ ପରୀକ୍ଷିତ ଅବସ୍ଥାନ କରୁଥିବା ସ୍ଥାନଟି ଏକ ପରମପବିତ୍ର ତୀର୍ଥ-କ୍ଷେତ୍ରରେ ପରିଣତ ହୋଇଗଲା । ପରୀକ୍ଷିତଙ୍କୁ ଦର୍ଶନ କରିବା ନିମନ୍ତେ ଆସିଥିବା ଆଗନ୍ତୁକମାନଙ୍କ ମଧ୍ୟରେ ଥିଲେ ଅତ୍ରି, ବଶିଷ୍ଠ, ଚ୍ୟବନ, ଶରଦ୍ୱାନ, ଅରିଷ୍ଟନେମି, ଭୃଗୁ, ଅଙ୍ଗିରା, ପରାଶର, ବିଶ୍ୱାମିତ୍ର, ପରଶୁରାମ, ଦେବଳ, ଭରଦ୍ୱାଜ, ଗୌତମ, ମୈତ୍ରେୟ, ଅଗସ୍ତ୍ୟ, ଦ୍ୱୈପାୟନ ଏବଂ ନାରଦ ପ୍ରମୁଖ ମହର୍ଷିଗଣ । ସେହି ବିରଳ ବ୍ୟକ୍ତିତ୍ୱସମ୍ପନ୍ନ ଅତିଥିମାନଙ୍କୁ ଦର୍ଶନକରି ପରୀକ୍ଷିତ ପ୍ରସନ୍ନଚିତ୍ତରେ ପରମ ବିନୟ ସହକାରେ ନିଜର ମସ୍ତକ ଦ୍ୱାରା ଅଭୂମି ପ୍ରଣାମ କରି ସେମାନଙ୍କୁ ଯଥୋଚିତ ପୂଜାର୍ଘ୍ୟ ଅର୍ପଣ କରି ସ୍ୱାଗତ ସତ୍କାର ଜ୍ଞାପନ କଲେ । ଆଗନ୍ତୁକ

ଋଷିମାନେ ସୁଖରେ ଅବସ୍ଥାନ କଲା ପରେ ନିଜର ଆଚରିତ ଉପବାସ ବ୍ରତ ଆଦି ସେହି ପରିସ୍ଥିତିରେ ତାଙ୍କ ମତରେ କେତେଦୂର କରଣୀୟ, ତାହା ଜାଣିବା ସଙ୍ଗେ ସଙ୍ଗେ ତାଙ୍କ ପକ୍ଷରେ ଅନ୍ୟ କେଉଁ କାର୍ଯ୍ୟ କରିବା ବିଶେଷ କଲ୍ୟାଣପ୍ରଦ ହେବ ତାହା ଜାଣିବାକୁ ଋଷିମାନଙ୍କ ନିକଟରେ ପରୀକ୍ଷିତ ନିଜର ଇଚ୍ଛା ପ୍ରକାଶ କରିଥିଲେ । ପରୀକ୍ଷିତଙ୍କର ଆଚରିତ କାର୍ଯ୍ୟ ଯେ ସେହି ପରିସ୍ଥିତିରେ ଏକାନ୍ତ କରଣୀୟ; ତାହା ଋଷିମାନେ ପ୍ରକାଶ କରିଥିଲେ ।

ଆଗନ୍ତୁକମାନଙ୍କୁ ନିଜର ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଇ ପରୀକ୍ଷିତ କହିଲେ, "ମୋର ଆଜ ପରମ ସୌଭାଗ୍ୟ ଯେ ଆପଣମାନଙ୍କୁ ଦର୍ଶନ କରିବାର ବିରଳ ସୁଯୋଗ ମୁଁ ଲାଭ କରିଅଛି ଏବଂ ମୋର ଏହି ଆଚରିତ କାର୍ଯ୍ୟ ଆପଣମାନଙ୍କର ଅନୁମୋଦନ ଲାଭର ଯୋଗ୍ୟ ହୋଇଅଛି । ଅତ୍ୟନ୍ତ ନିନ୍ଦିତ କାର୍ଯ୍ୟ କରିଥିବା ମୋ ପରି ଏକ ପରମ ହତଭାଗ୍ୟର ଜୀବନରେ ଆଜି ଏହି ବ୍ରହ୍ମଅଭିଶାପ ଭଗବାନଙ୍କର ଅପାର କରୁଣା ରୂପରେ ଉପସ୍ଥିତ ହୋଇଅଛି, କାରଣ ଏହି ବ୍ରହ୍ମଶାପ ହିଁ ମୋର ପାର୍ଥିବ-ଭୋଗଲାଳସାସର୍ବସ୍ୱ ମନକୁ ବିରଳ ବୈରାଗ୍ୟ ଭାବରେ ସିକ୍ତ କରି ଭଗବତ୍‌ଭାବୋନ୍ମୁଖୀ କରିବାରେ ସହାୟକ ହୋଇଛି । ଭଗବାନଙ୍କ ପାଦପଦ୍ମ ନିକଟରେ ମୋର ଏହି ଦେହ, ମନ ଓ ପ୍ରାଣକୁ ମୁଁ ସମର୍ପଣ କରି ଦେଇଅଛି ଏବଂ ସେଥିଯୋଗୁ ମହାସର୍ପ ତକ୍ଷକ ପାଇଁ ମୋ ମନରେ ସାମାନ୍ୟତମ ଭୟ ନାହିଁ । ଦେବୀ ଗଙ୍ଗାଙ୍କର ଏବଂ ଆପଣମାନଙ୍କର ଶରଣାପନ୍ନ ହୋଇ ବିନୀତ ଭାବରେ ମୁଁ ପ୍ରାର୍ଥନା କରୁଅଛି, ଆପଣମାନେ ମୋ ପ୍ରତି ସଦୟ ହୋଇ ମୋ ନିକଟରେ ପରମ ପବିତ୍ର ବିଷ୍ଣୁ-କଥା ଗାନ କରନ୍ତୁ । ଜନ୍ମଜନ୍ମାନ୍ତର ଧରି ମୋର ଯେପରି ଭଗବାନଙ୍କଠାରେ ଅଚଳା ଭକ୍ତି, ମହତ୍ ପୁରୁଷମାନଙ୍କ ସହିତ ଉତ୍ତମ ସମ୍ପର୍କ ଏବଂ ସମସ୍ତ ପ୍ରାଣୀଙ୍କ ସହିତ ମୈତ୍ରୀ-ସମ୍ପର୍କ ରହେ, ତାହା ହିଁ ଆଜ ମୁଁ ସର୍ବାନ୍ତଃକରଣରେ ପ୍ରାର୍ଥନା କରୁଅଛି । ଆପଣମାନେ ମୋର ପୂଜ୍ୟ ଓ ନମସ୍ୟ । ଆପଣମାନଙ୍କୁ ଏବଂ ବ୍ରାହ୍ମଣମାନଙ୍କୁ ବାରମ୍ବାର ମୋର ବିନମ୍ର ପ୍ରଣାମ ଜ୍ଞାପନ କରୁଅଛି ।"

ପ୍ରାଣୀମାନଙ୍କ ପ୍ରତି ସଦା ଦୟା ଓ ଅନୁଗ୍ରହ ପ୍ରକାଶ କରିବା ଯେଉଁମାନଙ୍କର ସ୍ୱାଭାବିକ ଧର୍ମ, ସେହି ସମବେତ ମହର୍ଷି ବ୍ରହ୍ମର୍ଷିଗଣ ପରୀକ୍ଷିତଙ୍କୁ ସାଧୁବାଦ ଜଣାଇ କହିଲେ, 'ହେ ରାଜର୍ଷିଶ୍ରେଷ୍ଠ, ଭଗବାନ କୃଷ୍ଣଙ୍କର ଏକାନ୍ତ ଅନୁଗତ ଯେଉଁ ପାଣ୍ଡବମାନେ ଭଗବାନଙ୍କ ସହିତ ମିଳିତ ହେବା ନିମନ୍ତେ ସୁଖ ଓ ଐଶ୍ୱର୍ଯ୍ୟମୟ ରାଜସମ୍ଭୋଗକୁ ତୁଚ୍ଛ କରି ରାଜ୍ୟ ତଥା ଇହଲୋକକୁ ଅକୁଣ୍ଠିତ ଚିତ୍ତରେ ତ୍ୟାଗ କରିଥିଲେ, ଆପଣ ସେହି ଗୌରବମୟ ବଂଶର ଉପଯୁକ୍ତ ଦାୟାଦ ଭାବରେ ଆଜି ରାଜପଦ ତଥା ପାର୍ଥିବ ପ୍ରଲୋଭନକୁ ପରିତ୍ୟାଗ କରି ଏପରି ଉପବାସ ବ୍ରତ ଅବଲମ୍ବନ କରି ନିଜର ଅବଶିଷ୍ଟ ଜୀବନ କାଳକୁ ଭଗବତ୍ ଚିନ୍ତାରେ ଅତିବାହିତ କରିବାକୁ ଯିବାଦ୍ୱାରା ଆପଣଙ୍କର ଏହି ବିରାଟ ବଂଶର ଚିରଚରିତ ମହିମାମୟ ପରମ୍ପରାକୁ ଉପଯୁକ୍ତ ସମ୍ମାନ ପ୍ରଦାନ କରିଅଛନ୍ତି । ଏହା ଅତ୍ୟନ୍ତ ପ୍ରଶଂସାର ବିଷୟ । ଆପଣଙ୍କ ପରି ଧର୍ମପ୍ରାଣ ବ୍ୟକ୍ତି ଏକାନ୍ତ ବିରଳ ଏବଂ ଆପଣ ମଧ୍ୟ ଭଗବଦ୍‌ପ୍ରେମୀମାନଙ୍କ ମଧ୍ୟରେ ଅତୁଳନୀୟ ସ୍ଥାନର ଅଧିକାରୀ । ଆପଣ ଅବଶିଷ୍ଟ ଜୀବନ କାଳକୁ ଅତିବାହିତ କରିବା ନିମନ୍ତେ ଯେଉଁ କାର୍ଯ୍ୟ କରିବାକୁ ସ୍ଥିର କରିଅଛନ୍ତି, ତାହା ସ୍ଥାନ-କାଳ ପାତ୍ର ଦୃଷ୍ଟିରୁ ଅତ୍ୟନ୍ତ ଉତ୍ତମ । ଆପଣଙ୍କ ସିଦ୍ଧାନ୍ତକୁ ଆମ୍ଭେମାନେ ସର୍ବାନ୍ତଃକରଣରେ ଅନୁମୋଦନ କରୁଅଛୁ । ଯେତେବେଳ ପର୍ଯ୍ୟନ୍ତ ବ୍ରହ୍ମଶାପର ନିର୍ଦ୍ଦିଷ୍ଟ ସମୟ ଅତିବାହିତ ନ ହୋଇଛି ଏବଂ ଯେତେବେଳ ପର୍ଯ୍ୟନ୍ତ ଆପଣ ଏହି ନଶ୍ୱରଶରୀର ପରିତ୍ୟାଗ କରି ରଜୋଗୁଣବର୍ଜିତ ଶୋକଶୂନ୍ୟ ପରମଧାମ ବୈକୁଣ୍ଠ ଉଦ୍ଦେଶ୍ୟରେ ଯାତ୍ରା କରି ନାହାନ୍ତି, ସେତେବେଳ ପର୍ଯ୍ୟନ୍ତ ଆପଣଙ୍କ ନିକଟରେ ଆମ୍ଭେମାନେ ଅବସ୍ଥାନ କରିବୁ । ଆପଣ ନିଶ୍ଚିନ୍ତ ରହନ୍ତୁ ।'

ସେହି ଯୋଗଜନ୍ମା ମହାପୁରୁଷମାନଙ୍କ ମୁଖରୁ ସେହି ସୁମଧୁର-ବାକ୍ୟ ଶ୍ରବଣ କରି ପରୀକ୍ଷିତ ପୁନର୍ବାର ସେମାନଙ୍କୁ ନତମସ୍ତକରେ ପ୍ରଣାମ ଜଣାଇ ନିବେଦନ କଲେ, "ହେ ମହତ୍ ପୁରୁଷଗଣ ! ସତ୍ୟ ଲୋକରେ ବେଦ ସମ୍ମାନିତ ହେଲା ପରି ଆପଣମାନେ ସର୍ବତ୍ର ଭ୍ରମଣ କରି ବିପୁଳ ସମ୍ମାନ ଲାଭ କରିଥାନ୍ତି । ଆପଣମାନେ ବହୁଶାସ୍ତ୍ରଜ୍ଞ ଏବଂ

ପରୋପକାର ହିଁ ଆପଣମାନଙ୍କ ଜୀବନର ପରମ ବ୍ରତ । ମୋ ପରି ଅକିଞ୍ଚନ ପ୍ରତି କରୁଣାପରବଶ ହୋଇ ଏବଂ ବହୁତ କଷ୍ଟ ସ୍ୱୀକାର କରି ଏଠାକୁ ଆସି ମୋତେ ଅନୁଗୃହୀତ କରିଅଛନ୍ତି । ଆପଣମାନେ ସର୍ବଜ୍ଞ । ମୋ ପରି ବ୍ୟକ୍ତିର ଆପଣମାନଙ୍କଠାରୁ ବହୁ କଥା ଜାଣିବାର ଓ ଶିଖିବାର ଅଛି । ସେଥିପାଇଁ ଆପଣମାନଙ୍କ ସମ୍ମୁଖରେ ଗୋଟିଏ ପ୍ରଶ୍ନ ଉତ୍‌ଥାପନ କରିବାକୁ ମୋର ଇଚ୍ଛା ହେଉଅଛି ଏବଂ ସେଥିପାଇଁ ଆପଣମାନଙ୍କର ସଦୟ ଅନୁମତି ଭିକ୍ଷା କରୁଅଛି । ମୋର ସେହି ପ୍ରଶ୍ନ ହେଉଛି; ମନୁଷ୍ୟ ପକ୍ଷରେ ସର୍ବଦା ଯାହା କରଣୀୟ, ବିଶେଷ କରି ଯେଉଁ ବ୍ୟକ୍ତିର ଜୀବନକାଳ ବା ଆୟୁସ ଅତ୍ୟନ୍ତ ଅଳ୍ପ, ସେହି ମରଣାପନ୍ନ ବ୍ୟକ୍ତି ପକ୍ଷରେ ଯାହା କର୍ତ୍ତବ୍ୟ ଏବଂ ଯହିଁରେ ପାପର ଲେଶମାତ୍ର ସମ୍ପର୍କ ନ ଥିବ, ତାହା କ'ଣ ? ଅନୁଗ୍ରହପୂର୍ବକ ଏହି ପ୍ରଶ୍ନର ସମୁଚିତ ଉତ୍ତର ପ୍ରଦାନ କରି ମୋ ମନର କୌତୂହଳ ଅପନୋଦନ କରନ୍ତୁ ।"

ପରୀକ୍ଷିତଙ୍କ ମୁଖରୁ କଥା ସରିନାହିଁ, ସେହି ସମୟରେ ଏକ ଅପୂର୍ବ ଅତିଥିଙ୍କର ଆଗମନ ସେଠାରେ ହେଲା ।

ସେହି ନବାଗତଙ୍କର ରୂପ ଓ ବେଶ ଯେପରି ଅଦ୍ଭୁତ ଅନୁରୂପ ଭାବରେ ଅତ୍ୟନ୍ତ ଆକର୍ଷଣୀୟ ଥିଲା । ଆଗନ୍ତୁକଙ୍କର ବୟସ ଷୋଳ ବର୍ଷରୁ ବେଶି ହେବ ନାହିଁ । ତାଙ୍କର ଶରୀରରେ ନ ଥିଲା କୌଣସି ପରିଧାନ, ସେ ସମ୍ପୂର୍ଣ୍ଣ ଉଲଗ୍ନ ଥିଲେ । ତାଙ୍କଠାରେ କୌଣସି ଆଶ୍ରମର ଚିହ୍ନ ପରିଦୃଷ୍ଟ ହେଉ ନ ଥିଲା । ତାଙ୍କର ହସ୍ତ, ପଦ, ଉରୁ, ବାହୁ, ସ୍କନ୍ଧ, କପୋଳ ଏବଂ ବିଭିନ୍ନ ଅଙ୍ଗାବୟବ ଅତ୍ୟନ୍ତ ସୁଗଠିତ ଥିଲା । ତାଙ୍କର ଆୟତ ଚକ୍ଷୁ ଦୁଇଟି ଯେପରି ଥିଲା ସୁନ୍ଦର, ସେହିପରି ଥିଲା ଉଜ୍ଜ୍ୱଳ । ନିପୁଣ ଶିଳ୍ପୀ ନିର୍ମିତ ସୁଗଠିତ କର୍ଣ୍ଣଯୁଗଳ, ଉନ୍ନତ ନାସିକା, ତୂଳିତ ସୁଶ୍ରୀ ଭ୍ରୂଯୁଗଳ, ଶଙ୍ଖ ସଦୃଶ ତ୍ରିରେଖାମଣ୍ଡିତ ସୁନ୍ଦର କଣ୍ଠ, ଉନ୍ନତ ପ୍ରଶସ୍ତ ବକ୍ଷ, ସୁଗଠିତ ମାଂସଳସ୍କନ୍ଧ, ଜଳଭଉଁରୀ ସଦୃଶ ଆବର୍ତ୍ତ ନାଭି, ରେଖାଙ୍କିତ ଉଦର, ମସ୍ତକରେ ଇତସ୍ତତଃ ବିକ୍ଷିପ୍ତ କୁଞ୍ଚିତ କେଶରାଶି, ଆଜାନୁଲମ୍ବିତ ସୁଗଠିତ ପ୍ରଲମ୍ବ ବାହୁ, ଭଗବାନ ଶ୍ୟାମସୁନ୍ଦରଙ୍କ ପରି ଶ୍ୟାମଳ ଅଙ୍ଗକାନ୍ତି, ସଦାସ୍ମିତ

ହାସ୍ୟଯୁକ୍ତ ମୁଖମଣ୍ଡଳ, ସର୍ବୋପରି ନବଯୌବନର ସ୍ପର୍ଶ ତାଙ୍କର ସୁଗଠିତ ଶରୀରକୁ ଅତ୍ୟନ୍ତ ସୌନ୍ଦର୍ଯ୍ୟମଣ୍ଡିତ କରିଥିଲା । ଆଶ୍ଚର୍ଯ୍ୟର କଥା, ସେ ଆତ୍ମସ୍ୱରୂପ ଉପଲବ୍ଧି କରି ଚିରସନ୍ତୋଷରେ ଅବଧୂତ ଭାବରେ ସମଗ୍ର ପୃଥିବୀ ପର୍ଯ୍ୟଟନ କରୁଥିବାରୁ ଅଳ୍ପ ବୟସର କୋମଳ ମତି ବାଳକମାନେ ତାଙ୍କୁ ପାଗଳ ବୋଲି ଭାବି ଚତୁର୍ଦ୍ଦିଗରୁ ତାଙ୍କୁ ଘେରିଯାଇ ତାଙ୍କ ପ୍ରତି ଅଶୋଭନୀୟ ବ୍ୟବହାରମାନ ପ୍ରଦର୍ଶନ କରୁଥିଲାବେଳେ ନବ ଯୁବତୀମାନେ ତାଙ୍କର ରମଣୀଚିତ୍ତଜୟୀ ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇ ଓ ତାଙ୍କୁ ସାକ୍ଷାତ୍ କନ୍ଦର୍ପ ବୋଲି ଭ୍ରମ କରି ତାଙ୍କ ପଛେ ପଛେ ପାଗଳୀ ପରି ଅନୁଧାବନ କରୁଥିଲେ ।

ସେହି ପରମ ସୁନ୍ଦର, ପରମ ଯୋଗୀ ଏବଂ ପରମ ଜ୍ଞାନୀ ନବ ଯୁବକ ଥିଲେ ଯୋଗ୍ୟ ପିତା ବ୍ୟାସଦେବଙ୍କର ସୁଯୋଗ୍ୟ ପୁତ୍ର ।

ତାଙ୍କର ନାମ ଶୁକଦେବ ।

ଯଦୃଚ୍ଛାକ୍ରମେ ପୃଥିବୀ ପର୍ଯ୍ୟଟନ କରୁ କରୁ ଏକାନ୍ତ ଆକସ୍ମିକ ଭାବରେ ପରୀକ୍ଷିତ ଉପବେଶନ କରିଥିବା ସ୍ଥାନରେ ସେ ଆସି ଉପସ୍ଥିତ ହେଲେ ।

ତାଙ୍କର ତେଜ ଅତ୍ୟନ୍ତ ଗୁପ୍ତ ଥିଲେ ମଧ୍ୟ ଶୁକଦେବଙ୍କୁ ସେଠାରେ ଦେଖିବା ମାତ୍ରେ ସମବେତ ଅତିଥିମାନେ ନିଜ ନିଜର ଆସନରୁ ଉତ୍‌ଥିତ ହୋଇ ତାଙ୍କୁ ପ୍ରଣାମ ଓ ଅଭ୍ୟର୍ଥନା ଜଣାଇ ଅଭିନନ୍ଦିତ କଲେ । ଶୁକଦେବଙ୍କ ଚରଣ ପ୍ରାନ୍ତରେ ପରୀକ୍ଷିତ ନତ ମସ୍ତକରେ ପ୍ରଣିପାତ ହୋଇ ପାଦ୍ୟ, ଅର୍ଘ୍ୟ, ଆସନାଦି ଦ୍ୱାରା ତାଙ୍କୁ ଯଥାବିଧି ଅଭ୍ୟର୍ଥନା ଜଣାଇଲେ । ଶୁକଦେବ ପରମ ସନ୍ତୋଷରେ ପରୀକ୍ଷିତଙ୍କର ପ୍ରସାରିତ ଆସନରେ ଉପବେଶନ କଲାପରେ, ସମବେତ ବ୍ରହ୍ମର୍ଷି, ଦେବର୍ଷି, ରାଜର୍ଷି, ବ୍ରାହ୍ମଣ ତଥା ଅତିଥିମାନେ ଶୁକଦେବଙ୍କର ଚତୁର୍ଦ୍ଦିଗରେ ଉପବେଶନ କଲେ । ଅତିଥିମାନଙ୍କ ମଧ୍ୟରେ ଗ୍ରହପରିବୃତ ଚନ୍ଦ୍ରଙ୍କ ପରି ଶୁକଦେବ ଶୋଭା ପାଇବାକୁ ଲାଗିଲେ ।

ଶୁକଦେବ ଆସନ ଗ୍ରହଣ କରିବା ପରେ ତାଙ୍କୁ ପୁନର୍ବାର ନିଜର ସଭକ୍ତି ପ୍ରଣାମ ଜ୍ଞାପନ କରି ପରୀକ୍ଷିତ କୃତାଞ୍ଜଳି ପୁଟରେ ବିନୀତ

ଭାବରେ ଶୁକଦେବଙ୍କ ନିକଟରେ ନିବେଦନ କଲେ, "ହେ ମହାଯୋଗୀ, ଯାହାଙ୍କର ନାମ ମାତ୍ର ସ୍ମରଣ କରିବା ଦ୍ୱାରା ଗୃହାଦି ତତ୍‌କ୍ଷଣାତ୍ ପବିତ୍ର ହୋଇଥାଏ, ସେହି ବିରଳ ବ୍ୟକ୍ତିତ୍ୱସମ୍ପନ୍ନ ଆପଣଙ୍କୁ ଦର୍ଶନ ଓ ସେବା କରିବାର ସୁଯୋଗ ଲାଭ କରିବା ମୋ ପରି କ୍ଷତ୍ରିୟାଧମ ପକ୍ଷରେ ପରମ ସୌଭାଗ୍ୟର ବିଷୟ । ଅଯାଚିତ ଓ ଆକସ୍ମିକ ଭାବରେ ଆପଣ ଏଠାରେ ଉପସ୍ଥିତ ହୋଇ ଏବଂ ଆପଣଙ୍କୁ ଦର୍ଶନ, ସ୍ପର୍ଶ, ପଦଧୌତ ଆଦି ହାର ସତ୍କାର କରିବାର ବିରଳ ସୁଯୋଗ ପ୍ରଦାନ କରି ଆପଣ ମୋତେ ପବିତ୍ର ଓ ଅନୁଗୃହୀତ କରିଅଛନ୍ତି । ଭଗବାନ ବିଷ୍ଣୁଙ୍କ ହସ୍ତରୁ ଯେପରି ଦାନବମାନେ ନିସ୍ତାର ଲାଭ କରି ପାରନ୍ତି ନାହିଁ, ଅନୁରୂପଭାବରେ ଆପଣଙ୍କର ସାନ୍ନିଧ ଲାଭ ଫଳରେ ପ୍ରାଣୀମାନେ ସମସ୍ତ ପାପରୁ ମୁକ୍ତ ହୋଇଥାନ୍ତି । ପାଣ୍ଡବପ୍ରିୟ ଭଗବାନ କୃଷ୍ଣ ନିଶ୍ଚୟ ମୋ ପରି ନରାଧମ କ୍ଷତ୍ରିୟ ପ୍ରତି ତଥାପି ସୁପ୍ରସନ୍ନ ଅଛନ୍ତି । ତା' ନ ହୋଇଥିଲେ ଆପଣଙ୍କପରି ମହାପୁରୁଷ, ଯାହାଙ୍କର ବାସସ୍ଥାନ ଓ ପର୍ଯ୍ୟଟନର କୌଣସି ସ୍ଥିରତା ନ ଥାଏ, ତାଙ୍କୁ ମୋ ପରି ଜଣେ ଆସନ୍ନ-ମୃତ୍ୟୁ ବ୍ୟକ୍ତି ପକ୍ଷରେ ଦର୍ଶନ କରିବାର ସୌଭାଗ୍ୟ ଲାଭ କରିବା କେବେ ସମ୍ଭବ ହୋଇ ନଥାନ୍ତା । ଆପଣଙ୍କୁ ଗୋଟିଏ ସ୍ଥାନରେ ଦୀର୍ଘ ସମୟ ଧରି ଅବସ୍ଥାନ କରିବାର କେହି ଦେଖି ନାହାନ୍ତି; ଏପରି କି ଗୋଟିଏ ଗାଈଠାରୁ ଦୁଗ୍ଧ ଦୋହନ କରିବାକୁ ଯେତେ ସମୟ ଲାଗେ, ସେତେ ସମୟ ପାଇଁ ମଧ୍ୟ ଆପଣ ଗୋଟିଏ ସ୍ଥାନରେ ଅବସ୍ଥାନ କରନ୍ତି ନାହିଁ । ଯେତେବେଳେ ଅନୁଗ୍ରହ ପୂର୍ବକ ଏହି ମରଣୋନ୍ମୁଖୀ ହତଭାଗ୍ୟକୁ ଅଯାଚିତ ଭାବରେ ଦର୍ଶନ ଦେଇ ଅପୂର୍ବ ସୌଭାଗ୍ୟରେ ମଣ୍ଡିତ କରି-ଅଛନ୍ତି, ସେତେବେଳେ ଦୟାପୂର୍ବକ ଏଠାରେ କ୍ଷଣକାଳ ଅବସ୍ଥାନ କରନ୍ତୁ । ତାହା ହିଁ ହେବ ମୋ ପାଇଁ ଆଶୀର୍ବାଦ । ହେ ଜୀବନ୍ମୁକ୍ତ, ହେ ଯୋଗୀମାନଙ୍କର ପରମଗୁରୁ, ମୋ ମନରେ ଏକ ପ୍ରଶ୍ନ ସ୍ୱତଃ ଜାତ ହେଉଅଛି ଏବଂ ତା'ର ଯଥାର୍ଥ ଉତ୍ତର ଜାଣିବାକୁ ମୋ ମନରେ ପ୍ରବଳ ଉତ୍କଣ୍ଠା ସୃଷ୍ଟି ହୋଇଅଛି । ସେହି ପ୍ରଶ୍ନ ହେଲା, ମନୁଷ୍ୟ ପକ୍ଷରେ କ'ଣ ଶୁଣିବା ଓ କ'ଣ କରିବା ଉଚିତ ଏବଂ ଅନୁଚିତ; ବିଶେଷତଃ ଯାହାର ମୃତ୍ୟୁ ଅତ୍ୟନ୍ତ ଆସନ୍ନ ତା' ପକ୍ଷରେ ସର୍ବୋତ୍ତମ କର୍ତ୍ତବ୍ୟ କ'ଣ ? ଏହା ହିଁ ମୋର ଜିଜ୍ଞାସାର ବିଷୟ । ଏହି ଅଧମ ପ୍ରତି

ଦୟାପରବଶ ହୋଇ ଏହି ପ୍ରଶ୍ନର ସମୁଚିତ ଉତ୍ତର ପ୍ରଦାନ କରି ମୋ ମନରୁ ସନ୍ଦେହ ଦୂର କରନ୍ତୁ ।”

ବ୍ରହ୍ମଶାପରେ ଅଭିଶପ୍ତ ହୋଇ ମଧ୍ୟ ନିଜର ମନବଳ ହରାଇ ନ ଥିବା ସେହି ପରୀକ୍ଷିତଙ୍କର ବିନୟପୂର୍ଣ୍ଣ ସୁମଧୁର ବାକ୍ୟ ଶ୍ରବଣ କରି ସକଳତତ୍ତ୍ୱଦର୍ଶୀ ଶୁକଦେବ ଯେ ଅତ୍ୟନ୍ତ ପ୍ରୀତ ହୋଇଥିଲେ, ଏହା କହିବା ନିଷ୍ପ୍ରୟୋଜନ ।

## ଶୁକଦେବଙ୍କର ଉତ୍ତର

ପରିକ୍ଷିତଙ୍କର ଜିଜ୍ଞାସିତ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଶୁକଦେବ କହିଲେ, ''ମହାରାଜ, ଆପଣଙ୍କର ଏହି ପ୍ରଶ୍ନ ଯେପରି ଉତ୍ତମ ସେହିପରି ତାହା ସର୍ବଜନ କଲ୍ୟାଣପ୍ରଦ; କାରଣ ମନୁଷ୍ୟମାନଙ୍କ ପକ୍ଷରେ ଯାହାସବୁ କରଣୀୟ, ଶ୍ରବଣୀୟ ଏବଂ କଲ୍ୟାଣକର, ସେସବୁ ବିଷୟ ମଧ୍ୟରେ ଯାହା ସର୍ବୋତ୍ତମ ସେ ସମ୍ପର୍କରେ ଆପଣ ପ୍ରଶ୍ନ ଉତ୍ଥାପନ କରିଅଛନ୍ତି । ଆତ୍ମ-ତତ୍ତ୍ୱ ଅନଭିଜ୍ଞ ଯେଉଁ ବ୍ୟକ୍ତିମାନଙ୍କର ଦିବସ ସମୟ ଅର୍ଥ ଓ ଆହାର ସଂଗ୍ରହରେ, ରାତିକାଳ ନିଦ୍ରା ଓ ସମ୍ଭୋଗରେ ନିତ୍ୟ ବ୍ୟୟିତ ହୋଇଥାଏ, ଏବଂ ହିଂସା, ଦ୍ୱେଷ ଓ ପରଶ୍ରୀକାତରତା ମଧ୍ୟରେ ଯେଉଁ-ମାନଙ୍କର ଜୀବନ କାଳ ସାଧାରଣତଃ ନିଃଶେଷ ହୋଇଥାଏ, ସେହି ପାର୍ଥିବ ଲୋଭସର୍ବସ୍ୱ ବ୍ୟକ୍ତିମାନଙ୍କ ପକ୍ଷରେ ଶୁଣିବା ଓ କରିବା ନିମନ୍ତେ ଅଜସ୍ର ବିଷୟ ରହିଅଛି । ଭୋଗ-ପ୍ରଲୁବ୍ଧ ମନୁଷ୍ୟମାନେ ନିଜର ମରଣଶୀଳ ଶରୀର, ପତ୍ନୀ, ପୁତ୍ର ପରିବାର ବର୍ଗଙ୍କୁ ଏବଂ ଧନ ସମ୍ପତ୍ତିକୁ ଚିରସ୍ଥାୟୀ ବୋଲି ଭାବିଥାନ୍ତି ଏବଂ ସେସବୁର କ୍ଷଣସ୍ଥାୟିତ୍ୱ ଓ ଅନିତ୍ୟତାକୁ ଦେଖି ମଧ୍ୟ ଦେଖିପାରନ୍ତି ନାହିଁ ବରଂ ସେସବୁରେ ଅଧିକରୁ ଅଧିକ ମୁଗ୍ଧ ହୋଇ ରହିଥାନ୍ତି । ଏହିପରି କାର୍ଯ୍ୟ ପ୍ରକୃତପକ୍ଷେ କୌଣସି ମନୁଷ୍ୟ ପକ୍ଷରେ ଆଦର୍ଶସ୍ଥାନୀୟ କିମ୍ବା ଅନୁକରଣୀୟ ନୁହେଁ । ମନୁଷ୍ୟ-ମାନଙ୍କ ମଧ୍ୟରୁ ଯେଉଁମାନେ ପ୍ରକୃତରେ ତତ୍ତ୍ୱଦର୍ଶୀ ଓ ଯେଉଁମାନେ ମୋକ୍ଷଲାଭ କରିବାକୁ ଅଭିଳାଷୀ, ସେମାନଙ୍କ ପକ୍ଷରେ ସର୍ବାତ୍ମା, ପରମେଶ୍ୱର ଭଗବାନ ହରିଙ୍କର ଅମୃତ ଲୀଳା ଶ୍ରବଣ, କୀର୍ତ୍ତନ ଓ ସ୍ମରଣ କରିବା ପରମ କର୍ତ୍ତବ୍ୟ । ମନୁଷ୍ୟ ନିଜର ବିଭିନ୍ନ କାର୍ଯ୍ୟ କଲାବେଳେ, ଜ୍ଞାନ ଯୋଗ, କର୍ମଯୋଗ ଏବଂ ସ୍ୱଧର୍ମ ରକ୍ଷା ମାଧ୍ୟମରେ ଭଗବାନଙ୍କ-ଠାରେ ନିଜର ଅଟଳ ବିଶ୍ୱାସ ସ୍ଥାପନ କରିବା ଏବଂ ଅନ୍ତିମକାଳରେ ଭଗବାନଙ୍କୁ ସର୍ବାନ୍ତଃକରଣରେ ସ୍ମରଣ କରିବା ପ୍ରତ୍ୟେକ ମନୁଷ୍ୟର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ । ସେଥିପାଇଁ ମୁନିଋଷିମାନେ ନିର୍ଗୁଣବ୍ରହ୍ମର ଉପାସକ

ହୋଇ ମଧ୍ୟ ସମସ୍ତ ପ୍ରକାରର ବିଧିନିଷେଧକୁ ଲଙ୍ଘନ କରି ଭଗବାନଙ୍କର ବିଭିନ୍ନ ଲୀଳା ଓ ଗୁଣ-କୀର୍ତ୍ତନ କରି ପରମାନନ୍ଦ ଲାଭ କରିଥାନ୍ତି । ମୁଁ ନିଜେ ନିର୍ଗୁଣବ୍ରହ୍ମର ଏକାନ୍ତ ଉପାସକ, ତଥାପି ଭଗବାନଙ୍କର ପବିତ୍ର ଲୀଳା ସମ୍ପର୍କରେ ମୋ ମନରେ ବିଶେଷ ପରିମାଣରେ ଆଗ୍ରହ ରହିଅଛି; ସେଥିପାଇଁ ମୋର ପୂଜ୍ୟ ପିତୃଦେବ ବ୍ୟାସଦେବଙ୍କ ନିକଟରୁ ତାଙ୍କ ରଚିତ 'ଭାଗବତ' ପୁରାଣ ଅଧ୍ୟୟନ କରିଅଛି । ଭଗବାନଙ୍କର ଅପାର କରୁଣା ଆପଣଙ୍କ ଉପରେ ପ୍ରବର୍ଷିତ ହୋଇଅଛି; ଆପଣ ତେଣୁ ଅତ୍ୟନ୍ତ ଭାଗ୍ୟବାନ । ମୁଁ ଆପଣଙ୍କୁ ଭଗବାନଙ୍କର ପରମ ପବିତ୍ର ଲୀଳା ସମ୍ବଳିତ ସେହି 'ଭାଗବତ' ପୁରାଣ ଶୁଣାଇବି । ଏହି ପବିତ୍ର ଗ୍ରନ୍ଥକଥିତ ବିଷୟ ସମ୍ପର୍କରେ ଆପଣଙ୍କ ମନରେ ଅକୃତ୍ରିମ ଶ୍ରଦ୍ଧା ଜାତ ହୋଇପାରିଲେ, ଭଗବାନଙ୍କ ସମ୍ପର୍କରେ ଆପଣଙ୍କ ମନରେ ଅଚଳା ଭକ୍ତି ଉଦ୍ରେକ ହେବ । ହରି ହିଁ ସର୍ବନିୟନ୍ତା । ହରି-ନାମ କୀର୍ତ୍ତନରେ ହିଁ ସଂସାରର ସର୍ବଶ୍ରେଷ୍ଠ ପୁଣ୍ୟ ସୁଖ ଶାନ୍ତି ନିହିତ । ସେଥିପାଇଁ ହରି-ନାମ କୀର୍ତ୍ତନ ପାଇଁ ଦେଶ-କାଳ-ପାତ୍ର ସମ୍ପର୍କରେ କୌଣସି ବାଛ ବିଚାର କରାଯାଏ ନାହିଁ । ମହାରାଜ, ବିଷୟ ଭୋଗ ମଧ୍ୟରେ ଯେଉଁମାନଙ୍କର ସମସ୍ତ ଜୀବନ-କାଳ ବ୍ୟୟିତ ହୋଇଥାଏ, ସେମାନଙ୍କର ଜୀବନ ଯେତେ ଦୀର୍ଘ ହେଉନା କାହିଁକି, ସେପରି ଜୀବନର କୌଣସି ମୂଲ୍ୟ ନାହିଁ । ସେପରି ଜୀବନ ସମ୍ପୂର୍ଣ୍ଣ ନିରର୍ଥକ; ବରଂ କୌଣସି ସମୟରେ କୌଣସି ବ୍ୟକ୍ତିର ଯଦି ମନେହୁଏ ଯେ, ଅଯଥାରେ ନିଜର ଜୀବନ ନଷ୍ଟ ହେଉଅଛି, ସମୟର ସଦୁପଯୋଗ କରିବା ନିମନ୍ତେ ନିଜର କର୍ତ୍ତବ୍ୟ ସମ୍ପାଦନ କରିବା ଉଚିତ ଏବଂ ସେହି ସମୟରୁ ନିଜର କର୍ତ୍ତବ୍ୟ ସମ୍ପାଦନ କରିବା ନିମନ୍ତେ ସେ ସଚେଷ୍ଟ ହୁଏ, ତେବେ ସେହି ମୁହୂର୍ତ୍ତରୁ ତାର ଜୀବନ ଧାରଣ ବିଶେଷ କଲ୍ୟାଣପ୍ରଦ ହୋଇଥାଏ । ମନୁଷ୍ୟ ପକ୍ଷରେ ଜୀବନକାଳର ଦୀର୍ଘତା ଆଦୌ ବଡ଼ କଥା ନୁହେଁ; ବରଂ ଯଦି ଜୀବନ ସ୍ୱଳ୍ପକାଳବିଶିଷ୍ଟ ହୋଇ ମଧ୍ୟ କର୍ତ୍ତବ୍ୟମୁଖର ହୋଇଥାଏ, ତେବେ ତାହା ମନୁଷ୍ୟକୁ ଅପୂର୍ବ ଗୌରବର ଅଧିକାରୀ କରି ଧନ୍ୟ କରିଥାଏ । ପୂର୍ବେ ଖଟ୍ୱାଙ୍ଗ-ନାମକ ଜନୈକ ରାଜର୍ଷି ଦେବତାମାନଙ୍କ-ଠାରୁ ନିଜର ମୃତ୍ୟୁ ଅତି ଆସନ୍ନ ବୋଲି ଜାଣିବାକୁ ପାଇ ପରି ମୁହୂର୍ତ୍ତରେ ସମସ୍ତ ବିଷୟ କାମନା ତ୍ୟାଗ କରି ଶରଣାଗତବତ୍ସଳ

ଭଗବାନଙ୍କ ଚରଣାରବିନ୍ଦରେ ସର୍ବାନ୍ତଃକରଣରେ ଓ ପ୍ରସନ୍ନ ଚିତ୍ତରେ ଆତ୍ମ ସମର୍ପଣ କରିଥିଲେ । ତେଣୁ ଆପଣଙ୍କୁ ଜୀବନ ସାତ ଦିନ ମଧ୍ୟରେ ସମାପ୍ତ ହେବ ବୋଲି ଆଦୌ ଚିନ୍ତା କରନ୍ତୁ ନାହିଁ । ଏହି ସାତ ଦିନ ସମୟ କିଛି କମ ନୁହେଁ । ଯେଉଁ କାର୍ଯ୍ୟ ଆଚରଣ କଲେ ଆପଣ ଇହଲୋକ ଓ ପରଲୋକରେ କଲ୍ୟାଣ ଲାଭ କରିପାରିବେ, ସେପରି କାର୍ଯ୍ୟ ଅଚିରେ ସମ୍ପାଦନ କରନ୍ତୁ । ମହାରାଜ, ମନୁଷ୍ୟର ଅନ୍ତିମକାଳ ଉପସ୍ଥିତ ହେଲେ, ମନରେ ବୈରାଗ୍ୟଭାବ ଜାତ ହୁଏ ଏବଂ ମନରେ ବୈରାଗ୍ୟଭାବ ଜନ୍ମିଲେ ପାର୍ଥିବ ସୁଖ-ସମ୍ଭୋଗ ସମ୍ବନ୍ଧୀୟ ସମସ୍ତ ତୃଷ୍ଣା ଆପଣାଛାଏଁ ମନରୁ ଲୋପ ପାଇଯାଏ । ମନୁଷ୍ୟର ମନରେ ଭଗବତ୍ ବିଶ୍ୱାସ ତଥା ଭକ୍ତି ଉଦ୍ରେକ କରିବା ନିମନ୍ତେ ଏହି ବୈରାଗ୍ୟ ଭାବ ବିଶେଷ ଅନୁକୂଳ ପରିସ୍ଥିତି ସୃଷ୍ଟି କରିଥାଏ, ତାର ତୁଳନା ନାହିଁ । ମହାରାଜ, ଗୃହୀମାନଙ୍କ ପକ୍ଷରେ ଯାହା ଯାହା କରଣୀୟ, ତହିଁର ସୂଚନା ମୁଁ ଦେଉଅଛି । ସାଂସାରିକ ସୁଖ ସମ୍ଭୋଗପୂର୍ଣ୍ଣ ପରିବେଶ ତଥା ପରିସ୍ଥିତିରୁ ନିଜକୁ ମୁକ୍ତ କରି ଗୃହୀମାନେ ଜୀବନର ଉତ୍ତରକାଳରେ ବାନପ୍ରସ୍ଥବ୍ରତ ଆଚରଣ କରିବା ଉଚିତ । ସେମାନେ ତୀର୍ଥଜଳରେ ସ୍ନାନ କରି ଏବଂ ପବିତ୍ର ଅଥଚ ନିର୍ଜନ ସ୍ଥାନରେ ଉପବେଶନ କରି ପରମ ପବିତ୍ର "ଓଁ" କାର ମନ୍ତ୍ର ଅଭ୍ୟାସ କରି, ପ୍ରାଣାୟାମ କ୍ରିୟା ଦ୍ୱାରା ନିଜର ନିଃଶ୍ୱାସ କ୍ରିୟାକୁ ନିୟନ୍ତ୍ରିତ ଓ ବୁଦ୍ଧିଦ୍ୱାରା ମନକୁ ସଂଯତ କରିବା ସଙ୍ଗେ ସଙ୍ଗେ ଭଗବାନଙ୍କର ଅମିୟ ରୂପକୁ ମନ ମଧ୍ୟରେ ଏକାଗ୍ର ଚିତ୍ତରେ ଧ୍ୟାନ କରିବା ଉଚିତ । ରଜ ଓ ତମଗୁଣଦ୍ୱାରା ମନ ତଥାପି ବିଚଳିତ ହେଲେ ଧାରଣାରୂପ ପ୍ରକ୍ରିୟା ଦ୍ୱାରା ମନକୁ ଧୀରେ ଧୀରେ ସଂଯତ କରି ଭଗବାନଙ୍କର ଆନନ୍ଦମୟ ମୂର୍ତ୍ତିରେ ନିବଦ୍ଧ କରିବା କର୍ତ୍ତବ୍ୟ । ଏପରି କାର୍ଯ୍ୟ କରିବା ଦ୍ୱାରା ମନରେ ଭଗବାନଙ୍କ ସମ୍ପର୍କରେ ଅପୂର୍ବ ଭକ୍ତିଭାବ ଉଦ୍ରେକ ହୋଇଥାଏ । ଭଗବାନଙ୍କ କଥା ଚିନ୍ତା କରିବା ପାଇଁ ସ୍ଥାନ, କାଳ ଓ ପାତ୍ରର ବିଚାର କରିବା ଅନୁଚିତ । ସବୁ ସମୟରେ, ସବୁ ସ୍ଥାନରେ ଓ ସକଳ ଅବସ୍ଥାରେ ଯେକୌଣସି ବ୍ୟକ୍ତି ପକ୍ଷରେ ଭଗବାନଙ୍କର କଥା ଶ୍ରବଣ, କୀର୍ତ୍ତନ ଏବଂ ସ୍ମରଣ କରିବାରେ କୌଣସି ବାଧା ନାହିଁ । ତାହା ହିଁ କରିବା ସମସ୍ତଙ୍କ ପକ୍ଷରେ ବିଧେୟ । ଯେଉଁମାନେ ଭଗବାନଙ୍କର ଅମୃତମୟୀ କଥାକୁ

କର୍ଣ୍ଣରୂପକ ଅଞ୍ଜଳିଦ୍ୱାରା ପରମ ଆଗ୍ରହରେ ଆସ୍ୱାଦନ କରନ୍ତି, ତଦ୍ଦ୍ୱାରା ସେମାନେ ନିଜକୁ ପବିତ୍ର କରିବା ସଙ୍ଗେ ସଙ୍ଗେ ଭଗବାନଙ୍କର ପାଦପଦ୍ମ ନିକଟରେ ଧାଇଁ ଉପସ୍ଥିତ ହେବା ପାଇଁ ମଧ୍ୟ ନିଜକୁ ଯୋଗ୍ୟ କରିଥାନ୍ତି । ସେମାନେ ବାସ୍ତବିକ ଧନ୍ୟ ।

ଶୁକଦେବଙ୍କ ମୁଖରୁ ଏହି କଥା ଶୁଣିବାପରେ ପରୀକ୍ଷିତ ପଚାରିଲେ, "ସଦା-ଚଞ୍ଚଳ ମନକୁ ସ୍ଥିର ଏବଂ ଏକାଗ୍ର କରିବା ନିମନ୍ତେ ଯେଉଁ ଧାରଣାର କଥା ଆପଣ ଉଲ୍ଲେଖ କଲେ, ସେହି ଧାରଣାକୁ କିପରି ଓ କାହା ସମ୍ପର୍କରେ ଆଚରଣ କରିବାକୁ ହୁଏ, ତାହା ଦୟାକରି ପ୍ରକାଶ କରି ମୋର କୌତୂହଳ ଦୂର କରନ୍ତୁ ।"

ପରୀକ୍ଷିତଙ୍କ ଠାରେ ଅଧିକରୁ ଅଧିକ ଜାଣିବାର ଆଗ୍ରହ ପ୍ରକାଶ ପାଉଥିବା ଲକ୍ଷ୍ୟ କରି ଶୁକଦେବ ପ୍ରୀତ ହୋଇ କହିଲେ, "ଆସନ, ନିଃଶ୍ୱାସ, ବିଷୟାସକ୍ତି ଓ ଇନ୍ଦ୍ରିୟସମୂହଙ୍କୁ ଜୟକରି ବୁଦ୍ଧିଦ୍ୱାରା ମନ ମଧ୍ୟରେ ଭଗବାନ-ଙ୍କର ସ୍ଥୂଳ ରୂପକୁ ଚିନ୍ତା କରିବାକୁ ଧାରଣା କୁହାଯାଏ । ଭଗବାନଙ୍କର ବିରାଟ ଶରୀର ଅତ୍ୟନ୍ତ ସ୍ଥୂଳ ପଦାର୍ଥ ମଧ୍ୟରେ ସ୍ଥୂଳତମ ଏବଂ ତହିଁରେ ଭୂତ, ଭବିଷ୍ୟତ ଏବଂ ବର୍ତ୍ତମାନ ଆଦି ସମସ୍ତ ଜଗତ ଆତ୍ମପ୍ରକାଶ କରିଥାଏ । ପୃଥିବୀ, ଜଳ, ଅଗ୍ନି, ବାୟୁ, ଆକାଶ, ଅହଙ୍କାର ଏବଂ ମହତ୍ତତ୍ତ୍ୱ —ଏପରି ସପ୍ତାବରଣ ସଂଯୁକ୍ତ ବ୍ରହ୍ମାଣ୍ଡରେ ଯେ ସଦା ଓ ସର୍ବତ୍ର ବିରାଜିତ, ସେହି ଅଖିଳ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ଭଗବାନ ହିଁ ଧାରଣାର ବିଷୟ । ଭଗବାନ-ଙ୍କର ପାଦତଳକୁ ପାତାଳ, ଚରଣର ଅଗ୍ରଭାଗ ଓ ପଶ୍ଚାତ୍ ଭାଗକୁ ରସାତଳ, ଗୁଲ୍ଫ ଦୁଇଟିକୁ ମହାତଳ, ଜଙ୍ଘକୁ ତଳାତଳ, ଜାନୁ ଦୁଇ-ଟିକୁ ସୁତଳ, ଉରୁ ଦୁଇଟିର ନିମ୍ନ ଭାଗକୁ ବିତଳ ଓ ଊର୍ଦ୍ଧ୍ୱ ଭାଗକୁ ଅତଳ, କଟି ଦେଶକୁ ପୃଥିବୀ, ନାଭି ହ୍ରଦକୁ ଆକାଶ, ବକ୍ଷ ସ୍ଥଳକୁ ସ୍ୱର୍ଗ, ଗ୍ରୀବା-ଦେଶକୁ ମହାଲୋକ, ମୁଖକୁ ଜନଲୋକ, ଲଲାଟକୁ ତପ ଲୋକ, ମସ୍ତକକୁ ସତ୍ୟଲୋକ ବୋଲି କୁହାଯାଏ । ଭଗବାନଙ୍କର ଦେବତାମାନେ ହେଲେ ବାହୁ, ଦଶଦିଗ ହେଲେ କର୍ଣ୍ଣରନ୍ଧ୍ର, ଶବ୍ଦ ତାଙ୍କର ଶ୍ରବଣେନ୍ଦ୍ରିୟ, ଅଶ୍ୱିନୀକୁମାର ଦ୍ୱୟ ତାଙ୍କର ନାସାରନ୍ଧ୍ର, ଗନ୍ଧ ତାଙ୍କର ଘ୍ରାଣେନ୍ଦ୍ରିୟ ଏବଂ ପ୍ରଜ୍ୱଳିତ ଅଗ୍ନି ତାଙ୍କର ମୁଖ । ଆକାଶ ତାଙ୍କର ଚକ୍ଷୁଗୋଲକ, ସୂର୍ଯ୍ୟ ତାଙ୍କର ଚକ୍ଷୁ, ରାତ୍ରି ଓ ଦିବସ ତାଙ୍କର ନେତ୍ରଲୋମ, ସତ୍ୟଲୋକ ତାଙ୍କର

ଭ୍ରୂଭଙ୍ଗୀ, ଜଳ ତାଙ୍କର ତାଳୁ, ରସ ତାଙ୍କର ଜିହ୍ୱା, ବେଦ ତାଙ୍କର ବ୍ରହ୍ମରନ୍ଧ୍ର, ଯମ ତାଙ୍କର ଦନ୍ତ, ମାୟା ତାଙ୍କର ହାସ୍ୟ, ବିଶାଳ ସୃଷ୍ଟି ତାଙ୍କର କଟାକ୍ଷ, ଲଜ୍ଜା ତାଙ୍କର ଓଷ୍ଠ, ଲୋଭ ତାଙ୍କର ଅଧର, ଧର୍ମ ତାଙ୍କର ସ୍ତନ, ଅଧର୍ମ ତାଙ୍କର ପୃଷ୍ଠଦେଶ, ପ୍ରଜାପତି ତାଙ୍କର ଲିଙ୍ଗ, ମିତ୍ର ଓ ବରୁଣ ତାଙ୍କର ଅଣ୍ଡକୋଷ, ସମୁଦ୍ର ତାଙ୍କର ଉଦର, ପର୍ବତ ତାଙ୍କର ଅସ୍ଥି, ନଦୀ ତାଙ୍କର ନାଡ଼ି, ବୃକ୍ଷ ତାଙ୍କର ରୋମରାଜି, ବାୟୁ ତାଙ୍କର ନିଃଶ୍ୱାସ, କାଳ ତାଙ୍କର ଗତି ଏବଂ ସଂସାର ଚକ୍ର ତାଙ୍କର କ୍ରୀଡ଼ା, ମେଘ ତାଙ୍କର କେଶ, ସନ୍ଧ୍ୟା ତାଙ୍କର ବସ୍ତ୍ର, ପ୍ରକୃତି ତାଙ୍କର ହୃଦୟ, ଚନ୍ଦ୍ର ତାଙ୍କର ମନ । ମହତ୍ତତ୍ତ୍ୱ ତାଙ୍କର ଚିତ୍ତ, ଶିବ ତାଙ୍କର ଅହଙ୍କାର ତତ୍ତ୍ୱ, ଅଶ୍ୱ, ଉଷ୍ଟ୍ର ଓ ହସ୍ତୀ ଆଦି ତାଙ୍କର ନଖ, ମନୁ ତାଙ୍କର ମନୀଷା, ମନୁଷ୍ୟ ତାଙ୍କର ବାସସ୍ଥାନ, ଗନ୍ଧର୍ବ, ବିଦ୍ୟାଧର, ଚାରଣ ଓ ଅପ୍ସରାମାନେ ତାଙ୍କର ସ୍ୱର, ଅସୁରମାନେ ତାଙ୍କର ଶକ୍ତି, ବ୍ରାହ୍ମଣ ତାଙ୍କର ମୁଖ, କ୍ଷତ୍ରିୟ ତାଙ୍କର ଭୁଜ, ବୈଶ୍ୟ ତାଙ୍କର ଊରୁ, ଶୂଦ୍ର ତାଙ୍କର ଚରଣ, ଯଜ୍ଞ ତାଙ୍କର ଅଭିପ୍ରେତ କର୍ମ । ଭଗବାନଙ୍କ ଶରୀରର ଏହିପରି ଯେଉଁ ଅବୟବ କଥା ମୁଁ ବର୍ଣ୍ଣନା କଲି, ଯୋଗୀମାନେ ନିଜର ବୁଦ୍ଧିଦ୍ୱାରା ଭଗବାନଙ୍କର ସେହି ବିରାଟ ରୂପକୁ ଭକ୍ତିର ସହିତ ମନ ମଧ୍ୟରେ ଧାରଣା କରିବେ । ପୂର୍ବେ ଭଗବାନ ବ୍ରହ୍ମା ଏହି ଧାରଣା ପଦ୍ଧତି ଆଶ୍ରୟ କରି ଭଗବାନ ହରିଙ୍କୁ ପ୍ରସନ୍ନ କରିଥିଲେ ଏବଂ ସେଥିପାଇଁ ଅମୋଘଦର୍ଶୀ ହୋଇ ସମସ୍ତ ସୃଷ୍ଟିକୁ ପୁନର୍ବାର ଯଥାରୀତି ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ ।

ଭୋଗ-ବାସନାରେ ଜର୍ଜ୍ଜରିତ ହୋଇ ସୁଖପୂର୍ଣ୍ଣ ପରିବେଶ ମଧ୍ୟରେ କାଳାତିପାତ କଲେ ପ୍ରକୃତ ସୁଖ ମିଳେ ନାହିଁ । ଶରୀର ତଥା ଜୀବନ ରକ୍ଷା ନିମନ୍ତେ ସର୍ବନିମ୍ନ ଯେତିକି କାର୍ଯ୍ୟ କରିବା ଆବଶ୍ୟକ ଓ ଯେଉଁ ପରିମାଣରେ ଯେତିକି ଭୋଗ୍ୟ-ବସ୍ତୁ ସଂଗ୍ରହ କରିବା ପ୍ରୟୋଜନ, ତାହା ପ୍ରତ୍ୟେକ ବ୍ୟକ୍ତିର କରିବା ଉଚିତ; କିନ୍ତୁ ତା' ଠାରୁ ଅଧିକ କରିବା କିମ୍ବା ଅଧିକ ବିଷୟ ପ୍ରତି ଲାଳସୀ ହେବା ଅନ୍ୟାୟ । ଦୃଷ୍ଟାନ୍ତ ସ୍ୱରୂପ, ସୁବିସ୍ତୃତ ଭୂମି ପଡ଼ିଥିବା ବେଳେ ଶୟନ କରିବା ନିମନ୍ତେ ତୂଳୀତଳ୍ପର ପ୍ରୟୋଜନ କ'ଣ ? ନିଜର ସହଜାତ ଦୁଇ ବାହୁ ବିଦ୍ୟମାନ ଥାଉ ଥାଉ ଶୟନ ପାଇଁ ତକିଆ ଖୋଜିବାର ବ୍ୟାକୁଳତା କାହିଁକି ?

ଅଞ୍ଜଳି ଦ୍ୱାରା ଅନ୍ନ ଜଳ ଆହାର କରିବାରେ କୌଣସି ଅସୁବିଧା ନଥିବା ବେଳେ ବିବିଧ ପାତ୍ର ସଂଗ୍ରହ କରିବାର ଆବଶ୍ୟକତା କ'ଣ ? ଦିଗମ୍ବର ହୋଇ କିମ୍ବା ବଲ୍କଳ ପରିଧାନ କରି ଦେହଯାତ୍ରା ନିର୍ବାହ କରି ହେବ; ତଥାପି ପଞ୍ଚ ବସ୍ତ୍ରାଦି ନିମନ୍ତେ ଏତେ ଲୋଭ କାହିଁକି ? ତେଣୁ ସାଂସାରିକ ସୁଖ-ଭୋଗର କାମନାରୁ ନିଜକୁ ଯଥାସମ୍ଭବ ଶୀଘ୍ର ଦୂରେଇ ଆଣି ଓ ସେସବୁ କାମନାରେ ଜଳାଞ୍ଜଳି ଦେଇ ଭଗବାନଙ୍କ ପାଦପଦ୍ମରେ ଚିତ୍ତ ସମର୍ପଣ କରିଦେବା ହିଁ ପ୍ରତ୍ୟେକ ଲୋକର ଅବଶ୍ୟ କର୍ତ୍ତବ୍ୟ ଏବଂ ତାହା କରିପାରିଲେ ପରମ ସନ୍ତୋଷ ଓ ନିବୃତ୍ତି ଲାଭ ହେବା ସଙ୍ଗେ ସଙ୍ଗେ ପରମ ଜ୍ଞାନ ମନୁଷ୍ୟ ଲାଭ କରିଥାଏ । ନିଜର କର୍ମ ଅନୁସାରେ ମନୁଷ୍ୟକୁ ଫଳ ଭୋଗ କରୁଥିବାର ଦେଖିଲେ, ଭଗବାନଙ୍କ ଚିନ୍ତାରେ ଆସକ୍ତ ନ ହୋଇ ଏହି ଅସତ୍ ସଂସାରରେ ତଥାପି ନିମଗ୍ନ ହୋଇ ରହିବାକୁ କେବଳ ଲୋଭସର୍ବସ୍ୱ କର୍ମଜଡ଼ ମନୁଷ୍ୟ ହିଁ ଚାହୁଁଥିବ, ଅନ୍ୟ କେହି ନୁହେଁ । ପଶୁସୁଲଭ ଜୀବନ ଯାପନ ମନୁଷ୍ୟ ପକ୍ଷରେ ଆଦୌ ଆଦର୍ଶ ସ୍ଥାନୀୟ ନୁହେଁ । ବିଚାରଶୀଳ ବ୍ୟକ୍ତିମାନେ ନିଜର ହୃଦୟାକାଶରେ ଅବସ୍ଥିତ ଶଙ୍ଖ-ଚକ୍ର-ଗଦାଧାରୀ ପରମେଶ୍ୱରଙ୍କୁ ସଦା ମନେ ମନେ ସ୍ମରଣ କରି, ଭଗବାନଙ୍କର ସଦାପ୍ରସନ୍ନ ମୁଖ, ବିଶାଳ ଚକ୍ଷୁ, ପରିହିତ କଦମ୍ବ ପୁଷ୍ପ ସଦୃଶ ପୀତବସନ, ସ୍ୱର୍ଣ୍ଣ-ରତ୍ନ ଖଚିତ ବିଭିନ୍ନ ଅଳଙ୍କାର ଶୋଭିତ ଅଙ୍ଗ ପ୍ରତ୍ୟଙ୍ଗ, ମସ୍ତକରେ କିରୀଟ, କର୍ଣ୍ଣରେ କୁଣ୍ଡଳ ଯୁଗଳକୁ ଧ୍ୟାନ କରିଥାନ୍ତି । ଭଗବାନଙ୍କର ସେହି ପରମ ସୁଖକର ରୂପର ବାସ୍ତବିକ ତୁଳନା ନାହିଁ । ମହାଯୋଗୀଙ୍କର ହୃଦ-ପଦ୍ମର ମଧ୍ୟ ସ୍ଥଳରେ ପାଦପଦ୍ମ, ବାମଭାଗ ହୃଦୟରେ ଲକ୍ଷ୍ମୀଙ୍କର ଚିହ୍ନ, ଗଳା ଦେଶରେ କୌସ୍ତୁଭରତ୍ନ, ବକ୍ଷସ୍ଥଳରେ ବନମାଳା, କଟିରେ ମେଖଳା, ଅଙ୍ଗୁଳିରେ ଅଙ୍ଗୁରୀୟ, ଚରଣରେ ନୂପୁର, ହସ୍ତରେ କଙ୍କଣ, ମସ୍ତକରେ ସ୍ନିଗ୍ଧ କୁଞ୍ଚିତ କେଶ ଶୋଭିତ, ସଦା ହାସ୍ୟୋଜ୍ଜ୍ୱଳ ସୁନ୍ଦର ମୁଖ ଓ ଭକ୍ତମାନଙ୍କ ପ୍ରତି କଲ୍ୟାଣପ୍ରଦ ଶୁଭଦୃଷ୍ଟି ଆଦି ସମ୍ବଳିତ ସୁନ୍ଦର ରୂପକୁ ଏକ ଚିତ୍ତରେ ଯେତେ ସମୟ ପର୍ଯ୍ୟନ୍ତ ସମ୍ଭବ ଧ୍ୟାନ କରିବା ମନୁଷ୍ୟର କର୍ତ୍ତବ୍ୟ । ଭଗବାନଙ୍କର ଶ୍ରୀଚରଣଠାରୁ ଶ୍ରୀମୁଖ ପର୍ଯ୍ୟନ୍ତ ଗୋଟିଏ ଗୋଟିଏ ଶ୍ରୀ ଅଙ୍ଗକୁ ମନେ ମନେ ପରମ ଶ୍ରଦ୍ଧାର ସହିତ ଧ୍ୟାନ କରିବା ଉଚିତ । ଯେତେଦିନ ପର୍ଯ୍ୟନ୍ତ ସାଧକର ମନରେ ଭଗବାନଙ୍କ

ସମ୍ପର୍କରେ ପ୍ରେମ ଓ ଭକ୍ତି ଜାତ ନ ହୋଇଛି, ସେତେଦିନ ପର୍ଯ୍ୟନ୍ତ ନିୟମିତ ଭାବରେ ଭଗବାନଙ୍କର ଏହି ସ୍ଥୂଳ ରୂପକୁ ଚିନ୍ତା କରିବା ବିଧେୟ ।

ଯୋଗୀମାନେ ଇଚ୍ଛାନୁସାରେ ଦେହତ୍ୟାଗ କରିବାକୁ ଚାହୁଁଥିଲେ, ପବିତ୍ର ସ୍ଥାନ ଅଥବା ଶୁଭ ମୁହୂର୍ତ୍ତକୁ ଅପେକ୍ଷା ନକରି ପ୍ରସନ୍ନ ଚିତ୍ତରେ ଶୁଦ୍ଧବୁଦ୍ଧି ଦ୍ୱାରା ନିଜର ମନ ଓ ଇନ୍ଦ୍ରିୟକୁ ସଂଯତ କରି ମନ ସହିତ ଅନ୍ତରାତ୍ମା ଏବଂ ଅନ୍ତରାତ୍ମା ସହିତ ପରମାତ୍ମାକୁ ଏହି ଧାରଣା ପଦ୍ଧତି ଦ୍ୱାରା ସଂଲଗ୍ନ କରି ପାରିଲେ, ସେମାନେ ପରମ ଶାନ୍ତି ଲାଭ କରିପାରିବେ । ଏପରି ସମାଧିଯୁକ୍ତ ଯୋଗୀଙ୍କ ଉପରେ କାଳ ମଧ୍ୟ ପ୍ରଭୁତ୍ୱ ବିସ୍ତାର କରିପାରେ ନାହିଁ । ଦେହ, ମନ ଓ ଇନ୍ଦ୍ରିୟ ପ୍ରଭୃତି ମଧ୍ୟରୁ କୌଣସିଟା ଆତ୍ମା ନୁହେଁ, ତେଣୁ ସେପରି ଭ୍ରମ ଧାରଣା ପୋଷଣ କରିବା ଅନୁଚିତ ।' 'ମୁଁ ନିଜେ ବ୍ରହ୍ମର ଏପରି ମଧ୍ୟ ଭାବିବା ଧୃଷ୍ଟତା । ତେଣୁ ସେପରି ଚିନ୍ତାରୁ ନିଜକୁ ମୁକ୍ତ କରି ଧାରଣା ପଦ୍ଧତିର ଆଶ୍ରୟରେ ଭଗବାନଙ୍କର ପାଦପଦ୍ମରେ ଗଭୀର ଭକ୍ତି ସ୍ଥାପନ କରି ଯୋଗୀମାନେ ଯେଉଁ ପରମାନନ୍ଦ ଲାଭ କରନ୍ତି, ବସ୍ତୁତଃ ତାହାହିଁ ସର୍ବୋତ୍ତମ ତତ୍ତ୍ୱ ଓ ପରମ ପଦ । ଏହିପରି ଭାବରେ ସମାଧିସ୍ଥ ହୋଇ ଦେହତ୍ୟାଗ କରିବା ବହୁ ସୌଭାଗ୍ୟର ବିଷୟ । ସମାଧିସ୍ଥ ଅବସ୍ଥାରେ କିପରି ଦେହ-ତ୍ୟାଗ କରିବାକୁ ହୁଏ, ତା'ର ସୂଚନା ମୁଁ ଦେଉଅଛି, ଆପଣ ଶୁଣନ୍ତୁ । ପ୍ରଥମେ ପାଦମୂଳ ଦ୍ୱାରା ମୂଳାଧାରକୁ ଅବରୁଦ୍ଧ କରି ଅକ୍ଳାନ୍ତ ଭାବେ ପ୍ରାଣବାୟୁକୁ ଷଡ଼ଚକ୍ରଭେଦନ ଖଣ୍ଡରେ ଉତ୍ତୋଳିତ କରିବାକୁ ହୁଏ, ନାଭି-ଚକ୍ରମଣି ପୂରକରେ ଅବସ୍ଥିତ ବାୟୁକୁ ହୃଦୟ ଚକ୍ରକୁ; ସେଠାରୁ ଉଦାନ ବାୟୁ ଦ୍ୱାରା ବକ୍ଷସ୍ଥଳ ଉପରକୁ, ବିଶୁଦ୍ଧ ଚକ୍ରରେ ସେହି ବାୟୁକୁ ପୁଣି ଧୀରେ ଧୀରେ ତାଳୁ ମୂଳର ଅଗ୍ରଭାଗ ପର୍ଯ୍ୟନ୍ତ ନେବାକୁ ହୁଏ; ତା' ପରେ ଦୁଇ ଆଖି, ଦୁଇକାନ, ଦୁଇ ନାକ ପୁଡା ଓ ମୁଖ—ଏହି ସାତ ଗୋଟି ଛିଦ୍ରକୁ ଅବରୁଦ୍ଧ କରି ତାଳୁ ମୂଳରେ ସ୍ଥିତ ବାୟୁକୁ ଦୁଇ ଭ୍ରୂଲତା ମଧ୍ୟସ୍ଥ ଆଜ୍ଞାଚକ୍ରକୁ ନେବାକୁ ହୁଏ । ଯଦି ଅନ୍ୟ କୌଣସି ଲୋକକୁ ଯିବାକୁ ଇଚ୍ଛା ନ ହୁଏ ତେବେ କିଛିକ୍ଷଣ ଏକାଗ୍ରଚିତ୍ତରେ ଅବସ୍ଥାନ କରି ସହସ୍ରାରରେ ବ୍ରହ୍ମକୁ ଲାଭ କରି ବ୍ରହ୍ମରନ୍ଧ୍ର ଭେଦ କରି ଦେହ ଓ ଇନ୍ଦ୍ରିୟ ସମୂହକୁ ତ୍ୟାଗ କରିବାକୁ ହୋଇଥାଏ । ବାୟୁରେ

ସୂକ୍ଷ୍ମ ଶରୀର ରକ୍ଷି ମହାଯୋଗୀମାନେ ଜଗତ ଭିତରେ ଓ ବାହାରେ ଗମନ କରିଥାନ୍ତି ଏବଂ ଉପାସନା, ତପସ୍ୟା, ଯୋଗ ଜ୍ଞାନ ସାଧନ ଦ୍ୱାରା ଯେ କୌଣସି ବ୍ୟକ୍ତି ଏହି ଗତି ଲାଭ କରିବାକୁ ସମର୍ଥ ହୋଇଥାନ୍ତି, ଯାହାକୁ କି କେବଳ କର୍ମଫଳ ମାଧ୍ୟମରେ ଲାଭ କରିବା ସମ୍ଭବ ହୁଏ ନାହିଁ । ଯୋଗୀମାନେ ଜ୍ୟୋତିର୍ମୟ ମାର୍ଗ ସୁଷୁମ୍ନା ଦ୍ୱାରା ବ୍ରହ୍ମଲୋକକୁ ଯାତ୍ରା କରନ୍ତି; ତେବେ ପ୍ରଥମେ ଆକାଶ ମାର୍ଗରେ ଅଗ୍ନି ଲୋକକୁ ଯିବାକୁ ପଡ଼ିଥାଏ, ତା'ପରେ ନିଷ୍ପାପ ହୋଇ ଊର୍ଦ୍ଧ୍ୱରେ ଅବସ୍ଥିତ ନାରାୟଣଙ୍କ ଅଧିଷ୍ଠିତ ଶିଶୁମାର ନାମକ ଜ୍ୟୋତିର୍ମୟ ଚକ୍ରରେ ପହଞ୍ଚନ୍ତି । ଏହି ଶିଶୁମାର ଚକ୍ର ବିଶ୍ୱବ୍ରହ୍ମାଣ୍ଡ ଭ୍ରମଣ କରିବାର କେନ୍ଦ୍ର । ଏହାକୁ ଅତିକ୍ରମ କରି ଅତ୍ୟନ୍ତ ସୂକ୍ଷ୍ମ ଏବଂ ନିର୍ମଳ ଶରୀର ଧାରଣ କରି ବ୍ରହ୍ମଙ୍କ ଋଷିମାନଙ୍କର ବାସସ୍ଥାନ ମହର୍ଲୋକକୁ ସେମାନେ ଗମନ କରିଥାନ୍ତି । ସେଠାରେ କଳ୍ପକାଳ ପର୍ଯ୍ୟନ୍ତ ବ୍ରହ୍ମବେତ୍ତା ମହାପୁରୁଷମାନେ ବାସ କରିଥାନ୍ତି । ପ୍ରଳୟ ସମୟ ଉପସ୍ଥିତ ହେଲେ ଅନନ୍ତ ଦେବଙ୍କ ମୁଖର ଅଗ୍ନିରେ ଯେତେବେଳେ ଅଖିଳ ଜଗତ ଭସ୍ମୀଭୂତ ହୁଏ, ସେତେବେଳେ ସେମାନେ ଜଗତ ପରିତ୍ୟାଗ କରି ବ୍ରହ୍ମଲୋକକୁ କିମ୍ବା ସତ୍ୟ ଲୋକକୁ ଯାତ୍ରା କରିଥାନ୍ତି ଏବଂ ସେଠାରେ ଦୁଇ ପରାର୍ଦ୍ଧକାଳ ପର୍ଯ୍ୟନ୍ତ ବାସ କରିଥାନ୍ତି । ଯେଉଁମାନେ ଏହି ଧ୍ୟାନଯୋଗ ସମ୍ପର୍କରେ ସମ୍ପୂର୍ଣ୍ଣ ଅନଭିଜ୍ଞ, ସେମାନଙ୍କୁ ବାରମ୍ବାର ଜନ୍ମଗ୍ରହଣ କରି ଦାରୁଣ ଦୁଃଖ ଓ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଥାଏ । ସତ୍ୟଲୋକରେ ପହଞ୍ଚିବା ପରେ ସୂକ୍ଷ୍ମ ଶରୀର ଧୀରେ ଧୀରେ ପୃଥିବୀରେ ମିଳାଇ ଯାଏ । ପୃଥିବୀ ରୂପରେ ଜଳକୁ ଓ ଜଳ ରୂପରେ ଅଗ୍ନିମୟ ଆବରଣକୁ ପ୍ରାପ୍ତ ହୋଇ ଜ୍ୟୋତିରୂପରେ ବାୟୁରୂପ ଆବରଣ ସ୍ପର୍ଶରେ ପହଞ୍ଚେ ଏବଂ ପରେ ଆକାଶ ରୂପକ ଆବରଣର ସ୍ପର୍ଶରେ ଆସିଥାଏ । ଏହିପରି ସୂକ୍ଷ୍ମ ଆବରଣ ଭେଦ କରିବା ଫଳରେ ଧୀରେ ଧୀରେ ଘ୍ରାଣେନ୍ଦ୍ରିୟ ଅବଲମ୍ବନ କରି ଗନ୍ଧତନ୍ମାତ୍ରା, ସ୍ପର୍ଶେନ୍ଦ୍ରିୟ ସହଯୋଗରେ ସ୍ପର୍ଶତନ୍ମାତ୍ରା, ଦର୍ଶନେନ୍ଦ୍ରିୟ ସାହାଯ୍ୟରେ ରୂପତନ୍ମାତ୍ରା ଲାଭ କରିଥାନ୍ତି ଏବଂ ପ୍ରାଣକୁ ଅବଲମ୍ବନ କରି କର୍ମ ଲାଭ କରିଥାନ୍ତି ଓ ଶରୀର ପ୍ରାପ୍ତ ହୋଇଥାନ୍ତି । ଯୋଗୀମାନେ ଏହିପରି ପଞ୍ଚଭୂତ ସ୍ଥୂଳ ସୂକ୍ଷ୍ମ ଆବରଣକୁ ପାର ହୋଇ ଅହଙ୍କାରରେ ପ୍ରବେଶ କରନ୍ତି । ସେଠାରେ ସୂକ୍ଷ୍ମ ଭୂତକୁ ତାମସ

ଅହଙ୍କାରରେ, ଇନ୍ଦ୍ରିୟକୁ ରାଜସ ଅହଙ୍କାରରେ, ମନକୁ ସାତ୍ତ୍ୱିକ ଅହଙ୍କାରରେ ଲୀନ କରିଥାନ୍ତି । ଏହାପରେ ଅହଙ୍କାର ସହିତ ଲୟରୂପ ଗତି ଦ୍ୱାରା ମହତ୍ତତ୍ତ୍ୱରେ ପ୍ରବେଶ କରି ପରିଶେଷରେ ସମସ୍ତ ଗୁଣର ଲୟସ୍ଥାନ ପ୍ରକୃତି ରୂପକ ଆବରଣରେ ମିଳିତ ହୋଇଥାନ୍ତି । ମହାପ୍ରଳୟ ସମୟରେ ପ୍ରକୃତି ରୂପକ ଆବରଣ ବିଲୟ ପ୍ରାପ୍ତ ହୋଇଥାଏ, ତେଣୁ ଯୋଗୀମାନେ ସ୍ୱୟଂ ଆନନ୍ଦ ସ୍ୱରୂପ ହୋଇ ନିରାବରଣ ରୂପରେ ଆନନ୍ଦ ସ୍ୱରୂପ ଶାନ୍ତ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥାନ୍ତି । ତାହାଙ୍କ ଭଗବତ ଗତି ଏବଂ ଭଗବତ୍ ଗତି ପ୍ରାପ୍ତ ହେଲେ ଆଉ ଏହି ସଂସାରକୁ ଆସିବାକୁ ସେମାନଙ୍କୁ ପଡେ ନାହିଁ ।”

“ମହାରାଜ, ଆପଣ ଯାହା ପ୍ରଶ୍ନ କରିଥିଲେ, ତା’ର ଉତ୍ତରରେ ବେଦୋକ୍ତ ଦ୍ୱିବିଧ ସନାତନ ମାର୍ଗ ନିର୍ଦ୍ଦେଶିତ ସଦ୍ୟମୁକ୍ତି ଓ କ୍ରମ ମୁକ୍ତିର କଥା ବର୍ଣ୍ଣନା କଲି । ପ୍ରଥମେ ଭଗବାନ ବାସୁଦେବଙ୍କୁ ଆରାଧନା କରି ବ୍ରହ୍ମା ଯେତେବେଳେ ଏହି ପ୍ରଶ୍ନ ତାଙ୍କୁ କରିଥିଲେ, ତା’ର ଉତ୍ତରରେ ଭଗବାନ ବାସୁଦେବ ଏହି ଦୁଇ ମାର୍ଗର କଥା ବ୍ରହ୍ମାଙ୍କୁ କହିଥିଲେ । ସଂସାରଚକ୍ରରେ ପତିତ ମନୁଷ୍ୟ ଯେଉଁ କାର୍ଯ୍ୟ ଆଚରଣ କଲେ ଭଗବାନଙ୍କଠାରେ ଭକ୍ତି ଜାତ ହୁଏ, ତା’ଠାରୁ ସୁଖମୟ ଓ ନିରାପଦ ପଥ ଆଉ କିଛି ନାହିଁ । ଭଗବାନ ବ୍ରହ୍ମା ଏକାଗ୍ର ଚିତ୍ତରେ ତିନଥର ସମଗ୍ର ବେଦକୁ ବିଚାର କରି ଯେଉଁ କାର୍ଯ୍ୟ ଦ୍ୱାରା ଭଗବାନଙ୍କ-ଠାରେ ପ୍ରେମଭକ୍ତି ଜାତ ହୁଏ, ତାହାକୁ ଉତ୍ତମ ସାଧନ ବୋଲି ସ୍ଥିର କରିଅଛନ୍ତି । ଦୃଶ୍ୟ ବସ୍ତୁର ଦର୍ଶନ ଦ୍ରଷ୍ଟା ବିନା ଯେପରି ସମ୍ଭବ ନୁହେଁ; ସେହିପରି ବୁଦ୍ଧି ପ୍ରଭୃତି କାରଣମାନ ଜଣେ କର୍ତ୍ତା ବିନା ପରିଚାଳିତ ହୋଇ ପାରେ ନା । ଏହି ପ୍ରମାଣରୁ ଜୀବାତ୍ମାର ଅସ୍ତିତ୍ୱ ସହଜରେ ବୁଝା ପଡ଼ିଥାଏ ଏବଂ ତଦ୍ଦ୍ୱାରା ସମସ୍ତ ଜୀବରେ ଭଗବାନଙ୍କର ଅସ୍ତିତ୍ୱ ପରିଲକ୍ଷିତ ହୋଇଥାଏ । ମହାରାଜ, ସେଥିପାଇଁ ମନୁଷ୍ୟ ମାନେ ସବୁ ସମୟରେ, ସବୁ ସ୍ଥାନରେ ଓ ସର୍ବାନ୍ତଃକରଣରେ ଭଗବାନ ହରିଙ୍କର କଥା ଶ୍ରବଣ କରିବା, କୀର୍ତ୍ତନ କରିବା ଏବଂ ସ୍ମରଣ କରିବା ବିଧେୟ । ଯେଉଁ ବ୍ୟକ୍ତି ସାଧୁମାନଙ୍କର ଆତ୍ମାସ୍ୱରୂପ ପ୍ରିୟ ଭଗବାନଙ୍କର କଥାମୃତ କର୍ଣ୍ଣରୂପକ ଅଞ୍ଜଳି ଦ୍ୱାରା ଆଗ୍ରହର ସହିତ ପାନ କରେ,

ସେହି ବ୍ୟକ୍ତିର ମନ ମଧ୍ୟରୁ ବିଷୟ ବାସନା ଦୂରୀଭୂତ ହେବା ସଙ୍ଗେ ସଙ୍ଗେ ତାର ହୃଦୟ ନିର୍ମଳ ହୋଇଥାଏ ଏବଂ ସେ ଭଗବାନଙ୍କ ପାଦପଦ୍ମ ନିକଟରେ ପହଞ୍ଚିବାର ଯୋଗ୍ୟତା ଓ ସୌଭାଗ୍ୟ ଲାଭ କରିଥାଏ ।"

"ପରୀକ୍ଷିତ, ଯେଉଁମାନେ ବ୍ରହ୍ମତେଜ କାମନା କରନ୍ତି ସେମାନେ ଭଗବାନ ବ୍ରହ୍ମାଙ୍କୁ, ଯେଉଁମାନେ ଇନ୍ଦ୍ରିୟ ଶକ୍ତି କାମନା କରନ୍ତି ସେମାନେ ଇନ୍ଦ୍ରଙ୍କୁ, ଯେଉଁମାନେ ପୁତ୍ର କାମନା କରନ୍ତି, ସେମାନେ କଶ୍ୟପ ପ୍ରମୁଖ ପ୍ରଜାପତିଗଣଙ୍କ ଉପାସନା କରିବା ବିଧେୟ । ଶାରୀରିକ ସୌନ୍ଦର୍ଯ୍ୟ ପ୍ରାପ୍ତି ନିମନ୍ତେ ଦୁର୍ଗାଙ୍କୁ, ତେଜସ୍ୱୀ ହେବା ନିମନ୍ତେ ଅଗ୍ନିଙ୍କୁ, ଅର୍ଥଲାଭ ନିମନ୍ତେ ଅଷ୍ଟ ବସୁଙ୍କୁ, ପ୍ରଭୁତ୍ୱ ପ୍ରାପ୍ତି ନିମନ୍ତେ ରୁଦ୍ରଗଣଙ୍କୁ, ଅନ୍ନ ନିମନ୍ତେ ଆଦିତ୍ୟଙ୍କୁ, ସ୍ୱର୍ଗଲାଭ ନିମନ୍ତେ ଦେବତାଙ୍କୁ, ରାଜ୍ୟକାମନା ନିମନ୍ତେ ସାଧ୍ୟଗଣଙ୍କୁ, ଦୀର୍ଘାୟୁ ନିମନ୍ତେ ଅଶ୍ୱିନୀକୁମାର ଦ୍ୱୟଙ୍କୁ, ଶରୀର ପୁଷ୍ଟି ନିମନ୍ତେ ପୃଥିବୀଙ୍କୁ, ପ୍ରତିଷ୍ଠା ପ୍ରାପ୍ତି ନିମନ୍ତେ ଲୋକମାତା ପୃଥ୍ୱୀ ଓ ଆକାଶ ଉଭୟଙ୍କୁ ଉପାସନା କରିବାକୁ ପଡ଼ିଥାଏ । ସେହିପରି ଲାବଣ୍ୟ ପ୍ରାପ୍ତି ନିମନ୍ତେ ଗନ୍ଧର୍ବମାନଙ୍କୁ, ପତ୍ନୀ କାମନା ନିମନ୍ତେ ଉର୍ବଶୀଙ୍କୁ, ଆଧିପତ୍ୟ ନିମନ୍ତେ ବ୍ରହ୍ମାଙ୍କୁ, ଯଶଲାଭ ନିମନ୍ତେ ଯଜ୍ଞ ପୁରୁଷଙ୍କୁ, ଅର୍ଥ ସଂଗ୍ରହ ନିମନ୍ତେ ବରୁଣଙ୍କୁ, ଶାସ୍ତ୍ରବିଦ୍ୟା ନିମନ୍ତେ ଶିବଙ୍କୁ, ଦାମ୍ପତ୍ୟ ସୁଖ ନିମନ୍ତେ ପାର୍ବତୀଙ୍କୁ, ଧର୍ମକାମନା ନିମନ୍ତେ ବିଷ୍ଣୁଙ୍କୁ, ବଂଶ ବୃଦ୍ଧି ନିମନ୍ତେ ପିତୃପୁରୁଷଙ୍କୁ, ବିଘ୍ନ ବିନାଶ ନିମନ୍ତେ ଯକ୍ଷଙ୍କୁ, ବଳ ବୃଦ୍ଧି ନିମନ୍ତେ ବାୟୁଙ୍କୁ, ଶତ୍ରୁ ନିଧନ ନିମନ୍ତେ ରାକ୍ଷସଙ୍କୁ, ଭୋଗକାମନା ନିମନ୍ତେ ଚନ୍ଦ୍ରଙ୍କୁ, ବୈରାଗ୍ୟ କାମନା ନିମନ୍ତେ ନାରାୟଣଙ୍କୁ, ଉପାସନା କରାଯାଏ । ଯେଉଁମାନେ ଐକାନ୍ତିକ ଭକ୍ତ, ମୋକ୍ଷ ତଥା କାମନାଶୂନ୍ୟ ହେବାକୁ ଚାହାନ୍ତି, ସେମାନେ ଭଗବାନ ପୁରୁଷୋତ୍ତମଙ୍କୁ ଆରାଧନା କରିବା ଉଚିତ । ନିଜର ରୁଚି ଓ କାମନାନୁସାରେ ଯେଉଁ ବ୍ୟକ୍ତି ଯେତେବେଳେ ଯେଉଁ ଦେବଦେବୀଙ୍କୁ ପୂଜା କରୁନା କାହିଁକି, ଯଦି ସେହି ବ୍ୟକ୍ତିର ମନରେ ଭଗବତ୍ ଭକ୍ତଙ୍କ ସଙ୍ଗଲାଭ ପାଇଁ ଆଗ୍ରହ ଓ ଭଗବାନଙ୍କ ପ୍ରତି ପ୍ରଗାଢ଼ ଭକ୍ତିଭାବ ଜାତ ହୁଏ, ତାହାହେଲେ ସେହି ବ୍ୟକ୍ତିର ପରମ ପୁରୁଷାର୍ଥ ଲାଭ ହୋଇଅଛି ବୋଲି କହିବାକୁ ହେବ ।"

ଭଗବାନଙ୍କର ପୁଣ୍ୟକଥା ଶ୍ରବଣ କଲେ ଭଗବତ୍ ତତ୍ତ୍ୱ ସମ୍ପର୍କରେ ଜ୍ଞାନ ଜନ୍ମେ, ସେହି ତତ୍ତ୍ୱଜ୍ଞାନ ଲାଭ ହେଲେ ସଂସାର ସାଗରର ତ୍ରିଗୁଣମୟୀ ତରଙ୍ଗମାଳାସମ୍ଭୂତ ରାଗଦ୍ୱେଷାଦି ସମସ୍ତ ଦୋଷ ଦୁର୍ଗୁଣ ନଷ୍ଟ ହୁଏ ଓ ଚିତ୍ତ ପ୍ରସନ୍ନ ହୁଏ । ମାନସିକ ପ୍ରସନ୍ନତା ଆସିଲେ ମନରେ ବୈରାଗ୍ୟ ଭାବ ଜାତ ହୁଏ ଓ ତାହା ମୋକ୍ଷ ଲାଭର ପଥକୁ ସୁଗମ କରିବା ସଙ୍ଗେ ସଙ୍ଗେ ମନରେ ଭଗବାନଙ୍କ ପ୍ରତି ଗଭୀର ଭକ୍ତି ସଞ୍ଚାର କରିଥାଏ । ତେଣୁ ଭଗବାନଙ୍କ ରସମୟୀ କଥାମୃତ ଆସ୍ୱାଦନ କରିବାକୁ ମନରେ ଆଗ୍ରହ ଜନ୍ମେ ନାହିଁ, ଏପରି ବ୍ୟକ୍ତି ଏକାନ୍ତ ବିରଳ ।”

# ଭାଗବତ-କଥା ଆରମ୍ଭ

ଶୁକଦେବଙ୍କ ମୁଖରୁ ମୁକ୍ତି ଓ ମୋକ୍ଷ ଲାଭ ସମ୍ପର୍କରେ ବିଭିନ୍ନ ବିଷୟ ଶ୍ରବଣ କରି ଭଗବାନ ବାସୁଦେବଙ୍କ ପ୍ରତି ଖୁବର ଅନୁରାଗଯୁକ୍ତ ପରୀକ୍ଷିତ କହିଲେ, "ହେ ନିଷ୍ପାପ ମୁନି, ଆପଣ ସର୍ବଶାସ୍ତ୍ରବିଶାରଦ ଓ ସର୍ବଜ୍ଞ। ଭଗବାନଙ୍କ ସମ୍ପର୍କିତ ଅମୃତମୟୀ ବିଷୟ ଶ୍ରବଣ କଲେ ମନୁଷ୍ୟର ସମସ୍ତ ଅଜ୍ଞାନତା ଦୂରୀଭୂତ ହୋଇଥାଏ, ଏହା ବାସ୍ତବିକ ସତ୍ୟ। ଆପଣଙ୍କ ମୁଖରୁ ଭଗବତ ସମ୍ପର୍କୀୟ କଥା-ମାନ ଶୁଣୁ ଶୁଣୁ ମୋର ମୋହ ଓ ଅଜ୍ଞାନତା ଧୀରେ ଧୀରେ ଦୂର ହୋଇ ଯାଉଥିବାର ମୁଁ ଅନୁଭବ କରୁଅଛି। ମୋର ବଡ଼ ସୌଭାଗ୍ୟ ଯେ ମେ ଜୀବନର ଏହି ଅନ୍ତିମ ମୁହୂର୍ତ୍ତରେ ଆପଣଙ୍କ ମୁଖରୁ ଏ ସବୁ ଭଗବତ୍ ସମ୍ପର୍କିତ ପରମ ହିତକର କଥା ଶୁଣିବାର ସୌଭାଗ୍ୟ ମୁଁ ଲାଭ କରିଅଛି। ହେ ସତ୍ୟବାଦୀ, ଭଗବାନ ନିଜର ମାୟାଶକ୍ତି ଦ୍ୱାରା ଏହି ଜଗତକୁ କିପରି ସୃଷ୍ଟି କଲେ, କିପରି ନିଜ ସୃଷ୍ଟ ଜଗତକୁ ରକ୍ଷା କରନ୍ତି ଏବଂ ପରେ ତାର ବିନାଶ ଘଟାନ୍ତି, ଅଚିନ୍ତ୍ୟମୟ ସ୍ରଷ୍ଟାଙ୍କର ସେହି ରହସ୍ୟପୂର୍ଣ୍ଣ କଥାମାନ ଶୁଣିବାକୁ ମୋ ମନରେ ବିଶେଷ ଆଗ୍ରହ ଜାତ ହେଉଅଛି। ଆପଣଙ୍କୁ ତେଣୁ ଅନୁରୋଧ, ଜଗତର ସୃଷ୍ଟି-ସ୍ଥିତି ଲୟ ସମ୍ପର୍କୀୟ ବିଷୟମାନ ଦୟାକରି ପ୍ରକାଶ କରି ମୋ ମନର କୌତୂହଳ ଦୂର କରନ୍ତୁ।"

ପରୀକ୍ଷିତ ଅତ୍ୟନ୍ତ ଧର୍ମପ୍ରାଣ ଥିଲେ । ନିଜର ଜୀବନକାଳ ଅତି ଶୀଘ୍ର ଶେଷ ହେବାକୁ ଯାଉଅଛି ଜାଣି ମଧ୍ୟ ସେଥିପ୍ରତି ବିଚଳିତ ହୋଇ ନ ଥିବା ଓ ଭଗବାନଙ୍କ ଲୀଳା ସମ୍ପର୍କରେ ଅଧିକରୁ ଅଧିକ ଜାଣିବାକୁ ଆନ୍ତରିକ ଆଗ୍ରହ ପ୍ରକାଶ କରୁଥିବା ଲକ୍ଷ୍ୟ କରି ପ୍ରସନ୍ନଚିତ୍ତ ଶୁକଦେବ ମନେ ମନେ ଅତ୍ୟନ୍ତ ପ୍ରୀତ ହୋଇ ପରୀକ୍ଷିତଙ୍କ ଅନୁରୋଧକ୍ରମେ ପରମ ପବିତ୍ର ଭାଗବତ ପୁରାଣ ବଖାଣିବାକୁ ଆରମ୍ଭ କଲେ । ଶୁକଦେବ ମନେ-ମନେ ଭଗବାନଙ୍କୁ ସ୍ମରଣ କରି କହିଲେ, "ଯେ ଅପରିମିତ ଓ ସମସ୍ତ ଶକ୍ତିର ଅଧିକାରୀ, ଯେ ଜଗତର ସୃଷ୍ଟି-ସ୍ଥିତି-ଲୟ ସାଧନ ନିମନ୍ତେ ନିଜକୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ରୂପରେ ପ୍ରକାଶ କରି ସତ୍ତ୍ୱ, ରଜ, ତମ ଗୁଣଯୁକ୍ତ ହୋଇଥାନ୍ତି, ଯାହାଙ୍କର ଲୀଳା ଓ କାର୍ଯ୍ୟାବଳି ଯୋଗୀଜନମାନଙ୍କ ପକ୍ଷରେ ମଧ୍ୟ ଦୁର୍ଜ୍ଞେୟ ସେହି ଅନ୍ତର୍ଯ୍ୟାମୀ ପୁରୁଷୋତ୍ତମ ଭଗବାନଙ୍କ ଉଦ୍ଦେଶ୍ୟରେ ମୋର ବିନୀତ ପ୍ରଣାମ । ଧର୍ମପରାୟଣ ସାଧୁମାନଙ୍କର ଦୁଃଖବନ୍ଧନକୁ ଛେଦନ କରି ସେମାନଙ୍କୁ ଯେ ମୁକ୍ତି ପ୍ରଦାନ କରିଥାନ୍ତି, ସଂସାରର ଭାର ଲାଘବ କରିବା ନିମନ୍ତେ ପାପୀମାନଙ୍କୁ ବିନାଶ କରି ଯେ ପ୍ରକାରାନ୍ତରେ ମୁକ୍ତି ପ୍ରଦାନ କରିଥାନ୍ତି, ତତ୍ତ୍ୱ ଅନୁସନ୍ଧାନୀ ସନ୍ନ୍ୟାସୀମାନଙ୍କୁ ସେମାନଙ୍କର ଅଭୀଷ୍ଟ ଯେ ପ୍ରଦାନ କରିଥାନ୍ତି, ସେହି ବିଶୁଦ୍ଧ ଜ୍ଞାନଘନମୂର୍ତ୍ତି ଭଗବାନଙ୍କୁ ବାରମ୍ବାର ପ୍ରଣାମ କରୁଅଛି । ଯେ ଭକ୍ତମାନଙ୍କୁ ପ୍ରତିପାଳନ କରନ୍ତି ଓ ଯେ ଭକ୍ତମାନଙ୍କ ନିମନ୍ତେ ଲଭ୍ୟ ଅର୍ଥ, ଭକ୍ତିହୀନମାନଙ୍କ ନିମନ୍ତେ ଏକାନ୍ତ ଅଲଭ୍ୟ ସେହି ଅତୁଳନୀୟ ଐଶ୍ୱର୍ଯ୍ୟ ପ୍ରଭାବରେ ପରିମିତ ଆନନ୍ଦମୟ ସ୍ୱରୂପରେ ନିତ୍ୟ ବିହାରକାରୀ ସେହି ଭଗବାନଙ୍କୁ ବାରମ୍ବାର ପ୍ରଣାମ କରୁଅଛି । ଭକ୍ତିପୂର୍ଣ୍ଣ ହୃଦୟରେ ଯାହାଙ୍କର ନାମ, ରୂପ, ଗୁଣ ଏବଂ ଲୀଳାର କୀର୍ତ୍ତନ, ଶ୍ରବଣ, ସ୍ମରଣ, ଦର୍ଶନ, ବନ୍ଦନ ଏବଂ ପୂଜନ କରିବା ଦ୍ୱାରା ସମସ୍ତ ପାପ ତତ୍‌କ୍ଷଣାତ୍ ବିନଷ୍ଟ ହୋଇଥାଏ, ସେହି ପୁଣ୍ୟକୀର୍ତ୍ତିଶାଳୀ ଭଗବାନଙ୍କୁ ନମସ୍କାର । ବିବେକୀ ପୁରୁଷମାନେ ଯାହାଙ୍କର ଚରଣକମଳରେ ଶରଣ ଗ୍ରହଣ କରି ନିଜର ମନ ଓ ପ୍ରାଣରୁ ଇହଲୋକ ପରଲୋକ ସମ୍ପର୍କୀୟ ସମସ୍ତ ଭୋଗବିଳାସ ଓ ଆସକ୍ତିକୁ ଦୂର କରିଥାନ୍ତି ଏବଂ ତଦ୍ଦ୍ୱାରା ବ୍ରହ୍ମପଦ ଲାଭ କରିବାର ଯୋଗ୍ୟ ହୋଇଥାନ୍ତି, ସେହି ପରମ ମଙ୍ଗଳମୟ କୀର୍ତ୍ତିଶାଳୀ ଭଗବାନଙ୍କୁ ପ୍ରଣାମ । ତପସ୍ୱୀ, ଜ୍ଞାନୀ,

ଦାତା, କର୍ମବୀର, ସଦାଚାରପରାୟଣ ବ୍ୟକ୍ତି ଓ ମନ୍ତ୍ରବେତ୍ତା ପ୍ରମୁଖ ଯଶସ୍ୱୀଗଣ ନିଜକୁ ଯାହାଙ୍କର ଚରଣରେ ସମର୍ପଣ କରି ନିଜକୁ କଲ୍ୟାଣ-ଭାଗୀ କରିଥାନ୍ତି, ସେହି ମଙ୍ଗଳମୟ ଭଗବାନଙ୍କୁ ବାରମ୍ବାର ନମସ୍କାର କରୁଅଛି ।

କିରାତ, ହୂଣ, ଆନ୍ଧ୍ର, ପୁଳିନ୍ଦ, ପୁକ୍କସ, ଆଭୀର, କଙ୍କ, ଯବନ, ଓ ଖସ ଆଦି ନୀଚ ଜାତି ଏବଂ ଜନ୍ମାବଧି ପାପକାର୍ଯ୍ୟରେ ଲିପ୍ତ ଥିବା ବ୍ୟକ୍ତିମାନେ ଯାହାଙ୍କର ଆଶ୍ରିତ ଭକ୍ତମାନଙ୍କଠାରେ ଶରଣ ନେଇ ପବିତ୍ର ହୋଇଥାନ୍ତି, ସେହି ସର୍ବଶକ୍ତିମାନ ଭଗବାନଙ୍କୁ ବାରମ୍ବାର ନମସ୍କାର କରୁଅଛି । ଯେ ଜ୍ଞାନୀମାନଙ୍କର ଆତ୍ମା ସ୍ୱରୂପ, ଭକ୍ତମାନଙ୍କର ପ୍ରଭୁ, ଯେ ବେଦବକ୍ତାମାନଙ୍କ ପାଇଁ ବେଦମୂର୍ତ୍ତି, ସ୍ମୃତିଶାସ୍ତ୍ରବକ୍ତାମାନଙ୍କ ପାଇଁ ଧର୍ମମୂର୍ତ୍ତି, ତପସ୍ୱୀମାନଙ୍କ ପାଇଁ ତପଶ୍ଚର୍ଯ୍ୟାସ୍ୱରୂପ, ବ୍ରହ୍ମା ଓ ଶିବ ପ୍ରମୁଖ ଯାହାଙ୍କର ସ୍ୱରୂପକୁ ଯଥାର୍ଥ କଳନା କରିବାକୁ ସମର୍ଥ ନ ହୋଇ ଭଗବାନଙ୍କର ଅଚିନ୍ତ୍ୟମାୟତାରେ ବିସ୍ମିତ ହୋଇଥାନ୍ତି, ସେହି ଅପାର ମହିମାଶାଳୀ ଭଗବାନ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ଯେ ସମସ୍ତ ସମ୍ପତ୍ତିର ଅଧିଷ୍ଠାତ୍ରୀଦେବୀ ଲକ୍ଷ୍ମୀଙ୍କର ସ୍ୱାମୀ, ସମସ୍ତ ଯଜ୍ଞର ଭୋକ୍ତା ଓ ଫଳଦାତା, ଯେ ସମସ୍ତ ଜଗତର ରକ୍ଷାକର୍ତ୍ତା, ସମସ୍ତଙ୍କର ଅନ୍ତର୍ଯ୍ୟାମୀ, ସମସ୍ତ ଜଗତର ଅଧିପତି, ଅନ୍ଧକ, ବୃଷ୍ଣି ଏବଂ ସାତ୍ୱତଗଣଙ୍କର ପ୍ରଭୁ ଓ ସେମାନଙ୍କର ରକ୍ଷାକର୍ତ୍ତା, ଭକ୍ତବତ୍ସଳ ସେହି ଭଗବାନ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ବିଦ୍ୱାନ ବ୍ୟକ୍ତିମାନେ ଯାହାଙ୍କର ଚରଣକମଳଙ୍କୁ ଧ୍ୟାନ-ସ୍ୱରୂପ ସମାଧିରେ ଦର୍ଶନ କରନ୍ତି, ଶୁଦ୍ଧ ବୁଦ୍ଧି ଦ୍ୱାରା ଆତ୍ମାର ସ୍ୱରୂପକୁ ପ୍ରତ୍ୟକ୍ଷ କରନ୍ତି, କବିମାନେ ନିଜ ନିଜର ଅଭିଜ୍ଞତା ଓ ଅଭିରୁଚି ଅନୁସାରେ ଯାହାଙ୍କର ତତ୍ତ୍ୱକୁ ବିଭିନ୍ନ ଭାବରେ ବର୍ଣ୍ଣନା କରିଥାନ୍ତି, ଅଖିଳ ଜଗତର ମୁକ୍ତିଦାତା ସେହି ଭଗବାନ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ସୃଷ୍ଟିର ପ୍ରାରମ୍ଭରେ ବ୍ରହ୍ମାଙ୍କ ହୃଦୟରେ ପୂର୍ବ କଳ୍ପ ସମ୍ବନ୍ଧୀୟ ସ୍ମୃତି ଜାଗ୍ରତ କରିବା ଉଦ୍ଦେଶ୍ୟରେ ଯେ ଜ୍ଞାନର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀଙ୍କୁ ପ୍ରେରଣ କରି ବ୍ରହ୍ମାଙ୍କ ସମ୍ମୁଖରେ ବେଦ ରୂପରେ ପ୍ରକଟିତ ହୋଇଥିଲେ, ସେହି ଭଗବାନ ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହୁଅନ୍ତୁ । ଯେ ପଞ୍ଚମହାଭୂତ ଦ୍ୱାରା ପ୍ରାଣୀମାନଙ୍କର ଶରୀର ସୃଷ୍ଟି କରି

ତନ୍ମଧ୍ୟରେ ଅନ୍ତର୍ଯ୍ୟାମୀ ରୂପରେ ବାସ କରିଥାନ୍ତି, ଯେ ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚମହାଭୂତ ଏବଂ ମନ—ଏହିପରି ଷୋଳ ପ୍ରକାରର ଅବସ୍ଥାକୁ ଭୋଗକରି ଥାନ୍ତି, ସେହି ଅଖିଳ ଜଗତମୟ ଷୋଡ଼ଶାତ୍ମକ ଭଗବାନ ମୋ ଦ୍ୱାରା ବର୍ଣ୍ଣିତ ହେବାକୁ ଯାଉଥିବା ମୋର ବକ୍ତବ୍ୟକୁ ନିଜ ଗୁଣ ସ୍ପର୍ଶରେ ସମସ୍ତଙ୍କର କଲ୍ୟାଣ ଉପଯୋଗୀ କରନ୍ତୁ । ଭକ୍ତି-ଭାବାପନ୍ନ ବ୍ୟକ୍ତିମାନେ ଯାହାଙ୍କର ମୁଖାରବିନ୍ଦରୁ ବିନିର୍ଗତ ସୁମଧୁର ଜ୍ଞାନମୟ ଅମୃତକର ବାକ୍ୟକୁ ପରମାନନ୍ଦରେ ପାନ କରିଥାନ୍ତି, ସେହି ଅମିତଜ୍ଞାନ ଓ ତେଜର ଯଥାର୍ଥ ଅଧିକାରୀ ଭଗବାନ ସ୍ୱରୂପ ବ୍ୟାସଦେବଙ୍କ ଚରଣ ଉଦ୍ଦେଶ୍ୟରେ ପ୍ରଣିପାତ ପୂର୍ବକ ପ୍ରଣାମ ଜଣାଉଛି ।

ମହାରାଜ, ଭଗବାନଙ୍କର ନାଭି ପଦ୍ମରୁ ଜାତ ବେଦଗର୍ଭ ବ୍ରହ୍ମାଙ୍କୁ ଦେବର୍ଷି ନାରଦ ଏକଦା ଯେଉଁ ପ୍ରଶ୍ନ ପଚାରିଥିଲେ ଓ ଭଗବାନଙ୍କ ପରୋକ୍ଷ ନିର୍ଦ୍ଦେଶକ୍ରମେ ଭଗବାନ ବ୍ରହ୍ମା ଯେଉଁ ଉତ୍ତରମାନ ପ୍ରଦାନ କରିଥିଲେ, ସେହି ପରମତତ୍ତ୍ୱ ସମ୍ବଳିତ ବୃତ୍ତାନ୍ତ ମୁଁ ଆପଣଙ୍କ ନିକଟରେ ପ୍ରକାଶ କରିବାକୁ ଯାଉଅଛି । ଆପଣ ତାହା ଶ୍ରବଣ କରନ୍ତୁ ।

ସମସ୍ତ ଜଗତର ସୃଷ୍ଟିକର୍ତ୍ତା ସର୍ବଦେବଆରାଧ୍ୟ ଭଗବାନ ବ୍ରହ୍ମାଙ୍କୁ ପ୍ରଣାମ କରି ଦେବର୍ଷି ନାରଦ ପ୍ରଶ୍ନ କଲେ, "ପ୍ରଭୁ, ଆପଣ ସର୍ବଜ୍ଞ ଓ ସର୍ବଶକ୍ତିମାନ । ବୁର୍ଣ୍ଣାଆଣୀ ନିଜ ଉଦରରୁ ରସ କ୍ଷରଣ କରି ଜାଲ ସୃଷ୍ଟି କରିଥାଏ । ଆପଣ ନିଜ ଶକ୍ତିରେ ଅବଲୀଳାକ୍ରମେ ନିଜ ମଧ୍ୟରୁ ଉପାଦାନ ସଂଗ୍ରହ କରି ଏହି ନିଖିଳ ବିଶ୍ୱକୁ ସୃଷ୍ଟି କରିଅଛନ୍ତି । ଏହି ଚରାଚର ବିଶ୍ୱର ଆପଣ କେବଳ ସୃଷ୍ଟିକର୍ତ୍ତା ନୁହଁନ୍ତି, ଆପଣ ମଧ୍ୟ ସମଗ୍ର ବିଶ୍ୱରେ ସର୍ବଶ୍ରେଷ୍ଠ । ଆପଣଙ୍କ ଅପେକ୍ଷା ଆଉ କେହି ଶ୍ରେଷ୍ଠ ଥିବା ତ ଦୂରର କଥା, ଆପଣଙ୍କ ସହିତ ସମକକ୍ଷ ହେବ ଏପରି ବ୍ୟକ୍ତି ମଧ୍ୟ ପରିଦୃଷ୍ଟ ହୁଅନ୍ତି ନାହିଁ । ତଥାପି ଆପଣ ଏକାଗ୍ରଚିତ୍ତରେ ଧ୍ୟାନ-ପରବଶ ହେଉଅଛନ୍ତି କାହିଁକି ? ଆପଣଙ୍କର କେହି ଉପାସ୍ୟ ଥାଇ-ପାରନ୍ତି, ଏହା ମୁଁ ଭାବି ପାରୁ ନାହିଁ । ହେ ସର୍ବଜ୍ଞ ଓ ଅଖିଳ ଜଗତର ଅଧୀଶ୍ୱର, ଆପଣ କାହାକୁ ଧ୍ୟାନ କରୁଅଛନ୍ତି, ସେହି ରହସ୍ୟ ଉଦ୍‌ଘାଟନ କରି ମୋର କୌତୂହଳ ଦୂର କରନ୍ତୁ ।"

ନାରଦଙ୍କ ପ୍ରଶ୍ନ ଶୁଣି ଭଗବାନ ବ୍ରହ୍ମା କହିଲେ, 'ବାବା, ତୁମେ ଏପରି ପ୍ରଶ୍ନ ପଚାରିବା ଦ୍ୱାରା ମୋର ଏକ ବିଶେଷ ଉପକାର କରିଅଛ, କାରଣ ତୁମ ପ୍ରଶ୍ନର ଉତ୍ତର ଦେବା ମାଧ୍ୟମରେ ମୁଁ ଭଗବାନଙ୍କର ଅମୀୟ ଲୀଳା ବର୍ଣ୍ଣନା କରିବାର ସୁଯୋଗ ଲଭ କରିବି । ତୁମେ 'ମୋତେ ଏହି ଚରାଚର ବିଶ୍ୱର ସର୍ବଶ୍ରେଷ୍ଠ ପୁରୁଷ ବୋଲି ସମ୍ବୋଧନ କରିଅଛ; କିନ୍ତୁ ତାହା ସତ୍ୟ ନୁହେଁ । ମୋ ଅପେକ୍ଷା ଯେ ଶ୍ରେଷ୍ଠ ପୁରୁଷ ଅଛନ୍ତି, ତାହା ତୁମେ ଜାଣ ନାହିଁ । ସୂର୍ଯ୍ୟ, ଅଗ୍ନି, ଚନ୍ଦ୍ର, ନକ୍ଷତ୍ର, ଗ୍ରହ ପ୍ରମୁଖ ଯାହାଙ୍କ ଜ୍ୟୋତିରେ ଉଦ୍‌ଭାସିତ ହୋଇ ଜଗତକୁ ନିତ୍ୟ ଆଲୋକିତ କରିଥାନ୍ତି, ମୁଁ ତାଙ୍କର ଶକ୍ତିବଳରେ ଶକ୍ତିଶାଳୀ ହୋଇ ଏହି ଜଗତକୁ ସୃଷ୍ଟି କରିଅଛି । ବିଶ୍ୱସୃଷ୍ଟିରେ ମୋର କୌଣସି କୃତିତ୍ୱ ନାହିଁ । ଯାହାଙ୍କର ମାୟାରେ ମୁଗ୍ଧ ହୋଇ ଜନ ସମାଜ ମୋତେ ଜଗତର ସୃଷ୍ଟିକର୍ତ୍ତା ବୋଲି ଅଭିହିତ କରିଥାନ୍ତି, ମୁଁ ସେହି ପରାତ୍ପର ପରମେଶ୍ୱରଙ୍କୁ ପ୍ରଣାମ କରୁଛି । ସେ ମୋର ନିତ୍ୟ ଧ୍ୟାନର ପୁରୁଷ । ଭଗବାନଙ୍କ ମାୟାର ବଶବର୍ତ୍ତୀ ହୋଇ ନିର୍ବୋଧ ବ୍ୟକ୍ତିମାନେ 'ମୁଁ' ଓ 'ମୋର' ବୋଲି ଅଯଥା ଗର୍ବ ପ୍ରକାଶ କରିଥାନ୍ତି । ଜଗତର ପ୍ରତ୍ୟେକ ବସ୍ତୁ ଓ ଜୀବ ହେଉଛି ଭଗବାନଙ୍କର ଅଂଶବିଶେଷ ଏବଂ କେହି ଭଗବାନଙ୍କଠାରୁ ଭିନ୍ନ ନୁହନ୍ତି । ସମସ୍ତ ବେଦ ନାରାୟଣଙ୍କଠାରୁ ଉତ୍ପନ୍ନ ହୋଇଅଛି, ଦେବତାମାନେ ନାରାୟଣଙ୍କ ଅଙ୍ଗରୁ ସମ୍ଭୂତ, ସ୍ୱର୍ଗାଦି ଲୋକ ସକଳ ନାରାୟଣଙ୍କ ଆନନ୍ଦାଶ୍ରୁ ମଧ୍ୟରୁ ସୃଷ୍ଟ ହୋଇଅଛନ୍ତି ଏବଂ ସମସ୍ତ ଯଜ୍ଞ ହିଁ ନାରାୟଣଙ୍କର ମୂର୍ତ୍ତି । ସେଥିପାଇଁ ଶ୍ରୁତିରେ ଯଜ୍ଞକୁ ବିଷ୍ଣୁ ବୋଲି ଅଭିହିତ କରାଯାଇଅଛି । ଯୋଗ, ତପସ୍ୟା ଓ ସକଳ ଜ୍ଞାନ ନାରାୟଣଙ୍କ ଅଧୀନ ଏବଂ ସେସବୁର ପରମ ଲକ୍ଷ୍ୟ ନାରାୟଣପ୍ରାପ୍ତି । ନାରାୟଣଙ୍କ ଦ୍ୱାରା ମୋର ସୃଷ୍ଟି ଓ ସେହି ନିର୍ବିକାର ଅଖିଳାତ୍ମନ ଭଗବାନ ନାରାୟଣଙ୍କର ଇଙ୍ଗିତକ୍ରମେ ମୁଁ ମୋର ସକଳ କର୍ମ ସମ୍ପାଦନ କରିଥାଏ ଏବଂ ତଦନୁସାରେ ମୁଁ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି କରିଅଛି । ଗୁଣାତୀତ ଭଗବାନଙ୍କର ସତ୍ତ୍ୱ, ରଜ ଓ ତମ, ଏହି ତ୍ରିଗୁଣ ଏବଂ ମାୟା ସହଯୋଗରେ ଭଗବାନ ଜଗତର ସୃଷ୍ଟି, ସ୍ଥିତି ଓ ଲୟ ସାଧନ କରିଥାନ୍ତି । ଇନ୍ଦ୍ରିୟାତୀତ ଭଗବାନ ଏହି ଗୁଣତ୍ରୟ ଦ୍ୱାରା ନିଜକୁ ଆବୃତ୍ତ କରି ରଖିଥିବାରୁ ତାଙ୍କର ସ୍ୱରୂପ ହୃଦୟଙ୍ଗମ କରିବା ଲୋକଙ୍କ ପକ୍ଷରେ

ସମ୍ଭବ ହୁଏ ନାହିଁ; ପ୍ରକୃତ ପକ୍ଷେ ସେ ହେଉଛନ୍ତି ସମସ୍ତ ଜୀବଙ୍କର ଏବଂ ମୋର ସର୍ବକାଳୀନ ପ୍ରଭୁ । ମାୟାଧର ଭଗବାନ ଏକରୁ ବହୁ ହେବାକୁ ଇଚ୍ଛା ପୋଷଣ କରି ନିଜର ମାୟାବଳିରେ ସ୍ୱରୂପରେ ସ୍ଥିତ କାଳ, କର୍ମ ଓ ସ୍ୱଭାବକୁ ସ୍ୱୀକାର କରି ନିଅନ୍ତି; ଫଳରେ କାଳ ଗୁଣନିଚୟରେ କ୍ଷୋଭ ସ୍ୱଭାବ ତାହାକୁ ରୂପାନ୍ତରିତ ଓ କର୍ମ ମହତ୍ତ୍ୱକୁ ଜନ୍ମ ପ୍ରଦାନ କରିଥାଏ । ରଜୋଗୁଣ ଓ ତମୋଗୁଣର ବୃଦ୍ଧି ଘଟିବା ଫଳରେ ମହତ୍ତ୍ୱରେ ଯେଉଁ ବିକାର ସୃଷ୍ଟି ହୁଏ, ତହିଁରୁ ଜ୍ଞାନ, କ୍ରିୟା ଓ ଦ୍ରବ୍ୟରୂପକ ତମୋପ୍ରଧାନ ବିକାର ଜାତହୁଏ, ସେସବୁକୁ ଅହଙ୍କାର କୁହାଯାଏ ଏବଂ ତାହା ବିକାରପ୍ରାପ୍ତ ହୋଇ ବୈକାରିକ, ତୈଜସ ଓ ତାମସ ଏହିପରି ତିନି ପ୍ରକାରରେ ରୂପାନ୍ତରିତ ହୁଏ । ତାମସ ଦ୍ରବ୍ୟଶକ୍ତି, ତୈଜସ କ୍ରିୟାଶକ୍ତି ଓ ବୈକାରିକ ଜ୍ଞାନଶକ୍ତି । ପଞ୍ଚମହାଭୂତର କାରଣ ସ୍ୱରୂପ ତାମସ ଅହଙ୍କାରରେ ବିକାଶ ଘଟିବାରୁ ଆକାଶ ସୃଷ୍ଟି ହୁଏ, ଆକାଶର ସୂକ୍ଷ୍ମରୂପ ଓ ଗୁଣ ହେଉଅଛି ଶବ୍ଦ, ଏହି ଶବ୍ଦ ଦ୍ୱାରା ଦୃଶ୍ୟ ଓ ଦ୍ରଷ୍ଟା ବୋଧ ହୋଇଥାଏ । ବାୟୁରୁ ଦେହ ଧାରଣ ଶକ୍ତି, ଇନ୍ଦ୍ରିୟରୁ ଓଜଶକ୍ତି, ମନର ସହ୍ୟ ଶକ୍ତି ଓ ଶରୀରର ବଳ ସୃଷ୍ଟି ହୁଏ । କାଳ, କର୍ମ ଓ ସ୍ୱଭାବ ସହିତ ବାୟୁର ମିଳନ ଘଟିଲେ ଯେଉଁ ବିକାର ସୃଷ୍ଟି ହୁଏ, ତହିଁରୁ ତେଜ ଉତ୍ପନ୍ନ ହୁଏ, ତାର ଗୁଣ ରୂପ । ତହିଁରେ ଆକାଶର ଗୁଣ ଶବ୍ଦ ଓ ବାୟୁର ଗୁଣ ସ୍ପର୍ଶ ମଧ୍ୟ ନିହିତ ରହିଛି । ତେଜର ବିକାରରେ ଜଳର ଉତ୍ପତ୍ତି ଘଟେ, ତାର ପ୍ରଧାନ ଗୁଣ ରସ, କିନ୍ତୁ ତହିଁରେ ଶବ୍ଦ, ସ୍ପର୍ଶ, ରୂପ ମଧ୍ୟ ନିହିତ ଅଛି । ଜଳର ବିକାରରେ ପୃଥିବୀ ଉତ୍ପନ୍ନ ହୁଏ, ତାର ପ୍ରଧାନ ଗୁଣ ଗନ୍ଧ, ତଥାପି ତହିଁରେ ରୂପ, ରସ, ସ୍ପର୍ଶ ଏବଂ ଶବ୍ଦ ମଧ୍ୟ ବିଦ୍ୟମାନ ଅଛି । ବୈକାରିକ ଅହଙ୍କାରରୁ ମନର ଓ ଇନ୍ଦ୍ରିୟର ଯେଉଁ ଦଶ ଜଣ ଅଧିଷ୍ଠାତା ଦେବତାଙ୍କର ସୃଷ୍ଟି ଘଟେ, ସେମାନଙ୍କର ନାମ ହେଲା ଦିଗ, ବାୟୁ, ସୂର୍ଯ୍ୟ ବରୁଣ, ଅଶ୍ୱିନୀକୁମାର, ଅଗ୍ନି, ଇନ୍ଦ୍ର, ଉପେନ୍ଦ୍ର, ମିତ୍ର ଓ ପ୍ରଜାପତି । ତୈଜସ ଅହଙ୍କାରରୁ ଜ୍ଞାନଶକ୍ତି-ଯୁକ୍ତ ବୁଦ୍ଧି, କ୍ରିୟାଶକ୍ତିଯୁକ୍ତ ପ୍ରାଣ ଓ କର୍ଣ୍ଣ, ତ୍ୱକ୍, ଚକ୍ଷୁ, ଜିହ୍ୱା

ଏବଂ ଘ୍ରାଣ ଏହି ପାଞ୍ଚଗୋଟି ଜ୍ଞାନେନ୍ଦ୍ରିୟ, ବାକ୍ୟ, ହସ୍ତ, ପଦ, ପାୟୁ ଓ ଜନନେନ୍ଦ୍ରିୟ, ଏହି ପାଞ୍ଚଗୋଟି କର୍ମେନ୍ଦ୍ରିୟ ସୃଷ୍ଟି ହୋଇଅଛି । ଏହି ପଞ୍ଚମହାଭୂତ, ଇନ୍ଦ୍ରିୟଗଣ, ମନ ଓ ଗୁଣ ସକଳ ସୃଷ୍ଟି ସମୟରୁ ପୃଥକ୍ ପୃଥକ ଥିବାରୁ ସେମାନେ କୌଣସି ଶରୀର ଗଠନ କରିବାକୁ ସମର୍ଥ ହୋଇ ପାରିଲେ ନାହିଁ । ସେଥିପାଇଁ ଭଗବାନ ନିଜର ଶକ୍ତି ପ୍ରେରଣ କଲେ, ଫଳରେ ସେହି ଭଗବତ୍ ଶକ୍ତି ସମସ୍ତଙ୍କୁ ଏକତ୍ରିତ କରି ସେମାନଙ୍କର ମିଳିତ ସହଯୋଗରେ ଶରୀର, ରୂପ ଓ ଜଗତ ସୃଷ୍ଟି କଲା । ଏହି ବ୍ରହ୍ମାଣ୍ଡ ଏକ ହଜାର ବର୍ଷ ଧରି ନିର୍ଜୀବ ରୂପରେ ଜଳରେ ପଡ଼ିରହିଥିଲା, ପରେ ଭଗବାନ ସେହି ଅଚେତନ ବ୍ରହ୍ମାଣ୍ଡକୁ ଚେତନା ପ୍ରଦାନ କଲେ । ସେହି ବ୍ରହ୍ମାଣ୍ଡ ମଧ୍ୟରୁ ସ୍ୱୟଂ ପରମେଶ୍ୱର ଯେତେବେଳେ ବହିର୍ଗତ ହେଲେ, ସେତେବେଳେ ତାଙ୍କର ଶରୀର ଅତ୍ୟନ୍ତ ଭୀଷଣ ଓ ବିଶାଳ ଥିଲା । ସେତେବେଳେ ତାଙ୍କର ଥିଲା ସହସ୍ର ସହସ୍ର ସଂଖ୍ୟକ ଉରୁ, ସହସ୍ର ସହସ୍ର ସଂଖ୍ୟକ ପାଦ, ବାହୁ, ଚକ୍ଷୁ, ମୁଖ ଓ ମସ୍ତକ ଥିଲା । ମନୀଷିଗଣ ସେହି ପରମେଶ୍ୱରଙ୍କର କଟି ପ୍ରଭୃତି ନିମ୍ନ ଅଙ୍ଗକୁ ଅତଳ, ବିତଳ, ସୁତଳ, ତଳାତଳ, ମହାତଳ, ରସାତଳ ଓ ପାତାଳ—ଏହିପରି ସାତଟି ଅଧୋଲୋକ ଏବଂ ଜଘଂଠାରୁ ମସ୍ତକ ପର୍ଯ୍ୟନ୍ତ ଊର୍ଦ୍ଧ୍ୱାଙ୍ଗକୁ ଭୂ, ଭୁବ, ସ୍ୱ, ମହ, ଜନ, ତପ ଏବଂ ସତ୍ୟ ଲୋକ—ଏହିପରି ସାତଗୋଟି ଊର୍ଦ୍ଧ୍ୱଲୋକ ବୋଲି କଳ୍ପନା କରି ଧ୍ୟାନ ଧାରଣା କରିଥାନ୍ତି । ସେହି ପରମେଶ୍ୱରଙ୍କର ମୁଖରୁ ବ୍ରାହ୍ମଣ, ଭୁଜରୁ କ୍ଷତ୍ରିୟ, ଉରୁରୁ ବୈଶ୍ୟ ଓ ଚରଣରୁ ଶୂଦ୍ର—ଏହିପରି ଚତୁର୍ବର୍ଣ୍ଣ ସୃଷ୍ଟି ହୋଇଅଛି । ଏହି ପରମେଶ୍ୱରଙ୍କର ଚରଣଠାରୁ କଟି ପର୍ଯ୍ୟନ୍ତ ଅବୟବରେ ପାତାଳଠାରୁ ଭୂଲୋକ ପର୍ଯ୍ୟନ୍ତ ସପ୍ତଲୋକ, ନାଭିରେ ଭୁବର୍ଲୋକ, ହୃଦୟରେ ସ୍ୱର୍ଗଲୋକ, ବକ୍ଷସ୍ଥଳରେ ମହର୍ଲୋକର ଅବସ୍ଥିତି କଳ୍ପନା କରାଯାଇଅଛି । ଗ୍ରୀବାରେ ଜନଲୋକ, ସ୍ତନଦ୍ୱୟରେ ତପଲୋକ, ମସ୍ତକରେ ସତ୍ୟଲୋକ ଓ ଊର୍ଦ୍ଧ୍ୱରେ ବ୍ରହ୍ମଲୋକର ସ୍ଥାନ ନିର୍ଣ୍ଣୟ କରାଯାଇଅଛି । କଟିରେ ଅତଳ, ଉରୁରେ ବିତଳ, ଜାନୁରେ ସୁତଳ, ଜଙ୍ଘରେ ତଳାତଳର ସ୍ଥାନ । ସେହିପରି ଗୁଲ୍‌ଫରେ ମହାତଳ, ଚରଣର ଅଗ୍ରଭାଗରେ ରସାତଳ ଓ ନିମ୍ନଭାଗରେ ପାତାଳର ସ୍ଥାନ କଳ୍ପନା

କରାଯାଇଅଛି । ପରମେଶ୍ୱରଙ୍କର ଚରଣଠାରୁ କଟି ପର୍ଯ୍ୟନ୍ତ ପାତାଳ ପ୍ରଭୃତି ଭୂଲୋକ, ନାଭିଠାରୁ ଭୁବର୍ଲୋକ, ଏବଂ ମସ୍ତକରେ ସ୍ୱର୍ଗଲୋକ —ଏହିପରି ତିନି ଲୋକର କଳ୍ପନା କରଯାଇଅଛି । ଏହି ବିରାଟ ପୁରୁଷଙ୍କ ମୁଖରୁ ବାଣୀ ଓ ଅଧିଷ୍ଠାତା ଦେବତା ଅଗ୍ନି ଉତ୍ପନ୍ନ ହୋଇ-ଅଛନ୍ତି । ତାଙ୍କର ତ୍ୱକ୍ ପ୍ରଭୃତି ସାତଟି ଧାତୁରୁ ଗାୟତ୍ରୀ, ତ୍ରିଷ୍ଟୁପ, ଅନୁଷ୍ଟୁପ, ଉଷ୍ଣିକ, ବୃହତୀ, ପଙ୍କ୍ତି ଓ ଜଗତୀ, ଏପରି ସପ୍ତଛନ୍ଦର ଉତ୍ପତ୍ତି ଘଟେ । ତାଙ୍କର ଜିହ୍ୱାରୁ ଅନ୍ନ, ରସ ଓ ଅଧିଷ୍ଠାତା ଦେବତା ବରୁଣଙ୍କର ସୃଷ୍ଟି । ତାଙ୍କର ନାସାଛିଦ୍ରରୁ ପ୍ରାଣ ଓ ତା'ର ଅଧିଷ୍ଠାତା ଦେବତା ବାୟୁ, ଘ୍ରାଣେନ୍ଦ୍ରିୟରୁ ଧାନ୍ୟ, ଯବ ପ୍ରଭୃତି ଔଷଧି, ଗନ୍ଧ ଓ ତାଙ୍କର ଅଧିଷ୍ଠାତା ଅଶ୍ୱିନୀକୁମାର ଦ୍ୱୟ ସୃଷ୍ଟି ହୋଇଅଛନ୍ତି । ପରମେଶ୍ୱରଙ୍କ ଚକ୍ଷୁରୁ ରୂପ ଓ ରୂପ ପ୍ରକାଶକ ତେଜ ଉତ୍ପନ୍ନ ହେଲା ଏବଂ ତାଙ୍କର ନେତ୍ର ଗୋଲକ ସୂର୍ଯ୍ୟ ଓ ଦ୍ୟୁଲୋକର ଉତ୍ପତ୍ତିସ୍ଥଳ ; ତାଙ୍କର କର୍ଣ୍ଣରୁ ସମସ୍ତ ଦିଗ ଓ ତୀର୍ଥର ସୃଷ୍ଟି । ତାଙ୍କର ଶ୍ରବଣେନ୍ଦ୍ରିୟରୁ ଆକାଶ ଓ ଶବ୍ଦର ଉତ୍ପତ୍ତି । ଶରୀରରୁ ସମସ୍ତ ବସ୍ତୁର ସାରାଂଶ ସୌନ୍ଦର୍ଯ୍ୟର ସୃଷ୍ଟି; ତ୍ୱକରୁ ସମସ୍ତ ଯଜ୍ଞ, ସ୍ପର୍ଶ ଓ ବାୟୁର ସୃଷ୍ଟି ଘଟେ । ରୋମରୁ ବୃକ୍ଷ ଏବଂ କେଶ, ଶ୍ମଶ୍ରୁ, ନଖରୁ ମେଘ, ବିଦ୍ୟୁତ୍, ଶିଳା ଏବଂ ଲୌହର ସୃଷ୍ଟି । ତାଙ୍କର ଭୁଜରୁ ଶୁଭକର୍ମ, ଲୋକପାଳ, ତାଙ୍କର ପଦଚାଳନାରେ ତିନିଲୋକର ଆଶ୍ରୟ ଭୂ, ଭୁବ, ସ୍ୱର ସୃଷ୍ଟି । ତାଙ୍କର ଚରଣ ସମସ୍ତ ରକ୍ଷାକାଂକ୍ଷ ବସ୍ତୁର ଉତ୍ପତ୍ତି ସ୍ଥାନ ଓ ସମସ୍ତ କାମ୍ୟ ବସ୍ତୁ ଏବଂ ଉପାର୍ଜନର କ୍ଷେତ୍ର ରୂପରେ ପରିଚିତ । ତାଙ୍କର ଲିଙ୍ଗ ଜଳ, ବୀର୍ଯ୍ୟ, ମେଢ଼ ଓ ପ୍ରଜାପତିଙ୍କର ଉତ୍ପତ୍ତିସ୍ଥାନ ଓ ତାଙ୍କର ଜନନେନ୍ଦ୍ରିୟ ମୈଥୁନ ଜନିତ ସମ୍ଭୋଗ-ସୁଖର ଉତ୍ପତ୍ତି ସ୍ଥାନ । ତାଙ୍କର ଗୁହ୍ୟେନ୍ଦ୍ରିୟ ଯମ, ମିତ୍ର, ହିଂସା, ଅଲକ୍ଷ୍ମୀ, ନରକ ତଥା ମଳତ୍ୟାଗର ଉତ୍ପତ୍ତି ସ୍ଥାନ । ତାଙ୍କର ପୃଷ୍ଠଦେଶ ପରାଜୟ, ପାପ ଓ ଅବିଦ୍ୟାର ଉତ୍ପତ୍ତି ସ୍ଥଳ । ତାଙ୍କର ଶିରାରୁ ନଦନଦୀ, ଅସ୍ଥିରୁ ପର୍ବତ, ଉଦରରୁ ପ୍ରକୃତି ରସ ଓ ସମୁଦ୍ର ଏବଂ ସମସ୍ତ ପ୍ରାଣୀଙ୍କର ମୃତ୍ୟୁ ସ୍ଥାନ ଓ ହୃଦୟରୁ ମନର ସୃଷ୍ଟି ଘଟେ । ନାରଦ, ମୁଁ, ତୁମେ, ଧର୍ମ, ସନକାଦି, ଶଙ୍କର ପ୍ରମୁଖ ତାଙ୍କର ମନରୁ ଜାତ ହୋଇଅଛନ୍ତି । ମୁନିଋଷି, ଦେବତା, ଅସୁର ମନୁଷ୍ୟ, ନର, ପକ୍ଷୀ, ସିଦ୍ଧଗଣ, ବିଦ୍ୟାଧର, ଚାରଣ,

ବୃକ୍ଷ, ଜଳଚର, ସ୍ଥଳଚର ଓ ଖେଚର ପ୍ରାଣିସକଳ, ଗ୍ରହ ନକ୍ଷତ୍ରରାଶି, ମେଘ, ବିଦ୍ୟୁତ୍ ଏବଂ ଭୂତ, ଭବିଷ୍ୟତ, ବର୍ତ୍ତମାନ, ଯାହା ତୁମେ ଦେଖୁଅଛ ସେ ସମସ୍ତ ସେହି ବିରାଟ ପୁରୁଷଙ୍କର ସୃଷ୍ଟି ଓ ଅଂଶ ବିଶେଷ ମାତ୍ର। ସେ ସମସ୍ତ ଜଗତ ବ୍ୟାପ୍ତ ହୋଇଅଛନ୍ତି ଓ ସେ ସମସ୍ତଙ୍କ ଅପେକ୍ଷା ଦଶାଙ୍ଗୁଳି ଅଧିକ ସ୍ଥାନରେ ବ୍ୟାପ୍ତ ଅଛନ୍ତି। ସୂର୍ଯ୍ୟ ଯେପରି ନିଜର ସୂର୍ଯ୍ୟମଣ୍ଡଳକୁ ଉଦ୍ଭାସିତ କରିବା ସଙ୍ଗେ ସଙ୍ଗେ ବହିର୍ଜଗତକୁ ଆଲୋକିତ କରିଥାନ୍ତି, ସେହିପରି ବିରାଟ ପୁରୁଷ ରୂପରେ ପ୍ରକଟିତ ଭଗବାନ ପରମେଶ୍ୱର ଅଖିଳବ୍ରହ୍ମାଣ୍ଡର ବାହ୍ୟ ଓ ଅଭ୍ୟନ୍ତର ଆଦି ସକଳ ସ୍ଥାନରେ ଅବସ୍ଥିତ ସକଳବସ୍ତୁକୁ ପ୍ରକାଶ କରୁଅଛନ୍ତି। ପରମେଶ୍ୱରଙ୍କ ମହିମା ଓ ତତ୍ତ୍ୱ ବୁଝିବା ବାସ୍ତବିକ ଅତ୍ୟନ୍ତ ଦୁରୂହ। ଭୂର୍ଲୋକ, ଭୁବର୍ଲୋକ ଓ ସ୍ୱର୍ଗଲୋକର ଊର୍ଦ୍ଧ୍ୱରେ ମହର୍ଲୋକ ଅବସ୍ଥିତ; ମହର୍ଲୋକର ଊର୍ଦ୍ଧ୍ୱରେ ଜନଲୋକ, ତପ ଓ ସତ୍ୟଲୋକ ଅବସ୍ଥିତ। ଏହି ତିନିଲୋକରେ ବ୍ରହ୍ମଚାରୀ, ବାନପ୍ରସ୍ଥାଶ୍ରମୀ ଓ ସନ୍ନ୍ୟାସୀମାନେ ଅବସ୍ଥାନ କରିଥାନ୍ତି। ଗୃହସ୍ଥମାନେ ଭୂର୍ଲୋକ, ଭୁବର୍ଲୋକ ଓ ସ୍ୱର୍ଗଲୋକରେ ଅବସ୍ଥାନ କରିଥାନ୍ତି। ଅଖିଳ ବିଶ୍ୱକୁ ବ୍ୟାପ୍ତ ହୋଇ ଅବସ୍ଥାନ କରୁଥିବା ପରମେଶ୍ୱର ଭୋଗ ଓ ମୋକ୍ଷ ଏପରି ଦକ୍ଷିଣ ଓ ଉତ୍ତର ପଥରେ ବିଚରଣ କରିଥାନ୍ତି। ଦକ୍ଷିଣ ପଥଟି କର୍ମର ପଥ ଓ ଉତ୍ତର ପଥଟି ଜ୍ଞାନର ପଥ ବୋଲି କଥିତ ଅଛି। ଭୋଗ ଓ ମୋକ୍ଷ ଲାଭ ନିମନ୍ତେ ମନୁଷ୍ୟ ଯେ କୌଣସି ପଥ ଅବଲମ୍ବନ କରୁନା କାହିଁକି, ଭଗବାନ ପରମେଶ୍ୱର ଉଭୟ ପଥର ଆଶ୍ରୟଦାତା ଅଟନ୍ତି।"

'ପରମେଶ୍ୱର ଭଗବାନ ଏ ସମସ୍ତ ଜଗତ, ପଞ୍ଚଭୂତ, ଇନ୍ଦ୍ରିୟ ସମୂହ, ସତ୍ତ୍ୱ, ରଜ, ତମ ଆଦି ଗୁଣତ୍ରୟ ଏପରି କି ବିରାଟ ପୁରୁଷଙ୍କର ମଧ୍ୟ ସୃଷ୍ଟିକର୍ତ୍ତା। ସେହି ପରମ ପୁରୁଷଙ୍କ ନାଭିପଦ୍ମରୁ ମୁଁ ଯେତେବେଳେ ଜାତ ହେଲି ସେତେବେଳେ ପରମେଶ୍ୱରଙ୍କର ଶ୍ରୀଅଙ୍ଗ ବ୍ୟତୀତ ଅନ୍ୟ କୌଣସି ବସ୍ତୁ ଦେଖିବାକୁ ପାଇଲି ନାହିଁ। ମୁଁ ଯଜ୍ଞ ଅନୁଷ୍ଠାନ କରିବାକୁ ଆଗ୍ରହୀ ହୋଇ ଯଜ୍ଞୋପକରଣରେ ପ୍ରୟୋଜନୀୟତା ଉପଲବ୍ଧି କରିବାରୁ ପରମେଶ୍ୱରଙ୍କର ସେହି ଶ୍ରୀଅଙ୍ଗରୁ ଯଜ୍ଞୋପକରଣାଦି ଅର୍ଥାତ୍ ପଶୁ, ଯୂପକାଷ୍ଠ, କୁଶ, ଯଜ୍ଞଭୂମି, ପବିତ୍ରସମୟ, ପାତ୍ର, ଧାନ୍ୟ, ପ୍ରଭୃତି ଶସ୍ୟ,

ଘୃତ, ଦୁଗ୍ଧ, ମଧୁ, ବିଭିନ୍ନ ରସ, ସୁବର୍ଣ୍ଣାଦି ତୈଜସ ଧାତୁ, ମୃତ୍ତିକା, ଜଳ, ହୋତା, ଉଦ୍‌ଗାତା, ବ୍ରହ୍ମା ଓ ଋତ୍ୱିକ ଏବଂ ସେମାନଙ୍କର କର୍ତ୍ତବ୍ୟାଦି, ଜ୍ୟୋତିଷ୍ଟୋମ ପ୍ରଭୃତି ଯଜ୍ଞର ନାମ, ସ୍ୱାହା ବଷଟ୍ ପ୍ରଭୃତି ମନ୍ତ୍ର, ଦକ୍ଷିଣାବ୍ରତ, ଦେବତାଙ୍କର ନାମ କଳ୍ପ ଓ ସଂକଳ୍ପ, ବିଷ୍ଣୁଲୋକ ଓ ଧ୍ରୁବଲୋକ ପ୍ରଭୃତି ଗନ୍ତବ୍ୟଲୋକ, ଦେବତାମାନଙ୍କର ଧ୍ୟାନ, ପ୍ରାୟଶ୍ଚିତ୍ତବିଧି ଓ କର୍ମ ସମର୍ପଣ ଆଦିକୁ ମୁଁ ସଂଗ୍ରହ କରିଥିଲି ଓ ସେହି ସଂଗୃହୀତ ଯଜ୍ଞୋପକରଣ ଦ୍ୱାରା ମୁଁ ସେହି ପରମେଶ୍ୱରଙ୍କୁ ହିଁ ଉପାସନା କରିଥିଲି । ତା’ପରେ ତୁମେ ନ’ ଭାଇ, ମରୀଚି ପ୍ରମୁଖ ଋଷିଗଣ, ଆନ୍ତରିକତାର ସହିତ ଇନ୍ଦ୍ର ପ୍ରମୁଖ ସାକାର ଦେବତା ଓ ନିରାକାର ବ୍ରହ୍ମରୂପେ ପରମେଶ୍ୱରଙ୍କୁ ଆରାଧନା କରିଥିଲ । ଉପଯୁକ୍ତ ସମୟରେ ମନୁଗଣ, ଅନ୍ୟାନ୍ୟ ଋଷିଗଣ, ପିତୃଗଣ, ଦେବଗଣ, ଦୈତ୍ୟଗଣ ଓ ମନୁଷ୍ୟଗଣ ବହୁ ଯଜ୍ଞ ଓ ଉପାସନା କରି ପରମେଶ୍ୱରଙ୍କୁ ଆରାଧନା କରିଅଛନ୍ତି । ଭଗବାନ ସ୍ୱୟଂ ନିର୍ଗୁଣ ହୋଇମଧ୍ୟ ଅଖିଳ ଜଗତର ସୃଷ୍ଟି-ସ୍ଥିତି-ଲୟ ସାଧନ ନିମନ୍ତେ ତ୍ରିଗୁଣମାୟାକୁ ସ୍ୱୀକାର କରିଅଛନ୍ତି । ବିଶ୍ୱନିୟନ୍ତା ନାରାୟଣଙ୍କଠାରେ ତାଙ୍କର ସମସ୍ତ ସୃଷ୍ଟି ଅବସ୍ଥିତ । ସେହି ପରମେଶ୍ୱର ନାରାୟଣଙ୍କ ଦ୍ୱାରା ମୁଁ ନିୟୋଜିତ ହୋଇ ବିଶ୍ୱ ସୃଷ୍ଟି କରିଥାଏ । ରୁଦ୍ର ବିଶ୍ୱ ସଂହାର କରିଥାନ୍ତି ଏବଂ ସୃଷ୍ଟି ସ୍ଥିତି-ଲୟକାରୀ ଶକ୍ତିର ଅଧିକାରୀ ସ୍ୱୟଂ ପରମେଶ୍ୱର ବିଷ୍ଣୁରୂପରେ ବିଶ୍ୱବ୍ରହ୍ମାଣ୍ଡକୁ ପାଳନ କରିଥାନ୍ତି । ସମଗ୍ର ବିଶ୍ୱର ସକଳ କାର୍ଯ୍ୟ ଓ କାରଣ ଭଗବାନଙ୍କ-ଠାରୁ ଭିନ୍ନ ନୁହେଁ । ହେ ନାରଦ, ମୁଁ ସମସ୍ତ ବେଦଶାସ୍ତ୍ରରେ ଅଭିଜ୍ଞ ହୋଇ ମଧ୍ୟ, ସମସ୍ତ ତପସ୍ୟା ଆଚରଣ କରିଥିଲେ ସୁଦ୍ଧା ଓ ସମସ୍ତ ପ୍ରଜାପତିଙ୍କ ଦ୍ୱାରା ପରିପୂଜିତ ହେଉଥିଲେ ମଧ୍ୟ ଏବଂ ଏକାଗ୍ରଚିତ୍ତରେ ନିରବଚ୍ଛିନ୍ନଭାବରେ ଯୋଗମଗ୍ନ ଥାଇ ମଧ୍ୟ ଯାହାଙ୍କଠାରୁ ମୁଁ ଜାତ ହୋଇଅଛି, ସେହି ପରମେଶ୍ୱରଙ୍କର ପ୍ରକୃତ ସ୍ୱରୂପକୁ ଯଥାର୍ଥରେ ଜାଣିବାକୁ ସମର୍ଥ ହୋଇପାରିଲି ନାହିଁ । ଅସୀମ ଆକାଶ ଯେପରି ନିଜର ସୀମାର ସନ୍ଧାନ ପାଏ ନାହିଁ, ଅନୁରୂପ ଭାବରେ କହିଲେ, ପରମେଶ୍ୱର ମଧ୍ୟ ସ୍ୱୟଂ ନିଜର ମାୟାଶକ୍ତିର ସୀମା କଳନା କରିପାରନ୍ତି ନାହିଁ, ସେତେ-ବେଳେ ଅନ୍ୟର କଥା କ’ଣ କହିବା ? ମୁଁ ସେହି ଅନନ୍ତ, ଅସୀମ, କଳ୍ପନାତୀତ, ପରମଙ୍ଗଳମୟ ଓ ଭବବନ୍ଧନଚ୍ଛେଦନକାରୀ ଶାନ୍ତିଦାତା

ପରମେଶ୍ୱରଙ୍କ ଶ୍ରୀଚରଣରେ ପ୍ରଣାମ କରୁଛି । ମୁଁ ସୃଷ୍ଟିକର୍ତ୍ତା ହୋଇ ମଧ୍ୟ ଯେତେବେଳେ ପରମେଶ୍ୱରଙ୍କର ସ୍ୱରୂପ ବୁଝିପାରି ନାହିଁ ଓ ତୁମ୍ଭ-ମାନଙ୍କ ପରି ଋଷିମାନେ ତଥା ରୁଦ୍ର ଯାହାଙ୍କର ସ୍ୱରୂପ ବୁଝିବାକୁ ଅକ୍ଷମ ଭଗବାନଙ୍କର ସ୍ୱରୂପ ବୁଝିବା ସମ୍ପର୍କରେ ଅନ୍ୟ ଦେବଦେବୀଙ୍କର କଥା କ'ଣ କହିବ ? ଭଗବାନଙ୍କ ମାୟାଶକ୍ତି ବଳରେ ଏହି ଅଖିଳ ଜଗତ ଭଗବାନଙ୍କ ଦ୍ୱାରା ସୃଷ୍ଟି ହୋଇଅଛି । ଭଗବାନଙ୍କ ମାୟାରେ ମୋହିତ ହୋଇ ଆମ୍ଭେମାନେ ନିଜ ନିଜର ଜ୍ଞାନ ଓ ବୁଦ୍ଧି ଅନୁସାରେ ଏହାହିଁ ଉପଲବ୍ଧି କରିଅଛନ୍ତି ମାତ୍ର ।

'ମୁଁ ଭଗବାନଙ୍କର ବିଭିନ୍ନ ଲୀଳା କୀର୍ତ୍ତନ କରୁଥିଲେ ମଧ୍ୟ ତାଙ୍କର ଯଥାର୍ଥ ସ୍ୱରୂପକୁ ହୃଦୟଙ୍ଗମ କରିପାରି ନାହିଁ । ମୁଁ ସେହି ଅଚିନ୍ତ୍ୟମୟ ପରମେଶ୍ୱରଙ୍କୁ ବାରମ୍ବାର ପ୍ରଣାମ କରୁଅଛି । ଯେଉଁ-ମାନଙ୍କର କାୟ, ମନ ଓ ଇନ୍ଦ୍ରିୟ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ, ସେହି ମୁନିଋଷି-ମାନେ ନିର୍ବିକାର, ସନ୍ଦେହମୁକ୍ତ, ସତ୍ୟ, ଅନାଦି, ଅନନ୍ତ ଜନ୍ମନାଶ-ରହିତ, ନିର୍ଗୁଣ, ନିତ୍ୟସ୍ୱରୂପ ଭଗବାନଙ୍କୁ ଜାଣି ପାରିବେ । ଅଶୁଦ୍ଧଚିତ୍ତ ଓ ଅଜ୍ଞ ଲୋକମାନଙ୍କର କୁତର୍କ ଦ୍ୱାରା ସେହି ଶୁଦ୍ଧ ଚୈତନ୍ୟମୟ ତତ୍ତ୍ୱକୁ ଧାରଣା କରିବା ଧୃଷ୍ଟତା ମାତ୍ର । ପ୍ରକୃତିର ପ୍ରବର୍ତ୍ତକ ସହସ୍ରଶୀର୍ଷା ପୁରୁଷ ହିଁ ପରମେଶ୍ୱର ନାରାୟଣଙ୍କର ପ୍ରଥମ ଅବତାର ଏବଂ ଅନ୍ୟ ଯାହା କିଛି ଦେଖୁଛ, ଶୁଣୁଛ, ଜାଣୁଛ ଏବଂ ଅନୁଭବ କରୁଛ, ସେ ସମସ୍ତ ସେହି ପରମେଶ୍ୱରଙ୍କର ବିଭୂତି ମାତ୍ର । ପରମେଶ୍ୱର ନାରାୟଣଙ୍କର ସଦା କଲ୍ୟାଣପ୍ରଦ ଅବତାର ଲୀଳା ମୁଁ କୀର୍ତ୍ତନ କରୁଅଛି । ତାହା ତୁମେ ଭକ୍ତିପ୍ଲୁତ ହୃଦୟରେ ଶ୍ରବଣ କର ।'

ଏହା କହି ଭଗବାନ ବ୍ରହ୍ମା ଭଗବାନଙ୍କର ବିଭିନ୍ନ ଲୀଳା ନାରଦଙ୍କ ନିକଟରେ ବର୍ଣ୍ଣନା କରିବାକୁ ଲାଗିଲେ ।

# ଭଗବାନଙ୍କର ଅବତାର-ଲୀଳା

ବ୍ରହ୍ମା କହିଲେ, 'ନାରଦ, ଭଗବାନ ବିଭିନ୍ନ ସମୟରେ ବିଭିନ୍ନ ରୂପରେ ପ୍ରକଟିତ ହୋଇ ଦୁଷ୍ଟମାନଙ୍କୁ ଦଳନ ଓ ସଂସାରର ଦୁଃଖ ହରଣ କରି ସୃଷ୍ଟିର ପାଳନ ଓ ସଂରକ୍ଷଣ କାର୍ଯ୍ୟ ଯେପରି ସୁଚାରୁରୂପେ ସମ୍ପନ୍ନ କରିଅଛନ୍ତି, ଭଗବାନଙ୍କର ସେହି ଲୀଳାର କଥା ମୁଁ ବର୍ଣ୍ଣନା କରୁଅଛି, ଶ୍ରବଣ କର ।'

ଏହା କହି ଭଗବାନଙ୍କର ବିଭିନ୍ନ ଲୀଳାର କଥା ବ୍ରହ୍ମା ଗୋଟିଏ ପରେ ଗୋଟିଏ ବର୍ଣ୍ଣନା କରିବାକୁ ଲାଗିଲେ ।

'ଜଳ ମଧ୍ୟରେ ସମଗ୍ର ପୃଥିବୀ ନିମଗ୍ନ ଥିଲାବେଳେ, ଅନନ୍ତ ଜଳରାଶି ମଧ୍ୟରୁ ପୃଥିବୀକୁ ଉଦ୍ଧାର କରିବା ନିମନ୍ତେ ସ୍ୱୟଂ ଭଗବାନ ଯଜ୍ଞ-ବରାହ ରୂପରେ ଅବତୀର୍ଣ୍ଣ ହୋଇଥିଲେ । ସେହି ସମୟରେ ସମୁଦ୍ର ମଧ୍ୟରେ ହିରଣ୍ୟାକ୍ଷ ନାମକ ଏକ ପରାକ୍ରମୀ ଦୈତ୍ୟ ବାସ କରୁଥିଲା ଏବଂ ପୃଥିବୀର ଉଦ୍ଧାର କାର୍ଯ୍ୟରେ ହିରଣ୍ୟାକ୍ଷ ବାଧା ଦେବାରୁ ଯଜ୍ଞ-ବରାହରୂପୀ ଭଗବାନ ନିଜର ସୁତୀକ୍ଷ୍ଣ ଦନ୍ତରେ ଦୈତ୍ୟ ହିରଣ୍ୟାକ୍ଷକୁ ବିଦୀର୍ଣ୍ଣ କରି ପୃଥିବୀକୁ ଜଳ ମଧ୍ୟରୁ ଉତ୍ତୋଳିତ କରିଥିଲେ ।

ରୁଚି ଜନୈକ ପ୍ରଜାପତି । ତାଙ୍କର ପତ୍ନୀଙ୍କର ନାମ ଆକୂତି । ସେହି ପ୍ରଜାପତି ଦମ୍ପତିଙ୍କର ପୁତ୍ର ରୂପରେ ଭଗବାନ ଆବିର୍ଭୂତ ହୋଇ-ଥିଲେ । ତାଙ୍କର ନାମ ଥିଲା ସୁଯଜ୍ଞ । ସେ ନିଜର ପତ୍ନୀ ଦକ୍ଷିଣାଙ୍କ ଗର୍ଭରୁ ସୁଷମ ନାମକ ଦେବତାଙ୍କୁ ସୃଷ୍ଟି କରିଥିଲେ ଓ ସଂସାରର ବହୁ ଦୁଃଖକୁ ହରଣ କରିଥିଲେ; ସେଥିପାଇଁ ସେ 'ହରି' ନାମରେ ପରିଚିତ ହୋଇଥିଲେ ।

ମହର୍ଷି ଅତ୍ରି ନିଜର ପୁତ୍ର ରୂପରେ ଭଗବାନଙ୍କୁ ଲାଭ କରିବାକୁ କାମନା କରି ବହୁ କଠୋର ତପସ୍ୟା ଓ ବ୍ରତ ଆଚରଣ କରିଥିଲେ ।

ମହର୍ଷିଙ୍କ ପ୍ରତି ପ୍ରସନ୍ନ ହୋଇ ଭଗବାନ କହିଥିଲେ, 'ମୁଁ ତୁମ ପ୍ରତି ପ୍ରସନ୍ନ ହୋଇଅଛି, ତେଣୁ ତୁମର କାମନାନୁସାରେ ମୁଁ ନିଜକୁ ତୁମକୁ ଦତ୍ତ କଲି ।' ମହର୍ଷି ଅତ୍ରିଙ୍କର ପୁତ୍ର ରୂପରେ ଭଗବାନ ଜାତ ହେବାରୁ ତାଙ୍କର ନାମ ହୋଇଥିଲା ଦତ୍ତାତ୍ରେୟ । ଏହି ଦତ୍ତାତ୍ରେୟଙ୍କ ପବିତ୍ର ଚରଣ କମଳର ପରାଗ ସ୍ପର୍ଶରେ ରାଜା ଯଦୁ ଓ ସହସ୍ରାର୍ଜ୍ଜୁନ ପବିତ୍ର ହୋଇ ସିଦ୍ଧି ଓ ମୋକ୍ଷ ଲାଭ କରିଥିଲେ ।

ଜଗତ ସୃଷ୍ଟିର ପ୍ରାରମ୍ଭରେ ମୁଁ ବିବିଧ ଲୋକ ସୃଷ୍ଟି କରିବା ନିମନ୍ତେ ତପସ୍ୟାଚରଣ କରିଥିଲି ଏବଂ ମୋର ସେହି ତପସ୍ୟାରେ ପ୍ରସନ୍ନ ହୋଇ ସ୍ୱୟଂ ଭଗବାନ ଚତୁଃସନ ଅର୍ଥାତ୍ ସନତ୍କୁମାର, ସନକ, ସନନ୍ଦନ ଓ ସନାତନ ରୂପରେ ଅବତୀର୍ଣ୍ଣ ହୋଇଥିଲେ ଏବଂ ପ୍ରଳୟ ପରେ ଜଗତରୁ ଆତ୍ମତତ୍ତ୍ୱ ଲୋପ ପାଇବାରୁ ସେ ଋଷିମାନଙ୍କ ହୃଦୟରେ ଆତ୍ମତତ୍ତ୍ୱର ବୀଜ ବପନ କରିଥିଲେ; ତଦ୍ଦ୍ୱାରା ପ୍ରଳୟ ସତ୍ତ୍ୱେ ଜଗତରେ ତତ୍ତ୍ୱଜ୍ଞାନର ଧାରା ଅକ୍ଷୁଣ୍ଣ ରହିଥିଲା ।

ଧର୍ମଙ୍କର ପତ୍ନୀ ଦକ୍ଷ-କନ୍ୟା ମୂର୍ତ୍ତିଙ୍କର ଗର୍ଭରୁ ନର ଓ ନାରାୟଣ ରୂପରେ ଭଗବାନ ପ୍ରକଟିତ ହୋଇଥିଲେ ।

ବ୍ରାହ୍ମଣମାନଙ୍କର ଅଭିଶାପ ରୂପକ ବଜ୍ରରେ ରାଜା ବେଣ ପୌରୁଷ ଓ ଐଶ୍ୱର୍ଯ୍ୟଚ୍ୟୁତ ହୋଇ ନରକଗାମୀ ହେବାବେଳେ, ଋଷି-ମାନଙ୍କର ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ଭଗବାନ ରାଜାବେଣଙ୍କର ପୁତ୍ର ରୂପରେ ଆବିର୍ଭୂତ ହୋଇ ପିତାଙ୍କୁ ନରକରୁ ଉଦ୍ଧାର କରିଥିଲେ । ସେହି ଅବତାରରେ ଭଗବାନଙ୍କର ନାମ ଥିଲା ପୃଥୁ । ସେ ପୁତ୍ର ନାମକୁ ସାର୍ଥକ କରିବା ସଙ୍ଗେ ସଙ୍ଗେ ଜଗତର ଅଶେଷ କଲ୍ୟାଣ ସାଧନ କରିଥିଲେ ଏବଂ ପୃଥିବୀକୁ ଦୋହନ କରି ବହୁ ଧନ ଧାନ୍ୟ ସୃଷ୍ଟି କରିଥିଲେ ।

ରାଜା ନାଭିଙ୍କ ପତ୍ନୀ ସୁଦେବୀଙ୍କ ଗର୍ଭରୁ ଭଗବାନ ଋଷଭ ରୂପରେ ଜାତ ହୋଇଥିଲେ । ଏହି ଅବତାରରେ ଭଗବାନ ସମସ୍ତ ଆସକ୍ତି ପରିତ୍ୟାଗ କରି ଓ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରି ଆତ୍ମସ୍ୱରୂପରେ ଅବସ୍ଥାନ କରି ଯୋଗଚର୍ଯ୍ୟାରେ କାଳାତିପାତ କରିଥିଲେ; ସେଥିପାଇଁ ଭଗବାନଙ୍କର ଏହି ଅବତାରକୁ ଋଷିମାନେ 'ପରମହଂସ' ଅବତାର ବୋଲି ନାମିତ କରି ଅଛନ୍ତି ।

ମୋ.ର ଏକ ଅଙ୍ଗରୁ ସ୍ୱୟଂ ଭଗବାନ ସ୍ୱର୍ଣ୍ଣୋଜ୍ଜ୍ୱଳକାନ୍ତି ଧାରଣ କରି ହୟଗ୍ରୀବ ରୂପରେ ଅବତୀର୍ଣ୍ଣ ହୋଇ ଥିଲେ ଏବଂ ନିଜର ନାସିକାରୁ ମଙ୍ଗଳମୟ ବେଦବାକ୍ୟ ପ୍ରକଟିତ କରିଥିଲେ ।

ଯେତେବେଳେ ଅଖିଳ ଜଗତ ପ୍ରଳୟ ଜଳରେ ନିମଜ୍ଜିତ ହେଲା, ସେତେବେଳେ ଭଗବାନ ମତ୍ସ୍ୟରୂପ ଧାରଣ କରି ମୋ ମୁଖରୁ ଜଳରେ ନିପତିତ ସକଳ ବେଦକୁ ଉଦ୍ଧାର କରି ନୌକାରେ ସ୍ଥାପନ କରିଥିଲେ ଓ ଜୀବଜଗତର ଆଶ୍ରୟଦାତା ରୂପରେ ସେହି ପ୍ରଳୟକାଳୀନ ନୌକାକୁ ରକ୍ଷାକରି ପ୍ରଳୟ ଜଳରେ ସନ୍ତରଣ କରିଥିଲେ ।

ଅମୃତ ଲାଭ ଆଶାରେ ଦେବତା ଓ ଅସୁରମାନେ କ୍ଷୀର ସମୁଦ୍ର ମନ୍ଥନ କଲାବେଳେ ଭଗବାନ କଚ୍ଛପ ରୂପ ଧାରଣ କରି ମନ୍ଥନ କାର୍ଯ୍ୟରେ ବ୍ୟବହୃତ ହେଉଥିବା ମନ୍ଦର ପର୍ବତ ପରି ଏକ ବିଶାଳ ମନ୍ଥନ ଦଣ୍ଡକୁ ନିଜର ପୃଷ୍ଠରେ ଧାରଣ କରିଥିଲେ । ତାଙ୍କର ପୃଷ୍ଠଦେଶରେ ଏପରି ଏକ ବିଶାଳକାୟ ପର୍ବତ ସତତ ପ୍ରବଳବେଗରେ ଘୂର୍ଣ୍ଣିତ ହେଉଥିଲେ ମଧ୍ୟ ସେ ତହିଁରେ କଷ୍ଟେଷଣଜନିତ ସାମାନ୍ୟ ପୀଡ଼ା ଲାଭ କରିବା ପରିବର୍ତ୍ତେ ପୃଷ୍ଠ କଣ୍ଡୁୟନ-ସୁଖ ଅନୁଭବ କରି ମହାଆନନ୍ଦରେ ନିଦ୍ରାଭିଭୂତ ହୋଇ ପଡ଼ିଥିଲେ ।

ଦୈତ୍ୟମାନଙ୍କର ପ୍ରତାପରେ ବିଶେଷ କରି ଦୈତ୍ୟପତି ହିରଣ୍ୟକଶିପୁର ଅତ୍ୟାଚାରରେ ଦେବତାମାନେ ଅତ୍ୟନ୍ତ ଭୟଭୀତ ହୋଇ ପଡ଼ିଥିବାବେଳେ, ଦେବତାମାନଙ୍କୁ ଭୟରୁ ରକ୍ଷାକରିବା ନିମନ୍ତେ ଭଗବାନ ଭୟଙ୍କର ନରସିଂହ ମୂର୍ତ୍ତି ଧାରଣ କରିଥିଲେ ଏବଂ ପରେ ନିଜ ଜଙ୍ଘ ଉପରେ ହିରଣ୍ୟକଶିପୁକୁ ପକାଇ ନିଜର ସୁତୀକ୍ଷ୍ଣ ନଖ ଦ୍ୱାରା ଦୈତ୍ୟର ଉଦରକୁ ବିଦୀର୍ଣ୍ଣ କରି ସଂହାର କରିଥିଲେ ।

ଏକ ବିରାଟ ଜଳାଶୟରେ ଏକ ଭୟାନକ କୁମ୍ଭୀର ରହିଥିଲା । ଦିନେ ହସ୍ତୀମାନଙ୍କର ଦଳପତି ଗଜରାଜ ସେହି ଜଳାଶୟରେ ପ୍ରବେଶ କରି ସ୍ନାନ ଓ ଜଳସେବନ କରୁଥିବା ବେଳେ, କୁମ୍ଭୀରଟି ଗଜରାଜର ପାଦକୁ କାମୁଡ଼ି ଧରିବାରୁ ଗଜରାଜ ଅତ୍ୟନ୍ତ ଭୟଭୀତ ଓ ବିଚଳିତ ହୋଇ ପଡ଼ିଲା ଏବଂ ସେହି ବିପଦରୁ ଉଦ୍ଧାର ଲାଭ କରିବା ନିମନ୍ତେ ନିଜର ଶୁଣ୍ଢରେ ଗୋଟିଏ

ପଦ୍ମଫୁଲ ଉତ୍ତୋଳିତ କରି ଭଗବାନଙ୍କ ଉଦ୍ଦେଶ୍ୟରେ ତାହା ଉତ୍ସର୍ଗ କରି ପ୍ରାର୍ଥନା କରିଥିଲା, "ହେ ଆଦିପୁରୁଷ, ହେ ଅଖିଳ ଜଗତର ଅଧିପତି, ହେ ଆର୍ତ୍ତତ୍ରାଣ, ଆର୍ତ୍ତର ଦୁଃଖ ଶୁଣିବା ମାତ୍ରେ ତୁମେ ତାକୁ କଲ୍ୟାଣ ପ୍ରଦାନ କରିଥାଅ । ତେଣୁ ହେ ଦୟାମୟ, ମୋତେ ଏହି ଦାରୁଣ ବିପଦରୁ ରକ୍ଷା କର ।" ଗଜରାଜର ସେହି ଆକୁଳ ପ୍ରାର୍ଥନା ଶ୍ରବଣ କରି କରୁଣାମୟ ଭଗବାନ ହସ୍ତରେ ଚକ୍ର ଧାରଣ କରି ଓ ଗରୁଡ଼ ପୃଷ୍ଠରେ ଆରୋହଣ କରି ସେହି ସ୍ଥାନରେ ଉପସ୍ଥିତ ହେଲେ ଏବଂ ନିଜର ଚକ୍ର ଦ୍ୱାରା କୁମ୍ଭୀରର ମସ୍ତକକୁ ଛିନ୍ନ କରି ଗଜରାଜକୁ ବିପଦରୁ ଉଦ୍ଧାର କରିଥିଲେ ।

ଭଗବାନ ବାମନ ରୂପ ଧାରଣ କରି ଦୈତ୍ୟରାଜ ବଳୀଙ୍କଠାରୁ ତ୍ରିପାଦ ଭୂମି ଭିକ୍ଷା କରିବା ଛଳରେ ସମସ୍ତ ରାଜ୍ୟ ହରଣ କରିଥିଲେ ।

ନାରଦ, ଭଗବାନ ହଂସ ରୂପ ଧାରଣ କରି ତୁମକୁ ଭକ୍ତିଯୋଗ ଓ ଜ୍ଞାନ ଯୋଗର ଉପଦେଶ ପ୍ରଦାନ କରିଥିଲେ ।

ଚତୁର୍ଦ୍ଦଶ ମନ୍ୱନ୍ତରରେ ଭଗବାନ ମନୁ ରୂପରେ ଜନ୍ମଗ୍ରହଣ କରି ନିଜର ଅଖଣ୍ଡ ପ୍ରଭାବ ପ୍ରକାଶ କରିଥିଲେ ଏବଂ ଦୁଷ୍ଟ ରାଜାମାନଙ୍କୁ ଉପଯୁକ୍ତ ଶାସ୍ତି ପ୍ରଦାନ କରି ନିଜର ମଧୁର କୀର୍ତ୍ତିକୁ ମହର୍ଲୋକ, ଜନଲୋକ, ତପୋଲୋକ ଓ ସତ୍ୟଲୋକ ପର୍ଯ୍ୟନ୍ତ ବିସ୍ତୃତ କରିଥିଲେ ।

ଭଗବାନ ଧନ୍ୱନ୍ତରି ରୂପରେ ଅବତୀର୍ଣ୍ଣ ହୋଇ ଲୋକମାନଙ୍କୁ ନାନା ବିଷମ ରୋଗରୁ ଆରୋଗ୍ୟ କରିଥିଲେ ଏବଂ ଜଗତର ମଙ୍ଗଳ ନିମନ୍ତେ ଆୟୁର୍ବେଦ ପ୍ରଚାର କରିଥିଲେ । ଧନ୍ୱନ୍ତରିଙ୍କ ପ୍ରସାଦରୁ ଦେବତାମାନେ ଅନନ୍ତ ଆୟୁର ଅଧିକାରୀ ହୋଇ ପାରିଥିଲେ ।

କ୍ଷତ୍ରିୟମାନେ ଗର୍ବ ଓ ଅହଙ୍କାରର ବଶବର୍ତ୍ତୀ ହୋଇ ବ୍ରାହ୍ମଣମାନଙ୍କୁ ଅବମାନନା କରିବାକୁ ଲାଗିଲେ ଏବଂ ବେଦ ନିର୍ଦ୍ଦେଶିତ ମାର୍ଗର ମଧ୍ୟ ବିରୁଦ୍ଧାଚରଣ କଲେ । କ୍ଷତ୍ରିୟମାନଙ୍କ ଅତ୍ୟାଚାରରେ ପୃଥିବୀ ନିପୀଡ଼ିତ ହେଲା । କ୍ଷତ୍ରିୟମାନଙ୍କୁ ଉପଯୁକ୍ତ ଶାସ୍ତି ପ୍ରଦାନ କରିବା ନିମନ୍ତେ ଭଗବାନ ଅତ୍ୟନ୍ତ ତେଜସ୍ୱୀ ପରଶୁରାମ ରୂପରେ ଅବତୀର୍ଣ୍ଣ ହୋଇ ଏକୋଇଶି ଥର ପୃଥିବୀକୁ ପରଶୁ ସାହାଯ୍ୟରେ ନିଃକ୍ଷତ୍ରିୟ କରିଥିଲେ ।

ପରମ କରୁଣ ମୟ ଭଗବାନ ପ୍ରସନ୍ନ ଶତ୍ରୁଙ୍କ ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କ ସହିତ ଇକ୍ଷ୍ୱାକୁବଂଶରେ ରାମ ରୂପରେ ଅବତୀର୍ଣ୍ଣ ହୋଇଥିଲେ ଏବଂ ତାଙ୍କ ସହ ରାକ୍ଷସ ରାବଣର ବୈରିତା ସୃଷ୍ଟିତ ହେବାରୁ ସେ ରାବଣର ନିଧନ ସାଧନ କରିଥିଲେ ।

ଅସୁରମାନଙ୍କ ଆଚରଣ ଓ ଅତ୍ୟାଚାରରେ ଧରଣୀ ଉତ୍ପୀଡ଼ିତ ହେବାରୁ ଧରଣୀର ଦୁଃଖ ଲାଘବ କରିବା ନିମନ୍ତେ ଭଗବାନ ବଳରାମଙ୍କ ସହିତ କୃଷ୍ଣ ରୂପରେ ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇ ଅଲୌକିକ, ଐଶ୍ୱର୍ଯ୍ୟ ତଥା ମାଧୁର୍ଯ୍ୟମଣ୍ଡିତ ବହୁ ଲୀଳା ପ୍ରକାଶ କରିଥିଲେ ଏବଂ ସେହି ଅବତାରରେ ପୂତନା ନିଧନ ଠାରୁ ଆରମ୍ଭ କରି ଦୈତ୍ୟ ଶଙ୍ଖଚୂଡ଼ ପର୍ଯ୍ୟନ୍ତ ଦୁଷ୍ଟମାନଙ୍କୁ ଦମନ କରିଥିଲେ ।

କାଳକ୍ରମେ ଯୁଗ ପ୍ରଭାବରେ ମନୁଷ୍ୟମାନଙ୍କର ବୁଦ୍ଧି ଓ ସ୍ମୃତି ଶକ୍ତି ହ୍ରାସପ୍ରାପ୍ତ ହେଲେ ଏବଂ ନିଜର ସୃଷ୍ଟ ବେଦ ସମୂହକୁ ସମ୍ପୂର୍ଣ୍ଣ ରୂପେ ଅଧ୍ୟୟନ କରିବା ଓ ଅବଗତ ହେବା ମନୁଷ୍ୟଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ିଲେ, ଭଗବାନ ମହର୍ଷି ପରାଶରଙ୍କ ଔରସରେ ସତ୍ୟବତୀସୁତ ରୂପରେ ବ୍ୟାସ ନାମରେ ଜନ୍ମଗ୍ରହଣ କରିଥିଲେ ଏବଂ ବେଦକୁ ଚାରି-ଭାଗରେ ବିଭକ୍ତ କରିଥିଲେ ।

ଅସୁରମାନେ ବେଦମାର୍ଗରେ ସାହାଯ୍ୟ ନେଇ ମୟଦାନବ ନିର୍ମିତ ଅଦୃଶ୍ୟ ନଗରୀରେ ବାସକରି ବହୁ ନଗରୀ ତଥା ବହୁ ଲୋକଙ୍କୁ ଧ୍ୱଂସ କରିବାକୁ ଚେଷ୍ଟା କଲେ, ଭଗବାନ ଲୋଭନୀୟ ବେଶ ଧାରଣ କରି ବୁଦ୍ଧ ରୂପରେ ଆବିର୍ଭୂତ ହୋଇ ବହୁ ଉପଧର୍ମର କଥା କହିବେ ।

ଯେତେବେଳେ ଧାର୍ମିକମାନଙ୍କ ଗୃହରୁ ମଧ୍ୟ ହରିକଥାର ଆଦର ଓ ଆଲୋଚନା ଲୋପ ପାଇଯିବ, ବ୍ରାହ୍ମଣମାନେ ପାଷାଣ୍ଡ ପରି ଜୀବନ ଯାପନ କରିବେ, ଶୂଦ୍ରମାନେ ରାଜ୍ୟଶାସନ କରିବେ, ଯେତେବେଳେ ସ୍ୱାହା, ସ୍ୱଧା ଓ ବଷଟ୍ ଆଦି ମନ୍ତ୍ର ଆଉ ଉଚ୍ଚାରିତ ହେବ ନାହିଁ, ସେହି କଳିଯୁଗର ଶେଷରେ ଭଗବାନ କଳ୍କୀ ରୂପରେ ଆବିର୍ଭୂତ ହୋଇ କଳିଯୁଗର ଶାସନକାରୀ ହେବେ ।

ନାରଦ, ଜଗତରେ ଯାହା ଦେଖୁଛ, ଶୁଣୁଛ ଓ ଅନୁଭବ କରୁଛ, ସେ ସମସ୍ତ ଆଦି-ଅନ୍ତହୀନ ଭଗବାନଙ୍କ ଅନନ୍ତ ଲୀଳାର ବିସ୍ତାର ମାତ୍ର । ଯେଉଁ ଭଗବାନ ନିଜର ଚରଣ ଚାଳନା ଦ୍ୱାରା ସମସ୍ତ ଜଗତ ଓ ପ୍ରକୃତି ଠାରୁ ସତ୍ୟଲୋକ ପର୍ଯ୍ୟନ୍ତ ବିସ୍ତୃତ ଅଖିଳ ଲୋକକୁ ପ୍ରକମ୍ପିତ କରିଅଛନ୍ତି, ସେହି ଭଗବାନ ବିଷ୍ଣୁଙ୍କର ଅନନ୍ତ ମହିମା କଳନା କରିବା ସହଜ ନୁହେଁ । ପୃଥିବୀର ଧୂଳିକଣାକୁ ଗଣନା କରିବା ହୁଏତ ସମ୍ଭବ ହୋଇପାରେ; କିନ୍ତୁ ଭଗବାନଙ୍କର ଅସଂଖ୍ୟ ଗୁଣରାଶିକୁ ସଠିକ ନିର୍ଣ୍ଣୟ କରି ଯଥାର୍ଥ ଭାବେ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଭଗବାନଙ୍କର ଅପାର କରୁଣା ପ୍ରକାଶିତ ହେଲେ ମନୁଷ୍ୟ ପକ୍ଷରେ ଭଗବତ୍ ମାୟାର ବନ୍ଧନକୁ ଅତିକ୍ରମ କରିବା ସମ୍ଭବ ହୋଇଥାଏ ଏବଂ ଶ୍ୱାନଶୃଗାଳଙ୍କ ଭକ୍ଷଣଯୋଗ୍ୟ ଏହି ମର ଶରୀରରୁ 'ମୁଁ' 'ମୋର' ଆଦି ଅହଙ୍କାର ଭାବ ଲୋପପାଇଥାଏ, ନ ଭୁବା ନୁହେଁ । ଜଗତର ସକଳ କାର୍ଯ୍ୟ ଓ କାରଣ ଭଗବାନଙ୍କ ସହିତ ଅଭିନ୍ନ ସୂତ୍ରରେ ଚିରଗ୍ରଥିତ । ସମସ୍ତ ଜଗତ ଭଗବାନଙ୍କର ଆଶ୍ରିତ; କିନ୍ତୁ ଭଗବାନ ଜଗତଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ସେ ଚୈତନ୍ୟ ଓ ଆନନ୍ଦମୟ । ଭଗବାନ ମୋତେ ଚାରିଗୋଟି ଶ୍ଳୋକ ମାଧ୍ୟମରେ ଯେଉଁ ଚତୁଃଶ୍ଳୋକୀ କଥା କହିଥିଲେ, ତାହା ହିଁ ଭାଗବତ ଶାସ୍ତ୍ର ଏବଂ ଭଗବାନଙ୍କ ବିଭୂତିର ସଂକ୍ଷେପ ପ୍ରକାଶ ମାତ୍ର । ତୁମେ ଏହାକୁ ବିସ୍ତୃତ ଭାବରେ ପ୍ରକାଶ ଓ ପ୍ରଚାର କର । ଭଗବାନଙ୍କର ଅନୁପମ ଅମୃତତୁଲ୍ୟ ଲୀଳାରେ ନିତ୍ୟ ଆଗ୍ରହଶୀଳ ବ୍ୟକ୍ତି ଯେ ଭବମାୟାପାଶରୁ ମୁକ୍ତ, ଏହା କହିବା ବାହୁଲ୍ୟମାତ୍ର ।



# ଭାଗବତର ବିଭିନ୍ନ ଲକ୍ଷଣ

ଶୁକଦେବଙ୍କ ମୁଖରୁ ପରମ ପବିତ୍ର ଭାଗବତ କଥା ପରୀକ୍ଷିତ ଶୁଣୁଥିଲେ । ଏକ ସମୟରେ ପରୀକ୍ଷିତ କହିଲେ, 'ହେ ସର୍ବବିଦ୍ୟାବିଶାରଦ ମୁନି, ଭଗବାନ ବ୍ରହ୍ମଙ୍କଠାରୁ ଚତୁଃଶ୍ଲୋକୀ ଭାଗବତ ଶ୍ରବଣ କଲାପରେ ଦେବର୍ଷି ନାରଦ ଗୁଣାତୀତ ଭଗବାନଙ୍କ ସମ୍ପର୍କରେ ଯାହା ଯାହା କଲେ, ସେ ସମସ୍ତ କଥା ବିସ୍ତାରିତ ଭାବେ ଶୁଣିବାକୁ ଇଚ୍ଛା ହେଉଅଛି । ହେ ମହାଭାଗ, ଭଗବାନଙ୍କର ବିଶ୍ୱମଙ୍ଗଳକାରୀ ପରମ ଅଲୌକିକ ଲୀଳାକୁ ମୋ ନିକଟରେ ଆପଣ ପ୍ରକାଶ କରନ୍ତୁ, ଯେପରି ସମସ୍ତ ବିଷୟ ଓ ଏହି ଶରୀର ଆଦି ପାର୍ଥିବ ବସ୍ତୁରୁ ସକଳ ଆସକ୍ତି ପରିତ୍ୟାଗ କରିଥିବା ମୋର ମନକୁ ଜଗତର ଆତ୍ମା ଭଗବାନଙ୍କ ଠାରେ ନିବେଶ କରି ଚରମ ଆନନ୍ଦରେ ମୁଁ ଦେହ ତ୍ୟାଗ କରିପାରିବି । ଯେଉଁମାନେ ପରମ ଶ୍ରଦ୍ଧାର ସହିତ ଭଗବାନଙ୍କର ଲୀଳା-କଥା ଶ୍ରବଣ ଓ କୀର୍ତ୍ତନ କରନ୍ତି, ଭଗବାନ ସେମାନଙ୍କ ପ୍ରତି ସଦା ସୁପ୍ରସନ୍ନ ହୋଇ ସେମାନଙ୍କର ହୃଦୟାକାଶକୁ ଅଳଙ୍କୃତ କରିଥାନ୍ତି । ଶରତ କାଳର ଆଗମନରେ ଯେପରି ଜଳର ଆବିଳତା ବିନଷ୍ଟ ହୋଇଥାଏ, ସେହିପରି ଭକ୍ତମାନଙ୍କର କର୍ଣ୍ଣଛିଦ୍ର ଦେଇ ଭଗବାନଙ୍କ ଲୀଳା-କଥା ପ୍ରବେଶ କରି ଭକ୍ତମାନଙ୍କର ହୃଦୟକମଳକୁ ପରିସ୍ଫୁଟିତ କରାଇ ମନରୁ କାମ, କ୍ରୋଧ, ମୋହ ଏବଂ ବିଷାଦ ମଳିନତାକୁ ଦୂର କରିଥାଏ । ହେ ଦ୍ୱିଜସତ୍ତମ, ଜୀବ ସହିତ ଈଶ୍ୱରଙ୍କର ସମ୍ପର୍କ କଣ, ସୃଷ୍ଟି-ସ୍ଥିତି-ଲୟ, କଳ୍ପ ବିକଳ୍ପ ଏବଂ ମନ୍ୱନ୍ତର ଆଦି ସମ୍ପର୍କରେ ସବିଶେଷ ଜାଣିବାକୁ ମୋର ଇଚ୍ଛା ହେଉଅଛି । ହେ ମହାବ୍ରତ, ମୁଁ ଆପଣଙ୍କ ଶ୍ରୀଚରଣରେ ଶରଣାଗତ । ମୋର ମନରେ ଜାତ ହୋଇଥିବା ଆଗ୍ରହକୁ ଦୟାପରବଶ ହୋଇ ସଦୁତ୍ତର ଦ୍ୱାରା ପ୍ରଶମିତ କରନ୍ତୁ ।

ପରୀକ୍ଷିତଙ୍କର ପ୍ରଶ୍ନ ଶୁଣି ଶୁକଦେବ କହିଲେ; ମହାରାଜ, ସ୍ୱପ୍ନବୃତ୍ତାନ୍ତ ସତ୍ୟ ନ ହେଲେ ମଧ୍ୟ ନିଦ୍ରାଭିଭୂତ ବ୍ୟକ୍ତି ସ୍ୱପ୍ନ-ଦୃଶ୍ୟକୁ ସତ୍ୟ ବୋଲି

ଅନୁଭବ କଲ୍‌ପରି, ନିଜର ଶରୀର, ପରିବାର ଏବଂ ଧନସମ୍ପତ୍ତି ଆଦି ସମସ୍ତ ପାର୍ଥିବ ବସ୍ତୁକୁ ଜୀବ ଭଗବାନଙ୍କ ମାୟା ପ୍ରଭାବରେ ବଶୀଭୂତ ହୋଇ ସତ୍ୟ ଓ ନିତ୍ୟର ବୋଲି ଭ୍ରମ କରିଥାଏ । ଭଗବାନଙ୍କର ନାଭି-ପଦ୍ମରୁ ଆଦିଦେବ ଜଗଦ୍‌ଗୁରୁ ବ୍ରହ୍ମା ଜାତ ହେବା ପରେ, ଜଗତ ସୃଷ୍ଟି କରିବା ପାଇଁ ସେ ଆଗ୍ରହୀ ହୋଇଥିଲେ; କିନ୍ତୁ ସୃଷ୍ଟି କିପରି କରିବେ, ସେ ସମ୍ପର୍କରେ ତାଙ୍କର କୌଣସି ଧାରଣା ନ ଥିଲା, କି ସେ ମଧ୍ୟ କିଛି କଳ୍ପନା କରିପାରି ନ ଥିଲେ । ଏହିପରି ଭାବରେ ଅବସ୍ଥାନ କରୁଥିବା ସମୟରେ ଦୁଇ ଅକ୍ଷରଯୁକ୍ତ ଗୋଟିଏ ବିଶିଷ୍ଟ ଶବ୍ଦ ମହାଶୂନ୍ୟରୁ ତାଙ୍କର ଶ୍ରୁତିଗୋଚର ହେଲା, ସେହି ଶବ୍ଦଟି ହେଲା ହେଲା 'ତପ' । କେଉଁଠାରୁ ଏହି ଶବ୍ଦ ଆସିଲା, କିଏ ଏହି ଶବ୍ଦର ବକ୍ତା, ତାହା ଜାଣିବାକୁ ବ୍ରହ୍ମାଙ୍କର ଆଗ୍ରହ ହେଲା ଏବଂ ସେଥିପାଇଁ ସେ ଚତୁର୍ଦ୍ଦିଗକୁ ନିଜର ବିସ୍ମୟାଭିଭୂତ ଦୃଷ୍ଟି ନିକ୍ଷେପ କଲେ; କିନ୍ତୁ ନିଜର ବାସସ୍ଥାନ ଓ ତାର ଚତୁଃପାର୍ଶ୍ୱରେ ଅବସ୍ଥିତ ବିଶାଳ ସମୁଦ୍ର ବ୍ୟତୀତ ସେ ଅନ୍ୟ କିଛି ଦେଖିବାକୁ ପାଇଲେ ନାହିଁ । ବ୍ରହ୍ମା ଭାବିଲେ ଯେ ସମ୍ଭବତଃ କେହି ଅଦୃଶ୍ୟରେ ରହି ତାଙ୍କୁ ତପସ୍ୟାଚରଣ କରିବାକୁ ନିର୍ଦ୍ଦେଶ ଦେଉଅଛନ୍ତି । ତାଙ୍କ ମନରେ ଏପରି ଧାରଣା ହେବାରୁ ତଦନୁସାରେ ବ୍ରହ୍ମା କଠୋର ତପସ୍ୟା ଆଚରଣ କଲେ । ବ୍ରହ୍ମାଙ୍କର କଠୋର ତପସ୍ୟାରେ ଭଗବାନ ପ୍ରସନ୍ନ ହେବାରୁ ବ୍ରହ୍ମାଙ୍କ ଦୃଷ୍ଟି ସମ୍ମୁଖରେ ସ୍ୱର୍ଲୋକ ବୈକୁଣ୍ଠକୁ ପ୍ରକଟିତ କରାଇଲେ । ବୈକୁଣ୍ଠରେ କାଳର କୌଣସି ପ୍ରଭାବ ନ ଥିଲା । ସେଠାରେ ପରମ ସୁନ୍ଦର ଭଗବତ୍ ପାର୍ଷଦମାନେ ବିରାଜମାନ କରୁଥିଲେ । ସେମାନେ ତେଜସ୍ୱୀ ଓ ସୁନ୍ଦର କାନ୍ତିବିଶିଷ୍ଟ ଥିଲେ । ମେଘାଚ୍ଛନ୍ନ ଆକାଶକୁ ବିଦ୍ୟୁତ୍ ପ୍ରକାଶ ଅଧିକ ସୁନ୍ଦର କଲାପରି, ମହାପୁରୁଷମାନଙ୍କ ଅତ୍ୟୁଜ୍ଜ୍ୱଳ କାନ୍ତି ଓ ବ୍ୟୋମଯାନ ଏବଂ ପରମା ସୁନ୍ଦରୀ ପ୍ରମଦାମାନଙ୍କର ଉଜ୍ଜ୍ୱଳ ସୌମ୍ୟରୂପ ବୈକୁଣ୍ଠର ସୌନ୍ଦର୍ଯ୍ୟକୁ ବହୁଭାବରେ ରମଣୀୟ କରିଥିଲା । ସକଳ ବିଭବର ମୂର୍ତ୍ତିମୟୀ ଅଧିଷ୍ଠାତ୍ରୀ ଦେବୀ ଲକ୍ଷ୍ମୀ ଭଗବାନ ନାରାୟଣଙ୍କର ଶ୍ରୀଚରଣକୁ ପୂଜାର୍ଚ୍ଚନା କରି ତାଙ୍କର ଗୁଣାବଳୀକୁ ସୁଲଳିତ କଣ୍ଠରେ ଗାନ କରୁଥାନ୍ତି, ବୈକୁଣ୍ଠର ସେହି ଅପୂର୍ବ ଦୃଶ୍ୟ ଦେଖୁ ଦେଖୁ ଅଖିଳ ଜଗତର ଅଧିପତି, ଜନପ୍ରତିପାଳକ, ଲକ୍ଷ୍ମୀପ୍ରାଣ, ସର୍ବଯଜ୍ଞଅଧୀଶ୍ୱର, ସୃଷ୍ଟି-ସ୍ଥିତି ପ୍ରଳୟକାରୀ ପରମସୁନ୍ଦର ଭଗବାନ ନାରାୟଣଙ୍କୁ ମଧ୍ୟ ବ୍ରହ୍ମା ଦର୍ଶନ କଲେ ।

ଭକ୍ତମାନଙ୍କର କଲ୍ୟାଣ ସମ୍ପାଦନ ନିମନ୍ତେ ସତତ ଆଗ୍ରହଶୀଳ, ଯାହାଙ୍କର ସ୍ନେହମୟ ସୁମଧୁର ଦୃଷ୍ଟି ଭକ୍ତମାନଙ୍କୁ ଆନନ୍ଦବିଭୋର କରିଥାଏ, ଓଷ୍ଠ ଓ ନୟନରେ ପ୍ରେମପୂର୍ଣ୍ଣ ସ୍ମିତହାସ୍ୟର ଅପୂର୍ବ ଛଟା ସର୍ବଦା ଲାଗି ରହିଥାଏ, ଯାହାଙ୍କର ବକ୍ଷରେ ଲକ୍ଷ୍ମୀ ସଦା ବିରାଜିତା ସେହି କୁଣ୍ଡଳ କଣ୍ଠୀଧାରୀ ଚତୁର୍ଭୁଜ ଭଗବାନ ନାରାୟଣଙ୍କୁ, ବ୍ରହ୍ମା ଦର୍ଶନ କରିଥିଲେ । ଯେ ଅଖିଳ ବିଶ୍ୱର ଏକମାତ୍ର ଓ ସର୍ବୋତ୍ତମ ତତ୍ତ୍ୱ, ଧର୍ମ, ଜ୍ଞାନ, ବୈରାଗ୍ୟ ଏବଂ ଐଶ୍ୱର୍ଯ୍ୟ ଆଦି ଚତୁଃଶକ୍ତି, ଚଣ୍ଡ, ପ୍ରଚଣ୍ଡ, ଭଦ୍ର, ସୁଭଦ୍ର ପ୍ରଭୃତି ଷୋଳଟି ବହିଃଶକ୍ତି ଏବଂ କୂର୍ମ, ଅନନ୍ତ, ଗରୁଡ଼ ପ୍ରଭୃତି ସମୀପସ୍ଥ ଶକ୍ତି ଏହିପରି ପଚିଶି ଶକ୍ତିଦ୍ୱାରା ଯେ ସର୍ବଦା ବେଷ୍ଟିତ ଥାଆନ୍ତି, ଯେ ଅନନ୍ତ ଐଶ୍ୱର୍ଯ୍ୟ ବଳ, ଯଶରାଶି ଆଦି ସ୍ୱଭାବସିଦ୍ଧ ମହାସମ୍ପଦରେ ସର୍ବଦା ପରିପୂର୍ଣ୍ଣ, ଯାହାଙ୍କର କରୁଣାରୁ ଅନ୍ୟାନ୍ୟ ଦେବତାମାନେ ଉପରୋକ୍ତ ଗୁଣାବଳୀ ଓ ଶକ୍ତିରୁ କିଞ୍ଚିତ୍‌ମାତ୍ର ଲାଭକରି ମହିମାନ୍ୱିତ ହୋଇଥାନ୍ତି ନିଖିଳ ଜଗତର ଏକମାତ୍ର ଅଧୀଶ୍ୱର ସେହି ଭଗବାନ ନାରାୟଣଙ୍କୁ ଦର୍ଶନ କରି ବ୍ରହ୍ମାଙ୍କର ଅନ୍ତଃକରଣ ଅଭୂତପୂର୍ବ ପରମାନନ୍ଦରେ ବିହ୍ୱଳ ହୋଇଗଲା ଏବଂ ତାଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ବିନିର୍ଗତ ହେବାକୁ ଲାଗିଲା ।

ଭଗବାନଙ୍କ ଶ୍ରୀଚରଣରେ ବ୍ରହ୍ମା ଭକ୍ତିପୂତ ପ୍ରଣାମ ନିବେଦନ କଲେ । ଭଗବାନ କହିଲେ, 'ବ୍ରହ୍ମା, ଯେଉଁମାନଙ୍କର ମନ ବିଭିନ୍ନ ପ୍ରକାରର କାମନା, ବାସନା ଓ କପଟତାରେ ଆଚ୍ଛନ୍ନ ରହିଥାଏ ସେମାନଙ୍କ ପକ୍ଷରେ ମୁଁ ଅତ୍ୟନ୍ତ ଦୁର୍ଲଭ; କିନ୍ତୁ ସୃଷ୍ଟି କରିବାର ବାସନା ପୋଷଣ କରି ଦୀର୍ଘ କାଳଧରି କଠୋର ତପସ୍ୟା କରିଥିବାରୁ ମୁଁ ତୁମ ପ୍ରତି ପ୍ରସନ୍ନ ହୋଇଅଛି । ତୁମେ ଯେ ମୋର ଏହି ବୈକୁଣ୍ଠ ଦର୍ଶନ କରିଛ, ଏହା ମୋର ଇଚ୍ଛାର ଫଳ । ତପସ୍ୟାଚରଣ କରିବା ନିମନ୍ତେ ତୁମେ ଯେଉଁ ଅଦୃଶ୍ୟ ନିର୍ଦ୍ଦେଶ ଶୁଣିବାକୁ ପାଇଥିଲ, ତାହା ମୋର ବାଣୀ । ତପସ୍ୟାର ମୁଁ ଶକ୍ତି ଏବଂ ତପସ୍ୟାର ସ୍ୱରୂପ । ତପସ୍ୟା ଦ୍ୱାରା ମୁଁ ଜଗତ ସୃଷ୍ଟି କରିଥାଏ, ପୁଣି ତପସ୍ୟା ଦ୍ୱାରା ମୁଁ ତାର ସୁରକ୍ଷା କରି ପରିଶେଷରେ ସେହି ତପସ୍ୟା ଶକ୍ତିଦ୍ୱାରା ତାର ବିଲୟ ସାଧନ କରିଥାଏ । ତେଣୁ ତପସ୍ୟା ଯେପରି ଦୁଷ୍କର, ସେହିପରି ଅନନ୍ତ ଶକ୍ତିସମ୍ପନ୍ନ । ତୁମର ମଙ୍ଗଳ ହେଉ ।'

ଭଗବାନଙ୍କର କଥା ଶୁଣି ବ୍ରହ୍ମା କହିଲେ, 'ହେ ପ୍ରଭୁ, ଆପଣ ଅନ୍ତର୍ଯ୍ୟାମୀ ଏବଂ ସମସ୍ତଙ୍କର ଅନ୍ତରରେ ଆପଣ ବାସ କରୁଥିବାରୁ, ମୋର ହୃଦୟଗତ କଥା ଆପଣଙ୍କୁ ଅଜଣା ନାହିଁ । ତଥାପି ପ୍ରଭୁ, ମୁଁ ପ୍ରାର୍ଥନା କରୁଅଛି, ଆପଣଙ୍କର ସ୍ଥୂଳ ଓ ସୂକ୍ଷ୍ମ ରୂପର ସ୍ୱରୂପକୁ ମୁଁ ଯେପରି ବୁଝି ପାରିବି, ସେହି ଶକ୍ତି ମୋତେ ଦୟାକରି ପ୍ରଦାନ କରନ୍ତୁ । ମାଙ୍କଡ଼ସା ଯେପରି ନିଜ ରସ ଦ୍ୱାରା ପ୍ରସ୍ତୁତ ସୂତ୍ର ଦ୍ୱାରା ନିଜକୁ ଆଚ୍ଛାଦିତ କରି କ୍ରୀଡ଼ା କରିଥାଏ, ସେହିପରି ଆପଣ ନିଜକୁ ନିଜର ମାୟାରେ ଆଚ୍ଛନ୍ନ କରି ବିଭିନ୍ନ ଲୀଳା ପ୍ରକାଶ କରିଥାନ୍ତି । ପ୍ରଭୁ, ଜଗତ ସୃଷ୍ଟି କରିବା ନିମନ୍ତେ ମୋ ମନରେ ପ୍ରବଳ ବାସନା ଉଦ୍ରେକ ହୋଇଅଛି; ସେଥିପାଇଁ ମୁଁ ପ୍ରାର୍ଥନା କରୁଅଛି ଜଗତ ସୃଷ୍ଟି କରିବା ନିମନ୍ତେ ଆବଶ୍ୟକୀୟ ଶକ୍ତି ମୋଠାରେ ଆପଣ ସଞ୍ଚାରିତ କରନ୍ତୁ । ଫଳରେ ମୁଁ ଆପଣଙ୍କ ନିର୍ଦ୍ଦେଶାନୁସାରେ ଜଗତ ସୃଷ୍ଟି କରିପାରିବି ଏବଂ ମୋ ମନରେ ସୃଷ୍ଟିକର୍ତ୍ତାର ଅହଙ୍କାର ଯେପରି କେବେ ସ୍ପର୍ଶ କରିପାରିବ ନାହିଁ ।'

ବ୍ରହ୍ମାଙ୍କର କଥା ଶୁଣି ଭଗବାନ କହିଲେ, "ତୁମର ପ୍ରାର୍ଥନା ମୋତେ ପ୍ରୀତ କରିଅଛି । ଯେଉଁ ତତ୍ତ୍ୱଜ୍ଞାନ ଓ ତାର ସାଧନାଶାସ୍ତ୍ରର କଥା ମୁଁ କହିବାକୁ ଯାଉଅଛି, ତାହା ଭକ୍ତି ଓ ନିଷ୍ଠାର ସହିତ ତୁମେ ଶ୍ରବଣ କର । ମୋର ସ୍ୱରୂପ, ଗୁଣ, ଲୀଳା ସମ୍ପର୍କରେ ସକଳ ଅନୁଭୂତି ତୁମଠାରେ ଅଚିରେ ପ୍ରକାଶ ଲାଭ କରିବ । ସୃଷ୍ଟିର ପ୍ରାକ୍‌କାଳରେ କେବଳ ମୁଁ ଏକା ଥିଲି । ଏହି ସମସ୍ତ ସୃଷ୍ଟିରେ ମୁଁ ରହିଅଛି ଏବଂ ପ୍ରଳୟ ପରେ ମୁଁ ମଧ୍ୟ ବିଦ୍ୟମାନ ରହିଥାଏ । ବସ୍ତୁ ନ ଥିଲେ ମଧ୍ୟ ସେ ସମ୍ପର୍କରେ ଜ୍ଞାନ ଉଦୟ ହୁଏ; ଅଥଚ ଆତ୍ମା ଥିଲେ ମଧ୍ୟ ସେ ସମ୍ପର୍କରେ ଜ୍ଞାନ ଉଦୟ ହୁଏ ନାହିଁ । ତାକୁହିଁ ମାୟା କହନ୍ତି । ତୁମେ ସମାଧିସ୍ଥ ହୋଇ ଅବସ୍ଥାନ କର, ତାହାହେଲେ ଯଥାର୍ଥ ଭାବରେ ତୁମେ ସମସ୍ତ କଥା ଯଥାସମୟରେ ଜାଣିବାକୁ ସମର୍ଥ ହେବ ।"

ଏହା କହି ଭଗବାନ ଅନ୍ତର୍ହିତ ହୋଇଗଲେ ।

ପରେ ପରେ ବ୍ରହ୍ମାଙ୍କ ଦୃଷ୍ଟି ସମ୍ମୁଖରେ ଉଦ୍‌ଭାସିତ ହୋଇଥିବା ବୈକୁଣ୍ଠ ମଧ୍ୟ ଅଦୃଶ୍ୟ ହୋଇ ଯାଇଥିଲା ।

ଭଗବାନଙ୍କ ଉଦ୍ଦେଶ୍ୟରେ ନିଜର ଭକ୍ତିପୂତ ପ୍ରଣାମ ଜଣାଇ ପୂର୍ବାନୁସାରେ ବ୍ରହ୍ମା ଜଗତ ସୃଷ୍ଟି କରିବାରେ ମନୋନିବେଶ କରିଥିଲେ ।

ଶୁକଦେବ କହିଲେ, "ପୂର୍ବେ ଭଗବାନ ଦଶ ଲକ୍ଷଣଯୁକ୍ତ ଭାଗବତ ନାମକ ପୁରାଣକୁ ବ୍ରହ୍ମାଙ୍କୁ ଶୁଣାଇଥିଲେ ଏବଂ ପରେ ବ୍ରହ୍ମା ସେହି ପୁରାଣକୁ ନିଜର ପୁତ୍ର ନାରଦଙ୍କୁ କହିଥିଲେ । ସରସ୍ୱତୀ ନଦୀ କୂଳରେ ଅମିତ ତେଜସ୍ୱୀ ବ୍ୟାସଦେବ ପରମ ବ୍ରହ୍ମଙ୍କ ଉଦ୍ଦେଶ୍ୟରେ ଧ୍ୟାନ କରୁଥିବା ସମୟରେ ଦେବର୍ଷି ନାରଦ ସେହି ଭାଗବତ ପୁରାଣକୁ ବ୍ୟାସଦେବଙ୍କୁ ଶୁଣାଇଥିଲେ । ମହାରାଜ, ଆପଣଙ୍କ ମନରେ ସୃଷ୍ଟି ହୋଇଥିବା ସମସ୍ତ କୌତୁହଳ ଓ ପ୍ରଶ୍ନର ସମୁଚିତ ଉତ୍ତର ସେହି ଭାଗବତ ମଧ୍ୟରେ ନିହିତ ଅଛି । ମୁଁ ଆପଣଙ୍କ ପ୍ରଶ୍ନର ଉତ୍ତର ଦେବା ପରିବର୍ତ୍ତେ ସେହି ଭାଗବତ ପୁରାଣକୁ ଶୁଣାଇଲେ ଆପଣଙ୍କ ମନର ସମସ୍ତ ସନ୍ଦେହ ଓ କୌତୂହଳ ଅଚିରେ ଦୂର ହେବ ।"

ଭାଗବତ ପୁରାଣର ଦଶ ଲକ୍ଷଣ ସମ୍ପର୍କରେ କହିବାକୁ ଯାଇ ଶୁକଦେବ କହିଲେ, "ମହାରାଜ, ଭାଗବତରେ ସୃଷ୍ଟି, ବିସୃଷ୍ଟି, ସ୍ଥାନ, ପୋଷଣ, ଊତି, ମନ୍ୱନ୍ତର, ଈଶାନୁକଥା, ନିରୋଧ, ମୁକ୍ତି ଓ ଆଶ୍ରୟ—ଏହି ଦଶଟି ବିଶିଷ୍ଟ ଲକ୍ଷଣ ସମ୍ପର୍କରେ ବିସ୍ତୃତ ଭାବରେ କୁହାଯାଇଅଛି । ସୃଷ୍ଟି କର୍ତ୍ତା ଭଗବାନଙ୍କଠାରୁ ପ୍ରକୃତିର ସତ୍ତ୍ୱ, ରଜ, ତମ ଆଦି ଗୁଣତ୍ରୟ, ଆକାଶାଦି ପଞ୍ଚଭୂତ, ଶବ୍ଦାଦି ପଞ୍ଚ ତନ୍ମାତ୍ରା, ଇନ୍ଦ୍ରିୟ, ଅହଙ୍କାର ଓ ମହତତ୍ତ୍ୱର ଉତ୍ପତ୍ତି ଘଟିଲା, ତାହାକୁ ସୃଷ୍ଟି ଓ ବ୍ରହ୍ମାଙ୍କ ଦ୍ୱାରା ଯେଉଁ ସ୍ଥାବର ଜଙ୍ଗମାଦି ବିଶ୍ୱର ସୃଷ୍ଟି ହେଲା, ତାହାକୁ ବିସୃଷ୍ଟି କୁହାଯାଏ । ଭଗବାନଙ୍କ ଦ୍ୱାରା ସୃଷ୍ଟ ବସ୍ତୁମାନଙ୍କ ମଧ୍ୟରେ ଶୃଙ୍ଖଳା ରକ୍ଷାକୁ ସ୍ଥାନ, ଭକ୍ତମାନଙ୍କ ପ୍ରତି ଭଗବାନଙ୍କର ଅନୁଗ୍ରହକୁ ପୋଷଣ, ଗୋଟିଏ ଗୋଟିଏ ମନୁଙ୍କ କାର୍ଯ୍ୟକାଳକୁ ମନ୍ୱନ୍ତର ଏବଂ ଜୀବମାନଙ୍କର କର୍ମ ସଂସ୍କାରକୁ ଊତି କୁହାଯାଏ । ଭଗବାନଙ୍କ ବିଭିନ୍ନ ଅବତାରକୁ ଓ ସେ ସମ୍ପର୍କୀୟ ଆଖ୍ୟାନକୁ ଈଶାନୁକଥା କୁହାଯାଏ । ଭଗବାନଙ୍କର ଯୋଗ-ନିଦ୍ରାରେ ଶୟନ କରିବା ସମୟରେ ତାଙ୍କର ସମସ୍ତ ସୃଷ୍ଟି ତାଙ୍କ ମଧ୍ୟରେ ଲୀନ ହୋଇଥାଏ । ସୃଷ୍ଟିର ସେହି ଲୀନାବସ୍ଥାକୁ ନିରୋଧ ବୋଲି କୁହାଯାଇଥାଏ । ଅଜ୍ଞାନ କଳ୍ପିତ କର୍ତ୍ତୃତ୍ୱ ଓ ଭୋକ୍ତୃତ୍ୱ ଆଦି ଅନାତ୍ମ

ଭାବକୁ ପରିତ୍ୟାଗ କରି ବିଶୁଦ୍ଧ ଭାବପୋଷଣକାରୀ ଜୀବଗଣଙ୍କର ଭଗବାନଙ୍କ ସ୍ୱରୂପରେ ସ୍ଥିତାବସ୍ଥାକୁ କୁହାଯାଏ ମୁକ୍ତି । ଅଖିଳ ଜଗତ ଯାହାଙ୍କଠାରୁ ସୃଷ୍ଟ, ଓ ପରେ ଯାହାଙ୍କଠାରେ ତାହା ଲୀନ ହୋଇଥାଏ, ସେହି ପରମ ବ୍ରହ୍ମ ଭଗବାନଙ୍କୁ ଆଶ୍ରୟ ବୋଲି ଅଭିହିତ କରାଯାଇଅଛି ।

ବ୍ରହ୍ମାଣ୍ଡ ମଧ୍ୟରୁ ବିରାଟ ପୁରୁଷ ବହିର୍ଗତ ହେବାପରେ ନିଜର ଆଶ୍ରୟ ନିମନ୍ତେ ଜଳ ସୃଷ୍ଟିକଲେ ଏବଂ ସେହି ଜଳରେ ସହସ୍ର ବର୍ଷଧରି ନରରୂପୀ ବିରାଟ ପୁରୁଷ ଶୟନ କରି ରହିଥିଲେ । ସେହି ନରରୂପୀ ବିରାଟ ପୁରୁଷଙ୍କ ଦ୍ୱାରା ଜଳ ସୃଷ୍ଟି ହୋଇଥିବାରୁ ଜଳର ନାମ ହେଲା 'ନାର' ଓ ସେହି ନାରରେ ଅୟନ ଅର୍ଥାତ୍ ଆଶ୍ରୟ ଗ୍ରହଣ କରି ଥିବାରୁ ବିରାଟ ପୁରୁଷଙ୍କର ନାମ ହେଲା 'ନାରାୟଣ' । ସେହି ନାରାୟଣଙ୍କ କୃପାବଳରେ ହିଁ ସକଳ ବସ୍ତୁ, କର୍ମ, କାଳ, ସ୍ୱଭାବ ଏବଂ ଜୀବ ଆଦି ଜନ୍ମଲାଭ କରିଅଛନ୍ତି ଏବଂ ତାଙ୍କ ବିନା ସେହି ସବୁର ଅସ୍ତିତ୍ୱ ସମ୍ଭବ ନୁହେଁ । ବିରାଟ ପୁରୁଷ ଯୋଗନିଦ୍ରାରୁ ଜାଗ୍ରତ ହୋଇ ଏକାକୀ ନାନା ରୂପ ଗ୍ରହଣ କରିବାକୁ ଇଚ୍ଛା ପୋଷଣ କରି ନିଜର ମାୟାଶକ୍ତିରେ ଅଖିଳ ବ୍ରହ୍ମାଣ୍ଡର ବୀଜସ୍ୱରୂପ ନିଜର ହିରଣ୍ମୟ ବୀଜକୁ ତିନିଭାଗରେ ଯଥା: ଆଧିଦୈବ, ଆଧ୍ୟାତ୍ମ, ଏବଂ ଆଧିଭୂତରେ ବିଭକ୍ତ କରିଥିଲେ । ବିରାଟ ପୁରୁଷଙ୍କ ଶରୀର ସ୍ଥିତ ଆକାଶରୁ ଇନ୍ଦ୍ରିୟଶକ୍ତି, ମନଶକ୍ତି ଏବଂ ଦେହଶକ୍ତି ଉତ୍ପନ୍ନ ହେଲା ଏବଂ କ୍ରିୟାଶକ୍ତିରୁ ପ୍ରାଣ ସୃଷ୍ଟି ହେଲା । ସେବକମାନେ ପ୍ରଭୁଙ୍କୁ ଅନୁସରଣ କଲାପରି ବିରାଟ ପୁରୁଷଙ୍କର ଚେଷ୍ଟା ଅନୁସାରେ ଜୀବଗଣ ଚେଷ୍ଟାଯୁକ୍ତ ହୋଇଥାନ୍ତି । ବିରାଟ ପୁରୁଷଙ୍କର ପ୍ରାଣକ୍ରିୟାନୁସାରେ କ୍ଷୁଧା, ପିପାସା ଓ ମୁଖ ସୃଷ୍ଟି ହେଲା । ତାଙ୍କର ଇଚ୍ଛାନୁସାରେ କ୍ରମେ କ୍ରମେ ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗ ଓ ପ୍ରୟୋଜନୀୟ ବସ୍ତୁ ସବୁର ଆବିର୍ଭାବ ଘଟିଲା । ପରେ ପରେ ପୃଥିବୀ, ଜଳ, ତ୍ୱକ୍, ଚର୍ମ, ମାଂସ, ରକ୍ତ, ମେଦ, ମଜ୍ଜା ଏବଂ ଅସ୍ଥି ଆଦି ସୃଷ୍ଟି ହେଲା । ଏହାହିଁ ଭଗବାନଙ୍କର ସ୍ଥୂଳରୂପ ଏବଂ ବହିର୍ଭାଗ ପୃଥିବୀ, ଜଳ, ତେଜ, ବାୟୁ, ଆକାଶ, ଅହଙ୍କାର, ମହତ୍ତତ୍ତ୍ୱ ଏବଂ ପ୍ରକୃତି ପ୍ରଭୃତି ଅଷ୍ଟ ଆବରଣ ଦ୍ୱାରା ଆବୃତ । ଏହା ଛଡ଼ା ଭଗବାନଙ୍କର ଅତ୍ୟନ୍ତ ସୂକ୍ଷ୍ମରୂପ ମଧ୍ୟ ଅଛି; ତାହା କିନ୍ତୁ ଅବ୍ୟକ୍ତ, ଅନନ୍ତ, ସନାତନ ଏବଂ ଅବାଙ୍ମାନସଗୋଚର ।

ଭଗବାନଙ୍କର ସ୍ଥୂଳ ଓ ସୂକ୍ଷ୍ମ ଶରୀରର କଥା ମୁଁ ଯାହା କହିଲି, ତାହା ଭଗବାନଙ୍କର ଅନନ୍ତ ମାୟା ଦ୍ୱାରା ସୃଷ୍ଟି ହୋଇଅଛି । ଭଗବାନ ସ୍ୱୟଂ ବ୍ରହ୍ମା ରୂପରେ ପ୍ରକଟିତ ହୋଇ ଅଖିଳ ଜଗତ ସୃଷ୍ଟି କରିଥିଲେ ଓ ବିଷ୍ଣୁ ରୂପରେ ଓ ବିଭିନ୍ନ ଅବତାର ଗ୍ରହଣ କରି ଜଗତକୁ ପାଳନ କରୁଁଅଛନ୍ତି ଏବଂ କାଳାଗ୍ନି ତଥା ରୁଦ୍ର ରୂପ ଧାରଣ କରି ନିଜ ସୃଷ୍ଟି ସେହି ଜଗତକୁ ସଂହାର କରିଥାନ୍ତି । ସେଥିପାଇଁ ପଣ୍ଡିତମାନେ ଭଗବାନଙ୍କୁ ସୃଷ୍ଟି-ସ୍ଥିତି-ଲୟର କର୍ତ୍ତା ବୋଲି ଅଭିହିତ କରିଥାନ୍ତି, କିନ୍ତୁ ଭକ୍ତ ଓ ଯୋଗୀମାନେ ଭଗବାନଙ୍କର କେବଳ ଏହି ପୂର୍ବୋକ୍ତ ତ୍ରିବିଧ ରୂପକୁ ଦର୍ଶନ କରିବା ପରିବର୍ତ୍ତେ ସର୍ବଶକ୍ତିମାନ ସଚ୍ଚିଦାନନ୍ଦ ସ୍ୱରୂପ ପରମେଶ୍ୱରଙ୍କର ଦର୍ଶନ ଲାଭ କରିବାକୁ ସର୍ବଦା ଆଗ୍ରହୀ ଓ ଯତ୍ନବାନ୍ ହୋଇଥାନ୍ତି ।



## ବିଦୁର—ମୈତ୍ରେୟ ସମ୍ବାଦ

ରାଜା ଧୃତରାଷ୍ଟ୍ର ଓ ତାଙ୍କର ପୁତ୍ର ଦୁର୍ଯ୍ୟୋଧନ ପ୍ରମୁଖଙ୍କର ଅପରିଣାମଦର୍ଶୀ, ବିବେକଶୂନ୍ୟ କାର୍ଯ୍ୟରେ ଧର୍ମପ୍ରାଣ ବିଦୁର ବିଶେଷ ଦୁଃଖିତ ଓ ବିରକ୍ତ ହୋଇଥିଲେ । ତେଣୁ କୌରବଙ୍କ ସହିତ ବାସକରି ରହିବାକୁ ସେ ଆଦୌ ସମୀଚୀନ ମନେ କଲେ ନାହିଁ । ସେଥିପାଇଁ ସେ ପ୍ରସନ୍ନ ଚିତ୍ତରେ ଗୃହ ତ୍ୟାଗ କରି ବିଭିନ୍ନ ତୀର୍ଥସ୍ଥାନ ଓ ଅରଣ୍ୟରେ ଭ୍ରମଣ କରି ସମୟ ଅତିବାହିତ କରିବାକୁ ଲାଗିଲେ । ବିଭିନ୍ନ ତୀର୍ଥ କ୍ଷେତ୍ରରେ ଭ୍ରମଣ କରୁ କରୁ ପ୍ରଭାସ ତୀର୍ଥରେ ଯେତେବେଳେ ବିଦୁର ଉପସ୍ଥିତ ହେଲେ, ସେ ଶୁଣିବାକୁ ପାଇଲେ ଯେ ଭଗବାନ କୃଷ୍ଣଙ୍କ ସହାୟତାରେ ମହାରାଜ ଯୁଧିଷ୍ଠିର କୌରବ-ମାନଙ୍କୁ ପରାଭୂତ କରି ସମଗ୍ର ପୃଥିବୀକୁ ନିଜର ଶାସନାଧୀନ କରିଅଛନ୍ତି । ବାଉଁଶ ଦେହରେ ବାଉଁଶର ଘର୍ଷଣରେ ଉତ୍ପାଦିତ ଅଗ୍ନି ଦ୍ୱାରା ସମଗ୍ର ବନ ଦଗ୍‌ଧୀଭୂତ ହେଲାପରି ଏକ ବଂଶୀୟ କୌରବ ଓ ପାଣ୍ଡବଙ୍କର ପାରସ୍ପରିକ କଳହ ଫଳରେ କୌରବ ବଂଶ ତଥା ବନ୍ଧୁବର୍ଗ ବିନାଶ ପ୍ରାପ୍ତ ହୋଇଅଛନ୍ତି; ଏପରି ଶୋଚନୀୟ ସମ୍ବାଦ ଶ୍ରବଣ କରି ବିଦୁରଙ୍କର ଦୁଃଖର ସୀମା ରହିଲା ନାହିଁ । ସେ ପରମ ଦୁଃଖରେ ମୌନବ୍ରତ ଅବଲମ୍ବନ କରି ବିଭିନ୍ନ ତୀର୍ଥ କ୍ଷେତ୍ର ଭ୍ରମଣ କଲେ । ଯମୁନା ତୀର୍ଥରେ ଯିବେ ଉପସ୍ଥିତ ହେଲାବେଳେ ସେଠାରେ ଭକ୍ତଶିରୋମଣି ଉଦ୍ଧବଙ୍କ ସହିତ ହଠାତ୍ ତାଙ୍କର ସାକ୍ଷାତ ଘଟିଥିଲା । ଉଦ୍ଧବ ଯେପରି ଥିଲେ କୃଷ୍ଣାନୁଗତ, ସେହିପରି ଥିଲେ ପ୍ରଶାନ୍ତଚିତ୍ତ । ଦେବଗୁରୁ ବୃହସ୍ପତିଙ୍କ ପରି ସେ ଅସାମାନ୍ୟ ଶାସ୍ତ୍ରଜ୍ଞାନର ଅଧିକାରୀ ଥିଲେ । ଉଦ୍ଧବଙ୍କୁ ଦେଖିବା ମାତ୍ରେ ପରମ ଆନନ୍ଦରେ ଆଲିଙ୍ଗନ କରି ବିଦୁର କୁଶଳ ବାର୍ତ୍ତା ଜିଜ୍ଞାସା କରି କହିଲେ, 'ଉଦ୍ଧବ, ବ୍ରହ୍ମାଙ୍କ ପ୍ରାର୍ଥନା ରକ୍ଷା କରି ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଥିବା ପୂର୍ଣ୍ଣପୁରୁଷ ଭଗବାନ କୃଷ୍ଣ ଓ ବଳରାମ ଧରାଧାମର କଲ୍ୟାଣ ସାଧନ କରି ବର୍ତ୍ତମାନ କୁଶଳରେ

ଅବସ୍ଥାନ କରୁଅଛନ୍ତି ତ ? ମହାତ୍ମା ବାସୁଦେବଙ୍କର ସବୁ ମଙ୍ଗଳ ତ ? ଯଦୁକୁଳର ସେନାପତି ପ୍ରଦ୍ୟୁମ୍ନ, ରାଜା ଉଗ୍ରସେନ, କୃଷ୍ଣଙ୍କର ପୁତ୍ର ଶାମ୍ବ, ମହାବୀର ସାତ୍ୟକି ଏବଂ କୃଷ୍ଣଙ୍କର ଶରଣାପନ୍ନ ସ୍ୱାମୀ ନିଷ୍ପାପ ଅକ୍ରୁର ପ୍ରମୁଖ ସୁଖରେ ଅବସ୍ଥାନ କରୁଅଛନ୍ତି ତ ? ବିଷ୍ଣୁ ମାତା ଅଦିତିଙ୍କ ପରି କୃଷ୍ଣ-ଜନନୀ ଦେବୀ ଦେବକୀ କୁଶଳରେ ଅଛନ୍ତି ତ ? ଅନିରୁଦ୍ଧଙ୍କର ସବୁ ମଙ୍ଗଳ ତ ? ଯାହାଙ୍କର ଜୟଲବ୍ଧ ସାମ୍ରାଜ୍ୟ-ଲକ୍ଷ୍ମୀ ଦର୍ଶନ କରି ଦୁର୍ଯ୍ୟୋଧନ ପରଶ୍ରୀକାତରତା ବଶତଃ ବହୁ ସନ୍ତାପ ଅନୁଭବ କରୁଥିଲା, ସେହି ଧାର୍ମିକ ଯୁଧିଷ୍ଠିର ନିଜର ଦୁଇ ବାହୁ ସଦୃଶ କୃଷ୍ଣ ଓ ବଳରାମଙ୍କ ସହାୟତାରେ ନିଜର କର୍ତ୍ତବ୍ୟ ପାଳନ ଦ୍ୱାରା ଧର୍ମର ମର୍ଯ୍ୟାଦା ସର୍ବଦା ରକ୍ଷା କରୁଅଛନ୍ତି ତ ? ଭୀମ, ଅର୍ଜୁନ, ନକୁଳ ଓ ସହଦେବ ପ୍ରମୁଖ ଶତ୍ରୁଶୂନ୍ୟ ହୋଇ ସୁଖରେ ଅବସ୍ଥାନ କରୁଅଛନ୍ତି ତ ? କେବଳ ସନ୍ତାନମାନଙ୍କୁ ବଢ଼ାଇ ପରିଣତ ମଣିଷ କରିବା ନିମନ୍ତେ ଯେ ଜୀବନ ମାତ୍ର ଧାରଣ କରିଅଛନ୍ତି, ସେହି ଚିରଦୁଃଖିନୀ କୁନ୍ତୀଙ୍କର କୁଶଳ କଥା, ମୁଁ କ'ଣ ପଚାରିବି ? ହେ ସୌମ୍ୟ, ନିଜର ଭ୍ରାତା ପାଣ୍ଡୁଙ୍କ ପ୍ରତି ଧୃତରାଷ୍ଟ୍ର ଅତ୍ୟନ୍ତ ଅବିଚାର କରିଥିଲେ, ମୁଁ ତାଙ୍କର ବନ୍ଧୁ ଓ ଭ୍ରାତା ହେଲେ ମଧ୍ୟ ନିଜର ଦୁଷ୍ଟ, ଅଧର୍ମାଚାରୀ ପୁତ୍ରମାନଙ୍କ ଦ୍ୱାରା ସମ୍ପୂର୍ଣ୍ଣ ରୂପେ ବଶୀଭୂତ ହୋଇ ଯେ ମୋତେ ଗୃହରୁ ନିର୍ବାସିତ କରିଅଛନ୍ତି, ସେହି ଅଧଃପତିତ ଧୃତରାଷ୍ଟ୍ରଙ୍କ ପାଇଁ ମୋର ଦୁଃଖ ହୁଏ । ହେ ବନ୍ଧୁ, ଯେଉଁ ଭଗବାନ କୃଷ୍ଣ ରୂପରେ ଅବତୀର୍ଣ୍ଣ ହୋଇ ଏବଂ ନିଜର ଐଶ୍ୱର୍ଯ୍ୟକୁ ଗୋପନ ରଖି ମନୁଷ୍ୟଙ୍କ ମନରେ ବହୁ ଭ୍ରମ ସୃଷ୍ଟି କରୁଅଛନ୍ତି, ସେହି ଭଗବାନ କୃଷ୍ଣଙ୍କର ସ୍ୱରୂପ ଓ ମହାତ୍ମ୍ୟ ଅବଗତ ହେବା ନିମନ୍ତେ ଉପଯୁକ୍ତ ଗୁରୁଙ୍କର ସନ୍ଧାନ କରି କରି ସମଗ୍ର ପୃଥିବୀ ଭ୍ରମଣ କରୁଅଛି । ଭଗବାନ ଅଜନ୍ମା ହୋଇ ମଧ୍ୟ ଦୁଷ୍ଟମାନଙ୍କର ବିନାଶ ସାଧନ ନିମନ୍ତେ କୃଷ୍ଣ ରୂପରେ ଯଦୁବଂଶରେ ମାନବ ଶରୀର ଧାରଣ କରି ଆବିର୍ଭୂତ ହୋଇଅଛନ୍ତି ଏବଂ ଭଗବାନ କର୍ମରହିତ ହୋଇ ମଧ୍ୟ ଲୋକମାନଙ୍କ ମନରେ କର୍ମ-ପ୍ରବୃତ୍ତି ଜାଗ୍ରତ କରିବା ନିମନ୍ତେ ବିଭିନ୍ନ କର୍ମ ଆଚରଣ କରୁଅଛନ୍ତି । ଏସବୁ କଥା ମୋ ମନରେ ଯୁଗପତ୍ ବିସ୍ମୟ ସୃଷ୍ଟି କରିଅଛି । ତେଣୁ ଭଗବାନଙ୍କର ସେହି ପବିତ୍ର କୀର୍ତ୍ତି ଓ ଗୁଣାବଳୀ ଦୟାକରି ମୋ ସମ୍ମୁଖରେ କୀର୍ତ୍ତନ କରନ୍ତୁ ।'

ବିଦୁରଙ୍କର କଥା ଶୁଣି କୃଷ୍ଣଭକ୍ତ ଉଦ୍ଧବଙ୍କ ସ୍ମୃତିପଟରେ ଭଗବାନଙ୍କର କଥାମାନ ପ୍ରତିଫଳିତ ହୋଇଗଲା ଏବଂ ସେ ଆନନ୍ଦ-ବିହ୍ୱଳତାରେ କିଛି ଧୈର୍ଯ୍ୟ କିଛି କହିପାରିଲେ ନାହିଁ । କିପରି ବା କହନ୍ତେ ? ଯେଉଁ ଉଦ୍ଧବ ମାତ୍ର ପାଞ୍ଚ ବର୍ଷ ବୟସ୍କ ଥିଲାବେଳେ କୃଷ୍ଣଙ୍କର ପ୍ରତିମୂର୍ତ୍ତି ନିର୍ମାଣ କରି ତାଙ୍କର ସେବା ପୂଜାରେ ଏପରି ତନ୍ମୟ ହୋଇ ପଡ଼ୁଥିଲେ ଯେ, ଖାଇବାକୁ ମା ଡାକିଲେ ମଧ୍ୟ ସେ ପୂଜା ଛାଡ଼ି ଭୋଜନ କରିବାକୁ ଇଚ୍ଛା କରୁ ନ ଥିଲେ, ଆଜି ତ ସେ କୃଷ୍ଣ ସେବା ମଧ୍ୟରେ ନିଜର ଶୈଶବ, କୌମାର, ଯୌବନ ତଥା ପ୍ରୌଢ଼ତ୍ୱ ଅତିକ୍ରମ କରି ପରିଣତ ବୟସ୍କ ବୃଦ୍ଧତ୍ୱ ପ୍ରାପ୍ତ ହୋଇଅଛନ୍ତି ଏବଂ ସମଗ୍ର ଜୀବନ ପରମ ଭକ୍ତିର ସହିତ ଯେ କୃଷ୍ଣଙ୍କର ଚରଣାରବିନ୍ଦକୁ ସେବା କରି ଆସି-ଅଛନ୍ତି, ଆଜି କୃଷ୍ଣଙ୍କର କଥା ତାଙ୍କ ମନରେ ଅପୂର୍ବ ଆନନ୍ଦ ଓ ବିହ୍ୱଳତା ସୃଷ୍ଟି କରିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ବିଦୁରଙ୍କ ମୁଖରୁ କୃଷ୍ଣ ନାମ ଶ୍ରବଣ କରି ଉଦ୍ଧବଙ୍କର ସର୍ବାଙ୍ଗ ଅପୂର୍ବ ପୁଲକରେ ଶିହରିଉଠିଲା ଏବଂ ତାଙ୍କର ନୟନଯୁଗଳ ଲୋତକାପ୍ଳୁତ ହୋଇଗଲା ।

ସେ ଚକ୍ଷୁ ମାର୍ଜନା କରି ଏବଂ ଭଗବାନଙ୍କର ଅପୂର୍ବ ଲୀଳା ଗୁଡ଼ିକ ସ୍ମରଣ କରି ବିଦୁରଙ୍କୁ କହିଲେ, 'ବିଦୁର, ଶ୍ରୀକୃଷ୍ଣ ରୂପକ ସୂର୍ଯ୍ୟ ଆଜି ଅସ୍ତମିତ; ଫଳରେ ଆମ୍ଭମାନଙ୍କ ଗୃହ ଆଜି କାଳରୂପକ ମହାସର୍ପର ବଳ ହୋଇ ହତଶ୍ରୀ ହୋଇପଡ଼ୁଛି । ଏପରି ଅବସ୍ଥାରେ ଅନ୍ୟ ବନ୍ଧୁ-ମାନଙ୍କର କି କୁଶଳ ସମ୍ବାଦ ମୁଁ ତୁମକୁ ଦେବି ? ମନୁଷ୍ୟମାନେ ଅତ୍ୟନ୍ତ ଭାଗ୍ୟହୀନ ଏବଂ ସେମାନଙ୍କ ମଧ୍ୟରେ ଯଦୁବଂଶର ଲୋକମାନେ ଅତ୍ୟନ୍ତ ହତଭାଗା । କାରଣ, ଯେପରି ମତ୍ସ୍ୟମାନେ ସମୁଦ୍ରସମ୍ଭୂତ ଅମୃତମୟ ଚନ୍ଦ୍ରଙ୍କୁ ଚିହ୍ନିପାରି ନ ଥିଲେ, ସେହିପରି କୃଷ୍ଣଙ୍କ ସହିତ ଏକତ୍ର ବାସ କରି ମଧ୍ୟ ଯଦୁବଂଶୀୟ ଲୋକମାନେ ହରିଙ୍କୁ ଚିହ୍ନିପାରି ନାହାନ୍ତି । ସେମାନଙ୍କଠାରେ ବିଦ୍ୟା, ବୁଦ୍ଧି ଏବଂ ଜ୍ଞାନର କୌଣସି ଅଭାବ ନ ଥିଲା; ମନୁଷ୍ୟର ମନକୁ ବୁଝିବାରେ ସେମାନେ ମଧ୍ୟ ଅତ୍ୟନ୍ତ ନିପୁଣ ଥିଲେ, ତଥାପି କି ଆଶ୍ଚର୍ଯ୍ୟର କଥା, ଯଦୁଗଣ କୃଷ୍ଣଙ୍କ ସହିତ ଏକତ୍ର ବାସକରି ମଧ୍ୟ କୃଷ୍ଣଙ୍କୁ ଅଖିଳ ଜଗତର ପ୍ରଭୁ ବୋଲି ଜାଣି ନ ପାରି, ଯଦୁଶ୍ରେଷ୍ଠ

ବୋଲି ବୁଝିଥିଲେ । ସେମାନେ ଭ୍ରାନ୍ତିହୀନ ବୋଲି ସମ୍ଭବତଃ କୃଷ୍ଣଙ୍କୁ ଚିହ୍ନି ପାରିଲେ ନାହିଁ, ମୋହମାୟାର ବଶବର୍ତ୍ତୀ ହୋଇ କୃଷ୍ଣଙ୍କୁ ନିଜର ଆତ୍ମୀୟ ବୋଲି କହିଲେ ଏବଂ ଶତ୍ରୁଭାବାପନ୍ନ ଶିଶୁପାଳ ପ୍ରମୁଖ ତାଙ୍କର ନିନ୍ଦାଗାନ କଲେ । ଏ ସବୁ ସତ୍ତ୍ୱେ ମୋର ବୁଦ୍ଧି ଭଗବାନଙ୍କ କୃପାରୁ କେବଳ ସେମାନଙ୍କ ପରି ମୋହଗ୍ରସ୍ତ ହୋଇନାହିଁ । ଭଗବାନ ଅପାର କରୁଣାମୟ; କାରଣ ଯେଉଁମାନେ କେବଳ କୌଣସି ତପସ୍ୟା କରି ନାହାନ୍ତି ସେମାନଙ୍କୁ ଆଜି ପର୍ଯ୍ୟନ୍ତ ଭଗବାନ ଦର୍ଶନ ଦେଉଥିଲେ, ତଥାପି ସେମାନଙ୍କ ଦର୍ଶନେଚ୍ଛା ଶାନ୍ତ ହୋଇ ନାହିଁ, କିନ୍ତୁ ହାୟ, ଭଗବାନ ନିଜର ତ୍ରିଭୁବନମୋହନ ରୂପକୁ ଲୋକଲୋଚନର ଅଗୋଚରକୁ ନେଇ ଯାଇ ଆଜି ଇହଲୋକରୁ ଅନ୍ତର୍ହିତ ହୋଇଅଛନ୍ତି । ଭଗବାନ ନିଜ ଯୋଗମାୟାଙ୍କର ଅପୂର୍ବ ପ୍ରଭାବ ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ମାନବ ଲୀଳାର ଯୋଗ୍ୟ ଦିବ୍ୟ ଶ୍ରୀବିଗ୍ରହ ପ୍ରକଟିତ କରିଥିଲେ ଏବଂ ତାଙ୍କର ସେହି ରୂପ ଏତେ ସୁନ୍ଦର ଥିଲି ଯେ, ସେହି ଅନନ୍ୟସୁନ୍ଦର ଦିବ୍ୟ ରୂପକୁ ଦର୍ଶନ କରି ସମସ୍ତ ଜଗତ ମୋହିତ ହୋଇଥିଲି । ଅପରନ୍ତୁ ସେ ନିଜେ ମଧ୍ୟ ନିଜ ରୂପରେ ବିସ୍ମିତ ଓ ମୋହିତ ହୋଇପଡୁଥିଲେ । ତାଙ୍କର ସେହି ରୂପର ସୌଭାଗ୍ୟ ଓ ସୌନ୍ଦର୍ଯ୍ୟର ପରାକାଷ୍ଠା ଏପରି ପ୍ରକାଶିତ ହୋଇଥିଲି ଯେ ତାଙ୍କର ସ୍ୱଭାବସୁନ୍ଦର ଶ୍ରୀଅଙ୍ଗକୁ ସଜାଇବା ନିମନ୍ତେ କୌଣସି ଅଳଙ୍କାରର ପ୍ରୟୋଜନ ପଡୁନଥିଲି । ତାଙ୍କର ଶ୍ରୀଅଙ୍ଗ ଥିଲି ସମସ୍ତ ଅଳଙ୍କାରର ଅଳଙ୍କାରସ୍ୱରୂପ । ସେ ଥିଲେ ଭୂଷଣର ଭୂଷଣ ସ୍ୱରୂପ । ଧର୍ମଙ୍କ ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞରେ କୃଷ୍ଣଙ୍କର ସେହି ନୟନାଭିରାମ ମୂର୍ତ୍ତି ଦର୍ଶନ କରି ଦର୍ଶକମାନେ ମନେ କରିଥିଲେ ଯେ ବିଧାତାଙ୍କର ଶରୀର ନିର୍ମାଣ କରିବାର ସମସ୍ତ ନୈପୁଣ୍ୟ କୃଷ୍ଣଙ୍କୁ ନିର୍ମାଣ କରିବାରେ ଚରମ ସଫଳତା ଲାଭ କରିଅଛି । କୃଷ୍ଣଙ୍କର ସେହି ପରମ ଆନନ୍ଦମୟ ରୂପ ଦେଖି ଅଭିମାନିନୀ ଗୋପାଙ୍ଗନାମାନେ ମଧ୍ୟ ମୋହିତ ହୋଇ କାଷ୍ଠ ପୁତ୍ତଳିକା ପରି ଅପଲକ ନୟନରେ ତାଙ୍କୁ ଚାହିଁରହିଥିଲେ । ସଂସାରରେ ଯେତେ ଶାନ୍ତ, ଭୟଙ୍କର ଏବଂ ଭୟ ଉଦ୍ରେକକାରୀ ରୂପ ଦେଖିବାକୁ ମିଳେ, ସେ ସମସ୍ତ ତାଙ୍କ ରୂପ; କିନ୍ତୁ ଅଶାନ୍ତ ବ୍ୟକ୍ତିମାନେ ଶାନ୍ତ ସ୍ୱଭାବ-ବିଶିଷ୍ଟ ବ୍ୟକ୍ତିକୁ ନିପୀଡ଼ିତ କଲାବେଳେ ଭଗବାନଙ୍କର ହୃଦୟ ଦୟା ବିଗଳିତ ହୋଇଯାଏ ଏବଂ ସେ ଅଜନ୍ମା ହୋଇ ମଧ୍ୟ ଜନ୍ମ ପରିଗ୍ରହ

କରନ୍ତି । ଭଗବାନ୍ କୃଷ୍ଣ ଅଜନ୍ମା, ତଥାପି ବସୁଦେବଙ୍କ ଗୃହରେ ସେ ଜନ୍ମଗ୍ରହଣ କଲେ । ସେ ଅନନ୍ତ ଶକ୍ତିର ଅଧିକାରୀ ହୋଇ ମଧ୍ୟ କଂସର ଭୟରେ ଭୟଭୀତ ହେଉଥିବା ବ୍ୟକ୍ତିଙ୍କ ପରି ବ୍ରଜଧାମରେ ଗୋପନରେ ବାସ କରୁଥିଲେ ଏବଂ କାଳଯବନଙ୍କ ଆକ୍ରମଣରୁ ରକ୍ଷା ପାଇବା ନିମନ୍ତେ ମଥୁରାପୁରକୁ ପଳାୟନ ମଧ୍ୟ କରିଥିଲେ । ଏସବୁ କଥା ଭାବିଲେ ମୋର ମନ ଓ ପ୍ରାଣ ଅପୂର୍ବ ଶୋକାବେଗରେ ଭାଙ୍ଗିପଡେ । ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇଯାଏ । କୃଷ୍ଣ ନିଜର ଜନକ ଜନନୀଙ୍କୁ କଂସ ଅତ୍ୟାଚାରରୁ ଉଦ୍ଧାର କରି ଓ ସେମାନଙ୍କ ଚରଣ ବନ୍ଦନା କରି କହିଥିଲେ, 'ମା, କଂସ ଭୟରେ ଭୀତ ହୋଇ ମୁଁ ଆପଣଙ୍କର କୌଣସି ସେବା କରିପାରିନାହିଁ । ମୋର ସେହି ଅପରାଧ ମାର୍ଜନା କରି ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।' ଏହି କଥା ମୋର ମନେ ପଡ଼ିଗଲା ମାତ୍ରେ ମୋର ଦେହ ଓ ମନ ଅବ୍ୟକ୍ତ ଶୋକାବେଗରେ ଶିହରିଉଠେ । ଯେ ନିଜର ଭ୍ରୂକୁଟିବିଳାସ ମାତ୍ରେ ସମସ୍ତ ଭୂଭାର ଲାଘବ କରିପାରନ୍ତି ସେହି ସର୍ବଶକ୍ତିମାନ ଜଗଦୀଶ୍ୱରଙ୍କର ଚରଣପଦ୍ମକୁ ସେବା କରିଥିବା ବ୍ୟକ୍ତି ତାଙ୍କୁ କିପରି ଭୁଲିଯାଇ ପାରିବ ? ଆପଣ ତ ସ୍ୱଚକ୍ଷୁରେ ଦେଖିଲେ, ରାଜା ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞରେ ଶିଶୁପାଳ ତାଙ୍କପ୍ରତି କି ଅପମାନସୂଚକ କଟୂ ଭାଷା ପ୍ରୟୋଗ ନ କଲା; ଅଥଚ ଶିଶୁପାଳକୁ ପୁଣି ତ ନିଧନ କରି ଯୋଗୀଜନ ଦୁର୍ଲ୍ଲଭ ସିଦ୍ଧିର ଅଧିକାରୀ ସେ କରାଇଥିଲେ । ଏପରି କ୍ଷମାଗୁଣର ଅଧିକାରୀଙ୍କୁ କିଏ ବା ଭୁଲି ରହିପାରିବ ? ଭଗବାନ ଶ୍ରୀକୃଷ୍ଣ ତ୍ରିଭୁବନର ଅଧୀଶ୍ୱର । ତାଙ୍କ ଅପେକ୍ଷା ଶ୍ରେଷ୍ଠ କେହି ଥିବା ଦୂରର କଥା ତାଙ୍କର ସମକକ୍ଷ ହେବାକୁ କେହି ସମର୍ଥ ନୁହନ୍ତି । କୃଷ୍ଣଙ୍କର ମହିମା ଏପରି ଥିଲେ ମଧ୍ୟ ସେ ଯେ ଉଗ୍ରସେନଙ୍କ ସମ୍ମୁଖରେ ସାଧାରଣ ଜନଙ୍କ ପରି ଦଣ୍ଡାୟମାନ ହୋଇ, 'ପ୍ରଭୁ, ମୋର ନିବେଦନ ଶୁଣିବା ହୁଅନ୍ତୁ, ବୋଲି କହୁଥାନ୍ତି, ଏହା ଏବେ କି ସ୍ମରଣ କଲେ ମୋ ପରି ସେବକର ହୃଦୟ ଅସୀମ ଦୁଃଖରେ ଅଭିଭୂତ ହୋଇଯାଏ । ସେ କେତେ ଦୟାଳୁ, ତାହା ବାସ୍ତବିକ ଚିନ୍ତା କରିହୁଏ ନାହିଁ । ଯେଉଁ ଦୁଷ୍ଟା ରାକ୍ଷସୀ ପୂତନା ତାଙ୍କର ପ୍ରାଣ ନାଶ କରିବା ନିମନ୍ତେ ନିଜର ବିଷପ୍ରଲିପ୍ତ ସ୍ତନ୍ୟକୁ ତାଙ୍କୁ ପାନ କରାଇବାକୁ ଆସିଥିଲା, କୃଷ୍ଣ ପୁଣି ତ ତାକୁ ସଦ୍‌ଗତି ପ୍ରଦାନ କଲେ ! ଅସୁରମାନଙ୍କୁ ମୁଁ ଭଗବାନଙ୍କର ଭକ୍ତ ବୋଲି ମଧ୍ୟ ସମ୍ମାନ ଦିଏ, କାରଣ ସେମାନେ

ଭଗବାନଙ୍କର ଅପାତତଃ ଶତ୍ରୁ ବୋଲି ପ୍ରତୀୟମାନ ହେଲେ ମଧ୍ୟ, ସେମାନେ ନିଜ ନିଜର ବୈରିତାଜନିତ କ୍ରୋଧର ମାର୍ଗ ଅନୁସରଣ କରି ନିଜ ଚିତ୍ତକୁ ସର୍ବଦା ଭଗବାନଙ୍କ ସହିତ ସଂଶ୍ଳିଷ୍ଟ କରି ରଖିଥାନ୍ତି । ଫଳରେ ଭଗବାନଙ୍କ ସହିତ ଯୁଦ୍ଧକରି ମୃତ୍ୟୁ ବରଣ କଲାବେଳେ ଗରୁଡ଼ ପୃଷ୍ଠରେ ଆରୋହଣ କରିଥିବା ଭଗବାନଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଲାଭ କରିଥାନ୍ତି । କୃଷ୍ଣଙ୍କର ସମସ୍ତ ଲୀଳାର ଅଲୌକିକତା ମନରେ ଅପୂର୍ବ ପୁଲକ ସୃଷ୍ଟି କରିଥାଏ । କୁରୁକ୍ଷେତ୍ର ସମର ପ୍ରାଙ୍ଗଣରେ ଦୁର୍ଯ୍ୟୋଧନଙ୍କୁ ଭଗ୍ନଜାନୁ ହୋଇ ପଡ଼ିଥିବାର ଦେଖି ଭଗବାନ କୃଷ୍ଣ ଦୁଃଖିତ ମନରେ ଚିନ୍ତାକଲେ, "ମୋ ଅଂଶରେ ଭୀଷ୍ମ, ଦ୍ରୋଣ, ଭୀମ ଏବଂ ଅର୍ଜୁନ ପ୍ରମୁଖ ଜନ୍ମ ହୋଇ ଏହି ଅଷ୍ଟାଦଶ ଅକ୍ଷୌହିଣୀ ସୈନ୍ୟଙ୍କୁ ନିହତ କରି ଭୂଭାର ଲାଘବ କରିଅଛନ୍ତି; ତଥାପି ପୃଥିବୀରୁ ଦୁଷ୍ଟମାନଙ୍କର ସମ୍ପୂର୍ଣ୍ଣ ବିଲୋପ ସାଧନ ଘଟିନାହିଁ । ଏବେ ବି ପ୍ରଦ୍ୟୁମ୍ନ ପ୍ରମୁଖଙ୍କ ପ୍ରଭାବରେ ପ୍ରଭାବିତ ହୋଇ ଯାଦବମାନେ ମଧୁପାନରେ ଉନ୍ମତ୍ତ ହୋଇ ଓ ପାରସ୍ପରିକ କଳହରେ ଲିପ୍ତ ରହି ନାନାବିଧ ଦୁର୍ବିସହ କାର୍ଯ୍ୟ କରି ଧରଣୀକୁ ସନ୍ତାପିତ କରୁଅଛନ୍ତି । ସେହି ଅପରିଣାମଦର୍ଶୀ କାର୍ଯ୍ୟ ଓ ବିବାଦ ହିଁ ପରିଶେଷରେ ସେମାନଙ୍କର ସମୂହ ବିନାଶର କାରଣ ହେବ । "ଭଗବାନ କୃଷ୍ଣ ଏହିପରି ଚିନ୍ତାକରି ଓ ଯୁଧିଷ୍ଠିରଙ୍କୁ ରାଜ୍ୟାଭିଷିକ୍ତ କରି ଧର୍ମରାଜ୍ୟ ପ୍ରତିଷ୍ଠାର ପଥ ପ୍ରଦର୍ଶନ କରିଥିଲେ । ପରେ ବାଉଁଶସହ ବାଉଁଶର ଘର୍ଷଣ ମଧ୍ୟରୁ ଜାତ ହେଉଥିବା ଅଗ୍ନିରେ ସମସ୍ତ ଅରଣ୍ୟ ଭସ୍ମୀଭୂତ ହେଲାପରି ସୁରାପାନମତ୍ତତାରେ ଯାଦବମାନେ ବିକୃତ ଚିତ୍ତ ହୋଇ ବିଭିନ୍ନ କଳହରେ ବ୍ୟାପୃତ ହେଲେ ଏବଂ ଫଳରେ ସମସ୍ତେ ବିନାଶପ୍ରାପ୍ତ ହେବାରୁ ଭଗବାନ ଆତ୍ମାରାମ କୃଷ୍ଣ ସେସବୁ ଅବଲୋକନ କରି ସରସ୍ୱତୀ ଜଳରେ ଆଚମନ କରି ଗୋଟିଏ ଅଶ୍ୱତ୍ଥ ବୃକ୍ଷ ମୂଳରେ ଉପବେଶନ କଲେ । ନିଜର ବଂଶର ସମୂହ ବିନାଶରେ ଅଭିଳାଷୀ ହୋଇ ଥରେ ଦ୍ୱାରକାରେ ଭଗବାନ କୃଷ୍ଣ ମୋତେ କହିଥିଲେ, 'ଉଦ୍ଧବ, ତୁମେ ବଦରିକାଶ୍ରମକୁ ଯାଅ ।' କିନ୍ତୁ ତା' ସତ୍ତ୍ୱେ ତାଙ୍କର କୁଳସଂହାର ଅଭିପ୍ରାୟ ଅବଗତ ହୋଇ ତାଙ୍କର ଶ୍ରୀଚରଣ ତ୍ୟାଗ କରି ମୁଁ ଯିବାକୁ ଇଚ୍ଛିଲି ନାହିଁ, ବରଂ ତାଙ୍କର ପଦଚିହ୍ନକୁ ଅନୁସରଣ କରି କରି ମୁଁ ଗଲି ଏବଂ ସେହି ଅଶ୍ୱତ୍ଥ ବୃକ୍ଷ ମୂଳରେ ଭଗବାନ କୃଷ୍ଣଙ୍କୁ ଏକାକୀ ବିଶ୍ରାମ

କରୁଥିବାର ଦେଖିଲି । ସେହି ସମୟରେ ବେଦବ୍ୟାସଙ୍କର ପିତା ପରାଶରଙ୍କର ଶିଷ୍ୟ ଭକ୍ତଶ୍ରେଷ୍ଠ ମୈତ୍ରେୟ ମୁନି ପୃଥିବୀ ପର୍ଯ୍ୟଟନ କରୁ କରୁ ସେଠାରେ ଆସି ମଧ୍ୟ ପହଞ୍ଚିଥିଲେ । ଭଗବାନଙ୍କୁ ଦର୍ଶନ କରି ପରମ ଆନନ୍ଦ ଓ ଭକ୍ତି ସହକାରେ ମହର୍ଷି ମୈତ୍ରେୟ ପ୍ରଣାମ କଲେ ।

ଭଗବାନ କୃଷ୍ଣ ମୋତେ ଅନାଇ କହିଲେ, 'ଉଦ୍ଧବ, ମୁଁ ତୁମର ମନକଥା ଜାଣେ । ତୁମେ ପୂର୍ବଜନ୍ମରେ ଜଣେ ବସୁ ଥିଲ ଏବଂ ତୁମେ ମୋତେ ପୂର୍ବେ ବହୁ ଆରାଧନା କରିଥିଲ । ସେଥିପାଇଁ ମୁଁ ତୁମ ପ୍ରତି ଅତ୍ୟନ୍ତ ପ୍ରସନ୍ନ । ଅନ୍ୟମାନଙ୍କ ପାଇଁ ଯାହା ଦୁର୍ଲଭ, ସେହି ବିରଳ ସାଧନ ମୁଁ ତୁମକୁ ପ୍ରଦାନ କରିବି । ତୁମେ ଯେତେଥର ଜନ୍ମଗ୍ରହଣ କରିଛ ସେସବୁ ମଧ୍ୟରେ ତୁମର ଏହି ଜନ୍ମ ସର୍ବଶ୍ରେଷ୍ଠ । କାରଣ ତୁମେ ଏହି ଜନ୍ମରେ ମୋର ଅନୁଗ୍ରହ ଲାଭ କରିବାକୁ ସମର୍ଥ ହେଲ । ମୁଁ ବର୍ତ୍ତମାନ ନରଲୋକ ତ୍ୟାଗ କରିବାକୁ ଯାଉଅଛି । ଏହି ଅନ୍ତିମ ସମୟରେ ତୁମେ ଯେ ମୋତେ ପ୍ରଗାଢ଼ଭକ୍ତି ସହକାରେ ଦର୍ଶନ କରିଅଛ, ଏହା ତୁମର ଜନ୍ମ ଓ ଜୀବନକୁ ସାର୍ଥକ ଓ ସୌଭାଗ୍ୟମଣ୍ଡିତ କରିଅଛି । ଉଦ୍ଧବ, ପୂର୍ବେ ପଦ୍ମକଳ୍ପରେ ସୃଷ୍ଟିର ଆରମ୍ଭ ସମୟରେ ମୋର ନାଭିପଦ୍ମରେ ଅବସ୍ଥିତ ବ୍ରହ୍ମାଙ୍କୁ ମୁଁ ମୋର ମହିମାବ୍ୟଞ୍ଜକ ଯେଉଁ ପରମଜ୍ଞାନ ପ୍ରଦାନ କରିଥିଲି, ଜ୍ଞାନୀମାନେ ତାହାକୁ 'ଭାଗବତ'ର ଆଖ୍ୟା ପ୍ରଦାନ କରିଅଛନ୍ତି ।

"ବିଦୁର, ଭଗବାନ ମୋ ପ୍ରତି ସ୍ନେହ ପରବଶ ହୋଇ ଅନୁଗ୍ରହ ପୂର୍ବକ ଏହି କଥା କହିବାରୁ, ମୋର ସର୍ବାଙ୍ଗ ରୋମାଞ୍ଚିତ ହୋଇଉଠିଲା । ମୁଁ ଶୋକାବେଗରେ ଅଭିଭୂତ ହୋଇ ପଡ଼ିଲି ଏବଂ କୃତାଞ୍ଜଳି ହୋଇ ଥର ଥର ଓଠରେ ବହୁ କଷ୍ଟରେ ଭଗବାନଙ୍କୁ କହିଲି, 'ପ୍ରଭୁ, ଆପଣଙ୍କର ଚରଣସେବା କରିଥିବା ବ୍ୟକ୍ତିଙ୍କ ପ୍ରତି ଆପଣଙ୍କର କରୁଣା ପ୍ରକାଶିତ ହୋଇଥାଏ ଏବଂ ସେହି ଚରଣସେବକଙ୍କ ପାଇଁ ଧର୍ମ, ଅର୍ଥ, କାମ, ମୋକ୍ଷ ଆଦି ଚତୁର୍ବର୍ଗ ଆଦୌ ଦୁର୍ଲଭ ହୁଏ ନାହିଁ । ପ୍ରଭୁ, ଆପଣଙ୍କର ଶ୍ରୀଚରଣ ସେବାରେ ମୋର ସବୁ ସମୟ ଅତିବାହିତ ହୋଇଯାଉ, ଏହା ଛଡ଼ା ମୁଁ ଆଉ କିଛି କାମନା କରୁ ନାହିଁ । ପ୍ରଭୁ, ଆପଣଙ୍କର ଲୀଳା ଅନନ୍ତ ଏବଂ ଅକଳ୍ପନୀୟ । ଆପଣ ନିଷ୍କ୍ରିୟ ହୋଇ ମଧ୍ୟ ବିଭିନ୍ନ କର୍ମ କରିଅଛନ୍ତି, ଅଜନ୍ମା ହୋଇ ମଧ୍ୟ ଜନ୍ମ ଗ୍ରହଣ କରିଥାନ୍ତି, ଆପଣ

କାଳରୂପୀ ହୋଇ ମଧ୍ୟ ସାମାନ୍ୟ ଶତ୍ରୁର ଭୟରେ ଭୟଭୀତ ହୋଇ ଆତ୍ମଗୋପନ କରନ୍ତି । ଆପଣ ଆତ୍ମତୃପ୍ତ ହୋଇ ମଧ୍ୟ ବହୁ ସ୍ତ୍ରୀଙ୍କ ସହିତ ରମଣ କରନ୍ତି । ଆପଣଙ୍କର ଏହି ବିଚିତ୍ର ଆଚରଣ ଦେଖି ବିଦ୍ୱାନ୍ ବ୍ୟକ୍ତିମାନଙ୍କର ମଧ୍ୟ ବୁଦ୍ଧିଭ୍ରମ ଘଟିଥାଏ । ସେମାନେ ଆପଣଙ୍କୁ ଠିକ୍ ବୁଝିପାରନ୍ତି ନାହିଁ । ଆପଣ ସବୁପ୍ରକାରର ଉପଦେଶ ଓ ମନ୍ତ୍ରଣା ପ୍ରଦାନରେ ନିପୁଣ ହୋଇ ମଧ୍ୟ, ସମସ୍ତ ସମୟରେ ମୋର ଭଳି ଅଜ୍ଞଜନଠାରୁ ମଧ୍ୟ ପରାମର୍ଶ ନେଉଥାନ୍ତି । ଆପଣଙ୍କର ଏହି ଆଚରଣ ମୋତେ ମୋହିତ କରିଅଛି । ତେଣୁ, ହେ ପ୍ରଭୁ ! ଆପଣ ନିଜର ଆତ୍ମ-ରହସ୍ୟ ପ୍ରକାଶ କରି ବ୍ରହ୍ମାଙ୍କ ନିକଟରେ ଯେଉଁ ପରମ ଜ୍ଞାନ ପ୍ରକାଶ କରିଥିଲେ, ଯଦି ସେସବୁ ମୋତେ ଶୁଣାଇବାରେ କୌଣସି ଆପତ୍ତି ନଥାଏ, ତେବେ ଦୟାପୂର୍ବକ ତାହା ପ୍ରକାଶ କରି ମୋତେ ଏହି ସଂସାର ଦୁଃଖରୁ ପରିତ୍ରାଣ କରନ୍ତୁ ।'

'ବିଦୁର, ମୋର ଏହି ଆକୁଳ ନିବେଦନ ଶ୍ରବଣ କରି, ଭଗବାନ କୃଷ୍ଣ ମୋ ପ୍ରତି ସଦୟ ହୋଇ ମୋତେ ନିଜର ପରମା ସ୍ଥିତି ବିଷୟରେ ଉପଦେଶ ପ୍ରଦାନ କରିଥିଲେ । ତା'ପରେ ମୁଁ ତାଙ୍କର ଚରଣ ବନ୍ଦନା କରି ଓ ତାଙ୍କୁ ପ୍ରଦକ୍ଷିଣ କରି ଏଠାକୁ ଆସିଅଛି । ଭଗବାନ କୃଷ୍ଣଙ୍କ ବିୟୋଗଜନିତ ବିରହ ଦୁଃଖ ମୋତେ ଅତ୍ୟନ୍ତ କାତର କରିଅଛି । ମୁଁ ତାଙ୍କର ପ୍ରିୟ ବଦରିକାଶ୍ରମକୁ ଯାତ୍ରା କରୁଅଛି, କାରଣ ସେଠାରେ ଭଗବାନ ନର ଓ ନାରାୟଣ ବହୁ ବର୍ଷକାଳ ତପସ୍ୟାଚରଣ କରିଥିଲେ । ସେ ସ୍ଥାନ ଅତ୍ୟନ୍ତ ପବିତ୍ର ।'

ଉଦ୍ଧବଙ୍କ ମୁଖରୁ କୃଷ୍ଣ ଏବଂ ତାଙ୍କ ସ୍ୱଜନମାନଙ୍କର ବିୟୋଗ ବାର୍ତ୍ତା ଶ୍ରବଣ କରି ବିଦୁର ପରମଶୋକରେ ମୁହ୍ୟମାନ ହୋଇପଡ଼ିଲେ ଏବଂ ପରେ ନିଜକୁ ସଂଯତ କରି କହିଲେ, 'ଉଦ୍ଧବ, ତୁମେ ପରମ ଭାଗ୍ୟବାନ । ଭଗବାନ ଯୋଗେଶ୍ୱର କୃଷ୍ଣଙ୍କଠାରୁ ଆତ୍ମତତ୍ତ୍ୱ ସମ୍ପର୍କିତ ପରମ ଜ୍ଞାନ ଲାଭ କରିବା ଦ୍ୱାରା ତୁମର ଜୀବନ ସାର୍ଥକ ହୋଇଅଛି । ମୋତେ ତୁମର ସେବକସଦୃଶ ଜ୍ଞାନ କରି ମୋ ପ୍ରତି କରୁଣା ପ୍ରକାଶ କର ଏବଂ ଭଗବାନଙ୍କ ଦ୍ୱାରା କଥିତ ହେଲି ପରମ ଜ୍ଞାନ ଓ ଭଗବତ-ତତ୍ତ୍ୱକୁ ମୋତେ ଶୁଣାଇ କୃତାର୍ଥ କର ।"

ବିଦୁରଙ୍କର ସେହି ଆକୁଳ ନିବେଦନ ଶ୍ରବଣ କରି ଉଦ୍ଧବ କହିଲେ, 'ଆପଣ ଏହି ତତ୍ତ୍ୱ ସମ୍ପର୍କରେ ଅବଗତ ହେବା ନିମନ୍ତେ ମୁନି-ଶ୍ରେଷ୍ଠ ମୈତ୍ରେୟଙ୍କ ନିକଟକୁ ଯାଆନ୍ତୁ; କାରଣ ଆପଣଙ୍କୁ ସେହି ତତ୍ତ୍ୱ ଉପଦେଶମାନ ପ୍ରଦାନ କରିବା ନିମନ୍ତେ, ଭଗବାନ ତାଙ୍କର ଇହଲୀଳା ସମାପ୍ତ କରିବା ପୂର୍ବରୁ ମୋ ସମ୍ମୁଖରେ ମୈତ୍ରେୟ ମୁନିଙ୍କୁ ନିର୍ଦ୍ଦେଶ ଦେଇଥିଲେ । ତେଣୁ ମୋ ନିକଟରୁ ଆପଣ ସେହି ତତ୍ତ୍ୱ ସକଳ ଶ୍ରବଣ କରିବା ଉଚିତ ହେବ ନାହିଁ ।'

ଉଦ୍ଧବଙ୍କ ନିକଟରୁ ଏହା ଶୁଣି ବିଦୁର କାଳବିଳମ୍ବ ନକରି ମହର୍ଷି ମୈତ୍ରେୟଙ୍କ ସହିତ ସାକ୍ଷାତ କରିବା ନିମନ୍ତେ ଯାତ୍ରା କଲେ ।

ସମଗ୍ର ଯାଦବକୁଳ ବିନାଶ ପ୍ରାପ୍ତ ହୋଇଥିବାବେଳେ ଯଦୁ-କୁଳର ଅନ୍ୟତମ ବିଶିଷ୍ଟ ବ୍ୟକ୍ତି ଉଦ୍ଧବ କିପରି ରକ୍ଷା ପାଇଥିଲେ, ତାହା ଜାଣିବାକୁ ପରୀକ୍ଷିତଙ୍କ ମନରେ ପ୍ରଶ୍ନ ଜାତ ହେବା ଏକାନ୍ତ ସ୍ୱାଭାବିକ । ସେ ସମ୍ପର୍କରେ ପରୀକ୍ଷିତଙ୍କ ଉତ୍ଥାପିତ ପ୍ରଶ୍ନର ଉତ୍ତରରେ ଶୁକଦେବ କହିଲେ, 'ମହାରାଜ, ବ୍ରହ୍ମଶାପ ଉପଲକ୍ଷ୍ୟ ମାତ୍ର, ଭଗବାନଙ୍କର ଇଚ୍ଛା ହିଁ ସବୁର ମୂଳ । ତାକୁ ଅନ୍ୟଥା କରିବ କିଏ ? ନିଜର ମାୟାରେ ସମୃଦ୍ଧ ନିଜର ବଂଶକୁ ବିନାଶ କରି ଭଗବାନ ନିଜେ ନିଜର ସେହି ମାନବଲୀଳା ସମ୍ବରଣ କରିବାକୁ ଯିବା ପୂର୍ବରୁ ଚିନ୍ତା କଲେ, ମୁଁ ତ ମର୍ତ୍ତ୍ୟଲୋକ ତ୍ୟାଗ କରିବାକୁ ଯାଉଅଛି । ବର୍ତ୍ତମାନ ମୋ ସମ୍ପର୍କରେ ସମଧିକ ଜ୍ଞାନ ଲାଭ କରିବାକୁ ଜ୍ଞାନିଶ୍ରେଷ୍ଠ ଉଦ୍ଧବ ହିଁ ଯୋଗ୍ୟତମ ବ୍ୟକ୍ତି । ମୋଠାରୁ ଉଦ୍ଧବ କୌଣସି ଗୁଣରେ ନ୍ୟୁନ ନୁହେଁ, ତେଣୁ ମୋ ସମ୍ପର୍କରେ ଅଧିକ ଜ୍ଞାନ ଜନସାଧାରଣଙ୍କ ମଧ୍ୟରେ ବିତରଣ କରିବା ନିମନ୍ତେ ଦିବ୍ୟ ଜ୍ଞାନ ଲାଭ କରି ଉଦ୍ଧବ ଭୂଲୋକରେ ବଞ୍ଚିରହନ୍ତୁ ।'

ଏହିପରି ଭାବି ଉଦ୍ଧବଙ୍କୁ ବଦରିକାଶ୍ରମକୁ ଯିବାକୁ ଭଗବାନ ନିର୍ଦ୍ଦେଶ ଦେଇ ନିଜର ସେହି ଅବତାର ଲୀଳାକୁ ସମ୍ବରଣ କରିଥିଲେ ।

●

# ବିଦୁର-ମୈତ୍ରେୟ ସମ୍ବାଦ

ଅଚ୍ୟୁତଭାବସିଦ୍ଧ ବିଦୁର ହରଦ୍ୱାର ନିକଟବର୍ତ୍ତୀ ଗଙ୍ଗାକୂଳରେ ଅଗାଧ ଜ୍ଞାନୀ ମୁନିଶ୍ରେଷ୍ଠ ମୈତ୍ରେୟଙ୍କୁ ଭେଟିଲେ । ମୈତ୍ରେୟଙ୍କୁ ପ୍ରଣାମ କରି ବିନୟପୂର୍ଣ୍ଣ ଭାବରେ ବିଦୁର କହିଲେ, ହେ ସାଧୁଶିରୋମଣି, ଲୋକ-ମାନେ ସବୁ ସମୟରେ ସୁଖଲାଭ କରିବା ଉଦ୍ଦେଶ୍ୟରେ ବିଭିନ୍ନ କାର୍ଯ୍ୟ କରୁଥିଲେ ମଧ୍ୟ ସେମାନଙ୍କର ସୁଖଲାଭ ହୁଏ ନାହିଁ, କି ଅନୁଭୂତ ଦୁଃଖର ଉପଶମ ଘଟେ ନାହିଁ; ବରଂ ବେଳକୁ ବେଳ ଦୁଃଖର ମାତ୍ରା ବଢ଼ିଥାଏ । ତାହାହେଲେ ଏ ସମ୍ପର୍କରେ ମନୁଷ୍ୟର କର୍ତ୍ତବ୍ୟ କ'ଣ, ଦୟାକରି ପ୍ରକାଶ କରନ୍ତୁ । ଯେଉଁମାନେ ଭଗବାନଙ୍କ ପ୍ରତି ବିମୁଖ ଓ ସର୍ବଦା ଅଧର୍ମକାର୍ଯ୍ୟରେ ରତ ଥାଆନ୍ତି, ସେମାନେ ନିଜନିଜର ଆତ୍ମକୃତ କର୍ମଫଳ ଅନୁସାରେ ଅଶେଷ ଦୁଃଖ ଭୋଗ କରୁଥାନ୍ତି, ତଥାପି ଆପଣଙ୍କ ପରି ସ୍ୱଭାବସିଦ୍ଧ ଦୟାର୍ଦ୍ରଚିତ୍ତ ପରୋପକାରୀ ଭଗବତ ଭକ୍ତମାନେ ସର୍ବତ୍ର ବିଚରଣ କରି ସେମାନଙ୍କ ପ୍ରତି ଅନୁଗ୍ରହ ପ୍ରକାଶ କରିଥାନ୍ତି । ତେଣୁ ହେ ସାଧୁଶ୍ରେଷ୍ଠ, କ'ଣ କଲେ ଆମ୍ଭମାନଙ୍କ ହୃଦୟରେ ଭଗବାନଙ୍କ ସମ୍ପର୍କରେ ଭକ୍ତି ଜାତହେବ ଓ ଆମ ମନ ଓ ହୃଦୟରେ ଭଗବାନ ତାଙ୍କ ଆତ୍ମସ୍ୱରୂପ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନର ଅନୁଭୂତି ସଞ୍ଚାର ତଥା ସନାତନ ଜ୍ଞାନ ପ୍ରଦାନ କରିବେ; ଏ ସମ୍ପର୍କରେ ଦୟାକରି ଉପଦେଶ ପ୍ରଦାନ କରନ୍ତୁ । ଜଗନ୍ନିୟନ୍ତା ଭଗବାନ ବିଭିନ୍ନ ଅବତାର ଗ୍ରହଣ କରି ଯେଉଁ ଲୀଳା ପ୍ରକାଶ କଲେ, କର୍ମରହିତ ହୋଇ ମଧ୍ୟ ବିଭିନ୍ନ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଜଗତକୁ ସୃଷ୍ଟି କଲେ, ଜୀବମାନଙ୍କର ଜୀବିକା ବିଧାନ କରିବା ସଙ୍ଗେ ସଙ୍ଗେ ଜଗତକୁ ପାଳନ କରୁଅଛନ୍ତି, ପୁଣି ସମସ୍ତ ଜଗତ ନିଜର ହୃଦୟାକାଶରେ ରଖି ନିଶ୍ଚେଷ୍ଟ ଭାବରେ ଯୋଗ ନିଦ୍ରାରେ ଶୟନ କରନ୍ତି ଏବଂ ଏକ ହୋଇ ମଧ୍ୟ ବହୁରୂପରେ ପ୍ରକଟିତ ହୁଅନ୍ତି, ଭଗବାନଙ୍କର ସେହି ଅମୃତମୟୀ ଲୀଳାର ସକଳ ବୃତ୍ତାନ୍ତ

ଦୟାକରି ମୋ ନିକଟରେ ପ୍ରକାଶ କରନ୍ତୁ । ଭଗବାନ କୃଷ୍ଣଙ୍କର ଲୀଳା କଥାମୃତ ଯେତେ ଶୁଣିଲେ ମଧ୍ୟ ମୋର ଅତୃପ୍ତ ପ୍ରାଣ ଆହୁରି ଅଧିକ ଶୁଣିବାକୁ ଏତେ ଆଗ୍ରହୀ ହୋଇଉଠୁଛି । ଭଗବାନଙ୍କର ଅମୀୟ ଲୀଳା-କଥାରେ ଯେଉଁମାନେ ଆହ୍ଳାଦିତ ନୁହନ୍ତି, ସେମାନଙ୍କ ଜୀବନ ଅତ୍ୟନ୍ତ ଶୋଚନୀୟ ହୋଇଥାଏ ଏବଂ ସେମାନଙ୍କର କଥା ଭାବିଲେ ମନରେ ମୋର ଗଭୀର ଦୁଃଖ ଜାତ ହୋଇଥାଏ । ଆହା, ଅନନ୍ତ କାଳସ୍ରୋତରେ ସେମାନଙ୍କର ଜୀବନକାଳ, ଶରୀର, ମନ ଏବଂ ବାକ୍ୟ ଯାହା ବୃଥାରେ ନଷ୍ଟ ହେଉଅଛି ! ହେ ଦୁଃଖୀଜନବନ୍ଧୁ ମୈତ୍ରେୟ, ମଧୁପ ଯେପରି ଦୁଷ୍ଟ ଫୁଲରୁ ମଧ୍ୟ ସଞ୍ଚୟ କରିଥାଏ, ଆପଣ ସେହିପରି ବିଭିନ୍ନ କଥାରୁ ପୁଣ୍ୟଶ୍ଳୋକ ଭଗବାନଙ୍କର ସାରକଥା ଉଦ୍ଧାର କରି ଜଗତର ମଙ୍ଗଳ ନିମନ୍ତେ ତାହା ପ୍ରକାଶ କରିଥାନ୍ତି । ତେଣୁ ଦୟାକରି ମୋ ନିକଟରେ ଭଗବାନଙ୍କର ଲୀଳାରହସ୍ୟ ପ୍ରକାଶ କରି ମୋ ମନର ଆବେଗକୁ ଶାନ୍ତ କରନ୍ତୁ ।’

ବିଦୁରଙ୍କର କଥା ଶୁଣି ମହର୍ଷି ମୈତ୍ରେୟ କହିଲେ, ‘ବିଦୁର, ଆପଣ ବାସ୍ତବିକ ପ୍ରଶଂସାର୍ହ । ଆପଣ ଭଲ କଥା ମୋତେ ପଚାରି ଅଛନ୍ତି । ଆପଣଙ୍କର ଏହି ପ୍ରଶ୍ନ ମାଧ୍ୟମରେ ଜନସାଧାରଣଙ୍କର ପ୍ରଭୂତ କଲ୍ୟାଣ ସାଧିତ ହେବ । ପୂର୍ବଜନ୍ମରେ ଆପଣ ପ୍ରଜାସଂହାରକ ଯମ ଥିଲେ ଏବଂ ବେଦବ୍ୟାସଙ୍କ ଔରସରେ ଜନ୍ମଗ୍ରହଣ କରି ନରଲୋକରେ ଅବତୀର୍ଣ୍ଣ ହୋଇଅଛନ୍ତି । ତେଣୁ ଆପଣଙ୍କ ପକ୍ଷରେ ଭଗବାନଙ୍କଠାରେ କାୟ-ମନ-ବାକ୍ୟ ସମର୍ପଣ କରିବା ଏକାନ୍ତ ସ୍ୱାଭାବିକ । ତତ୍ତ୍ୱଜ୍ଞାନ ସମ୍ପର୍କରେ ସକଳ ଉପଦେଶ ପ୍ରଦାନ କରିବା ନିମନ୍ତେ ଭଗବାନ କୃଷ୍ଣ ସ୍ୱୟଂ ମୋତେ ଆଦେଶ କରିଅଛନ୍ତି । ଜଗତର ଉତ୍ପତ୍ତି, ସ୍ଥିତି, ବିଲୟ ଏବଂ ଯୋଗମାୟାଙ୍କୁ ଆଶ୍ରୟ କରି ଭଗବାନଙ୍କର ବିଭିନ୍ନ ଲୀଳା ପ୍ରକାଶ ସମ୍ବନ୍ଧୀୟ ସମସ୍ତ କଥା ଆପଣଙ୍କ ନିକଟରେ ମୁଁ ପ୍ରକାଶ କରିବାକୁ ଯାଉଅଛି । ହେ ବିଦୁର, ଅଖିଳ ଜଗତର ସୃଷ୍ଟି, ସ୍ଥିତି, ଲୟ ଯେ ଭଗବାନଙ୍କର ଅଚିନ୍ତନୀୟ ଲୀଳାର ଅନ୍ତର୍ଭୁକ୍ତ ବିଷୟ, ଏହା ଆପଣଙ୍କୁ କହିବା ନିଷ୍ପ୍ରୟୋଜନ ।

‘ଜଗତ ସୃଷ୍ଟିର ପୂର୍ବରୁ ଭଗବାନ ଏକା ବିଦ୍ୟମାନ ଥିଲେ । ତାଙ୍କ ଦୃଷ୍ଟି ସମ୍ମୁଖରେ କୌଣସି ଦୃଶ୍ୟ ବିଦ୍ୟମାନ ନଥିଲା ।

ଭଗବାନ ନିଜର ମାୟାଶକ୍ତି ବଳରେ ସତ୍ତ୍ୱଗୁଣାଧୀନ ଅଖିଳ ଜଗତ ସୃଷ୍ଟି କଲେ । ବିଦୁର, କୁରୁବଂଶ ଧନ୍ୟ; କାରଣ ଆପଣଙ୍କ ପରି ଧର୍ମାତ୍ମା ଭଗବାନସର୍ବସ୍ୱ ଲୋକପାଳ ସେଠାରେ ଜନ୍ମଗ୍ରହଣ କରିଅଛନ୍ତି । ଆପଣଙ୍କ ସଂସ୍ପର୍ଶରେ ଆସିବାପରେ ଭଗବାନଙ୍କର ଅପାସୋରା କୀର୍ତ୍ତି ସବୁ ମୋତେ ନୂଆ ନୂଆ ଲାଗୁଛି । ଯେଉଁ ମନୁଷ୍ୟମାନେ ସାମାନ୍ୟ ବିଷୟ-ସୁଖ ନିମନ୍ତେ ଜୀବନର ସକଳ ସମୟ ବ୍ୟୟ କରିଥାନ୍ତି ଏବଂ ତା'ର ପ୍ରତିଫଳରେ ସୁଖଲାଭ କରିବା ପ୍ରତିବଦଳରେ ଗଭୀର ଦୁଃଖରେ ପତିତ ହୋଇଥାନ୍ତି, ସେହି ଜନସାଧାରଣଙ୍କର ଶୋକ ନିବାରଣାର୍ଥେ ମୁଁ ଆପଣଙ୍କ ମାଧ୍ୟମରେ ପରମ ପବିତ୍ର 'ଭାଗବତ' ପୁରାଣ ପ୍ରକାଶ କରିବି । ଭଗବାନ ସ୍ୱୟଂ ଏହି ପୁରାଣକୁ ଋଷିମାନଙ୍କ ନିକଟରେ ପ୍ରକାଶ କରିଥିଲେ । ମୁଁ ବର୍ତ୍ତମାନ ତାହା ଆପଣଙ୍କ ନିକଟରେ ପ୍ରକାଶ କରୁଅଛି ।'

'ବିଦୁର, ଏହି ଚରାଚର ବିଶ୍ୱ ଯେତେବେଳେ ପ୍ରଳୟଜଳରେ ନିମଗ୍ନ ଥିଲା, ସେତେବେଳେ ଭଗବାନ ନାରାୟଣ ଏକାକୀ ଅହିଶ୍ରେଷ୍ଠ ଅନନ୍ତ ନାଗ ଉପରେ ନିଦ୍ରାହୀନ ହୋଇ ପରମଶାନ୍ତିରେ ଶୟନ କରିଥିଲେ । ପ୍ରଳୟକାଳର ଅବସାନ ଘଟିଲେ ପୁନର୍ବାର ଜଗତ ସୃଷ୍ଟି କରିବା ନିମନ୍ତେ ନିଜର ସ୍ମୃତିରେ ଯେପରି ଯାବତୀୟ କ୍ରିୟା ସକଳ ଉଦ୍ଭବ ହେବ, ସେଥିନିମନ୍ତେ ସେ ନିଜର କାଳଶକ୍ତିକୁ ନିୟୋଜିତ କରିଥିଲେ । କାଳକ୍ରମେ ଭଗବାନ ନାରାୟଣଙ୍କ ନାଭିପଦ୍ମରୁ ଏକ ଅପୂର୍ବ ପଦ୍ମ ସମ୍ଭୂତ ହେଲା । ଭଗବାନଙ୍କର ଇଚ୍ଛାନୁସାରେ ତାହା ପ୍ରସ୍ଫୁଟିତ ହେଲା ଏବଂ ତହିଁର ଜ୍ୟୋତିରେ ପ୍ରଳୟକାଳୀନ ଅନନ୍ତ ଜଳ ଉଦ୍‌ଭାସିତ ହୋଇ ଉଠିଲା । ସେହି ଦିବ୍ୟ ପଦ୍ମ ମଧ୍ୟରୁ ବେଦମୟ ସ୍ୱୟମ୍ଭୂ ବ୍ରହ୍ମା ଆବିର୍ଭୂତ ହେଲେ । ବ୍ରହ୍ମା ଜାତ ହେବା ପରେ ଚତୁର୍ଦ୍ଦିଗକୁ ଦେଖିବାକୁ ଇଚ୍ଛା କରିବାରୁ ଚତୁର୍ଦ୍ଦିଗକୁ ଅବଲୋକନ କରିବା ନିମନ୍ତେ ସଙ୍ଗେ ସଙ୍ଗେ ତାଙ୍କ ଶରୀରରେ ଚତୁର୍ଦ୍ଦିଗକୁ ଚତୁର୍ମୁଖ ପ୍ରକଟିତ ହେଲା । ସେ ପଦ୍ମ ଓ ପ୍ରଳୟ ଜଳ ବ୍ୟତୀତ ଅନ୍ୟ କିଛି ଦେଖିପାରୁ ନ ଥିଲେ । ତେଣୁ ତାଙ୍କ ମନରେ ପ୍ରଶ୍ନ ଉଦ୍ରେକ ହେଲା, 'ଏହି ପଦ୍ମ ପୃଷ୍ଠରେ ଯେ ମୁଁ ବସିଅଛି, ମୁଁ କିଏ ? ଏହି ପଦ୍ମ କିପରି ସୃଷ୍ଟି ହେଲା ? ଏହି ପଦ୍ମ ତଳେ ନିଶ୍ଚୟ

ଭରୁ ନା କରୁ ଅଛି ।' ଏହିପରି ଭାବ ହେତୁ ତାଙ୍କେ କ'ଣ ଅଛି ଜାଣିବା ନିମନ୍ତେ ପଦ୍ମର ନାଡ଼ ମଧ୍ୟସ୍ଥ ଛିଦ୍ର ଦେଇ ବ୍ରହ୍ମା ପଦ୍ମର ଅଧୋଦେଶ ଓ ମୂଳର ସନ୍ଧାନରେ ବାହାରିଲେ । କିନ୍ତୁ ନାଡ଼ ମଧ୍ୟ ଦେଇ ବହୁ ପଥ ଅତିକ୍ରମ କଲେ ମଧ୍ୟ ତାଙ୍କର ବହିର୍ମୁଖୀ ପ୍ରବୃତ୍ତି ଫଳରେ ସେ କୌଣସି ବସ୍ତୁର ସନ୍ଧାନ ପାଇପାରିଲେ ନାହିଁ । ତେଣୁ ନିଜର ଅନ୍ୱେଷଣରେ ବିଫଳ ହୋଇ ବ୍ରହ୍ମା ପଦ୍ମପୃଷ୍ଠକୁ ଫେରିଆସିଲେ ଏବଂ ନିଜର ସ୍ୱାଭିମାନ ତ୍ୟାଗକରି ସଂଯତ ଚିତ୍ତରେ ଧ୍ୟାନସ୍ଥ ହେଲେ । ଏକଶତ ବର୍ଷ ଏକାଦି-କ୍ରମେ ଧ୍ୟାନସ୍ଥ ହେବା ପରେ ବ୍ରହ୍ମାଙ୍କର ଜ୍ଞାନ ଉଦୟହେଲା । ବହୁ ଚେଷ୍ଟା କରି ଯାହାଙ୍କର ସନ୍ଧାନ ସେ ପାଇପାରି ନଥିଲେ, ଧ୍ୟାନମଗ୍ନ ହେବା ପରେ ନିଜର ହୃଦୟ ମଧ୍ୟରେ ନାରାୟଣଙ୍କ ଉପସ୍ଥିତିକୁ ବ୍ରହ୍ମା ଉପଲବ୍‌ଧି କଲେ । ବ୍ରହ୍ମା ନିଜର ମାନସ ଚକ୍ଷୁରେ ଦେଖିବାକୁ ପାଇଲେ ଯେ ଏକ ସୁବୃହତ ନାଗ ଉପରେ ଏକ ପରମ ସୁନ୍ଦର ପୁରୁଷ ପୀତ-ବସନ ପରିଧାନ କରି ଓ ବିଭିନ୍ନ ଅଳଙ୍କାରରେ ଶୋଭିତ ହୋଇ ଏବଂ କୌସ୍ତୁଭ ମଣି ଧାରଣ କରି ଶୟନ କରିଅଛନ୍ତି । ତାଙ୍କର ଦୀପ୍ତିରେ ସମସ୍ତ ଜଳରାଶି ଉଦ୍‌ଭାସିତ ହୋଇଉଠିଛି । ସେହି ପରମ ପୁରୁଷଙ୍କୁ ଭଗବାନ ବୋଲି ବ୍ରହ୍ମା ଚିହ୍ନିପାରିଲେ ଏବଂ ପର ମୁହୂର୍ତ୍ତରେ ବ୍ରହ୍ମାଙ୍କ ଦୃଷ୍ଟି ସମ୍ମୁଖରେ ଧୀରେ ଧୀରେ ନାଭି ସରୋବରର ପଦ୍ମ, ଜଳ, ପ୍ରଳୟ-କାଳୀନ ବାୟୁ ଏବଂ ଆକାଶ ଇତ୍ୟାଦି ସ୍ପଷ୍ଟଭାବରେ ଦୃଶ୍ୟମାନ ହେଲା ।

ବ୍ରହ୍ମା ପରମେଶ୍ୱର ଭଗବାନ ନାରାୟଣଙ୍କୁ ସ୍ତୁତି କରିବାକୁ ଲାଗିଲେ, 'ଭଗବାନ, ମୋର ପରମ ସୌଭାଗ୍ୟ ଯେ ବହୁକାଳ ଧରି ଉପାସନା କରିବାର ପୁଣ୍ୟଫଳରୁ ଆପଣଙ୍କୁ ସ୍ୱଚକ୍ଷୁରେ ଦର୍ଶନ କରିବାକୁ ଓ ଚିହ୍ନିବାକୁ ମୁଁ ଯୋଗ୍ୟ ହେଲି । ମୋ ପରି ଉପାସକ ପ୍ରତି ଅନୁଗ୍ରହ ପ୍ରକାଶ କରି ଆପଣ ନିଜର ଏହି ଯେଉଁ ରୂପ ମୋ ସମ୍ମୁଖରେ ପ୍ରଦର୍ଶିତ କଲେ, ତାହା ଆପଣଙ୍କର ଶତ ଶତ ରୂପର ମୂଳ । ଆପଣଙ୍କ ନାଭି ପଦ୍ମରୂପକ ଗୃହରେ ମୁଁ ଜାତ ହୋଇଅଛି । ମୁଁ ଆପଣଙ୍କର ଏହି ପ୍ରମାଦହୀନ, ଭେଦଶୂନ୍ୟ, ଆନନ୍ଦସ୍ୱରୂପ, ତେଜୋମୟୀ ବିଗ୍ରହର ଶ୍ରୀଚରଣରେ ଶରଣ ନେଉଅଛି । ଆପଣଙ୍କର ଏହି ଦିବ୍ୟ ଅଦ୍ୱିତୀୟ ମୂର୍ତ୍ତି ବାସ୍ତବିକ ଉପାସନାର ଯୋଗ୍ୟ । ତାହା ସକଳ ଉପାସ୍ୟ ମଧ୍ୟରେ

ଶ୍ରେଷ୍ଠ ଓ ବିଶ୍ୱସୃଷ୍ଟିକାରୀ; ତେଣୁ ବିଶ୍ୱଠାରୁ ଭିନ୍ନ ଏବଂ ଭୂତ ଓ ଇନ୍ଦ୍ରିୟାଦିର କାରଣ, ମୁଁ ଆପଣଙ୍କୁ ବାରମ୍ବାର ପ୍ରଣାମ ଜଣାଉଛି । ଯେଉଁ ଲୋକମାନେ ଆପଣଙ୍କ ପ୍ରତି ଅନାଦର ପ୍ରକାଶ କରି ଆପଣଙ୍କ ଅସ୍ତିତ୍ୱ ସମ୍ପର୍କରେ ସନ୍ଦେହ ପ୍ରକାଶ କରି ନାନାଦି କୁତର୍କରେ ବ୍ୟସ୍ତ ରହନ୍ତି, ସେମାନେ ନରକଗାମୀ ହେବାର ଯୋଗ୍ୟ । ଯେଉଁ ବ୍ୟକ୍ତି ଭକ୍ତି ସହକାରେ ଆପଣଙ୍କର ଶ୍ରୀଚରଣକୁ ଭଜନା କରେ, ସେ ବାସ୍ତବିକ ଧନ୍ୟ । ଯେଉଁମାନେ ଆପଣଙ୍କୁ ପୂଜା କରନ୍ତି ନାହିଁ, ସେମାନେ ଧନ, ଜନ, ପତ୍ନୀ, ପୁତ୍ର, ପରିବାରଜନିତ ନାନାଦି ଚିନ୍ତା ଓ ଶୋକ ମଧ୍ୟରେ କାଳାତିପାତ କରିଥାନ୍ତି । ପ୍ରଭୁ, ଆପଣ ଚିରକାଳ ମୋ ହୃଦୟ କମଳରେ ବାସ କରନ୍ତୁ । ଆପଣ ହିଁ ସମସ୍ତ ସୁଖର ମୂଳ । ଯେଉଁ ବ୍ୟକ୍ତି-ମାନେ କାମସୁଖରେ ଲିପ୍ତ ରହି ଆପଣଙ୍କ ପ୍ରତି ଧ୍ୟାନ ଦିଅନ୍ତି ନାହିଁ ଏବଂ ବିଭିନ୍ନ ଅମଙ୍ଗଳକର କାର୍ଯ୍ୟରେ ନିଜକୁ ଜଡ଼ିତ କରିଥାନ୍ତି, ସେମାନେ କ୍ଷୁଧା, ତୃଷା, ବାତ, ପିତ୍ତ, କଫ, ଶୀତ, ଉଷ୍ମ, ବାୟୁ, ବର୍ଷା, ଦୁଃସହ କାମାଗ୍ନି ଏବଂ କ୍ରୋଧଦ୍ୱାରା ଆକ୍ରାନ୍ତ ହୋଇ ଶୋଚନୀୟ ଭାବରେ ସତତ ପୀଡ଼ିତ ହୋଇଥାନ୍ତି । ସେମାନଙ୍କର ଦୁର୍ଭାଗ୍ୟଜନକ ଅବସ୍ଥା ଦେଖିଲେ ମନରେ ମୋର ଖେଦ ଜାତହୁଏ । ଲୋକମାନଙ୍କର ହୃଦୟ-ପଦ୍ମ ଭକ୍ତିଦ୍ୱାରା ପବିତ୍ର ହେଲେ ଆପଣଙ୍କ ନାମ ଶ୍ରବଣ ଦ୍ୱାରା ପ୍ରକୃତ ପଥ ସେମାନେ ଦେଖିପାରନ୍ତି । ମନ ମଧ୍ୟରେ ଆପଣଙ୍କର କୌଣସି ରୂପ କଳ୍ପନା କଲେ, ଆପଣ ସେହି ରୂପରେ ଭକ୍ତଙ୍କ ସମ୍ମୁଖରେ ଆବିର୍ଭୂତ ହୁଅନ୍ତି । ଆପଣଙ୍କୁ ପ୍ରସନ୍ନ କରିବା ନିମନ୍ତେ ଲୋକମାନେ ବିଭିନ୍ନ ଯାଗଯଜ୍ଞ, ତପସ୍ୟା, ଦାନ, ବ୍ରହ୍ମଚର୍ଯ୍ୟାଦି ପାଳନ କରି ଆପଣଙ୍କୁ ଆରାଧନା କରିଥାନ୍ତି; ସେମାନଙ୍କର ସେହି କାର୍ଯ୍ୟ ଅକ୍ଷୟ ପୁଣ୍ୟ ଅର୍ଜନ କରିଥାଏ । ଆପଣ ପରାତ୍ପର, ଜ୍ଞାନାଶ୍ରୟ, ଅଖିଳ ଜଗତର ସୃଷ୍ଟି ସ୍ଥିତି-ଲୟ ଆପଣଙ୍କର କ୍ରୀଡ଼ାମାତ୍ର । ଆପଣଙ୍କୁ ନମସ୍କାର । ଯେଉଁ ବ୍ୟକ୍ତି ଜୀବନର ଅନ୍ତିମ କାଳରେ ଅବଶ ହୋଇ ଆପଣଙ୍କର ନାମ ଓ ଅବତାର ସମ୍ପର୍କୀୟ ଲୀଳା-କଥା ସ୍ମରଣ ବା ଭଜନ କରେ, ସେହି ବ୍ୟକ୍ତି ବହୁ ଜନ୍ମର ପାପରୁ ମୁକ୍ତିଲାଭ କରି ଆପଣଙ୍କର ସତ୍ୟ-ସ୍ୱରୂପ ପରମବ୍ରହ୍ମ ଜୀବକୁ ଲାଭ କରିବାର ଯୋଗ୍ୟ ହୋଇଥାଏ । ଆପଣ ଅଜନ୍ମା, ଆପଣଙ୍କ ଚରଣରେ ଶରଣ ଭିକ୍ଷା କରୁଅଛି । ଆପଣ

ଏକ ବିଶାଳ ଭୁବନାକାର ଦ୍ରୁମ ସ୍ୱରୂପ । ଆପଣ ଏହି ଦ୍ରୁମର ମୂଳ । ସତ୍ତ୍ୱ-ରଜ-ତମ ଗୁଣଭିତ୍ତିରେ ସୃଷ୍ଟି-ସ୍ଥିତି ଲୟ କରିବା ନିମନ୍ତେ ମୋତେ, ବିଷ୍ଣୁଙ୍କୁ ଓ ଶିବଙ୍କୁ ସେହି ବୃକ୍ଷର ତିନିଗୋଟି ଶାଖାରୂପେ ପ୍ରକାଶ କରି ବୃଦ୍ଧିଶୀଳ ହୋଇଅଛନ୍ତି । ସେହି ଦ୍ରୁମର ମୂଳରୁ ବହୁ ଯୋଗୀଋଷି ଓ ତା'ର ଶାଖା ପ୍ରଶାଖାରେ ମନୁଷ୍ୟମାନେ ବାସକରି ଥାଆନ୍ତି । ଆପଣ କାଳ ସ୍ୱରୂପ । ଆପଣ ପୁରୁଷୋତ୍ତମ । ଅବିଦ୍ୟା, ରାଗ ଦ୍ୱେଷ ଆଦି ଅଜ୍ଞାନତାର ଆପଣ ମଧ୍ୟ କାରଣ; ତଥାପି ଅଜ୍ଞାନତା ଆପଣଙ୍କୁ ଅଭିଭୂତ କରିପାରେ ନାହିଁ । ଆପଣ ଅଚିନ୍ତ୍ୟ; ଆପଣଙ୍କର ଯେତେ ସ୍ତୁତି କଲେ ମଧ୍ୟ ଆପଣଙ୍କର ଅନନ୍ତ ଗୁଣାବଳୀର ବାସ୍ତବିକ ଅନ୍ତ ନାହିଁ । ଆପଣଙ୍କ ଉଦ୍ଦେଶ୍ୟରେ ମୁଁ ବାରମ୍ବାର ମୋର ଭକ୍ତିପ୍ଳୁତ ପ୍ରଣାମ ନିବେଦନ କରୁଅଛି ।'

ବ୍ରହ୍ମାଙ୍କର ସେହି ବିନୟପୂର୍ଣ୍ଣ ସ୍ତୁତି ଶ୍ରବଣ କରି ଭଗବାନ ନାରାୟଣ କହିଲେ, 'ବେଦଗର୍ଭ, ତୁମେ ଯେଉଁ ତପସ୍ୟାଚରଣ ଏବଂ ସ୍ତୁତିଗାନ କଲ, ସେହିବୁ ମୋର କରୁଣାର ଦାନ । ତୁମେ ମୋ ନିକଟରୁ ଯାହା ପ୍ରାର୍ଥନା କରୁଅଛ, ତାହା ମୁଁ ପୂର୍ବରୁ ସମ୍ପନ୍ନ କରିଅଛି । ତୁମେ ପୁନର୍ବାର ତପସ୍ୟା ଓ ଉପାସନା କର, ତଦ୍ୱାରା ନିଜର ହୃଦୟ ମଧ୍ୟରେ ଅଖିଳ ଜଗତକୁ ସମ୍ପୂର୍ଣ୍ଣ ରୂପେ ଅବଲୋକନ କରିପାରିବ ଏବଂ ସକଳ ଲୋକରେ ମୁଁ କିପରି ସର୍ବବ୍ୟାପୀ ହୋଇ ଅବସ୍ଥାନ କରୁଅଛି, ତାହା ତୁମେ ସ୍ୱଚକ୍ଷୁରେ ଦର୍ଶନ କରିପାରିବ । ତୁମେ ସୃଷ୍ଟି କରିବାକୁ ଇଚ୍ଛା ପୋଷଣ କରିଅଛ, ଏହା ପ୍ରଶଂସାର ବିଷୟ । ମୁଁ ଦୁର୍ଜ୍ଞେୟ, କିନ୍ତୁ ମୁଁ ତୁମପ୍ରତି ପ୍ରସନ୍ନ ଥିବାରୁ ତୁମ ନିକଟରେ ମୁଁ ସୁଜ୍ଞେୟ ହୋଇଅଛି । ତୁମେ ପୂର୍ବାନୁସାରେ ସୃଷ୍ଟି କରିଯାଅ, ମୁଁ ତୁମକୁ ସେଥିପାଇଁ ଆଶୀର୍ବାଦ କରୁଅଛି ।'

ଏହା କହି ଭଗବାନ ଅନ୍ତର୍ହିତ ହୋଇଗଲେ ।

ଭଗବାନ ନାରାୟଣଙ୍କର ଉପଦେଶାନୁସାରେ ବ୍ରହ୍ମା ପରମଭକ୍ତି ସହକାରେ ବହୁବର୍ଷ ଧରି ତପସ୍ୟାଚରଣ କଲେ ଏବଂ ତତ୍ପରେ ଜଗତ ସୃଷ୍ଟିରେ ମନୋନିବେଶ କଲେ । ବ୍ରହ୍ମା ଅବଲୀଳାକ୍ରମେ ତମ, ମୋହ, ରାଗ, ଦ୍ୱେଷ, ତାମିସ୍ର, ଅନ୍ଧତାମିସ୍ର ଆଦି ସୃଷ୍ଟି କରି ସନକ,

ସନନ୍ଦ, ସନାତନ ଏବଂ ସନତ୍‌କୁମାର ଏପରି ଚାରିଜଣ ମୁନିଙ୍କୁ ସୃଷ୍ଟି କଲେ । ମୁନିମାନଙ୍କୁ ସୃଷ୍ଟି କରି ପ୍ରଜା ସୃଷ୍ଟି କରିବାକୁ ବ୍ରହ୍ମା ସେମାନଙ୍କୁ ଆଦେଶ ପ୍ରଦାନ କଲେ; କିନ୍ତୁ ସେମାନେ ବ୍ରହ୍ମାଙ୍କର ଆଦେଶକୁ ଅମାନ୍ୟ କରିବାରୁ ବ୍ରହ୍ମାଙ୍କ ମନରେ କ୍ରୋଧ ଜାତ ହେଲା । ବ୍ରହ୍ମା କିନ୍ତୁ ତାହା ପ୍ରକାଶ ନ କରି ମନ ମଧ୍ୟରେ ତାହା ସମ୍ବରଣ କରିବାକୁ ଚେଷ୍ଟା କଲେ ମଧ୍ୟ ଶେଷରେ ସଫଳ ହେଲେ ନାହିଁ । ସେହି କ୍ରୋଧ ଧୀରେ ଧୀରେ ତାଙ୍କର ହୃଦୟର ମଧ୍ୟ ସ୍ଥାନରୁ ନୀଳ-ଲୋହିତ ବର୍ଣ୍ଣବିଶିଷ୍ଟ ଏକ ସନ୍ତାନ ସୃଷ୍ଟି କଲା । ସନ୍ତାନଟି ଜାତ ହେବା ମାତ୍ରେ ରୋଦନ କରିବାରୁ, ସେ ରୁଦ୍ର ନାମରେ ପରିଚିତ ହେଲେ । ବ୍ରହ୍ମାଙ୍କର ମନରୁ ମରୀଚି, ଚକ୍ଷୁରୁ ଅତ୍ରି, ମୁଖରୁ ଅଙ୍ଗିରା, କର୍ଣ୍ଣରୁ ପୁଲସ୍ତ୍ୟ, ନାଭିରୁ ପୁଲହ, ହସ୍ତରୁ କ୍ରତୁ, ତ୍ୱକ୍‌ରୁ ଭୃଗୁ, ପ୍ରାଣରୁ ବଶିଷ୍ଠ, ଅଙ୍ଗୁଳିରୁ ଦକ୍ଷ ଏବଂ କ୍ରୋଡ଼ରୁ ନାରଦ, ଏହିପରି ଦଶ ଗୋଟି ସ୍ଥାନରୁ ଦଶଗୋଟି ପୁତ୍ର ଜାତ ହେଲେ । ବ୍ରହ୍ମାଙ୍କର ଦକ୍ଷିଣ ହସ୍ତରୁ ଧର୍ମ, ପୃଷ୍ଠ ଦେଶରୁ ମୃତ୍ୟୁ ଆନୟନକାରୀ ଅଧର୍ମ, ହୃଦୟରୁ କାମ, ଭ୍ରୂ ଦ୍ୱୟରୁ କ୍ରୋଧ, ଅଧର ଓ ଓଷ୍ଠରୁ ଲୋଭ, ମୁଖରୁ ବାଗ୍‌ଦେବୀ, ଲିଙ୍ଗରୁ ସମୁଦ୍ର ଏବଂ ପାୟୁରୁ ରାକ୍ଷସ ନିଋତି ଏବଂ ଛାୟାରୁ କର୍ଦ୍ଦମ ଋଷି ଜାତ ହେଲେ । ଏହିପରି ଭାବରେ ବ୍ରହ୍ମାଙ୍କର ଦେହ ଓ ମନରୁ ବିଭିନ୍ନ ବ୍ୟକ୍ତି ଓ ବିଭାଗମାନ ସୃଷ୍ଟିହେଲା । ପୁନଶ୍ଚ ବ୍ରହ୍ମାଙ୍କର ହୃଦୟରୁ ତର୍କବିଦ୍ୟା, ବେଦବିଦ୍ୟା, ଅର୍ଥବିଦ୍ୟା, ରାଜନୀତି, ପ୍ରଣବ, ଲୋମରୁ ଗାୟତ୍ରୀ, ମାଂସରୁ ତ୍ରିଷ୍ଟୁଭ୍, ସ୍ନାୟୁରୁ ଅନୁଷ୍ଟୁପ୍, ଅସ୍ଥିରୁ ଜଗତୀ, ମଜ୍ଜାରୁ ପଙ୍‌କ୍ତି, ପ୍ରାଣରୁ ବୃହତୀ ଆଦି ଛନ୍ଦ, ଶରୀରରୁ ଗୋଟିଏ ପୁରୁଷ ଓ ଗୋଟିଏ ସ୍ତ୍ରୀ ଜାତ ହେଲେ । ସେହି ପୁରୁଷଙ୍କର ନାମ ହେଲା ସ୍ୱାୟମ୍ଭୁବ ମନୁ ଏବଂ ସ୍ତ୍ରୀଙ୍କର ନାମ ହେଲା ଶତରୂପା । ମନୁଙ୍କ ସହିତ ଶତରୂପାଙ୍କର ବିବାହ ଅନୁଷ୍ଠିତ ହେଲା । କାଳକ୍ରମେ ଶତରୂପାଙ୍କ ଗର୍ଭରୁ ଦୁଇଟି ପୁତ୍ର ଏବଂ ତିନିଗୋଟି କନ୍ୟା ଜାତ ହେଲେ । ପୁତ୍ର ଦୁଇଟିଙ୍କର ନାମ ହେଲା, ପ୍ରିୟବ୍ରତ ଓ ଉତ୍ତାନପାଦ ଏବଂ କନ୍ୟାମାନଙ୍କର ନାମ ହେଲା, ଆକୂତି, ଦେବହୂତି ଓ ପ୍ରସୂତି । ରୁଚିକଙ୍କ ସହିତ ଆକୂତିଙ୍କର, କର୍ଦ୍ଦମଋଷିଙ୍କ ସହିତ ଦେବହୂତିଙ୍କର ଏବଂ ଦକ୍ଷପ୍ରଜାପତିଙ୍କ ସହିତ ପ୍ରସୂତିଙ୍କର ବିବାହ ଅନୁଷ୍ଠିତ ହେଲା ।

ଏହି ଦମ୍ପତିମାନଙ୍କର ସନ୍ତାନ ସନ୍ତତିଙ୍କ ଦ୍ୱାରା ଧୀରେ ଧୀରେ ପ୍ରଜା-ମାନଙ୍କର ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା ।”

‘ବ୍ରହ୍ମା ଏହିପରି ଭାବରେ ଜଗତ ସୃଷ୍ଟି କରୁଥିବା ସମୟରେ ପୃଥିବୀକୁ ଜଳମଗ୍ନା ଥିବାର ଦେଖି ସେ ଅତ୍ୟନ୍ତ ଚିନ୍ତିତ ହେଲେ ଏବଂ କିପରି ଭାବରେ ପୃଥିବୀକୁ ଅନନ୍ତ ଜଳରାଶି ମଧ୍ୟରୁ ଉତ୍ତୋଳିତ କରିବେ, ତାହା ଭାବିବାକୁ ଲାଗିଲେ । ଏହି ସମୟରେ ବ୍ରହ୍ମାଙ୍କର ନାସାରନ୍ଧ୍ର ମଧ୍ୟରୁ ଏକ କ୍ଷୁଦ୍ରକାୟ ବରାହ ମୂର୍ତ୍ତି ବିନିର୍ଗତ ହେଲା ଏବଂ ଗୃହୁଁ ଗୃହୁଁ ସେହି କ୍ଷୁଦ୍ରାକୃତି ବରାହ ଧୀରେ ଧୀରେ ନିଜର ଶରୀର ବୃଦ୍ଧିକରି ଆକାଶ ପରି ବିଶାଳରୂପ ଧାରଣ କଲେ । ପରେ ସେହି ଆଶ୍ଚର୍ଯ୍ୟଜନକ ଜ୍ୟୋତିଷ୍ମାନ ବରାହ ଜଳମଧ୍ୟକୁ ଲମ୍ଫ ପ୍ରଦାନ କରି ରସାତଳ ଗାମିନୀ ଜଳମଗ୍ନା ପୃଥିବୀକୁ ନିଜ ଦନ୍ତ ସାହାଯ୍ୟରେ ଉତ୍ତୋଳିତ କରି ଆଣିଲେ । ପୃଥିବୀକୁ ଜଳମଧ୍ୟରୁ ଉଦ୍ଧାର କଲାବେଳେ ଜଳ ମଧ୍ୟରେ ବାସ କରୁଥିବା ରାକ୍ଷସ ରାଜ ହିରଣ୍ୟାକ୍ଷ ପୃଥିବୀ ଉଦ୍ଧାର କାର୍ଯ୍ୟରେ ବରାହଙ୍କୁ ବାଧା ଦେଇଥିଲେ ଏବଂ ତାକୁ ଭଗବାନଙ୍କ ହସ୍ତରେ ମୃତ୍ୟୁ ବରଣ କରିବାକୁ ପଡ଼ିଥିଲା । ଏହି ହିରଣ୍ୟାକ୍ଷର ଜନ୍ମ ସମ୍ପର୍କରେ ଗୋଟିଏ ସୁନ୍ଦର କଥା ଅଛି, ତାହା ମୁଁ କହୁଅଛି, ଶୁଣନ୍ତୁ ।

କଶ୍ୟପଙ୍କର ବହୁ ପତ୍ନୀଙ୍କ ମଧ୍ୟରେ ଦାକ୍ଷାୟଣୀ ଦିତି ଅନ୍ୟତମା । ଦିନେ ଦିତି ସନ୍ଧ୍ୟା ସମୟରେ କାମପୀଡ଼ିତା ହୋଇ ସ୍ୱାମୀ କଶ୍ୟପଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ସ୍ୱାମୀ-ସଙ୍ଗ-ସୁଖ କାମନା ପ୍ରକାଶ କରି ନିଜେ କହିଲେ, ‘ପ୍ରଭୁ, ମତ୍ତଗଜ କଦଳୀ ବୃକ୍ଷକୁ ପୀଡ଼ିତ କଲାପରି କାମଦେବ ଶରାସନ ସାହାଯ୍ୟରେ ମୋତେ କାମାର୍ତ୍ତା କରି ଅଛନ୍ତି । ଏହାଛଡ଼ା ସପତ୍ନୀମାନଙ୍କର ସନ୍ତାନ ସମୃଦ୍ଧି ଦର୍ଶନ କରି ମୁଁ ମନରେ ବିଶେଷ ଦୁଃଖ ଲାଭକରିଅଛି । ମୋତେ ଆପଣଙ୍କର ସଙ୍ଗ-ସୁଖ ପ୍ରଦାନ କରି ମୋ ଗର୍ଭରେ ପୁତ୍ର ସଞ୍ଚାର କରନ୍ତୁ । ସ୍ୱାମୀ-ସୁଖ ଓ ଅପତ୍ୟ ଲାଭ ଯେ ପତ୍ନୀର ସର୍ବଶ୍ରେଷ୍ଠ ସୌଭାଗ୍ୟ, ଏ କଥା ଆପଣଙ୍କୁ ସ୍ମରଣ କରାଇବାର ପ୍ରୟୋଜନ ନାହିଁ । ମୋର ଏହି ପ୍ରାର୍ଥନାକୁ ଅସ୍ୱୀକାର କରି ମୋତେ ବିଫଳ ମନୋରଥା କରନ୍ତୁ ନାହିଁ । ଦୟାକରି ମୋର କାମନା ବର୍ତ୍ତମାନ ପୂର୍ଣ୍ଣ କରନ୍ତୁ ।’

କାମବିହ୍ୱଳା ପତ୍ନୀର କଥା ଶୁଣି କଶ୍ୟପ ପ୍ରୀତିପୂର୍ଣ୍ଣ ବଚନରେ କହିଲେ, 'ପ୍ରିୟେ, ମୁଁ ତୁମର କାମନା ନିଶ୍ଚୟ ପୂର୍ଣ୍ଣ କରିବି। ମାତ୍ର ମୁହୂର୍ତ୍ତିକାଳ ଅପେକ୍ଷା କର; କାରଣ ଭଗବାନ ରୁଦ୍ର ପ୍ରମୁଖଙ୍କର ଭୁକ୍ତ ଏହି ସନ୍ଧ୍ୟା ସମୟ ଅତ୍ୟନ୍ତ ଭୟଙ୍କର। ଏହି ସମୟରେ ଭୂତନାଥଙ୍କ ସହ ଭୂତପ୍ରେତାଦି ଅନୁଚରଗଣ ବିଚରଣ କରୁଅଛନ୍ତି ଏବଂ ସ୍ୱୟଂ ଭୂତନାଥ ମଧ୍ୟ ତୁମର ଭଗ୍ନୀ-ପତି। ସେ ଆମର ଏହି କାର୍ଯ୍ୟକୁ ଆଦୌ ଭଲ ଦୃଷ୍ଟିରେ ଦେଖିବେ ନାହିଁ କି ଆମକୁ କ୍ଷମା ଦେବେ ନାହିଁ। ସେ ଆମର ପୂଜ୍ୟ ଏବଂ ତାଙ୍କ ସମ୍ମୁଖରେ ଆମର ସଂଯତ ବ୍ୟବହାର କରିବା ସଙ୍ଗେ ସଙ୍ଗେ ଲଜ୍ଜା ସମ୍ଭ୍ରମ ପୋଷଣ କରିବା ଉଚିତ। ଏହି ସମୟଟା ଅନ୍ତତଃ ଗଡ଼ିଯାଉ। ନିଜର କାମନା ପୂର୍ତ୍ତି ନିମନ୍ତେ ଅନୁକୂଳ ସମୟ ଆସିବା ପର୍ଯ୍ୟନ୍ତ ସାମାନ୍ୟ ଅପେକ୍ଷା କର।'

ସ୍ୱାମୀଙ୍କର ପ୍ରବୋଧବାକ୍ୟ ଅନୁସାରେ କିଛି ସମୟ ଧୈର୍ଯ୍ୟ ଧରି ରହିବାର ଅବସ୍ଥା କାମବିହ୍ୱଳା ଦିତିଙ୍କର ନ ଥିଲା। ସେ ନିଲଜ୍ଜା ଇତର ରମଣୀସୁଲଭ ଆଚରଣ ପ୍ରକାଶ କରି ନିଜର କାମନା ପୂର୍ତ୍ତି ନିମନ୍ତେ ସ୍ୱାମୀଙ୍କୁ ପ୍ରଲୋଭିତ ଓ ଉତ୍ତେଜିତ କରିବାଲାଗି ସ୍ୱାମୀଙ୍କର ପରିହିତ ବସ୍ତ୍ରକୁ ନିଜ ହସ୍ତଦ୍ୱାରା ଆକର୍ଷଣ କଲେ। ନିଜ ଭାର୍ଯ୍ୟାର ଏପରି ଆଚରଣ ଲକ୍ଷ୍ୟ କରି ତାଙ୍କୁ ସନ୍ତୁଷ୍ଟ କରିବା ବ୍ୟତୀତ ଅନ୍ୟ ଉପାୟ ନାହିଁ ଦେଖି କଶ୍ୟପ ପତ୍ନୀ ସହିତ କାମକ୍ରୀଡ଼ାରେ ପ୍ରବୃତ୍ତ ହେବା ପୂର୍ବରୁ ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇଲେ ଏବଂ ପରେ ସ୍ତ୍ରୀର ମନୋବାଞ୍ଛା ପୂର୍ଣ୍ଣ କଲେ। ନିଜର କାମନା ଚରିତାର୍ଥ ହେବା ପରେ ଦିତି ଶାନ୍ତ ହେଲେ ଏବଂ ତାଙ୍କର ସଦ୍‌ଜ୍ଞାନ ଉଦୟ ହେଲା। ସେ ନିଜର କୁକର୍ମ ପାଇଁ ଅତ୍ୟନ୍ତ ଲଜ୍ଜିତା ହୋଇ ସ୍ୱାମୀଙ୍କୁ କହିଲେ, 'ସ୍ୱାମି, ଭୂତନାଥ ଶିବଙ୍କ ନିକଟରେ ଆମେ ଅପରାଧ କରିବସିଲେ। ମୋର ଏହି ଗର୍ଭର ଯେପରି କୌଣସି କ୍ଷତି ନ ହେବ, ତା'ର ବ୍ୟବସ୍ଥା କରନ୍ତୁ। ଶିବ ମୋର ଭଗ୍ନୀପତି ଏବଂ ଅତ୍ୟନ୍ତ କ୍ଷମାଶୀଳ। ମୋର ଭଗ୍ନୀ ସତୀଙ୍କର ସମ୍ପର୍କରେ ଆସିଥିବାରୁ ସେ ମଧ୍ୟ ସ୍ତ୍ରୀ-ସ୍ୱଭାବ ସହିତ ଅପରିଚିତ ନୁହଁନ୍ତି। ମୋ ପ୍ରତି ସେ ଯେପରି ପ୍ରସନ୍ନ ହେବେ, ଆପଣ ତା'ର ବିଧାନ କରନ୍ତୁ। ମୁଁ ତାଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରୁଛି।

କଶ୍ୟପ ମଧ୍ୟ ନିଜର ସେହି କୁକର୍ମ ନିମନ୍ତେ ଅତ୍ୟନ୍ତ ଦୁଃଖିତ ହୋଇଥିଲେ । ସ୍ତ୍ରୀର କଥା ଶୁଣି କଶ୍ୟପ କ୍ରୋଧାନ୍ୱିତ ହୋଇ କହିଲେ, 'ହେ ଅଭଦ୍ରେ, ତୁମର ଚିତ୍ତ ଅତ୍ୟନ୍ତ ଅପବିତ୍ର; ତା'ଛଡ଼ା ଏହି ସମସ୍ତ ମଧ୍ୟ ସେପରି ଶୁଭ ନୁହେଁ । ଏହି ସନ୍ଧ୍ୟା ସମୟରେ ଅତ୍ୟନ୍ତ ରତି-ଲାଳସୀ ହୋଇ ମୋ ପ୍ରତି ଏବଂ ଶିବଙ୍କ ପ୍ରତି ଯଥେଷ୍ଟ ଅବମାନନା ତୁମେ କରିଅଛ । ତେଣୁ ଏହି ଗୁରୁତର ଦୋଷ ଦୃଷ୍ଟିରୁ ତୁମର ଏହି ଗର୍ଭରେ ଅମଙ୍ଗଳରୂପୀ ଦୁଇଟି ଅଧମ ପୁତ୍ର ଜାତ ହେବେ । ସେମାନଙ୍କର ଅତ୍ୟାଚାରରେ ସମଗ୍ର ତ୍ରିଭୁବନ ନିପୀଡ଼ିତ ହେବ । ପ୍ରାରମ୍ଭରେ ସେମାନଙ୍କ କାର୍ଯ୍ୟରେ କୌଣସି ବାଧା ଦେବାକୁ ଦେବତାମାନେ ସମର୍ଥ ହେବେ ନାହିଁ; କିନ୍ତୁ ସେମାନେ ଯେତେବେଳେ ଦୀନହୀନ ନିର୍ଦ୍ଦୋଷ ବ୍ୟକ୍ତିଙ୍କୁ, ଏପରିକି ସ୍ତ୍ରୀଲୋକମାନଙ୍କୁ ପୀଡ଼ିତ କରିବେ, ସେତେବେଳେ ମହାତ୍ମାମାନଙ୍କ ମନରେ ବିଶେଷ କ୍ରୋଧ ଜାତ ହେବ; ଫଳରେ ଲୋକଭାବନ ସ୍ୱୟଂ ଭଗବାନ ତୁମର ପୁତ୍ର ଦୁହିଁଙ୍କୁ ଉପଯୁକ୍ତ ଶାସ୍ତି ପ୍ରଦାନ କରିବା ନିମନ୍ତେ ଅବତାର ଗ୍ରହଣ କରି ସେମାନଙ୍କୁ ବିନାଶ କରିବେ ।'

ସ୍ୱାମୀଙ୍କର କଥା ଶୁଣି ଦିତି କହିଲେ, 'ପ୍ରଭୁ, ଆପଣଙ୍କର ଏହି ଭବିଷ୍ୟତ ବାଣୀ ଯଦି ସତ୍ୟ ହୁଏ ଏବଂ ଆପଣଙ୍କର କଥାନୁସାରେ ସେମାନଙ୍କର ମୃତ୍ୟୁ ଯଦି ସେପରି ଘଟେ, ତେବେ ପ୍ରାର୍ଥନା କରୁଅଛି ଯେ, ମୋର ସେହି ପୁତ୍ର ଦୁଇଟି ଭଗବାନଙ୍କ ଅଭୟ କରରେ ଯେପରି ନିହତ ହେବାର ସୌଭାଗ୍ୟ ଅର୍ଜନ କରନ୍ତୁ । ମୋର ସାମାନ୍ୟ ଅପରାଧ ପାଇଁ ମୋର ଗର୍ଭସ୍ଥ ଏହି ସନ୍ତାନ ଦୁଇଟି ଏପରି ଦୁଷ୍ଟ ହେବେ ଏବଂ ଜଗତର ଅମଙ୍ଗଳ କରିବେ, ଭାବିଲେ ମୋର ଅନୁତାପର ସୀମା ରହୁନାହିଁ ।'

କଶ୍ୟପ କହିଲେ, 'ପ୍ରିୟେ, ତୁମେ ନିଜର ପାପାଚରଣ ନିମନ୍ତେ ଅନୁତପ୍ତ ହୋଇଥିବା ଆନନ୍ଦର ବିଷୟ । ବିଚାରଶୂନ୍ୟ ଭାବରେ ଦୁଷ୍କର୍ମ କରିଥିଲେ ମଧ୍ୟ ତୁମେ ଭଗବାନଙ୍କ ପ୍ରତି ଏବଂ ଭଗବାନ ରୁଦ୍ରଙ୍କ ପ୍ରତି ବିଶେଷ ଭକ୍ତି କରିଥାଅ । ମୋ ପ୍ରତି ମଧ୍ୟ ତୁମ ମନ ଓ କାର୍ଯ୍ୟରେ ଯଥେଷ୍ଟ ଭକ୍ତି ଥାଏ । ତେଣୁ ତୁମର ଗର୍ଭରୁ ଯେଉଁ ଦୁଇଗୋଟି ପୁତ୍ର ଜାତ ହେବେ, ସେମାନଙ୍କ ମଧ୍ୟରୁ ଜଣଙ୍କର ନାମ ହେବ ହିରଣ୍ୟକଶିପୁ ଏବଂ

ହିରଣ୍ୟକଶିପୁର ପ୍ରହ୍ଲାଦ ନାମରେ ଗୋଟିଏ ପୁତ୍ର ହେବ । ତୁମର ସୁକର୍ମଜନତ ପୁଣ୍ୟଫଳରୁ ପ୍ରହ୍ଲାଦ ହେବ ଅତ୍ୟନ୍ତ ଧର୍ମପ୍ରାଣ । ଭଗବାନଙ୍କ ଯଶ ପରି ତା'ର ଯଶ ଚତୁର୍ଦ୍ଦିଗରେ ପ୍ରସାରିତ ହେବ । ଶୁଦ୍ଧପ୍ରାଣ ପ୍ରହ୍ଲାଦର ଚରିତ୍ର ସମସ୍ତ ସାଧୁମାନଙ୍କର ଆଦର୍ଶ ହେବ ଏବଂ ପ୍ରହ୍ଲାଦର ଜୀବନ ଓ ଚରିତ୍ରକୁ ଅନୁସରଣ କରି ସାଧୁମାନେ ନିଜନିଜର ଜୀବନ ଓ ହୃଦୟକୁ ପବିତ୍ର କରିବେ ! ତୁମର ସେହି ପୌତ୍ର ପ୍ରହ୍ଲାଦ ନିଜର ସ୍ୱଚକ୍ଷୁରେ ଭଗବାନଙ୍କୁ ଦର୍ଶନ କରିବାକୁ ସମର୍ଥ ହେବ ।'

ନିଜର ଗର୍ଭଜାତ ପୁତ୍ରଙ୍କର ମୃତ୍ୟୁ ଭଗବାନଙ୍କ ହସ୍ତରେ ସଂଘଟିତ ହେବ ଏବଂ ପୌତ୍ର ଭଗବାନଙ୍କର ପରମ ଭକ୍ତ ହେବ ଜାଣି ଦିତି ଆଶ୍ୱସ୍ତ ହୋଇଥିଲେ ।

କଶ୍ୟପପତ୍ନୀ ଦିତି ଏକଶତ ବର୍ଷ ଧରି ଗର୍ଭ-ଧାରଣ କରିଥିଲେ । ସେହି ସମୟରେ ଦିତିଙ୍କର ଗର୍ଭର ତେଜ ଏପରି ଉଜ୍ଜ୍ୱଳ ଥିଲା ଯେ, ତଦ୍ଦ୍ୱାରା ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ତେଜ ବହୁ ପରିମାଣରେ ମ୍ଳାନ ପଡ଼ିଗଲା । ଫଳରେ ସମସ୍ତ ଜଗତ ଅନ୍ଧକାରାଚ୍ଛନ୍ନ ହୋଇଗଲା ।

ଦିତିଙ୍କର ଗର୍ଭର ତେଜସ୍ୱୀତା ଓ ଜଗତପ୍ରତି ତା'ର ପ୍ରଭାବ ଲକ୍ଷ୍ୟକରି ଦେବତାମାନେ ସଂକେତ ହୋଇ ବ୍ରହ୍ମାଙ୍କୁ ସ୍ତୁତି କରି କହିଲେ, 'ପ୍ରଭୁ, ଦିତିଙ୍କର ଉଭୟଙ୍କର ଗର୍ଭ ଦିନକୁ ଦିନ ବୃଦ୍ଧି ଲଭି କରୁଅଛି । ଆପଣ ଏହି ଜଗତର ସୃଷ୍ଟିକର୍ତ୍ତା । ଆପଣ ଏହି ଉଭୟଙ୍କର ଅନ୍ଧକାରରୁ ଜଗତକୁ ରକ୍ଷା କରନ୍ତୁ । କଶ୍ୟପଙ୍କ ଔରସରେ ଦିତିଙ୍କର ଯେଉଁ ଗର୍ଭୋଦୟ ଘଟିଅଛି, ତଦ୍ଦ୍ୱାରା ସମସ୍ତ ଜଗତ ଅନ୍ଧକାରାଚ୍ଛନ୍ନ ହୋଇଅଛି । ଆପଣ ତା'ର ନିରାକରଣ କରନ୍ତୁ ।

ଦେବତାମାନଙ୍କର ପ୍ରାର୍ଥନାରେ ବ୍ରହ୍ମା ସନ୍ତୁଷ୍ଟ ହୋଇ କହିଲେ, 'ଦେବଗଣ, ପୂର୍ବେ ବୈକୁଣ୍ଠରେ ଭଗବାନ ହରି ନିଜର ପ୍ରାସାଦରେ ଅବସ୍ଥାନ କରୁଥିବା ସମୟରେ, ଦିନେ ସନକ ପ୍ରମୁଖ ଋଷିମାନେ ଭଗବାନଙ୍କୁ ଦର୍ଶନ କରିବାକୁ ଗଲାବେଳେ, ବୈକୁଣ୍ଠର ଦୁଇଜଣ ଦ୍ୱାରପାଳ ସେମାନଙ୍କର ଗତିରୋଧ କରିଥିଲେ । ଦ୍ୱାରପାଳ ଦ୍ୱୟଙ୍କର ବାରଣକୁ ସେହି ଋଷିମାନେ ମାନିବାକୁ ପ୍ରସ୍ତୁତ ନ ଥିବାରୁ, ସେହି ଦ୍ୱାରପାଳ ଦ୍ୱୟ ସେହି ଋଷୀମାନଙ୍କୁ ଉଲଗ୍ନ ଓ ଶିଶୁ ପରି ଦେଖି ସେମାନଙ୍କ ପ୍ରତି ରୋଷକଷାୟିତ ଲୋଚନରେ କଟୂଭାଷା ପ୍ରୟୋଗ

କରିଥିଲେ ଓ ବେଦ ଉଚ୍ଚାରଣ କରି ଋଷିମାନଙ୍କୁ ସେ ଦୁହେଁ ଉପସ୍ଥିତ ଓ କବାରିତ କରିଥିଲେ ।

ସେହି ଦ୍ୱାରପାଳ ଦ୍ୱୟଙ୍କର ଆଚରଣରେ ଋଷିମାନେ ବ୍ୟଥିତ ହୋଇ କହିଲେ, 'ତୁମେ ଦୁହେଁ ବୈକୁଣ୍ଠରେ ବାସ କରୁଥିଲେ ମଧ୍ୟ ତୁମ୍ଭମାନଙ୍କ ସ୍ୱଭାବ ଅତ୍ୟନ୍ତ କୁତ୍ସିତ ଓ କପଟତାପୂର୍ଣ୍ଣ, ଏବଂ ତୁମର କାର୍ଯ୍ୟ ବୈକୁଣ୍ଠର ସମ୍ମାନକୁ କ୍ଷୁଣ୍ଣ କରୁଅଛି । ଭଗବାନଙ୍କ ପ୍ରାସାଦ ମଧ୍ୟକୁ କାଳେ କିଏ ପ୍ରବେଶ କରିବ ହୋଲି ଆଶଙ୍କା କରି ତୁମେ ଆମ୍ଭମାନଙ୍କୁ ଏପରି ବାରଣ କରୁଅଛ; କିନ୍ତୁ ତୁମର ଜାଣିରଖିବା ଉଚିତ ଯେ ଭଗବାନଙ୍କର ପ୍ରିୟ ଭକ୍ତ ବ୍ୟତୀତ ଏହି ସ୍ଥାନକୁ ଆସିବାର ସାମର୍ଥ୍ୟ ଅନ୍ୟ କାହାର ଥାଇପାରେ ନା । ତୁମେ ଦୁହେଁ ଆମ୍ଭମାନଙ୍କ ସହିତ କୁତ୍ସିତ ବ୍ୟବହାର କରିଥିବାରୁ ତୁମ୍ଭ ଦୁହିଁଙ୍କୁ ଆମେ ଅଭିଶାପ ଦେଉଅଛୁ ଯେ, ତୁମେ ଦୁହେଁ ବୈକୁଣ୍ଠରୁ ଭ୍ରଷ୍ଟ ହୋଇ କାମ, କ୍ରୋଧ, ଲୋଭ ଆଦି ରିପୁକବଳିତ ହୋଇ କୌଣସି ପାପଯୋନିରେ ଜନ୍ମଗ୍ରହଣ କରିବ ।'

ଏହା କହି ଋଷିମାନେ ଫେରିବାକୁ ଯାଉଛନ୍ତି, ଏହି ସମୟରେ ପ୍ରାସାଦ ଦ୍ୱାରରେ ଋଷୀମାନଙ୍କର ଆଗମନ ଓ ଦ୍ୱାରପାଳ ଦ୍ୱୟଙ୍କର ସେମାନଙ୍କ ପ୍ରତି ଦୁର୍ବ୍ୟବହାରକୁ କେନ୍ଦ୍ର କରି ଋଷିମାନଙ୍କର ଅଭିଶାପ ପ୍ରଦାନ ଆଦି ବୃତ୍ତାନ୍ତମାନ ଅବଗତ ହୋଇ ସ୍ୱୟଂ ଭଗବାନ ଦେବୀ ଲକ୍ଷ୍ମୀଙ୍କ ସହିତ ଆସି ଦ୍ୱାର ଦେଶରେ ଉପସ୍ଥିତ ଥିବା ଋଷିମାନଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ । ଭଗବାନଙ୍କୁ ଦର୍ଶନ କରି ସମବେତ ଋଷିମାନେ ଅଭିବାଦନ କଲେ । .

ଋଷିମାନଙ୍କୁ ସମ୍ବୋଧନ କରି ଭଗବାନ କହିଲେ, 'ବିପ୍ରବୃନ୍ଦ, ଯେଉଁ ଦ୍ୱାରପାଳ ଦ୍ୱୟଙ୍କୁ ଆପଣମାନେ ଅଭିଶାପ ପ୍ରଦାନ କଲେ, ସେମାନଙ୍କର ନାମ ଜୟ ଓ ବିଜୟ । ସେମାନେ ମୋର ପାର୍ଷଦ ହେଲେ ମଧ୍ୟ ଆପଣମାନଙ୍କ ପ୍ରତି ଦୁର୍ବ୍ୟବହାର ପ୍ରଦର୍ଶନ କରି ମୋର ଏବଂ ଏହି ସ୍ଥାନର ବିଶେଷ ଅମର୍ଯ୍ୟାଦା କରିଅଛନ୍ତି । ଆପଣମାନେ ମୋର ପ୍ରିୟ ଭକ୍ତ ଏବଂ ଏହି ଦ୍ୱାରପାଳଙ୍କ ପ୍ରତି ଆପଣମାନେ ସମୁଚିତ ଶାସ୍ତି ପ୍ରଦାନ କରିଅଛନ୍ତି । ଆପଣମାନଙ୍କ ପ୍ରଦତ୍ତ ଅଭିଶାପକୁ ମୁଁ ଅନୁମୋଦନ କରୁଅଛି । ଭୃତ୍ୟମାନଙ୍କ କାର୍ଯ୍ୟ ସହିତ ପ୍ରଭୁ ଜଡ଼ିତ

ଥାଆନ୍ତୁ ବା ନ ଥାଆନ୍ତୁ ଭୃତ୍ୟମାନଙ୍କ କାର୍ଯ୍ୟପାଇଁ ପ୍ରଭୁଙ୍କୁ ଦାୟୀ କରାଯାଇଥାଏ । ସେହି ଦୃଷ୍ଟିରୁ ମୋର ଏହି ଦ୍ୱାରପାଳ ଦ୍ୱୟଙ୍କ ଆଚରଣ ମୋତେ ଆପଣମାନଙ୍କ ନିକଟରେ ଦୋଷଭାଗୀ କରିଅଛି । ତେଣୁ ଆପଣମାନେ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ବ୍ରାହ୍ମଣମାନେ ସର୍ବଜନପୂଜ୍ୟ ଓ ପରମଦେବତା, ସେମାନଙ୍କ ପ୍ରତି ଅସତ୍ ବ୍ୟବହାର କରାଗଲେ, ତାହାକୁ ମୁଁ କେବେ କ୍ଷମା କରିପାରେନା । ଏହି ଜୟ ଓ ବିଜୟ ନାମକ ଦ୍ୱାରପାଳ ପ୍ରଭୁଙ୍କର ଅଭିପ୍ରାୟ ଅବଗତ ନ ହୋଇ ଆପଣମାନଙ୍କ ପ୍ରତି ଦୁର୍ବ୍ୟବହାର ପ୍ରଦର୍ଶନ କରି ଅପରାଧୀ ହୋଇଅଛନ୍ତି; ଆପଣମାନଙ୍କ ପ୍ରଦତ୍ତ ଶାସ୍ତି ସେ ଦୁହେଁ ସଦ୍ୟ ଭୋଗକରିବେ, ଏବଂ ସେମାନେ ଅସୁର ଯୋନିପ୍ରାପ୍ତ ହେଲେ ସେହି ଅସୁର ଜନ୍ମରେ ମୋ ଭାବ ପ୍ରତି କ୍ରୋଧ ପୋଷଣ କଲେ ସେମାନଙ୍କ ମନରେ ମୋ ସମ୍ପର୍କରେ ଏକାଗ୍ରତା ବୃଦ୍ଧିଭୂତ ହେବ; ଫଳରେ ସେମାନେ ପୁନର୍ବାର ମୋ ପାଖକୁ ପ୍ରତ୍ୟାଗମନ କରିବାକୁ ସମର୍ଥ ହେବେ । ଅଭିଶାପ ପ୍ରଦାନ କରିବାରେ ଆପଣମାନଙ୍କର କୌଣସି ଦୋଷ ହୋଇ ନାହିଁ । ଏହା ମୋ ଦ୍ୱାରା ପୂର୍ବରୁ ନିର୍ଦ୍ଧାରିତ ହୋଇଥିଲା ।

ସନକ ପ୍ରମୁଖ ଋଷିମାନେ ଭଗବାନଙ୍କୁ ଦର୍ଶନକରି ବୈକୁଣ୍ଠରୁ ପ୍ରସ୍ଥାନ କଲାପରେ ନିଜର ସେହି ଦୁଇ ଦ୍ୱାରପାଳଙ୍କୁ ସାନ୍ତ୍ୱନା ପ୍ରଦାନ କରି ଭଗବାନ କହିଲେ, 'ତୁମ୍ଭେମାନେ ଭୟ କର ନାହିଁ । ବ୍ରହ୍ମଶାପ ନିବାରଣ କରିବାକୁ ମୁଁ ସମର୍ଥ ହେଲେ ମଧ୍ୟ, ଏହି ଅଭିଶାପକୁ ଅନ୍ୟଥା କରିବାକୁ ମୁଁ ଇଚ୍ଛା କରୁନାହିଁ । ପୂର୍ବେ ମୁଁ ଯୋଗନିଦ୍ରାରେ ଶାୟିତ ଥିବା ସମୟରେ, ଲକ୍ଷ୍ମୀଦେବୀ ମୋର ପ୍ରସାଦ ମଧ୍ୟରୁ ବହିର୍ଗତ ହୋଇ ପୁନର୍ବାର ପ୍ରବେଶ କରିବାକୁ ଆସିଲାବେଳେ ତୁମେ ଦୁହେଁ ତାଙ୍କୁ ଅଯଥାରେ ବାରଣ କରିଥିଲ ଏବଂ ତୁମର ସେହି ଦୁର୍ବ୍ୟବହାରରେ ଲକ୍ଷ୍ମୀଦେବୀ କୁପିତା ହୋଇ 'ବୈକୁଣ୍ଠରୁ ତୁମର ପତନ ହେଉ' ବୋଲି ତୁମ ଦୁହିଁଙ୍କୁ ଅଭିଶାପ ପ୍ରଦାନ କରିଥିଲେ । ଏହି ଋଷିମାନେ ନିମିତ୍ତ ମାତ୍ର । ସେମାନଙ୍କ ମୁଖଦ୍ୱାରା ଲକ୍ଷ୍ମୀଦେବୀଙ୍କ ପ୍ରଦତ୍ତ ପୂର୍ବର ସେହି ଅଭିଶାପ ପ୍ରକାଶିତ ହୋଇଅଛି । ତୁମ୍ଭେମାନେ ଯାଅ । ଅଧିକ କାଳ ତୁମକୁ ଏହି ଅଭିଶାପ ଭୋଗ କରିବାକୁ ପଡ଼ିବ ନାହିଁ । ମୋ ପ୍ରତି କ୍ରୋଧାଚରଣ କରିବା ଦ୍ୱାରା ଏହି

ବ୍ରହ୍ମଶାପରୁ ତୁମ୍ଭେ ତୃତୀୟ ଜନ୍ମରେ ମୁକ୍ତ ହେବ ଏବଂ ପୁନର୍ବାର ବୈକୁଣ୍ଠକୁ ପ୍ରତ୍ୟାବର୍ତ୍ତନ କରିବ ।'

ବ୍ରହ୍ମା କହିଲେ, 'ଦେବଗଣ, ଭଗବାନଙ୍କର ସେହି ଦ୍ୱାରପାଳ ଦ୍ୱୟ ବର୍ତ୍ତମାନ କଶ୍ୟପଙ୍କ ଔରସରେ ଦିତିଙ୍କର ଗର୍ଭରେ ପ୍ରବେଶ କରିଅଛନ୍ତି । ଦିତିଙ୍କ ଗର୍ଭରେ ସେହି ଯମଜ ଅସୁର ଦ୍ୱୟଙ୍କ ଆବିର୍ଭାବ ତୁମକୁ ବ୍ୟତିବ୍ୟସ୍ତ ଓ ହୀନପ୍ରଭ କରିଅଛି । ସ୍ୱୟଂ ଭଗବାନ ଏପରି ବିଧାନ କରିଥିବାରୁ, ମୁଁ ତୁମ୍ଭମାନଙ୍କ ନିମନ୍ତେ ଏ ସମ୍ପର୍କରେ କୌଣସି ପ୍ରତିକାର କରିପାରିବ ନାହିଁ । ମୁଁ ସାମର୍ଥ୍ୟହୀନ । ଭଗବାନ ଚାହିଁଲେ କେବଳ ଏହାର ପ୍ରତିକାର କରିପାରନ୍ତି ।'

ଦିତିଙ୍କର ସେହି ଅଦ୍ଭୁତ ଗର୍ଭୋଦୟ ସମ୍ପର୍କରେ ସମସ୍ତ କଥା ଅବଗତ ହୋଇ ଦେବତାମାନେ ଅନୁକୂଳ ସମୟର ଅପେକ୍ଷାରେ ରହିଲେ ।

ଏକଶତ ବର୍ଷ ପରେ ଦିତିଙ୍କ ଗର୍ଭରୁ ଦୁଇଟି ଯମଜ ସନ୍ତାନ ଭୂମିଷ୍ଠ ହେଲେ । ସେମାନଙ୍କ ଜନ୍ମ ସମୟରେ ନାନାବିଧ ଅଶୁଭ ଦୃଶ୍ୟମାନ ପରିଦୃଷ୍ଟ ହେଲା । ଚତୁର୍ଦ୍ଦିଗ ପ୍ରଜ୍ଜ୍ୱଳିତ ହେଲା ପରି ଅନୁଭୂତ ହେଲା, ଆକାଶରୁ ବଜ୍ର ଓ ଉଲ୍କାପାତ ଘଟିଲା, ଘୋର ଶବ୍ଦକରି ପ୍ରଚଣ୍ଡ ବେଗରେ ବାୟୁ ବହିବାକୁ ଲାଗିଲା ଓ ବୃକ୍ଷମାନ ଉତ୍ପାଟିତ ହେଲା, ଚତୁର୍ଦ୍ଦିଗରେ ଭୟଙ୍କର ଶବ୍ଦ ଉତ୍ଥିତ ହୋଇ ତ୍ରିଭୁବନକୁ ଭୟପ୍ରକମ୍ପିତ କଲା, ଗାଈମାନଙ୍କ ସ୍ତନ୍ୟରୁ ଦୁଗ୍ଧ ପରିବର୍ତ୍ତେ ରକ୍ତ କ୍ଷରିତ ହେବାକୁ ଲାଗିଲା ।

ଦିତିଙ୍କ ଗର୍ଭରୁ ଭୂମିଷ୍ଠ ହୋଇଥିବା ଯମଜ ସନ୍ତାନ ଦ୍ୱୟଙ୍କ ଶରୀର ଦିନକୁ ଦିନ ପର୍ବତ ତୁଲ୍ୟ ବୃଦ୍ଧି ପାଇବାକୁ ଲାଗିଲା । ସେହି ସନ୍ତାନ ଦ୍ୱୟଙ୍କ ମଧ୍ୟରୁ ଜଣକର ନାମ ହିରଣ୍ୟାକ୍ଷ ଓ ଅନ୍ୟର ନାମ ହିରଣ୍ୟକଶିପୁ । ସମୟକ୍ରମେ ସେହି ଦୁଇ ଦୈତ୍ୟଙ୍କ ଅତ୍ୟାଚାରରେ ତ୍ରିଭୁବନ ଥରହରିଲା ।

ଦିନେ ସେହି ଦୈତ୍ୟ ଦ୍ୱୟ ଜଳଦେବତା ବରୁଣଙ୍କୁ ଆକ୍ରମଣ କରି ତାଙ୍କୁ ଯୁଦ୍ଧକୁ ଆହ୍ୱାନ କରିବାରୁ, ବରୁଣ ଭୟଭୀତ ହୋଇ କହିଲେ, 'ହେ ଦୈତ୍ୟଶ୍ରେଷ୍ଠ, ତୁମ୍ଭମାନଙ୍କ ପରି ମହାପରାକ୍ରମଶାଳୀ ବୀରଙ୍କ ସହ ଯୁଦ୍ଧ କରିବାର ସାମର୍ଥ୍ୟ ମୋର ନାହିଁ । ତୁମ୍ଭେମାନେ ରଣକୌଶଳରେ

ଅତ୍ୟନ୍ତ ନିପୁଣ । ତୁମର ସମକକ୍ଷ ଯୋଦ୍ଧା ଏହି ତ୍ରିଭୁବନରେ ଅମିତ ପରାକ୍ରମଶାଳୀ ଭଗବାନ ବିଷ୍ଣୁଙ୍କ ବ୍ୟତୀତ ଆଉ କାହାକୁ ମୁଁ ଦେଖୁ ନାହିଁ । ସମକକ୍ଷ ଯୋଦ୍ଧାଙ୍କ ସହ ଯୁଦ୍ଧ କରି ଯଦି ଆନନ୍ଦ ଲାଭ କରିବାକୁ ତୁମେ ଦୁହେଁ ଚାହୁଁଥାଅ, ତେବେ ଭଗବାନ ବିଷ୍ଣୁଙ୍କ ସନ୍ଧାନ କର ।”

ବରୁଣ ଦେବଙ୍କଠାରୁ ବିଷ୍ଣୁଙ୍କ କଥା ଶୁଣି ଦୈତ୍ୟ ଦୁହେଁ ହିରଣ୍ୟାକ୍ଷ ଭଗବାନ ବିଷ୍ଣୁଙ୍କ ସନ୍ଧାନରେ ବାହାରିଲା ପରେ ଦେବର୍ଷି ନାରଦଙ୍କଠାରୁ ବିଷ୍ଣୁ ରସାତଳରେ ଅଛନ୍ତି ବୋଲି ଜାଣିବାକୁ ପାଇ ସେ ରସାତଳରେ ଉପସ୍ଥିତ ହେଲା । ସେହି ସମୟକୁ ଭଗବାନ ବିଷ୍ଣୁ ବରାହ ଅବତାର ଗ୍ରହଣ କରି ସାରିଥାନ୍ତି ଏବଂ ନିଜର ଦନ୍ତାଗ୍ରରେ ରସାତଳଲୁଣ୍ଠିତା ଧରଣୀକୁ ଉତ୍ତୋଳିତ କରୁଥାନ୍ତି । ଭଗବାନଙ୍କୁ ବରାହ ରୂପରେ ଦେଖି ଦୈତ୍ୟ ହେୟଜ୍ଞାନରେ ‘ଏଟା ତ ଗୋଟାଏ ଜଳଚର ବରାହ’ ବୋଲି କହି ଥଟ୍ଟା କରିବାକୁ ଲାଗିଲା । ଦୈତ୍ୟକୁ ଦେଖି ବରାହରୂପୀ ଭଗବାନଙ୍କର କ୍ରୋଧର ସୀମା ରହିଲା ନାହିଁ । କ୍ରୋଧ ସ୍ପର୍ଶରେ ତାଙ୍କର ଚକ୍ଷୁ ଦ୍ୱୟ ଆରକ୍ତ ହୋଇଉଠିଲା । ବରାହରୂପୀ ଭଗବାନଙ୍କୁ ଆହ୍ୱାନ କରି ଦୈତ୍ୟ କହିଲା; ରେ ମୂର୍ଖ, ଆ ଏଆଡ଼େ ଆ । ଆଉ ଧରଣୀକୁ ଉତ୍ତୋଳିତ ନକରି ଏଆଡ଼େ ଆ । ପାତାଳବାସୀ-ମାନେ ଏହି ଧରଣୀକୁ ଆମକୁ ପ୍ରଦାନ କରିଅଛନ୍ତି, ସେଥିପାଇଁ ପୃଥିବୀକୁ ରସାତଳଗାମିନୀ ହେବାକୁ ପଡ଼ିଅଛି । ଧରଣୀ ଉପରେ ଆମ ବ୍ୟତୀତ ଅନ୍ୟ କାହାରି ଆଧିପତ୍ୟ ନାହିଁ କି ଥାଇ ପାରେ ନା । ଭଲ ଗତି ଥିଲେ ପୃଥିବୀକୁ ଛାଡ଼ି ଚାଲିଯାଆ, ନଚେତ୍ ମୋ ହାତରୁ ତୋର ଆଜି ନିସ୍ତାର ନାହିଁ । ଆରେ, ତୁ କୁଆଡେ ଭଗବାନ ! ଆମର ବିନାଶ ସାଧନ ନିମନ୍ତେ ଦେବତା ତଥା ଋଷିମାନେ ତୋତେ ଆରାଧନା କରିଥାନ୍ତି । ତୋର ନିଜର ତ ବଳ ନାହିଁ, ସେଥିରେ ତୁ ଯୋଗମାୟା ବଳରେ ବଳୀୟାନ ହୋଇ ଏତେ ସ୍ପର୍ଦ୍ଧା ଦେଖାଉଛୁ ! ତୋତେ ଆଜି ସଂହାର କରି ବନ୍ଧୁମାନଙ୍କୁ ପ୍ରୀତ କରାଇବୁ । ସାମର୍ଥ୍ୟ ଥିଲେ, ଏହି ନିକ୍ଷିପ୍ତ ଗଦାର ପ୍ରହାରକୁ ସହ୍ୟ କରିବାକୁ ଚେଷ୍ଟାକର । ଏହା କହି ଦୈତ୍ୟ ହାତରେ ଧରିଥିବା ଗଦାରେ ଭଗବାନଙ୍କୁ ପ୍ରହାର କରିବାକୁ ଲାଗିଲା । କିନ୍ତୁ ବରାହ ରୂପୀ ଭଗବାନ ସେଥିପ୍ରତି ଦୃକ୍‌ପାତ ନ କରି ପୃଥିବୀ ସହ ସମୁଦ୍ର ମଧ୍ୟରୁ ଉଠିବାକୁ ଲାଗିଲେ । ଆକ୍ରମଣର ପ୍ରତିବାଦ ନ କରି

ପ୍ରହାର ସତ୍ତ୍ୱେ ଜଳ ମଧ୍ୟରୁ ବରାହଙ୍କୁ ଫେରିଆସୁଥିବାର ଦେଖି ଦୈତ୍ୟ ଉପହାସ କରି କହିବାକୁ ଲାଗିଲେ, 'ଲଜ୍ଜାହୀନ ଅସତ୍ ଚରିତ୍ର ବ୍ୟକ୍ତି ସବୁ କରିପାରେ । ନିଜକୁ ବୀର ବୋଲି ଯଦି ଭାବୁଥାଅ, ତେବେ ଯୁଦ୍ଧ ନକରି ପଳାୟନ କରୁଅଛୁ କାହିଁକି ? ତୋର ଏହି ଦ୍ରୁତ ପଳାୟନ ଭଙ୍ଗୀରୁ ତୋର ବୀରତ୍ୱ କେତେ ତାହା ବୁଝିବାରେ ମୋର ଅସୁବିଧା ହେଉନାହିଁ ।'

ଏହା କହି ଅସୁର ବିକଟ ମୂର୍ତ୍ତି ଧାରଣ କଲା ଏବଂ ଅବିରତ ଭଗବାନଙ୍କୁ ଗଦାରେ ପ୍ରହାର କରିବାକୁ ଲାଗିଲା । ବରାହରୂପୀ ଭଗବାନ ଦୈତ୍ୟର ଆକ୍ରମଣ ପ୍ରତି ବିଶେଷ ଦୃଷ୍ଟି ନ ଦେଇ ଜଳ ମଧ୍ୟରୁ ପ୍ରଥମେ ବିନିର୍ଗତ ହେଲେ ଏବଂ ଦେବତାମାନଙ୍କର ସ୍ତୁତିଗାନ ଓ ସ୍ୱର୍ଗରୁ ଅବିରତ ପୁଷ୍ପପତନ ମଧ୍ୟରେ ଭଗବାନ ପୃଥିବୀକୁ ଜଳ ଉପରେ ସ୍ଥାପନ କଲେ । ଏହିକାର୍ଯ୍ୟ ସମାପ୍ତ ହେବାପରେ ଭଗବାନଙ୍କୁ ଦୈତ୍ୟପ୍ରତି ଦୃଷ୍ଟି ପାତ କରିବାକୁ ଅବସର ମିଳିଲା । ଭଗବାନ ଦୈତ୍ୟକୁ କହିଲେ, ମୁଁ ସାମାନ୍ୟ ଗୋଟାଏ ବରାହ ବୋଲି ତୁ ଯାହା କହିଲୁ, ତାହା ବାସ୍ତବିକ ସତ୍ୟ । ମୁଁ ତୋ ପରି କୁକୁରକୁ ଅନ୍ୱେଷଣ କରୁଥିଲି । ଯାହା ହେଉ, ତୋ ସହ ସାକ୍ଷାତ ହୋଇଗଲା । ନିଜ ବୀରତ୍ୱ ସମ୍ପର୍କରେ ତୁ ଯେଉଁ ଗର୍ବ ପ୍ରକାଶ କରୁଅଛୁ, ସେ ସବୁ ମୋତେ ବଧକରି ସାରିବା ପରେ ପ୍ରକାଶ କଲେ ଶୋଭା ପାଆନ୍ତା । ତେଣୁ ମୋତେ ବଧ କରିବାକୁ ପ୍ରଥମେ ଚେଷ୍ଟା କର ।'

ଭଗବାନଙ୍କ କଥା ଶୁଣି ଦୈତ୍ୟ କ୍ରୋଧାନ୍ୱିତ ହୋଇ ତାଙ୍କୁ ଆକ୍ରମଣ କଲା । ଫଳରେ ବରାହରୂପୀ ଭଗବାନ ଓ ଦୈତ୍ୟଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ଆରମ୍ଭ ହୋଇଗଲା । ଭଗବାନ ଅବଲୀଳାକ୍ରମେ ଦୈତ୍ୟ ହିରଣ୍ୟାକ୍ଷକୁ ସଂହାର କଲେ ।

ଜଳ ମଧ୍ୟରୁ ପୃଥିବୀକୁ ନିଜ ଦନ୍ତ ସାହାଯ୍ୟରେ ଉତ୍ତୋଳିତ କରି ବରାହରୂପୀ ଭଗବାନ ଋଷି ଓ ଦେବତାମାନଙ୍କର ଦୃଷ୍ଟିଗୋଚର ହେଲାପରେ ସେମାନେ ବରାହଙ୍କ ଉଦ୍ଦେଶ୍ୟରେ ସ୍ତୁତିଗାନ କରି କହିଥିଲେ, 'ହେ ଅଜିତ, ହେ ପ୍ରଭୁ, ଆପଣଙ୍କୁ ନମସ୍କାର । ଆପଣ ସ୍ୱୟଂ ଭଗବାନ । ପୃଥିବୀକୁ ଜଳମଧ୍ୟରୁ ଉଦ୍ଧାର କରିବା ନିମନ୍ତେ ଆପଣ ଏହି ଅପୂର୍ବ ଅଦ୍ଭୁତ ଶୂକର ରୂପ ଧାରଣ କରିଅଛନ୍ତି । ଆପଣଙ୍କୁ ନମସ୍କାର ।

ଗଜରାଜ ନିଜର ଦଶନାଗ୍ରରେ ଜଳ ମଧ୍ୟରୁ ପଦ୍ମ ଉତ୍ତୋଳିତ କଲାପରି ଆପଣ ଏହି ଅନନ୍ତ ଜଳମଧ୍ୟରୁ ନିଜର ଦନ୍ତାଗ୍ରରେ ସୁବିପୁଳା ପୃଥିବୀକୁ ଉଦ୍ଧାର କରି ଜଳମଧ୍ୟରୁ ବହିର୍ଗତ ହେବାରୁ ସେହିପରି ଶୋଭା ପାଉଅଛନ୍ତି । ଆପଣ ଜଗତ୍‌ପିତା ଏବଂ ଏହି ଧରଣୀ ଆପଣଙ୍କର ପତ୍ନୀ ସ୍ୱରୂପା । ସେ ଜଗନ୍ମାତା । ଆପଣ ଧରଣୀଙ୍କୁ ଏପରି ଭାବରେ ସ୍ଥାପନ କରନ୍ତୁ, ଯେପରି ତାଙ୍କ ପୃଷ୍ଠରେ ଅବସ୍ଥାନ କରି ଧରଣୀଙ୍କ ସହ ଆପଣଙ୍କୁ ନମସ୍କାର କରିବାକୁ ଆମ୍ଭେମାନେ ସମର୍ଥ ହେବୁ । ଆପଣଙ୍କ ସୃଷ୍ଟି ଯୋଗ ମାୟାଙ୍କ ସହିତ ତ୍ରିଗୁଣର ସଂଯୋଗ ସମଗ୍ର ବିଶ୍ୱକୁ ବିମୋହିତ କରିଅଛି । ଆପଣ ଅଖିଳ ଜଗତର ମଙ୍ଗଳ ବିଧାନ କରନ୍ତୁ ।”

ଭଗବାନଙ୍କୁ ଋଷି ଓ ଦେବତାମାନେ ଏହିପରି ସ୍ତୁତି କଲାପରେ ଭଗବାନ ପୃଥିବୀକୁ ଯଥାସ୍ଥାନରେ ସ୍ଥାପନ କରି ଅଦୃଶ୍ୟ ହୋଇଥିଲେ ।

---

# ଭଗବାନ କପିଳଙ୍କର ଉପଦେଶ

ମନୁଙ୍କର କନ୍ୟା ଦେବହୂତିଙ୍କ ସହିତ କର୍ଦ୍ଦମ ମହର୍ଷିଙ୍କର ବିବାହ ଅନୁଷ୍ଠିତ ହୋଇଥିଲା । ପୂର୍ବେ ମହର୍ଷି କର୍ଦ୍ଦମ ତପସ୍ୟା କରି ଦେବହୂତିଙ୍କୁ ନିଜର ପତ୍ନୀ ରୂପରେ ଏବଂ ଭଗବାନଙ୍କୁ ନିଜର ପୁତ୍ର ଭାବରେ ଲାଭ କରିବାର ଆଶୀର୍ବାଦ ଲାଭ କରିଥିଲେ । ଦେବହୂତିଙ୍କ ଗର୍ଭରୁ କର୍ଦ୍ଦମଙ୍କ ଔରସରେ ପ୍ରଥମେ ନ'ଗୋଟି କନ୍ୟା ଓ ପରେ ଭଗବାନ ଜନ୍ମ ଗ୍ରହଣ କରିଥିଲେ । ସେହି ଜନ୍ମରେ ଭଗବାନ କପିଳ ନାମରେ ପରିଚିତ ହୋଇଥିଲେ ।

ଭଗବାନଙ୍କୁ ନିଜର ପୁତ୍ରରୂପରେ ଲାଭ କରି କର୍ଦ୍ଦମ ଦମ୍ପତିଙ୍କର ଆନନ୍ଦର ସୀମା ରହିଲା ନାହିଁ । ଦିନେ ଏକାନ୍ତରେ ନିଜର ପୁତ୍ରରୂପୀ ଭଗବାନଙ୍କୁ ମହର୍ଷି କର୍ଦ୍ଦମ ସ୍ତୁତି କରିବାରୁ ଭଗବାନ କହିଲେ, ମୁନିଶ୍ରେଷ୍ଠ, ପୂର୍ବେ ତୁମକୁ ପ୍ରଦାନ କରିଥିବା ମୋର ପ୍ରତିଶ୍ରୁତି ଅନୁସାରେ ମୁଁ ତୁମର ପୁତ୍ର ରୂପରେ ଜାତ ହୋଇଅଛି । ଯେଉଁ ମୁନିମାନେ ମାନବ ଜନ୍ମରୁ ମୁକ୍ତିଲାଭ କରିବା ନିମନ୍ତେ ସର୍ବଦା ମୋତେ ଭଜନ କରିଥାନ୍ତି, ସେମାନଙ୍କୁ ଆତ୍ମତତ୍ତ୍ୱ ସମ୍ପର୍କରେ ଉପଦେଶ ପ୍ରଦାନ କରିବା ନିମନ୍ତେ ମୁଁ ଏପରି ଜନ୍ମ ଗ୍ରହଣ କରିଅଛି । ଆତ୍ମଜ୍ଞାନର ସୂକ୍ଷ୍ମମାର୍ଗ ବହୁକାଳରୁ କଥିତ ହୋଇଥିଲେ ମଧ୍ୟ କାଳବଶତଃ ତାହା ବିଲୁପ୍ତ ହୋଇଅଛି । ସେ ସବୁର ପୁନଃପ୍ରବର୍ତ୍ତନହିଁ ମୋର ଏହି ଜନ୍ମର ଉଦ୍ଦେଶ୍ୟ । ତୁମେ ପରିବ୍ରାଜକ ସୁଲଭ ଜୀବନ ଯାପନ କରି ଅବଶିଷ୍ଟ ସମସ୍ତ ଧରଣୀ ପୃଷ୍ଠରେ ବିଚରଣ କରି କରି ଅତିବାହିତ କରିଦେବାକୁ ଇଚ୍ଛା ପୋଷଣ କରିଅଛ । ତାହା ଭଲ କଥା, ଯାଅ; କିନ୍ତୁ ଯେଉଁଠି ଥାଅନା କାହିଁକି ଯଦି ଜନ୍ମ-ମୃତ୍ୟୁକୁ ଜୟ କରିବାକୁ ଇଚ୍ଛା କରୁଥାଅ, ତେବେ ମୋଠାରେ ସମସ୍ତ କର୍ମ ସମର୍ପଣ କରି ମୋତେ ସର୍ବଦା ଭଜନ କର । ସେପରି କଲେ ତୁମେ ଶୋକଶୂନ୍ୟ ହୋଇ ମୋକ୍ଷଲାଭ କରିବାର ଯୋଗ୍ୟ ହେବ । ମୁଁ ମାତା ଦେବହୂତିଙ୍କୁ ସର୍ବକର୍ମର ଉନ୍ମୂଳକାରିଣୀ ଆତ୍ମବିଦ୍ୟା ପ୍ରଦାନ କରିବି,

ଯଦ୍ଦ୍ୱାରା ସେ ସଂସାର-ଭୟରୁ ପରିତ୍ରାଣ ଲାଭକରି ପରମାନନ୍ଦ ପ୍ରାପ୍ତ ହେବେ ।

ଭଗବାନଙ୍କଠାରୁ ଏହିପରି ଉପଦେଶ ଓ ଅନୁଜ୍ଞା ଲାଭ କରି ମହର୍ଷି କର୍ଦ୍ଦମ ପୁତ୍ରରୂପୀ ଭଗବାନଙ୍କୁ ପରମ ଭକ୍ତିସହକାରେ ପ୍ରଦକ୍ଷିଣ କରି ପ୍ରସନ୍ନ ଚିତ୍ତରେ ଅରଣ୍ୟକୁ ଯାତ୍ରା କଲେ ।

ପିତା ଅରଣ୍ୟକୁ ଯାତ୍ରା କଲା ପରେ କପିଳ ପିତାଙ୍କ ପରିତ୍ୟକ୍ତ ବିନ୍ଦୁସରୋବର କୂଳସ୍ଥ ଆଶ୍ରମରେ ବାସକରି ମାତା ଦେବହୂତିଙ୍କ ସେବା ପରିଚର୍ଯ୍ୟାରେ ପୂର୍ବପରି ମନଦେଲେ ।

ଦିନେ କପିଳରୂପୀ ଭଗବାନଙ୍କୁ ଋଦନେ ଦେବହୂତି କହିଲେ, ବାବା, ତୁ ସ୍ୱୟଂ ଭଗବାନ ଏବଂ ସକଳ ଗୁଣର ଆକର । ମୋ ମନରେ ଏ ଯେଉଁ 'ମୁଁ, ମୋର' ଆଦି ମମତ୍ୱ-ବୋଧ ଜାତ ହେଉଅଛି, ତୁ ସେହି ମୋହକୁ ଅଚିରେ ନାଶକର । ପ୍ରକୃତି ଓ ପୁରୁଷଙ୍କର ସ୍ୱରୂପ ସମ୍ପର୍କୀୟ ଜ୍ଞାନ ମୋତେ ପ୍ରଦାନ କରି ମୋ ମନର ବାସନାକୁ ତୁ ପୂର୍ଣ୍ଣ କର ।

ମାତାଙ୍କର କଥା ଶୁଣି କପିଳ କହିଲେ, 'ମା, କାମ, କ୍ରୋଧ ଏବଂ ମୋହର ପ୍ରଭାବ ମନରେ ଅଭିମାନ ସୂଚକ ମମତ୍ୱ ଭାବ ଜାତ କରିଥାଏ । ସେହି ମୋହରାଶି ମନରୁ ଦୂର ହେଲେ ମନ ପବିତ୍ର ହୋଇ ଥାଏ ଓ ମନରେ ଜ୍ଞାନ, ବୈରାଗ୍ୟ ଏବଂ ଭକ୍ତି ଉଦୟ ହୁଏ । ବିଭିନ୍ନ ଯୋଗ ମଧ୍ୟରେ ଭକ୍ତିଯୋଗ ହିଁ ସର୍ବଶ୍ରେଷ୍ଠ ଏବଂ ବ୍ରହ୍ମଜ୍ଞାନ ଲାଭ କରିବା ନିମନ୍ତେ ଭକ୍ତିଯୋଗ ହିଁ ସିଦ୍ଧିଲାଭର ପ୍ରକୃଷ୍ଟ ପଥ । ଆସକ୍ତି ହିଁ ବନ୍ଧନ ସ୍ୱରୂପ । ଆସକ୍ତି ତ୍ୟାଗ କରି ଭକ୍ତିର ମାର୍ଗ ପୋଷଣ କଲେ ମୋକ୍ଷ ଲାଭ ହୋଇଥାଏ । ଯେଉଁମାନେ ସହିଷ୍ଣୁ, କରୁଣାଶୀଳ, ଶାନ୍ତ, ସଚ୍ଚରିତ୍ର ଏବଂ ଅଜାତଶତ୍ରୁ, ସେହିମାନେ ହିଁ ଯଥାର୍ଥରେ ସାଧୁ । ସାଧୁମାନେ ସକଳ କର୍ମ, ବନ୍ଧୁବାନ୍ଧବ, ସ୍ୱଜନ ପରିବାର, ପର୍ଯ୍ୟନ୍ତ ମୋ ପାଇଁ ପରିତ୍ୟାଗ କରି ମୋତେ ଭଜନା କରିଥାନ୍ତି । ସାଧୁମାନଙ୍କ ସଂସ୍ପର୍ଶରେ ଆସିଲେ ମନୁଷ୍ୟର ସକଳ ଦୋଷ ଦୂର ହୋଇଥାଏ । ତେଣୁ ସାଧୁସଙ୍ଗ ସର୍ବଦା କରଣୀୟ ଓ ସ୍ପୃହଣୀୟ । ସାଧୁସଙ୍ଗ କଲେ ମୋ କଥା ଶ୍ରବଣ କରିବାର ଆଗ୍ରହ ମନରେ ସୃଷ୍ଟି ହୋଇଥାଏ; ମୋ ପ୍ରତି ମନରେ ଭକ୍ତି ଜାତ ହେବା ସଙ୍ଗେ ସଙ୍ଗେ ମୋର ବିଭିନ୍ନ ଲୀଳା-କଥା ଶ୍ରବଣ କରିବା ନିମନ୍ତେ ମନ ବ୍ୟାକୁଳ ହୁଏ । ଧୀରେ ଧୀରେ ମନୁଷ୍ୟର ମନ ଇନ୍ଦ୍ରିୟ

ସୁଖରୁ ଦୂରେଇ ଆସେ ଏବଂ ମୋଠାରେ ଭକ୍ତିଯୁକ୍ତ ହୋଇ ସଂଯତ ଚିତ୍ତରେ ସେ ମୋତେ ଆରାଧନା କରିଥାଏ, ଫଳରେ ସେ ମୋତେ ସ୍ୱଦେହରେ ଲାଭ କରିବାକୁ ସମର୍ଥ ହୋଇଥାଏ । ଯେଉଁମାନେ ନିଜର ସମସ୍ତ ଧନ, ସ୍ୱଜନ ପରିଜନ, ବିଷୟସୁଖ ଓ ଆସକ୍ତି ଆଦି ତ୍ୟାଗକରି ଏକାଗ୍ରଚିତ୍ତରେ ମୋତେ କାମନା କରିଥାନ୍ତି, ମୁଁ ସେମାନଙ୍କୁ ସଂସାର ଜୀବନରୁ ଅକ୍ଷୟ ମୁକ୍ତି ପ୍ରଦାନ କରିଥାଏ । ମା, ଯେଉଁ ଯୋଗ ଆଚରଣ କଲେ ମନୁଷ୍ୟର ଚିତ୍ତ ଶୁଦ୍ଧି ଓ ପ୍ରସନ୍ନ ହୁଏ ଏବଂ ପରମାତ୍ମାଙ୍କୁ ଲାଭ କରିବାର ମାର୍ଗ ସୁଗମ ହୋଇଥାଏ, ତାହା ମୁଁ ପ୍ରକାଶ କରୁଅଛି । ଯଥାଶକ୍ତି ଶାସ୍ତ୍ରବିହିତ ଧର୍ମକୁ ପାଳନ କରିବା ଓ ଶାସ୍ତ୍ରବିରୁଦ୍ଧ କର୍ମକୁ ପରିତ୍ୟାଗ କରିବା, ଯାହା ମିଳିଲା ତହିଁରେ ସନ୍ତୁଷ୍ଟ ରହିବା, ଗୁଣୀଜନଙ୍କୁ ପୂଜା କରିବା, ବିଷୟବାସନାକୁ ବୃଦ୍ଧି କରୁଥିବା କାର୍ଯ୍ୟରୁ ନିଜକୁ ଦୂରରେ ରଖିବା, ମୋକ୍ଷ-ଧର୍ମରେ ଆସକ୍ତ ହେବା, ପବିତ୍ର ଓ ପରିମିତ ଆହାର ଭୋଜନ କରିବା, ସର୍ବଦା ଭୟଶୂନ୍ୟ ନିର୍ଜନ ସ୍ଥାନରେ ବାସକରିବା, ଅହିଂସା ସତ୍ୟ ନ୍ୟାୟ ପଥ ଗ୍ରହଣ କରିବା; ବ୍ରହ୍ମଚର୍ଯ୍ୟ, ତପସ୍ୟା, ଶୁଚିତା, ବେଦାଧ୍ୟୟନ, ପରମ ପୁରୁଷଙ୍କର ଅର୍ଚ୍ଚନା ପ୍ରଭୃତି କାର୍ଯ୍ୟ କରିବା, ବାକ୍ ସଂଯମ, ଆସନ ଅଭ୍ୟାସ, ସ୍ଥିର ହୋଇ ଉପବେଶନ କରିବା, ପ୍ରାଣାୟାମ ଦ୍ୱାରା ଶ୍ୱାସକ୍ରିୟାକୁ ନିୟନ୍ତ୍ରିତ କରିବା ଓ ଇନ୍ଦ୍ରିୟକୁ ସଂଯତ କରିବା, ଭଗବାନଙ୍କର ବିଭିନ୍ନ ଲୀଳାକୁ ଧ୍ୟାନ କରିବା ଓ ବିଭିନ୍ନ ବ୍ରତାଦି ପାଳନ କରିବା ଆଦି କାର୍ଯ୍ୟଦ୍ୱାରା ଅସତ୍ ପଥରେ ପ୍ରବୃତ୍ତ ଦୁର୍ଦ୍ଦମନୀୟ ମନକୁ ଧୀରେ ଧୀରେ ବୁଦ୍ଧିଦ୍ୱାରା ଯୋଗସାଧନରେ ଏକାଗ୍ର କରି ଭଗବାନଙ୍କଠାରେ ନିଜର ଚିତ୍ତକୁ ସ୍ଥାପନ କରିବା ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ ।

ଈଶ୍ୱରଙ୍କ ନିର୍ଦ୍ଦେଶକ୍ରମେ ଜୀବ ନିଜର ପୂର୍ବକୃତ କର୍ମଫଳ ନେଇ ଦେହଧାରଣ କରିବା ନିମନ୍ତେ ପୁରୁଷର ରେତକଣାକୁ ଆଶ୍ରୟ କରି ନାରୀର ଉଦରରେ ପ୍ରବେଶ କରେ । ନାରୀର ଗର୍ଭରେ ରେତପାତ ହେବାମାତ୍ରେ ଶୋଣିତ ସହ ମିଶ୍ରିତ ହୋଇ ପଞ୍ଚରାତ୍ର ପରେ ତାହା ଗୋଲାକାର ରୂପରେ ପରିଣତ ହୁଏ । ଦଶଦିନ ଅତୀତ ହେଲେ, ତାହା ବରକୋଳିପରି ଧୀରେ ଧୀରେ କଠିନ ହୁଏ । ଏକ ମାସପରେ ତା'ର ମସ୍ତକ, ଦୁଇମାସପରେ ତା'ର ହସ୍ତ ପଦାଦି ଅଙ୍ଗ, ନଖ, ଲୋମ, ଅସ୍ଥି

ଓ ଚର୍ମ ଆଦି ସୃଷ୍ଟି ହୁଏ । ତିନମାସ ପରେ ଲିଙ୍ଗ ଓ ଛିଦ୍ର ସୃଷ୍ଟି ହୁଏ । ଚତୁର୍ଥ ମାସରେ ମାଂସ ଆଦି ସପ୍ତଧାତୁ, ପଞ୍ଚମ ମାସରେ କ୍ଷୁଧା ତୃଷ୍ଣା, ଷଷ୍ଠ ମାସରେ ଜରାୟୁରେ ଆବୃତ ହୋଇ ମାତାର ଦକ୍ଷିଣ ପାର୍ଶ୍ୱ କୁକ୍ଷିରେ ଭ୍ରମଣ କରେ । ସେହି ସମୟରେ ମାତୃଭୁକ୍ତ ଅନ୍ନାଦି ଦ୍ୱାରା ଶିଶୁର ଶରୀର ପୁଷ୍ଟ ହୁଏ ଏବଂ ମାତୃ ଶରୀରର ସେହି ମଳମୂତ୍ର ମଧ୍ୟରେ ସେ ଶୟନ କରିଥାଏ । ଫଳରେ ଜନନୀର ଗର୍ଭରେ ଥିବା ବିବିଧ କୃମିମାନେ ଶିଶୁର ଶରୀରକୁ କ୍ଷତବିକ୍ଷତ କରିଥାନ୍ତି ଏବଂ ସେହି ଦଂଶନ ଜନିତ ଅସହ୍ୟ ଯନ୍ତ୍ରଣାରେ ଶିଶୁମଧ୍ୟ ବାରମ୍ବାର ମୂର୍ଚ୍ଛିତ ହୋଇଯାଏ । ଜନନୀ ଗର୍ଭଧାରଣାବସ୍ଥାରେ ଆହାର କରୁଥିବା କଟୁ, ତିକ୍ତ, ଉଷ୍ଣ, ଲବଣ, କ୍ଷାର, ଅମ୍ଳ ପ୍ରଭୃତି ଖାଦ୍ୟର ଦୁଃସହ ରସ ମଧ୍ୟ ତା'ର ସର୍ବାଙ୍ଗରେ ଅସହ୍ୟ ଯନ୍ତ୍ରଣା ସୃଷ୍ଟି କରେ; କିନ୍ତୁ ନିଜର ଅଙ୍ଗ ଚାଳନା କରିବାର ଶକ୍ତି ନ ଥିବାରୁ ଶିଶୁ ସେହି ଅସହ୍ୟ ଯନ୍ତ୍ରଣା ମଧ୍ୟରେ ପୀଡ଼ିତ ହୋଇ ପଡ଼ିରହେ । ମାତୃଗର୍ଭରେ ଅବସ୍ଥାନ କରୁଥିବା ସମୟରେ ଶିଶୁର ମନରେ ପୂର୍ବ ଜନ୍ମର ପାପାଦି କର୍ମର ସ୍ମୃତି ଜାଗ୍ରତ ରହିଥାଏ । ସପ୍ତମ ମାସରେ ଶିଶୁ ବାୟୁର ସଂସ୍ପର୍ଶରେ ଆସେ ଏବଂ ଶିଶୁ ସେହି ଅବସ୍ଥାରେ ରହି ମଧ୍ୟ ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରିଥାଏ, 'ପ୍ରଭୁ, ମାତୃଗର୍ଭର ଏହି ମଳ, ମୂତ୍ର ଓ ରକ୍ତର କୂପମଧ୍ୟରେ ମୁଁ ପତିତ ହୋଇଅଛି ଏବଂ ଅଶେଷ କ୍ଳେଶ ଭୋଗ କରୁଅଛି । ମୁଁ କେବେ ଏହି ଅସହ୍ୟ ଯନ୍ତ୍ରଣାରୁ ମୁକ୍ତ ହୋଇ ମାତୃଗର୍ଭରୁ ବହିର୍ଗମନ କରିବି ? ଆପଣଙ୍କ କୃପାରୁ ମୁଁ ଏହି ଶରୀର ଲାଭ କରିଅଛି । ଆପଣଙ୍କୁ ନମସ୍କାର । ଗର୍ଭବାସ କାଳୀନ ଦୁଃସହ ଯନ୍ତ୍ରଣା ଯେପରି ମୁଁ ଆଉ ଲାଭ ନ କରେ, ସେଥିପାଇଁ ଆପଣ ମୋପ୍ରତି କୃପାପରବଶ ହୁଅନ୍ତୁ ।' ଶିଶୁ ମାତୃଗର୍ଭରେ ଏହିପରି ପ୍ରାର୍ଥନା କରୁଥିବା ସମୟରେ ବାୟୁ ତାହାକୁ ଅଧୋମୁଖ କରି ପ୍ରସବ ନିମନ୍ତେ ପ୍ରେରଣ କରେ, ଫଳରେ ଜୀବକୁ ଅତ୍ୟନ୍ତ ଯନ୍ତ୍ରଣା ଲାଭ କରିବାକୁ ପଡ଼େ ଏବଂ ସେହି ଯନ୍ତ୍ରଣା ଫଳରେ ତା'ର ପୂର୍ବଜନ୍ମର ସମସ୍ତ ସ୍ମୃତି ତା'ର ମନରୁ ଲୋପପାଏ । ସେ ଭୂମିଷ୍ଠ ହୋଇ ରୋଦନ କରିବାକୁ ଆରମ୍ଭ କରେ । ଶିଶୁ ଜନ୍ମ ହେବା ପରେ ଧୀରେ ଧୀରେ ଶୈଶବ ଦୁଃଖ, ପୌଗଣ୍ଡ ଅବସ୍ଥାରେ ଅଧ୍ୟୟନ ଜନିତ କ୍ଳେଶ, ଯୌବନରେ ଅର୍ଥାଗମ ସମ୍ପର୍କିତ ଦୁଃଖରେ ଆକୁଳ ହୋଇ-

ପଡ଼େ ଏବଂ ନୈରାଶ୍ୟଗ୍ରସ୍ତ ହୋଇ କ୍ଷୋଧାନ୍ଵିତ ହୋଇଥାଏ । ତା'ର ମନରେ ଅଭିମାନ ଓ କ୍ରୋଧ ବୃଦ୍ଧିପାଇବାକୁ ଲଗେ । 'ମୁଁ' ଓ 'ମୋର' ଅଭିମାନ ତାକୁ ସର୍ବଦା ଗ୍ରାସ କରେ ଏବଂ ସେ ଏପରି ସବୁ କର୍ମରେ ଲଳସୀ ହୁଏ ଯେ, ଯେଉଁଥିପାଇଁ ତାକୁ ବାରମ୍ବାର ସଂସାରରେ ଜନ୍ମ ହେବାକୁ ପଡ଼ଥାଏ । ଜୀବକୁ ଏହି ସଂସାର ଜନ୍ମରୁ ମୁକ୍ତି ପାଇବାକୁ ହେଲେ, ଅସତ୍ ସଙ୍ଗ ଓ ନାରୀ ସଙ୍ଗ ସର୍ବଦା ତ୍ୟାଗ କରିବା ବିଧେୟ । ତେଣୁ ମା, ଆପଣ ସମସ୍ତଙ୍କ ପ୍ରାଣରେ ସଦାଅଧିଷ୍ଠିତ ଯେଉଁ ସର୍ବତ୍ୟାଗୀ ଭଗବାନ ଅଛନ୍ତି, ତାଙ୍କୁ ଭକ୍ତିର ସହିତ ଭଜନା କରନ୍ତୁ । ପରମବ୍ରହ୍ମ, ପରମାତ୍ମା, ପରମେଶ୍ୱର ଏବଂ ପରମପୁରୁଷ, ଏହିପରି ବହୁ ନାମରେ ଭଗବାନ ପରିଚିତ ହେଲେ ମଧ୍ୟ ସେ ଏକ । ଭଗବାନ ବସ୍ତୁତଃ ଏକ; କିନ୍ତୁ ଭିନ୍ନ ଭିନ୍ନ ଶାସ୍ତ୍ରରେ ସେ ନାନା ଭାବରେ ପ୍ରତୀୟମାନ ଓ ଚର୍ଚ୍ଚିତ ହୋଇ-ଅଛନ୍ତି । ତେଣୁ, ମା, ଆପଣ ଭଗବାନଙ୍କୁ ଭକ୍ତିସହକାରେ ସେବାକରନ୍ତୁ; ତଦ୍ଦ୍ୱାରା ଆପଣ ଅଚିରେ ଜୀବଜଗତରୁ ତଥା ସଂସାର ବନ୍ଧନରୁ ମୁକ୍ତି-ଲଭ କରିବେ ।'

ପୁତ୍ରରୂପୀ ଭଗବାନଙ୍କଠାରୁ ଆତ୍ମତତ୍ତ୍ୱ ସମ୍ପର୍କରେ ଶିକ୍ଷା ଲଭ କରି ଅବଶିଷ୍ଟ ଜୀବନ ପାଇଁ ଭଗବାନଙ୍କ ଉଦ୍ଦେଶ୍ୟରେ ଧ୍ୟାନରତ ହୋଇ ଦେବହୂତି ସିଦ୍ଧିଲଭ କରିଥିଲେ ।

## ଦକ୍ଷ-ଯଜ୍ଞ

ସ୍ୱାୟମ୍ଭୁବ ମନୁଙ୍କର ଔରସରେ ତାଙ୍କର ପତ୍ନୀ ଶତରୂପାଙ୍କ ଗର୍ଭରୁ ତିନଗୋଟି କନ୍ୟା ଜାତ ହୋଇଥିଲେ; ସେମାନଙ୍କର ନାମ ଆକୂତି, ଦେବହୂତି ଓ ପ୍ରସୂତି । ମନୁ ନିଜର ସେହି କନ୍ୟାମାନଙ୍କ ମଧ୍ୟରୁ ଆକୂତିଙ୍କ ସହିତ ରୁଚିଙ୍କର, ଦେବହୂତିଙ୍କ ସହିତ କର୍ଦ୍ଦମଙ୍କର ଏବଂ ପ୍ରସୂତିଙ୍କ ସହିତ ଦକ୍ଷଙ୍କର ବିବାହ ସମ୍ବନ୍ଧ କରିଥିଲେ । ପ୍ରସୂତିଙ୍କର ଗର୍ଭରୁ ଦକ୍ଷ ଷୋଳଗୋଟି ପରମାସୁନ୍ଦରୀ କନ୍ୟା ଲାଭ କରିଥିଲେ । ସେହି କନ୍ୟାମାନଙ୍କ ମଧ୍ୟରୁ ତେର ଜଣଙ୍କୁ ଧର୍ମଙ୍କ ହସ୍ତରେ ଏବଂ ଅବଶିଷ୍ଟ ତିନି କନ୍ୟାଙ୍କ ମଧ୍ୟରୁ ଜଣ ଜଣଙ୍କୁ ଅଗ୍ନି, ପିତୃଗଣ ଓ ଶିବଙ୍କୁ ଦକ୍ଷ ଅର୍ପଣ କରିଥିଲେ । ଯେଉଁ ଦକ୍ଷକନ୍ୟା ଶିବଙ୍କୁ ବିବାହ କରିଥିଲେ ତାଙ୍କର ନାମ ସତୀ ।

ଦିନେ ପ୍ରଜାପତିଙ୍କ ଯଜ୍ଞସ୍ଥାନରେ ପ୍ରସିଦ୍ଧ ମହର୍ଷି, ଋଷି, ଦେବଗଣ ନିଜ ନିଜର ଅନୁଚରଙ୍କ ସହ ଉପସ୍ଥିତ ଥିଲାବେଳେ, ପ୍ରଜାପତି ଦକ୍ଷ ସେହି ସ୍ଥାନରେ ପ୍ରବେଶ କଲେ । ସଙ୍ଗେ ସଙ୍ଗେ ଦକ୍ଷଙ୍କର ତେଜରେ ସେହି ସମଗ୍ର ଯଜ୍ଞସ୍ଥାନ ଅପୂର୍ବ ଦୀପ୍ତିରେ ଉଦ୍ଭାସିତ ହୋଇ ଉଠିଲା । ସମବେତ ବ୍ୟକ୍ତିମାନେ ସ୍ୱସ୍ୱ ଆସନରୁ ଉତ୍ଥିତ ହୋଇ ଦକ୍ଷଙ୍କୁ ଅଭିନନ୍ଦିତ କଲେ; କିନ୍ତୁ ସେହି ଯଜ୍ଞ ସ୍ଥାନରେ ଶିବ ଉପସ୍ଥିତ ଥିଲେ ମଧ୍ୟ ସେ ଦକ୍ଷଙ୍କୁ ଅଭିନନ୍ଦିତ କରିବା ନିମନ୍ତେ ଅନ୍ୟମାନଙ୍କ ପରି ଆସନ ତ୍ୟାଗକଲେ ନାହିଁ; ଫଳରେ ନିଜପ୍ରତି ଜାମାତାଙ୍କର ଏପରି ପ୍ରକାଶ୍ୟ ଅବମାନନା ଦକ୍ଷଙ୍କ ପକ୍ଷରେ ଅସହ୍ୟ ହେଲା । ସେ କ୍ରୋଧାନ୍ୱିତ ଓ ହିତାହିତ ଜ୍ଞାନଶୂନ୍ୟ ହୋଇ ସେହି ପ୍ରକାଶ୍ୟ ସଭାରେ କହିଲେ; ହେ ଦେବଗଣ, ଅଗ୍ନିଗଣ, ବ୍ରହ୍ମର୍ଷିଗଣ, ଆପଣମାନେ ଶୁଣନ୍ତୁ । ଏହି ଶିବ ଅତ୍ୟନ୍ତ ନିର୍ଲଜ୍ଜ ଏବଂ ଲୋକପାଳ-ମାନଙ୍କର କୀର୍ତ୍ତି ନାଶକାରୀ । ମର୍କଟ ସଦୃଶ କୁତ୍ସିତ ରୂପଧାରୀ ଏହି ଶିବ ମୋର ହରିଣୀନୟନା ପରମା ସୁନ୍ଦରୀ କନ୍ୟାର ପାଣିଗ୍ରହଣ କରିଥିଲେ ମଧ୍ୟ ଶ୍ୱଶୁର ପ୍ରତି ଜାମାତାର କର୍ତ୍ତବ୍ୟ ସମ୍ପାଦନରେ ଅବହେଳା ପ୍ରଦର୍ଶନ କରିଅଛି । ଶୂଦ୍ରକୁ ବେଦ

ସମ୍ପର୍କରେ ଶିକ୍ଷା ପ୍ରଦାନ କଲା ପରି ମୋର ଅନିଚ୍ଛାସତ୍ତ୍ୱେ ଏହି କୁଳାଙ୍ଗାର ହସ୍ତରେ ମୁଁ ମୋର କନ୍ୟାକୁ ସମ୍ପ୍ରଦାନ କରିଥିଲି; କିନ୍ତୁ ଆଜି ଏହି ଗର୍ବୀ ସମସ୍ତ ମର୍ଯ୍ୟାଦାକୁ ଲଙ୍ଘନ କରିଅଛି । ଏହି ବ୍ୟକ୍ତି ନିଜର ସର୍ବାଙ୍ଗରେ ଚିତାଭସ୍ମ ବୋଳିହୋଇ ଭୟଙ୍କର ଭୂତ ପ୍ରେତଙ୍କ ସଙ୍ଗରେ ପାଗଳଙ୍କ ପରି ଅବିନ୍ୟସ୍ତ ବେଶ ଧାରଣକରି ଓ ଉଲଗ୍ନ ହୋଇ ଦେହରେ ନର ଖପୁରିର ମାଳା ଲମ୍ବାଇ ଓ ମୃତବ୍ୟକ୍ତିର ଅସ୍ଥିରେ ଭୂଷଣ କରି ଓ ମାଦକଦ୍ରବ୍ୟ ସେବନ କରି ଶ୍ମଶାନରେ ବିଚରଣ କରିଥାଏ । ନାଁଟା ସିନା ତା'ର ଶିବ, ହେଲେ କଣିକାଏ ଶିବତ୍ୱ ଏହାକୁ ସ୍ପର୍ଶ କରିନାହିଁ । ମୋର ଦୁର୍ଭାଗ୍ୟ ଯେ ଏପରି ଏକ ଉନ୍ମାଦ ଓ ଶୌଚାଚାର ବର୍ଜିତ ଦୁଷ୍ଟ ହସ୍ତରେ ମୋର ସାଧ୍ୱୀ କନ୍ୟାକୁ ମୁଁ ଅର୍ପଣ କରିଅଛି ।'

ଏତେ କଟୁ ବାକ୍ୟ ଦକ୍ଷ ପ୍ରକାଶ କଲେ ମଧ୍ୟ ଶିବ ପୂର୍ବପରି ନୀରବ ନିଶ୍ଚଳ ହୋଇ ସେଠାରେ ବସି ରହିଥାନ୍ତି ଏବଂ ଦକ୍ଷଙ୍କ କଥାରେ ସେ କୌଣସି ପ୍ରତିଉକ୍ତି କଲେ ନାହିଁ । ଶିବଙ୍କର ନୀରବତା ଦକ୍ଷଙ୍କର କ୍ରୋଧକୁ ଅଧିକ ଉଦ୍ଦୀପିତ କଲା । ସେ ସମବେତ ବ୍ୟକ୍ତିମାନଙ୍କର ଅନୁରୋଧ ଓ ନିବାରଣକୁ ପ୍ରତ୍ୟାଖ୍ୟାନ କରି ଜଳସ୍ପର୍ଶ କରି ଶିବଙ୍କୁ ଅଭିଶାପ ଦେବାକୁ ଯାଇ କହିଲେ, 'ଦେବତାମାନଙ୍କର ପୂଜାର୍ଚ୍ଚନା ସମୟରେ ଏହି ଦେବାଧମ କୌଣସି ଯଜ୍ଞଭାଗ ପାଇବ ନାହିଁ ।'

ଶିବଙ୍କ ପ୍ରତି ଏପରି ଅବିଚାର କରାଯାଇଅଛି ଦେଖି, ଶିବଙ୍କର ପ୍ରଧାନ ଅନୁଚର ନନ୍ଦୀଶ୍ୱରଙ୍କର କ୍ରୋଧର ସୀମା ରହିଲା ନାହିଁ । ସେ କ୍ରୋଧରେ ରକ୍ତଚକ୍ଷୁ ଧାରଣ କରି ଦକ୍ଷଙ୍କୁ ଅଭିଶାପ ଦେଇ କହିଲେ, 'ଯେ ମରଣଶୀଳ ସାମାନ୍ୟ ଶରୀର ଧାରଣ କରି ସର୍ବଜନପୂଜ୍ୟ ଅପରଦ୍ରୋହୀ ପ୍ରଭୁ ଶିବଙ୍କ ପ୍ରତି ଏପରି ଦ୍ୱେଷ କରି ପାରେ, ସେହି ନୀଚବୁଦ୍ଧି ସମ୍ପନ୍ନ ଦକ୍ଷ କେବେହେଲେ ପରମାର୍ଥ ଲାଭ କରିବାକୁ ସମର୍ଥ ହେବ ନାହିଁ, ଏହି ଦକ୍ଷର ଆଚରଣ ପଶୁସୁଲଭ; ତେଣୁ ତା'ର ମନ ପଶୁ ସଦୃଶ ହୋଇଯାଉ । ଯେଉଁମାନେ ଦକ୍ଷର ଏହି କାର୍ଯ୍ୟକୁ ଅନୁମୋଦନ କରିଅଛନ୍ତି, ସେମାନଙ୍କର ବିବେକ ଜ୍ଞାନ ଲୋପ ପାଉ ।'

ଅପ୍ରତ୍ୟାଶିତ ଭାବରେ ସଭାରେ ଏପରି ଘଟଣାମାନ ଘଟିଗଲା । ଏହା କେହି ପୂର୍ବରୁ ଆଶା କରି ନଥିଲେ । ସଭାରେ ଉପସ୍ଥିତ ରହିଲେ

ଅନ୍ୟ ଅଘଟଣ ଘଟିପାରେ ଆଶଙ୍କା କରି ଶିବ ମାରକଣ୍ଡେୟଙ୍କ ସହିତ ଯଜ୍ଞ ସ୍ଥାନ ତ୍ୟାଗ କରି ଚାଲିଗଲେ ।

ଏହି ଘଟଣାର ବହୁଦିନ ପରେ ବ୍ରହ୍ମା ସମସ୍ତ ପ୍ରଜାପତିଙ୍କ ଅଧିପତି ପଦରେ ଦକ୍ଷଙ୍କୁ ଅଭିଷିକ୍ତ କରିବାରୁ ଦକ୍ଷଙ୍କର ଗର୍ବର ସୀମା ରହିଲା ନାହିଁ । ନିଜର ନୂତନ ପଦଲାଭଜନିତ ଆନନ୍ଦକୁ ଏକ ମନୋଜ୍ଞ ଉତ୍ସବ ମାଧ୍ୟମରେ ପ୍ରକାଶ କରିବାକୁ ସ୍ଥିର କରି ଦକ୍ଷ ବୃହସ୍ପତି ଯଜ୍ଞ ନାମକ ଏକ ବୃହତ ଯଜ୍ଞ ଆରମ୍ଭ କଲେ ଏବଂ ସେହି ଯଜ୍ଞକୁ ବ୍ରହ୍ମର୍ଷି, ଦେବର୍ଷି, ପିତୃଲୋକ ଓ ଦେବଗଣଙ୍କୁ ଦକ୍ଷ ଆମନ୍ତ୍ରଣ କଲେ ଏବଂ ସେମାନେ ମଧ୍ୟ ସ୍ୱସ୍ୱ ବନ୍ଧୁ ଓ ପତ୍ନୀ ପରିବାରଙ୍କ ସହିତ ଯଜ୍ଞ ଦର୍ଶନ କରିବାକୁ ଆସିଲେ । କିନ୍ତୁ ଶିବଙ୍କ ନିକଟକୁ ସେହି ଯଜ୍ଞର ନିମନ୍ତ୍ରଣ ଜାଣିଶୁଣି ଦକ୍ଷ ପଠାଇଲେ ନାହିଁ; ତେଣୁ ସେହି ଯଜ୍ଞକୁ ଶିବଙ୍କର ଆସିବାର ପ୍ରଶ୍ନ ଉଠିଲା ନାହିଁ । କିନ୍ତୁ ଶିବଙ୍କର ପତ୍ନୀ ସତୀ କେଉଁଠାରୁ ପିତାଙ୍କର ସେହି ବିଶାଳ ଯଜ୍ଞାନୁଷ୍ଠାନର କଥା ଜାଣିବାକୁ ପାଇଲେ ଏବଂ ଯଜ୍ଞ ଦର୍ଶନ କରିବାକୁ ତାଙ୍କ ମନରେ ପ୍ରବଳ ଆଗ୍ରହ ଜାତ ହେଲା । ସେଥି ପାଇଁ ସତୀ ସ୍ୱାମୀ ଶିବଙ୍କୁ ପିତ୍ରାଳୟ ଯିବାକୁ ଅନୁମତି ଦେବା ନିମନ୍ତେ ପ୍ରାର୍ଥନା କଲେ ଏବଂ କହିଲେ, 'ପ୍ରଭୁ, ଆପଣଙ୍କର ଶ୍ୱଶୁର ପ୍ରଜାପତି ଦକ୍ଷଙ୍କର ଯଜ୍ଞ ଅନୁଷ୍ଠିତ ହେଉଅଛି । ଦେଖନ୍ତୁ ଦେବତା-ମାନେ ସେ ସ୍ଥାନକୁ ଯାଉଅଛନ୍ତି । ଯଦି ଆପଣଙ୍କର ଆପତ୍ତି ନଥାଏ, ତେବେ ମୁଁ ଯଜ୍ଞ ଦେଖିବାକୁ ଯାଆନ୍ତି । ମୋର ଭଉଣୀମାନେ ନିଶ୍ଚୟ ନିଜ ନିଜ ପତିଙ୍କ ସହିତ ବାପଘରକୁ ଆସିଥିବେ । ମୁଁ ମଧ୍ୟ ଆପଣଙ୍କ ସହିତ ସେଠାକୁ ଯାଇ ପିତାମାତାଙ୍କର ଆଦର ଯତ୍ନ ଗ୍ରହଣ କରିବାକୁ ବିଶେଷ ଆଗ୍ରହୀ । ବହୁଦିନ ହେଲା ଆତ୍ମୀୟ ସ୍ୱଜନମାନଙ୍କୁ ଦେଖିନାହିଁ; ତେଣୁ ଗଲେ ଯଜ୍ଞ ଦର୍ଶନ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ମଧ୍ୟ ଦେଖିବାର ସୁଯୋଗ ଲାଭ କରନ୍ତି । ପ୍ରଭୁ, ଆପଣ ଯୋଗଦୃଷ୍ଟିରେ ଚରାଚର ବିଶ୍ୱବ୍ରହ୍ମାଣ୍ଡକୁ ଅବଲୋକନ କରୁଅଛନ୍ତି; ମାତ୍ର ତତ୍ତ୍ୱ ଅନଭିଜ୍ଞା ନାରୀ ମୁଁ, ଜନ୍ମଭୂମି ବ୍ୟତୀତ ମୋର ବା ଅନ୍ୟ କିଛି ଦେଖିବାର ସୌଭାଗ୍ୟ ନାହିଁ । ବାପ ଘରକୁ ଯିବାକୁ ମୁଁ ବିଶେଷ ଉତ୍କଣ୍ଠିତା । ଦେଖନ୍ତୁ, ରମଣୀମାନେ ଉତ୍କୃଷ୍ଟ ବସନ ଭୂଷଣ ପରିଧାନ କରି ଯଜ୍ଞସ୍ଥାନକୁ କି ଆନନ୍ଦରେ ଯାଉଅଛନ୍ତି । ବାପଘର ମହୋତ୍ସବର ଆନନ୍ଦରେ ଫାଟି ପଡୁଛି, ଏହା ଶୁଣିଲେ କେଉଁ ଝିଅ ସେଠାକୁ ନଯାଇ ଚୁପ୍ ହୋଇ ବସିରହି-

ପାରେ !! ବାପଘରକୁ ଯିବାପାଇଁ ନିମନ୍ତ୍ରଣର ପ୍ରୟୋଜନ ନାହିଁ । ବିନା ନିମନ୍ତ୍ରଣରେ ଗଲେ ମଧ୍ୟ କୌଣସି କ୍ଷତି ନାହିଁ; ତେଣୁ ଆପଣ ଦୟାପରବଶ ହୋଇ ମୋ ମନର ଏହି ଅଦମ୍ୟ ଉତ୍କଣ୍ଠାକୁ ହୃଦୟଙ୍ଗମ କରି ପିତୃସଦନକୁ ଯିବା ନିମନ୍ତେ ମୋତେ ଅନୁମତି ପ୍ରଦାନ କରନ୍ତୁ ।'

ସତୀଙ୍କର କଥା ଶୁଣି ଶିବ କହିଲେ, 'ପ୍ରିୟେ, ତୁମେ କିଛି ଭୁଲ କଥା କହିନାହଁ । ବିନାନିମନ୍ତ୍ରଣରେ କନ୍ୟାମାନେ ପିତୃସଦନକୁ ଯିବାରେ କୌଣସି କ୍ଷତି ନାହିଁ । କନ୍ୟାମାନଙ୍କ ମଧ୍ୟରେ ତୁମେ ତୁମ ପିତାଙ୍କର ଅତ୍ୟନ୍ତ ସ୍ନେହର ପାତ୍ରୀ, ତାହା ମଧ୍ୟ ମୋତେ ଉତ୍ତମ ରୂପେ ଜଣା; ତଥାପି ତୁମକୁ ପିତୃଭବନକୁ ବିନାନିମନ୍ତ୍ରଣରେ ଯିବାପାଇଁ ମୁଁ ଅନୁମତି ଦେଇ ପାରୁନାହିଁ; କାରଣ ଏଥର ଗଲେ ତୁମେ ସେଠାରେ ଉପଯୁକ୍ତ ସମାଦର ଲାଭ କରିପାରିବ ନାହିଁ । ମୋ ସହିତ ତୁମର ବିବାହ କରାଇ ତୁମର ପିତା ଅତ୍ୟନ୍ତ ଅନୁତପ୍ତ; କାରଣ ଏହି ବିବାହଦ୍ୱାରା ତୁମ ପିତାଙ୍କର ସମ୍ମାନ ଓ ମର୍ଯ୍ୟାଦା ବିଶେଷ ଭାବରେ କ୍ଷୁଣ୍ଣ ହୋଇଅଛି ବୋଲି ତାଙ୍କର ଧାରଣା । ପ୍ରତ୍ୟେକଙ୍କ ଅନ୍ତରରେ ଭଗବାନ ବାସୁଦେବ ଅବସ୍ଥାନ କରିଥାନ୍ତି ବୋଲି ଅନ୍ତରକୁ ବସୁଦେବ ନାମରେ ଅଭିହିତ କରାଯାଇଥାଏ । ଏହି ତତ୍ତ୍ୱରେ ଯେଉଁମାନେ ଅନଭିଜ୍ଞ, ସେମାନେ ଅନ୍ୟପ୍ରତି ନିଜର ସମ୍ମାନ ଓ ଶ୍ରଦ୍ଧା ଜ୍ଞାପନ କଲାବେଳେ ପ୍ରତ୍ୟୁଦ୍‌ଗମନ, ବିନୟଭାବପ୍ରଦର୍ଶନ ଏବଂ ପ୍ରକାଶ୍ୟ ଅଭିବାଦନ ଆଦି କରିଥାନ୍ତି; କିନ୍ତୁ ତତ୍ତ୍ୱଜ୍ଞ ଜ୍ଞାନୀମାନେ ସେପରି ନ କରି ଅନ୍ତରସ୍ଥ ଭଗବାନ ବାସୁଦେବଙ୍କୁ ସ୍ମରଣ କରି ଏହି କାର୍ଯ୍ୟ ମାନସିକରେ ଓ ମନେ ମନେ ସମ୍ପାଦନ କରିଥାନ୍ତି । ତାହା ହିଁ ଶାସ୍ତ୍ରସମ୍ମତ । ତୁମ ପିତାଙ୍କର ଯଜ୍ଞସଭାକୁ ଯେତେବେଳେ ତୁମ ପିତା ଆଗମନ କଲେ, ମୁଁ ଉପରୋକ୍ତ ତତ୍ତ୍ୱଦୃଷ୍ଟିରେ ମନେ ମନେ ଭଗବାନ ବାସୁଦେବଙ୍କୁ ସ୍ମରଣ କରି ମୋର ଭକ୍ତି ପ୍ରଣାମ ଜଣାଇଥିଲି ଏବଂ ତଦ୍ୱାରା ତୁମ ପିତାଙ୍କର ଆଗମନକୁ ଅଭିନନ୍ଦିତ କରିଥିଲି; କିନ୍ତୁ ତୁମର ପିତା ଅତ୍ୟନ୍ତ ଆତ୍ମାଭିମାନୀ, ଆତ୍ମଗର୍ବୀ ଥିବାରୁ ତାହା ବୁଝିବାକୁ ଅସମର୍ଥ ହୋଇ, ବିନା ଦୋଷରେ ମୋପ୍ରତି କୁଭାଷା ପ୍ରୟୋଗ କରି ମୋତେ ସମସ୍ତଙ୍କ ସମ୍ମୁଖରେ ତିରସ୍କାର କରିଥିଲେ । ଏହି ପରିସ୍ଥିତିରେ ତୁମର ସେଠାକୁ ଯିବା, ବିଶେଷ କରି ଅନିମନ୍ତ୍ରିତ ଭାବରେ, ଆଦୌ ଉଚିତ ନୁହେଁ ।

ସ୍ୱଜନଙ୍କ ଦ୍ୱାରା ଅପମାନିତ ହେବା ମୃତ୍ୟୁ ସହିତ ସମାନ । ତୁମକୁ ନିମନ୍ତ୍ରଣ ନ କରି ତୁମର ପିତାମାତା ତୁମ ପ୍ରତି ସମ୍ପୂର୍ଣ୍ଣ ଅବଜ୍ଞା ପ୍ରଦର୍ଶନ କରିଅଛନ୍ତି, ଏବଂ ସେଠାକୁ ଗଲେ ତୁମକୁ ବିଶେଷ ଅପମାନର ସମ୍ମୁଖୀନ ହେବାକୁ ପଡ଼ିପାରେ । ତେଣୁ ସେଠାକୁ ଯିବା ମୋ ମତରେ ତୁମ ପକ୍ଷରେ ଆଦୌ ଉଚିତ ନୁହେଁ ; ତଥାପି ମୋର ବାରଣ ସତ୍ତ୍ୱେ ତୁମେ ସେଠାକୁ ଯିବାକୁ ଯଦି ସ୍ଥିର କରିଥାଅ ବା ଯାଅ, ସେଠାରେ ତୁମର ଅମଙ୍ଗଳ ହେବାର ଆଶଙ୍କା ମୁଁ କରୁଅଛି ।'

ଏକ ପକ୍ଷରେ ସ୍ୱାମୀଙ୍କର ବାରଣ, ଅନ୍ୟ ପକ୍ଷରେ ପିତୃସଦନକୁ ଯିବା ପାଇଁ ଅତ୍ୟଧିକ ଆଗ୍ରହର ଦ୍ୱନ୍ଦ୍ୱ ସତୀଙ୍କୁ କିଂକର୍ତ୍ତବ୍ୟବିମୂଢ଼ କରି ଦେଲା । ପିତୃଭବନକୁ ଯାଇ ଆତ୍ମୀୟସ୍ୱଜନଙ୍କୁ ଦର୍ଶନ କରିବାର ଅଭିଳାଷ ତାଙ୍କ ମନକୁ ଏପରି ଆବୋରି ବସିଥିଲା ଯେ, ସତୀ ନିଜ ମନକୁ ଆଦୌ ସଂଯତ କରିପାରିଲେ ନାହିଁ । ସ୍ୱାମୀ ହିଁ ତାଙ୍କର ପିତୃ-ସଦନ ଯାତ୍ରାର ପ୍ରଧାନ ପ୍ରତିବନ୍ଧକ ବୋଲି ଭାବି ସତୀଙ୍କ ମନରେ ସ୍ୱାମୀଙ୍କ ପ୍ରତି ପ୍ରବଳ କ୍ରୋଧ ଜାତ ହେଲା । ଅପରିଣାମଦର୍ଶିନୀ ରମଣୀଙ୍କ ପରି ସେ ସ୍ୱାମୀଙ୍କର ହିତକଥାକୁ ତୁଚ୍ଛ ଜ୍ଞାନ କରି ଏକାକିନୀ ସଙ୍ଗେ ସଙ୍ଗେ ପିତୃଭବନ ଉଦ୍ଦେଶ୍ୟରେ ଯାତ୍ରା କଲେ । ସତୀଙ୍କୁ ଏକାକିନୀ ଯିବାର ଦେଖି ଶିବଙ୍କର କେତେଜଣ ପାର୍ଷଦ ତାଙ୍କର ଅନୁଧାବନ କରିଥିଲେ ।

ମହାସମାରୋହରେ ଦକ୍ଷଙ୍କ ଭବନରେ ଯଜ୍ଞ ଅନୁଷ୍ଠିତ ହେଉ-ଥାଏ, ଚତୁର୍ଦ୍ଦିଗରେ ବେଦ-ଧ୍ୱନି ମୁଖରିତ ହେଉଥାଏ । ସମବେତ ଆମନ୍ତ୍ରିତ ଅତିଥିମାନେ ଯଜ୍ଞସ୍ଥାନର ଚତୁର୍ଦ୍ଦିଗରେ ଉପବେଶନ କରି ଶୋଭାପାଉଥାନ୍ତି । ଏହି ସମୟରେ ଶିବପତ୍ନୀ ସତୀ ଯଜ୍ଞସ୍ଥାନରେ ଯାଇ ପହଞ୍ଚିଲେ ।

ଶିବଙ୍କର ଅନୁମାନ ସତ୍ୟ । ସତୀ ଯଜ୍ଞସ୍ଥଳରେ ଉପସ୍ଥିତ ହେଲେ ମଧ୍ୟ ଦକ୍ଷଙ୍କ ଭୟରେ ସମବେତ ବ୍ୟକ୍ତିମାନେ କେହି ସତୀଙ୍କୁ ସମ୍ମାନ ବା ଆଦର ପ୍ରଦର୍ଶନ କଲେ ନାହିଁ । ଦକ୍ଷ କନ୍ୟାକୁ ଦେଖି ମଧ୍ୟ ନ ଦେଖିଲା ପରି ସତୀଙ୍କୁ ଉପେକ୍ଷା କଲେ । ସତୀଙ୍କର ଆଗମନ ସମ୍ବାଦ ପାଇ ତାଙ୍କର ମା ଓ ଭଉଣୀମାନେ ତାଙ୍କୁ ଆଦରରେ ପାଛୋଟି ନେଲେ ଏବଂ ବହୁବିଧ ଉପହାରମାନ ପ୍ରଦାନ କଲେ । କିନ୍ତୁ ସତୀ ଅତ୍ୟନ୍ତ ଅଭି-

ମାନମାନ ଥିଲେ । ଆଦର କରିବା ଦୂରେଥାଉ ପିତା ଯେତେବେଳେ କଥା ପଦେ ମଧ୍ୟ କହୁ ନାହାନ୍ତି, ସେତେବେଳେ ତାଙ୍କ ମନରେ ପ୍ରବଳ କ୍ରୋଧ ଜାତହେଲା । ମା ଓ ଭଉଣୀମାନେ ତାଙ୍କୁ ଦେଉଥିବା ଉପହାରମାନ ସେ ପ୍ରତ୍ୟାଖ୍ୟାନ କଲେ । ସତୀ ଯେତେବେଳେ ଜାଣିବାକୁ ପାଇଲେ ଯେ, ଯଜ୍ଞକୁ ଆସିବା ନିମନ୍ତେ ତାଙ୍କ ସ୍ୱାମୀଙ୍କୁ ନିମନ୍ତ୍ରଣ କରି ଯାଇନାହିଁ ଏବଂ ଶିବଙ୍କ ପାଇଁ କୌଣସି ଯଜ୍ଞଭାଗ ମଧ୍ୟ ପ୍ରଦତ୍ତ ହୋଇ ନାହିଁ, ସେତେବେଳେ ସେ ନିଜକୁ ଅତ୍ୟନ୍ତ ଅପମାନିତା ମନେ କଲେ । ପ୍ରବଳ କ୍ରୋଧର ବଶବର୍ତ୍ତିନୀ ହୋଇ ପିତା ଦକ୍ଷଙ୍କୁ ଭର୍ତ୍ସନା କରି କହିଲେ, 'ବାପା, ଦେବତାମାନଙ୍କ ମଧ୍ୟରେ ଯେ ସର୍ବଶ୍ରେଷ୍ଠ, ସର୍ବଜନପ୍ରିୟ, ଉଦାରଚରିତ୍ର, ନିର୍ବୈରଶୂନ୍ୟ, ଜଗତ୍‌କାରଣ, ସର୍ବମୟ ଏବଂ ସର୍ବବ୍ୟାପକ, ସେହି ଭଗବାନ ଶିବଙ୍କ ପ୍ରତି ଆପଣ ଅଯଥା ଦୋଷ ଆରୋପ କରି ଅନାଦର କରିଅଛନ୍ତି । ସାଧୁସ୍ୱଭାବସମ୍ପନ୍ନ ବ୍ୟକ୍ତିମାନେ ଅନ୍ୟର ଚରିତ୍ରରୁ ସଦ୍‌ଗୁଣକୁ ବିସ୍ତୃତ ଭାବରେ ଗ୍ରହଣ କରୁଥିଲେ, ଅସାଧୁ ସ୍ୱଭାବର ବ୍ୟକ୍ତିମାନେ କେବଳ ଅନ୍ୟର ଦୋଷ ଦେଖିବାରେ ଆନନ୍ଦ ପାଇଥାନ୍ତି । ଆପଣ ଜଡ଼ ଦେହକୁ ଆତ୍ମା ବୋଲି ଧାରଣା କରି ଜଗତ୍‌ପୂଜ୍ୟ ଶିବଙ୍କଠାରେ ଅସାଧୁ ବ୍ୟକ୍ତିଙ୍କ ପରି ଅଯଥା ଦୋଷାରୋପ କରିଅଛନ୍ତି । 'ଶିବ' ଏହି ନାମକୁ ଥରେ ମାତ୍ର ଭକ୍ତିର ସହିତ ଉଚ୍ଚାରଣ କଲେ ସକଳ ପାପ ବିନଷ୍ଟ ହୁଏ । ସାଧୁମାନଙ୍କର ମନରୂପକ ମଧୁପ ବ୍ରହ୍ମାନନ୍ଦ ରୂପକ ରସ ଆସ୍ୱାଦନ କରିବା ନିମନ୍ତେ ଯାହାଙ୍କର ଚରଣକମଳକୁ ନିରନ୍ତର ସେବା କରିଥାନ୍ତି, ଯାହାଙ୍କର ଚରଣାରବିନ୍ଦର ଦର୍ଶନ ସକାମ ବ୍ୟକ୍ତିମାନଙ୍କର ସକଳ ଅଭିଳାଷକୁ ଅଚିରେ ପୂର୍ଣ୍ଣ କରିଥାଏ, ସେହି ବିଶ୍ୱବନ୍ଧୁ ପ୍ରଭୁ ଶିବଙ୍କୁ ଆପଣ ଅପମାନିତ କରିଅଛନ୍ତି ! ଯେ ଜଟାଜୁଟ ମଣ୍ଡିତ ଶ୍ମଶାନ ଭସ୍ମପ୍ରଲେପିତ ନରକପାଳଭୂଷିତ ଓ ପିଶାଚସଙ୍ଗୀ ହେଲେ ମଧ୍ୟ ବ୍ରହ୍ମାପ୍ରମୁଖ ଦେବଗଣ ଯାହାଙ୍କର ଚରଣରଜକୁ ମସ୍ତକରେ ଧାରଣ କରିବାକୁ ନିଜର ପରମ ସୌଭାଗ୍ୟ ବୋଲି ମନେ କରିଥାନ୍ତି, ସେହି ଆତ୍ମାରମଣ, ବିରକ୍ତିଶୂନ୍ୟ, ବେଦାନୁପଥ ଅନୁସରଣକାରୀ, ପରମବ୍ରହ୍ମସ୍ୱରୂପ, ଅବ୍ୟକ୍ତ ପ୍ରଭୁ ଶିବଙ୍କ ପ୍ରତି ଆପଣ ବିଦ୍ୱେଷପରାୟଣ ହୋଇଅଛନ୍ତି । ଆପଣଙ୍କର ମନ ଅତ୍ୟନ୍ତ କୁତ୍ସିତ । ଆପଣଙ୍କ ପରି ନୀଚ ବ୍ୟକ୍ତିର ଶରୀରରୁ ମୋର ଏହି ଦେହ ସୃଷ୍ଟି ହୋଇ-

ଥିବାରୁ ଓ ଆପଣଙ୍କ ସହ ମୋର ସମ୍ପର୍କ ରହିଥିବାରୁ ମୁଁ ନିଜକୁ ଅତ୍ୟନ୍ତ ଲଜ୍ଜିତ, ଘୃଣ୍ୟ ଓ ମୋର ଏହି ଶରୀରକୁ ଅତ୍ୟନ୍ତ କୁତ୍ସିତ ମନେ କରୁଅଛି । ମୋର ଜନ୍ମକୁ ଧିକ୍ । କୁତ୍ସିତ ଅଙ୍ଗଜାତ ମୋର ଏହି ଦେହକୁ ଅଧିକକାଳ ଧାରଣ କରିବାକୁ ମୁଁ ଉଚିତ ମନେ କରୁନାହିଁ ।'

ଏହା କହି ସତୀ ମୌନତା ଅବଲମ୍ବନ କଲେ ଏବଂ ଉତ୍ତର ଦିଗକୁ ମୁଖକରି ବସି ନିଜର ଶରୀରକୁ ପୀତବସ୍ତ୍ରରେ ଆବୃତ କରି ଯୋଗାସନରେ ଉପବେଶନ କଲେ । ପ୍ରାଣ ଓ ଅପାନ ବାୟୁକୁ ନିରୋଧ କରି ନାଭିଚକ୍ରକୁ ଆନୟନ କରି ନାଭିଚକ୍ରରୁ ଉଦାନ ବାୟୁକୁ ଉତ୍ତୋଳିତ କରି ଅନାହତ ଚକ୍ରରେ ସ୍ଥାପନ କଲେ ଏବଂ ପରେ ସେହି ବାୟୁକୁ କଣ୍ଠନାଳୀ ଦ୍ୱାରା ଧୀରେ ଧୀରେ ଭ୍ରୂଯୁଗଳ ମଧ୍ୟକୁ ଉତ୍ତୋଳିତ କଲେ । ଯେଉଁ ନବନୀତ କୋମଳ କଳେବରକୁ ଜଗତପୂଜ୍ୟ ଶିବ ନିଜ କ୍ରୋଡ଼ରେ ବସାଇ ବହୁ ଆଦର କରିଥାନ୍ତି, ମନସ୍ୱିନୀ ସତୀ ପିତାଙ୍କ ପ୍ରତି କ୍ରୁଦ୍ଧା ହୋଇ ନିଜର ସେହି ଦେହକୁ ତ୍ୟାଗ କରିବାକୁ ଇଚ୍ଛା କରି ସର୍ବାଙ୍ଗରେ ବାୟୁ ଓ ଅଗ୍ନିଙ୍କ ଉପସ୍ଥିତିକୁ ଧାରଣା କଲେ ଏବଂ ଜଗଦ୍‌ଗୁରୁ ଭଗବାନ ଶଙ୍କରଙ୍କର ଚରଣ କମଳକୁ ଚିନ୍ତା କରିବାକୁ ଲାଗିଲେ । ଶିବପାଦପଦ୍ମ ଭିନ୍ନ ସତୀଙ୍କ ସମ୍ମୁଖରେ ଅନ୍ୟ କୌଣସି ଦୃଶ୍ୟ ପ୍ରତିଭାତ ହେଉ ନ ଥିଲା ଓ ଦକ୍ଷକନ୍ୟା ବୋଲି ନିଜ ମନରେ ଯେଉଁ ଅଭିମାନପୂର୍ଣ୍ଣ କଳୁଷ ଥିଲା, ତାହା ଧୀରେ ଧୀରେ ବିଦୂରିତ ହେବାକୁ ଲାଗିଲା । ଧୀରେ ଧୀରେ ଯୋଗାସନରେ ଉପବିଷ୍ଟ ସତୀଙ୍କ ଶରୀରରୁ ସ୍ୱତଃ ଯୋଗସିଦ୍ଧି ଅଗ୍ନି ପ୍ରଜ୍ୱଳିତ ହେବାକୁ ଲାଗିଲା । ସତୀ ଏହିପରି ନିଜର ପ୍ରାଣ ତ୍ୟାଗ କଲେ ଏବଂ ସେହି ଦାରୁଣ ଦୃଶ୍ୟ ଅବଲୋକନ କରି ସମଗ୍ର ଜଗତ ଦୁଃଖ ଓ ବିସ୍ମୟରେ ସ୍ତମ୍ଭୀଭୂତ ଓ ବ୍ୟଥିତ ହୋଇଗଲା । ସମସ୍ତେ କହିବାକୁ ଲାଗିଲେ, ହାୟ, ହାୟ, ଦେବଦେବ ମହାଦେବଙ୍କ ପ୍ରିୟତମା ପତ୍ନୀ ପ୍ରଶାନ୍ତ ହୃଦୟା, ସର୍ବଜନ ପୂଜ୍ୟା ସତୀ ଦେବୀ ପିତାଙ୍କ ଦ୍ୱାରା ଅପମାନିତା ହୋଇ ଏପରି ଶୋଚନୀୟ ଭାବରେ ପ୍ରାଣତ୍ୟାଗ କଲେ । ହାୟ ! ଶିବଦ୍ୱେଷୀ ବିଷ୍ଣୁ ବ୍ରହ୍ମଦ୍ରୋହୀ । ଆତ୍ମକୃତ ଅପରାଧରେ ସେ ନିଜର ନିଷ୍ପାପିନୀ କନ୍ୟା ସତୀ ପ୍ରାଣଘାତିନୀ ହେବାକୁ ଯାଉଅଛନ୍ତି ଜାଣି ସୁଦ୍ଧା ବାରଣ ପର୍ଯ୍ୟନ୍ତ କଲେ ନାହିଁ । ହାୟ ! ଏହି ଦକ୍ଷ କେବଳ ନିର୍ମମ ନୁହେଁ, ବ୍ରହ୍ମଦ୍ରୋହୀ ମଧ୍ୟ । ଜୀବନକାଳରେ

ସେ ଅପଯଶଭାଗୀ ହେଲ, ମୃତ୍ୟୁ ପରେ ସେହିପରି ନରକବାସୀ ସେ ହେବ, ଏଥିରେ ସନ୍ଦେହ ନାହିଁ ।'

ପ୍ରଭୁପତ୍ନୀ ସତୀଙ୍କର ଏପରି ଶୋଚନୀୟ ପରିଣତି ଦର୍ଶନ କରି ସତୀଙ୍କୁ ଅନୁସରଣ କରି ଆସିଥିବା ଶିବଙ୍କର ଅନୁଚରମାନେ ଦକ୍ଷଙ୍କୁ ସଂହାର କରିବାକୁ ଉଦ୍ୟତ ହେଲେ । ମହର୍ଷି ଭୃଗୁ ଯଜ୍ଞସ୍ଥଳରେ ଉପସ୍ଥିତ ଥିଲେ । କ୍ରୋଧାନ୍ୱିତ ଶିବ-ଅନୁଚରଙ୍କ ହସ୍ତରୁ ଦକ୍ଷ ତଥା ଯଜ୍ଞକୁ ରକ୍ଷା କରିବା ନିମନ୍ତେ ଭୃଗୁ ସଙ୍ଗେ ସଙ୍ଗେ ବିନାଶ ଉପଯୋଗୀ ମନ୍ତ୍ର ଉଚ୍ଚାରଣ କରି ଦକ୍ଷିଣାଗ୍ନିରେ ସଙ୍ଗେ ସଙ୍ଗେ ଆହୁତି ପ୍ରଦାନ କଲେ; ଫଳରେ ଆହୂତି ପ୍ରଦତ୍ତ ହେବାମାତ୍ରେ ଯଜ୍ଞ-ଅଗ୍ନିରୁ ଋଭୁ ପ୍ରମୁଖ ହଜାର ହଜାର ଦେବଦୂତ ଉତ୍‌ଥିତ ହୋଇ ଜ୍ୱଳନ୍ତ କାଷ୍ଠ ଖଣ୍ଡଦ୍ୱାରା ଶିବଙ୍କର ଅନୁଚରମାନଙ୍କୁ ଆକ୍ରମଣ କଲେ । ସେହି ଦେବଦୂତଙ୍କ ସହିତ ଶିବଙ୍କ ଅନୁଚରମାନଙ୍କର ତୁମୁଳ ସଂଗ୍ରାମ ସେଠାରେ ଅନୁଷ୍ଠିତ ହେଲା ।

ଏହି ଘଟଣା ଦକ୍ଷପୁରୀରେ ଘଟୁଥିବା ବେଳେ ନାରଦ ପ୍ରମୁଖ ଦେବର୍ଷିଙ୍କ ମୁଖରୁ ଭଗବାନ ଶିବ ଦକ୍ଷଙ୍କ ଦ୍ୱାରା ଅପମାନିତା ସତୀଙ୍କର ଶୋଚନୀୟ ଦେହତ୍ୟାଗ ଓ ଯଜ୍ଞୋଦ୍‌ଭବ ଦେବଦୂତମାନଙ୍କ ସହ ନିଜ ଅନୁଚରଙ୍କର ସଂଗ୍ରାମ କଥା ଶୁଣିବାକୁ ପାଇଲେ । ତାହା ଶୁଣି ଶିବଙ୍କର କ୍ରୋଧର ସୀମା ରହିଲା ନାହିଁ । କ୍ରୋଧ ସ୍ପର୍ଶରେ ଶିବଙ୍କର ମୂର୍ତ୍ତି ଅତି ଭୟାନକ ହୋଇଉଠିଲା । ସେ ଭୀଷଣ ଗର୍ଜନ ଓ ଅଟ୍ଟହାସ୍ୟ କରି ନିଜର ମସ୍ତକର ଜଟାରୁ କେଶ ଉତ୍ପାଟନ କରିବାକୁ ଲାଗିଲେ । ଶିବଙ୍କର ସେହି ମସ୍ତକ ଉତ୍ପାଟିତ କେଶରୁ ମହାକାୟ ବୀରଭଦ୍ର ନାମକ ଏକ ଦିବ୍ୟ ବୀରପୁରୁଷ ଜାତ ହେଲା । ସେହି ବୀର ପୁରୁଷର ଶରୀର ଅତ୍ୟନ୍ତ ଦୀର୍ଘ ଓ ଭୀଷଣ ଥିଲା, ତାର ସହସ୍ର ହସ୍ତ ଥିଲା । ସେହି ହସ୍ତଗୁଡ଼ିକରେ ସେ ବିଭିନ୍ନ ଅସ୍ତ୍ର ଧାରଣ କରିଥିଲା । ଜଟାରୁ ବୀର ପୁରୁଷ ସୃଷ୍ଟି ହେବା ମାତ୍ରେ ତାକୁ ଶିବ ଆଦେଶ ଦେଇ କହିଲେ; କାଳ ବିଳମ୍ବ ନକରି ଦକ୍ଷପୁରୀରେ ଯୁଦ୍ଧ କରୁଥିବା ମୋର ଅନୁଚରମାନଙ୍କ ନେତୃତ୍ୱ ନିଅ ଏବଂ ଅବିଳମ୍ବେ ଯଜ୍ଞକୁ ନଷ୍ଟ କରିବା ସଙ୍ଗେ ସଙ୍ଗେ ଦକ୍ଷକୁ ବିନାଶ କର ।'

ଶିବଙ୍କଠାରୁ ଆଦେଶ ପାଇବା ମାତ୍ରେ ବୀରଭଦ୍ର ଏକ ଭୟାନକ ରୂପ ଧାରଣ କରି ଦକ୍ଷପୁରୀ ଉଦ୍ଦେଶ୍ୟରେ ଯାତ୍ରା କରି ସେଠାରେ ଶିବଙ୍କ

ଅନୁଚରବର୍ଗଙ୍କ ସହିତ ମିଳିତ ହେଲ । ବୀରଭଦ୍ରର ପରାକ୍ରମ ଏପରି ପ୍ରବଳ ଥିଲା ଯେ, କ୍ଷଣକ ମଧ୍ୟରେ ଦକ୍ଷଙ୍କର ଯଜ୍ଞକୁ ରକ୍ଷା କରିବା ନିମନ୍ତେ ଯଜ୍ଞକୁଣ୍ଡରୁ ଜାତ ହୋଇଥିବା ଦେବଦୂତମାନେ ବୀରଭଦ୍ର ହସ୍ତରେ ପରାସ୍ତ ହେଲେ । ବୀରଭଦ୍ରଙ୍କ ନେତୃତ୍ୱରେ ଶିବ ଅନୁଚରମାନେ ସମସ୍ତ ଯଜ୍ଞକୁ ଛିନ୍ନ ଭିନ୍ନ କରିଦେଲେ ଓ ସମବେତ ଅତିଥିମାନଙ୍କୁ ଯଜ୍ଞ-ସ୍ଥାନରୁ ବିତାଡ଼ିତ କରି ମହର୍ଷି ଭୃଗୁଙ୍କ ସହ ଦକ୍ଷଙ୍କର ହସ୍ତପଦକୁ ବନ୍ଧନ କଲେ; ମହର୍ଷି ଭୃଗୁ ହସ୍ତରେ ସ୍ରୁବ ଧାରଣ କରି ଯଜ୍ଞକାର୍ଯ୍ୟ ସମ୍ପନ୍ନ କରୁଥିଲେ; ବୀରଭଦ୍ର ତାଙ୍କର ହସ୍ତପଦକୁ ବନ୍ଧନ କରି ତାଙ୍କ ମୁଖରୁ ଶ୍ମଶ୍ରୁକୁ ଉତ୍ପାଟନ କଲେ; କାରଣ ଦକ୍ଷ ଶିବଙ୍କର ନିନ୍ଦା କରୁଥିବା ସମୟରେ ଭୃଗୁ ନିଜର ଶ୍ମଶ୍ରୁ ଦେଖାଇ ଶିବଙ୍କୁ ଉପହାସ କରୁଥିଲେ । ବୀରଭଦ୍ର ଦକ୍ଷଙ୍କର ମସ୍ତକକୁ ତୀକ୍ଷ୍ଣ ହସ୍ତରେ ଛେଦନ କରି ଯଜ୍ଞର ଅନଳରେ ନିକ୍ଷେପ କଲେ । ଯଜ୍ଞକୁ ସମ୍ପୂର୍ଣ୍ଣରୂପେ ନଷ୍ଟ ଭ୍ରଷ୍ଟ କରି ଶିବଙ୍କର ଅନୁଚରବର୍ଗଙ୍କ ସହିତ ବୀରଭଦ୍ର ଶିବଙ୍କର ଆବାସସ୍ଥଳୀ କୈଳାସକୁ ପ୍ରତ୍ୟାବର୍ତ୍ତନ କଲେ ।

ଦକ୍ଷଙ୍କର ଯଜ୍ଞସ୍ଥାନରୁ ଶିବ ଅନୁଚରଙ୍କ ଦ୍ୱାରା ଆକ୍ରାନ୍ତ ଓ ବିତାଡ଼ିତ ହୋଇ ଦେବତାମାନେ ଦକ୍ଷପୁରୀରୁ ପଳାୟନ କରି ଭଗବାନ ବ୍ରହ୍ମାଙ୍କ ନିକଟରେ ଉପସ୍ଥିତ ହୋଇ ସମସ୍ତ ବୃତ୍ତାନ୍ତ ନିବେଦନ କଲେ । ଦକ୍ଷପୁରୀରେ ଏପରି ଘଟଣା ଘଟିବ ବୋଲି ବ୍ରହ୍ମା ଓ ବିଷ୍ଣୁ ପୂର୍ବରୁ ଜାଣିଥିଲେ, ସେଥିପାଇଁ ସେମାନେ ଦକ୍ଷଙ୍କର ଯଜ୍ଞକୁ ଯାଇନଥିଲେ । ଦେବତାମାନଙ୍କର ନିବେଦନ ଶୁଣି ବ୍ରହ୍ମା କହିଲେ, ତେଜସ୍ୱୀ ବ୍ୟକ୍ତିଙ୍କ ପ୍ରତି କୌଣସି ଅନ୍ୟାୟ କଲେ ଅନ୍ୟାୟକାରୀଙ୍କର ଘୋର ଅମଙ୍ଗଳ ହୋଇଥାଏ । ଭଗବାନ ଶଙ୍କର ଯଜ୍ଞର ଅଂଶଭାଗୀ, ତାଙ୍କର ନ୍ୟାଯ୍ୟ ଭାଗରୁ ତାଙ୍କୁ ତୁମ୍ଭେମାନେ ବଞ୍ଚିତ କରି ଅମାର୍ଜନୀୟ ଅପରାଧ କରିଅଛ । କଟୁବାକ୍ୟ ପ୍ରୟୋଗ ଦ୍ୱାରା ଶିବଙ୍କର ହୃଦୟକୁ ଆଘାତ କରାଯାଇଅଛି । ତା'ଛଡ଼ା ତାଙ୍କ ପ୍ରିୟତମା ସତୀଙ୍କର ମଧ୍ୟ ଶୋଚନୀୟ ମୃତ୍ୟୁ ଘଟିଗଲା । ଏପରି ପରିସ୍ଥିତିରେ ଶିବ କ୍ରୋଧାନ୍ୱିତ ହେବା ଅସ୍ୱାଭାବିକ ନୁହେଁ । ତେଣୁ ଯେକୌଣସି ମତେ ଶିବଙ୍କୁ ସନ୍ତୁଷ୍ଟ କରି ତାଙ୍କର କ୍ରୋଧକୁ ଶାନ୍ତ କରି ଏବଂ ନିଜନିଜର ଗର୍ହିତ ଆଚରଣ ପାଇଁ ତାଙ୍କ ନିକଟରୁ କ୍ଷମା ପ୍ରାର୍ଥନା କର । ଏହାଛଡ଼ା ଦୁର୍ଗତିରୁ ପରିତ୍ରାଣ ଲାଭ କରିବାର ଅନ୍ୟ ଉପାୟ ନାହିଁ ।"

ବ୍ରହ୍ମାଙ୍କ ନିକଟରୁ ଏହିପରି ଉପଦେଶ ଲାଭ କରି ଦେବତା-ମାନେ ଶିବଙ୍କ ଉଦ୍ଦେଶ୍ୟରେ ସ୍ତୁତି କଲେ । ଦେବତାମାନଙ୍କର ସେହି ସ୍ତୁତିରେ ବ୍ରହ୍ମା ମଧ୍ୟ ଯୋଗ ଦେଇଥିଲେ । ଦେବତାମାନଙ୍କର ସ୍ତବରେ ସନ୍ତୁଷ୍ଟ ହୋଇ ଶିବ ପ୍ରସନ୍ନ ହେଲେ ଏବଂ କହିଲେ, 'ଭଗବାନ ବ୍ରହ୍ମା, ଅସାଧୁ ବ୍ୟକ୍ତିମାନଙ୍କୁ ଉପଯୁକ୍ତ ଶାସ୍ତି ପ୍ରଦାନ କରାଯିବା ଉଚିତ, ସେହି ଜନଶିକ୍ଷା ନିମନ୍ତେ ଦକ୍ଷ ଯଜ୍ଞ ସମ୍ପର୍କରେ ଏପରି କାର୍ଯ୍ୟ ମୋତେ ବିଧାନ କରିବାକୁ ପଡ଼ିଛି । ଦକ୍ଷଙ୍କର ମସ୍ତକ ଛିନ୍ନ ଓ ଅଗ୍ନିରେ ନିକ୍ଷିପ୍ତ ହୋଇଥିବାରୁ, ତାଙ୍କର ଶରୀରରେ ଛାଗଳ ମସ୍ତକ ସଂଯୁକ୍ତ କର; ସେ ମୋ ପ୍ରସାଦରୁ ଅଚିରେ ଜୀବିତ ହେବେ । ମହର୍ଷି ଭୃଗୁଙ୍କର ମସ୍ତକରେ ଛାଗଳ ଶ୍ମଶ୍ରୁ ଜାତ ହେବ । ଅନ୍ୟ ଯେଉଁମାନେ ଆହତ ହୋଇଅଛନ୍ତି ସେମାନେ ମଧ୍ୟ ଅଚିରେ ମୋ ପ୍ରସାଦରୁ ନିରାମୟ ହେବେ ।'

ଶିବଙ୍କୁ ଏହିପରି ଭାବରେ ପ୍ରସନ୍ନ କରି ଓ ତାଙ୍କୁ ପ୍ରଣାମ କରି ଭଗବାନ ବ୍ରହ୍ମାଙ୍କ ସହ ଦେବତା ଓ ଋଷିମାନେ ଦକ୍ଷଙ୍କର ଯଜ୍ଞସ୍ଥାନକୁ ଗମନ କଲେ । ଦକ୍ଷଙ୍କର ମସ୍ତକବିହୀନ ମୃତ ଶରୀରରେ ଛାଗଳ ମସ୍ତକ ସଂଯୋଗ କରାଗଲା ଓ ଦକ୍ଷଙ୍କ ପ୍ରତି ଭଗବାନ ଶିବ କୃପାଦୃଷ୍ଟି ନିକ୍ଷେପ କରିବା ମାତ୍ରେ ସେ ପୁନର୍ଜୀବିତ ହେଲେ ।

ଦକ୍ଷ ଜୀବନ ଲାଭ କରି ଶିବଙ୍କ ଉଦ୍ଦେଶ୍ୟରେ ସ୍ତୁତି କରି କହିଲେ, 'ହେ ପରମ ପ୍ରଭୁ, ଆପଣଙ୍କ ପ୍ରତି ମୁଁ କଟୁଭାଷା ପ୍ରୟୋଗ କରିଥିଲେ ମଧ୍ୟ ଆପଣ ଏପରି ଦଣ୍ଡବିଧାନ କରି ମୋ ପ୍ରତି ଅଶେଷ ଅନୁଗ୍ରହ ପ୍ରକାଶ କରିଅଛନ୍ତି । ଆପଣ ବ୍ରହ୍ମରୂପରେ ଏହି ଜଗତକୁ ସୃଷ୍ଟି କରିଅଛନ୍ତି । ଆପଣଙ୍କର ତତ୍ତ୍ୱ ସମ୍ପର୍କରେ ମୁଁ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିବାରୁ ଆପଣଙ୍କ ପ୍ରତି ଭ୍ରମ ଧାରଣା ପୋଷଣ କରି ଯଥେଷ୍ଟ ଦୁର୍ବ୍ୟବହାର କରିଅଛି । ଆପଣ ସେ ସବୁ ଭୁଲି ଯାଇ ମୋ ପରି ଅଧମ ପ୍ରତି ଦୟାପରବଶ ହୋଇଅଛନ୍ତି ଏବଂ ତଦ୍ଦ୍ୱାରା ମୋତେ ଆପଣଙ୍କ ନିକଟରେ ଚିରଋଣୀ କରିଅଛନ୍ତି । ଆପଣ ଦୟାମୟ । ମୋର ସମସ୍ତ ଅପରାଧ ପାଇଁ ମୋତେ କ୍ଷମା କରନ୍ତୁ ।"

ଶିବଙ୍କୁ ଏହିପରି ଭାବରେ ପ୍ରସନ୍ନ କରି ଓ ଶିବଙ୍କ ଆଦେଶ ଅନୁସାରେ ଦକ୍ଷ ସେହି ଅସମାପ୍ତ ଯଜ୍ଞକୁ ପୁନର୍ବାର ଆରମ୍ଭ କରି ଯଥାରୀତି ସୁସମ୍ପନ୍ନ କରିଥିଲେ ।

---

## ଭକ୍ତ ଧ୍ରୁବ

ସ୍ୱାୟମ୍ଭୁବ ମନୁଙ୍କର ପତ୍ନୀ ଶତରୂପାଙ୍କ ଗର୍ଭରୁ ଯେଉଁ ଦୁଇଟି ପୁତ୍ର ଜାତ ହୋଇଥିଲେ, ସେମାନଙ୍କର ନାମ ଉତ୍ତାନପାଦ ଓ ପ୍ରିୟବ୍ରତ । ଏହି ଦୁଇ ପୁତ୍ର ବିଷ୍ଣୁଙ୍କ ଅଂଶରେ ଜାତ ହୋଇଥିବାରୁ ଜଗତର ସୁରକ୍ଷା କାର୍ଯ୍ୟରେ ନିଯୁକ୍ତ ଥିଲେ ।

ଉତ୍ତାନପାଦଙ୍କର ସୁନୀତି ଓ ସୁରୁଚି ନାମରେ ଦୁଇଟି ପତ୍ନୀ ଥିଲେ । ଉତ୍ତାନପାଦଙ୍କ ଔରସରେ ସୁନୀତିଙ୍କ ଗର୍ଭରୁ ଧ୍ରୁବ ଓ ସୁରୁଚିଙ୍କ ଗର୍ଭରୁ ଉତ୍ତମ ନାମରେ ଦୁଇଟି ପୁତ୍ର ଜାତ ହୋଇଥିଲେ । ଦୁଇ ପତ୍ନୀଙ୍କ ମଧ୍ୟରୁ ସୁରୁଚିଙ୍କୁ ଉତ୍ତାନପାଦ ବିଶେଷ ଭଲପାଉଥିଲେ ଏବଂ ସୁରୁଚିଙ୍କ କଥାରେ ଉତ୍ତାନପାଦ ପରିଚାଳିତ ହେଉଥିଲେ । ସ୍ୱାମୀଙ୍କ ଦ୍ୱାରା ଏକପ୍ରକାର ଅବହେଳିତ ହୋଇ ସୁନୀତି କାଳଯାପନ କରୁଥିଲେ । ଉତ୍ତମ ଓ ଧ୍ରୁବ ପ୍ରାୟ ସମବୟସ୍କ ଥିଲେ ।

ଦିନେ ରାଜା ଉତ୍ତାନପାଦ ସୁରୁଚିଙ୍କ ପୁତ୍ର ଉତ୍ତମକୁ କୋଳରେ ବସାଇ ସ୍ନେହ କରୁଅଛନ୍ତି, ଏହି ସମୟରେ ପାଞ୍ଚ ବର୍ଷ ବୟସର ଶିଶୁ ଧ୍ରୁବ ସେଠାରେ ପହଞ୍ଚି ପିତା ଉତ୍ତାନପାଦଙ୍କ କୋଳରେ ବସିବାକୁ ଚାହିଁଲେ, କିନ୍ତୁ ରାଜା ଉତ୍ତାନପାଦ ଧ୍ରୁବଙ୍କୁ କୋଳରେ ବସାଇଲେ ନାହିଁ କି ଗେଲ କଲେ ନାହିଁ । ରାଜାଙ୍କ ପାଖରେ ଗର୍ବିଣୀ ଓ ଈର୍ଷାକାତର ସୁରୁଚି ବସିଥିଲେ । ଧ୍ରୁବଙ୍କୁ ସମ୍ବୋଧନ କରି ସୁରୁଚି କହିଲେ, 'ଧ୍ରୁବ, ରାଜାଙ୍କ କୋଳରେ ବସିବାର ଏତେ ବଡ଼ ସୌଭାଗ୍ୟ ତୁ କାହୁଁ ପାଇବୁ ? ରାଜାଙ୍କ କୋଳରେ ବସିବା ବହୁ ପୁଣ୍ୟର କଥା; ତୋର ସେ ପୁଣ୍ୟବଳ ନାହିଁ । ତୋର ସେ ଭାଗ୍ୟ ଥିଲେ, ତୁ ମୋ ଗର୍ଭରୁ ଜାତ ହୋଇଥାନ୍ତୁ ଏବଂ ରାଜାଙ୍କ କୋଳରେ ବସିଥାନ୍ତୁ । ମୋ ଗର୍ଭରୁ ଯଦି ଜନ୍ମିବାକୁ ଇଚ୍ଛା କରୁ ଥାଉ, ତେବେ ତପସ୍ୟା କରି ଓ ଭଗବାନଙ୍କୁ ଆରାଧନା କରି

ପୁଣ୍ୟ ବଳ ଲଭକର; ତା'ପରେ ଯାଇ ରାଜାଙ୍କ କୋଳରେ ବସିବାକୁ ଇଚ୍ଛା କରିବୁ ।'

ବିମାତାଙ୍କର ସେହି କଥା ଶିଶୁ ଧ୍ରୁବଙ୍କ ମନରେ ଦାରୁଣ ଆଘାତ ଦେଲା । ଆଘାତପ୍ରାପ୍ତ ସର୍ପ ପରି ଦୀର୍ଘ ନିଃଶ୍ୱାସ ତ୍ୟାଗ କରିକରି ପିତା ଉତ୍ତାନପାଦଙ୍କୁ ଧ୍ରୁବ ଚାହିଁରହିଲେ ଏବଂ ଶେଷରେ ପିତାଙ୍କ ପାଖରୁ କୌଣସି ଆଦରପୂର୍ଣ୍ଣ କଥା ନ ଶୁଣି ରୋଦନ କରିକରି ଜନନୀ ସୁନୀତିଙ୍କ ନିକଟକୁ ଗଲେ । ପୁତ୍ରର ଅବସ୍ଥା ଦେଖି ସୁନୀତି ଧ୍ରୁବଙ୍କୁ କୋଳକୁ ନେଇ ଆଦର କଲେ । ଅନ୍ତଃପୁରବାସିମାନଙ୍କଠାରୁ ସମସ୍ତ କଥା ଶୁଣି ଦୁଃଖରେ ତାଙ୍କର ହୃଦୟ ଭାଙ୍ଗିପଡ଼ିଲା । ସେ ମଧ୍ୟ ନିଜର କ୍ରୋଧ ସମ୍ବରଣ କରି ପାରିଲେ ନାହିଁ । ରୋଦନ କରି କରି ସେ ପୁତ୍ରକୁ କହିଲେ, 'ବାବା, କାହାକୁ ଦୋଷ ଦେବା ? ଏ ସବୁ ଆମ ଭାଗ୍ୟର ଦୋଷ । ତୁ କାନ୍ଦନା । କାହାର ମନରେ ଦୁଃଖ ଦେବା ଉଚିତ ନୁହେଁ; କାରଣ ଅନ୍ୟର ମନରେ ଦୁଃଖ ଦେଲେ ପରେ ନିଜକୁ ସେହି ଦୁଃଖ ଭୋଗ କରିବାକୁ ପଡ଼ିଥାଏ । ବାବା, ସୁରୁଚି ଠିକ୍ କହିଛି । ମୁଁ ହତଭାଗିନୀ । ରାଜାଙ୍କ ହାତ ମୁଁ ଧରିଥିଲେ ମଧ୍ୟ ସେ ମୋତେ ଦାସୀଠାରୁ ହୀନ କରି ରଖିଅଛନ୍ତି । ମୋ ପରି ହତଭାଗିନୀର ଗର୍ଭରୁ ଜାତ ହୋଇ ଓ ମୋ ପରି ଚିରଦୁଃଖିନୀର ସ୍ତନ୍ୟରେ ଲାଳିତ ହୋଇ ତୁ' ବା ଏତେ ବଡ଼ ସୌଭାଗ୍ୟ କାହୁଁ ପାଇବୁ ! ବାବା, ସେ'ମା ଯାହା କହିଛି ସତ । ରାଜାସନରେ ବସିବା ଭାଗ୍ୟର କଥା । ରାଜାସନରେ ଯଦି ବସିବାକୁ ଚାହୁଁ, ତେବେ ଭଗବାନଙ୍କ ପାଦପଦ୍ମରେ ଏକାଗ୍ରଚିତ୍ତରେ ଲୟ ରଖ । ଭଗବାନଙ୍କ ଚରଣାରବିନ୍ଦରେ ଯେ ମନପ୍ରାଣ ଢାଳି ଦେଇଥାଏ, ତା'ର ସକଳ ମନୋବାଞ୍ଛା ଅଚିରେ ପୂର୍ଣ୍ଣ ହୁଏ । ଭଗବାନଙ୍କ ପାଦପଦ୍ମକୁ ଧ୍ୟାନ କରି ବ୍ରହ୍ମା ବ୍ରହ୍ମପଦ ଲାଭ କରିଅଛନ୍ତି । ତୋର ପିତାମହ ମନୁ ମଧ୍ୟ ଭଗବାନଙ୍କୁ ଆରାଧନା କରି ଦୁଷ୍ପ୍ରାପ୍ୟ ଅନନ୍ତ ସୁଖ ଲାଭ କରିଥିଲେ । ମୁକ୍ତିକାମୀ ସାଧୁମାନେ ଯାହାଙ୍କର ପାଦପଦ୍ମ ରୂପକ ମାର୍ଗ ଅନୁସରଣ କରିଥାନ୍ତି ସେହି ଭଗବାନଙ୍କ ଚିନ୍ତାକୁ ହୃଦୟରେ ସ୍ଥାନ ଦେଇ ତାଙ୍କୁହିଁ ଭଜନା କର । ବାବା, ସେହି ବ୍ରହ୍ମାଦିଦେବଗଣ ସେବିତ ଲକ୍ଷ୍ମୀପତି ଭଗବାନ ଶ୍ରୀହରି ହିଁ କେବଳ ତୋର ମନର ଦୁଃଖ ଦୂର କରିପାରିବେ ।'

ମା'ଙ୍କଠାରୁ ଏହିପରି କଥା ଶୁଣି ଶିଶୁ ଧ୍ରୁବ ଭଗବାନଙ୍କୁ ଅନ୍ୱେଷଣ କରି କରି ଗୃହ ତ୍ୟାଗ କଲେ । ବ୍ରହ୍ମାଙ୍କର ମାନସପୁତ୍ର ଦେବର୍ଷି ନାରଦ ଧ୍ୟାନ ବଳରେ କ୍ଷତ୍ରିୟ ଶିଶୁ ଧ୍ରୁବଙ୍କର ଅସୀମ ଧୈର୍ଯ୍ୟ ଓ ଗଭୀର ଅଭିମାନର କଥା ଅବଗତ ହୋଇ ଧ୍ରୁବଙ୍କ ପ୍ରତି ସଦୟ ହୋଇ ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ ।

ନାରଦ କହିଲେ, 'ବାବା ଧ୍ରୁବ, ତୁ ପିଲା ଲୋକ । ଏଟା ତୋର ଖେଳିବାର ସମୟ । ତୋ ମନରେ ପୁଣି ମାନ ଅଭିମାନ କ'ଣ ? ଘରକୁ ଫେରିଯାଇ ଖେଳରେ ମନ ଦେ । ବାବା ଧ୍ରୁବ, ଈଶ୍ୱରଙ୍କର ଆଶୀର୍ବାଦ ନ ପାଇଲେ କୌଣସି ଉଦ୍ୟମ ସଫଳ ହୁଏ ନାହିଁ । ତେଣୁ ଯାହା ଯେତେବେଳେ ମିଳୁଛି ସେଥିରେ ମନକୁ ସନ୍ତୁଷ୍ଟ ରଖିବା ବୁଦ୍ଧିମାନର କାର୍ଯ୍ୟ । ମା'ଙ୍କର କଥାନୁସାରେ ଯାହାଙ୍କୁ ଭଜନା ଓ ପ୍ରସନ୍ନ କରିବାକୁ ଗୃହଁ ଅଛୁ, ତାଙ୍କୁ ଲାଭ କରିବା ସହଜ କଥ ନୁହେଁ । କେତେ ଯୋଗୀ, କେତେ ଋଷି ବର୍ଷ ବର୍ଷ ଧରି କଠୋର ତପସ୍ୟା କରି ମଧ୍ୟ ଯାହାଙ୍କର ସନ୍ଧାନ ପାଇବାକୁ ସମର୍ଥ ହୋଇ ନାହାନ୍ତି, ତୁ ସାମାନ୍ୟ ଶିଶୁ ହୋଇ ସେହି ଭଗବାନ ଲାଭ କରିବାର ଅସାଧ୍ୟ କାର୍ଯ୍ୟରେ ମନ ବଳାଇଛୁ । ବାବା, ବରଂ ବଡ଼ ହେଲେ, ଏହା କରିବୁ । ବର୍ତ୍ତମାନ ଏହି କାର୍ଯ୍ୟରୁ ନିଜକୁ କ୍ଷାନ୍ତ କରି ଘରକୁ ଫେରିଯାଅ ।'

ନାରଦଙ୍କର ସେହି ହିତୋପଦେଶ ଅଭିମାନୀ ଧ୍ରୁବଙ୍କ ମନକୁ ସନ୍ତୁଷ୍ଟ କରିପାରିଲା ନାହିଁ । ଧ୍ରୁବ କହିଲେ, 'ହେ ବ୍ରହ୍ମର୍ଷି ! ମୋର ବିମାତା ସୁରୁଚିଙ୍କର ଦୁର୍ବାକ୍ୟ ମୋର କ୍ଷତ୍ରିୟ ସ୍ୱଭାବ ସମ୍ପନ୍ନ ଅଭିମାନୀ ଶିଶୁ ପ୍ରାଣକୁ ଦାରୁଣ ଦୁଃଖରେ ବ୍ୟଥିତ କରିଥିବାରୁ ମୁଁ ଆପଣଙ୍କର ହିତୋପଦେଶକୁ ହୃଦୟରେ ଗ୍ରହଣ କରିପାରୁ ନାହିଁ । ମୋର ପିତୃ ପିତାମହ ତଥା ଅନ୍ୟମାନେ ଯେଉଁ ପଦ କେବେ ଲାଭକରି ନାହାନ୍ତି, ମୁଁ ସେହି ତ୍ରିଭୁବନ ଦୁର୍ଲ୍ଲଭ ଉତ୍କୃଷ୍ଟ ପଦ ଲାଭ କରିବା ପାଇଁ ଅଭିଳାଷୀ । ଆପଣ ବ୍ରହ୍ମାଙ୍କର ପୁତ୍ର ଓ ଜଗତର ମଙ୍ଗଳ ପାଇଁ ସର୍ବଦା ବୀଣା ବାଦନ କରି ତ୍ରିଭୁବନ ପରିଭ୍ରମଣ କରିଥାନ୍ତି । ତେଣୁ ଅନୁଗ୍ରହ ପୂର୍ବକ ମୋର ମନୋବାଞ୍ଛା ଯେପରି ପୂର୍ଣ୍ଣ ହେବ, ତା'ର ଉପଯୋଗୀ ପଥ ସମ୍ପର୍କରେ ଦୟାକରି ମୋତେ ପରାମର୍ଶ ପ୍ରଦାନ କରନ୍ତୁ ।'

ଶିଶୁ ଧ୍ରୁବଙ୍କର କଥା ନାରଦଙ୍କୁ ପ୍ରୀତ କଲା ।

ସେ ଦୟାପରବଶ ହୋଇ ଧ୍ରୁବଙ୍କୁ କହିଲେ, 'ବାବା, ତୋର ଜନନୀ ସୁନୀତି ଯାହା ତୋତେ କହିଅଛନ୍ତି, ତାହା ହିଁ ଅଭୀଷ୍ଟ ସିଦ୍ଧିର ପ୍ରକୃଷ୍ଟ ପଥ । ଏକାଗ୍ରଚିତ୍ତ ହୋଇ ତୁ ଭଗବାନ ବାସୁଦେବଙ୍କୁ ସ୍ମରଣ କର । ବାବା, ତୁ ଯମୁନା ନଦୀ ନିକଟସ୍ଥ ପରମ ପବିତ୍ର ମଧୁବନକୁ ଯାତ୍ରା କର । ତାହା ହିଁ ଭଗବାନଙ୍କର ନିତ୍ୟ ଆବାସ ସ୍ଥଳୀ । କାଳିନ୍ଦୀର ପବିତ୍ର ଜଳରେ ତ୍ରିସନ୍ଧ୍ୟା ସ୍ନାନ କରି ଦେବନମସ୍କାରାଦି କରିବୁ, କୁଶ ଓ ମୃତ୍ତିକାଦି ଦ୍ୱାରା ଆସନ ପ୍ରସ୍ତୁତ କରି ତହିଁରେ ଉପବେଶନ କରିବୁ, ଏବଂ ରେଚକ, ପୂରକ, କୁମ୍ଭକ ଯୁକ୍ତ ହୋଇ ପ୍ରାଣାୟାମ ଆଚରଣ କରି ମନ, ପ୍ରାଣ ଓ ଇନ୍ଦ୍ରିୟର ଚାଞ୍ଚଲ୍ୟ ଦୂରକରି ଓ ଏକାଗ୍ରଚିତ୍ତ ହୋଇ ଭଗବାନଙ୍କୁ ଧ୍ୟାନ କରିବୁ । ଭକ୍ତମାନଙ୍କ ପ୍ରତି ଭଗବାନ ଅତ୍ୟନ୍ତ ସଦୟ ଓ ସର୍ବଦା ସେ ଭକ୍ତମାନଙ୍କ ପ୍ରତି ଅନୁଗ୍ରହ ପ୍ରକାଶ କରିଥାନ୍ତି, ସେ ପରମସୁନ୍ଦର, ଭକ୍ତପ୍ରିୟ, କରୁଣାସାଗର, ଶରଣାଗତବତ୍ସଳ ଏବଂ ପ୍ରଣତଜନର ପରମ ଆଶ୍ରୟଦାତା । ସେ ଘନଶ୍ୟାମ, ଶ୍ରୀବତ୍ସଲାଞ୍ଛିତ, ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ, ଚତୁର୍ଭୁଜ, ବନମାଳୀ ପରିଶୋଭିତ, ତାଙ୍କର ମସ୍ତକରେ କିରୀଟ, କର୍ଣ୍ଣରେ କୁଣ୍ଡଳ, ଭୁଜରେ କେୟୂର ଓ ବଳୟ, ଗଳାରେ କୌସ୍ତୁଭମଣି, ନିତମ୍ବରେ ମେଖଳା, ଚରଣରେ ନୂପୁର ଏବଂ ଶ୍ରୀ ଅଙ୍ଗରେ ପୀତବସନ ଶୋଭିତ ହୋଇଥାଏ । ଭଗବାନଙ୍କର ଏହି ପରମ କମନୀୟ ରୂପକୁ ମନେ ମନେ ଧାରଣ କରି 'ଓଁ ନମୋ ଭଗବତେ ବାସୁଦେବାୟ' ମନ୍ତ୍ରକୁ ଜପ କରିବୁ ଓ ଭଗବାନଙ୍କୁ ବିଭିନ୍ନ ପୂଜା ଉପଯୋଗୀ ସାମଗ୍ରୀ ଦ୍ୱାରା ପୂଜାର୍ଚ୍ଚନା କରିବୁ । ପରମଭକ୍ତି ସହକାରେ ଏକାଗ୍ରଚିତ୍ତରେ ଏପରି ପୂଜା, ଧ୍ୟାନ, କଲେ ଭଗବାନଙ୍କର କରୁଣା ଲାଭ କରିବାକୁ ତୁ ବାବା ସମର୍ଥ ହେବୁ ।'

ଦେବର୍ଷି ଏହିପରି କହି ନୀରବ ହେବାରୁ ଶିଶୁ ଧ୍ରୁବ ତାଙ୍କୁ ପ୍ରଣାମ ଓ ପ୍ରଦକ୍ଷିଣ କରି ଯମୁନା ନଦୀ କୂଳସ୍ଥ ମଧୁବନ ଉଦ୍ଦେଶ୍ୟରେ ଯାତ୍ରା କଲେ ।

ଧ୍ରୁବ ମଧୁବନ ଉଦ୍ଦେଶ୍ୟରେ ଗିବା ପରେ ଦେବର୍ଷି ନାରଦ ରାଜା ଉତ୍ତାନପାଦଙ୍କ ରାଜପ୍ରାସାଦକୁ ଗଲେ ଏବଂ ରାଜାଙ୍କୁ ଦୁଃଖିତ ଥିବାର ଦେଖି ପଚାରିଲେ, 'ମହାରାଜ, ଆପଣ ବିଶେଷ ଚିନ୍ତିତ ଥିବାପରି ଦେଖା ଯାଉଅଛନ୍ତି । ଆପଣଙ୍କର ମୁଖ ମଧ୍ୟ ଅତ୍ୟନ୍ତ ମ୍ଳାନ ପଡ଼ିଯାଇଅଛି ।

ଧର୍ମ, ଅର୍ଥ ଏବଂ କାମ ସମ୍ପର୍କରେ ଆପଣଙ୍କର କୌଣସି ବିଘ୍ନ ଘଟିନାହିଁ ତ ?'

ରାଜା ଉତ୍ତାନପାଦ କହିଲେ, 'ଦେବର୍ଷି, ଅତ୍ୟନ୍ତ ନିଷ୍ଠୁର-ହୃଦୟା ସ୍ତ୍ରୀ ଦ୍ୱାରା ବଶୀଭୂତ ହୋଇ ନିରପରାଧ ପଞ୍ଚବର୍ଷବୟସ୍କ ଶିଶୁ ପୁତ୍ର ଧ୍ରୁବ ଆଜି ଅସହାୟ । କ୍ଷୁଧାତୃଷାରେ ସତତ ଆକ୍ରାନ୍ତ ହୋଇ ସେ ଯେତେବେଳେ ଅରଣ୍ୟରେ ଘୂରାଇ ପଡ଼ିଥିବ, ବନର ହିଂସ୍ର ଜନ୍ତୁମାନେ ତାକୁ ନିଶ୍ଚୟ ଭକ୍ଷଣ କରିଥିବେ । ହାୟ, ମୋ ପରି ସ୍ତ୍ରୈଣ କିଏ ଅଛି ? ହାୟ ମୁଁ କି ନିଷ୍ଠୁର ! ନିଷ୍ପାପ ଶିଶୁ ପିତାର କୋଳରେ ବସିବାକୁ ମାତ୍ର ଚାହୁଁଥିଲା । ହାୟ, ମୁଁ ଏପରି ପାଷଣ୍ଡ ଯେ ତାକୁ ଟିକେ ଆଦର ପର୍ଯ୍ୟନ୍ତ କଲି ନାହିଁ । ମୋତେ ଶତ ଧିକ ।'

ରାଜା ଉତ୍ତାନପାଦଙ୍କ ମୁଖରୁ ଅନୁତାପମୂଳକ ବାକ୍ୟ ଶ୍ରବଣ କରି ଦେବର୍ଷି ନାରଦ କହିଲେ, 'ପ୍ରଜାବତ୍ସଳ ରାଜା, ଧ୍ରୁବ ପାଇଁ ଦୁଃଖ କରନ୍ତୁ ନାହିଁ । ଆପଣଙ୍କ ପୁତ୍ରକୁ ଦେବତାମାନେ ସତତ ରକ୍ଷା କରୁ-ଅଛନ୍ତି । ଶିଶୁ ଧ୍ରୁବର ଯଶରେ ଦିନେ ସମଗ୍ର ଜଗତ ପରିବ୍ୟାପ୍ତ ହେବ । ଅସାଧ କାର୍ଯ୍ୟ ସମ୍ପନ୍ନ କରି ଧ୍ରୁବ ଆପଣଙ୍କ କୀର୍ତ୍ତି ବିସ୍ତାର କରିବ । ସେ ସଫଳକାମ ହୋଇ ଅଚିରେ ଏଠାକୁ ପ୍ରତ୍ୟାବର୍ତ୍ତନ କରିବ, ତେଣୁ ଆପଣ ତା'ପାଇଁ ଦୁଃଖ କରନ୍ତୁ ନାହିଁ ।

ଏଣେ ଧ୍ରୁବ ମଧୁବନରେ ପହଞ୍ଚି କାଳିନ୍ଦୀ ନଦୀରେ ସ୍ନାନ କରି ଓ ଉପବାସ ବ୍ରତ ଆଚରଣ କରି ନାରଦଙ୍କ ଉପଦେଶାନୁସାରେ ଭଗବାନଙ୍କ ଉଦ୍ଦେଶ୍ୟରେ ଧ୍ୟାନ ଓ ଆରାଧନା କରିବାକୁ ଲାଗିଲେ । ଶରୀର ରକ୍ଷା ନିମନ୍ତେ ଧ୍ରୁବ ପ୍ରଥମ ମାସ ମାତ୍ର ବରକୋଳି, ଦ୍ୱିତୀୟ ମାସରେ ତୃଣ ଓ ପତ୍ରାଦି, ପରେ ମାତ୍ର ଜଳ ଏବଂ ଅବଶେଷରେ କେବଳ ବାୟୁ ମାତ୍ର ସେବନ କରି କଠୋର ତପସ୍ୟା ଆଚରଣ କଲେ । ଧ୍ରୁବଙ୍କର ତପସ୍ୟା ଏପରି ଶରୀରକ୍ଳେଶକର ଓ କଠୋର ଥିଲା ଯେ, ତା'ର ପ୍ରଭାବରେ ସଚରାଚର କମ୍ପିଉଠିଲା । ଧ୍ରୁବ ନିଜର ଶ୍ୱାସକୁ ରୁଦ୍ଧ କରି ତପସ୍ୟା କଲାବେଳେ ଅଖିଳ ଜଗତର ଅଧିବାସୀଙ୍କର ଯେପରି ଶ୍ୱାସରୁଦ୍ଧ ହେଉଅଛି ବୋଲି ସର୍ବତ୍ର ଅନୁଭୂତ ହେଲା । ଶିଶୁ ଧ୍ରୁବଙ୍କର ସେହି ତପସ୍ୟାର ଅପୂର୍ବ କଠୋରତାରେ ବିଚଳିତ ହୋଇ ଦେବତା-ମାନେ ଭଗବାନଙ୍କ ନିକଟରେ ଉପସ୍ଥିତ ହୋଇ ପ୍ରାର୍ଥନା କଲେ; ପ୍ରଭୁ,

ହେ ଶରଣାଗତବତ୍ସଳ, ଏପରି କଠୋର ତପସ୍ୟା କେବେ ଦୃଷ୍ଟିଗୋଚର ହୋଇ ନଥିଲା । ଧ୍ରୁବଙ୍କର ତପସ୍ୟାର ପ୍ରଭାବକୁ ଆମ୍ଭେମାନେ ସହ୍ୟ କରିବାକୁ ଅସମର୍ଥ । ଆମକୁ ରକ୍ଷା କରନ୍ତୁ ।'

ଭଗବାନ କହିଲେ, 'ଦେବଗଣ, ଯେଉଁ ଶିଶୁର ତପସ୍ୟା ଫଳରେ ତୁମ୍ଭେମାନେ ବିଚଳିତ ହେଉଅଛ, ମୁଁ ତାକୁ ତପସ୍ୟାରୁ କ୍ଷାନ୍ତ କରୁଅଛି । ଶିଶୁ ଧ୍ରୁବ ଏକାଗ୍ରଚିତ୍ତରେ ତପସ୍ୟାଚରଣ କରି ମୋ ସହ ମିଳିତ ହୋଇଅଛି । ତୁମ୍ଭେମାନେ ଭୟ କରନାହିଁ ।'

ଭଗବାନଙ୍କ ଆଶ୍ୱାସନାରେ ଦେବତାମାନେ ଆଶ୍ୱସ୍ତ ହୋଇ ତାଙ୍କୁ ପ୍ରଣାମ କରି ସ୍ୱ ସ୍ୱ ସ୍ଥାନକୁ ପ୍ରତ୍ୟାଗମନ କଲେ । ଧ୍ରୁବଙ୍କୁ ଦର୍ଶନ ଦେବା ନିମନ୍ତେ ଭଗବାନ ସ୍ୱୟଂ ଗରୁଡ଼ ପୃଷ୍ଠରେ ଆରୋହଣ କରି ମଧୁବନ ଉଦ୍ଦେଶ୍ୟରେ ଯାତ୍ରା କଲେ ।

ଦୀର୍ଘ ଛ'ମାସ କାଳ କଠୋର ତପସ୍ୟା ଆଚରଣ କରି ଧ୍ରୁବ ନିଜର ହୃଦୟରେ ଭଗବାନଙ୍କର ଚିତ୍ତବିମୋହନ ରୂପକୁ ଧାରଣା କରି ଧ୍ୟାନରତ ଥାଆନ୍ତି । ହଠାତ୍ ତାଙ୍କର ଧ୍ୟାନ ଦୃଷ୍ଟିରୁ ଭଗବାନଙ୍କର ସେହି ସୁନ୍ଦର ରୂପ ତିରୋହିତ ହୋଇଗଲା । ଧ୍ରୁବ ବିଚଳିତ ହୋଇ ନିଜର ନୟନ ଉନ୍ମୀଳିତ କରି ଚାହିଁଲେ । ଏ କ'ଣ ? ଅନ୍ତର ମଧ୍ୟରେ ସେ ଯେଉଁ ଚିତ୍ତବିମୋହନ ରୂପକୁ ଧ୍ୟାନ କରୁଥିଲେ, ସେହି ପ୍ରୀତିଦାୟକ ରୂପ ଯେ ତାଙ୍କ ସମ୍ମୁଖରେ ବିଦ୍ୟମାନ । ଏ କ'ଣ ସତ୍ୟ ! ତାଙ୍କ ଦୃଷ୍ଟି ସମ୍ମୁଖରେ ଭଗବାନ ଯେ ବିଦ୍ୟମାନ, ଏହା ସେ ସ୍ପଷ୍ଟ ବୁଝିପାରିଲେ ।

ସ୍ୱୟଂ ଭଗବାନଙ୍କୁ ସମ୍ମୁଖରେ ଦଣ୍ଡାୟମାନ ହୋଇଥିବାର ଦେଖି ଧ୍ରୁବଙ୍କର ମନ ଆନନ୍ଦବିହ୍ୱଳ ହୋଇଗଲା । ସେ ଭଗବାନଙ୍କୁ ଭୂମିଷ୍ଠ ପ୍ରଣାମ ଜଣାଇଲେ । ଭଗବାନଙ୍କୁ ସ୍ତୁତି କରିବା ଉଦ୍ଦେଶ୍ୟରେ ଧ୍ରୁବ କୃତାଞ୍ଜଳିପୁଟରେ ଦଣ୍ଡାୟମାନ ହେଲେ; କିନ୍ତୁ ଭଗବାନଙ୍କ ଗୁଣ ବର୍ଣ୍ଣନା କରିବାକୁ ଉପଯୁକ୍ତ ଭାବ ଓ ଭାଷା ଧ୍ରୁବଙ୍କୁ ଜଣା ନ ଥିବାରୁ, ସେ କିଛି କହିପାରିଲେ ନାହିଁ, କେବଳ ନୀରବ ରହିଲେ । ଧ୍ରୁବଙ୍କର ମନକଥା ଭଗବାନଙ୍କୁ ଅଛପା ରହିଲା ନାହିଁ । ସେ ସ୍ନେହରେ ଧ୍ରୁବଙ୍କର ମସ୍ତକରେ ନିଜର ବେଦମୟ ଶଙ୍ଖକୁ ଛୁଆଇଁ ଦେଲେ । ଦିବ୍ୟଶଙ୍ଖର ସ୍ପର୍ଶ ଲାଭ କରିବା ମାତ୍ରେ ଧ୍ରୁବଙ୍କର ଭଗବତ୍ ବିଷୟକ ଅପୂର୍ବ

ବାକ୍‌ଶକ୍ତି ସଙ୍ଗେ ସଙ୍ଗେ ସମ୍ପୂର୍ଣ୍ଣ ହେଲ ସେ ବ୍ରହ୍ମତତ୍ତ୍ୱ ଓ ଜୀବତତ୍ତ୍ୱ ନିର୍ଣ୍ଣୟ କରିବାର ସାମର୍ଥ୍ୟ ଲାଭ କଲେ ।

ଧ୍ରୁବ ଧୀରେ ଧୀରେ ଭଗବାନଙ୍କର ବେଦ୍ୱିଶ୍ରୁତ କୀର୍ତ୍ତିମାନଙ୍କ ସ୍ତବ ଆକାରରେ ଗାନ କରିବାକୁ ଲାଗିଲେ, 'ହେ ପ୍ରଭୁ, ଆପଣ ମୋର ଅନ୍ତଃକରଣରେ ପ୍ରବେଶ କରି ନିଜର ଦିବ୍ୟତେଜରେ ମୋର ପ୍ରସୁପ୍ତ ବାକ୍‌ଶକ୍ତିକୁ ଜାଗ୍ରତ କରାଇଅଛନ୍ତି ଓ ମୋର ହସ୍ତ, ପଦ, କର୍ଣ୍ଣ, ଚକ୍ଷୁ ଏବଂ ଚର୍ମ ପ୍ରଭୃତି ଇନ୍ଦ୍ରିୟ ତଥା ପ୍ରାଣକୁ ମଧ୍ୟ ଅପୂର୍ବ ଆନନ୍ଦରେ ସଂଜୀବିତ କରିଅଛନ୍ତି । ଆପଣ ସର୍ବଶକ୍ତିମାନ ଓ ଅନ୍ତର୍ଯ୍ୟାମୀ । ଆପଣଙ୍କୁ ନମସ୍କାର କରୁଅଛି । ଆପଣ ଏକ ହୋଇ ମଧ୍ୟ ନିଜର ମାୟାଶକ୍ତି ବଳରେ ଭିନ୍ନ ଭିନ୍ନ ରୂପରେ ନିଜକୁ ପ୍ରକଟିତ କରିଅଛନ୍ତି । ସୃଷ୍ଟିର ପ୍ରାରମ୍ଭରେ ଆପଣ ଅସୀମ ଶକ୍ତିରେ ବଳୀୟାନ ହୋଇ ସୁପ୍ତୋତ୍ଥିତ ପୁରୁଷ ପରି ସମସ୍ତ ଜଗତକୁ ଅବଲୋକନ କରିଥିଲେ । ହେ ଆର୍ତ୍ତବନ୍ଧୁ, ଆପଣ ଅଖିଳଜଗତର ଆଶ୍ରୟଦାତା । ଆପଣଙ୍କ ଦ୍ୱାରା ଉପକୃତ ହୋଇଥିବା ବ୍ୟକ୍ତି ଆପଣଙ୍କର ମୁକ୍ତିଦାତା ପାଦପଦ୍ମକୁ ଭୁଲି ରହିପାରେ ନାହିଁ । ଆପଣ ବାଞ୍ଛାକଳ୍ପତରୁ । ଆପଣଙ୍କର ଚରଣକମଳକୁ ଧ୍ୟାନ ତଥା ଆପଣଙ୍କ ଭକ୍ତିମନଙ୍କର କଥା ଶ୍ରବଣରେ ମନୁଷ୍ୟ ଯେଉଁ ଆନନ୍ଦ ଲାଭ କରିଥାଏ, ବ୍ରହ୍ମାନନ୍ଦରେ ମଧ୍ୟ ସେପରି ସୁଖ ନିହିତ ନାହିଁ । ହେ ଅନନ୍ତ, ଯେଉଁ ନିର୍ମଳ ସ୍ୱଭାବସମ୍ପନ୍ନ ସାଧୁ ପୁରୁଷମାନେ ସତତ ଆପଣଙ୍କ ପ୍ରତି ଭକ୍ତିପରାୟଣ, ସେହି ମହାତ୍ମାମାନଙ୍କ ସହିତ ଉପଯୁକ୍ତ ସଙ୍ଗଲାଭ ମୋତେ ପ୍ରାପ୍ତ ହେଉ, ତାହାହେଲେ ଭକ୍ତଜନମାନଙ୍କର ସାଧୁସଙ୍ଗ ଲାଭ କରି ଆପଣଙ୍କ ଅମୃତ-ଲୀଳା-ରସରେ ମତ୍ତ ହୋଇପାରିବ ଏବଂ ତା ଫଳରେ ଅତିଶୟ ଦୁଃଖପୂର୍ଣ୍ଣ ଏହି ଭୟାନକ ଭବସାଗରରୁ ଅନାୟାସରେ ମୁଁ ଉତ୍ତୀର୍ଣ୍ଣ ହେବାକୁ ସମର୍ଥ ହେବି । ହେ ପଦ୍ମନାଭ, ଆପଣଙ୍କ ଚରଣ କମଳର ସୁବାସରେ ଯେଉଁମାନେ ପ୍ରଲୁବ୍ଧ, ସେହି ସାଧୁମାନଙ୍କର ସାନ୍ନିଧ୍ୟ ଲାଭ କଲେ ଏହି ନଶ୍ୱର ଦେହଧାରୀ ମନୁଷ୍ୟମାନେ କେବେହେଲେ ପ୍ରିୟପରିଜନ, ଧନରତ୍ନ, କାମିନୀକାଞ୍ଚନର କଥା ଚିନ୍ତା କରିବେ ନାହିଁ । ହେ ପରମ ପୁରୁଷ, ଆପଣଙ୍କର 'ବିଶ୍ୱରୂପ ସମ୍ପର୍କରେ ମୁଁ ଶୁଣିଛି ମାତ୍ର; କିନ୍ତୁ ତା'ର ସ୍ୱରୂପ ଉପଲବ୍ଧି କରିପାରିନାହିଁ । ଆପଣ ପ୍ରଳୟ ସମୟରେ ଅଖିଳ ଜଗତକୁ ନିଜ ଉଦରରେ ଧାରଣ କରି

ଅନନ୍ତ ନାଗ ଉପରେ ଯୋଗନିଦ୍ରାରେ ଶୟନ କରିଥାନ୍ତି ଏବଂ ଆପଣଙ୍କ ନାଭିପଦ୍ମରୁ ତେଜସ୍ୱୀ ବ୍ରହ୍ମାଙ୍କର ଉତ୍ପତ୍ତି ଘଟେ । ପରମ ପୁରୁଷ, ଆପଣଙ୍କୁ ନମସ୍କାର । ଜୀବଠାରୁ ଆପଣ ସ୍ୱତନ୍ତ୍ର, ଆପଣ ସର୍ବଜ୍ଞ, ପରିଶୁଦ୍ଧ, ନିର୍ବିକାର, ପୂର୍ଣ୍ଣଐଶ୍ୱର୍ଯ୍ୟଶାଳୀ ଏବଂ ତ୍ରିଗୁଣର ଅଧୀଶ୍ୱର । ଆପଣଙ୍କ ରୂପ ପରମାନନ୍ଦସ୍ୱରୂପ । ଆପଣଙ୍କୁ ନମସ୍କାର । ଆପଣଙ୍କ ପାଦ-ପଦ୍ମରେ ମୁଁ ଶରଣ ନେଉଅଛି । ଆପଣ ମୋ ପ୍ରତି କୃପାଦୃଷ୍ଟି ନିକ୍ଷେପ କରନ୍ତୁ ।"

ଧ୍ରୁବଙ୍କର ସ୍ତୁତିରେ ପ୍ରସନ୍ନ ହୋଇ ଭଗବାନ କହିଲେ, ହେ ରାଜକୁମାର, ମୁଁ ତୋର ମନର ସଂକଳ୍ପ ସମ୍ପର୍କରେ ଅବଗତ ଅଛି । ଯଦିଓ ଏପରି ପଦପ୍ରାପ୍ତି ଅତ୍ୟନ୍ତ ଦୁଷ୍ପ୍ରାପ୍ୟ, ତଥାପି ମୁଁ ତାହା ତୋତେ ପ୍ରଦାନ କଲି । ତୋର କଲ୍ୟାଣ ହେଉ । ଭଦ୍ର, ଯେଉଁ ସ୍ଥାନକୁ କେହି କେବେ ପ୍ରାପ୍ତ ହୋଇନାହାଁନ୍ତି, ଗ୍ରହ ନକ୍ଷତ୍ର ସପ୍ତର୍ଷିମଣ୍ଡଳ ଯାହାକୁ ନିତ୍ୟ ପ୍ରଦକ୍ଷିଣ କରିଥାନ୍ତି, ସେହି ସଦା ଦୀପ୍ତିମୟୀ ନିତ୍ୟସ୍ଥାୟୀ ସମୁଚ୍ଚ-ଲୋକ ତୋତେ ପ୍ରଦାନ କଲି; ତୁ ରାଜ୍ୟଭୋଗ ଶେଷ କରି ଏହି ସ୍ଥାନ ପ୍ରାପ୍ତ ହେବୁ । ତୋର ପିତା ତୋତେ ରାଜ୍ୟାଭିଷିକ୍ତ କରି ବନବାସୀ ହେଲେ, ତୁ ଛତିଶ ହଜାର ବର୍ଷ ସେହି ରାଜ୍ୟକୁ ଧର୍ମପଥ ଅବଲମ୍ବନ କରି ପାଳନ କରିବୁ । ତୋର ଭ୍ରାତା ଉତ୍ତମ ମୃଗୟା କରିବାକୁ ଯାଇ ନିହତ ହେଲେ, ତୋର ବିମାତା ସୁରୁଚିର ମସ୍ତିଷ୍କ ବିକୃତ ଘଟିବ; ସେ ଅରଣ୍ୟରେ ତା'ର ସେହି ମୃତ ପୁତ୍ରକୁ ଅନ୍ୱେଷଣ କରୁକରୁ ଦାବାଗ୍ନିରେ ଆକ୍ରାନ୍ତ ହୋଇ ମୃତ୍ୟୁ ମୁଖରେ ପତିତ ହେବ । ବାବା, ଯଜ୍ଞ ମୋର ଅତି ପ୍ରିୟ । ତୁ ପ୍ରଚୁର ପରିମାଣରେ ଦାନ ଦକ୍ଷିଣା ପ୍ରଦାନ କରି ବହୁ ପ୍ରକାରର ଯଜ୍ଞ ଅନୁଷ୍ଠାନ କରି ମୋର ଆରାଧନା କରିବୁ ଏବଂ ପ୍ରୟାଣ ସମୟରେ ମୋତେ ତୁ ସ୍ମରଣ କରିବୁ । ଇହଲୀଳା ପରେ ମୋର ପ୍ରଦତ୍ତ ଏହି ସମୁଚ୍ଚ ଲୋକ ତୁ ଲଭ କରିବୁ ଏବଂ ଚିରକାଳ ପାଇଁ ଭବବନ୍ଧନରୁ ତୁ ମୁକ୍ତ ହେବୁ ।"

ଧ୍ରୁବଙ୍କୁ ଏହିପରି ଆଶୀର୍ବାଦ କରି ଭଗବାନ ଗରୁଡ ସହ ଅନ୍ତର୍ହିତ ହୋଇଗଲେ । ତପସ୍ୟାରେ ସିଦ୍ଧିଲାଭ କରିଥିବାରୁ ଧ୍ରୁବ ମଧ୍ୟ ଗୃହକୁ ଫେରିଆସିଲେ ।

ଧ୍ରୁବ ଘରକୁ ଫେରି ଆସୁଅଛନ୍ତି ବୋଲି ଶୁଣି ରାଜା ଉତ୍ତାନ ପାଦ, ବିଶେଷ ଆନନ୍ଦିତ ହେଲେ । ଧ୍ରୁବଙ୍କୁ ସ୍ୱାଗତ କରିବା ନିମନ୍ତେ

ରାଜ୍ୟର ସମସ୍ତ ଗୃହ ଓ ପଥକୁ ସୁସଜ୍ଜିତ କରାଗଲା । ରାଜା ଉତ୍ତାନପାଦ ନିଜେ ସ୍ୱର୍ଣ୍ଣରଥରେ ଆରୋହଣ କରି ଧ୍ରୁବଙ୍କୁ ପାଛୋଟି ଆଣିବା ନିମନ୍ତେ ରାଜପ୍ରାସାଦରୁ ବହିର୍ଗତ ହେଲେ । ସୁନୀତି ଓ ସୁରୁଚି ମଧ୍ୟ ପୁତ୍ର ଉତ୍ତମଙ୍କୁ ସଙ୍ଗରେ ନେଇ ରାଜାଙ୍କର ଅନୁଗମନ କଲେ । ଦୂରରୁ ଧ୍ରୁବଙ୍କୁ ଆସୁଥିବାର ଦେଖି ରାଜା ରଥରୁ ଅବତରଣ କରି ଧ୍ରୁବଙ୍କ ଆଡ଼କୁ ଦୌଡ଼ି ଯାଇ ଆନନ୍ଦ ଆତିଶଯ୍ୟରେ ତାଙ୍କୁ ଆଲିଙ୍ଗନ କଲେ ଏବଂ ତାର ମସ୍ତକକୁ ସ୍ନେହରେ ବାରମ୍ବାର ଆଘ୍ରାଣ କରି ଆଦର କଲେ । ରାଜା ଉତ୍ତାନପାଦଙ୍କର ଦୁଇଚକ୍ଷୁ ଆନନ୍ଦାଶ୍ରୁରେ ଆର୍ଦ୍ର ହୋଇଉଠିଲା । ଧ୍ରୁବ ପ୍ରଥମେ ପିତାଙ୍କର ଚରଣ ବନ୍ଦନା କଲେ ଏବଂ ପରେ ନିଜର ମାତା ଦ୍ୱୟଙ୍କୁ ଭୂମିଷ୍ଠ ପ୍ରଣାମ ଜଣାଇଲେ । ସୁରୁଚି ନିଜର ସପତ୍ନୀର ପୁତ୍ର ଧ୍ରୁବଙ୍କୁ ଆଲିଙ୍ଗନ କରି ବାଷ୍ପରୁଦ୍ଧ କଣ୍ଠରେ ଆଶୀର୍ବାଦ କରି କହିଲେ, 'ବାବା, ଚିରଜୀବୀ ହୁଅ ।' ଧ୍ରୁବ ମଧ୍ୟ ସ୍ନେହରେ ଉତ୍ତମଙ୍କୁ ଆଲିଙ୍ଗନ କଲେ । ସୁନୀତି ନିଜର ପ୍ରାଣ ଅପେକ୍ଷା ଅଧିକ ପ୍ରିୟ ପୁତ୍ର ଧ୍ରୁବଙ୍କୁ କୋଳକୁ ନେଇ ପୁତ୍ର ଅଙ୍ଗସ୍ପର୍ଶଜନିତ ସୁଖାନୁଭୂତିରେ ପୁତ୍ରର ସେହି ବିଚ୍ଛେଦ କଷ୍ଟ ଏବଂ ସପତ୍ନୀର ସତତ କଟୁବାକ୍ୟ ଶ୍ରବଣଜନିତ ସମସ୍ତ ଦୁଃଖ ଭୁଲିଗଲେ । ଆନନ୍ଦର ଆତିଶଯ୍ୟରେ ତାଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ନିର୍ଗତ ହେଲା ଏବଂ ସେହି ଲୋତକ ଜଳରେ ତାଙ୍କର ବକ୍ଷ ସିକ୍ତ ହେଲା ଏବଂ ତାଙ୍କର ସ୍ତନରୁ ଦୁଗ୍ଧ କ୍ଷରିତ ହେବାକୁ ଲାଗିଲା । ପୁରବାସୀମାନେ ଜନନୀ ସୁନୀତି ଓ ଧ୍ରୁବଙ୍କର ପ୍ରଶଂସା କରିବାକୁ ଲାଗିଲେ । ପିତାମାତାଙ୍କ ଗହଣରେ ଧ୍ରୁବ ରାଜପ୍ରାସାଦ ଆଡ଼କୁ ଧୀରେ ଧୀରେ ଅଗ୍ରସର ହେଲେ ।

ଧ୍ରୁବ ଯୌବନରେ ପଦାର୍ପଣ କରିବା ମାତ୍ରେ ରାଜା ଉତ୍ତାନପାଦ ଧ୍ରୁବଙ୍କୁ ରାଜପଦରେ ଅଭିଷିକ୍ତ କରି ବାନପ୍ରସ୍ଥ ଆଶ୍ରମ ଗ୍ରହଣ କରିଥିଲେ । ଧ୍ରୁବ ନିଜର ରାଜ୍ୟ ଶାସନ କାଳରେ ଅପୂର୍ବ ଦକ୍ଷତା, ସଂଯମ ଓ ଧର୍ମପ୍ରବଣତାର ପରିଚୟ ଦେଇଥିଲେ । ବହୁ ଯଜ୍ଞ ଅନୁଷ୍ଠାନ କରି ସେ ଅକ୍ଷୟ ପୁଣ୍ୟର ଅଧିକାରୀ ହୋଇଥିଲେ ଏବଂ ବହୁ ବର୍ଷ ରାଜ୍ୟ ପାଳନ କରି ପରେ ନିଜର ପୁତ୍ର ଉତ୍କଳଙ୍କୁ ରାଜପଦ ପ୍ରଦାନ କରି ପୂର୍ବପୁରୁଷ ଆଚରିତ ବାନପ୍ରସ୍ଥ ଆଚରଣ କରିଥିଲେ ଏବଂ ସ୍ୱଦେହରେ ବିଷ୍ଣୁ ଲୋକକୁ ଯାତ୍ରା କରିଥିଲେ । ଜନନୀ ସୁନୀତି ମଧ୍ୟ ସ୍ୱଦେହରେ ସ୍ୱର୍ଗ ଲୋକକୁ ଯାତ୍ରା କରିଥିଲେ ।

## ଋଷଭ ଓ ଭରତ ଚରିତ

ମହାରାଜ ଅଗ୍ନୀଧ୍ରଙ୍କର ପୁତ୍ର ନାଭି ଅପୁତ୍ରକ ଥିଲେ; ତେଣୁ ସନ୍ତାନ ଲାଭ କରିବା ନିମନ୍ତେ ସେ ନିଜର ପତ୍ନୀ ମେରୁଦେବୀଙ୍କ ସହିତ ଏକାଗ୍ରଚିତ୍ତରେ ଭଗବାନ ବିଷ୍ଣୁଙ୍କର ଆରାଧନା କରିଥିଲେ ଏବଂ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ଯଜ୍ଞ ଅନୁଷ୍ଠାନ କରିଥିଲେ । ନାଭିଙ୍କ ଦ୍ୱାରା ଆୟୋଜିତ ସେହି ପବିତ୍ର ଯଜ୍ଞରେ ପ୍ରୀତ୍ୟାହୂତ ଦେବା ମାନେ ନାଭିଙ୍କପ୍ରତି ସନ୍ତୁଷ୍ଟ ହୋଇ ଭଗବାନ ସ୍ୱୟଂ ବିଷ୍ଣୁ ଯଜ୍ଞ ଅନଳ ମଧ୍ୟରୁ ଆବିର୍ଭୂତ ହେଲେ ।

ଯଜ୍ଞ ଅନଳ ମଧ୍ୟରୁ ସ୍ୱୟଂ ବିଷ୍ଣୁଙ୍କୁ ଦର୍ଶନ କରି ଯଜ୍ଞର ଋତ୍ୱିକ-ମାନେ ଭଗବାନଙ୍କ ଉଦ୍ଦେଶ୍ୟରେ ସ୍ତୁତି ଗାନ କରି କହିଲେ, 'ହେ ପରମ ପୂଜନୀୟ ପ୍ରଭୁ, ଆମପରି ଅନୁଗତ ବ୍ୟକ୍ତିମାନଙ୍କର ପୂଜାର୍ଘ୍ୟ ଦୟାକରି ଗ୍ରହଣ କରନ୍ତୁ । ସାଧୁମାନଙ୍କ ନିକଟରୁ କେବଳ 'ନମସ୍କାର' କରିବା ମାତ୍ର ଶିଖିଅଛୁ, କିନ୍ତୁ ଆପଣଙ୍କର କିପରି ସ୍ତୁତି ଗାନ କରିବୁ, ତାହା ଆମ୍ଭମାନଙ୍କୁ ଜଣାନାହିଁ । ଆମର ଜ୍ଞାନ ଓ ବୁଦ୍ଧି ଏହି ପ୍ରକୃତି ପ୍ରପଞ୍ଚ ମଧ୍ୟରେ ସୀମାବଦ୍ଧ ଏବଂ ଆପଣ ପ୍ରକୃତି ପୁରୁଷର ଅତୀତ, ତେଣୁ ଆପଣଙ୍କର ଯଥାର୍ଥ ସ୍ୱରୂପ ଜାଣିବା ଆମ ପକ୍ଷରେ ସମ୍ଭବ ନୁହେଁ । ଆପଣ ମଙ୍ଗଳମୟ ଓ ଅଖିଳ ଜଗତର ସକଳ ପାପ ବିନାଶକାରୀ ଏବଂ ଅସୀମ ଗୁଣର ଅଧିକାରୀ ! ଆପଣଙ୍କ ଗୁଣରାଜିକୁ ଯେତେ ଗାନ କଲେ ମଧ୍ୟ ସେ ସବୁର ଶେଷ ନାହିଁ ଏବଂ ଆପଣଙ୍କର ଯଥାର୍ଥ ସ୍ୱରୂପ ସମ୍ପୂର୍ଣ୍ଣରୂପେ ପ୍ରକାଶ କରିବାକୁ ଆମେ ଅସମର୍ଥ । ଭକ୍ତମାନେ ଗଦଗଦ୍ଗଦ କଣ୍ଠରେ ଆପଣଙ୍କର ଯଶ ଗାନ କରି ଭକ୍ତିସହକାରେ ଜଳ, ପତ୍ର, ତୁଳସୀ ଓ ଦୁର୍ବାଙ୍କୁର ଦ୍ୱାରା ଆପଣଙ୍କର ପୂଜାର୍ଚ୍ଚନା କଲେ ଆପଣ ତାହା ଗ୍ରହଣ କରି ସନ୍ତୁଷ୍ଟ ହୋଇଥାନ୍ତି, ଅଥଚ ସେପରି ପୂଜାର ତୁଳନାରେ ଆମର ଏହି ଯଜ୍ଞ କିଛି ନୁହେଁ । ପ୍ରଭୁ, ବରପ୍ରଦାନକାରୀଙ୍କ ମଧ୍ୟରେ ଆପଣ ସର୍ବଶ୍ରେଷ୍ଠ ।

ଆପଣ ଯେ ଆଜ ମହାରାଜ ନାଭିଙ୍କର ଯଜ୍ଞରେ ଆବିର୍ଭୂତ ହୋଇଅଛନ୍ତି, ତାହା ଆମ୍ଭମାନଙ୍କ ନିକଟରେ ବରସ୍ୱରୂପ ହୋଇଅଛି । ପରମ ଦୁର୍ଦ୍ଦିନରେ ଏବଂ ଅନ୍ତିମ କାଳରେ ଯେପରି ଆପଣଙ୍କ ନାମ ସ୍ମରଣ କରିବାକୁ ସମର୍ଥ ହେବୁ, ସେହି ଆଶୀର୍ବାଦ ଆମ୍ଭମାନଙ୍କୁ ପ୍ରଦାନ କରନ୍ତୁ । ମହାରାଜ ନାଭି ଅପୁତ୍ରିକ, ସେଥିପାଇଁ ଏହି ଯଜ୍ଞ ଅନୁଷ୍ଠାନ କରି ଆପଣଙ୍କ ସଦୃଶ ସର୍ବ ଗୁଣସମ୍ପନ୍ନ ପୁତ୍ର ଲାଭ କରିବାକୁ ସେ କାମନା କରିଅଛନ୍ତି ଏବଂ ସେ ଆପଣଙ୍କର ଶରଣାପନ୍ନ ହୋଇଅଛନ୍ତି । ମହାରାଜାଙ୍କର ଏହି କାମନା ଚରିତାର୍ଥ କରିବା ପାଇଁ ଆପଣଙ୍କୁ ଆହ୍ୱାନ କରୁଅଛୁ । ପ୍ରଭୁ, ଆମ୍ଭମାନଙ୍କର ଧୃଷ୍ଟତା ମାର୍ଜନା କରି ମହାରାଜାଙ୍କ ପ୍ରତି ସଦୟ ହୁଅନ୍ତୁ ।'

ଋତ୍ୱିକମାନଙ୍କର ନିବେଦନ ଶ୍ରବଣ କରି ଭଗବାନ କହିଲେ, ଋଷିବୃନ୍ଦ, ନାଭିଙ୍କ ନିମନ୍ତେ, ମୋ ପରି ପୁତ୍ର ତୁମ୍ଭେମାନେ କାମନା କରୁଅଛ । କିନ୍ତୁ ଅଦ୍ୱିତୀୟ, ମୋର ସାଦୃଶ୍ୟ ବହନ କରିଥିବା ବ୍ୟକ୍ତି ଜଗତରେ ବିରଳ । ହେ ବ୍ରାହ୍ମଣମାନେ, ତୁମ୍ଭମାନଙ୍କ କାର୍ଯ୍ୟରେ ଓ ନାଭିଙ୍କ ପ୍ରତି ମୁଁ ପ୍ରସନ୍ନ ଥିବାରୁ ତୁମ୍ଭମାନଙ୍କର କାମନା ପୂର୍ଣ୍ଣ କରିବି ଏବଂ ସେଥିପାଇଁ ମୁଁ ନିଜେ ତାଙ୍କର ପୁତ୍ର ରୂପରେ ଆବିର୍ଭୂତ ହେବି ।'

ଏହା କହି ଭକ୍ତବତ୍ସଳ କରୁଣାମୟ ଭଗବାନ ଅଦୃଶ୍ୟ ହୋଇଗଲେ । ପରେ ମହାରାଜ ନାଭିଙ୍କ ପତ୍ନୀ ମେରୁ ଦେବୀଙ୍କ ଗର୍ଭରୁ ଭଗବାନ ପୁତ୍ର ରୂପରେ ଜାତ ହେଲେ ଏବଂ ତାଙ୍କର ନାମ ହେଲା ଋଷଭ । ଋଷଭ ଧୀରେ ଧୀରେ ବଢ଼ିବାକୁ ଲାଗିଲେ ଏବଂ କାଳକ୍ରମେ ତାଙ୍କର ତେଜ, ଶ୍ରୀ, କୀର୍ତ୍ତି, ପରାକ୍ରମ ଓ ଶୌର୍ଯ୍ୟରେ ଜଗତ ଉଦ୍‌ଭାସିତ ହେବାକୁ ଲାଗିଲା । ଋଷଭ ଦେବଙ୍କ ଔରସରେ ଏକଶତ କୀର୍ତ୍ତିବର୍ଦ୍ଧନକାରୀ ପୁତ୍ର ଜାତ ହୋଇଥିଲେ ! ସେହି ପୁତ୍ରମାନଙ୍କ ମଧ୍ୟରେ ଭରତ ଥିଲେ ଜ୍ୟେଷ୍ଠ । ଭରତଙ୍କର ଚରିତ୍ର ଓ ଗୁଣାବଳୀ ଏତେ ସୁନ୍ଦର ଓ ଆଦର୍ଶସ୍ଥାନୀୟ ଥିଲା ଯେ, ତାଙ୍କର ନାମାନୁସାରେ ତାଙ୍କ ଶାସିତ ଦେଶ ଭାରତବର୍ଷ ନାମରେ ଅଭିହିତ ହୋଇଥିଲା । ଋଷଭଦେବ ତାଙ୍କର ପୁତ୍ରମାନଙ୍କ ମାଧ୍ୟମରେ ଜନସମାଜକୁ ଉତ୍ତମ ଉପଦେଶ ପ୍ରଦାନ କରି ଯାଇ ଅଛନ୍ତି ।

ପୁତ୍ରମାନଙ୍କୁ ଉପଦେଶ ଦେଇ ଋଷଭଦେବ କହିଥିଲେ, ପୁତ୍ରଗଣ, ମନୁଷ୍ୟର ଶରୀର ବିଷୟ ଭୋଗ ଓ କାମନା ଚରିତାର୍ଥ କରିବା ନିମନ୍ତେ ଉଦ୍ଦିଷ୍ଟ ନୁହେଁ; କାରଣ କାମଭୋଗ ଚରିତାର୍ଥ ଆପାତ ଦୃଷ୍ଟିରେ ସୁଖଦାୟକ ବୋଲି ପ୍ରତୀୟମାନ ହେଉଥିଲେ ହେଁ ତାହା ପରିଶେଷରେ ପରମ ଦୁଃଖର କାରଣ ହୋଇଥାଏ । ମନୁଷ୍ୟ ନିଜର ଶରୀର ଦ୍ୱାରା ତପସ୍ୟା କରିବା ଉଚିତ ଏବଂ ତଦ୍ୱାରା ମନୁଷ୍ୟର ଅନ୍ତଃକରଣ ଶୁଦ୍ଧିପୂତ ହେବା ସଙ୍ଗେ ସଙ୍ଗ ମନୁଷ୍ୟ ଅନନ୍ତ ବ୍ରହ୍ମାନନ୍ଦ ଲାଭ କରିଥାଏ । ମହତ୍ତ ବ୍ୟକ୍ତିମାନଙ୍କର ସେବା କରିବାକୁ ମୁକ୍ତିର ଦ୍ୱାର ରୂପେ ଏବଂ ନାରୀ ସଙ୍ଗେ ଲାଳସାକୁ ନରକର ଦ୍ୱାର ବୋଲି ତତ୍ତ୍ୱଦର୍ଶୀମାନେ ସ୍ୱୀକୃତି ଅଛନ୍ତି । ଯେଉଁମାନେ ସଦାଗ୍ରହଶୀଳ, ଶାନ୍ତ ସ୍ୱଭାବ ବିଶିଷ୍ଟ, କ୍ରୋଧଶୂନ୍ୟ, ହିଂସାଦ୍ୱେଷୀ, ସେମାନେ ମହତ୍ତ । ଯେଉଁମାନେ ପରମାତ୍ମାଙ୍କ ପ୍ରତି ଭକ୍ତିପ୍ରାଣ ଓ ଭଗବତ୍ ସେବାକୁ ନିଜ ଜୀବନର ଏକମାତ୍ର ପୁରୁଷାର୍ଥ ବୋଲି ମନେ କରିଥାନ୍ତି, ସ୍ତ୍ରୀ ପୁତ୍ର, ଧନରତ୍ନ ଆଦି ବିଷୟ ସମ୍ପତ୍ତି ପ୍ରତି ଯେଉଁମାନେ ଲୋଭଶୂନ୍ୟ ଓ ଶରୀରକୁ ରକ୍ଷା କରିବା ନିମନ୍ତେ ଯେଉଁମାନେ ଲୌକିକ କାର୍ଯ୍ୟ କରିଥାନ୍ତି, ସେମାନେ ଧନ୍ୟ । ଇନ୍ଦ୍ରିୟାସକ୍ତ ବ୍ୟକ୍ତିମାନେ ଭୋଗଲାଳସା ତୃପ୍ତି-ସାଧନ ନିମନ୍ତେ ପାପାନୁଷ୍ଠାନ କରିବାକୁ ସାମାନ୍ୟତମ କୁଣ୍ଠା ବୋଧକରନ୍ତି ନାହିଁ । ପୂର୍ବଜନ୍ମର ପାପ ଫଳରେ ମନୁଷ୍ୟ ଯେଉଁ ପାପ ଶରୀର ପ୍ରାପ୍ତ ହୋଇଥାଏ, ସେହି ଶରୀର ନେଇ ଇନ୍ଦ୍ରିୟ ଲାଳସା ଚରିତାର୍ଥ କରିବା ଆଦୌ ଉଚିତ ନୁହେଁ । ପ୍ରତ୍ୟେକ ବ୍ୟକ୍ତିଙ୍କର ଦେହାଭିମାନ ରହିଅଛି । ଅଧିକନ୍ତୁ ନାରୀ ପୁରୁଷର ମିଳନରେ ସେମାନଙ୍କ ମନରେ, ହୃଦୟରେ ନୂତନ ସ୍ଥୂଳ ତଥା ଦୁର୍ଭେଦ୍ୟ ଯୁଗଳ-ଗ୍ରନ୍ଥି ଜାତ ହୁଏ, ଯାହା ଫଳରେ ଗୃହ, ସମ୍ପତ୍ତି, ପୁତ୍ର, ପରିବାର ଆଦି ବିଷୟରେ 'ମୁଁ' 'ମୋର' ଆଦି ମୋହ ସୃଷ୍ଟି ହୋଇଥାଏ । ମନରୁ ଏହି ମୋହ ଓ ଅହଙ୍କାରକୁ ଦୂରକରି ପାରିଲେ ଜୀବ ମୁକ୍ତ ହୁଏ ଏବଂ ପରମପଦ ଲାଭ କରିବା ପାଇଁ ଯୋଗ୍ୟ ହୁଏ । ଅହଙ୍କାର ତ୍ୟାଗ କରିବା ନିମନ୍ତେ କେତେଗୋଟି ଉପାୟ ଅବଲମ୍ବନ କରିବାକୁ ପଡ଼ିଥାଏ, ସେଗୁଡ଼ିକ ହେଲା; ଭଗବାନଙ୍କ ପ୍ରତି ଭକ୍ତି ଓ ଐକାନ୍ତିକ ନିଷ୍ଠା, ପାର୍ଥିବ ସୁଖ ସମ୍ଭୋଗପ୍ରତି ବିତୃଷ୍ଣା, ସୁଖ ଦୁଃଖ ସମ୍ପର୍କରେ ସହିଷ୍ଣୁତା, ଇହଲୋକ ଓ ପରଲୋକରେ ଜୀବ

ମାନେ ଦୁଃଖ ଭୋଗୀ ଏପରି ନିଶ୍ଚିତ ଜ୍ଞାନ, ତତ୍ତ୍ୱଜିଜ୍ଞାସା, ତପସ୍ୟା, ସକାମ କର୍ମତ୍ୟାଗ ଭଗବାନଙ୍କ ଉଦ୍ଦେଶ୍ୟରେ କର୍ମାନୁଷ୍ଠାନ, ଭଗବାନଙ୍କର ଲୀଳାକଥନ ଓ ଗୁଣକୀର୍ତ୍ତନ, ହରିଭକ୍ତ ତଥା ସାଧୁ ସନ୍ନିଧି ଲାଭ, ଶତ୍ରୁ ମନୋଭାବ ପରିହାର, ସାମ୍ୟଭାବ, ଶାନ୍ତିପ୍ରିୟତା, ଶରୀର ତଥା ସମ୍ପତ୍ତି ପ୍ରତି ମମତା ତ୍ୟାଗ କରିବାର ପ୍ରବଳ ଆଗ୍ରହ, ଶାସ୍ତ୍ର ଅଭ୍ୟାସ, ନିର୍ଜନବାସ, ପ୍ରାଣବାୟୁ, ଇନ୍ଦ୍ରିୟ ତଥା ମନ ସମ୍ପର୍କରେ ସଂଯମତା, ଶାସ୍ତ୍ର ଓ ସାଧୁ ବାକ୍ୟରେ ଆନ୍ତରିକ ଶ୍ରଦ୍ଧା, ବ୍ରହ୍ମଚର୍ଯ୍ୟ ପାଳନ, କର୍ତ୍ତବ୍ୟାନୁରାଗ, ବାକ୍‌ସଂଯମ, ଭଗବତ୍‌ଧ୍ୟାନ ଅନୁଭୂତିଲବ୍ଧ ଜ୍ଞାନ ଏବଂ ଯୋଗ-ସାଧନାଦି । ଏହିସବୁ କାର୍ଯ୍ୟ ଆଚରଣ କରି ବିବେକୀ ବ୍ୟକ୍ତିମାନେ ମନରୁ ମୋହ ତଥା ଅହଙ୍କାର ଭାବକୁ ଦୂର କରିପାରିବେ । ଜନସାଧାରଣ ପାରମାର୍ଥିକ ପଥ ଅନୁସରଣ ନ କରି ଅତ୍ୟଧିକ କାମନା ପରବଶ ହୋଇ କେବଳ ଭୋଗଲାଳସା ଚରିତାର୍ଥ କରିବାରେ ଜୀବନର ସମସ୍ତ ସମୟ ବ୍ୟୟ କରିଥାନ୍ତି ଏବଂ ସେଥିପାଇଁ ଯେ କୌଣସି ପାପାନୁଷ୍ଠାନ କରିବାକୁ ପଶ୍ଚାତ୍ପଦ ନାହିଁ ।—ଫଳରେ ସୁଖ ପରିବର୍ତ୍ତେ ଅଜସ୍ର ଦୁଃଖ ହିଁ ସେମାନଙ୍କର ଲଭ୍ୟ ହୋଇଥାଏ । ଯେପରି କୁପଥଗାମୀ ଓ ମନ୍ଦବୁଦ୍ଧି ପରିଚାଳିତ ବ୍ୟକ୍ତି ବାସ୍ତବିକ ଅନ୍ଧତୁଲ୍ୟ କରୁଣାର ପାତ୍ର । ପଣ୍ଡିତମାନେ ଅନ୍ଧକୁ ପଥ ନିର୍ଦ୍ଦେଶ କରିଦେବା ପରି; ଅନ୍ଧତୁଲ୍ୟ ସେହି ଅବିବେକୀଙ୍କୁ ଭଗବତ୍ ମାର୍ଗରେ ପରିଚାଳିତ କରିଥାନ୍ତି, ତାହାହିଁ କର୍ତ୍ତବ୍ୟ । ଯେଉଁମାନେ ସଂସାର ମୋହଗ୍ରସ୍ତ ଭୋଗଲିପ୍ସୁ ବ୍ୟକ୍ତିମାନଙ୍କୁ ଭକ୍ତିମାର୍ଗର ଉପଦେଶ ପ୍ରଦାନ କରି ସେମାନଙ୍କୁ ମୁକ୍ତ କରିବାରେ ସହାୟକ ହୋଇଥାନ୍ତି, ସେମାନେ ପ୍ରକୃତ ହିତାକାଙ୍କ୍ଷୀ ଓ ଗୁରୁପଦ-ବାଚ୍ୟ । ଭଗବାନ ମନୁଷ୍ୟ ଶରୀର ଧାରଣ କଲେ ମଧ୍ୟ ତାଙ୍କର ସ୍ୱରୂପ ଅତ୍ୟନ୍ତ ଦୁର୍ଜ୍ଞେୟ । ସକଳ ସ୍ଥାନରେ ଭଗବାନଙ୍କ ଅସ୍ତିତ୍ୱକୁ ଉପଲବ୍ଧି କରି ଶୁଦ୍ଧଚିତ୍ତ ମନରେ ଭଗବାନଙ୍କୁ ଲାଭ କରିବା ନିମନ୍ତେ ସତତ ଚେଷ୍ଟା କରିବା ହିଁ ଭଗବାନଙ୍କ ପ୍ରତି ସର୍ବଶ୍ରେଷ୍ଠ ପୂଜା । କାୟ-ମନ-ବାକ୍ୟରେ ଯେଉଁମାନେ ଏହି ମତସକଳକୁ ପାଳନ କରିଥାନ୍ତି, ସେହିମାନେ ମହାମୋହରୂପକ କାଳପାଶରୁ ମୁକ୍ତ ହୋଇଥାନ୍ତି ।

ଜନଶିକ୍ଷା ନିମନ୍ତେ ନିଜର ପୁତ୍ରମାନଙ୍କୁ ଭଗବାନ ଋଷଭ ଏହି ଶିକ୍ଷା ପ୍ରଦାନ କରି ଓ ଧର୍ମପଥ ଅନୁସରଣ କରି ଏବଂ ବହୁବର୍ଷ କାଳ

ରାଜ୍ୟ ପାଳନ କରି ରାଜଶାସନ କ୍ଷେତ୍ରରେ ଉଜ୍ଜ୍ୱଳ ଦୃଷ୍ଟାନ୍ତ ରଖିଯିବା ସଙ୍ଗେ ସଙ୍ଗେ ସକଳ ଭୂପତିଙ୍କର ଭୂଷଣ ସ୍ୱରୂପ ଭାବରେ ସମ୍ମାନଲାଭ କରୁଥିବା ଋଷଭ ଦେବ ସ୍ୱର୍ଗଲୋକକୁ ଯାତ୍ରା କରିଥିଲେ ।

ପିତାଙ୍କ ପରେ ଋଷଭଦେବଙ୍କର ପୁତ୍ର ଭରତଙ୍କ ଉପରେ ରାଜ୍ୟପାଳନର ଦାୟିତ୍ୱ ନ୍ୟସ୍ତ ହୋଇଥିଲା । ସେ ପରମ ଧାର୍ମିକ ଥିଲେ ଏବଂ ବଂଶର ମହାନ ଦେଶେ଼ରାଜ୍ୟକୁ ରକ୍ଷାକରି ହଜାର ଅଯୁତ ବର୍ଷ ରାଜତ୍ୱ କରିଥିଲେ । ପରେ ନିଜର ପୁତ୍ରମାନଙ୍କ ହସ୍ତରେ ରାଜ୍ୟଭାର ଅର୍ପଣକରି ସେ ସନ୍ନ୍ୟାସବ୍ରତ ଗ୍ରହଣ ପୂର୍ବକ ବନବାସୀ ହୋଇଥିଲେ । ବନବାସ ସମୟରେ ସେ କଠୋର ତପସ୍ୟା ଓ ଧର୍ମନିଷ୍ଠ ଜୀବନ ଯାପନ ମାଧ୍ୟମରେ ପରମ ଶାନ୍ତିରେ ଜୀବନ ଅତିବାହିତ କରିବାକୁ ଲାଗିଲେ । ନିରବଚ୍ଛିନ୍ନ ଭାବରେ ଭଗବାନଙ୍କୁ ସ୍ମରଣ, ପୂଜନ ଓ ସେବା କରିବା ଫଳରେ ତାଙ୍କ ମନରେ ଅଭୂତପୂର୍ବ ଭଗବତ୍ ଅନୁରାଗ ବୃଦ୍ଧି ପାଇଲା, ଫଳରେ ସେ ପ୍ରେମାନନ୍ଦ ଲାଭ କରି ଅତିଶୟ ଭାବବିହ୍ୱଳ ହୋଇପଡ଼ିଲେ ।

ଦିନେ ଭରତ ନିତ୍ୟନୈମିତ୍ତିକ ଭାବରେ ଗଣ୍ଡକୀ ନଦୀରେ ସ୍ନାନ ଆଦି ସମାପନ କରି ଜପଧ୍ୟାନ କଲେ । ପରେ ନଦୀକୂଳରେ ଉପବେଶନ କରିଅଛନ୍ତି, ଏହି ସମୟରେ ଏକ ହୃଦୟବିଦାରକ ଦୃଶ୍ୟ ତାଙ୍କ ଦୃଷ୍ଟି ସମ୍ମୁଖରେ ଘଟିଗଲା । ଭରତ ଦେଖିଲେ ଯେ ଗୋଟିଏ ଗର୍ଭବତୀ ହରିଣୀ ନଦୀରେ ଜଳ ପାନକରୁଥିବା ସମୟରେ ଗୋଟିଏ ସିଂହର ଗର୍ଜନ ଶୁଣି ଏପରି ଭୟଭୀତ ହୋଇପଡ଼ିଲା ଯେ, ପ୍ରାଣରକ୍ଷା କରିବା ନିମନ୍ତେ ଲମ୍ଫ ପ୍ରଦାନ କରି ଅପ୍ରଶସ୍ତ ନଦୀକୁ ଅତିକ୍ରମ କରିଗଲା; କିନ୍ତୁ ଅତ୍ୟଧିକ ଭୟ ଓ ଲମ୍ଫରବେଗ ସହ୍ୟ କରିବାର ଶକ୍ତି ହରିଣୀର ନଥିଲା । ଫଳରେ ସେ ଲମ୍ଫ ଦେଉଥିବା ସମୟରେ ତା'ର ଗର୍ଭସ୍ଥ ସନ୍ତାନଟି ଗର୍ଭମଧ୍ୟରୁ ନିର୍ଗତ ହୋଇ ନଦୀ ଜଳରେ ପଡ଼ିଗଲା । ନଦୀଟିକୁ ଅତିକ୍ରମ କରିଥିଲେ ମଧ୍ୟ ଭୟ, ଉଲ୍ଲମ୍ଫନ ଓ ଗର୍ଭପାତରେ ଅତ୍ୟନ୍ତ ଭୟଭୀତ ହୋଇ ହରିଣୀଟିର ମଧ୍ୟ ମୃତ୍ୟୁ ଘଟିଲା । ନଦୀ ଜଳର ସ୍ରୋତରେ ନବଜାତ ଶିଶୁ ହରିଣୀଟି ଭାସି ଯାଉଥିବା ଦେଖି ଭରତଙ୍କ କୋମଳ ହୃଦୟ ଦୟା-ବିଗଳିତ ହୋଇଗଲା । ଭରତ ସଙ୍ଗେ ସଙ୍ଗେ ନଦୀଜଳରୁ ଶିଶୁହରିଣୀଟିକୁ ଉଦ୍ଧାର କରି ଆଣିଲେ ଏବଂ ନିଜ ଆଶ୍ରମକୁ ନେଇ ଅତି ଯତ୍ନରେ ଲାଳନ ପାଳନ କଲେ । ଶିଶୁ ହରିଣୀଟି ପ୍ରତି ଭରତଙ୍କର ବିଶେଷ

ମମତା ଜାତ ହୋଇଥିଲା ଏବଂ ସବୁବେଳେ ଶିଶୁ ହରିଣୀଟିର ଯତ୍ନ, ସେବା, ଲାଳନରେ ମନୋନିବେଶ କରି ରହୁଥିଲେ । ହରିଣ ଶାବକଟି କ୍ଷଣକପାଇଁ ତାଙ୍କ ନେତ୍ରପଥରୁ ଅନ୍ତର ହେଲେ ଭରତ ଅସହ୍ୟ ଯନ୍ତ୍ରଣା ଓ ଦୁଃଖ ଅନୁଭବ କରୁଥିଲେ । ଆସକ୍ତିଶୂନ୍ୟ ଭରତଙ୍କ ମନରେ ହରିଣ ଶାବକଟିକୁ କେନ୍ଦ୍ରକରି ଯେଉଁ ଅପୂର୍ବ ଅପତ୍ୟସ୍ନେହ ଜାତହେଲା, ତା’ଫଳରେ ଭରତ ଭଗବାନଙ୍କର ପୂଜା ଆରାଧନା ପର୍ଯ୍ୟନ୍ତ ଭୁଲିଗଲେ ।

ଭରତଙ୍କର ଯେତେବେଳେ ଅନ୍ତିମକାଳ ଉପସ୍ଥିତ ହେଲା, ସେ ଦେଖିଲେ ଯେ ହରିଣ ଶିଶୁଟି ତାଙ୍କ ଶଯ୍ୟା ନିକଟରେ ବସି ଶୋକ କରୁଅଛି । ତାଙ୍କ ମନରେ ହରିଣର ଅନିଶ୍ଚିତ ଭବିଷ୍ୟତ ନେଇ ବହୁ ଅବଶୋଷ ରହିଗଲା; ଫଳରେ ମୃତ୍ୟୁ ପରେ ହରିଣପ୍ରତି ଅତିଶୟ ଆସକ୍ତି ହେତୁ ଭରତ ହରିଣ ଜନ୍ମ ଲାଭ କଲେ; କିନ୍ତୁ ପୂର୍ବ ଜନ୍ମର ଅର୍ଜିତ ପୁଣ୍ୟ ପ୍ରଭାବରୁ ହରିଣରୂପୀ ଭରତଙ୍କ ମନରୁ ପୂର୍ବଜନ୍ମର ସ୍ମୃତି ଲୋପ ପାଇ ନ ଥିଲା । ମନୁଷ୍ୟ ଜନ୍ମ ପରେ ପଶୁ ଜନ୍ମ ଲାଭ କରିଥିବାରୁ ତାଙ୍କର ଅନୁଶୋଚନାର ଅନ୍ତ ରହିଲା ନାହିଁ । ଯେଉଁ ଭରତ ସମସ୍ତ ସମୟ ଭଗବାନଙ୍କର ଲୀଳା କୀର୍ତ୍ତନ, ଶ୍ରବଣ ଓ ପୂଜା ଆରାଧନା କରି ଜୀବନ ଅତିବାହିତ କରୁଥିଲେ, ସେ ପୁଣି ଗୋଟିଏ ହରିଣ ଶାବକର ମମତାରେ ଆବଦ୍ଧ ହୋଇ ମୃତ୍ୟୁ ବ୍ୟକ୍ତିପରି ଭଗବାନଙ୍କର ଧ୍ୟାନ ଆରାଧନା ଚିନ୍ତା ଭୁଲିଗଲେ ଏବଂ ଆସକ୍ତି ସଂସ୍ପର୍ଶରେ ଆସି ଅଧଃପତିତ ହେଲେ । ହାୟ ! ଭରତ ଏହିପରି ଅନୁଶୋଚନା କରି କରି ମୃଗମାନଙ୍କର ସଙ୍ଗ ତ୍ୟାଗକଲେ ଏବଂ ତୀର୍ଥ ଜଳରେ ଜୀବନ ବିସର୍ଜନ ଦେଇ ମୃଗ ଜନ୍ମରୁ ମୁକ୍ତ ହେଲେ । ମୃଗ ଜନ୍ମ ପରେ ଭରତ ଅଙ୍ଗିରସ-ଗୋତ୍ରୀୟ ଜନୈକ ବ୍ରାହ୍ମଣର ପୁତ୍ର ରୂପରେ ଜାତ ହେଲେ । ପୂର୍ବ ଜନ୍ମମାନଙ୍କର ସ୍ମୃତି ତାଙ୍କ ମନରେ ପୂର୍ବପରି ଜାଗ୍ରତ ଥାଏ; ତେଣୁ ସଙ୍ଗଦୋଷଜନିତ ମୋହ ତାଙ୍କ ମନରେ ଯେପରି ଜାତ ନ ହୁଏ, ସେଥିପ୍ରତି ସତର୍କତା ଅବଲମ୍ବନ କରି, ଭଗବାନଙ୍କର ପାଦପଦ୍ମରେ ସଦାସର୍ବଦା ମନେ ମନେ ଧ୍ୟାନକରି ନିଜକୁ ପାଗଳ, ଜଡ଼, ଅନ୍ଧ ଓ ବଧିର ରୂପରେ ପରିଚିତ କରି କାଳ ଯାପନ କରିବାକୁ ଲାଗିଲେ ।

ବ୍ରାହ୍ମଣ ବଂଶରେ ଜାତ ହୋଇଥିଲେ ମଧ୍ୟ ଭରତଙ୍କର ବ୍ରାହ୍ମଣ ଜନୋଚିତ ଶିକ୍ଷା ଗ୍ରହଣରେ ଆଦୌ ଆଗ୍ରହ ନଥିଲା । ସମସ୍ତଙ୍କ ଦ୍ୱାରା ସେ ଏକପ୍ରକାର ଅବହେଳିତ ହୋଇ ରହୁଥିଲେ । ସେ ଭୂତଳରେ ଶୟନ କରୁଥିଲେ, ଶରୀରରେ ତୈଳ ମର୍ଦ୍ଦନ କରୁନଥିଲେ, କି ଉପଯୁକ୍ତ ଭାବରେ ସ୍ନାନ କରୁ ନଥିଲେ; ଫଳରେ ସବୁବେଳେ ତାଙ୍କର ଶରୀର ଧୂଳିଧୂସରିତ ହୋଇଥାଏ । ସେ ସର୍ବଦା ଛିନ୍ନ ମଳିନ ଅପ୍ରଶସ୍ତ ବସ୍ତ୍ରଟିଏ ଯାହା ପରିଧାନ କରୁଥାନ୍ତି । ତାଙ୍କର ସ୍କନ୍ଧରେ ଯଜ୍ଞୋପବୀତ ଲମ୍ବମାନ ଥିବାରୁ ଜନସାଧାରଣ ତାଙ୍କୁ ଯାହା ବ୍ରାହ୍ମଣ ବୋଲି ଚିହ୍ନୁଥିଲେ । ଯେ ଯାହା ଆଦେଶ କରୁଥିଲା, ସେ ତାହା କରୁଥିଲେ ଏବଂ ସେହିସବୁ କାର୍ଯ୍ୟର ବିନିମୟରେ ମୁଠାଏ ଆହାର ବ୍ୟତୀତ ସେ ଆଉ କିଛି ଗ୍ରହଣ କରୁ ନଥିଲେ । ଅବହେଳିତ ଜୀବନରେ ସେ ଯେଉଁ ଶାଗପେଜ ପାଉଥିଲେ, ତାକୁ ଅମୃତ ବୋଲି ଭାବି ପରମ ଶାନ୍ତି ଓ ସନ୍ତୋଷରେ ଗ୍ରହଣ କରି ସ୍ୱଚ୍ଛନ୍ଦରେ ବାସ କରୁଥିଲେ ।

ଥରେ ଚୋରମାନଙ୍କର ଦଳପତି ଅପୁତ୍ରକ ଥିବାରୁ ପୁତ୍ରଲାଭ କରିବା ନିମନ୍ତେ ଭଦ୍ରକାଳୀଙ୍କ ନିକଟରେ ପୂଜା ଓ ବଳି ବ୍ୟବସ୍ଥା କରିଥାଏ; ମାତ୍ର ଶେଷ ମୁହୂର୍ତ୍ତରେ ବଳି ଦେବା ନିମନ୍ତେ ଧରି ଆଣିଥିବା ବ୍ୟକ୍ତିଟି କୌଣସି ମତେ ପଳାୟନ କରିବାରୁ ଅନୁଚରମାନଙ୍କୁ ପଳାଇ ଯାଇଥିବା ଲୋକଟିକୁ ଖୋଜି ଧରିଆଣିବାକୁ ଚୋରଦଳପତି ପଠାଇଲା । କିନ୍ତୁ ସେମାନେ ପଳାତକର କୌଣସି ସନ୍ଧାନ ପାଇପାରିଲେ ନାହିଁ । ହତାଶ ହୋଇ ଫେରୁଥିବା ବେଳେ ସେମାନେ ଭରତଙ୍କୁ ଗୋଟିଏ ସ୍ଥାନରେ ବସିଥିବାର ଦେଖିଲେ, ଭରତଙ୍କର ଶରୀରରେ ସୁଲକ୍ଷଣମାନ ପରିଦୃଷ୍ଟ ହେଉଥିବାରୁ ଚୋରମାନେ ତାଙ୍କୁ ବଳି ପାଇଁ ଉପଯୁକ୍ତ ବୋଲି ଭାବି, ତାଙ୍କର ହାତଗୋଡ଼କୁ ବାନ୍ଧି ନେଇ ଆସିଲେ । ଭଦ୍ରକାଳୀ ମନ୍ଦିରରେ ଭରତଙ୍କୁ ସ୍ନାନ କରାଇ, ନୂତନ ବସ୍ତ୍ର ପିନ୍ଧାଇ, ଗନ୍ଧ ମାଲ୍ୟ, ତିଳକ, ଚନ୍ଦନ ଦ୍ୱାରା ତାଙ୍କୁ ଭୂଷିତ କରି, ଧୂପ, ଦୀପ, ଖଇ, ଫୁଲମାଳ ଆଦି ପୂଜା ସାମଗ୍ରୀ ଏବଂ ହିଂସାକାଳୀନ ବିଧାନ ଅନୁସାରେ ଉଚ୍ଚ-ସ୍ୱରରେ ଚିତ୍ତଉନ୍ମାଦକ ଗୀତ ବାଦ୍ୟ ଧ୍ୱନି କରି ଭଦ୍ରକାଳୀଙ୍କ ସମ୍ମୁଖରେ ଭରତଙ୍କୁ ନେଇ ଚୋରମାନେ ବସାଇଲେ । ପୂଜା ଆରମ୍ଭ ହେଲା ଏବଂ ପୂଜକ ଯେତେବେଳେ ବଳି ଦେବା ନିମନ୍ତେ ରୁଧିର ମନ୍ତ୍ରରେ ଭଦ୍ର-

କାଳୀଙ୍କର ଆବାହନ କରି କାଳୀଙ୍କର ମନ୍ତ୍ରରେ ଅଭିମନ୍ତ୍ରିତ ଏକ ସୁତୀକ୍ଷ୍ଣ ଖଡ୍‌ଗକୁ ଉତ୍ତୋଳିତ କରିବା ମାତ୍ରେ ଏକ ଅଦ୍ଭୁତ ଘଟଣା ଘଟିଲା ।

ଅତ୍ୟନ୍ତ ବିପଦ ସମୟରେ ମଧ୍ୟ ମହତ୍ ପୁରୁଷମାନଙ୍କୁ ହତ୍ୟା କରିବା ନିଷେଧ ଥିବାବେଳେ, ରଜ ଓ ତମଗୁଣ ପ୍ରଭାବରେ ପରି-ଚାଳିତ ଧନଗର୍ବୀ, ଉଚ୍ଛୃଙ୍ଖଳ, ହିଂସାପରାୟଣ, ଅସତ୍‌ପଥଗାମୀ ସେହି ଚୋରମାନଙ୍କ ଦ୍ୱାରା ସାକ୍ଷାତ ବ୍ରହ୍ମସ୍ୱରୂପ ଓ ବ୍ରହ୍ମର୍ଷିଙ୍କ ପୁଣି ସକଳ ଜୀବର ହିତାକାଙ୍‌କ୍ଷୀ ବନ୍ଧୁ, ଅଜାତଶତ୍ରୁ ଏବଂ ମହାପୁରୁଷରୂପୀ ଭରତଙ୍କୁ ହତ୍ୟାକରାଯିବାର ଦୃଶ୍ୟ ଓ ପରିବେଶ ଅତ୍ୟନ୍ତ ଦାରୁଣ ଓ ହୃଦୟବିଦାରକ ଥିଲା । ଦେବୀ ଭଦ୍ରକାଳୀ ମଧ୍ୟ ଏହି ଦାରୁଣ ଦୃଶ୍ୟକୁ ସହ୍ୟ କରିପାରିଲେ ନାହିଁ । ସେ ହଠାତ୍ ନିଜର ନିର୍ଜୀବ ପ୍ରତିମା ମଧ୍ୟରୁ ବହିର୍ଗତ ହୋଇ କ୍ରୋଧ ଓ ଅସହିଷ୍ଣୁତାର ଆବେଗରେ ଭୟଙ୍କର ରୂପ ଧାରଣ କରିବା ପୂର୍ବକ ବିକଟ ଅଟ୍ଟହାସ୍ୟ କରି ନିଜର ଆସ୍ଥାନମଣ୍ଡପରୁ ଲମ୍ଫ ପ୍ରଦାନ କରି ନିଜର ଖଡ୍‌ଗରେ ଚୋରମାନଙ୍କର ମସ୍ତକ ଛେଦନ କଲେ ଏବଂ ସେମାନଙ୍କର ରୁଧିର ପାନ କରି ଆନନ୍ଦମତ୍ତତାରେ ନର ମୁଣ୍ଡକୁ କନ୍ଦୁକ ପରି ଫିଙ୍ଗାଫିଙ୍ଗି କରି ନୃତ୍ୟ କରିବାକୁ ଲାଗିଲେ । ମହାପୁରୁଷଙ୍କ ପ୍ରତି ଏହିପରି ମରଣାନ୍ତକ ଦାରୁଣ ଅବିଚାର କରାଗଲା-ବେଳେ ସ୍ୱୟଂଭଗବାନ ସେମାନଙ୍କର ସୁରକ୍ଷାର ଦାୟିତ୍ୱ ବହନ କରିଥାନ୍ତି । ଭଦ୍ରକାଳୀଙ୍କର ଏହି ଆଲୌକିକ କରୁଣା ଫଳରେ ବ୍ରହ୍ମତତ୍ତ୍ୱଦର୍ଶୀ ଭରତ ନିଶ୍ଚିତ ମୃତ୍ୟୁରୁ ରକ୍ଷା ପାଇଗଲେ ।

ଏହି ଘଟଣାର କିଛିଦିନ ପରେ, ଥରେ ସିନ୍ଧୁ ଦେଶର ରାଜା ରହୂଗଣ ଶିବିକାରେ ଆରୋହଣ କରି ମହର୍ଷି କପିଳଙ୍କର ଆଶ୍ରମକୁ ଯାଉଥାନ୍ତି । ଶିବିକା ବହନକାରୀଙ୍କର ଦଳପତି ଶିବିକା ବହନରେ ସାହାଯ୍ୟ କରିବା ନିମନ୍ତେ ଅନ୍ୟ ଲୋକ ଅନ୍ୱେଷଣ କରୁକରୁ ଭରତଙ୍କୁ ଦେଖିବାକୁ ପାଇଲା । ଭରତଙ୍କୁ ହୃଷ୍ଟପୁଷ୍ଟ ଯୁବକ ବୋଲି ଦେଖି ଶିବିକା ବହନ କରିବା ପାଇଁ ଉପଯୁକ୍ତ ବୋଲି ଭାବି ସେ ତାଙ୍କୁ ବଳପୂର୍ବକ ଧରି ଆଣି ରାଜାଙ୍କ ଶିବିକା ବହନରେ ନିୟୋଜିତ କଲା । ଶିବିକା ବହନ କାର୍ଯ୍ୟରେ ଭରତଙ୍କର ଅଭିଜ୍ଞତା ନଥିଲା; ତେଣୁ

ସହଯୋଗୀ ବାହକଙ୍କ ସହିତ ତାଳଦେଇ ସେ ଚାଲିବାକୁ ଅକ୍ଷମ ହେଲେ । ବିଶେଷ କରି କାଳେ ନିଜ ପାଦର ଚାପରେ ପ୍ରାଣୀହିଂସା ଘଟିବ ସେଥି ପାଇଁ ଭରତ ରାସ୍ତାକୁ ଭଲକରି ଚାହିଁ ପାଦ ପକାଉଥିବାରୁ ଅନ୍ୟ ବାହକଙ୍କର ପଦଚାଳନାରେ ବୈଷମ୍ୟ ଘଟୁଥିଲା ; ଫଳରେ ଶିବିକାର ଅସମାନ ଗତିରେ ରାଜା ବିରକ୍ତ ହେଲେ ଏବଂ କହିଲେ, 'ଏ କ'ଣ ହେଉଛି ? ଶିବିକାକୁ ଏପରି ନେଉଛ କାହିଁକି ? ଭଲଭାବରେ ଚାଲ ।'

ରାଜାଙ୍କର ଆକ୍ଷେପ ଶୁଣି ବାହକମାନେ କହିଲେ, 'ମହାରାଜ, ଆମର କୌଣସି ତ୍ରୁଟି ନାହିଁ । ଆମେ ଠିକ ଚାଲୁଛୁ; କିନ୍ତୁ ଏହି ଯେଉଁ ନୂତନ ବ୍ୟକ୍ତିଟିକୁ ନିଯୁକ୍ତ କରାଗଲା, ସେ ଆଦୌ ଆମସହ ସମତା ରକ୍ଷାକରି ଚାଲିପାରୁ ନାହିଁ । ସେଥିପାଇଁ ଏପରି ହେଉଛି ।'

ପ୍ରଚ୍ଛନ୍ନ ବ୍ରହ୍ମତେଜର ଅଧିକାରୀ ଭରତଙ୍କୁ ପ୍ରକୃତ ପକ୍ଷରେ ଚିହ୍ନି ନପାରି ଏବଂ ତାଙ୍କୁ ଜଣେ ସାଧାରଣ ଶିବିକାବହନକାରୀ ବୋଲି ଭ୍ରମ କରି ରାଜା ରହୂଗଣ ଅଟ୍ଟହାସରେ କହିଲେ, "ଆରେ ତୋର ଶରୀର ପୁଷ୍ଟ ହୋଇନାହିଁ ବୋଲି ଏପରି ଚାଲୁଛୁ ନା ବହୁତ ବାଟ ଶିବିକା ବହନ କରି ଚାଲିଲୁ ବୋଲି କ୍ଳାନ୍ତ ହୋଇ ପଡ଼ିଲୁ, ନା ତୋର ବାର୍ଦ୍ଧକ୍ୟ ଆସିଗଲା ? ହଇରେ ।"

ଭରତ କିନ୍ତୁ ଏ କଥାର କିଛି ଉତ୍ତର ଦେଲେ ନାହିଁ । ପୂର୍ବପରି ଶିବିକା ବହନ କରି ଚାଲିଥାନ୍ତି । ଶିବିକାର ଅଯଥା ଆନ୍ଦୋଳନରେ ରାଜା ବିରକ୍ତ ହୋଇ ପୁନର୍ବାର କହିଲେ, 'ଆରେ, ତୁ କ'ଣ ଜୀବନ୍ମୃତ ନା କଣ ଯେ ମୋର ଆଦେଶକୁ ଅବମାନନା କରି ତୁ ଚାଲୁଛୁ ? ମରଣକୁ ତୋର ଭୟ ନାହିଁ କିରେ ? ଶିବିକାର ଢ଼ର ତୁ ବହନ କରିପାରୁନାହୁଁ କିରେ ?'

ଭରତ ନିଜର ମୌନବ୍ରତ ଭଙ୍ଗକରି ରାଜାଙ୍କ କଥାର ଉତ୍ତର ଦେଇ କହିଲେ ; କିଏ ବା ତାକୁ ବହନ କରୁଛି ? କି ପଥ, କିଏ ବା ଚାଲୁଛି ? ନିଜର ଶରୀରକୁ ଲକ୍ଷ୍ୟ କରି ଆପଣ ଏକଥା ସବୁ ହୁଏ ତ କହୁଛନ୍ତି, ଆତ୍ମା ପାଇଁ ନୁହେଁ । ଜ୍ଞାନୀମାନେ ଏପରି କେବେ କହନ୍ତି ନାହିଁ । ଦେହସର୍ବସ୍ୱ ହୋଇ ଯେଉଁମାନେ କାଳଯାପନ କରୁ

ଅଛନ୍ତି, ସେମାନଙ୍କୁ ସ୍ଥୂଳତ୍ୱ, କୃଶତା, ବ୍ୟାଧି, କ୍ଷୁଧା, ତୃଷ୍ଣା, କ୍ଲାନ୍ତି, ଭୟ, କଳହ, କ୍ରୋଧ ଏବଂ ଅଭିମାନ ଆଦିର ଚିନ୍ତା ବିଭ୍ରାନ୍ତ କରିଥାଏ; କିନ୍ତୁ ମୋର ଦେହାଭିମାନ ନ ଥିବାରୁ ସେସବୁ ମୋତେ ସ୍ପର୍ଶ କରିନାହିଁ। ଜୀବନ୍ମୃତ ବୋଲି ମୋତେ ଯାହା ଆପଣ କହିଲେ, ହଁ କଥାଟା ସତ । ମରଣ କାହାକୁ ସ୍ପର୍ଶ ନ କରିଛି ବା ନ କରିବ ? ଜୀବ ମାତ୍ରେ ମରଣଶୀଳ । ଆପଣ ନିଜକୁ ପ୍ରଭୁ ଓ ମୋତେ ଭୃତ୍ୟ ବୋଲି ଭାବି ଯାହା କହିଲେ, ତାହା ବୁଝିପାରିଲି ନାହିଁ । କିଏ ପ୍ରଭୁ ? କିଏ ସେବକ ? ମନୁଷ୍ୟ କ'ଣ ମନୁଷ୍ୟର ପ୍ରଭୁ ହୋଇପାରେ ? ଶରୀରରେ କ୍ଲାନ୍ତି ଅଛି, ମୃତ୍ୟୁ ଅଛି, ପ୍ରଭୁ କେହି ଥାଇପାରେ, କିନ୍ତୁ ଆତ୍ମାର କ୍ଲାନ୍ତି ନାହିଁ, ମୃତ୍ୟୁ ନାହିଁ, ନାହିଁ ପ୍ରଭୁ ସେବକର ଭାବ । ସେଥିପାଇଁ ଆପଣଙ୍କ ପ୍ରଦତ୍ତ ଆଦେଶ କିମ୍ବା ଉପଦେଶ ମୋର କୌଣସି ଉପକାରରେ ଲାଗିବ ନାହିଁ, କି ମୋର ପ୍ରୟୋଜନ ସିଦ୍ଧ କରିବ ନାହିଁ । ମୁଁ ଜଣେ ପାଗଳ ଓ ଜଡ଼ ହେଲେ ବି ଭଗବାନଙ୍କ କରୁଣାରୁ ବ୍ରହ୍ମଭାବ ପ୍ରାପ୍ତ ହୋଇଅଛି ।'

ଜଣେ ଶିବିକାବହନକାରୀଠାରୁ ଏପରି ଗମ୍ଭୀର ତତ୍ତ୍ୱପୂର୍ଣ୍ଣ କଥାମାନ ଶୁଣି ରାଜା ରହୂଗଣ ବିସ୍ମିତ ହୋଇଗଲେ । ପରମୁହୂର୍ତ୍ତରେ ଶିବିକାରୁ ଅବତରଣ କରି ଜଣେ ମହାପୁରୁଷଙ୍କୁ ଚିହ୍ନି ନପାରି ଶିବିକା ବହନରେ ନିଯୁକ୍ତ କରାଯାଇ ତାଙ୍କ ପ୍ରତି ପ୍ରଭୂତ ଅବମାନନା କରାଯାଇ ଅଛି ଭାବି ରାଜା ଅନୁଶୋଚନାର ବଶବର୍ତ୍ତୀ ହୋଇ ଭରତଙ୍କ ପାଦରେ ମସ୍ତକ ଲଗାଇ ପ୍ରଣାମ କରି କହିଲେ, 'ହେ ମହାପୁରୁଷ, ମୋତେ କ୍ଷମା କରନ୍ତୁ । ବ୍ରହ୍ମଉପବୀତ ଆପଣ ଧାରଣ କରିଥିବାରୁ ଆପଣଙ୍କୁ ବ୍ରାହ୍ମଣ ବୋଲି ଜାଣୁଅଛି; ମାତ୍ର ଆପଣ କିଏ ଏବଂ କାହିଁକି ଏପରି ପ୍ରଚ୍ଛନ୍ନ ଭାବରେ ଜନସାଧାରଣଙ୍କ ମଧ୍ୟରେ ବିଚରଣ କରୁଅଛନ୍ତି ? ଆପଣ ଦତ୍ତାତ୍ରେୟ କିମ୍ବା କପିଳ ମହର୍ଷି ନୁହଁନ୍ତି ତ ? ମୁଁ ଦେବତାମାନଙ୍କ ଅପେକ୍ଷା ବ୍ରାହ୍ମଣମାନଙ୍କୁ ଯଥେଷ୍ଟ ଭୟ କରିଥାଏ । ଆପଣଙ୍କୁ ଚିହ୍ନି ନପାରି ଏପରି ହୀନ କାର୍ଯ୍ୟରେ ନିୟୋଜିତ କରି ଆପଣଙ୍କ ପ୍ରତି ଯଥେଷ୍ଟ ଅବମାନନା କରିଅଛି, ତେଣୁ ମୋର ଦୋଷ ମାର୍ଜନା କରି ଆପଣଙ୍କର ପ୍ରକୃତ ପରିଚୟ ପ୍ରଦାନ କରନ୍ତୁ । ରାଜପଦର ଗର୍ବ ମୋର ବିବେକ ଶକ୍ତିକୁ ଦୁର୍ବଳ କରିଦେବା ସଙ୍ଗେ ସଙ୍ଗେ କ୍ଷମତା-

ମୋହରେ ମୋତେ ଅଭିମାନୀ କରିଅଛି । ସେହି ଅଭିମାନଜନିତ ପ୍ରମତ୍ତତାରେ ମୁଁ ଆପଣଙ୍କ ପରି ମହାପୁରୁଷଙ୍କର ଅମର୍ଯ୍ୟାଦା କରିଅଛି । ମୋ ପ୍ରତି କରୁଣା ପ୍ରକାଶ କରି ସାଧୁପୁରୁଷଙ୍କ ପ୍ରତି କରିଥିବା ଅବଜ୍ଞା-ଜନିତ ପାପରୁ ମୋତେ ଉଦ୍ଧାର କରନ୍ତୁ ।'

ରାଜାଙ୍କୁ ଉପଦେଶ ପ୍ରଦାନ କରିବା ନିମନ୍ତେ ବ୍ରହ୍ମଦର୍ଶୀ ଭରତ କହିଲେ, 'ମହାରାଜ, ମନ ଅତ୍ୟନ୍ତ ବଳବାନ ଏବଂ ସେହି ମନହିଁ ଜୀବକୁ ଧର୍ମ ବା ଅଧର୍ମ ଆଡ଼କୁ ଘେନିଯାଏ । ମନ ହିଁ ସୁଖ ଓ ଦୁଃଖର କାରଣ । ମନର ବୃତ୍ତି ଏକାଦଶ ପ୍ରକାର, ତାହା ମଧ୍ୟରେ ପାଞ୍ଚଗୋଟି କର୍ମେନ୍ଦ୍ରିୟ ଓ ପାଞ୍ଚଗୋଟି ଜ୍ଞାନେନ୍ଦ୍ରିୟ ଏବଂ ଅନ୍ୟଟି ଅହଙ୍କାର । ରୂପ, ରସ, ଗନ୍ଧ, ସ୍ପର୍ଶ ଓ ଶବ୍ଦ—ଏହି ପାଞ୍ଚଗୋଟି ଜ୍ଞାନେନ୍ଦ୍ରିୟର ବିଷୟ; ମଳମୂତ୍ରାଦି ତ୍ୟାଗ, ସମ୍ଭୋଗ, ଗମନ, ଭାଷଣ ଓ ଅର୍ପଣ ପ୍ରତ୍ୟର୍ପଣ ଆଦି କର୍ମେନ୍ଦ୍ରିୟର ଅନ୍ତର୍ଭୁକ୍ତ ବିଷୟ । ଶରୀରକୁ କେନ୍ଦ୍ର କରି ଜାତ ହେଉଥିବା 'ମୁଁ', 'ମୋର' ଆଦି ଭାବନାକୁ ଅହଙ୍କାରର ଅନ୍ତର୍ଭୁକ୍ତ କରାଯାଇଅଛି । ଏହି ଏକାଦଶ ପ୍ରକାର ବୃତ୍ତି ମନର ବିକାର ମାତ୍ର ଏବଂ ଦ୍ରବ୍ୟ, ସ୍ୱଭାବ, ସଂସ୍କାର, କର୍ମ ଏବଂ କାଳ ଅନୁସାରେ ଏହି ଏକାଦଶ ବୃତ୍ତି ବହୁ ଭାବରେ ପ୍ରକଟିତ ହୋଇଥାଏ । ଭଗବାନ ସର୍ବବ୍ୟାପୀ, ଜଗତର ଆଦି କାରଣ, ସ୍ୱୟଂ ସମ୍ପୂର୍ଣ୍ଣ, ସ୍ୱୟଂ ପ୍ରକାଶ, ପ୍ରତ୍ୟକ୍ଷ, ସେ ଅଜନ୍ମା, ସେ ବ୍ରହ୍ମାଦି ଦେବତା-ମାନଙ୍କର ଅଧୀଶ୍ୱର ଏବଂ ମାୟାଶକ୍ତିଦ୍ୱାରା ସମସ୍ତ ଜୀବଙ୍କ ହୃଦୟରେ ନିତ୍ୟ ବିରାଜମାନ କରିଥାନ୍ତି । ବାୟୁ ଯେପରି ସର୍ବତ୍ର ରହିଅଛି, ଅନୁରୂପ ଭାବରେ ଭଗବାନ ସର୍ବତ୍ର ବିଦ୍ୟମାନ ଅଛନ୍ତି । ଯେତେବେଳ ପର୍ଯ୍ୟନ୍ତ ଜୀବ ସମସ୍ତ ଆସକ୍ତିକୁ ତ୍ୟାଗ କରି କାମକ୍ରୋଧାଦି ଷଡ଼ରିପୁକୁ ଜୟ କରି ଏହି ଆତ୍ମତତ୍ତ୍ୱକୁ ଉପଲବ୍ଧି ନକରିଛି, ସେତେବେଳ ପର୍ଯ୍ୟନ୍ତ ସେ ସଂସାର-ଚକ୍ରରେ ଭ୍ରମଣ କରୁଥିବ । ମନ ହିଁ ମୋହ, ରାଗ, ଆସକ୍ତି, ଲୋଭ, ମମତା ଏବଂ ଶତ୍ରୁତାକୁ ସୃଷ୍ଟି କରିଥାଏ । ମନ ଅତ୍ୟନ୍ତ ବଳବାନ ଶତ୍ରୁ ଏବଂ ମନପ୍ରତି ଆବଶ୍ୟକୀୟ ସାବଧାନତା ଅବଲମ୍ବନ ନ କରିବା ଫଳରେ, ତାହା ଆପଣଙ୍କଠାରେ ଅତ୍ୟନ୍ତ ପ୍ରଭାବଶାଳୀ ହୋଇ ଉଠିଛି । ସେଥିପାଇଁ ପରମ ଭକ୍ତି ସହକାରେ ଶ୍ରୀଗୁରୁ ସ୍ୱରୂପ ଭଗବାନ ହରିଙ୍କର ଚରଣାରବିନ୍ଦକୁ ଉପାସନ କରି ମନକୁ ସଂଯତ କରନ୍ତୁ । ତାହା ଆପଣଙ୍କ ପ୍ରତି କଲ୍ୟାଣପ୍ରଦ ହେବ ।'

ମନୁଷ୍ୟର ଶରୀର ପୃଥିବୀର ବିକାର ମାତ୍ର । ମୋର ଯେଉଁ ଶରୀର ଉପରେ କାଷ୍ଠ ନିର୍ମିତ ଶିବିକା-ଦଣ୍ଡ ରହିଥିଲା ଏବଂ ଶିବିକା ମଧ୍ୟରେ ଯେଉଁ ଶରୀରଟି ରହିଥିଲା, ଏ ସବୁ ମଧ୍ୟ ପୃଥିବୀର ବିକାରରୁ ସୃଷ୍ଟି ହୋଇଅଛି । ଏହି ଶରୀର ମାଟିରୁ ଆସିଅଛି ଏବଂ ଦିନେ ମାଟିରେ ମିଶିଯିବ । ଆପଣ ପଦଗର୍ବରେ ନଶ୍ୱର ଏହି ମରଣଶୀଳ ଶରୀରକୁ 'ଆତ୍ମା' ବୋଲି ଭ୍ରମ କରି 'ମୁଁ' ସିନ୍ଧୁରାଜା ବୋଲି ଭାବି ଅଯଥାରେ ଅହଙ୍କାର ପୋଷଣ କରିଅଛନ୍ତି । ଆପଣ ନିଜକୁ ରାଜା ଓ ଦୟାଶୀଳ ପ୍ରଜାପାଳକ ବୋଲି ଗର୍ବ କରୁଥିଲେ ମଧ୍ୟ ଏହି ଗରିବ ବ୍ୟକ୍ତିମାନଙ୍କୁ ବିନା ପାରିଶ୍ରମିକରେ ଶିବିକାବହନ ପରି କଷ୍ଟସାଧ୍ୟ କାର୍ଯ୍ୟରେ ନିୟୋଜିତ କରି ନିଷ୍ଠୁରତାର ପରିଚୟ ଦେଇଅଛନ୍ତି । ଆପଣଙ୍କ ମନରୁ ଆତ୍ମାଭିମାନ ରୂପକ ମୋହ ଅଚିରେ ଦୂର ହେବା ଉଚିତ ।'

'ମୁଁ ପୂର୍ବେ ଜଣେ ରାଜା ଥିଲି, ସେତେବେଳେ ମୋର ନାମ ଥିଲା ଭରତ । ମୁଁ ଐହିକ ଓ ପାରଲୌକିକ ସମସ୍ତ ପ୍ରକାରର ବିଷୟ ବନ୍ଧନରୁ ନିଜକୁ ମୁକ୍ତ କରି ଭଗବାନଙ୍କର ଆରାଧନାରେ ନିଜକୁ ଉତ୍ସର୍ଗ କରିଥିଲି; କିନ୍ତୁ ଦୈବବଶତଃ ଏକ ମୃଗଶାବକ ପ୍ରତି ଦୁର୍ବଳତା ପ୍ରକାଶ କରି ପରଜନ୍ମରେ ମୃଗ ରୂପରେ ଜନ୍ମ ହୋଇଥିଲି । ଫଳରେ ମୋର ପାରମାର୍ଥିକ ଜୀବନରେ ପ୍ରତିବନ୍ଧକ ସୃଷ୍ଟି ହୋଇଥିଲା । ମୃଗ ଜନ୍ମ ପରେ ପୁନର୍ବାର ମନୁଷ୍ୟ ଜନ୍ମ ଲାଭ କରିଥିବାରୁ ଜନସମ୍ପର୍କରୁ ନିଜକୁ ଦୂରେଇ ରଖି ନିଃସଙ୍ଗ ଭାବରେ ଆତ୍ମଗୋପନ କରି ବିଚରଣ କରୁଅଛି । ମହତ୍ ପୁରୁଷଙ୍କର ସତ୍ସଙ୍ଗ ଲାଭ କରିଥିବା ଜ୍ଞାନରୂପକ ଖଡ୍ଗରେ ସାଂସାରିକ ସର୍ବ ପ୍ରକାରର ମୋହ ବନ୍ଧନକୁ ଛେଦନ କରି ଭକ୍ତ ସହକାରେ ଭଗବାନଙ୍କର ଅମୃତ ତୁଲ୍ୟ ଲୀଳାଚରିତ ଶ୍ରବଣ ଓ କୀର୍ତ୍ତନ କଲେ ଆପଣ ଭଗବାନଙ୍କର ଆଶୀର୍ବାଦ ଲାଭର ଯୋଗ୍ୟ ହେବେ । ଆପଣ ସାଂସାରିକ ମାୟା ଦ୍ୱାରା ପରିଚାଳିତ ହୋଇ ଏହି ସଂସାର ରୂପକ ଘୋର ଅରଣ୍ୟ ମଧ୍ୟରେ ପ୍ରବେଶ କରିଅଛନ୍ତି; ତେଣୁ ହିଂସା-ଦ୍ୱେଷ-ଶୂନ୍ୟ ହୋଇ ଓ ସମସ୍ତଙ୍କ ସହିତ ବନ୍ଧୁ ମନୋଭାବ ପୋଷଣ କରି ଅନାସକ୍ତ ଚିତ୍ତରେ ଭଗବାନ ହରିଙ୍କର ସେବା କଲେ, ତଦ୍ଦ୍ୱାରା ଲବ୍ଧ ଭଗବତ୍ ଜ୍ଞାନ ରୂପକ ଶାଣିତ ଖଡ୍ଗ ସାହାଯ୍ୟରେ ଆପଣ ସଂସାର ଅରଣ୍ୟରୁ ଉତ୍ତୀର୍ଣ୍ଣ ହେବେ ।'

ଏହିପରି ଭାବରେ ବ୍ରହ୍ମଦର୍ଶୀ ଭରତ ରାଜା ରହୂଗଣଙ୍କୁ ଆତ୍ମତତ୍ତ୍ୱ ସମ୍ପର୍କରେ ନାନାବିଧ ଉପଦେଶ ପ୍ରଦାନ କରିଥିଲେ । ଭରତଙ୍କଠାରୁ ସେହି ଉପଦେଶ ଶ୍ରବଣ କରି ରାଜା ରହୂଗଣଙ୍କ ମନରୁ ଆତ୍ମାଭିମାନ ଦୂର ହୋଇଥିଲା ଓ ତାଙ୍କର ଚିତ୍ତ ପ୍ରଶାନ୍ତ ହୋଇଥିଲା । ସେ ଭରତଙ୍କର ଚରଣଯୁଗଳ ବନ୍ଦନା କରି ନିଜର ଅସୀମ କୃତଜ୍ଞତା ପ୍ରକାଶ କରିଥିଲେ ।

ପରୀକ୍ଷିତଙ୍କ ନିକଟରେ ମହାମନ୍ତ ଭରତଙ୍କ ଚରିତ ଉପସଂହାର କରି ଶୁକଦେବ କହିଲେ, 'ମହାରାଜ, ଜୀବମାନେ ଭଗବାନଙ୍କର ମାୟାର ବଶବର୍ତ୍ତୀ ହୋଇ ଅର୍ଥଲୋଲୁପ ବଣିକଙ୍କ ପରି ଶ୍ମଶାନ ସଦୃଶ ଅକଲ୍ୟାଣକର ସଂସାର ରୂପକ ମହାଅରଣ୍ୟ ମଧ୍ୟରେ ପ୍ରବେଶ କରି ଅସୀମ ଦୁଃଖର ସମ୍ମୁଖୀନ ହୋଇଥାନ୍ତି ଓ ସର୍ବସନ୍ତାପ-ହରଣକାରୀ ଭକ୍ତିମାର୍ଗର ସନ୍ଧାନ ପାଇ ପାରନ୍ତି ନାହିଁ । ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା, ତ୍ୱକ—ଏହି ପଞ୍ଚ ଜ୍ଞାନେନ୍ଦ୍ରିୟ ମନ ରୂପକ ଦସ୍ୟୁର କବଳିତ ହୋଇ କୃତକର୍ମର ଦାରୁଣ ଫଳ ଭୋଗ କରିଥାନ୍ତି । ଦସ୍ୟୁମାନେ ଯେପରି ଅରଣ୍ୟଗାମୀ ପଥିକଙ୍କର ସର୍ବସ୍ୱ ହରଣ କରି ନିଅନ୍ତି, ସେହିପରି ଇନ୍ଦ୍ରିୟ ରୂପୀ ଦସ୍ୟୁମାନେ ଦର୍ଶନ, ସ୍ପର୍ଶ, ଶ୍ରବଣ, ଆସ୍ୱାଦନ, ଆଘ୍ରାଣ, ସଂକଳ୍ପ ଓ ଅଧ୍ୟବସାୟ ଦ୍ୱାରା ଅଜିତେନ୍ଦ୍ରିୟ ବ୍ୟକ୍ତିମାନଙ୍କର ବହୁ କଷ୍ଟ ଉପାର୍ଜିତ ପାରଲୌକିକ ଧର୍ମର ଉପଯୋଗୀ ଧନସମୂହକୁ ଅପହରଣ କରି ନେଉଅଛନ୍ତି । ଏହି ସଂସାର-ଅରଣ୍ୟ ମଧ୍ୟରେ ପତ୍ନୀ, ପରିବାର ଆଦି ପୋଷ୍ୟବର୍ଗମାନେ ବ୍ୟାଘ୍ର ଓ ଶୃଗାଳ ତୁଲ୍ୟ ଜୀବର ଅନିଚ୍ଛା ସତ୍ତ୍ୱେ ସମସ୍ତ ସମ୍ପଦ ହରଣ କରି ନେଇଥାନ୍ତି । ଜୀବ ସର୍ବଦା ନିଜର କର୍ତ୍ତବ୍ୟ ପଥ ଭୁଲି ମରୀଚିକା ସଦୃଶ ଧନରତ୍ନ ପଛରେ ସତତ ଧାବମାନ ହୋଇଥାଏ ଏବଂ ଦେବମାୟାରୂପିଣୀ ନାରୀର ଭୁଜଲତା ବନ୍ଧନରେ ଆବଦ୍ଧ ହୋଇ ଓ ସେହି ନାରୀକୁ ସନ୍ତୁଷ୍ଟ କରିବାକୁ ଯାଇ ନିଜର ବିବେକଜ୍ଞାନ ହରାଇବସେ । ଭଗବାନଙ୍କର ଚକ୍ରରୂପୀ ଘୂର୍ଣ୍ଣାୟମାନ କାଳ ସର୍ବଦା ଜାଗ୍ରତ ରହିଅଛି ଓ କାଳହସ୍ତରୁ କାହାରି ନିସ୍ତାର ନାହିଁ । ତେଣୁ ସଂସାର ବିପଦରୁ ଉଦ୍ଧାର ଲାଭ କରିବା ନିମନ୍ତେ ଭକ୍ତିପୂତ ଚିତ୍ତରେ ଭଗବାନଙ୍କର ଧ୍ୟାନ ଓ ଆରାଧନା କରିବା ସର୍ବଦା

କର୍ତ୍ତବ୍ୟ । ଏହି ପ୍ରସଙ୍ଗରେ ବ୍ରହ୍ମଦର୍ଶୀ ଭରତ ନିଜ ଜୀବନ ମଧ୍ୟରେ ଯେଉଁ ଆଦର୍ଶ ପ୍ରତିଷ୍ଠା କରିଯାଇ ଅଛନ୍ତି, ତା'ର ତୁଳନା ନାହିଁ । ଭଗବତ୍ ପ୍ରାପ୍ତି ନିମନ୍ତେ ନିଜର ସମସ୍ତ ସୁଖ, ସମ୍ଭୋଗ, ରାଜ ଐଶ୍ୱର୍ଯ୍ୟ; ପତ୍ନୀ, ପୁତ୍ର ସମସ୍ତଙ୍କୁ ଅକୁଣ୍ଠିତ ଚିତ୍ତରେ ପରିତ୍ୟାଗ କରି ସେ ଭଗବାନଙ୍କୁ ନିରନ୍ତର ଧ୍ୟାନ କରୁଥିଲେ, ଏପରି କି ମୃଗଜନ୍ମ ଲାଭ କରିଥିବା ସମୟରେ ମଧ୍ୟ କିପରି ଭଗବାନଙ୍କୁ ଲାଭ କରିବେ ସେଥିନିମନ୍ତେ ସେ ନିରନ୍ତର ଚେଷ୍ଟା କରୁଥିଲେ । ଭରତଙ୍କର ସେହି ଭଗବତ ପ୍ରାଣ ଓ ଅନନୁକରଣୀୟ ନିଷ୍ଠାର ବାସ୍ତବିକ ତୁଳନା ନାହିଁ; ତୁଳନା ଥାଇ ପାରେ ନା ।'

ଶୁକଦେବ ଏହା କହି ପରୀକ୍ଷିତଙ୍କ ନିକଟରେ ଭରତଙ୍କ ବଂଶ, ଭୂମଣ୍ଡଳର ଭୌଗୋଳିକ ପ୍ରକାଶ, ଭାଗୀରଥୀ ବର୍ଣ୍ଣନା, ଭାରତ ବର୍ଷର ବର୍ଣ୍ଣନା ଓ ତା'ର ଶ୍ରେଷ୍ଠତ୍ୱ, ସୂର୍ଯ୍ୟଙ୍କର ଗତି ବର୍ଣ୍ଣନା, ଚନ୍ଦ୍ର ଓ ଗ୍ରହମାନଙ୍କର ସ୍ଥିତି ଓ ଗତିର ବର୍ଣ୍ଣନା ବିଭିନ୍ନ ନରକର ବିସ୍ତୃତ ବର୍ଣ୍ଣନା କରିଥିଲେ ।

---

# ଅଜାମିଳ ଉପାଖ୍ୟାନ

ମହାରାଜ ପରୀକ୍ଷିତ କହିଲେ, 'ହେ ମୁନିଶ୍ରେଷ୍ଠ, ଜୀବମାନଙ୍କୁ ନରକରେ ନାନା ପ୍ରକାରର ଦାରୁଣ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଥାଏ; କିନ୍ତୁ ସେହିସବୁ ଦୁଃସହ ନରକ ଯନ୍ତ୍ରଣାରୁ ନିଷ୍କୃତି ମିଳିବାର କୌଣସି ଉପାୟ ଥିଲେ, ଦୟାକରି ପ୍ରକାଶ କରନ୍ତୁ ।'

ଶୁକଦେବ କହିଲେ, 'ମହାରାଜ, ମନୁଷ୍ୟ ଯଦି ତା'ର ଜୀବଦଶାରେ ନିଜର କାୟ-ମନ-ବାକ୍ୟରେ କରୁଥିବା ପାପର ଯଥାବିଧି ପ୍ରାୟଶ୍ଚିତ୍ତ ନ କରେ, ତାହା ହେଲେ ମୃତ୍ୟୁ ପରେ ତାକୁ ନିଶ୍ଚିତ ଭାବରେ ନରକ ଦୁଃଖ ଭୋଗ କରିବାକୁ ପଡ଼ିଥାଏ । ବ୍ୟାଧିର ନିରାକରଣ ନିମନ୍ତେ ଯେପରି ବିଭିନ୍ନ ଔଷଧର ବ୍ୟବସ୍ଥା ରହିଛି, ଅନୁରୂପ ଭାବରେ ମୃତ୍ୟୁ ପୂର୍ବରୁ ଆତ୍ମକୃତ ପାପରୁ ନିଷ୍କୃତି ଲାଭ କରିବା ପାଇଁ ଯଥୋଚିତ ପ୍ରାୟଶ୍ଚିତ୍ତ କରିବା ବିଧେୟ । ତେବେ ଯେତେ ପ୍ରାୟଶ୍ଚିତ୍ତ କଲେ ମଧ୍ୟ ପାପର ପରିଣାମରୁ ଜୀବ ସମ୍ପୂର୍ଣ୍ଣ ମୁକ୍ତ ପାଏ ନାହିଁ । ପ୍ରାୟଶ୍ଚିତ୍ତ ବିଧାନ ସତ୍ତ୍ୱେ ଅବିଦ୍ୟା ପ୍ରସୂତ ସଂସ୍କାରବଶତଃ ଜୀବ ପୁନର୍ବାର ସେହି ପାପାଚରଣରେ ଆସକ୍ତ ହୋଇଥାଏ; ତେଣୁ ପ୍ରାୟଶ୍ଚିତ୍ତ ମଧ୍ୟରେ ଥିବା ଜ୍ଞାନକୁ ଉପଲବ୍ଧି କରି ମନକୁ ତଦନୁସାରେ ନିୟମିତ ଭାବରେ ସୁନିୟନ୍ତ୍ରିତ କରିବା ବିଧେୟ । ସେଥିପାଇଁ ଧର୍ମପ୍ରାଣ ଓ ଶ୍ରଦ୍ଧା-ଭକ୍ତିପରିପୂର୍ଣ୍ଣ ବିଦ୍ୱାନ ବ୍ୟକ୍ତିମାନେ ମନର ଏକାଗ୍ରତା, ତପସ୍ୟା, ବ୍ରହ୍ମଚର୍ଯ୍ୟ, ସଂଯମ, ଇନ୍ଦ୍ରିୟ ନିୟନ୍ତ୍ରଣ, ଦାନ, ସତ୍ୟାନୁରାଗ, ଶୌଚ, ଅହିଂସା ପ୍ରଭୃତି ନିୟମ ଦ୍ୱାରା କାୟ-ମନ-ବାକ୍ୟରେ ଆଚରଣ କରି ସକଳ ପାପକୁ ବିନଷ୍ଟ କରିଥାନ୍ତି । ଏହା ଜ୍ଞାନୋକ୍ତ ପ୍ରାୟଶ୍ଚିତ୍ତ । ଏହାଛଡ଼ା, ସୂର୍ଯ୍ୟଙ୍କର ଉଦୟନରେ ଯେପରି କୁଜ୍‌ଝଟିକା ବିଦୂରିତ ହୋଇଥାଏ, ସେହିପରି ମନୁଷ୍ୟମାନେ ଭଗବାନଙ୍କର ଏକାନ୍ତ ଶରଣାପନ୍ନ ହୋଇ ନିଜର ପରମ ଭକ୍ତି ଦ୍ୱାରା ସକଳ ପାପରୁ

ନିଜକୁ ମଧ୍ୟ ମୁକ୍ତ କରିଥାନ୍ତି, ଭଗବାନଙ୍କଠାରେ ଐକାନ୍ତିକ ଭକ୍ତି କଲେ ପାପରୁ ଯେପରି ନିଷ୍କୃତି ମିଳିଥାଏ, ତପସ୍ୟାଦିଦ୍ୱାରା ସେପରି ମୁକ୍ତି ମିଳିବା ଅତ୍ୟନ୍ତ ଦୁଷ୍କର । ସେଥିପାଇଁ ଭକ୍ତିମାର୍ଗ ଯେପରି ସର୍ବକଲ୍ୟାଣପ୍ରଦ, ସେହିପରି ଭୟଶୂନ୍ୟ ଓ ସର୍ବଦା ଗ୍ରହଣୀୟ । ଯେଉଁ ବ୍ୟକ୍ତି ନିଜର ଶରୀର-ମନ-ପ୍ରାଣକୁ ଭଗବାନଙ୍କ ପାଦପଦ୍ମ ଯୁଗଳରେ ଭକ୍ତିର ସହିତ ସମର୍ପଣ କରିଥାଏ, ସେ ଜାଗ୍ରତ ଓ ସୁଷୁପ୍ତିରେ କରିଥିବା ସମସ୍ତ ପାପରୁ ମୁକ୍ତି ଲାଭ କରିଥାଏ, ଏପରିକି ଯମଦୂତମାନେ ମଧ୍ୟ ତା ସମ୍ମୁଖକୁ ଆସିବାକୁ ଭୟ କରିଥାନ୍ତି । ଏହି ପ୍ରସଙ୍ଗରେ ଦୃଷ୍ଟାନ୍ତ ରୂପେ ପ୍ରାଚୀନ ଇତିହାସରୁ ଅଜାମିଳ ଉପାଖ୍ୟାନ ବିଶେଷ ସ୍ମରଣୀୟ—

'କାନ୍ୟକୁବ୍ଜ ନଗରରେ ଅଜାମିଳ ନାମରେ ଜନୈକ ବ୍ରାହ୍ମଣ ବାସ କରୁଥିଲେ । ସେ ଚରିତ୍ରହୀନା ନାରୀର କୁସଂସର୍ଗରେ ପଡ଼ି ସଦାଚାରହୀନ ଜୀବନ ଯାପନ କରୁଥିଲେ । ସେ ସର୍ବଦା ଜୁଆ, ଠକାମି, ଚୋରି ଆଦି ନିନ୍ଦନୀୟ ବୃତ୍ତି ଗ୍ରହଣ କରି ନିଜର ପରିବାର ପୋଷଣ କରିବା ସଙ୍ଗେ ସଙ୍ଗେ ଲୋକମାନଙ୍କୁ ବିଶେଷ ଉତ୍ପୀଡ଼ିତ କରୁଥିଲେ ।

ଅଜାମିଳଙ୍କର ଦଶଟି ପୁତ୍ର ଥିଲେ; ସେମାନଙ୍କ ମଧ୍ୟରୁ ସର୍ବକନିଷ୍ଠ ପୁତ୍ରର ନାମ ଥିଲା ନାରାୟଣ । ସେ ପିତାମାତାଙ୍କର ଅତ୍ୟନ୍ତ ପ୍ରିୟ ଥିଲା । ଅଜାମିଳ ଅଶୀ ବର୍ଷ କାଳ ଜୀବନ ଅତିବାହିତ କରି, ଯେତେବେଳେ ଅନ୍ତିମ କାଳରେ ଉପସ୍ଥିତ ହେଲେ, ସେ ଦେଖିଲେ ଯେ, ତାଙ୍କୁ ଧରିନେବା ନିମନ୍ତେ ଭୟାନକ ରୂପଧାରୀ ତିନିଜଣ ବିକଟକାୟ ପୁରୁଷ ହାତରେ ପାଶ ଧରି ତାଙ୍କ ନିକଟରେ ଉପସ୍ଥିତ । ସେ ଆତ୍ମରକ୍ଷା ନିମନ୍ତେ ଭୟରେ ନିଜର କ୍ରୀଡ଼ାରତ କନିଷ୍ଠ ପୁତ୍ର ନାରାୟଣଙ୍କୁ ଉଚ୍ଚସ୍ୱରରେ ଡାକିଲେ । ମରଣୋନ୍ମୁଖୀ ଅଜାମିଳଙ୍କ ମୁଖରୁ ହରିନାମ ଉଚ୍ଚାରିତ ହେବାମାତ୍ରେ ଭଗବାନ ନାରାୟଣଙ୍କର ଦୂତମାନେ ଆସି ତତ୍‌କ୍ଷଣାତ୍ ସେଠାରେ ଉପସ୍ଥିତ ହେଲେ । ସେତେବେଳକୁ ଯମଦୂତମାନେ ଅଜାମିଳଙ୍କ ମଭିଶରୀରରୁ ତାଙ୍କର ପ୍ରାଣବାୟୁ-ରୂପକ ସୂକ୍ଷ୍ମ ଶରୀରକୁ ବାହାର କରି ନେବାରେ ବ୍ୟସ୍ତଥିଲେ । ଏହା ଦେଖି ବିଷ୍ଣୁଦୂତମାନେ ଯମଦୂତଙ୍କୁ ବାରଣ କଲେ; ଫଳରେ ଯମଦୂତ ଓ ବିଷ୍ଣୁଦୂତଙ୍କ ମଧ୍ୟରେ କଳହ ଲାଗିଲା ।

ବିଷ୍ଣୁଦୂତମାନଙ୍କର ଅନଧିକାର ଚର୍ଚ୍ଚାରେ ବିରକ୍ତ ହୋଇ ଯମଦୂତମାନେ କହିଲେ, 'ତୁମ୍ଭେମାନେ କିଏ ? ଧର୍ମରାଜ ଯମଙ୍କ ଆଦେଶ କ୍ରମେ ଆମ୍ଭେମାନେ ଏହି ପାପୀକୁ ନେଉଥିଲୁ । ତୁମ୍ଭେମାନେ କାହିଁକି ଆମକୁ ଏପରି ବାଧା ଦେଉଅଛ ? ତୁମ୍ଭମାନଙ୍କର ନୟନ ପଦ୍ମପତ୍ରପରି ଆୟତ, ବୟସରେ ତୁମ୍ଭେମାନେ ଯୁବକ, ତୁମ୍ଭମାନଙ୍କର ଭୁଜ ଚତୁଷ୍ଟୟରେ ଧନୁ, ଖଡ୍ଗ, ଗଦା, ଶଙ୍ଖ, ଚକ୍ର ଏବଂ ପଦ୍ମ ଆଦି ଧାରଣ କରିଥିବାରୁ ତୁମ୍ଭେମାନେ ବିଶେଷ ସୁନ୍ଦର ଦେଖା ଯାଉଅଛ । ତୁମ୍ଭମାନଙ୍କ ଶରୀରରେ ଶୋଭପାଉଥିବା ପୀତବସନ, କିରୀଟ, କୁଣ୍ଡଳ ଓ ପଦ୍ମମାଳା ଚତୁର୍ଦ୍ଦିଗକୁ ଅପୂର୍ବ ତେଜରେ ଉଦ୍‌ଭାସିତ କରୁଅଛି । ଆପଣମାନେ କିଏ, ଦେବତା ନା ସିଦ୍ଧ ପୁରୁଷ ? ଆମ୍ଭେମାନେ ଯମଦୂତ । ଆମ୍ଭମାନଙ୍କର କର୍ତ୍ତବ୍ୟରେ ଆପଣମାନେ ବାଧା ଦିଅନ୍ତୁ ନାହିଁ ।'

ବିଷ୍ଣୁଦୂତମାନେ କହିଲେ, 'ତୁମ୍ଭେମାନେ ଧର୍ମରାଜ ଯମଙ୍କର ଦୂତ, ତା'ର ପ୍ରମାଣ କ'ଣ ? ଧର୍ମର ସ୍ୱରୂପ କ'ଣ ଓ ଜୀବ କ'ଣ କଲେ ଧର୍ମରାଜଙ୍କ ଦ୍ୱାରା ଦଣ୍ଡିତ ହୁଏ, ତାହା ପ୍ରକାଶ କର ।'

ଯମଦୂତମାନେ କହିଲେ, 'ଯାହା ବେଦବିହିତ ତାହା ହିଁ ଧର୍ମ ଏବଂ ଯାହା ବେଦନିଷିଦ୍ଧ ତାହା ଅଧର୍ମ । ବେଦ ସାକ୍ଷାତ୍ ନାରାୟଣ ସ୍ୱରୂପ ଓ ମହା ସ୍ୱୟମ୍ଭୂ । ସାତ୍ତ୍ୱିକ, ରାଜସିକ ଏବଂ ତାମସିକ ଏହି ଭେଦରେ ପ୍ରାଣୀକୁ ବିଭିନ୍ନ ଗୁଣ, କ୍ରିୟା ଓ ସମ୍ପ୍ରଦାୟରେ ଯେ ପ୍ରକାଶ କରିଥାନ୍ତି, ସେ ନାରାୟଣ । ସୂର୍ଯ୍ୟ, ଅଗ୍ନି, ଆକାଶ, ବାୟୁ, ଚନ୍ଦ୍ର, ସନ୍ଧ୍ୟା, ଦିବା, ରାତ୍ରି, ଦିଗ୍‌ସମୂହ, ଜଳ, ପୃଥିବୀ ଏବଂ ସ୍ୱୟଂ ଧର୍ମରାଜ ସର୍ବଦା ପ୍ରାଣୀମାନଙ୍କ କାର୍ଯ୍ୟକୁ ଲକ୍ଷ୍ୟ କରୁଅଛନ୍ତି । ତେଣୁ କିଏ ଧର୍ମ ଓ ଅଧର୍ମ ଆଚରଣ କଲା, ସେମାନେ ତାହା ପ୍ରତ୍ୟକ୍ଷ କରିଥାନ୍ତି; ତେଣୁ ଅଧର୍ମ କାର୍ଯ୍ୟ କରିଥିବା ଜୀବମାନେ ମୃତ୍ୟୁ ପରେ ପରଲୋକରେ ଦଣ୍ଡଯୋଗ୍ୟ ହୋଇଥାନ୍ତି । ଇହଜଗତରେ ଯେପରି ସୁଖୀ, ଦୁଃଖୀ ବା ସୁଖୀ-ଦୁଃଖୀ, ଧର୍ମପ୍ରାଣ, ଅଧର୍ମପରାୟଣ ବା ଧର୍ମାଧର୍ମର ମିଶ୍ରିତ ରୂପର ଜୀବ ପରିଦୃଷ୍ଟ ହୋଇଥାନ୍ତି, ସେହିପରି ପରଲୋକରେ ତ୍ରିବିଧ ବିଭାଗ ରହିଅଛି । ଧର୍ମରାଜ ଯମ ନିଜର ସଞ୍ଜୀମନୀପୁରରେ ରହି ନିଜର ମାନସ-ଦୃଷ୍ଟି ଦ୍ୱାରା ଜୀବର ପୂର୍ବପର ଧର୍ମାଧର୍ମର ସ୍ୱରୂପ ଜାଣିପାରନ୍ତି; ସେଥିପାଇଁ ତାଙ୍କୁ

ଅସୀମ ଶକ୍ତିସମ୍ପନ୍ନ ବ୍ରହ୍ମାଙ୍କ ସହିତ ତୁଳନା କରାଯାଏ । ସ୍ୱପ୍ନୋତ୍ଥିତ ବ୍ୟକ୍ତି ଯେପରି ଜାଗ୍ରତ ହେବାପରେ ନିଜର ସ୍ୱପ୍ନଦୃଷ୍ଟ ଶରୀରର କଥା ଭୁଲିଯାଏ, ସେହିପରି ଜନ୍ମ ପରେ ପୂର୍ବଜନ୍ମର ସ୍ମୃତି ଜୀବର ନଷ୍ଟ ହେବା ଫଳରେ ସେ ପୂର୍ବଜନ୍ମର କଥା ଆଦୌ ଅନୁସନ୍ଧାନ କରିପାରେ ନାହିଁ । ଜୀବମାନେ ବାକ୍, ପାଣି, ପାଦ, ପାୟୁ, ଉପସ୍ଥ ଏପରି ପାଞ୍ଚଗୋଟି କର୍ମେନ୍ଦ୍ରିୟ ଦ୍ୱାରା କାର୍ଯ୍ୟ କରି ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ ଆଦି ପାଞ୍ଚଗୋଟି ଜ୍ଞାନେନ୍ଦ୍ରିୟ ଦ୍ୱାରା ଯଥାକ୍ରମେ ରୂପ, ଶବ୍ଦ, ଗନ୍ଧ, ରସ ଓ ସ୍ପର୍ଶାଦି ପଞ୍ଚ ପ୍ରକାରର ଅନୁଭୂତିସିଦ୍ଧ ଜ୍ଞାନ ଲାଭ କରିଥାଏ । ଏହି ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ ଏବଂ ପଞ୍ଚ ଅନୁଭୂତି, ଏପରି ପନ୍ଦରଗୋଟି ବିଷୟର ଅତିରିକ୍ତ ଭାବରେ ମନକୁ ଗ୍ରହଣ କରାଯାଇ ତାକୁ ଷୋଡ଼ଶ ସ୍ଥାନୀୟ ଓ ଜୀବକୁ ସପ୍ତଦଶ ସ୍ଥାନୀୟ କରାଯାଇଅଛି । ତେଣୁ ଜୀବ ସର୍ବଦା ମନଦ୍ୱାରା ଏହି ପନ୍ଦର ଗୋଟି ବିଷୟ ଉପଭୋଗ କରେ ଏବଂ ଷୋଡ଼ଶ ଅବୟବବିଶିଷ୍ଟ ଅନାଦି ଲିଙ୍ଗଶରୀର ଜୀବର ହର୍ଷ, ଶୋକ, ଭୟ ଓ ପୀଡ଼ା-ଜନକ ସଂସାର ରଚନା ବିଧାନ କରିଥାଏ । ପୂର୍ବଜନ୍ମର କର୍ମଫଳ ରୂପକ ଅଦୃଷ୍ଟ କାରଣ ଜୀବର କର୍ମବାସନାନୁସାରେ ମାତୃତୁଲ୍ୟ ବା ପିତୃତୁଲ୍ୟ ସ୍ଥୂଳ ଓ ସୂକ୍ଷ୍ମ ଶରୀର ପ୍ରଦାନ କରିଥାଏ । ଜୀବ ସେହି ଶରୀର ମାଧ୍ୟମରେ ଇହଜଗତର ଧର୍ମ ବା ଅଧର୍ମମୂଳକ ବିଭିନ୍ନ କାର୍ଯ୍ୟ କରି ପାପ ପୁଣ୍ୟ ଅର୍ଜନ କରିଥାଏ । ଭଗବାନଙ୍କର ନାମ ସ୍ମରଣ କରିବା ମାନେ ପ୍ରକୃତ ସଙ୍ଗ ହେତୁ ଜାତ ପାପର କ୍ଷୟ ଘଟେ ।

ଏହି ଅଜାମିଳ ବ୍ରାହ୍ମଣ ବଂଶରେ ଜନ୍ମହୋଇ ଶାସ୍ତ୍ର ଜ୍ଞାନ ସମ୍ପନ୍ନ, ସୁଚରିତ୍ର, ବିଭିନ୍ନ ସଦ୍‌ଗୁଣ ଭୂଷିତ, ଶାନ୍ତସ୍ୱଭାବସମ୍ପନ୍ନ, ଜିତେନ୍ଦ୍ରିୟ, ସତ୍ୟବାଦୀ, ଅହଙ୍କାରଶୂନ୍ୟ, ହିଂସାଦ୍ୱେଷ ଶୂନ୍ୟ, ସାଧୁ ଚରିତ୍ରର ବ୍ୟକ୍ତି ଥିଲା । ଦିନେ ପିତାଙ୍କ ଆଦେଶାନୁସାରେ ବଣରୁ ଫଳମୂଳ, କୁଶ ସମିଧ ସଂଗ୍ରହ କରିବା ନିମନ୍ତେ ଯାଇଥିବାବେଳେ ଏକ ଭ୍ରଷ୍ଟାଚାରୀ କାମୁକ ଶୂଦ୍ରକୁ ଏକ ଦାସୀ ସହିତ ମଦ୍ୟପାନ ମତ୍ତ ହୋଇ କାମସୁଖ ଚରିତାର୍ଥ କରୁଥିବାର ଦେଖିଲା । ଶୂଦ୍ରର ଆଲିଙ୍ଗନ ମଧ୍ୟରେ ଦାସୀକୁ ଆବଦ୍ଧ ଥିବାର ଦେଖିବା ମାନେ ଅଜାମିଳ ମଧ୍ୟ କାମପୀଡ଼ାରେ ଆକ୍ରାନ୍ତ ହେଲା । କୌଣସି ମତେ ନିଜକୁ ସେହି ସମୟରେ

ସଂଯତ କରିଥିଲେ ମଧ୍ୟ ଅଜାମିଳ ପରେ ସବୁବେଳେ ସେହି ଦାସୀକୁ ହିଁ ମନେ ମନେ ଭାବିବାକୁ ଲାଗିଲା, ଫଳରେ ଧର୍ମକର୍ମରୁ ତା'ର ମନ କ୍ରମଶଃ ଦୂରେଇଗଲା । ନିଜେ ସତ୍‌କୁଳସମ୍ଭୂତା ସୁନ୍ଦରୀ ବ୍ରାହ୍ମଣକନ୍ୟାକୁ ବିବାହ କରିଥିଲେ ମଧ୍ୟ ପତ୍ନୀକୁ ତ୍ୟାଗ କରି ପିତୃ ଅର୍ଜିତ ସମସ୍ତ ସମ୍ପତ୍ତିକୁ ସେ ସେହି ଦାସୀ ପଛରେ ବ୍ୟୟ କରି ତା' ସହ ବାସ କରିବାକୁ ଲାଗିଲା ଏବଂ ନ୍ୟାୟଅନ୍ୟାୟ କିଛି ନମାନି ଯେକୌଣସି ଉପାୟରେ ଅର୍ଥ ଉପାର୍ଜନ କରି ଦାସୀକୁ ସନ୍ତୁଷ୍ଟ କରୁଥିଲା । ତେଣୁ ଏହି ଅପବିତ୍ର, ସ୍ୱେଚ୍ଛାଚାରୀ, କୁତ୍ସିତ ସ୍ୱଭାବସମ୍ପନ୍ନ, ଶୂଦ୍ରାଣୀର ଅନ୍ନ ରୂପକ ଅପବିତ୍ର ଅନ୍ନଭୋଜୀ, ପାପପୂର୍ଣ୍ଣ ଜୀବନ ଯାପନ କରୁଥିବା ଏବଂ ଶାସ୍ତ୍ରବିଧି ଲଙ୍ଘନକାରୀ ଅଜାମିଳ ବହୁବର୍ଷ ବଞ୍ଚିଥିଲେ ମଧ୍ୟ ଦିନେ ହେଲେ ନିଜ ପାପର କେବେ ପ୍ରାୟଶ୍ଚିତ୍ତ କରିନାହିଁ । ତେଣୁ ଏହି ପାପୀକୁ ଯମରାଜଙ୍କ ନିକଟକୁ ଆମେ ନେଇ ଯାଉଅଛୁ, ଯେପରି ଏ ଉପଯୁକ୍ତ ଦଣ୍ଡରେ ଦଣ୍ଡିତ ହେବ ।'

ଯମଦୂତଙ୍କର ଏହି କଥା ଶୁଣି ବିଷ୍ଣୁ ଦୂତମାନେ କହିଲେ, 'ହାୟ, ଧର୍ମରାଜ ବୋଲି ନିଜକୁ ପରିଚିତ କରୁଥିବା ଯମଙ୍କର ସଭାକୁ ଯେ ଏପରି ଅଧର୍ମ ସ୍ପର୍ଶ କଲାଣି, ତାହା ଜାଣି ଆମ୍ଭେମାନେ ବିସ୍ମିତ ହେଉଛୁ । ଧର୍ମରାଜ ଯଦି ଅଧର୍ମାଚରଣ କରି ବିଚାରଭ୍ରଷ୍ଟ ବ୍ୟକ୍ତିଙ୍କ ପରି ନିଷ୍ପାପ ବ୍ୟକ୍ତିଙ୍କ ପ୍ରତି ଅଯଥା ଦଣ୍ଡ ବିଧାନ କରନ୍ତି, ତେବେ ସମସ୍ତ ଜଗତ୍ ତ ଉଚ୍ଛନ୍ନ ହୋଇଯିବ ! ଏହି ଅଜାମିଳ ମରଣର ପୂର୍ବ ମୁହୂର୍ତ୍ତରେ ଭଗବାନଙ୍କର ନାମ ଉଚ୍ଚାରଣ କରିଥିଲା ଏବଂ ତଦ୍ଦ୍ୱାରା ତା'ର କୋଟି ଜନ୍ମର ସମସ୍ତ ପାପ ଦୂର ହୋଇଅଛି । ଭଗବାନଙ୍କର ଏହି ନାମ କେବଳ ଉତ୍କୃଷ୍ଟ ପ୍ରାୟଶ୍ଚିତ୍ତ ନୁହେଁ ମଧ୍ୟ ମୋକ୍ଷପ୍ରଦାନକାରୀ । ନିଜର ପୁତ୍ରକୁ ଆହ୍ୱାନ କରିବାର ଅଭ୍ୟାସ ବଶତଃ 'ନାରାୟଣ' ନାମ ଉଚ୍ଚାରଣ କରିଥିଲେ ମଧ୍ୟ ତଦ୍ଦ୍ୱାରା ଭଗବାନଙ୍କର ନାମ ମଧ୍ୟ ସେ ନେଇଅଛି । ପରଧନ ଅପହରଣକାରୀ, ମଦ୍ୟପ, ବିଶ୍ୱାସଘାତକ, ବ୍ରହ୍ମଘାତୀ, ଗୁରୁପତ୍ନୀଗାମୀ, ସ୍ତ୍ରୀହନ୍ତା, ପିତୃଘାତୀ, ଗୋହତ୍ୟାକାରୀ ଓ ରାଜହନ୍ତା ତଥା ଅନ୍ୟାନ୍ୟ ମହାପାତକୀମାନଙ୍କ ପାଇଁ ଭଗବାନଙ୍କ ନାମୋଚ୍ଚାରଣ ହିଁ ସର୍ବଶ୍ରେଷ୍ଠ ପ୍ରାୟଶ୍ଚିତ୍ତ । ଭଗବାନଙ୍କର ନାମ ନେବା ମାତ୍ରେ ସେ ଭଗବାନଙ୍କ ଦ୍ୱାରା ରକ୍ଷଣୀୟ ହୋଇଥାଏ । ଅଜାମିଳ ମରଣ କାଳରେ ଭଗବାନଙ୍କର

ନାମ ଉଚ୍ଚାରଣ କରି ସକଳ ପାପରୁ ମୁକ୍ତ ହୋଇଅଛି । ତୁମ୍ଭେମାନେ ତାକୁ ନରକକୁ ନେଇ ପାରିବ ନାହିଁ । ଜ୍ଞାତସାରରେ କି ଅଜ୍ଞାତସାରରେ ଅଗ୍ନି ମଧ୍ୟକୁ କାଷ୍ଠ ନିକ୍ଷେପ କଲେ ସେ ଯେପରି କାଷ୍ଠକୁ ଭସ୍ମୀଭୂତ କରିଥାଏ, କିମ୍ବା ଯେପରି ଇଚ୍ଛାରେ ହେଉ ବା ଅନିଚ୍ଛାରେ ହେଉ ଔଷଧ ସେବନ କଲେ ଦେହରେ ତା'ର ପ୍ରତିକ୍ରିୟା ପ୍ରକାଶିତ ହୋଇଥାଏ, ସେହିପରି ପୁତ୍ରର ନାମ ରୂପରେ ହେଉ ବା ପରିହାସଚ୍ଛଳରେ ହେଉ କିମ୍ବା ଗୀତାଳାପ ବା ଅବଜ୍ଞାରେ ହେଉ, ଭଗବାନଙ୍କ ନାମ ଉଚ୍ଚାରଣ କରିବାମାତ୍ରେ ଜୀବ ଅଶେଷ ପାପରୁ ଓ ନରକ ଦଣ୍ଡରୁ ମୁକ୍ତି ଲାଭ କରିଥାଏ ।

ବିଷ୍ଣୁଦୂତମାନେ ଏହିପରି ଭାଗବତ ଧର୍ମ ନିରୂପଣ କରି ଯମଦୂତଙ୍କ କବଳରୁ ଅଜାମିଳକୁ ମୁକ୍ତ କରି ମୃତ୍ୟୁମୁଖରୁ ରକ୍ଷା କଲେ । ଯମଦୂତମାନେ ପଳାୟନ କରି ଧର୍ମରାଜଙ୍କ ନିକଟରେ ସମସ୍ତ କଥା ବର୍ଣ୍ଣନା କଲେ ।

ତାହା ଶୁଣି ଯମରାଜ କହିଲେ, 'ଦୂତମାନେ, ମୁଁ ପାପୀମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରିଥାଏ ସତ; ମାତ୍ର ମୋ ଉପରେ ଜଣେ ଈଶ୍ୱର ଅଛନ୍ତି, ସେ ଜଗତର ସୃଷ୍ଟିକର୍ତ୍ତା ପରମେଶ୍ୱର । ମୁଁ ତାଙ୍କର ଆଜ୍ଞାବହ ଓ ତାଙ୍କର ଅଧୀନ ମାତ୍ର । ସେହି ପରମେଶ୍ୱର ନିଜକୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଏପରି ତିନି ଅଙ୍ଗରେ ପ୍ରକାଶ କରି ଜଗତର ସୃଷ୍ଟି, ପାଳନ ଓ ସଂହାର କରିଥାନ୍ତି । ପାଳନକର୍ତ୍ତା ଭଗବାନ ବିଷ୍ଣୁଙ୍କର ଦୂତମାନେ ତାଙ୍କର ପରମ ଭକ୍ତମାନଙ୍କୁ ମୋର ପ୍ରଭୁତ୍ୱରୁ ସର୍ବଦା ରକ୍ଷା କରିଥାନ୍ତି । ଯେଉଁ ସାଧୁପ୍ରକୃତିର ଲୋକମାନେ ଭଗବାନଙ୍କର ଶରଣାଗତ, ଭଗବାନଙ୍କର ଆୟୁଧ ଓ ଦୂତମାନେ ସେମାନଙ୍କୁ ସର୍ବଦା ରକ୍ଷା କରିଥାନ୍ତି । ସେମାନଙ୍କ ନିକଟକୁ ଯିବାର କ୍ଷମତା ତୁମ୍ଭମାନଙ୍କର ନାହିଁ; କାରଣ ମୁଁ ତ ମୁଁ, କାଳ ମଧ୍ୟ ସେମାନଙ୍କୁ ଦଣ୍ଡବିଧାନ କରିବାକୁ ଅସମର୍ଥ । ତେଣୁ ତୁମ୍ଭେମାନେ କେବଳ ପାପୀ-ମାନଙ୍କୁ ମୋ ନିକଟକୁ ଆଣିବ, ପୁଣ୍ୟାତ୍ମାମାନଙ୍କୁ ନୁହେଁ । ଅଜାମିଳ ଭଗବାନଙ୍କର ନାମ ଉଚ୍ଚାରଣ କରିଥିବାରୁ ବିଷ୍ଣୁଦୂତମାନେ ତୁମ ହସ୍ତରୁ ତାକୁ ଯଥାର୍ଥରେ ରକ୍ଷା କରିଅଛନ୍ତି ।

ଅଜାମିଳ ମୃତ୍ୟୁ ମୁଖରୁ ରକ୍ଷା ଲାଭ କରି ଇକ୍ଷାକାଶ ବିଷ୍ଣୁଦୂତ-ମାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇଲେ; କିନ୍ତୁ ସେମାନଙ୍କୁ କିଛି କହିବା ପୂର୍ବରୁ ସେମାନେ ଅଦୃଶ୍ୟ ହୋଇଗଲେ । ଯମଦୂତ ଓ ବିଷ୍ଣୁଦୂତଙ୍କର ସମସ୍ତ କଥାବାର୍ତ୍ତା ଅଜାମିଳ ଶୁଣିବାକୁ ପାଇଥିଲେ । ସେ ଅନୁଶୋଚନା କରିବାକୁ ଲାଗିଲେ, 'ହାୟ, ଇନ୍ଦ୍ରିୟମାନଙ୍କୁ ସଂଯତ କରି ନ ପାରିବା ଫଳରେ ଆଜି ମୋର ଏପରି ଦାରୁଣ ଦଶା ଘଟିଲା । ମୋ ଚରିତ୍ର ଏପରି ଶୋଚନୀୟ ସ୍ଖଳନ ମୋର ବଂଶମର୍ଯ୍ୟାଦାକୁ ଯେ କେବଳ କ୍ଷୁଣ୍ଣ କରିଅଛି ତାହା ନୁହେଁ, ମୋର ଜୀବନକୁ ମଧ୍ୟ ବିପଦର ସମ୍ମୁଖୀନ କରାଇଛି । ମୋ ପରି ହୀନ କର୍ତ୍ତବ୍ୟବିମୁଖ କୁଳପାଂଶୁଳ ତା'ର କୃତ କର୍ମର ଫଳ ସ୍ୱରୂପ ନିଶ୍ଚୟ ଅସହ୍ୟ ଦୁଃଖ ଭୋଗ କରିବ । ପୂର୍ବ ଜନ୍ମରେ ନିଶ୍ଚୟ ମୁଁ କିଛି ପୁଣ୍ୟ କରିଥିଲି, ଯା' ଫଳରେ ଆଜି ଦେବତା-ମାନଙ୍କର ପବିତ୍ର ଦର୍ଶନ ଲାଭ କରିବା ସଙ୍ଗେ ସଙ୍ଗେ ମୋର କଳଙ୍କିତ ଜୀବନ ସତ୍ତ୍ୱେ ମୋର ଅପବିତ୍ର ମୁଖରେ ହରିନାମ ଉଚ୍ଚାରିତ ହୋଇ ପାରିଲା, ନଚେତ୍ ମୋ ପରି ଅଧମ କେଉଁଠି, ଆଉ ଭଗବାନଙ୍କର ପବିତ୍ର ନାମ କେଉଁଠି ? ବହୁ ଭାଗ୍ୟରୁ ଆଜି ଜୀବନ ଫେରିପାଇଛି । ଏଣିକି ଅଯଥାରେ ଜୀବନ ନଷ୍ଟ ନ କରି ମନ, ଇନ୍ଦ୍ରିୟ ଓ ପ୍ରାଣବାୟୁକୁ ସଂଯତ କରି, ନାରୀର ମାୟାଜାଲରୁ ନିଜକୁ ମୁକ୍ତ କରି ଶରୀର ଓ ସଂସାର ସୁଖରୁ ମନକୁ ଫେରାଇ ଭଗବାନଙ୍କର ନାମ କୀର୍ତ୍ତନ କରି ନିଜର କାୟ, ମନ ଓ ଚିତ୍ତକୁ ଶୁଦ୍ଧ କରିବି ।

ସାଧୁସଙ୍ଗ ଲାଭର ଏଇ କ୍ଷଣିକ ପ୍ରଭାବରେ ଅଜାମିଳଙ୍କ ମନରେ ପରମ ବୈରାଗ୍ୟ ଉଦୟ ହୋଇଥିଲା ଓ ସେ ସମସ୍ତ ସାଂସାରିକ ବନ୍ଧନ ପରିତ୍ୟାଗ କରି ପବିତ୍ର ହରିଦ୍ୱାରକୁ ଯାତ୍ରା କରି ସେଠାରେ ଯୋଗମାର୍ଗ ଅନୁସାରେ ମନ ଓ ଇନ୍ଦ୍ରିୟକୁ ସଂଯତ କରି ଏକାଗ୍ର ଚିତ୍ତରେ ଭଗବାନଙ୍କର ପରମ କଲ୍ୟାଣକର ରୂପକୁ ଧ୍ୟାନ କରି ଜୀବନର ଅବଶିଷ୍ଟ ସମୟକୁ ଅତିବାହିତ କରିଥିଲେ ।' ଅନ୍ତିମ ସମୟ ଉପସ୍ଥିତ ହେବାମାତ୍ରେ ଦୃଷ୍ଟି ସମ୍ମୁଖରେ ପୂର୍ବର ସେହି ଦିବ୍ୟ ବିଷ୍ଣୁଦୂତଙ୍କୁ ଦେଖିବାକୁ ପାଇଥିଲେ । ଅଜାମିଳ ସେମାନଙ୍କୁ ଦେଖି ଓ ପ୍ରଣାମ ଜଣାଇ ପବିତ୍ର ଗଙ୍ଗାରେ ଦେହ ବିସର୍ଜନ ଦେଇ ସଙ୍ଗେ ସଙ୍ଗେ ବିଷ୍ଣୁ ଦୂତ ରୂପରେ

ପରିଣତ ହୋଇଥିଲେ ଓ ବୈକୁଣ୍ଠକୁ ସେମାନଙ୍କ ସଙ୍ଗ ଯାତ୍ରା କରିଥିଲେ । ମହାରାଜ, ଭଗବାନଙ୍କ ନାମର ଅପୂର୍ବ ମହିମାର ଦୃଷ୍ଟାନ୍ତ ତ ଶୁଣିଲେ । ସଂସାର ବନ୍ଧନରୁ ମୁକ୍ତିଲାଭ କରିବା ସଙ୍ଗେ ସଙ୍ଗେ ଅଶେଷ ପାପରୁ ନିଷ୍କୃତି ଲାଭ କରିବା ନିମନ୍ତେ ଶ୍ରଦ୍ଧାର ସହିତ ହରିନାମ ଉଚ୍ଚାରଣ କରିବା ହିଁ ପ୍ରକୃଷ୍ଟ ଉପାୟ ।”

---

## ଦେବରାଜଙ୍କର ବ୍ରହ୍ମହତ୍ୟା ଦୋଷ

ଜଗତରେ ଜନସଂଖ୍ୟା ବୃଦ୍ଧି କରିବାକୁ ଯାଇ ଦକ୍ଷପ୍ରଜାପତି ଆଶାଜନକ ସଫଳତା ଲାଭ ନ କରିବାରୁ କାର୍ଯ୍ୟସିଦ୍ଧି ନିମନ୍ତେ ଭଗବାନଙ୍କ ଉଦ୍ଦେଶ୍ୟରେ ବହୁବର୍ଷ କଠୋର ତପସ୍ୟା କରିଥିଲେ। ତାଙ୍କର ତପସ୍ୟାରେ ଭଗବାନ ସନ୍ତୁଷ୍ଟ ହୋଇ ପଞ୍ଚଜନକର କନ୍ୟା ଅସିକ୍ନୀଙ୍କୁ ଦକ୍ଷ ବିବାହ କଲେ, ଦକ୍ଷଙ୍କର ଲକ୍ଷ୍ୟ ପୂର୍ଣ୍ଣ ହେବ ବୋଲି କହିଲେ। ତଦନୁସାରେ ଅସିକ୍ନୀଙ୍କୁ ଦକ୍ଷ ବିବାହ କରି ତାଙ୍କ ଗର୍ଭରୁ ଏକ ଅୟୁତ ସଂଖ୍ୟକ ପୁତ୍ର ସୃଷ୍ଟି କରିଥିଲେ। ପୁତ୍ରମାନେ ବୟଃପ୍ରାପ୍ତ ହେବା ପରେ ଦକ୍ଷ ସେମାନଙ୍କୁ ପ୍ରଜା ବା ଜନବୃଦ୍ଧି କରିବାକୁ ଆଦେଶ ପ୍ରଦାନ କରିଥିଲେ ଏବଂ ପିତୃ ଆଦେଶ ପାଳନ କରିବାକୁ ଯାଇ ସେମାନେ ପଶ୍ଚିମ ଦିଗରେ ଅବସ୍ଥିତ ନାରାୟଣ-ସରୋବର ନାମକ ଏକ ତୀର୍ଥରେ ସ୍ନାନ କରି ତପସ୍ୟା ଆଚରଣ କଲେ। ତପସ୍ୟା ଶେଷ ହେବା ପରେ ପରେ ସେମାନଙ୍କ ସହିତ ଦେବର୍ଷି ନାରଦଙ୍କର ଭେଟ ହୋଇଥିଲା।

ଦକ୍ଷପୁତ୍ରମାନଙ୍କୁ ପ୍ରଜାସଂଖ୍ୟା ବୃଦ୍ଧି କରିବାକୁ ଅଭିଳାଷୀ ଥିବା ଦେଖି ନାରଦ କହିଲେ, 'ତୁମ୍ଭେମାନେ ପୃଥିବୀ ସମ୍ପର୍କରେ ସମସ୍ତ ତତ୍ତ୍ୱ ଅବଗତ ନ ହୋଇ ପ୍ରଜାସୃଷ୍ଟି କରିବାକୁ ଇଚ୍ଛା କରୁଅଛ; କିନ୍ତୁ ତାହା ଉଚିତ ହେଉନାହିଁ। ଏହି ଶରୀର କ୍ଷଣଭଙ୍ଗୁର; ଅଥଚ ତା' ସହିତ ପୁନର୍ବାର ଶରୀର ସୃଷ୍ଟିର କାର୍ଯ୍ୟ କରିବା ବୁଦ୍ଧିମାନର କାର୍ଯ୍ୟ ନୁହେଁ। ଜଗତ୍ ସୃଷ୍ଟିକର୍ତ୍ତା ଅନ୍ତର୍ଯ୍ୟାମୀ ଭଗବାନଙ୍କର କୃପାଲାଭ କଲେ ଜୀବକୁ ଜଗତରେ ବାରମ୍ବାର ଜନ୍ମ ନେବାକୁ ପଡେ ନାହିଁ; ତେଣୁ ସେହି ଭଗବାନଙ୍କର କୃପା ଲାଭ କରିବାକୁ ଯତ୍ନବାନ ହୁଅ। କାଳଚକ୍ରରୁ ପରିତ୍ରାଣ ପାଇବାକୁ ଇଚ୍ଛା ଥିଲେ ମନରୁ ସମସ୍ତ କାମନା ଦୂରକରି

ଭଗବାନଙ୍କୁ ନିଷ୍କାମ ହୃଦୟରେ ଧ୍ୟାନ କରିବା ହିଁ ପରମ କର୍ତ୍ତବ୍ୟ । ତୁମ୍ଭେମାନେ ସେ ଢଙ୍ଗରେ ମନଦିଅ ।'

ଦେବର୍ଷି ନାରଦଙ୍କ କଥା ଶୁଣି ଦକ୍ଷପୁତ୍ରଙ୍କର ମନୋଭାବ ବଦଳିଗଲା । ସେମାନେ ନାରଦଙ୍କୁ ପ୍ରଦକ୍ଷିଣ କରି ପ୍ରଜା ସୃଷ୍ଟିବାସନା ପରିତ୍ୟାଗ କରି ମୋକ୍ଷମାର୍ଗର ପଥିକ ହେଲେ । ନିଜର ସେହି ପୁତ୍ରମାନଙ୍କ ଦ୍ୱାରା ବଂଶବୃଦ୍ଧି ହେବାର ଆଉ ସମ୍ଭାବନା ନଥିବା ଦେଖି ଦକ୍ଷ ନିଜର ପତ୍ନୀ ଅସିକ୍ନୀଙ୍କ ଗର୍ଭରୁ ପୁନର୍ବାର ଏକ ହଜାର ସଂଖ୍ୟକ ପୁତ୍ର ଉତ୍ପାଦନ କଲେ । ସେହି ପୁତ୍ରମାନେ ପ୍ରାପ୍ତବୟସ୍କ ହେବାପରେ ବଂଶବୃଦ୍ଧି କରିବା ନିମନ୍ତେ ଦକ୍ଷ ସେମାନଙ୍କୁ ଆଦେଶ ଦେବାରୁ, ସେମାନେ ପୂର୍ବକଥିତ ସେହି ନାରାୟଣ ସରୋବରରେ ସ୍ନାନ କରି କଠୋର ତପସ୍ୟା ଆଚରଣ କଲେ । ସେମାନଙ୍କର ତପସ୍ୟା ସମାପ୍ତ ହେବାପରେ ଦେବର୍ଷି ନାରଦ ସେଠାରେ ପୂର୍ବପରି ଉପସ୍ଥିତ ହୋଇ ସେମାନଙ୍କୁ ପ୍ରଜାସୃଷ୍ଟି କରିବା ପରିବର୍ତ୍ତେ ମୋକ୍ଷମାର୍ଗ ଅବଲମ୍ବନ କରିବାକୁ ପ୍ରବର୍ତ୍ତାଇଲେ । ନାରଦଙ୍କ କଥାରେ ପ୍ରଭାବିତ ହୋଇ ସେହି ଦକ୍ଷପୁତ୍ରମାନେ ପ୍ରଜାସୃଷ୍ଟି କାମନା ପରିତ୍ୟାଗ କରି ନିଷ୍କାମ ଭଗବତ୍ ସେବାଦ୍ୱାରା ମୋକ୍ଷଲାଭ କରିବାରେ ମନଦେଲେ ।

ନାରଦ ପୁନର୍ବାର ତାଙ୍କର ପୁତ୍ରମାନଙ୍କୁ ପ୍ରଭାବିତ କରିଅଛନ୍ତି ବୋଲି ଜାଣିବାକୁ ପାଇ ଦକ୍ଷଙ୍କର କ୍ରୋଧର ସୀମା ରହିଲା ନାହିଁ । ସେ ନାରଦଙ୍କୁ ତିରସ୍କାର କରି କହିଲେ, 'ରେ ପାପି, ସାଧୁସୁଲଭ ବେଶ ଧାରଣ କରି ମୋର ସ୍ୱଧର୍ମନିରତ ପୁତ୍ରମାନଙ୍କ ମନକୁ ବିଷାକ୍ତ କରିବା ସଙ୍ଗେ ସଙ୍ଗେ, ସେମାନେ ଅଳ୍ପବୟସର ବାଳକ ହୋଇଥିଲେ ମଧ୍ୟ ସେମାନଙ୍କୁ ତୁମେ ସନ୍ନ୍ୟାସ ଧର୍ମରେ ଦୀକ୍ଷିତ କରାଇଅଛ ? ସାଂସାରିକ ଜୀବନରେ ପ୍ରବୃତ୍ତିମାର୍ଗ ଆଶ୍ରୟ କରି ଶାସ୍ତ୍ରାନୁସାରେ ଦେବଋଣ, ପିତୃଋଣ ଓ ଋଷିଋଣ ପରିଶୋଧ ନ କରି ସନ୍ନ୍ୟାସବ୍ରତ ଅବଲମ୍ବନ କଲେ ଐହିକ ଓ ପାରଲୌକିକ କ୍ଷତି ସାଧିତ ହୋଇଥାଏ । ସେମାନଙ୍କର ମତିଭ୍ରମ ଘଟାଇ ତୁମେ ସେମାନଙ୍କର ଇହକାଳ ଓ ପରକାଳକୁ ନଷ୍ଟ କରିଅଛ । ତୁମକୁ ଧିକ୍ । ତୁମେ ଏପରି ନିର୍ଦ୍ଦୟ ଓ ଲଜ୍ଜାହୀନ ହୋଇ କିପରି ଭଗବାନଙ୍କର ପାର୍ଷଦ ଭାବରେ ପରିଗଣିତ ହେଉଅଛ, ତାହା ହିଁ

ଭାବୁଛ । ବିଷୟ-ଭୋଗ ଯେ ଦୁଃଖଦାୟକ; ଏହା ଭୋଗ-ମାର୍ଗ ଦ୍ୱାରା ହିଁ ବିଶେଷ ଭାବରେ ଅନୁଭୂତ ହୋଇଥାଏ ଏବଂ ସେପରି ଅନୁଭୂତି ଲାଭ କଲେ ମନରେ ସ୍ୱତଃ ବୈରାଗ୍ୟ ଉଦୟ ହୋଇଥାଏ । ବୈରାଗ୍ୟ ଭାବ ଆସିଲେ ମନରୁ ବିଷୟାନୁରାଗ ଓ ସ୍ନେହ ସମ୍ପର୍କର ମାୟାଡୋରି ଦୂର ହୋଇଥାଏ ଏବଂ ମନୁଷ୍ୟ ନିବୃତ୍ତି-ମାର୍ଗ ଗ୍ରହଣ କରିବାକୁ ଉପଯୁକ୍ତ ହୋଇଥାଏ; ଅଥଚ ତୁମେ ଏସବୁ ଜାଣି ମଧ୍ୟ ମୋ ପରି କର୍ମପରାୟଣ ଗୃହସ୍ଥ ବ୍ୟକ୍ତିର କୋମଳମତି ପୁତ୍ରମାନଙ୍କର ମତିଭ୍ରମ ଘଟାଇ ସେମାନଙ୍କୁ ଗୃହତ୍ୟାଗୀ କରାଇଅଛ । ତୁମକୁ ଅଭିଶାପ ଦେଉଅଛି, ମୋ ସନ୍ତାନ-ମାନଙ୍କର କର୍ତ୍ତବ୍ୟଚ୍ୟୁତ ଘଟାଇଥିବା ଅପରାଧରେ ତୁମେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ବାସକରିବାର ସୁଖରୁ ବଞ୍ଚିତ ହୋଇ ନିରନ୍ତର ଭ୍ରମଣ କରୁଥିବ ।'

ପରେ ବ୍ରହ୍ମାଙ୍କ ଅନୁରୋଧକ୍ରମେ ଦକ୍ଷ ନିଜର ପତ୍ନୀ ଅସିକ୍ନୀଙ୍କ ଗର୍ଭରେ ଷାଠିଏଟି କନ୍ୟା ସୃଷ୍ଟି କଲେ । ସେହି କନ୍ୟାମାନଙ୍କ ମଧ୍ୟରୁ ଦଶ ଜଣଙ୍କୁ 'ଧର୍ମ'ଙ୍କୁ, ତେର ଜଣଙ୍କୁ କଶ୍ୟପଙ୍କ ହସ୍ତରେ, ସତେଇଶ ଜଣଙ୍କୁ ଚନ୍ଦ୍ରଙ୍କୁ, ଦୁଇଜଣଙ୍କୁ ମହର୍ଷି ଭୃଗୁଙ୍କୁ, ଦୁଇଟିଙ୍କୁ ଅଙ୍ଗିରାଙ୍କୁ, ଦୁଇଟି ମହର୍ଷି କୃଶାଶ୍ୱଙ୍କୁ ଓ ଅବଶିଷ୍ଟ ଚାରିଜଣଙ୍କୁ ତାର୍କ୍ଷ୍ୟ ନାମକ ଜନୈକ ଋଷିଙ୍କୁ ସମ୍ପ୍ରଦାନ କରିଥିଲେ । ସେହି କନ୍ୟାମାନଙ୍କର ଗର୍ଭଜାତ ସନ୍ତାନସନ୍ତତିରେ ପ୍ରଜାସଂଖ୍ୟା ବୃଦ୍ଧିପ୍ରାପ୍ତ ହୋଇଥିଲା ।

ଦକ୍ଷଙ୍କର କନ୍ୟାମାନଙ୍କ ମଧ୍ୟରୁ ଅଦିତି ଅନ୍ୟତମା । ସେ କଶ୍ୟପଙ୍କୁ ବିବାହ କରିଥିଲେ । ଅଦିତିଙ୍କ ଗର୍ଭରୁ ବାରଟି ପୁତ୍ର ଜାତ ହୋଇଥିଲେ; ସେହି ପୁତ୍ରମାନଙ୍କ ମଧ୍ୟରେ ତ୍ୱଷ୍ଟା ଅନ୍ୟତମ । ଏହି ତ୍ୱଷ୍ଟାଙ୍କର ପୁତ୍ର ବିଶ୍ୱରୂପ ଅତ୍ୟନ୍ତ ଗୁଣବାନ ଥିଲେ । ଯେତେବେଳେ ଦେବଗୁରୁ ବୃହସ୍ପତି ଦେବତାମାନଙ୍କ ଦ୍ୱାରା ଅପମାନିତ ହୋଇ ସେମାନଙ୍କୁ ପରିତ୍ୟାଗ କରିଥିଲେ, ସେତେବେଳେ ଦେବତାମାନେ ଏହି ବିଶ୍ୱରୂପଙ୍କୁ ଦେବଗୁରୁ ଭାବରେ ବରଣ କରିଥିଲେ ।

ଦେବଗୁରୁ ବୃହସ୍ପତି କାହିଁକି ଦେବତାମାନଙ୍କୁ ପରିତ୍ୟାଗ କଲେ, ତାହା ଜାଣିବାକୁ ପରୀକ୍ଷିତ ପଚାରିବାରୁ, ଶୁକଦେବ କହିଲେ, 'ଦେବତା-ମାନଙ୍କର ରାଜା ବୋଲି ଇନ୍ଦ୍ରଙ୍କ ମନରେ ଯଥେଷ୍ଟ ଗର୍ବ ଥିଲା । ସେହି

ଐଶ୍ୱର୍ଯ୍ୟମଦମତ୍ତ ଇନ୍ଦ୍ର ଥରେ ପତ୍ନୀଙ୍କ ସହିତ ଦେବସଭାରେ ଉପବେଶନ କରିଅଛନ୍ତି, ଏହି ସମୟରେ ମରୁତ୍, ବସୁ, ରୁଦ୍ର, ଆଦିତ୍ୟ, ଋଭୁ, ବିଶ୍ୱଦେବ, ସାଧ୍ୟଗଣ ଓ ଅଶ୍ୱିନୀକୁମାରଦ୍ୱୟ ତାଙ୍କର ଚତୁର୍ଦ୍ଦିଗରେ ଆସି ଉପବେଶନ କଲେ । ସିଦ୍ଧ, ଚାରଣ, ଗନ୍ଧର୍ବ, ବିଦ୍ୟାଧର, ଅପ୍‌ସରା, କିନ୍ନର, ନାଗଗଣ ତଥା ଋଷିମାନେ ଇନ୍ଦ୍ରଙ୍କର ସେବା ଓ ସ୍ତୁତି ଗାନ କରୁଅଛନ୍ତି, ଏପରି ସମୟରେ ସର୍ବଦେବନମସ୍ୟ ଦେବଗୁରୁ ବୃହସ୍ପତି ସେଠାରେ ଆସି ଉପସ୍ଥିତ ହେଲେ । ସମବେତ ଦେବଗଣ ବୃହସ୍ପତିଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିଥିଲେ ମଧ୍ୟ ଇନ୍ଦ୍ର ନିଜର ସିଂହାସନରୁ ଉଠି ତାଙ୍କୁ ସ୍ୱାଗତ ଅଭିନନ୍ଦନ ଜଣାଇବା ଦୂରର କଥା, ସାମାନ୍ୟ ବିଚଳିତ ମଧ୍ୟ ହେଲେ ନାହିଁ । ବୃହସ୍ପତି ନିଜପ୍ରତି ଦେବରାଜ-ଙ୍କର ଏପରି ଅନାଦର ଲକ୍ଷ୍ୟ କରି ନୀରବରେ ସଭାସ୍ଥାନ ତ୍ୟାଗ କରି ଚାଲିଗଲେ । ବୃହସ୍ପତି ଚାଲିଯିବା ପରେ ଦେବରାଜ ନିଜର ତ୍ରୁଟି ବୁଝିପାରିଲେ ଏବଂ ନିଜକୁ ଧିକ୍‌କାର କରି ଭାବିଲେ, 'ହାୟ, ମୁଁ ଏହି ଐଶ୍ୱର୍ଯ୍ୟମଦରେ ମତ୍ତ ହୋଇ ପ୍ରକାଶ୍ୟ ସଭାରେ ଗୁରୁଙ୍କ ପ୍ରତି ଅବଜ୍ଞା ପ୍ରକାଶ କଲି । ହାୟ, ଏହି ଐଶ୍ୱର୍ଯ୍ୟସୁଖ ମୋର ସମସ୍ତ ଜ୍ଞାନ ଓ ସମ୍ମାନ-ବୋଧକୁ ଲୋପ କରିଅଛି ; ଫଳରେ ବୃହସ୍ପତିଙ୍କ ପରି ପରମ ମାନନୀୟ ବ୍ୟକ୍ତିଙ୍କୁ ମୁଁ ଅବମାନନା କଲି । ହାୟ ! କ'ଣ କରି ମୁଁ ତାଙ୍କୁ ପ୍ରସନ୍ନ କରିବି ? କାଳବିଳମ୍ବ ନ କରି ତାଙ୍କ ନିକଟକୁ ମୋର ଯିବା ଉଚିତ ଏବଂ ତାଙ୍କ ଚରଣରେ ମସ୍ତକ ଲଗାଇ ତାଙ୍କଠାରୁ କ୍ଷମା ଭିକ୍ଷା କରିବା ମୋର ଉଚିତ ।'

ଦେବରାଜ ଏହିପରି ଭାବୁଥିବା ବିଷୟ ଯୋଗବଳରେ ବୃହସ୍ପତି ଜାଣିବାକୁ ପାଇ ନିଜର ମାୟାଶକ୍ତି ବଳରେ ନିଜ ଗୃହରୁ ଅଦୃଶ୍ୟ ହୋଇଗଲେ । ଦେବରାଜ ଯେତେ ଅନ୍ୱେଷଣ କଲେ ମଧ୍ୟ ବୃହସ୍ପତିଙ୍କର କୌଣସି ସନ୍ଧାନ ପାଇପାରିଲେ ନାହିଁ ।

ଦେବଗୁରୁ ବୃହସ୍ପତିଙ୍କ ସହିତ ଦେବତାମାନଙ୍କର ମାନମନାନ୍ତର ଘଟିଛି ଓ ଦେବତାମାନେ ଅତ୍ୟନ୍ତ ଚିନ୍ତିତାବସ୍ଥାରେ କାଳଯାପନ କରୁଅଛନ୍ତି, ଏ କଥା ଅସୁରମାନଙ୍କ ନିକଟରେ ଅଛପା ରହିଲା ନାହିଁ । ସେମାନେ ଏହାକୁ ଏକ ସୁଯୋଗ ବୋଲି ମନେ କରି ଦେବତାମାନଙ୍କୁ

ଆକ୍ରମଣ କଲେ । ଦେବତା ଓ ଅସୁରମାନଙ୍କ ମଧ୍ୟରେ ସଂଗ୍ରାମ ଅନୁଷ୍ଠିତ ହେଲା ଏବଂ ଦେବତାମାନେ ପରାସ୍ତ ଓ କ୍ଷତବିକ୍ଷତ ହୋଇ ଦେବରାଜ ଇନ୍ଦ୍ରଙ୍କ ସହିତ ଭଗବାନ ବ୍ରହ୍ମାଙ୍କ ନିକଟରେ ଶରଣ ପଶିଲେ ।

ଦେବତାମାନଙ୍କର ଶୋଚନୀୟ ଅବସ୍ଥା ଲକ୍ଷ୍ୟ କରି ବ୍ରହ୍ମା କହିଲେ, 'ଦେବଗଣ, ତୁମ୍ଭେମାନେ ପ୍ରଭୁତ୍ୱ ଓ ଐଶ୍ୱର୍ଯ୍ୟଗର୍ବରେ ମତ୍ତ ହୋଇ ଜିତେନ୍ଦ୍ରିୟ ବ୍ରହ୍ମନିଷ୍ଠ ବ୍ରାହ୍ମଣ ବୃହସ୍ପତିଙ୍କୁ ଅବମାନନା କରି ଗୁରୁତର ଅପରାଧ କରିଅଛ । ସେହି ଅପରାଧ ଯୋଗୁ ତୁମ୍ଭେମାନେ ଶତ୍ରୁମାନଙ୍କ ଦ୍ୱାରା ପରାସ୍ତ ହୋଇଅଛ । ବ୍ରାହ୍ମଣ, ଗୋମାତା ଓ ଭଗବାନଙ୍କର ଅବମାନନା କଲେ ଶୋଚନୀୟ ଦୁର୍ଦ୍ଦଶା ଭୋଗ କରିବାକୁ ପଡ଼ିଥାଏ । ବର୍ତ୍ତମାନ ତୁମ୍ଭେମାନେ ତ୍ୱଷ୍ଟାଙ୍କର ପୁତ୍ର ଜିତେନ୍ଦ୍ରିୟ ତପସ୍ୱୀ ବ୍ରାହ୍ମଣ ବିଶ୍ୱରୂପଙ୍କ ନିକଟକୁ ଯାଇ ତାଙ୍କର ସେବା କର । ବିଶ୍ୱରୂପ ପୂର୍ବେ ଅସୁରମାନଙ୍କର କଲ୍ୟାଣ ସାଧନରେ ନିଯୁକ୍ତ ଥିଲେ; ଏହା ସତ୍ତ୍ୱେ ଯଦି ତୁମେ ତାଙ୍କୁ ସେବା କରିପାର, ତେବେ ତୁମ୍ଭମାନଙ୍କର ଅଭୀଷ୍ଟ ପୂର୍ଣ୍ଣହେବ ।'

ଭଗବାନ ବ୍ରହ୍ମାଙ୍କ ପରାମର୍ଶ ଅନୁସାରେ ଦେବତାମାନେ ବିଶ୍ୱରୂପଙ୍କ ନିକଟକୁ ଯାଇ ତାଙ୍କୁ ଆଲିଙ୍ଗନ କରି କହିଲେ, 'ବାବା, ତୁମର ମଙ୍ଗଳ ହେଉ । ଅତିଥି ରୂପରେ ଆମ୍ଭେମାନେ ଆଜ ତୁମ ଆଶ୍ରମରେ ଉପସ୍ଥିତ ହୋଇଅଛୁ । ଆମ୍ଭେମାନେ ତୁମର ପିତୃତୁଲ୍ୟ ପୂଜନୀୟ । ଆମ୍ଭମାନଙ୍କର ସମୟୋଚିତ କାମନା ତୁମେ ପୂରଣ କର । ଆଚାର୍ଯ୍ୟମାନେ ସାକ୍ଷାତ ବେଦର ମୂର୍ତ୍ତିମନ୍ତ ମୂର୍ତ୍ତି, ପିତାମାନେ ପ୍ରଜାପତିଙ୍କର ପ୍ରତୀକ, ଭ୍ରାତାମାନେ ମରୁତ୍‌ପତି ଇନ୍ଦ୍ରଙ୍କର ପ୍ରତିରୂପ, ମାତାମାନେ ସାକ୍ଷାତ ଧରଣୀ, ଭଗିନୀମାନେ ଦୟାର, ଅତିଥିମାନେ ଧର୍ମର, ଅଭ୍ୟାଗତମାନେ ଅଗ୍ନିର, ପ୍ରାଣୀମାନେ ଆତ୍ମାର ପ୍ରତୀକ ରୂପେ ଗୃହୀତ । ସତ୍‌ପୁତ୍ରମାନଙ୍କ ପକ୍ଷରେ ପିତୃସେବା ପରମ କର୍ତ୍ତବ୍ୟ ; ସେହି ଦୃଷ୍ଟିରୁ ଆମ୍ଭମାନଙ୍କ ପରି ପିତୃଜନମାନଙ୍କର ଅଭିଳାଷ ପୂରଣ କରିବା ତୁମର ଉଚିତ୍ । ଅସୁରମାନଙ୍କର ଶତ୍ରୁତାର କଥା ତୁମକୁ ଅବିଦିତ ନାହିଁ । ସେମାନଙ୍କ ଦ୍ୱାରା ପରାଭୂତ ହୋଇ ଆମ୍ଭେମାନେ ତୁମର ଦ୍ୱାରସ୍ଥ ହୋଇଅଛୁ । ଯେପରି ତୁମର ଏହି ବ୍ରହ୍ମନିଷ୍ଠ ତେଜ ପ୍ରଭାବରେ

ଆମ୍ଭେମାନେ ଶତ୍ରୁଙ୍କୁ ଜୟ କରିପାରିବୁ, ସେଥିପାଇଁ ତୁମକୁ ଆଚାର୍ଯ୍ୟ ପଦରେ ବରଣ କରୁଅଛୁ । ତୁମେ କିଛି ସଙ୍କୋଚ କର ନାହିଁ । ବୟସରେ ତୁମେ କନିଷ୍ଠ ହେଲେ ମଧ୍ୟ, ତୁମେ ବ୍ରହ୍ମନିଷ୍ଠ ଏବଂ ବେଦଜ୍ଞ; ତେଣୁ ଆମ୍ଭମାନଙ୍କ ଅପେକ୍ଷା ତୁମେ ଗରିୟାନ୍ । ତୁମେ ଆମର ନମସ୍ୟ । ପ୍ରୟୋଜନସ୍ଥଳେ ବୟୋଜ୍ୟେଷ୍ଠଙ୍କ ଦ୍ୱାରା କନିଷ୍ଠର ପଦବନ୍ଦନା ନିନ୍ଦନୀୟ ନୁହେଁ ।'

ଦେବତାମାନଙ୍କର ଏପରି ଅନୁରୋଧପୂର୍ଣ୍ଣ ବାକ୍ୟ ଶ୍ରବଣ କରି ବିଶ୍ୱରୂପ କହିଲେ, 'ପ୍ରଭୁ, ପୌରୋହିତ୍ୟ କାର୍ଯ୍ୟ ଅଧର୍ମର କାରଣ ବୋଲି କହି ଶାସ୍ତ୍ରଜ୍ଞମାନେ ତାକୁ ନିନ୍ଦା କରିଅଛନ୍ତି, କାରଣ ତଦ୍ଦ୍ୱାରା ପୂର୍ବ ସଞ୍ଚିତ ବ୍ରହ୍ମତେଜର କ୍ଷୟ ଘଟିଥାଏ । ତେବେ ଆପଣମାନଙ୍କର କଥା ଭାଙ୍ଗିପାରୁ ନାହିଁ । ମୁଁ ଜଣେ ଉଞ୍ଛସ୍ୱଭାବସମ୍ପନ୍ନ ବ୍ରାହ୍ମଣ ଏବଂ ଉଞ୍ଛବୃତ୍ତି ଅନୁସାରେ ସଂଗୃହୀତ ଶସ୍ୟ ଦ୍ୱାରା ମୁଁ ସାଧୁମାନଙ୍କର ସତ୍କାର କରିଥାଏ । ତେବେ ଯେ ଯାହାହେଉ, ମୁଁ ଆପଣମାନଙ୍କର ଅନୁରୋଧ ରକ୍ଷା କରୁଅଛି ।'

ଏହା କହି ବିଶ୍ୱରୂପ ଦେବତାମାନଙ୍କର ପୌରୋହିତ୍ୟ ପଦ ଗ୍ରହଣ କଲେ । ବିଶ୍ୱରୂପଙ୍କର ବ୍ରହ୍ମଶକ୍ତି ତଥା ତାଙ୍କ କଥିତ ନାରାୟଣ କବଚ ବଳରେ ବଳୀୟାନ ହୋଇ ଦେବରାଜ ଇନ୍ଦ୍ର ଅକ୍ଳେଶରେ ଅସୁରମାନଙ୍କୁ ପରାସ୍ତ କରି ନିଜର ହୃତଗୌରବ ଫେରାଇ ଆଣିଲେ ।

ଦେବତାମାନେ ଥିଲେ ବିଶ୍ୱରୂପଙ୍କର ପିତୃକୁଳ; କିନ୍ତୁ ବିଶ୍ୱରୂପଙ୍କର ମାତା ରଚନା ଦୈତ୍ୟକନ୍ୟା ଥିବାରୁ ଅସୁରମାନଙ୍କ ପ୍ରତି ବିଶ୍ୱରୂପଙ୍କ ମନରେ ଆଦୌ ଶତ୍ରୁଭାବ ନ ଥିଲା; ତେଣୁ ଦେବତା-ମାନଙ୍କର ପୁରୋହିତ ଭାବରେ କାର୍ଯ୍ୟ କଲାବେଳେ ବିଶ୍ୱରୂପ ଅନୁଷ୍ଠିତ ଯଜ୍ଞର ଯଜ୍ଞଭାଗ ଦେବତାମାନଙ୍କୁ ଅର୍ପଣ କଲାବେଳେ, ଶାସ୍ତ୍ର ଅନୁଯାୟୀ ଅସୁରମାନଙ୍କ ଉଦ୍ଦେଶ୍ୟରେ ମଧ୍ୟ ସେମାନଙ୍କର ଯଜ୍ଞଭାଗ ସେ ଅର୍ପଣ କରୁଥିଲେ । ଦେବତାମାନଙ୍କ ଦ୍ୱାରା ଅନୁଷ୍ଠିତ ଯଜ୍ଞରେ ଦେବ-ଶତ୍ରୁଙ୍କୁ ଯଜ୍ଞଭାଗ ଅର୍ପଣ କରାଯାଉଅଛି ଦେଖି ଦେବରାଜ ଇନ୍ଦ୍ରଙ୍କର କ୍ରୋଧର ସୀମା ରହିଲା ନାହିଁ; ସେ କ୍ରୋଧରେ ହତଜ୍ଞାନ ହୋଇ ସଙ୍ଗେ ସଙ୍ଗେ ବିଶ୍ୱରୂପଙ୍କୁ ହତ୍ୟା କଲେ । ବିଶ୍ୱରୂପ ବ୍ରାହ୍ମଣ ଥିଲେ, ତେଣୁ ତାଙ୍କୁ ହତ୍ୟା କରିବା ଫଳରେ ଇନ୍ଦ୍ରଙ୍କୁ ବ୍ରହ୍ମହତ୍ୟା ଦୋଷ ଲାଗିଲା ।

ବ୍ରହ୍ମହତ୍ୟାଜନିତ ପାପର ଭାରକୁ ସହ୍ୟ କରିବା ତାଙ୍କ ପକ୍ଷରେ ଅସମ୍ଭବ ହେବାରୁ, ସେହି ପାପକୁ ଅନ୍ୟମାନଙ୍କ ମଧ୍ୟରେ ବିତରଣ କରିବାକୁ ସେ ଚାହିଁଲେ । ପାପର ଭାରକୁ ଗ୍ରହଣ କରିବାକୁ କେହି ସମ୍ମତ ନ ହେବାରୁ, ଇନ୍ଦ୍ର ସେହି ପାପକୁ ଚାରି ଭାଗରେ ବିଭକ୍ତ କରି ପାପଗ୍ରହଣକାରୀଙ୍କୁ ବିଭିନ୍ନ ବର ପ୍ରଦାନ କରିବା'ର ପ୍ରଲୋଭନ ଦେଖାଇଲେ । ତା'ଫଳରେ ସେହି ପାପର ଏକଭାଗ ପୃଥିବୀ, ଅନ୍ୟ ଏକ ଭାଗ ଜଳ, ତୃତୀୟ ଭାଗ ବୃକ୍ଷ ଏବଂ ଅବଶିଷ୍ଟ ଭାଗ ନାରୀ ଗ୍ରହଣ କଲେ ।

ଦେବରାଜ ନିଜର ପାପକୁ ଏହିପରି ବିତରଣ କରି କହିଲେ, ପୃଥିବୀ ମୋ ପାପର ଭାର ଗ୍ରହଣ କରିଥିବାରୁ, ମୁଁ ବରପ୍ରଦାନ କରୁଛି ଯେ ପୃଥିବୀ ଦେହରେ ଗର୍ତ୍ତ ହେଲେ ତାହା ମନକୁ ମନ ପୋତି ହୋଇଯିବ । ବୃକ୍ଷର କୌଣସି ଅଂଶ ଛିନ୍ନ ହେଲେ ସେହି ଅଂଶ ପୂରଣ ହେବ । ଜଳ କେବେ ଶେଷ ହେବ ନାହିଁ ଏବଂ ନାରୀମାନେ ଗର୍ଭ-କାଳରେ ପୁରୁଷ ସମ୍ଭୋଗ କଲେ ଗର୍ଭପାତ ଘଟିବ ନାହିଁ ।

ଏହି ପାପର ସଙ୍କେତ ମୃତ୍ତିକାର ଊଷର ଭୂମିରେ, ବୃକ୍ଷର କ୍ଷରିତ ରସରେ, ଜଳର ଫେଣ ଓ ବୁଦ୍‌ବୁଦରେ ଏବଂ ନାରୀର ରଜସ୍ରାବରେ ପରିଦୃଷ୍ଟ ହୋଇଥାଏ ।

ଏଣେ, ବିଶ୍ୱରୂପଙ୍କର ପିତା ତ୍ୱଷ୍ଟା ପୁତ୍ରନିଧନରେ ମର୍ମାହତ ହୋଇ ଦେବରାଜ ଇନ୍ଦ୍ରଙ୍କର ବିନାଶ ନିମନ୍ତେ ଏକ ଯଜ୍ଞ ଆରମ୍ଭ କଲେ । ସେହି ଯଜ୍ଞରେ ଇନ୍ଦ୍ରମାରଣ ଉଦ୍ଦେଶ୍ୟରେ ପୂର୍ଣ୍ଣାହୁତି ଦେବା ମାତ୍ରେ ଯଜ୍ଞଅନଳ ମଧ୍ୟରୁ ଏକ ଭୟଙ୍କରାକୃତି ପୁରୁଷ ବହିର୍ଗତ ହେଲା । ସେହି ପୁରୁଷର ଭୟଉଦ୍ରେକକାରୀ ବିକଟାଳ ମୂର୍ତ୍ତି ଦେଖି ସମବେତ ଲୋକମାନେ ଭୟଭୀତ ହୋଇ ପଳାୟନ କଲେ ।

ସେହି ପୁରୁଷ ନିଜର ଭୟାନକ ଅସୁରସୁଲଭ ରୂପ ଦ୍ୱାରା ସମସ୍ତ ପୃଥିବୀକୁ ଏକ ପ୍ରକାର ଆବୃତ କରି ରଖିଥିବାରୁ ତା'ର ନାମ ହେଲା ବୃତ୍ରାସୁର । ସେ ଦେବରାଜ ଇନ୍ଦ୍ର ଓ ଦେବତାମାନଙ୍କୁ ଆକ୍ରମଣ କରି ସେମାନଙ୍କୁ ଛିନ୍ନଭିନ୍ନ କରିପକାଇଲା । ଦେବତାମାନେ ଯେତେ ଅସ୍ତ୍ର ତା ଉଦ୍ଦେଶ୍ୟରେ ନିକ୍ଷେପ କଲେ, ସେ ସବୁକୁ ବୃତ୍ରାସୁର

ଗ୍ରାସ କରି ପକାଇଲା । ବୃତ୍ରାସୁରର ଆକ୍ରମଣରୁ ରକ୍ଷା ଲାଭ କରିବା ପାଇଁ ଦେବତାମାନେ ଭଗବାନଙ୍କୁ ସ୍ତୁତି କଲେ ଏବଂ ସେମାନଙ୍କର ପ୍ରାର୍ଥନାରେ ଭଗବାନ ସନ୍ତୁଷ୍ଟ ହୋଇ ଆବିର୍ଭୂତ ହେବାରୁ ଦେବତାମାନେ କହିଲେ, 'ପ୍ରଭୁ, ବୃତ୍ରାସୁର ଆମ୍ଭମାନଙ୍କର ତେଜ, ଅସ୍ତ୍ର, ଆୟୁଧମାନ ହରଣ କରି ତ୍ରିଭୁବନକୁ ଗ୍ରାସ କରିବାକୁ ଯାଉଅଛି । ଆପଣ ତାକୁ ସଂହାର କରି ଆମ୍ଭମାନଙ୍କୁ ତଥା ସମସ୍ତ ତ୍ରିଭୁବନକୁ ରକ୍ଷା କରନ୍ତୁ ।'

ଭଗବାନ କହିଲେ, 'ଦେବଗଣ, ମୁଁ ତୁମ୍ଭମାନଙ୍କର ସ୍ତୁତିରେ ସନ୍ତୁଷ୍ଟ ହୋଇଅଛି । ତୁମ୍ଭେମାନେ ମହର୍ଷି ଶିରୋମଣି ଦଧୀଚିଙ୍କ ନିକଟକୁ ଯାଇ ବିଦ୍ୟା, ବ୍ରତ ଓ ତପସ୍ୟାବଳରେ ତାଙ୍କର ସୁଗଠିତ ଦୃଢ଼ ଶରୀରଟିକୁ ଭିକ୍ଷା କର । ଅଥର୍ବ ବେଦରେ ଦଧୀଚି ପ୍ରବୀଣ ଏବଂ ସେ ପୂର୍ବେ ତ୍ୱଷ୍ଟାଙ୍କୁ ନାରାୟଣବର୍ମ ନାମକ ଅଭେଦ୍ୟ କବଚ ପ୍ରଦାନ କରିଥିଲେ; ତ୍ୱଷ୍ଟା ତାହା ଲାଭ କରି ବିଶ୍ୱରୂପଙ୍କୁ ପ୍ରଦାନ କରିଥିଲେ; ତୁମ୍ଭେମାନେ ବିଶ୍ୱରୂପଙ୍କଠାରୁ ତାହା ଲାଭ କରିଅଛ । ତୁମ୍ଭମାନଙ୍କ ନିମନ୍ତେ ମହର୍ଷି ଦଧୀଚିଙ୍କର ଶିଷ୍ୟ ଅଶ୍ୱିନୀ କୁମାର ଦ୍ୱୟ ମହର୍ଷିଙ୍କ ନିକଟରୁ ତାଙ୍କର ଶରୀରକୁ ପ୍ରାର୍ଥନା କଲେ, ସେ ତାହା ନିଶ୍ଚୟ ଦେବେ । ଦଧୀଚି ଯେପରି ଧର୍ମପରାୟଣ, ସେହିପରି ଶିଷ୍ୟବତ୍ସଳ । ଦଧୀଚିଙ୍କର ଶରୀର ଲାଭକଲେ ବିଶ୍ୱକର୍ମା ଦଧୀଚିଙ୍କ ଅସ୍ଥିରେ ବଜ୍ର ରୂପକ ଏକ ଅମୋଘ ଅସ୍ତ୍ର ନିର୍ମାଣ କରିବେ । ସେହି ଅସ୍ତ୍ରବଳରେ ତୁମ୍ଭେମାନେ ବୃତ୍ରାସୁରକୁ ସଂହାର କରିପାରିବ ଏବଂ ନିଜର ଅପହୃତ ମର୍ଯ୍ୟାଦା ଫେରିପାଇବ ।

ମହର୍ଷି ଦଧୀଚିଙ୍କ ନିକଟକୁ ଯାଇ ଦେବତାମାନେ ଯେତେବେଳେ ତାଙ୍କର ଶରୀରକୁ ପ୍ରାର୍ଥନା କଲେ, ଦଧୀଚି କହିଲେ, 'ଦେବଗଣ, ଇହଲୋକବାସୀ ଜୀବର ଶରୀର ହିଁ ପ୍ରିୟତମ ସମ୍ପଦ । ତା'ଛଡ଼ା ମୃତ୍ୟୁ ସମୟରେ ଜୀବ ଯେଉଁ ଅସହ୍ୟ ଯନ୍ତ୍ରଣା ଲାଭ କରିଥାଏ, ତାହା ଆପଣମାନଙ୍କୁ ଅବିଦିତ ନାହିଁ । ତଥାପି ହେଲେ ନା ହେଲେ ମୋର ମୃତ୍ୟୁ ଘଟିବ ଏବଂ ମୋର ଏହି ପ୍ରିୟତମ ଶରୀରଟିକୁ ମୋତେ ତ୍ୟାଗ କରିବାକୁ ହେବ, ତେଣୁ ଏହି ମରଣଶୀଳ ଶରୀର ଆପଣମାନଙ୍କର ଯଦି କୌଣସି ଉପକାରରେ ଆସିପାରେ ଏବଂ ତଦ୍ୱାରା ଧର୍ମ ଓ ଯଶ ଯଦି ମୁଁ

ଲାଭ କରିପାରେ, ତେବେ ଆଜ ମୁଁ ତାହାକୁ ଦାନ କରୁଛି । ଅନ୍ୟର ଉପକାର ସାଧନ କରିବା ହିଁ ଜୀବ ପକ୍ଷରେ ମହତ୍ତମ କାର୍ଯ୍ୟ ।'

ଏହା କହି ପ୍ରସନ୍ନଚିତ୍ତରେ ମହର୍ଷି ଦଧୀଚି ଭଗବାନଙ୍କୁ ଧ୍ୟାନ କରି ଦେହତ୍ୟାଗ କଲେ । ଦେବତାମାନେ ଦଧୀଚିଙ୍କର ସେହି ଅପୂର୍ବ ଦାନର ଭୂୟସୀ ପ୍ରଶଂସା ନ କରି ରହିପାରିଲେ ନାହିଁ । ଦଧୀଚିଙ୍କ ଶରୀରର ଅସ୍ଥିରେ ବିଶ୍ୱକର୍ମା ବଜ୍ର ନାମକ ଏକ ଅମୋଘ ଅସ୍ତ୍ର ନିର୍ମାଣ କଲେ ଏବଂ ତାକୁ ଧାରଣ କରି ଦେବରାଜ ଇନ୍ଦ୍ର ଐରାବତ ହସ୍ତୀରେ ଆରୋହଣ କରି ବୃତ୍ରାସୁରକୁ ଆକ୍ରମଣ କଲେ । ଫଳରେ ଦେବତା ଓ ଅସୁରମାନଙ୍କ ମଧ୍ୟରେ ନର୍ମଦା ନଦୀ କୂଳରେ ପ୍ରବଳ ସଂଗ୍ରାମ ଅନୁଷ୍ଠିତ ହେଲା । ଦେବତାମାନଙ୍କ ଆକ୍ରମଣରେ ମହାବଳ ପରାକ୍ରାନ୍ତ ଅସୁର ସେନା ଶୋଚମୀୟ ଭାବରେ ପରାଜିତ ହୋଇ ଯୁଦ୍ଧ କ୍ଷେତ୍ରରୁ ପଳାୟନ କରିବାକୁ ଲାଗିଲେ । ବୃତ୍ରାସୁର ଯେତେ ପ୍ରକାରର ଉତ୍ସାହ ଉଦ୍ରେକକାରୀ ବାକ୍ୟ ପ୍ରୟୋଗ କଲେ ମଧ୍ୟ ନିଜର ସୈନ୍ୟଙ୍କ ମଧ୍ୟରେ ପୂର୍ବଶକ୍ତି ସଞ୍ଚାର କରିପାରିଲା ନାହିଁ; ତେଣୁ ଦେବତାଙ୍କ ବିରୁଦ୍ଧରେ ବୃତ୍ରାସୁରକୁ ଏକାକୀ ଯୁଦ୍ଧ କରିବାକୁ ପଡ଼ିଲା ।'

ଦେବରାଜ ଇନ୍ଦ୍ରଙ୍କୁ ଲକ୍ଷ୍ୟକରି ବୃତ୍ରାସୁର କହିଲା, 'ରେ ପାପିଷ୍ଠ, ତୁ ବ୍ରହ୍ମଘାତୀ ଓ ଗୁରୁହତ୍ୟାକାରୀ । ଏତେଦିନେ ତୁ ମୋର ସମ୍ମୁଖରେ ପଡ଼ିଛୁ । ତୋର ବକ୍ଷ ବିଦୀର୍ଣ୍ଣ କରି ତୋର ରକ୍ତ ଆଜି ମୁଁ ପାନ କରିବି । ତୋ ପରି ନିଷ୍ଠୁର, ନିର୍ମମ ଓ ବିଶ୍ୱାସଘାତକ କେହି ନାହିଁ । ନିଜର ସୁଖ ଓ ଐଶ୍ୱର୍ଯ୍ୟ ପାଇଁ ଯଜ୍ଞକାର୍ଯ୍ୟରେ ଦୀକ୍ଷିତ ନିଜର ପୁରୋହିତ ଆତ୍ମତତ୍ତ୍ୱବିତ୍ ଓ ପୁଣ୍ୟାତ୍ମା ଗୁରୁ ବିଶ୍ୱରୂପଙ୍କ ମନରେ ବିଶ୍ୱାସ ଉଦ୍ରେକ କରି ପରେ ତାଙ୍କୁ ତୁ ହତ୍ୟା କରି ଅପୂର୍ବ ବିଶ୍ୱାସଘାତକତାର ଘୃଣ୍ୟ ପରିଚୟ ଦେଇଅଛୁ । ଏହି ଅପକର୍ମ ଫଳରେ ଐଶ୍ୱର୍ଯ୍ୟ ଲକ୍ଷ୍ମୀ, ଲଜ୍ଜା, ଦୟା ଓ କୀର୍ତ୍ତିଙ୍କ ଦ୍ୱାରା ତୁ ଯେ କେବଳ ପରିତ୍ୟକ୍ତ ହୋଇଅଛୁ ତାହା ନୁହେଁ, ଅସୁରମାନଙ୍କ ନିକଟରେ ମଧ୍ୟ ଘୃଣ୍ୟ ଓ ନିନ୍ଦିତ ହୋଇଅଛୁ । ତୋ ଭଳି ନିର୍ଲଜ୍ଜ ବିଶ୍ୱାସଘାତକକୁ ହତ୍ୟା ନକଲା ପର୍ଯ୍ୟନ୍ତ ମୋର ଶାନ୍ତି ନାହିଁ । ତୋତେ ତୋର ଅନୁଚରମାନଙ୍କ ସହିତ ହତ୍ୟା କଲେ ତୁମ୍ଭମାନଙ୍କ ଶରୀରକୁ ମହାଆନନ୍ଦରେ କୁକୁର ଶାଗୁଣାମାନେ ଭକ୍ଷଣ

କରିବେ, ଆଜି ଏହି ଯୁଦ୍ଧରେ ଯଦି ତୋ ହସ୍ତରେ ମୋର ମୃତ୍ୟୁ ଘଟେ, ତେବେ ଦେହଦ୍ୱାରା ଭୂତବଳି ପ୍ରଦାନ କରି କର୍ମ ବନ୍ଧନରୁ ମୁଁ ମୁକ୍ତ ହୋଇ ଜ୍ଞାନୀଜନଲଭ୍ୟ ପଦ ପ୍ରାପ୍ତ ହେବି । ମୁଁ ଜାଣେ ଭଗବାନଙ୍କ ତେଜରେ ମହର୍ଷି ଦଧୀଚିଙ୍କ ତପସ୍ୟା ଦଗ୍ଧ ଶରୀରରୁ ଅସ୍ଥି ଦ୍ୱାରା ନିର୍ମିତ ଏହି ଅମୋଘ ବଜ୍ର ତୋ ହସ୍ତରେ ରହିଅଛି ଏବଂ ତାହା ମଧ୍ୟ ନିଷ୍ଫଳ ହେବ ନାହିଁ । ମୁଁ ମଧ୍ୟ ଜାଣେ ଯେଉଁଠି ଭଗବାନଙ୍କର ଆଶୀର୍ବାଦ ରହିଛି, ସେଠି ଶ୍ରୀ, ବିଜୟ ଓ ସଦ୍‌ଗୁଣ ସମୂହର ଉଦୟ ଅବଶ୍ୟମ୍ଭାବୀ, ତଥାପି ତୋ ସହ ସଂଗ୍ରାମ କରିବାକୁ ମୁଁ ଉପସ୍ଥିତ ।'

ଦେବରାଜଙ୍କୁ ଏହା କହି ବୃତ୍ରାସୁର ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରି କହିଲା, 'ଭଗବାନ, ମୁଁ ନିରନ୍ତର ଆପଣଙ୍କୁହିଁ ଧ୍ୟାନ କରୁଅଛି । ଧ୍ରୁବଲୋକ, ବ୍ରହ୍ମଲୋକ, ସ୍ୱର୍ଗଲୋକ କିମ୍ବା ରସାତଳର ଆଧିପତ୍ୟ, ଯୋଗସିଦ୍ଧି ଅଥବା ମୁକ୍ତି, ମୁଁ କୌଣସିଟା ଚାହେଁ ନାହିଁ । ମୁଁ ଆପଣଙ୍କର ଦାସାନୁଦାସ । ମୋର ମନପ୍ରାଣ ଯେପରି ଆପଣଙ୍କ ଚରଣଯୁଗଳରେ ଲାଗି ରହିଥାଉ, ତାହାହିଁ ହେବ ମୋର ପରମ ସୌଭାଗ୍ୟ । କ୍ଷୁଧାର୍ତ୍ତ ପକ୍ଷୀଶାବକ ଯେପରି ତା'ର ମାତାର ଆଗମନକୁ, ରଜ୍ଜୁବଦ୍ଧ ବତ୍ସ ଯେପରି ଦୁଗ୍ଧପାନ ନିମନ୍ତେ ତା'ର ଜନନୀର ଆଗମନକୁ, ପ୍ରୋଷିତଭର୍ତ୍ତୃକା ଯେପରି ନିଜର କାମନା ଶାନ୍ତି ନିମନ୍ତେ ପ୍ରବାସୀ ପ୍ରିୟତମର ଆଗମନକୁ ପରମ ଔତ୍ସୁକ୍ୟରେ ଅପେକ୍ଷା କରି ରହିଥାଏ, ମୋ ମନ ଆଜି ଆପଣଙ୍କୁ ଦର୍ଶନ କରିବାକୁ ଅନୁରୂପ ଭାବରେ ଆକୁଳ ହେଉଅଛି । ଆପଣଙ୍କ ମାୟାପାଶରେ ଆବଦ୍ଧ ହୋଇ ମୁଁ ବିଷୟାସକ୍ତ ହୋଇ ମୋର କର୍ମାନୁସାରେ ସଂସାର ଚକ୍ରରେ ପରିଭ୍ରମଣ କରୁଅଛି । ମୋତେ ଏହି ମାୟାବନ୍ଧନରୁ ମୁକ୍ତ କରନ୍ତୁ ।'

ଏହିପରି ପ୍ରାର୍ଥନା କରି ବୃତ୍ରାସୁର ଦେବରାଜ ଇନ୍ଦ୍ରଙ୍କୁ ଆକ୍ରମଣ କଲା । ଅସୁରର ଭୀଷଣ ଆକ୍ରମଣର ବେଗ ସହ୍ୟ କରିବାକୁ ଇନ୍ଦ୍ର ସମର୍ଥ ହେଲେନାହିଁ । ସେ ଭୟବିହ୍ୱଳ ହୋଇପଡ଼ିଲେ ଏବଂ ତାଙ୍କ ହସ୍ତରୁ ସେହି ଆଲୌକିକ ତେଜୋଦୀପ୍ତ ବଜ୍ର ଖସିପଡ଼ିଲା ।

ଇନ୍ଦ୍ରଙ୍କର ଲଜ୍ଜାର ସୀମା ରହିଲା ନାହିଁ ।

ଶତ୍ରୁର ଅବସ୍ଥା ଲକ୍ଷ୍ୟକରି ବୃତ୍ରାସୁର କହିଲା, 'ଇନ୍ଦ୍ର, ଶତ୍ରୁ ସଂହାର ନିମନ୍ତେ ବହୁ କଷ୍ଟରେ ଯେଉଁ ବଜ୍ର ନିର୍ମାଣ କରି ଧାରଣ କରିଥିଲ, ତାକୁ ଉପଯୁକ୍ତ ଭାବେ ପ୍ରୟୋଗ କରିବା ଦୂରେ ଥାଉ, ଧରି ରଖିବାର ଶକ୍ତି ମଧ୍ୟ ତୋର ନାହିଁ । କି ଲଜ୍ଜାର କଥା ! ଏ ସବୁ ଯେ ସର୍ବନିୟନ୍ତା ଭଗବାନଙ୍କର ଇଚ୍ଛା, ଏଥିରେ ସନ୍ଦେହ ନାହିଁ । ସମସ୍ତ ଜଗତ ଭଗବାନଙ୍କ ଇଚ୍ଛାର ଅଧୀନ । କାଷ୍ଠନିର୍ମିତ ପୁତ୍ତଳିକାର ଚଳତ୍‌-ଶକ୍ତି ନ ଥାଏ, ତାହା ଚାଳକର ଇଚ୍ଛାନୁସାରେ ଚଳପ୍ରଚଳ ହେଲାପରି ସମସ୍ତ ଜଗତ ଓ ଜଗତର ସକଳ ପ୍ରାଣୀ କାଳରୂପୀ ଭଗବାନଙ୍କର ଇଚ୍ଛାରେ ଚାଳିତ ହୋଇଥାନ୍ତି । ଜୀବର ଜୟ ଓ ପରାଜୟ ହେଉ ସୃଷ୍ଟି-ସ୍ଥିତି-ଲୟକର୍ତ୍ତା ଅନାଦି ପୁରୁଷ, ସର୍ବଜ୍ଞ, ସର୍ବଶକ୍ତିମାନ, ଜଗତର ଅଧୀଶ୍ୱର ଏବଂ ବିଶ୍ୱନିୟନ୍ତାଙ୍କର ଇଚ୍ଛାର କଥା । ଈଶ୍ୱରଙ୍କର ମହିମା ଅପାର । ଯେଉଁ ଭଗବାନ ପିତାଙ୍କ ମାଧ୍ୟମରେ ପୁତ୍ର ସୃଷ୍ଟି କରିଥାନ୍ତି, ସେ ମଧ୍ୟ ଜୀବମାନଙ୍କୁ ସଂହାର କରିବା ନିମନ୍ତେ ହିଂସ୍ରଜନ୍ତୁ ସୃଷ୍ଟି କରିଅଛନ୍ତି । ତାଙ୍କର ଇଚ୍ଛାନୁସାରେ ଜୀବ ଐଶ୍ୱର୍ଯ୍ୟ, ସୁଖ, ସୌନ୍ଦର୍ଯ୍ୟ ଓ ଆୟୁଷ ଲାଭ କରେ ଏବଂ ପୁନର୍ବାର ତାଙ୍କର ଇଚ୍ଛାନୁସାରେ ସେ ସବୁ ମଧ୍ୟ ତିରୋହିତ ହୋଇଥାଏ । ଦେବରାଜ, ଲଜ୍ଜା ପରିହାର କରି ମୋ ଆଡ଼କୁ ଦୃଷ୍ଟିପାତ କରନ୍ତୁ । ଆପଣଙ୍କର ଅସ୍ତ୍ରଦ୍ୱାରା ମୋର ଗୋଟିଏ ବାହୁ ଛିନ୍ନ ହୋଇଥିଲେ ମଧ୍ୟ ମୁଁ ଆପଣଙ୍କୁ ସଂହାର କରିବାକୁ ଯଥାଶକ୍ତି ଉଦ୍ୟମ କରୁଅଛି; ଅଥଚ ଆପଣଙ୍କ ହସ୍ତରୁ ମୋର ମାରଣାସ୍ତ୍ର ଖସିପଡ଼ୁଛି । ଜୟ ପରାଜୟ ଦ୍ୟୂତ କ୍ରୀଡ଼ାପରି ଅନିଶ୍ଚିତ ଜଣା ପଡୁଥିଲେ ମଧ୍ୟ ଏସବୁ ବିଶ୍ୱ ନିୟନ୍ତାର ଇଚ୍ଛାର ଖେଳ ।'

ବୃତ୍ରାସୁର ମୁଖରୁ ଏହି କଥା ଶ୍ରବଣ କରି ଦେବରାଜ ଇନ୍ଦ୍ର ତାକୁ ପ୍ରଶଂସା ନକରି ରହିପାରିଲେ ନାହିଁ । ଇନ୍ଦ୍ର କହିଲେ, 'ଦାନବ, ତୁମର ଏହି ଉକ୍ତିରୁ ମୁଁ ବୁଝୁଛି, ତୁମର ସୁବୁଦ୍ଧି ହୋଇଅଛି ଏବଂ ତୁମେ ଅଚିରେ ସିଦ୍ଧିଲାଭ କରିବ, ଏଥିରେ ସନ୍ଦେହ ନାହିଁ । ତୁମେ ଦାନବସୁଲଭ ଭାବ ପରିତ୍ୟାଗ କରି ସାଧୁପୁରୁଷଙ୍କର ସ୍ୱଭାବ ପ୍ରାପ୍ତ ହୋଇଥିବାରୁ, ବିଷ୍ଣୁ-ମାୟାକୁ ତୁମେ ଅତିକ୍ରମ କରିଅଛ । ତୁମେ ଅସୁର ହେଲେ ମଧ୍ୟ ସତ୍ତ୍ୱ-ଗୁଣସମ୍ପନ୍ନ ହୋଇଅଛ । ତୁମେ ଧନ୍ୟ ।'

ଏହିପରି କଥୋପକଥନ ମଧ୍ୟରେ ଦୁହିଁଙ୍କର ସଂଗ୍ରାମ ଅନୁଷ୍ଠିତ ହେଲା ଏବଂ ଇନ୍ଦ୍ରଙ୍କ ନିକ୍ଷିପ୍ତ ବଜ୍ରରେ ଆହତ ହୋଇ ବୃତ୍ରାସୁର ଇନ୍ଦ୍ରଙ୍କୁ ଗ୍ରାସ କଲା; କିନ୍ତୁ ଇନ୍ଦ୍ର ପୂର୍ବରୁ ନାରାୟଣ କବଚ ପ୍ରାପ୍ତ ହୋଇଥିବାରୁ ତାଙ୍କର କୌଣସି କ୍ଷତି ହେଲା ନାହିଁ । ସେ ନିଜର ବଜ୍ରଦ୍ୱାରା ବୃତ୍ରାସୁରର ଉଦରକୁ ବିଦୀର୍ଣ୍ଣ କରି ନିଷ୍କ୍ରାନ୍ତ ହେଲେ ଓ ପରେ ବଜ୍ରରେ ଅଘାତ କରି ବୃତ୍ରାସୁରର ମସ୍ତକକୁ ଛେଦନ କଲେ । ବୃତ୍ରାସୁରର ଶରୀର ଏପରି ବୃହତ୍‌କାୟ ଥିଲା ଯେ ତା'ର ମସ୍ତକକୁ ବଜ୍ର ସାହାଯ୍ୟରେ ଛେଦନ କରିବାକୁ ଦେବରାଜଙ୍କୁ ଦୀର୍ଘ ଏକବର୍ଷ ସମୟ ଲାଗିଥିଲା । ବୃତ୍ରାସୁରର ନିଧନରେ ସମସ୍ତ ଜଗତ ଶାନ୍ତିଲାଭ କଲା ସତ; ମାତ୍ର ସେ ବ୍ରାହ୍ମଣ ସନ୍ତାନ ଥିବାରୁ ବ୍ରହ୍ମହତ୍ୟା ଦୋଷରେ ଦେବରାଜ ଇନ୍ଦ୍ର ଲିପ୍ତ ହେଲେ । ବିଶ୍ୱରୂପଙ୍କ ହତ୍ୟାରେ ସେ ଯେଉଁ ପାପ କରିଥିଲେ, ତାକୁ ଭୂମି, ବୃକ୍ଷ, ଜଳ ଓ ନାରୀଙ୍କ ମଧ୍ୟରେ ବିତରଣ କରି ସେ ପାପମୁକ୍ତ ହୋଇଥିଲେ, କିନ୍ତୁ ବୃତ୍ରାସୁରର ହତ୍ୟାଜନିତ ବ୍ରହ୍ମହତ୍ୟା ପାପରୁ ସେ କିପରି ନିଷ୍କୃତି ଲାଭ କରିବେ, ସେ ବିଷୟରେ ଇନ୍ଦ୍ର ବିଶେଷ ଉଦ୍‌ବିଗ୍ନ ହୋଇପଡ଼ିଲେ । ବ୍ରହ୍ମହତ୍ୟା ପାପରୁ ମୁକ୍ତି ଲାଭ କରିବାର ଉପାୟ ଚିନ୍ତା କରିବା ପାଇଁ ସେ ଚତୁର୍ଦ୍ଦିଗ ଭ୍ରମଣ କରି ପରିଶେଷରେ ମାନସ ସରୋବରର ଜଳ ମଧ୍ୟରେ ସହସ୍ରବର୍ଷ ବାସ କରି ଭଗବାନଙ୍କୁ ଧ୍ୟାନ କରିବାକୁ ଲାଗିଲେ । ଏହି ସମୟ ମଧ୍ୟରେ ଇନ୍ଦ୍ରଙ୍କର ସ୍ଥାନ ଶୂନ୍ୟ ପଡ଼ିବାରୁ, ବିଦ୍ୟା, ତପସ୍ୟା, ଯୋଗ ଓ ସଦାଚାରରେ ଶୁଦ୍ଧ ଚରିତ୍ର ଲାଭ କରିଥିବା ରାଜା ନହୁଷ ସ୍ୱର୍ଗର ରାଜପଦ ଲାଭ କରିଥିଲେ । ଏକ ସହସ୍ର ବର୍ଷ ଧରି ସ୍ୱର୍ଗର ଦେବରାଜ ପଦ ଭୋଗ କରିବା ପରେ ନହୁଷଙ୍କ ମନରେ ଐଶ୍ୱର୍ଯ୍ୟ ମଦମତ୍ତତା ପରିଦୃଷ୍ଟ ହେଲା ଏବଂ ଅବିବେକୀଙ୍କ ପରି କାର୍ଯ୍ୟ କରିବାରୁ ଇନ୍ଦ୍ରପଦରୁ ଚ୍ୟୁତ ହୋଇ ସର୍ପ ଜନ୍ମ ଲାଭ କଲେ । ଏଣେ ଏକ ସହସ୍ର ବର୍ଷ ଧରି ଭଗବାନଙ୍କୁ ଧ୍ୟାନ କରିବା ଫଳରେ ଇନ୍ଦ୍ର ବ୍ରହ୍ମହତ୍ୟା ପାପରୁ ମୁକ୍ତିଲାଭ କରିଥିଲେ ଏବଂ ଦେବତାଙ୍କ ନିବେଦନ କ୍ରମେ ପୁନର୍ବାର ସ୍ୱର୍ଗରାଜ୍ୟର ରାଜପଦକୁ ଫେରିଆସିଥିଲେ । ଅବଶ୍ୟ ପାପରୁ ସମ୍ପୂର୍ଣ୍ଣ ମୁକ୍ତ ହେବା ନିମନ୍ତେ ଇନ୍ଦ୍ରଙ୍କୁ ବହୁ ଦକ୍ଷ ଓ ଦୀର୍ଘକାଳ ଧରି ବିଷ୍ଣୁ ଆରାଧନା କରିବାକୁ ପଡ଼ିଥିଲା ।

ଅନୁସନ୍ଧାନ୍ତ ପରୀକ୍ଷିତଙ୍କ ମନରୁ ଏକ ସଂଶୟ ଦୂର କରିବାକୁ ଯାଇ ଶୁକଦେବ କହିଲେ, 'ମହାରାଜ, ବୃତ୍ରାସୁର ଅସୁର ହେଲେ ମଧ୍ୟ ତା'ଠାରେ ଯେ ଭଗବାନଙ୍କ ପ୍ରତି ଅଚଳା ଭକ୍ତି ପରିଦୃଷ୍ଟ ହେଲା, ତାହା ତା'ର ପୂର୍ବଜନ୍ମର ସୁକୃତ । ପୂର୍ବ ଜନ୍ମରେ ସେ ଚିତ୍ରକେତୁ ନାମକ ଏକ ରାଜା ଥିଲା ଏବଂ ସେହି ଜନ୍ମରେ ଭଗବାନଙ୍କ ଉଦ୍ଦେଶ୍ୟରେ ସେ ବିଶେଷ ଭାବରେ ପୂଜା ଆରାଧନା କରିଥିଲା । ନିଜର ପୁଣ୍ୟ ଫଳରୁ ସେ ପବିତ୍ର ସୁମେରୁ କ୍ଷେତ୍ରରେ ଆନନ୍ଦରେ ବିଚରଣ କରୁଥିବା ସମୟରେ ପାର୍ବତୀଙ୍କୁ କୋଡ଼ରେ ବସାଇ ଶିବଙ୍କୁ ଦେବର୍ଷିମାନଙ୍କ ସଭାକୁ ଯାଉଥିବାର ଦେଖି, ଶିବ-ପାର୍ବତୀଙ୍କର ଜିତେନ୍ଦ୍ରିୟତା ସମ୍ପର୍କରେ ପ୍ରକାଶ୍ୟରେ ପରିହାସ କରିବାରୁ, ସେହି ଅପରାଧରେ ଦେବୀ ପାର୍ବତୀଙ୍କ ଦ୍ୱାରା ସେ ଅସୁର ଜନ୍ମ ଲାଭ କରିବାକୁ ଅଭିଶପ୍ତ ହୋଇଥିଲା । ଏହି ଜନ୍ମରେ ତେଣୁ ଚିତ୍ରକେତୁ ବୃତ୍ରାସୁର ରୂପରେ ଅସୁର ଜନ୍ମ ଲାଭ କରିଥିଲେ ସୁଦ୍ଧା ପୂର୍ବଜନ୍ମର ସେହି ଆଧ୍ୟାତ୍ମିକ ଜୀବନ ଯୋଗୁ ଏ ଜନ୍ମରେ ମଧ୍ୟ ଭଗବାନଙ୍କୁ ସେ ସଭକ୍ତି ପୂଜାଧ୍ୟାନ କରିଥିଲା । ସେଥିପାଇଁ ତା'ର କଥା ଓ କାର୍ଯ୍ୟରେ ବିଶ୍ୱନିୟନ୍ତାଙ୍କ ପ୍ରତି ଅଚଳା ଭକ୍ତି ପ୍ରକାଶ ପାଇଥିଲା ।'

---

# ଭକ୍ତ ପ୍ରହ୍ଲାଦ

ହିରଣ୍ୟାକ୍ଷ ଓ ହିରଣ୍ୟକଶିପୁ ଦୁଇ ଭାଇ । ସେ ଦୁହେଁ ଦୁର୍ଦ୍ଦାନ୍ତ ଦାନବ ଥିଲେ । ହିରଣ୍ୟାକ୍ଷର ଅତ୍ୟାଚାରରେ ସମଗ୍ର ଜଗତ ଉତ୍ପୀଡ଼ିତ ହେବାରୁ ଓ ପୃଥିବୀ ରସାତଳଗାମିନୀ ହେବାରୁ ଭଗବାନ ସ୍ୱୟଂ ବରାହ ଅବତାର ଗ୍ରହଣ କରି ପୃଥିବୀକୁ ଅନନ୍ତ ଜଳରାଶି ମଧ୍ୟରୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ଦୈତ୍ୟବୀର ହିରଣ୍ୟାକ୍ଷକୁ ସଂହାର କରିଥିଲେ ।

ହିରଣ୍ୟାକ୍ଷର ଶୋଚନୀୟ ମୃତ୍ୟୁ ହିରଣ୍ୟକଶିପୁକୁ ଅତ୍ୟନ୍ତ କ୍ରୋଧାନ୍ୱିତ କରିଥିଲା । ନିଜର ଅନୁଗତ ଅସୁରମାନଙ୍କୁ ଆହ୍ୱାନ କରି ହିରଣ୍ୟକଶିପୁ କହିଲା, ଶତ୍ରୁ ହସ୍ତରେ ଦାନବ-ବୀର ହିରଣ୍ୟାକ୍ଷ ନିହତ ହୋଇଥିବା କଥା ତୁମ୍ଭମାନଙ୍କୁ ଅବିଦିତ ନାହିଁ । ଭଗବାନ ସମସ୍ତଙ୍କ ପ୍ରତି ସମଭାବାପନ୍ନ ହେବାର କଥା; କିନ୍ତୁ ସେ ଦେବତା-ମାନଙ୍କର ସୁରକ୍ଷା ପ୍ରତି ବିଶେଷ ଯତ୍ନବାନ ହୋଇ ଆମ୍ଭମାନଙ୍କ ପ୍ରତି ଅଯଥା ବୈରିତା କରୁଅଛନ୍ତି । ସ୍ତୁତି ଓ ସେବା ଲାଭ ପ୍ରତି ଭଗବାନ-ଙ୍କର ବିଶେଷ ଦୁର୍ବଳତା ରହିଛି । ଦେବତାମାନଙ୍କ ଭଜନରେ ପ୍ରଲୁବ୍ଧ ହୋଇ ଅପରିପକ୍ୱ ବାଳକ ପରି ନିଜର କର୍ତ୍ତବ୍ୟ ଭୁଲି ଆମ୍ଭ-ମାନଙ୍କ ବିରୁଦ୍ଧରେ ଯାଉଅଛି । ଆଜିଠାରୁ ମୁଁ ଘୋଷଣା କରୁଛି, ଯେ ଭଗବାନର ଯଶ ଓ ସ୍ତୁତି ଗାନ କରିବ, ତାକୁ ପୂଜା କରିବ, ତା'ର ରୁଧିର ମୁଁ ପାନ କରିବି । ତୁମ୍ଭେମାନେ ଚତୁର୍ଦ୍ଦିଗକୁ କ୍ଷେପିଯାଅ, ଦେଖ, କିଏ କେଉଁଠି ଭଗବାନର ପୂଜାଦି କରୁଛି । ତାକୁ ତା'ର ପରିବାର ସହ ସମୂଳେ ବିନାଶ କର । ତାହାହିଁ ହେବ ମୋର ଭ୍ରାତୃହତ୍ୟାର ସମୁଚିତ ପ୍ରତିଶୋଧ । ଭଗବାନର ଭକ୍ତମାନେ ଆମର ବଧାର୍ହ ।'

ଦାନବରାଜ ହିରଣ୍ୟକଶିପୁର ଆଦେଶ ଲାଭ କରିବା ମାତ୍ରେ ଅନୁଗତ ଅସୁରମାନେ ଚତୁର୍ଦ୍ଦିଗକୁ ଧାଇଁଲେ ଏବଂ ଋଷିମାନଙ୍କ ଆଶ୍ରମ-

ଠାରୁ ଆରମ୍ଭ କରି ସାଧାରଣ ଲୋକଙ୍କ ପର୍ଯ୍ୟନ୍ତ ଯେଉଁଠାରେ ଭଗବାନଙ୍କ ଉଦ୍ଦେଶ୍ୟରେ ହେଉଥିବା ପୂଜାପାଠର ସାମାନ୍ୟ ସନ୍ଧାନ ପାଇଲେ, ସେଠାରେ ସମସ୍ତ ଘରଦ୍ୱାର ଧ୍ୱଂସ କରି ଅଶେଷ ଜୀବନହାନି ଘଟାଇଲେ । ଅସୁରମାନଙ୍କ ଅତ୍ୟାଚାରରେ ତ୍ରିଭୁବନ ପୁନର୍ବାର ଉତ୍ପୀଡ଼ିତ ହେବାକୁ ଲାଗିଲା । ହିରଣ୍ୟକଶିପୁ ଆଜ୍ଞାନୁବର୍ତ୍ତୀ ଅସୁର-ମାନଙ୍କର ଅକୁଣ୍ଠିତ ସହଯୋଗ ଲାଭକରି ନିଜକୁ ଅଜର, ଅମର, ଅପରାଜେୟ, ଅପ୍ରତିଦ୍ୱନ୍ଦୀ ଓ ଜଗତର ଅଦ୍ୱିତୀୟ ସମ୍ରାଟ୍ କରିବାକୁ ଅଭିଳାଷ ପୋଷଣ କଲା ଏବଂ ନିଜର ଅଭିଳାଷ ପୂରଣ ନିମନ୍ତେ ବହୁ ବର୍ଷଧରି କଠୋର ତପସ୍ୟା କରି ବ୍ରହ୍ମାଙ୍କୁ ସନ୍ତୁଷ୍ଟ କଲା । ବ୍ରହ୍ମା ତା' ସମ୍ମୁଖରେ ଆବିର୍ଭୂତ ହେଲେ ।

ବ୍ରହ୍ମାଙ୍କୁ ଦର୍ଶନ କରି ହିରଣ୍ୟକଶିପୁ ପ୍ରାର୍ଥନା କଲା, 'ପ୍ରଭୁ, ଆପଣ ବରଦାତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ମୋ ପ୍ରତି ପ୍ରସନ୍ନ ହୋଇ ଯଦି ଆପଣ ମୋତେ ଦର୍ଶନ ଦେଲେ, ତେବେ ଦୟାକରି ଏହି ବର ମୋତେ ପ୍ରଦାନ କରନ୍ତୁ, ଯେପରି ଆପଣଙ୍କ ସୃଷ୍ଟ କୌଣସି ପ୍ରାଣୀ ଦ୍ୱାରା ଏବଂ ରାତିରେ ବା ଦିନରେ, ଘରେ ଅବା ବାହାରେ, ଭୂମିରେ କିମ୍ବା ଶୂନ୍ୟରେ ଅଥବା କୌଣସି ଅସ୍ତ୍ର ଦ୍ୱାରା ଯେପରି ମୋର ମୃତ୍ୟୁ ହେବ ନାହିଁ । ମୁଁ ଯେପରି ଐଶ୍ୱର୍ଯ୍ୟ ମଧ୍ୟରେ ଜୀବନ ଯାପନ କରେ ।'

ହିରଣ୍ୟକଶିପୁର ପ୍ରାର୍ଥନା ଶୁଣି ବ୍ରହ୍ମା କହିଲେ, 'ବତ୍ସ, ଅତ୍ୟନ୍ତ ଦୁର୍ଲଭ ବର ତୁମେ ପ୍ରାର୍ଥନା କରିଛ । ଯାହା ହେଉ ତୁମର ତପସ୍ୟାରେ ମୁଁ ସନ୍ତୁଷ୍ଟ ହୋଇଥିବାରୁ ତୁମର ଏହି ପ୍ରାର୍ଥନାକୁ ପୂର୍ଣ୍ଣ କଲି ।'

ବ୍ରହ୍ମାଙ୍କ ବଳରେ ବଳୀୟାନ ହୋଇ ହିରଣ୍ୟ କଶିପୁ ତ୍ରିଭୁବନ ଜୟକରି ଦେବତା, ଅସୁର, ମନୁଷ୍ୟ, ଗନ୍ଧର୍ବ, ନାଗ, ଯକ୍ଷ, ରକ୍ଷ, ପିଶାଚ, ସିଦ୍ଧ, ଗୁହ୍ୟକ ଓ ଋଷିଗଣଙ୍କ ଉପରେ ନିଜର ଅପ୍ରମିତ ପ୍ରଭୁତ୍ୱ ବିସ୍ତାର କରିବାକୁ ଲାଗିଲା । ଦେବରାଜ ଇନ୍ଦ୍ରଙ୍କୁ ତାଙ୍କ ବାସ ସ୍ଥାନରୁ ବିତାଡ଼ିତ କରି ସେ ଇନ୍ଦ୍ରପୁରୀରେ ବାସ କରିବାକୁ ଲାଗିଲା ।

ହିରଣ୍ୟକଶିପୁର ଉତ୍ପୀଡ଼ନରେ ଦେବତାମାନେ ପୀଡ଼ିତ ହୋଇ ତାହାଁରୁ ନିସ୍ତାର ଲାଭ କରିବା ନିମନ୍ତେ ଭଗବାନଙ୍କୁ ନିରନ୍ତର ପ୍ରାର୍ଥନା କରିବାକୁ ଲାଗିଲେ । ଅବଶେଷରେ ଶୂନ୍ୟବାଣୀ ହେଲା, ଅଧମ

ଦାନବର ଅସହ୍ୟ ଦୌରାତ୍ମ୍ୟ ମୋତେ ଅବିଦିତ ନାହିଁ । ତା'ର ବିନାଶକାଳ ଉପସ୍ଥିତ ହେବା ପର୍ଯ୍ୟନ୍ତ ଧୈର୍ଯ୍ୟଧରି ଅପେକ୍ଷା କର । ଦେବତା, ବେଦ, ଗୋମାତା, ବ୍ରାହ୍ମଣ, ସାଧୁ, ଧାର୍ମିକ, ତଥା ମୋ ପ୍ରତି ଯେ ଶତ୍ରୁମନୋଭାବ ପୋଷଣ କରେ, ତା'ର ଅଚିରେ ବିନାଶ ଘଟିଥାଏ । ବ୍ରହ୍ମାଙ୍କ ବରରେ ବଳୀୟାନ ହୋଇ ସେ ଏପରି ଅତ୍ୟାଚାର କରୁଅଛି । ତା'ର ନିଜ ପୁତ୍ର ପ୍ରହ୍ଲାଦ ପ୍ରତି ସେ ଶତ୍ରୁତାଚରଣ କଲେ ତା'ର ବିନାଶ ଘଟିବ । ତେଣୁ ସେହି ସମୟ ପର୍ଯ୍ୟନ୍ତ ଅପେକ୍ଷା କର ।

ଭଗବାନଙ୍କର ଏହି ଆଶାବାଣୀ ଦେବତାମାନଙ୍କୁ ଆଶ୍ୱସ୍ତ କଲା, ସେମାନେ କୌଣସି ମତେ ଧୈର୍ଯ୍ୟର ସେହି ଅନ୍ତିମ ସମୟକୁ ଅପେକ୍ଷା କରି ରହିଲେ ।

ହିରଣ୍ୟକଶିପୁର ଚାରି ପୁତ୍ରଙ୍କ ମଧ୍ୟରୁ ପ୍ରହ୍ଲାଦ ଜିତେନ୍ଦ୍ରିୟ, ସୁଚରିତ୍ର, ସତ୍ୟସନ୍ଧ, ସର୍ବଜନପ୍ରିୟ, ସମଦ୍ରଷ୍ଟା ଏବଂ ଈଶ୍ୱର ଭକ୍ତି-ପରାୟଣ ଥିଲେ । ସେ ଅସୁର ବଂଶରେ ଜନ୍ମ ହୋଇଥିଲେ ମଧ୍ୟ ତାଙ୍କର ଆସୁରିକ ଭାବ ଆଦୌ ନ ଥିଲା । ବାଲ୍ୟକାଳରୁ ପ୍ରହ୍ଲାଦ କ୍ରୀଡ଼ାସାମଗ୍ରୀ ତ୍ୟାଗ କରି ଭଗବାନ କୃଷ୍ଣଙ୍କ ବିଗ୍ରହକୁ ପୂଜା ଓ ଆରାଧନା କରୁଥିଲେ ଏବଂ କୃଷ୍ଣଧ୍ୟାନରେ ସେ ତନ୍ମୟ ହୋଇ ଯାଉଥିଲେ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ପ୍ରହ୍ଲାଦଙ୍କର କୃଷ୍ଣାନୁରକ୍ତି ବୃଦ୍ଧି ପାଇଥିଲା ଏବଂ ସବୁ ସମୟରେ କୃଷ୍ଣଭକ୍ତିରେ ତନ୍ମୟ ରହୁଥିଲେ । କୃଷ୍ଣ ଲୀଳା ଗାନ କରି କରି ସେ କେତେବେଳେ କ୍ରନ୍ଦନ, କେତେବେଳେ ନର୍ତ୍ତନ ଏବଂ କେତେବେଳେ ହର୍ଷୋତ୍ଫୁଲ୍ଲ ଅବସ୍ଥାରେ ରହୁଥିଲେ । ପ୍ରହ୍ଲାଦଙ୍କର ସେହି ଅନନୁକରଣୀୟ ଈଶ୍ୱରପରାୟଣତା ଦେଖି ଦେବତାମାନେ ତାଙ୍କୁ ପ୍ରଶଂସା କରୁଥିଲେ ।

ଦାନବରାଜ ହିରଣ୍ୟକଶିପୁ ସର୍ବଦା ହରିପୂଜନ ନିଷିଦ୍ଧ କରିଥିବା ବେଳେ ନିଜର ଔରସଜାତ ପୁତ୍ର ପିତୃ ଆଦେଶ ଅବମାନନା କରି ଭଗବାନଙ୍କ ଆରାଧନାରେ ବୁଡ଼ି ରହୁଅଛି, ଏହା ହିରଣ୍ୟକଶିପୁ ପକ୍ଷରେ ଅସହ୍ୟ ହୋଇଉଠିଲା । ସେ ପୁତ୍ରର କାର୍ଯ୍ୟ ଦେଖି ଧୀରେ ଧୀରେ ତାଙ୍କ ପ୍ରତି କଠୋର ହେବାକୁ ଲାଗିଲେ । ପ୍ରହ୍ଲାଦଙ୍କର ମନକୁ କୃଷ୍ଣଭାବରୁ ମୁକ୍ତ କରିବା ପାଇଁ ହିରଣ୍ୟକଶିପୁ ବହୁ ଉଦ୍ୟମ କଲେ

ମଧ୍ୟ ତହିଁରେ କୌଣସି ଫଳ ମିଳିଲା ନାହିଁ ; ବରଂ ପ୍ରହ୍ଲାଦଙ୍କ ମନରେ କୃଷ୍ଣଭକ୍ତି ଦୃଢ଼ରୁ ଦୃଢ଼ତର ହେବାକୁ ଲାଗିଲା । ପ୍ରହ୍ଲାଦଙ୍କ ମନରୁ କୃଷ୍ଣଭାବ ଦୂର କରି ଯଥାର୍ଥରେ ତାଙ୍କୁ ଅସୁର ଅନୁକୂଳ ଶିକ୍ଷା ଦେବା ନିମନ୍ତେ ସେ ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କ ପୁତ୍ରଙ୍କ ତତ୍ତ୍ୱାବଧାନରେ ପ୍ରହ୍ଲାଦଙ୍କୁ ଛାଡ଼ିଲେ ; କିନ୍ତୁ ତଥାପି ପ୍ରହ୍ଲାଦଙ୍କ ମନ ହିରଣ୍ୟକଶିପୁଙ୍କ ଇଚ୍ଛାନୁଯାୟୀ ସଯତ ହେଲାନାହିଁ ।

ଗୁରୁଗୃହରୁ ଶିକ୍ଷା ସମାପ୍ତ କରି ପ୍ରହ୍ଲାଦ ଫେରିବା ପରେ ଦିନେ ହିରଣ୍ୟକଶିପୁ ପୁତ୍ର ପ୍ରହ୍ଲାଦଙ୍କୁ ସ୍ନେହରେ କୋଳରେ ବସାଇ ପଚାରିଲେ, 'ବାବା, ଏତେ ଦିନ ଗୁରୁଙ୍କ ଗୃହରେ ରହି କ'ଣ ସବୁ ଶିକ୍ଷାକଲୁ. କହ ତ ଶୁଣିବା ।'

ପ୍ରହ୍ଲାଦ କହିଲେ, 'ବାପା, ଯାହା ଅଧ୍ୟୟନ କଲେ ମନରେ ହରିଙ୍କର ଗୁଣ ଶ୍ରବଣ, କୀର୍ତ୍ତନ, ସ୍ମରଣ, ପଦ ସେବନ, ଅର୍ଚ୍ଚନା, ବନ୍ଦନା, ଦାସ୍ୟ, ସଖ୍ୟ ଏବଂ ଆତ୍ମନିବେଦନ—ଏପରି ନବଧା ଭକ୍ତି ଜାତ ହେବ। ହିଁ ପ୍ରକୃତ ଶିକ୍ଷା । କିନ୍ତୁ ଗୁରୁଗୃହରେ ମୁଁ ସେପରି ଶିକ୍ଷା ପାଇପାରିଲି ନାହିଁ ।'

ପୁତ୍ର ମୁଖରୁ ଏପରି କଥା ଶୁଣିବା ମାତ୍ରେ ହିରଣ୍ୟକଶିପୁର କ୍ରୋଧ ସୀମା ମାନିଲା ନାହିଁ । ସେ ସଙ୍ଗେ ସଙ୍ଗେ ଶୁକ୍ରାଚାର୍ଯ୍ୟଙ୍କ ପୁତ୍ରକୁ ଅହ୍ୱାନ କରି କ୍ରୋଧପ୍ରଜ୍ୱଳିତ ସ୍ୱରରେ କହିଲେ ; ରେ ଅଧମ ବ୍ରାହ୍ମଣ, ପୁତ୍ରକୁ ଉପଯୁକ୍ତ ଶିକ୍ଷାପ୍ରଦାନ କରିବା ନିମନ୍ତେ ତୁମ ନିକଟକୁ ତାକୁ ପ୍ରେରଣ କରିଥିଲି, ତୁମେ ମୋ ପ୍ରତି ବିଶ୍ୱାସଘାତକତା କରି ମୋର ଶତ୍ରୁ ସମ୍ପର୍କରେ ତାକୁ ଅନୁରାଗୀ କରାଇଛ ? ସେ ଆସିଛି କି ନାହିଁ ଭଗବାନ କଥା ତା ମୁଖରୁ ମୁଁ ଶୁଣିବାକୁ ପାଉଛି !'

ଶୁକ୍ରାଚାର୍ଯ୍ୟଙ୍କର ପୁତ୍ର ଭୟଭୀତ ହୋଇ କହିଲେ; 'ହେ ଦେବ ଶତ୍ରୁ, ଆପଣଙ୍କର ପୁତ୍ର ଯେଉଁ ସବୁ କଥା ଶିକ୍ଷାଲାଭ କରିବାକୁ କହିଲା, ଆମେ ସେପରି ଶିକ୍ଷା ତାକୁ ଦେଇ ନାହୁଁ । ସେ ତା'ର ନୈସର୍ଗିକ ବୁଦ୍ଧିରେ ଏସବୁ ଆହରଣ କରିଅଛି । ଆମ ପ୍ରତି କ୍ରୋଧ କରନ୍ତୁ ନାହିଁ; କାରଣ ପ୍ରହ୍ଲାଦର ଏପରି ବୁଦ୍ଧିରେ ଆମର କୌଣସି ଦୋଷ ନାହିଁ ।'

ହିରଣ୍ୟକଶିପୁ ପୁତ୍ର ପ୍ରହ୍ଲାଦଙ୍କୁ କ୍ରୋଧାନ୍ୱିତ ହୋଇ କହିଲା, 'ରେ କୁଳାଙ୍ଗାର, ଗୁରୁ ଯଦି ତୋତେ ଏପରି ଜ୍ଞାନ ଦେଇ ନାହାନ୍ତି, ତେବେ ତୁ କାହାଠାରୁ ଏପରି ଶିକ୍ଷା ଲାଭ କଲୁ ?'

ପ୍ରହ୍ଲାଦ ନିର୍ଭୟ ଚିତ୍ତରେ କହିଲେ, 'ବାପା, ଗୁରୁ ହୁଅନ୍ତୁ ବା ଗୃହୀ ହୁଅନ୍ତୁ ଯେଉଁମାନେ ବିଷୟାସକ୍ତ ସେମାନଙ୍କର ଏପରି ଜ୍ଞାନ ଉଦୟ ହେବା ସମ୍ଭବ ନୁହେଁ । କାରଣ ସେମାନଙ୍କର ଇନ୍ଦ୍ରିୟ ବଶୀଭୂତ ମନ ଭଗବାନଙ୍କର ସ୍ୱରୂପକୁ ଉପଲବ୍ଧି କରିବାକୁ ଅକ୍ଷମ । ଭଗବତ୍ ମାର୍ଗ ସମ୍ପର୍କରେ ସେମାନେ ଯେତେବେଳେ ଅନ୍ଧ, ଅନ୍ୟକୁ ସେମାନେ ବାଟ ଦେଖାଇବେ କପରି ? ସେମାନେ ଇନ୍ଦ୍ରିୟ ବାସନା ପରିତ୍ୟାଗ କରି ସାଧୁଜନଙ୍କର ସଙ୍ଗଲାଭ ନ କଲେ, ସେମାନଙ୍କର ଚିତ୍ତ ଶୁଦ୍ଧି ହୁଏ ନାହିଁ ଏବଂ ଭଗବାନଙ୍କର ଚରଣକମଳରେ ସେମାନଙ୍କର ଆସକ୍ତି ଆସେ ନାହିଁ । ସାଧୁଜନଙ୍କର ଆଶୀର୍ବାଦ ହିଁ ଭଗବତ୍ ଜ୍ଞାନ ଲାଭ ପଥରେ ସହାୟକ ହୋଇଥାଏ ।'

ପ୍ରହ୍ଲାଦଙ୍କର ଏହି କଥା ହିରଣ୍ୟକଶିପୁର କଟା ଘା'ରେ ଚୂନ ଦେଲପରି ହେଲା । ସେ ଅସହ୍ୟ କ୍ରୋଧରେ ରକ୍ତଚକ୍ଷୁ ହୋଇ ପୁତ୍ରକୁ କୋଳରୁ ତଳକୁ ଫିଙ୍ଗି ଦେଇ ଅସୁରମାନଙ୍କୁ ଉଚ୍ଚସ୍ୱରରେ ଡାକି କହିଲା, 'ଏହାକୁ ଶୀଘ୍ର ନେଇ ଯାଅ, ଶୀଘ୍ର ଏହି କୁଳାଙ୍ଗାରକୁ ହତ୍ୟା କର । ଏ ମୋର ପୁତ୍ର ନୁହେଁ, ଏ ମୋର ଶତ୍ରୁ । ଏ ମୋର ବଧାର୍ହ । ଏହି କୁଳାଙ୍ଗାର ମୋର ଭ୍ରାତୃହନ୍ତା ଭଗବାନ ପ୍ରତି ଅନୁରକ୍ତ ହୋଇ ଅସୁର କୁଳର ସ୍ୱାର୍ଥ ଏବଂ ମୋର ଆଦେଶ ବିରୁଦ୍ଧରେ ଯାଇଅଛି । ଏହାକୁ ମାତ୍ର ପାଞ୍ଚ ବର୍ଷ ବୟସ; ଅଥଚ ଆଜିଠାରୁ ସେ ପିତାମାତାଙ୍କ ସ୍ନେହ ଓ ସ୍ୱାର୍ଥକୁ ଭୁଲିଯାଇ ମୋର ଶତ୍ରୁର ସ୍ତୁତି ଗାନ କରୁଅଛି । ଉପକାରୀ ପୁତ୍ର ଔଷଧ ପରି ସର୍ବଦା ପ୍ରାର୍ଥନୀୟ; କିନ୍ତୁ ପୁତ୍ର ଅପକାରୀ ହେଲେ ସେ ବ୍ୟାଧି ସଦୃଶ ଘୃଣ୍ୟ ଓ ବର୍ଜନୀୟ ହୋଇଥାଏ । ଶରୀରର ଅନ୍ୟାନ୍ୟ ସୁସ୍ଥ ଅବୟବକୁ ରକ୍ଷା କରିବା ପାଇଁ ଯେପରି ବ୍ୟାଧିଗ୍ରସ୍ତ ଅଙ୍ଗକୁ ଛେଦନ କରିଦିବା ବିଧେୟ, ସେହିପରି ଆତ୍ମସୁଖ ଓ ସୁରକ୍ଷା ପାଇଁ ଏହି ବିଶ୍ୱାସଘାତକ ଅଧମ ବଧଯୋଗ୍ୟ । ଏହାକୁ ନେଇ ହତ୍ୟାକର ।'

ଅସୁରରାଜ ହିରଣ୍ୟକଶିପୁ ଠାରୁ ଆଦେଶ ଲାଭ କରିବା ମାତ୍ରେ ଅନୁଚରମାନେ 'ମାର, ମାର' ବୋଲି ଚିତ୍କାର କରି ଶିଶୁ ପ୍ରହ୍ଲାଦର ସର୍ବାଙ୍ଗରେ ଶୂଳ ଆଘାତ କରିବାକୁ ଲାଗିଲେ । ଭଗବତ୍ ଚିନ୍ତାରେ ପ୍ରହ୍ଲାଦଙ୍କ ମନ ସର୍ବଦା ତନ୍ମୟ ଥିବାରୁ ଅସୁରମାନଙ୍କର ପ୍ରଚଣ୍ଡ ଶୂଳାଘାତ ତାଙ୍କର କୌଣସି କ୍ଷତି ସାଧନ କରିପାରିଲା ନାହିଁ ।

ଅସୁର ବୀରମାନଙ୍କର ପ୍ରଚଣ୍ଡ ଆଘାତ ସତ୍ତ୍ୱେ ପ୍ରହ୍ଲାଦଙ୍କର ମୃତ୍ୟୁ ହେଲା ନାହିଁ ଦେଖି ହିରଣ୍ୟକଶିପୁ ବିସ୍ମିତ ହୋଇ ପୁତ୍ରର ନିଧନ ନିମନ୍ତେ ଅଧିକ ଭୟଙ୍କର ଓ ଅବ୍ୟର୍ଥ ଉପାୟମାନ ଗ୍ରହଣ କଲା । ତଦନୁସାରେ ପ୍ରହ୍ଲାଦଙ୍କଠାରେ ବିଷ ପ୍ରୟୋଗ କରାଗଲା । ତହିଁରେ ଅଭୀଷ୍ଟ ସାଧନ ନ ହେବାରୁ, ପ୍ରଜ୍ୱଳିତ ଅଗ୍ନି ମଧ୍ୟକୁ ଏବଂ ତହିଁରେ ବ୍ୟର୍ଥକାମ ହେବାରୁ ବିଷଧର ସର୍ପମାନଙ୍କ ମଧ୍ୟରେ ପ୍ରହ୍ଲାଦଙ୍କୁ ନିକ୍ଷେପ କରାଗଲା । ତଥାପି ତହିଁରେ ପ୍ରହ୍ଲାଦଙ୍କର ମୃତ୍ୟୁ ନ ହେବାରୁ ଜଳରେ ତାଙ୍କୁ ଚିଙ୍ଗା ହେଲା, ଝଡ଼ବର୍ଷାରେ ଅନାହାର ମଧ୍ୟରେ ତାଙ୍କୁ ଦୀର୍ଘ ଦିନ ରଖାଗଲା, ତାଙ୍କ ଉପରେ ହାତୀ ଚଢ଼େଇ ଦିଆଗଲା, ତଥାପି ପ୍ରହ୍ଲାଦଙ୍କର କୌଣସି କ୍ଷତି ହେଲା ନାହିଁ ।

ଗୋଟିକ ପରେ ଗୋଟିଏ, ଏହିପରି ସବୁ ଉଦ୍ୟମ ବ୍ୟର୍ଥ ହେବାରୁ ହିରଣ୍ୟକଶିପୁ ଅତ୍ୟନ୍ତ ବିରକ୍ତ ଓ କ୍ରୋଧାନ୍ୱିତ ହୋଇ ଚିନ୍ତା କଲା, 'ଆଶ୍ଚର୍ଯ୍ୟର କଥା ! ଭର୍ତ୍ସନା କଲି, ହତ୍ୟା କରିବା ନିମନ୍ତେ ଅମୋଘ ଉପାୟମାନ ଅବଲମ୍ବନ କଲି, ତଥାପି ଏହାର ମୃତ୍ୟୁ ହେଲା ନାହିଁ ଏବଂ ସେ ତଥାପି ନିଃଶଙ୍କ ଓ ନିର୍ଭୟଚିତ୍ତ ! ଏହାର କ'ଣ ମୃତ୍ୟୁ ନାହିଁ, ନା ନାହିଁ ଭୟ; ନା ଏ ମୋର ମୃତ୍ୟୁର କାରଣ ରୂପେ ଜନ୍ମ ହୋଇଅଛି ?"

ଏହିପରି ଚିନ୍ତା କରି କରି ହିରଣ୍ୟକଶିପୁ କୌଣସି କୂଳ କିନାରା ପାଇଲା ନାହିଁ । ବିଷାଦ ଓ ନୈରାଶ୍ୟରେ ତା'ର ମୁହଁ ଶୁଖିଗଲା । ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ ବସିରହିଲା ।

ଶୁକ୍ରାଚାର୍ଯ୍ୟଙ୍କର ପୁତ୍ର କହିଲେ, 'ମହାରାଜ, ପ୍ରହ୍ଲାଦ ଅତ୍ୟନ୍ତ ବାଳକ । ଏବେଠାରୁ ତା'ର ଦୋଷଗୁଣ ବିଚାର କରିବା ସମୀଚୀନ ନୁହେଁ । ସେ ଯେପରି କେଉଁଆଡେ ପଳାୟନ କରି ନ ପାରେ, ସେପରି

ବ୍ୟବସ୍ଥା କର ପିତା ଶୁକ୍ରାଚାର୍ଯ୍ୟଙ୍କ ଆଗମନ ପର୍ଯ୍ୟନ୍ତ ଆପଣ ଅପେକ୍ଷା କରନ୍ତୁ । ବୟସ ହେଲେ ଓ ଉଚିତଶିକ୍ଷା ଲାଭ କଲେ, ତା'ର ମତଗତରେ ନିଶ୍ଚୟ ପରିବର୍ତ୍ତନ ଆସିବ ।'

ଗୁରୁପୁତ୍ରଙ୍କ ପରାମର୍ଶ ହିରଣ୍ୟକଶିପୁର ମନକୁ ପାଇଲା । ସେ ପ୍ରହ୍ଲାଦଙ୍କୁ ରାଜଧର୍ମ ସମ୍ପର୍କରେ ଶିକ୍ଷା ଦେବାର ବ୍ୟବସ୍ଥା କଲା; କିନ୍ତୁ ତହିଁରେ ଆଶାଜନକ ଫଳ ମିଳିଲା ନାହିଁ, ବରଂ ଶିକ୍ଷାଲାଭ କରିବା ସମୟରେ ପ୍ରହ୍ଲାଦ ସମବୟସ୍କ ଅସୁର ବାଳକମାନଙ୍କୁ ଭଗବାନଙ୍କ ସମ୍ପର୍କରେ ଆକୃଷ୍ଟ କରାଇ ଉପଦେଶମାନ ପ୍ରଦାନ କରିବାକୁ ଲାଗିଲେ ।

ପ୍ରହ୍ଲାଦ ଉପଦେଶ ପ୍ରସଙ୍ଗରେ କହିଲେ, 'ଭ୍ରାତୃଗଣ, ଆମର ଏହି ଜୀବନ ଅତ୍ୟନ୍ତ ଦୁର୍ଲ୍ଲଭ ଏବଂ ଅଳ୍ପକ୍ଷଣସ୍ଥାୟୀ । ଭଗବାନଙ୍କ ସେବାରେ ଏହାକୁ ସମ୍ପୂର୍ଣ୍ଣରୂପେ ବିନିଯୋଗ କରିବାରେ ହିଁ ଜୀବନର ସାର୍ଥକତା । ତେଣୁ, ଆସ, ଭଗବାନଙ୍କର ଉପାସନା କରିବା । ଭଗବାନ ହିଁ ପ୍ରତ୍ୟେକ ଜୀବର ପ୍ରଭୁ, ପ୍ରିୟତମ ବନ୍ଧୁ ଏବଂ ଆତ୍ମ ସ୍ୱରୂପ । ତେଣୁ ତାଙ୍କର ଶ୍ରୀଚରଣକୁ ସେବା କରିବା ଆମର ପରମ କର୍ତ୍ତବ୍ୟ । ପ୍ରତ୍ୟେକ ଦେହୀର ଜୀବନରେ ଇନ୍ଦ୍ରିୟଗ୍ରାହ୍ୟ ସୁଖର ଆସକ୍ତି ଦୈବବଶତଃ ଉଦୟ ହୋଇଥାଏ । ଯଦି ବୟସର ଅଭିବୃଦ୍ଧି ଓ ଜ୍ଞାନ ପ୍ରାପ୍ତି ପରେ ଜୀବ ଇନ୍ଦ୍ରିୟ ସୁଖ ପଛରେ ଧାବମାନ ହୁଏ, ତେବେ ପରମ ସୁଖ ଲାଭ କରିବା ତ ଦୂରର କଥା, ଆୟୁଷ କ୍ଷୟ କରିବା ସାର ହୋଇଥାଏ । କିନ୍ତୁ ଭଗବାନ ମୁକୁନ୍ଦଙ୍କର ଶ୍ରୀଚରଣକୁ ସେବା କଲେ ଜୀବ ପରମ ସୁଖ ଲାଭ କରିଥାଏ । ଜୀବର ମୃତ୍ୟୁ ଅବଶ୍ୟମ୍ଭାବୀ; କିନ୍ତୁ କେବେ ମୃତ୍ୟୁ ଆସିବ ତାହାର କୌଣସି ନିଶ୍ଚିତତା ନାହିଁ । ତେଣୁ ଯେଉଁଦିନ ପର୍ଯ୍ୟନ୍ତ ଶରୀରକୁ ମୃତ୍ୟୁ ଗ୍ରାସ କରି ନାହିଁ, ସେତେବେଳ ପର୍ଯ୍ୟନ୍ତ ପରମ କଲ୍ୟାଣ ଲାଭ କରିବା ନିମନ୍ତେ ଆନନ୍ଦମନରେ ଓ ଭକ୍ତିପ୍ଲୁତ ଆବେଗରେ ଭଗବାନଙ୍କର ସେବା କରିବା ବିଧେୟ । ଜୀବର ଆୟୁଷ ଯଦି ଶତବର୍ଷ ପରିମିତ ହୁଏ, ତେବେ ତହିଁରୁ ପ୍ରଥମ କୋଡ଼ିଏ ବର୍ଷ ଶୈଶବ ଓ କୈଶୋରର ଧୂଳି ଖେଳରେ ଅତିବାହିତ ହୋଇଥାଏ ଓ ଶେଷ କୋଡ଼ିଏ ବର୍ଷ ଜରାବ୍ୟାଧି ମଧ୍ୟରେ କଟିଯାଏ । ଏହାକୁ ବାଦ୍ ଦେଲେ ଅବଶିଷ୍ଟ ମଧ୍ୟବର୍ତ୍ତୀ ଆୟୁକାଳ ଅଶାନ୍ତିଦାୟୀ ଇନ୍ଦ୍ରିୟାଦି ସୁଖ

କାମନା ଓ ସମ୍ଭୋଗ ମଧ୍ୟରେ ବ୍ୟସ୍ତ ହୋଇଥାଏ । ଥରେ ଇନ୍ଦ୍ରିୟ ଦ୍ୱାରା ବଶବର୍ତ୍ତୀ ହେଲେ ଦେହ ଓ ମନକୁ ଇନ୍ଦ୍ରିୟାସକ୍ତିରୁ ଦୂରେଇ ନେବା ଅତ୍ୟନ୍ତ କଷ୍ଟକର ହୋଇଥାଏ; କାରଣ ସୁଖ ସମ୍ଭୋଗ ବା ଅର୍ଥ ପ୍ରାପ୍ତିର ତୃଷ୍ଣା ପ୍ରାଣ ଅପେକ୍ଷା ଅଧିକ ପ୍ରିୟ ରୂପରେ ପ୍ରତିଭାତ ହୁଏ । ପ୍ରିୟ ପରିଜନଙ୍କର ମାୟାବନ୍ଧନରେ ଆବଦ୍ଧ ହୋଇ ଜୀବ ସୁଖ ଆଶାରେ ଅନନ୍ତ ଦୁଃଖ ଭୋଗ କରେ; ସେ ମୋହରେ ଅନ୍ଧ ହୋଇ ନିଜର ବିବେକ ବୁଦ୍ଧିରେ ପଥ୍ୟ କାର୍ଯ୍ୟ କରିବାକୁ କୁଣ୍ଠ କରେ ନାହିଁ, ଏବଂ ତମୋଗୁଣଯୁକ୍ତ ହୋଇ 'ମୁଁ', 'ମୋର', 'ସେ', 'ତା'ର' ଆଦି ଦୁର୍ବୁଦ୍ଧିରେ ଧନ୍ଦ ହୁଏ । ଶତଚେଷ୍ଟା କରି ମଧ୍ୟ ତହିଁରୁ ସେ ମୁକ୍ତିଲାଭ କରିପାରେ ନାହିଁ । ତେଣୁ ତୁମେମାନେ ଆସ, ସମସ୍ତେ ଗଡ଼ିଯିବା ପୂର୍ବରୁ ଭଗବାନଙ୍କର ଚରଣାରବିନ୍ଦରେ ମନପ୍ରାଣ ଢାଳିଦେବା, ଯଦ୍ୱାରା ଫଳରେ ସାଂସାରିକ ଜଞ୍ଜାଳରେ ପଡ଼ିବା ନାହିଁ କି ଦୁଃଖ ପାଇବା ନାହିଁ । ଆମେ ଅଳ୍ପ ବୟସର ବାଳକ ଓ ଆମ ପକ୍ଷରେ ଭଗବାନଙ୍କର ପ୍ରୀତି-ବିଧାନ କରିବା କଷ୍ଟସାଧ୍ୟ ବୋଲି ଆଦୌ ଭାବିବା ଉଚିତ ନୁହେଁ; କାରଣ ଭଗବାନ ସମସ୍ତଙ୍କ ମଧ୍ୟରେ ବିରାଜମାନ । ସେ ସର୍ବବ୍ୟାପୀ ଓ ସମସ୍ତଙ୍କର ଆତ୍ମା ରୂପରେ ସେ ସମସ୍ତଙ୍କ ହୃଦୟରେ ଅଧିଷ୍ଠିତ । ତେଣୁ ଅସୁର ଭାବ ପରିତ୍ୟାଗ କରି ସମସ୍ତଙ୍କ ପ୍ରତି ଦୟା ଓ ପ୍ରୀତିଭାବ ପ୍ରକାଶ କରିବା ଆମର ଉଚିତ ? ତଦ୍ଦ୍ୱାରା ଭଗବାନ ବିଷ୍ଣୁ ଆମ ପ୍ରତି ସନ୍ତୁଷ୍ଟ ହେବେ । ଭଗବାନ ସନ୍ତୁଷ୍ଟ ହେଲେ ଜୀବର ସମସ୍ତ କାମନା ପୂର୍ଣ୍ଣ ହୁଏ । ପୂର୍ବେ ମୁଁ ମାତୃଗର୍ଭରେ ଥିବାବେଳେ ମୋର ପିତା ତପସ୍ୟା କରିବା ଉଦ୍ଦେଶ୍ୟରେ ମନ୍ଦର ପର୍ବତରେ ବାସ କରୁଥିଲେ । ସେତେବେଳେ ପୂର୍ବ ଶତ୍ରୁତା ବଶତଃ ଦେବତାମାନେ ଅସୁରମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ସେହି ଯୁଦ୍ଧରେ ଅସୁରମାନେ ଶୋଚନୀୟ ଭାବରେ ପରାସ୍ତ ହୋଇ ପ୍ରାଣ ଭୟରେ ଇତସ୍ତତଃ ପଳାୟନ କରିବା ଫଳରେ ନିଜତ୍ରାଣଶକ୍ତିହୀନା ମୋର ଗର୍ଭବତୀ ମାତାଙ୍କୁ ଦେବରାଜ ବନ୍ଦିନୀ କଲେ । ମୋର ବନ୍ଦିନୀ ମାତାଙ୍କ ପ୍ରତି କୌଣସି ନୃଶଂସ କାର୍ଯ୍ୟ କରିଯିବା ପୂର୍ବରୁ ଦେବର୍ଷି ନାରଦ ସେଠାରେ ଆବିର୍ଭୂତ ହୋଇ ଦେବରାଜଙ୍କୁ କହିଲେ, 'ଏହି ଦାନବ-ପତ୍ନୀ ଯେପରି ସତୀ, ସେହିପରି ପୁଣ୍ୟବତୀ । ସେ ଗର୍ଭବତୀ ଥିବାରୁ ସେ ଶତ୍ରୁରମଣୀ ହେଲେ ମଧ୍ୟ ତାଙ୍କ ପ୍ରତି କୌଣସି ନୃଶଂସ କାର୍ଯ୍ୟ

କରାଯିବା ଉଚିତ ନୁହେଁ । ତାଙ୍କର ଏହି ଗର୍ଭରେ ଯେଉଁ ସନ୍ତାନ ରହିଅଛି, ସେ ଭଗବାନଙ୍କର ଅନୁଚର ମହା ଭାଗବତ । ଯେତେ ଦିନ ପର୍ଯ୍ୟନ୍ତ ଏହି ଦାନବରମଣୀ ସନ୍ତାନ ପ୍ରସବ ନ କରିଛନ୍ତି, ସେ ମୋ' ଗୃହରେ ଅବସ୍ଥାନ କରନ୍ତୁ ।'

ଦେବର୍ଷି ନାରଦଙ୍କ କଥାରେ ଦେବରାଜ ସମ୍ମତ ହୋଇ ମୋର ମାତାଙ୍କୁ ଦେବର୍ଷିଙ୍କ ଆଶ୍ରମରେ ଛାଡ଼ି ଦେଇଆସିଲେ । ସେହି ଆଶ୍ରମରେ ମୋର ମାତା ପରମ ସୁଖରେ ଅବସ୍ଥାନ କରୁଥିବା ସମୟରେ ଦେବର୍ଷି ନାରଦ ତାଙ୍କୁ ଯେଉଁ ସବୁ ଉପଦେଶମାନ ପ୍ରଦାନ କରିଥିଲେ, ମୋର ମାତା ସ୍ତ୍ରୀସୁଲଭତା ଯୋଗୁ ସେସବୁ ଭୁଲିଯାଇ ଅଛନ୍ତି; ମାତ୍ର ଋଷିଙ୍କ ଅନୁଗ୍ରହରୁ ମୁଁ ତାହା ଅଦ୍ୟାବଧି ଭୁଲିନାହିଁ । ମୋ କଥାରେ ବିଶ୍ୱାସ କରି ଏବଂ ମୁଁ ଯାହା କହୁଛି ସେପରି କାର୍ଯ୍ୟ କଲେ ସଂସାର-ବନ୍ଧନ ଛିନ୍ନ କରିବାକୁ ଆମ୍ଭେମାନେ ସମର୍ଥ ହେବା ଏବଂ ଆମ୍ଭେମାନେ ଭଗବାନଙ୍କ ଆଶୀର୍ବାଦ ଲାଭର ଯୋଗ୍ୟ ହେବା ।'

ଏହିପରି କହି ପ୍ରହ୍ଲାଦ ସାଥୀ ବାଳକମାନଙ୍କୁ ଧୀରେ ଧୀରେ ଭଗବତ୍ ସମ୍ବନ୍ଧୀୟ ଉପଦେଶମାନ ପ୍ରଦାନ କରିବାକୁ ଲାଗିଲେ ।

ପ୍ରହ୍ଲାଦଙ୍କ ବ୍ୟକ୍ତିତ୍ୱ ଓ ଆଚରଣରେ ଏପରି ଆକର୍ଷଣୀ ଶକ୍ତି ଥିଲା ଯେ, ଅସୁର ବାଳକମାନେ ପ୍ରହ୍ଲାଦଙ୍କ କଥାରେ ଆକୃଷ୍ଟ ହୋଇ ଗୁରୁଙ୍କ ପ୍ରଦତ୍ତ ଐହିକ ଶିକ୍ଷାପ୍ରତି ବୀତଶ୍ରଦ୍ଧ ହେଲେ । ପ୍ରହ୍ଲାଦଙ୍କ ସ୍ୱଭାବ ଚରିତ୍ର ପରିବର୍ତ୍ତିତ ହେବା ବଦଳରେ ସେ ଭଗବତ୍ ଶିକ୍ଷାରେ ସମସ୍ତଙ୍କୁ ଆକୃଷ୍ଟ କରି ସେମାନଙ୍କ ମତି ଗତିକୁ ସମ୍ପୂର୍ଣ୍ଣ ବଦଳାଇ ଦେଲେଣି ଦେଖି ଶୁକ୍ରାଚାର୍ଯ୍ୟଙ୍କର ପୁତ୍ରମାନେ ଭୟଭୀତ ହୋଇ ଦାନବରାଜ ହିରଣ୍ୟକଶିପୁଙ୍କ ନିକଟରେ ସମସ୍ତ କଥା ନିବେଦନ କଲେ ।

ତାହା ଶୁଣି ହିରଣ୍ୟକଶିପୁ କ୍ରୋଧରେ ଜଳିଉଠିଲା । ସେ ପ୍ରହ୍ଲାଦଙ୍କୁ ଭର୍ତ୍ସନା କରି କହିଲା, 'ରେ କୁଳାଙ୍ଗାର, ତୋର ସାହସ ତ କିଛି କମ୍ ନୁହେଁ ! ମୋର ଅସୁର କୁଳକୁ ଧ୍ୱଂସ କରିବା ପାଇଁ ତୁ ମୋ ଘରେ ଜନ୍ମ ହୋଇଅଛୁ । ମୁଁ ଯେତେ କହିଲେ ମଧ୍ୟ ମୋର ଶାସନ ପ୍ରତି କର୍ଣ୍ଣପାତ କରୁନାହୁଁ । ବେଶ୍, ପିତୃ ଆଦେଶ ଅବମାନନା କରିବାର ଶାସ୍ତି ଆଜି ତୁ ଭୋଗ କର । ତୋତେ ଆଜି ମୁଁ ଯମାଳୟକୁ

ପ୍ରେରଣ କରିବ । ମୋର କ୍ରୋଧଗ୍ରସ୍ତ ରୂପ ଦେଖିଲେ ତ୍ରିଭୁବନ ଭୟ-କମ୍ପିତ ହୁଏ ; ଅଥଚ ତୁ କାହାର ବଳରେ ଏପରି ବଳୀୟାନ ହୋଇଅଛୁ ଯେ ମୋ ପ୍ରତି ତୋର ସାମାନ୍ୟତମ ଭୟ ଥିବାର ମୁଁ ଲକ୍ଷ୍ୟ କରୁନାହିଁ ?" .

ପିତାଙ୍କ ମୁଖରୁ ଏପରି କଥା ଶୁଣି ପ୍ରହ୍ଲାଦ କୃତାଞ୍ଜଳିପୁଟ ହୋଇ ବିନମ୍ର ଭାବରେ କହିଲେ, 'ବାପା, ମୁଁ ଯାହାଙ୍କ ବଳରେ ବଳୀୟାନ, ସେହି ଭଗବାନ ବିଷ୍ଣୁ କେବଳ ଏକା ମୋର ନୁହନ୍ତି, ସେ ମଧ୍ୟ ଆପଣଙ୍କର । ତାଙ୍କର ପରାକ୍ରମ ଅସୀମ । ସେ ନିଜର ଶକ୍ତିରେ ଅଖିଳ ଜଗତକୁ ବଶୀଭୂତ କରିଅଛନ୍ତି । ସେ ଈଶ୍ୱର । ସେ କାଳ-ସ୍ୱରୂପ । ସେ ସମସ୍ତ ତେଜ, ବୀର୍ଯ୍ୟ, ଧୈର୍ଯ୍ୟ, ପରାକ୍ରମ ଏବଂ ବୃଦ୍ଧି ଆଦିର ପରମ ଆଶ୍ରୟ । ସେ ଜଗତର ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା ଏବଂ ଧ୍ୱଂସକର୍ତ୍ତା । ସେ ସର୍ବବ୍ୟାପୀ । ସେ ସର୍ବତ୍ର ବିଦ୍ୟମାନ । ବାପା, ଆପଣ ମନରୁ ଏହି ଅକଲ୍ୟାଣକର ଅସୁର ଭାବ ପରିହାର କରି ସମସ୍ତଙ୍କ ପ୍ରତି ସମଭାବ ପ୍ରଦର୍ଶନ କରନ୍ତୁ । ମନ ହିଁ ଜୀବର ପରମ ଶତ୍ରୁ । ମନକୁ ସଂଯତ କରି ସମସ୍ତଙ୍କ ପ୍ରତି ସମଭାବ ପୋଷଣ କରିବା ହିଁ ଭଗବାନଙ୍କର ସର୍ବଶ୍ରେଷ୍ଠ ଆରାଧନା । ତ୍ରିଭୁବନ ଜୟ କରି ମଧ୍ୟ ଆପଣଙ୍କ ମନ ସର୍ବଦା ଶତ୍ରୁ-ଭୟରେ ଶଙ୍କିତ; କିନ୍ତୁ ଇନ୍ଦ୍ରିୟ କବଳରୁ ନିଜକୁ ମୁକ୍ତ କରି ମନକୁ ଜୟ କରନ୍ତୁ, ଦେଖିବେ, ଆପଣ ସକଳ ଶତ୍ରୁଙ୍କୁ ପରାଭୂତ କରିଅଛନ୍ତି । ମନକୁ ଜୟ କରିଥିବା ବ୍ୟକ୍ତି ହିଁ ପ୍ରକୃତ ବିଜୟୀ ।'

ପୁତ୍ରଠାରୁ ଏପରି ଅଯାଚିତ ଉପଦେଶ ଶ୍ରବଣ କରି ହିରଣ୍ୟକଶିପୁର କ୍ରୋଧ ବୃଦ୍ଧି ପାଇଲା । ସେ ଭୀଷଣ ଗର୍ଜନ କରି କହିଲା, 'ରେ ଦୁଷ୍ଟ ! ବୁଝିଲି ତୋର ମୃତ୍ୟୁ ସମୟ ଆସି ଉପସ୍ଥିତ । ତା'ନ ହେଲେ ମୁମୂର୍ଷୁ ବ୍ୟକ୍ତି ପରି ତୁ ମୋ ସମ୍ମୁଖରେ ଏପରି ପ୍ରଳାପ କରୁ ନ ଥାନ୍ତୁ । ଆରେ ହତଭାଗା, ତୋର ଜଗଦୀଶ୍ୱର ଯଦି ସର୍ବତ୍ର ବିଦ୍ୟମାନ, ତେବେ କାହିଁ ଏହି ଖମ୍ବରେ ସେ ଦେଖାଯାଉ ନାହାନ୍ତି ?'

ହିରଣ୍ୟକଶିପୁର ସମ୍ମୁଖରେ ଥିବା ଖମ୍ବ ପ୍ରତି ଦୃଷ୍ଟିପାତ କରି ପ୍ରହ୍ଲାଦ ସଭକ୍ତି କହିଲେ, 'ଏହି ତ, ଖମ୍ବରେ ପ୍ରଭୁଙ୍କୁ ଥିବାର ତ ମୁଁ ଦେଖି ପାରୁଅଛି ।'

ହିରଣ୍ୟକଶିପୁ କ୍ରୋଧ ଜର୍ଜର ସ୍ୱରରେ କହିଲା, 'ରେ ପାଷଣ୍ଡ, ଯାହାଠାରେ ଶରଣ ନେଇ ତୁ ଏତେ ଦମ୍ଭରେ କଥା କହୁଅଛୁ, ସେହି ଭଗବାନ ଯଦି ଏହି ଖମ୍ବରେ ଥାଏ, ତେବେ ତୋତେ ସେ ଆସି ରକ୍ଷାକରୁ । ଆଜି ମୁଁ ତୋର ମସ୍ତକକୁ ଛେଦନ କରିବି ।'

ଏହା କହି କ୍ରୋଧାବେଗରେ ନିଜର ଖଡ୍ଗରେ ସମ୍ମୁଖସ୍ଥ ଖମ୍ବକୁ ହିରଣ୍ୟକଶିପୁ ଆଘାତ କଲା । ହିରଣ୍ୟକଶିପୁର ଶାଣିତ ଖଡ୍ଗ ସେହି ସ୍ତମ୍ଭକୁ ଆଘାତ କରିବା ମାତ୍ରେ ଖମ୍ବ ମଧ୍ୟରୁ ତ୍ରିଭୁବନକମ୍ପନକାରୀ ପ୍ରବଳ ଶବ୍ଦ ଉତ୍ଥିତ ହେଲା । ପୁତ୍ରକୁ ହତ୍ୟା କରିବାକୁ ଉଦ୍ୟତ ହୋଇଥିବା ପ୍ରବଳ ପରାକ୍ରମଶାଳୀ ଦାନବରାଜ ମଧ୍ୟ ସେହି ଶବ୍ଦରେ ଭୀତତ୍ରସ୍ତ ହୋଇଗଲା ।

ଭକ୍ତ ପ୍ରହ୍ଲାଦର ବାକ୍ୟକୁ ସତ୍ୟରେ ପରିଣତ କରିବା ନିମନ୍ତେ ସେହି ସର୍ବବ୍ୟାପୀ ଭକ୍ତବତ୍ସଳ ଭଗବାନ ସେହି ସ୍ତମ୍ଭକୁ ବିଦୀର୍ଣ୍ଣ କରି ଏକ ଅଦ୍ଭୁତ ନରସିଂହରୂପ ଧାରଣ କରି ପ୍ରକଟିତ ହେଲେ । ଭଗବାନ-ଙ୍କର ସେହି ଅଦ୍ଭୁତ ରୂପ ଦେଖି ହିରଣ୍ୟକଶିପୁର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଏ କିଏ ? ଜ୍ୱଳନ୍ତ ସ୍ୱର୍ଣ୍ଣ ଗୋଲକ ପରି ପ୍ରଦୀପ୍ତ ଚକ୍ଷୁ, ଜଟାବୃତ ବିଶାଳ ମୁଖ, ସୁତୀକ୍ଷ୍ଣ ଦନ୍ତ, ଶାଣିତ ଜିହ୍ୱା, ପ୍ରଶସ୍ତ କର୍ଣ୍ଣ, ଉନ୍ନତ ନାସିକା, ବିଦୀର୍ଣ୍ଣପ୍ରାନ୍ତ ଗଣ୍ଡଯୁଗଳ, ବିଶାଳ ବପୁ, ସମଗ୍ର ଶରୀର ଧବଳ ରୋମରାଜିରେ ଶୋଭିତ, ବିଭିନ୍ନ ଆୟୁଧରେ ଶୋଭିତ ଅଗଣିତ ବାହୁ, ସୁଦୀର୍ଘ ଓ ସୁତୀକ୍ଷ୍ଣ ନଖପଂକ୍ତି ସମନ୍ୱିତ ସେହି ଅଦ୍ଭୁତ ରୂପ-ଧାରୀଙ୍କୁ ଦେଖି ଦାନବରାଜ ହିରଣ୍ୟକଶିପୁ ଭୟଭୀତ ହୋଇପଡ଼ିଲା ଏବଂ ପର ମୁହୂର୍ତ୍ତରେ ନିଜର ଭୟକୁ ସଂଯତ କରି ସେହି ବିକଟାଳ ନରସିଂହ ରୂପଧାରୀ ଭଗବାନଙ୍କୁ ସେ ଆକ୍ରମଣ କଲା । ଅଗ୍ନି ସମ୍ମୁଖରେ ପତଙ୍ଗର ଦଶା ହେଲା ପରି ଭଗବାନଙ୍କର ଅପୂର୍ବ ତେଜରେ ହିରଣ୍ୟକଶିପୁ ନିଷ୍ପ୍ରଭ ହୋଇଗଲା । ଭଗବାନ ସେହି ନୃଶଂସ ଦାନବରାଜକୁ ଧରି ପକାଇଲେ । ବ୍ରହ୍ମାଙ୍କଠାରୁ ପୂର୍ବରୁ ସେ ନିଜର ମୃତ୍ୟୁ ସମ୍ପର୍କରେ ଅଦ୍ଭୁତ ବର ଲାଭ କରିଥିବା ଦୃଷ୍ଟିରୁ ଘର ବାହାରେ ନୁହେଁ କି ଭିତରେ ନୁହେଁ ତେଣୁ ସେହି ସଭାଗୃହର ଦ୍ୱାରବନ୍ଧ ଉପରେ, ଦିନ ନୁହେଁ କି ରାତି ନୁହେଁ ଏପରି ସନ୍ଧ୍ୟା ସମୟରେ, ଭୂମିରେ ନୁହେଁ

କ ଶୂନ୍ୟରେ ନୁହେଁ, ନିଜର ଜଙ୍ଘ ଉପରେ ହିରଣ୍ୟକଶିପୁକୁ ପକାଇ ନିଜର ସେହି ସୁତୀକ୍ଷ୍ଣ ନଖରେ ପକ୍ଷୀରାଜ ଗରୁଡ଼ ସର୍ପକୁ ବିଦାର୍ଣ୍ଣ କଲା-ପରି ଋଷସର ବକ୍ଷକୁ ଭଗବାନ ନରସିଂହ ବିଦାର୍ଣ୍ଣ କଲେ ।

ହିରଣ୍ୟକଶିପୁର ମୃତ୍ୟୁରେ ତ୍ରିଭୁବନରେ ଯେ ଅପୂର୍ବ ଆନନ୍ଦ ଖେଳିଗଲା, ଏହା କହିବା ବାହୁଲ୍ୟ ମାତ୍ର ।

ଭଗବାନ ନରସିଂହଙ୍କର କ୍ରୋଧକୁ ଶାନ୍ତ କରିବା ଉଦ୍ଦେଶ୍ୟରେ ପ୍ରହ୍ଲାଦ ଭଗବାନଙ୍କ ଶ୍ରୀଚରଣରେ ପ୍ରଣିପାତ ହେଲେ । ବାଳକ ପ୍ରହ୍ଲାଦକୁ ନିଜର ପଦତଳେ ପତିତ ହେବାର ଦେଖି ଭଗବାନଙ୍କ ମନରେ କୃପା ଜାତ ହେଲା । ସେ ପ୍ରହ୍ଲାଦଙ୍କୁ ଭୂମିରୁ ଉଠାଇ ନେଇ ସ୍ନେହରେ ତା'ର ମସ୍ତକରେ କରସ୍ପର୍ଶ କଲେ । ଭଗବାନ ନରସିଂହ-ଙ୍କର ଦର୍ଶନ ଓ କରସ୍ପର୍ଶ ଲାଭ କରି ପ୍ରହ୍ଲାଦଙ୍କର ହୃଦୟ ଅପୂର୍ବ ଆନନ୍ଦରେ ପୁଲକିତ ହୋଇଉଠିଲା । ସେ ଭଗବାନଙ୍କ ଉଦ୍ଦେଶ୍ୟରେ ସ୍ତୁତି ଗାନ କରି କହିଲେ, ବ୍ରହ୍ମା ପ୍ରମୁଖ ଦେବଗଣ, ସନକ ପ୍ରମୁଖ ଦେବର୍ଷି ଓ ମହର୍ଷିବୃନ୍ଦ, ସିଦ୍ଧଚାରଣଗଣ, ସତ୍ତ୍ୱାଦିଗୁଣସମ୍ପନ୍ନ ହୋଇ ମଧ୍ୟ ଏକାଗ୍ର ଚିତ୍ତରେ ବହୁଗୁଣସମନ୍ୱିତ ବାକ୍ୟ ପ୍ରୟୋଗ କରି ମଧ୍ୟ ଯାହାଙ୍କୁ ସନ୍ତୁଷ୍ଟ କରିପାରନ୍ତି ନାହିଁ, ଦାନବକୁଳରେ ଜାତ ମୋ ପରି ଜଣେ ଅଧମ ଦାନବ ପକ୍ଷରେ ଆପଣଙ୍କୁ ସ୍ତୁତି କରିବା ଓ ସ୍ତୁତିରେ ସନ୍ତୁଷ୍ଟ କରିବାକୁ ଆଶା ପୋଷଣ କରିବା ମୋ ପକ୍ଷରେ ଧୃଷ୍ଟତା ହେବ । ଧନ, ଉଚ୍ଚବଂଶ, ସୌନ୍ଦର୍ଯ୍ୟ, ପାଣ୍ଡିତ୍ୟ, ଇନ୍ଦ୍ରିୟସଂଯମ, ପରାକ୍ରମ, ଉଦ୍ୟମ, ବୁଦ୍ଧି, ଜ୍ଞାନ, ଯୋଗ ବା ତପସ୍ୟା ଦ୍ୱାରା ଆପଣଙ୍କୁ ସନ୍ତୁଷ୍ଟ କରାଯାଇ ପାରେ ନାହିଁ ବୋଲି ମୋର ଧାରଣା । ଆପଣ କେବଳ ଶୁଦ୍ଧ ଭକ୍ତିଦ୍ୱାରା ହିଁ ପ୍ରୀତ ହୋଇଥାନ୍ତି । ଆପଣଙ୍କ ନିକଟରେ ଧନ, ମାନ ବା ବଂଶଗୌରବ ବଡ଼ ନୁହେଁ, ଭକ୍ତି ହିଁ ବଡ଼ । ନୀଚବଂଶରେ ଜନ୍ମ ହୋଇଥିଲେ ମଧ୍ୟ ନିର୍ଭୟ ଚିତ୍ତରେ ମୁଁ ଆପଣଙ୍କ ମହିମା ଗାନ କରୁଛି, ମୋତେ ପବିତ୍ରିତ କରନ୍ତୁ । ପ୍ରଭୁ, ଆପଣଙ୍କ ବିଧାନ ଅନୁସାରେ କାର୍ଯ୍ୟ କରିଥାନ୍ତି ବୋଲି ବ୍ରହ୍ମାଦି ଦେବଗଣ ଆପଣଙ୍କର ପ୍ରିୟ ଏବଂ ଅସୁରମାନେ ଆପଣଙ୍କର ନୀତି ନିୟମର ବିରୁଦ୍ଧାଚରଣ କରିଥାନ୍ତି ବୋଲି ସେମାନେ ଆପଣଙ୍କର ଅପ୍ରିୟ, ଜଗତର ମଙ୍ଗଳ ନିମନ୍ତେ ଆପଣ ବିଭିନ୍ନ ସମୟରେ ବିଭିନ୍ନ ଅବତାର

ଗ୍ରହଣ କରି ଅପୂର୍ବ ଲୀଳା ପ୍ରକାଶ କରିଥାନ୍ତି । ଭୟ ଉଦ୍ରେକ କରିବା ଆପଣଙ୍କ ଅବତାର ଲୀଳାର ଉଦ୍ଦେଶ୍ୟ ନୁହେଁ । ତେଣୁ ଭୟ-ଉଦ୍ରେକକାରୀ ଏହି କ୍ରୋଧ ଆପଣ ଅନୁଗ୍ରହ ପୂର୍ବକ ସମ୍ବରଣ କରନ୍ତୁ । ଯେଉଁଥିପାଇଁ ଏହି କ୍ରୋଧମୂର୍ତ୍ତି ଧାରଣ କରିଥିଲେ ତା'ର ଉଦ୍ଦେଶ୍ୟ ଚରିତାର୍ଥ ହୋଇସାରିଛି । ଆପଣଙ୍କର ଏହି ରୂପ ଅତ୍ୟନ୍ତ ଭୟାନକ ହୋଇଥିଲେ ମଧ୍ୟ ମୁଁ ସେଥିପାଇଁ ଭୟ କରୁନାହିଁ । ମୋ ମନରେ ଯେଉଁ ଭୟ ସୃଷ୍ଟି ହୋଇଅଛି, ତାହା ଭବବନ୍ଧନର ଭୟ । ପ୍ରଭୁ, ମୋର ଏହି ଜୀବନ କେବେ ଶେଷ ହେବ ଏବଂ ମୁଁ କେବେ ଆପଣଙ୍କ ଚରଣରେ ସ୍ଥାନ ପାଇବି, ଜାଣେ ନାହିଁ । ମୁଁ ଏହି ସଂସାର-ଚକ୍ରରେ ନିୟତ ନିଷ୍ପେଷିତ ହେଉଅଛି, ମୋ ପ୍ରତି ପ୍ରସନ୍ନ ହୋଇ ମୋତେ ଏଠାରୁ ପ୍ରଭୁ, ଉଦ୍ଧାର କରନ୍ତୁ । ମୁଁ ଐଶ୍ୱର୍ଯ୍ୟ, ରାଜସମ୍ପଦ, ଦୀର୍ଘ ଜୀବନ, ଅଭ୍ୟୁଦୟ ଆଦି କିଛି ମାଗୁନାହିଁ, କାରଣ ତାହା କ୍ଷଣସ୍ଥାୟୀ । ଅଣିମାଦି ସିଦ୍ଧି ମଧ୍ୟ ଗ୍ରହଣୀୟ ନୁହେଁ, କାରଣ ତା'ର ମଧ୍ୟ ବିନାଶ ଅଛି । ମୋର ପରମ ବିନୀତ ପ୍ରାର୍ଥନା, ମୋତେ ଆପଣଙ୍କର ଶ୍ରୀଚରଣ ସେବାର ସୁଯୋଗ ଦିଅନ୍ତୁ । ରଜ ଓ ତମଗୁଣ ପରିପୂର୍ଣ୍ଣ ଆସୁରିକ ପରିବେଷ୍ଟନୀ ଓ ପ୍ରାଚୁର୍ଯ୍ୟ ମଧ୍ୟରେ ମୁଁ ପ୍ରତିପାଳିତ ହୋଇ ଆସିଅଛି; ତେଣୁ ଆପଣଙ୍କର କୃପା ଲାଭ କରିବାର ଯୋଗ୍ୟତା ମୋର କାହିଁ ? ତଥାପି ହେ କରୁଣାମୟ ପ୍ରଭୁ, ବ୍ରହ୍ମାଦିଙ୍କ ପାଇଁ ଯାହା ଚିରଦୁର୍ଲଭ, ସେହି ଶ୍ରୀକରର ସ୍ପର୍ଶ ପ୍ରଦାନ କରି ମୋତେ ଅପୂର୍ବ ସୌଭାଗ୍ୟରେ ମଣ୍ଡିତ କରିଅଛନ୍ତି, ଆପଣ କଳ୍ପତରୁ । କାମନାନୁସାରେ ଆପଣ ଫଳଦାନ କରିଥାନ୍ତି । ଆପଣଙ୍କ ପ୍ରତି ଭକ୍ତିପ୍ଳୁତ ସେବା ହିଁ ଆପଣଙ୍କର ପ୍ରସନ୍ନତା ଉଦ୍ରେକ କରିଥାଏ । ଆପଣ ନିଜେ ନିଜ ମଧ୍ୟରେ ଜଗତର ବୀଜ ବହନ କରି ପ୍ରଳୟ ଜଳରେ ଯୋଗ ନିଦ୍ରାରେ ଶୟନ କରିଥାନ୍ତି । ଆପଣଙ୍କର ନାଭିକମଳରୁ ଜାତ ବ୍ରହ୍ମା ମଧ୍ୟ ଆପଣଙ୍କର ସ୍ୱରୂପ ଜାଣିବାକୁ ଅସମର୍ଥ ହୋଇଥିଲେ । ଆପଣଙ୍କୁ ଉପାସନା କରିବା ପରେ ଆପଣଙ୍କ ସ୍ୱରୂପ ଉପଲବ୍ଧି କରିପାରିଥିଲେ । ଆପଣ ବହୁ ଭାବରେ ନିଜକୁ ପ୍ରକାଶ କରିଥାନ୍ତି । ଆପଣ କେତେବେଳେ ସହସ୍ର ସହସ୍ର ଭୁଜଧାରୀ ବିରାଟ ପୁରୁଷ ତ କେତେବେଳେ ହୟଗ୍ରୀବ ମୂର୍ତ୍ତି, ମତ୍ସ୍ୟରୂପ, ମାନବ ଶରୀର ଧାରଣ କରି ଧର୍ମପ୍ରାଣ ବ୍ୟକ୍ତିମାନଙ୍କର ଉଦ୍ଧାର ଓ ଦୁଷ୍ଟମାନଙ୍କୁ

ପାଳନ କରି ଯୁଗେ ଯୁଗେ ଧର୍ମର ସଂରକ୍ଷଣ କରିଥାନ୍ତି ଓ ନିଜର 'ତ୍ରିଯୁଗ' ନାମ ସାର୍ଥକ କରିଥାନ୍ତି । ପ୍ରଭୁ, ମୋର ମନ ଅତି ନୀଚ ଓ ସଦା ଅଧର୍ମନିରତ । ମୁଁ ଇନ୍ଦ୍ରିୟାଶକ୍ତି, ହର୍ଷ, ଶୋକ, ଭୟ, ଦୁଃଖ ଓ କାମନାରେ ସଦା କାତର ହେବା ଫଳରେ ଆପଣଙ୍କ କଥାରେ ସେପରି ନିଜର ପ୍ରୀତି ଜନ୍ମାଇ ପାରୁନାହିଁ । ମୁଁ ଅଧମ । ଏହି ଘୃଣିତ ମନ ନେଇ ଆପଣଙ୍କର ତତ୍ତ୍ୱ ବିଚାର କରିବା ମୋ ପକ୍ଷରେ ଧୃଷ୍ଟତା ହେବ । ପ୍ରଭୁ, ମୋତେ ଏହି ସଂସାର-ବୈତରଣୀରୁ ଉଦ୍ଧାର କରନ୍ତୁ । ମୁଁ କେବଳ ମୋ ନିଜର ମୁକ୍ତି ପାଇଁ ଚିନ୍ତା କରୁନାହିଁ । ମୋର ଏହି ସମବୟସ୍କ ସାଥୀ ଅସୁର ବାଳକମାନଙ୍କୁ ଛାଡ଼ି ଭବସାଗରରୁ ଏକାକୀ ଉଦ୍ଧାର ଲାଭ କରିବାକୁ ଇଚ୍ଛା କରୁନାହିଁ । ଆପଣ ଅଖିଳ ଜଗତର ସ୍ରଷ୍ଟା, ଜଗଦ୍‌ଗୁରୁ । ଆପଣ ଗୁଣାତୀତ । ଆପଣ ସର୍ବବ୍ୟାପୀ । କ'ଣ କହି ଆପଣଙ୍କର ସ୍ତୁତି ଗାନ କରିବି, ମୁଁ ଜାଣିନାହିଁ । ମୋର ଦୋଷ ମାର୍ଜନା କରନ୍ତୁ ।'

ବାଳକ ପ୍ରହ୍ଲାଦଙ୍କର ସ୍ତୁତି ଶ୍ରବଣ କରି ଭଗବାନ ନରସିଂହ କହିଲେ, 'ଆୟୁଷ୍ମାନ ପ୍ରହ୍ଲାଦ, ତୁ ଅସୁରମାନଙ୍କ ମଧ୍ୟରେ ଧନ୍ୟ ! ତୋର ସ୍ତୁତିରେ ମୁଁ ପ୍ରସନ୍ନ ହୋଇଅଛି । ମୁଁ ବାଞ୍ଛାକଳ୍ପତରୁ । ସମସ୍ତ-ଙ୍କର କାମନା ମୁଁ ପୂରଣ କରିଥାଏ । ମୋତେ ସନ୍ତୁଷ୍ଟ ନ କଲେ, ମୋର ଦର୍ଶନ ମିଳେ ନାହିଁ ଏବଂ ମୋର ଦର୍ଶନ ଲାଭ କଲେ ଦର୍ଶକର କୌଣସି କାମନା ଅପୂର୍ଣ୍ଣ ରହେ ନାହିଁ । ତେଣୁ ତୋର ଅଭିଳାଷ ପ୍ରକାଶ କର ।'

ଭଗବାନଙ୍କ କଥା ଶୁଣି ପ୍ରହ୍ଲାଦ କହିଲେ, 'ପ୍ରଭୁ, ମୋତେ କାମ-ନାର ପ୍ରଲୋଭନରେ ପ୍ରଲୋଭିତ କରନ୍ତୁ ନାହିଁ, କାରଣ ଭକ୍ତ ଓ ସେବକଙ୍କୁ କାମନାର ଚିନ୍ତା ଭ୍ରଷ୍ଟ କରି ଦେଇଥାଏ । ମୋର ପରମ ସୌଭାଗ୍ୟ ଯେ ମୁଁ ଆପଣଙ୍କର ଦର୍ଶନ ଲାଭ କରିଅଛି । ଏହା ପରେ ଆପଣଙ୍କ ସହ ବଣିକବୃତ୍ତିରେ ସାଂସାରିକ ସୁଖ କାମନା କରି ଆପଣଙ୍କୁ ମଧ୍ୟ ଭ୍ରଷ୍ଟ କରିବି ନାହିଁ । ମୁଁ ଆପଣଙ୍କର ଜଣେ ନିଷ୍କାମ ଭକ୍ତ ଏବଂ ଆପଣ ମୋର ପ୍ରୟୋଜନଶୂନ୍ୟ ପ୍ରଭୁ । ଯଦି ନିହାତି ମୋତେ ବର ପ୍ରଦାନ କରିବାକୁ ଅଭିଳାଷ ପୋଷଣ କରିଥାନ୍ତି, ତେବେ ମୋତେ ଦୟାକରି ଏହି ବର

ପ୍ରଦାନ କରନ୍ତୁ ଯେପରି ମୋ ମନରୁ ସମସ୍ତ କାମନାର ବୀଜ ଅଚିରେ ଲୋପ ପାଇଯିବ । କାମନାଶୂନ୍ୟ ବ୍ୟକ୍ତିର ଜୀବନ ହିଁ ଧନ୍ୟ ।'

ପ୍ରହ୍ଲାଦଙ୍କ କଥା ଶୁଣି ଭଗବାନ ସହାସ୍ୟ ବଦନରେ କହିଲେ, 'ବାବା, ତୁ ଯଥାର୍ଥରେ ନିଷ୍କାମ ଭକ୍ତ । ତୋ ପରି ଭକ୍ତ କେବେ ସୁଖ କାମନା କରିପାରେ ନାହିଁ । ତେବେ ଅଯାଚିତ ଭାବରେ ମୁଁ ତୋତେ ଏହି ବର ପ୍ରଦାନ କରୁଛି ଯେ, ମୋର ଆଦେଶ ପାଳନ କରି ଏହି ମନ୍ୱନ୍ତରର ଶେଷ ପର୍ଯ୍ୟନ୍ତ ତୁ ବାସ କରି ଦାନବ ରାଜ୍ୟ ଭୋଗ କରିବୁ । ଭକ୍ତିର ସହିତ ମୋର ପ୍ରିୟକାର୍ଯ୍ୟ ସମ୍ପାଦନ କରି ଯଜ୍ଞାଦି ଅନୁଷ୍ଠାନ କରିବୁ । ତୋର ପ୍ରାରବ୍ଧର ପୁଣ୍ୟ ଫଳ ତୁ ଧର୍ମପ୍ରଣୋଦିତ ଭାବରେ ଏହିପରି ଭୋଗ କରି ଇହଜୀବନ ଶେଷ କଲେ ମୋତେ ତୁ ଲାଭ କରିବୁ ।'

ପ୍ରହ୍ଲାଦ କହିଲେ, 'ପ୍ରଭୁ, ମୋର ପିତା ଆପଣଙ୍କର ସ୍ୱରୂପ ଉପଲବ୍ଧି କରି ନ ପାରି ଆପଣଙ୍କର ବହୁ ନିନ୍ଦାଗାନ କରିଅଛନ୍ତି । ଆପଣଙ୍କୁ ଭ୍ରାତୃହତ୍ୟାକାରୀ ବୋଲି କହି କଟୁ ସମାଲୋଚନା କରିଅଛନ୍ତି ଏବଂ ମୋତେ ଆପଣଙ୍କର ଭକ୍ତ ବୋଲି ଜାଣି ମୋ ପ୍ରତି ମଧ୍ୟ ଅକଥନୀୟ ଅତ୍ୟାଚାର କରିଅଛନ୍ତି । ଏହି ସବୁ ନିନ୍ଦନୀୟ କାର୍ଯ୍ୟ ଫଳରେ ସେ ଯେଉଁ ପାପର ଭାଗୀ ହୋଇଅଛନ୍ତି, ପ୍ରଭୁ, ତହିଁରୁ ତାଙ୍କୁ ଉଦ୍ଧାର କରନ୍ତୁ । ଆପଣଙ୍କ ଦିବ୍ୟ ଦୃଷ୍ଟି ଯେତେବେଳେ ତାଙ୍କ ଉପରେ ପଡ଼ିଛି, ତଦ୍ୱାରା ସେ ନିଶ୍ଚୟ ସକଳ ପାପରୁ ମୁକ୍ତ ହୋଇ ଅଛନ୍ତି । ତଥାପି ମୋର ଅବୁଝା ମନ ବୁଝୁନାହିଁ ବୋଲି, ମୁଁ ଏପରି ପ୍ରାର୍ଥନା କରୁଛି ।'

ଭଗବାନ ନରସିଂହ କହିଲେ, 'ପ୍ରହ୍ଲାଦ, କେବଳ ତୋର ପିତାଙ୍କୁ ମୁଁ ପାପମୁକ୍ତ କରିନାହିଁ, ତୋର ବଂଶର ପୂର୍ବ ଏକୋଇଶ ପୁରୁଷ ପର୍ଯ୍ୟନ୍ତ ସମସ୍ତଙ୍କୁ ସମସ୍ତ ପାପରୁ ଉଦ୍ଧାର କରିଅଛି । ତୁ ଏହି ବଂଶରେ ଜନ୍ମଗ୍ରହଣ କରି ଏହି ବଂଶକୁ ଧନ୍ୟ କରିଅଛୁ । ସାଧୁ, ସମଦର୍ଶୀ, ପ୍ରଶାନ୍ତ ମନା; ତଥା ସଦାଚାର ସମ୍ପନ୍ନ ବ୍ୟକ୍ତିମାନେ ଯେଉଁଠାରେ ଥାଆନ୍ତି, ସେମାନଙ୍କର ପୁଣ୍ୟ ଫଳରେ ସେଠାରେ ଥିବା ଅତ୍ୟନ୍ତ ଗର୍ହିତ ପାପୀ ମଧ୍ୟ ପାପରୁ ମୁକ୍ତି ଲାଭକରି ପବିତ୍ର ହୋଇଥାଏ । ତୁ ମୋର ପରମ ଭକ୍ତ, ତେଣୁ ତୋର ପୁଣ୍ୟ ଫଳରେ ସେ ମଧ୍ୟ

ପାପମୁକ୍ତ ହୋଇଅଛନ୍ତି । ପିତାଙ୍କର ଔର୍ଦ୍ଧ୍ୱଦୈହିକ କାର୍ଯ୍ୟ ସମାପନ କରି ପିତୃରାଜ୍ୟ ପାଳନ କର ।'

ଏହା କହି ଓ ପ୍ରହ୍ଲାଦଙ୍କୁ ଆଶୀର୍ବାଦ କରି ଭଗବାନ ନରସିଂହ ଶୂନ୍ୟରେ ଅଦୃଶ୍ୟ ହୋଇଗଲେ ।

ଶୁକଦେବ କହୁଥାନ୍ତି, ଭଗବାନଙ୍କର ଆବାସସ୍ଥଳୀ ବୈକୁଣ୍ଠର ଜୟ ଓ ବିଜୟ ନାମକ ଦୁଇ ଦ୍ୱାରପାଳ ବ୍ରାହ୍ମଣ ପରେ ଅଭିଶପ୍ତ ହୋଇ ଦିତିଙ୍କ ଗର୍ଭରେ ଜନ୍ମ ହୋଇ ହିରଣ୍ୟାକ୍ଷ ଓ ହିରଣ୍ୟକଶିପୁ ନାମରେ ପରିଚିତ ହୋଇ ଅଭିଶାପରୁ ଆଶୁ ମୁକ୍ତି ଲାଭ କରିବା ନିମନ୍ତେ ଭଗବାନଙ୍କ ପ୍ରତି ବୈରିତା ପ୍ରକାଶ କରିଥିଲେ । ପରେ ସେ ଦୁହେଁ କୁମ୍ଭକର୍ଣ୍ଣ ଓ ଦଶାନନ ନାମରେ ଜନ୍ମ ହୋଇ ପ୍ରଭୁ ରାମଙ୍କ ହସ୍ତରେ ମୃତ୍ୟୁ ବରଣ କରିଥିଲେ । ତା'ପରେ ସେ ଦୁହେଁ ମଧ୍ୟ ଶିଶୁପାଳ ଓ ଦନ୍ତବକ୍ର ରୂପରେ ପୁନର୍ବାର ଜନ୍ମହୋଇ ଭଗବାନ କୃଷ୍ଣଙ୍କ ହସ୍ତରେ ନିହତ ହୋଇ ଅଭିଶପ୍ତ ଜୀବନରୁ ସାଯୁଜ୍ୟ ମୁକ୍ତି ଲାଭ କରିଥିଲେ ।



୨

# ଗଜେନ୍ଦ୍ର ଉଦ୍ଧାର

କ୍ଷୀର-ସମୁଦ୍ର ପରିବେଷ୍ଟିତ ସମୁଚ୍ଚ ତ୍ରିକୂଟ ପର୍ବତର ସାନୁ ଦେଶରେ ଏକ ସୁରମ୍ୟ ଓ ସୁନ୍ଦର ସରୋବର ଅବସ୍ଥିତ । ସେହି ସ୍ଥାନଟି ସିଦ୍ଧ, ଚାରଣ, ଗନ୍ଧର୍ବ ଓ ଅପ୍ସରାମାନଙ୍କର ନିତ୍ୟ ଲୀଳାଭୂମିରେ ପରିଣତ ହୋଇଥିଲା । ଦେବରମଣୀମାନଙ୍କର ସୁମଧୁର ସ୍ୱରରେ ସଦା ମୁଖରିତ ହେଉଥିଲା ।

ଦିନେ, ସେହି ଅରଣ୍ୟରେ ବାସ କରୁଥିବା ଗଜରାଜ ନିଜର ହସ୍ତୀ ଓ ହସ୍ତିନୀମାନଙ୍କ ଗହଣରେ ଅରଣ୍ୟରେ କ୍ରୀଡ଼ା କରୁଥିବାବେଳେ ଅତ୍ୟନ୍ତ ଗ୍ରୀଷ୍ମତାପ ହେତୁ ତୃଷାର୍ତ୍ତ ହୋଇପଡ଼ିଲା । ଜଳପାନ ଓ ସ୍ନାନ କରିବା ନିମନ୍ତେ ନିଜର ଦଳବଳ ସହିତ ସେହି ସରୋବର ମଧ୍ୟରେ ପ୍ରବେଶ କଲା । ସେହି ସରୋବରରେ ଗୋଟିଏ ମହାବଳଶାଳୀ କୁମ୍ଭୀର ବାସ କରୁଥିଲା । ଦୈବ ପ୍ରେରିତ ହେଲା ପରି ସେହି କୁମ୍ଭୀରଟି କ୍ରୋଧ ପରବଶ ହୋଇ ଗଜରାଜର ଗୋଟିଏ ପାଦକୁ ଗ୍ରାସ କଲା । କୁମ୍ଭୀରର ଆକ୍ରମଣରୁ ନିଜକୁ ରକ୍ଷା କରିବା ନିମନ୍ତେ ଗଜରାଜ ଭୟାର୍ତ୍ତ ସ୍ୱରରେ ଗର୍ଜନ କଲା । ତାର ଗର୍ଜ୍ଜନ ଶୁଣି ଅନୁଚର ହସ୍ତୀମାନେ ବହୁ ଚେଷ୍ଟା କଲେ ମଧ କୁମ୍ଭୀରର କବଳରୁ ଗଜରାଜକୁ ଉଦ୍ଧାର କରିପାରିଲେ ନାହିଁ । ଗଜରାଜ ନିଜେ ମଧ ବହୁ ଚେଷ୍ଟା କଲା, ଫଳରେ ଗଜରାଜ ଓ କୁମ୍ଭୀର ମଧ୍ୟରେ ଭିଡ଼ା ଓଟରା ଏକ ହଜାର ବର୍ଷ ଧରି ଲାଗିଲା । ଏତେ ଦୀର୍ଘ ଦିନ ଧରି ଉଭୟଙ୍କ ମଧ୍ୟରେ ଦ୍ୱନ୍ଦ୍ୱ-ଯୁଦ୍ଧ ଲାଗିଲେ ମଧ୍ୟ ସେମାନଙ୍କ ମଧ୍ୟରୁ କେହି ମଲେ ନାହିଁ କି କାହାରି ପରାଜୟ ଘଟିଲା ନାହିଁ । କିନ୍ତୁ କୁମ୍ଭୀର ତୁଳନାରେ ଗଜରାଜ ଦିନକୁ ଦିନ ଦୁର୍ବଳ ହୋଇ ପଡ଼ିବାକୁ ଲାଗିଲା ।

ଗଜରାଜ ଆତ୍ମରକ୍ଷା ନିମନ୍ତେ ଅନ୍ୟ କୌଣସି ଉପାୟ ନ ଦେଖି ଭଗବାନଙ୍କୁ ଆକୁଳ ପ୍ରାଣରେ ପ୍ରାର୍ଥନା କଲା, 'ହେ ପରମେଶ୍ୱର,

ଆପଣ ଜୀବମାନଙ୍କ ଦେହରେ ଜୀବନୀ ଓ ଚେତନାଶକ୍ତି ସଞ୍ଚାର କରି ଅଛନ୍ତି । ଆପଣ ପ୍ରକୃତି ଓ ପୁରୁଷ । ଆପଣ ଜଗତର କାରଣ ସ୍ୱରୂପ । ଆପଣଙ୍କୁ ମୁଁ ଧ୍ୟାନ କରୁଅଛି । ଆପଣ ନିଜ ମଧ୍ୟରୁ ଏହି ଜଗତକୁ ସୃଷ୍ଟି କରିଅଛନ୍ତି; ଅଥଚ ଆପଣ ଜାଗତିକ ପଦାର୍ଥଠାରୁ ଭିନ୍ନ । ଆପଣ ସ୍ୱୟଂପ୍ରକାଶ । ଯେ ଅବଲୀଳାକ୍ରମେ ପ୍ରକଟିତ ଓ ଅନ୍ତର୍ହିତ ହୋଇପାରନ୍ତି, ଯାହାଙ୍କର ଦୃଷ୍ଟି କେବେ ମୁଦ୍ରିତ ହୁଏ ନାହିଁ, ଯେ ଜଗତ ପ୍ରଳୟ ହେଲେ, ପ୍ରଳୟକାଳୀନ ସେହି ଘନ ଅନ୍ଧକାର ମଧ୍ୟରେ ଉଜ୍ଜ୍ୱଳ ରୂପରେ ବିଦ୍ୟମାନ ଥାଆନ୍ତି, ସେହି ଆଦି ଓ ଅନାଦି ପୁରୁଷଙ୍କୁ ମୁଁ ପ୍ରଣାମ କରୁଅଛି; ସେ ମୋତେ ରକ୍ଷା କରନ୍ତୁ । ଯେଉଁ ଭଗବାନ ଲୀଳାମୟ ଓ ଯାହାଙ୍କର ଲୀଳାର ସ୍ୱରୂପ ଅବଗତ ହେବା ଦେବତା-ମାନଙ୍କ ପକ୍ଷରେ ମଧ୍ୟ ସମ୍ଭବ ହୁଏନାହିଁ, ସେତେବେଳେ ମୋ ପରି ଇତର ଜୀବ ପକ୍ଷରେ ତାଙ୍କର ମହିମାମୟ ସ୍ୱରୂପ ବୁଝିବା ଓ ବର୍ଣ୍ଣନା କରିବା ଯେ ଏକାବେଳକେ ଅସମ୍ଭବ, ଏଥିରେ ସନ୍ଦେହ ନାହିଁ । ତେଣୁ ହେ ଦୁର୍ଜ୍ଞେୟ, ମୋତେ ରକ୍ଷା କରନ୍ତୁ । ଯାହାଙ୍କର ପରମ କଲ୍ୟାଣପ୍ରଦ ଚରଣ ଯୁଗଳକୁ ଦର୍ଶନ କରିବା ନିମନ୍ତେ ଯୋଗୀଋଷିମାନେ ପ୍ରିୟ ପରିଜନଙ୍କ ସଙ୍ଗ, ତଥା ସାଂସାରିକ ସୁଖ ପରିହାରକରି ବ୍ରହ୍ମଚର୍ଯ୍ୟାଦି ବ୍ରତ ପାଳନ କରିଥାନ୍ତି, ସେହି ପରମ ଉପାସ୍ୟ ଭଗବାନ ମୋର କଲ୍ୟାଣ କରନ୍ତୁ । ଯାହାଙ୍କର ଜନ୍ମ ନାହିଁ, କର୍ମ ନାହିଁ, ନାହିଁ ରୂପ ଓ ଗୁଣ, ସେ ମଧ୍ୟ ଜଗତର ସୃଷ୍ଟି, ପାଳନ ଓ ବିଳୟ ସାଧନ ପାଇଁ ବିଭିନ୍ନ ନାମ, ରୂପ, ଗୁଣ ଓ ଜନ୍ମ ସ୍ୱୀକାର କରିଥାନ୍ତି, ସେହି ଅଦ୍ଭୁତ କର୍ମା, ଅଜନ୍ମା, ଅରୂପ ହୋଇ ମଧ୍ୟ ବହୁରୂପୀ, ମହାପରାକ୍ରମଶାଳୀ, ସ୍ୱପ୍ରକାଶ, ବାକ୍ ମନ-ଚେତନାର ଅଗୋଚର ପରମେଶ୍ୱରଙ୍କୁ ପ୍ରଣାମ କରୁଅଛି । ଯେ ସତ୍ତ୍ୱ, ରଜ, ତମ—ଏହି ତ୍ରିଗୁଣର ଧର୍ମକୁ ସ୍ୱୀକାର କରି ଶାନ୍ତ, ଘୋର ଓ ମୂଢ଼ ଅବସ୍ଥା ସ୍ୱୀକାର କରିଥାନ୍ତି, ସେହି ଭେଦାଭେଦରହିତ, ସମଭାବାପନ୍ନ, ଜ୍ଞାନଘନସ୍ୱରୂପଙ୍କୁ ପ୍ରଣାମ କରୁଛି । ପ୍ରଭୁ, ଆପଣ ସମସ୍ତଙ୍କର ପ୍ରଭୁ, ସକଳ କ୍ଷେତ୍ରର ଏକମାତ୍ର ଜ୍ଞାତା, ସର୍ବସାକ୍ଷୀ, ସର୍ବକାରଣ, ପ୍ରକୃତି ଏବଂ ପୁରୁଷ ରୂପରେ ସଦା ପ୍ରକାଶମାନ, ଆପଣଙ୍କୁ ନମସ୍କାର । ଆପଣ କରୁଣାମୟ, ଆପଣ ମୁକ୍ତ । ଆପଣ ଆର୍ତ୍ତତ୍ରାଣ ଓ ଶରଣାଗତବତ୍ସଳ । ମୋ ପରି ଶରଣାଗତ ଇତର ପଶୁକୁ ରକ୍ଷାକରନ୍ତୁ ।

ଆପଣ ଅବିନାଶୀ, ଅବ୍ୟକ୍ତ, ଆଧ୍ୟାତ୍ମିକ ଯୋଗଲଭ୍ୟ, ଇନ୍ଦ୍ରିୟାତୀତ, ସୂକ୍ଷ୍ମ, ଜୀବର ଅତ୍ୟନ୍ତ ନିକଟବର୍ତ୍ତୀ ହୋଇ ମଧ୍ୟ ସୁଦୂରବର୍ତ୍ତୀ, ଆପଣ ଅନନ୍ତ, ଆଦି ଓ ପରିପୂର୍ଣ୍ଣ ସ୍ୱରୂପ ପରମବ୍ରହ୍ମ ପରମେଶ୍ୱରଙ୍କୁ ସ୍ତୁତି କରୁଅଛି । ଆପଣଙ୍କର ସାମାନ୍ୟ ବିଭୂତି ଦ୍ୱାରା ଅଖିଳ ଜଗତ ସୃଷ୍ଟି ହୋଇଅଛି । ଆପଣ ଅଗ୍ନି ଓ ସୂର୍ଯ୍ୟଙ୍କଠାରୁ ଅଧିକ ତେଜସ୍ୱୀ ଓ ପ୍ରଳୟ କାଳରେ କାଳ ମଧ୍ୟରୁ ଆବିର୍ଭୂତ ଓ ତହିଁ ମଧ୍ୟରେ ଅନ୍ତର୍ହିତ ହୋଇଥାନ୍ତି । ଆପଣ ନା ଦେବତା, ନା ଅସୁର, ନା ମନୁଷ୍ୟ, ନା ପଶୁପକ୍ଷୀ, ନା ସ୍ତ୍ରୀ, ନା ପୁରୁଷ, ନା ଗୁଣ, ନା କ୍ରିୟା, ନା ସତ୍, ନା ଅସତ୍, ଆପଣ ସବୁ ଅବସ୍ଥାର ସୀମା ରୂପରେ ବିଦ୍ୟମାନ ଏବଂ ମାୟା ଦ୍ୱାରା ଅସଂଖ୍ୟ ରୂପରେ ପ୍ରକାଶିତ । ଆପଣ ମୋର ଉଦ୍ଧାର ନିମନ୍ତେ ଆବିର୍ଭୂତ ହୁଅନ୍ତୁ । ପ୍ରଭୁ, ମୁଁ ବଞ୍ଚିବାକୁ ଚାହୁଁ ନାହିଁ, ଜନ୍ମ-ବନ୍ଧନରୁ ମୁକ୍ତ ହେବାକୁ ଚାହୁଁଅଛି । ଯାହାର ଅନ୍ତର ଓ ବାହାର ଅଜ୍ଞାନ ଦ୍ୱାରା ଆଚ୍ଛନ୍ନ ସେହି ହସ୍ତୀଜନ୍ମର ପ୍ରୟୋଜନ କ'ଣ ଅଛି ? ମୋତେ ମୋକ୍ଷ ପ୍ରଦାନ କରନ୍ତୁ । ଯାହାଙ୍କର ମାୟା ଶକ୍ତିରେ ଆଚ୍ଛନ୍ନ ହୋଇ ସମସ୍ତ ଜଗତ ଆପଣଙ୍କର ସ୍ୱରୂପ ଜାଣିବାକୁ ସମର୍ଥ ହୁଏ ନାହିଁ, ମୁଁ ସେହି ପରମପଦ ସ୍ୱରୂପ ଯୋଗେଶ୍ୱର, ଅପାର ମହିମାଶାଳୀ, ସର୍ବଶକ୍ତିମାନ ପ୍ରଭୁ ଆପଣଙ୍କଠାରେ ଶରଣ ନେଉଅଛି ।

ଭକ୍ତ ସହକାରେ ଏହିପରି ସ୍ତୁତି କରି ଗଜରାଜ ଭଗବାନଙ୍କୁ ସନ୍ତୁଷ୍ଟ କରିବାରୁ ଭଗବାନ ଗରୁଡ଼ ପୃଷ୍ଠରେ ଆରୋହଣ କରି ସେଠାରେ ଆବିର୍ଭୂତ ହେଲେ । ଭଗବାନଙ୍କୁ ସମ୍ମୁଖରେ ଦେଖି କୁମ୍ଭୀର ଆକ୍ରମଣ ପୀଡ଼ିତ ଗଜରାଜ ନିଜର ଶୁଣ୍ଢଦ୍ୱାରା ଏକ ପଦ୍ମପୁଷ୍ପ ଉତ୍ତୋଳିତ କରି 'ହେ ନାରାୟଣ, ହେ ଜଗଦ୍‌ବନ୍ଧୁ, ଆପଣଙ୍କର ଚରଣରେ ନମସ୍କାର' କହି ଭଗବାନଙ୍କୁ ସ୍ୱାଗତ କଲା । ଭଗବାନ ଗରୁଡ଼ ପୃଷ୍ଠରୁ ଅବତରଣ କରି ନିଜର ଚକ୍ର ଦ୍ୱାରା ଆକ୍ରମଣକାରୀ କୁମ୍ଭୀରର ମସ୍ତକକୁ ଛେଦନ କରି ଗଜରାଜଙ୍କୁ ଉଦ୍ଧାର କଲେ ।

ସେହି କୁମ୍ଭୀର ପୂର୍ବ ଜନ୍ମରେ ହୁହୁ ନାମକ ଏକ ଗନ୍ଧର୍ବ ଥିଲା ଏବଂ କେବଳ ମହର୍ଷିଙ୍କ ଅଭିଶାପରେ କୁମ୍ଭୀର ଜନ୍ମ ଲାଭ କରିଥିଲା । ଭଗବାନଙ୍କ ହସ୍ତରେ ନିହତ ହୋଇ ସେ ଋଷି ଅଭିଶାପରୁ ମୁକ୍ତ ହେଲା

ଓ ଭଗବାନଙ୍କ ଚରଣରେ ପ୍ରଣିପାତ ହୋଇ ପୂର୍ବର ଗନ୍ଧର୍ବ ଲୋକକୁ ଯାତ୍ରା କଲା । ଭଗବାନଙ୍କ ଦିବ୍ୟସ୍ପର୍ଶ ଲାଭ କରି ଗଜରାଜ ପୀତାମ୍ବରଧାରୀ ଚତୁର୍ଭୁଜ ରୂପରେ ରୂପାନ୍ତରିତ ହୋଇ ଗଜଜନ୍ମରୁ ମୁକ୍ତ ହୋଇ ସାରୂପ୍ୟ ମୁକ୍ତି ଲାଭ କଲା ।

ପୂର୍ବ ଜନ୍ମରେ ଗଜରାଜ ଇନ୍ଦ୍ରଦ୍ୟୁମ୍ନ ନାମଧାରୀ ଜଣେ ବିଖ୍ୟାତ ବିଷ୍ଣୁଭକ୍ତ ଓ ରାଜା ଥିଲା । ସେ ବାନପ୍ରସ୍ଥ ଆଶ୍ରମ ଅବଲମ୍ବନ କରି ଆଶ୍ରମରେ ବାସ କରୁଥିବା ସମୟରେ ମୌନବ୍ରତ ଆଚରଣ କରି ଜଳ ମଧ୍ୟରେ ଦଣ୍ଡାୟମାନ ହୋଇ ସ୍ନାନାନ୍ତେ ଭଗବାନଙ୍କୁ ଅର୍ଚ୍ଚନା କରୁଥିବା ବେଳେ ମହର୍ଷି ଅଗସ୍ତ୍ୟ ଶିଷ୍ୟମାନଙ୍କ ସହ ସେଠାରେ ଉପସ୍ଥିତ ହୋଇଥିଲେ । ରାଜା ଧ୍ୟାନରେ ମଗ୍ନଥିବାରୁ, ମହର୍ଷିଙ୍କର କୌଣସି ସତ୍କାର କରିପାରି ନ ଥିଲେ; ଫଳରେ ମହର୍ଷି କୁପିତ ହୋଇ ରାଜାଙ୍କୁ ଅଭିଶାପ ଦେଇ କହିଥିଲେ, ମୂର୍ଖ, ଜଳ ମଧ୍ୟରେ ହସ୍ତୀ ପରି ଦଣ୍ଡାୟମାନ ହୋଇ ମୋର ଅବମାନନ କରିଥିବାରୁ, ତୁ ହସ୍ତୀ ଜନ୍ମ ଲାଭ କର । ଋଷିଙ୍କ ଦ୍ୱାରା ଏହିପରି ଅଭିଶପ୍ତ ହୋଇ ରାଜା ଇନ୍ଦ୍ରଦ୍ୟୁମ୍ନ ଗଜଜନ୍ମ ଲାଭ କରିଥିଲେ ମଧ୍ୟ ପୂର୍ବ ଜନ୍ମର ସ୍ମୃତି ଓ ଆଧ୍ୟାତ୍ମିକ ଭାବ ଚେତେବେ ବି ତାଙ୍କ ସ୍ମୃତିରେ ଜାଗ୍ରତ ଥିଲା ।

ଗଜରାଜଙ୍କୁ ଗଜ ଜନ୍ମରୁ ମୁକ୍ତ କରି ଭଗବାନ ତାଙ୍କୁ ନିଜର ପାର୍ଷଦତ୍ୱ ପ୍ରଦାନ କରିଥିଲେ ଓ ତାଙ୍କୁ ସଙ୍ଗରେ ନେଇ ସ୍ୱଧାମକୁ ଯାତ୍ରା କରିଥିଲେ ।



## ସାଗର ମନ୍ଥନ

ମହର୍ଷି ଦୁର୍ବାସାଙ୍କ ପ୍ରତି ଅବମାନନା ପ୍ରକାଶ କରିବା ଅପରାଧରେ ଦେବରାଜ ଇନ୍ଦ୍ର ନିଜର ଐଶ୍ବର୍ଯ୍ୟ ଓ ଶ୍ରୀ ହରାଇଥିବାରୁ ଏବଂ ଅସୁରମାନଙ୍କ ହସ୍ତରେ ଦେବତାମାନେ ଶୋଚନୀୟ ଭାବରେ ପରାଜିତ ହେବା ସଙ୍ଗେ ସଙ୍ଗେ ଅସୁରଙ୍କ ହସ୍ତରେ ବହୁ ଦେବ-ସୈନ୍ୟ ନିହତ ହେବାରୁ ଦେବତାମାନଙ୍କ ମଧ୍ୟରେ ମହାଭୟଲେଣି ପଡ଼ିଗଲା । ସେହି ଦାରୁଣ ଦୁର୍ଯ୍ୟୋଗରୁ ଉଦ୍ଧାର ଲାଭ କରିବାକୁ ଏବଂ ହୃତପ୍ରଭୁତ୍ୱ ଫେରାଇ ଆଣିବା ନିମନ୍ତେ ଦେବତାମାନେ ସମବେତ ହୋଇ ବ୍ରହ୍ମାଙ୍କ ନିକଟରେ ନିଜର ଦୁଃଖ ନିରାକରଣ ନିମନ୍ତେ ପ୍ରାର୍ଥନା ଜଣାଇଲେ । ଏକ ପକ୍ଷରେ ଦେବତାମାନଙ୍କର ଦୁରବସ୍ଥା, ଅନ୍ୟ ପକ୍ଷରେ ଅସୁରମାନଙ୍କର ପରାକ୍ରମ ଓ ତେଜ ଆଦି ଲକ୍ଷ୍ୟ କରି ଦେବତାମାନଙ୍କର ମଙ୍ଗଳ ବିଧାନ ନିମନ୍ତେ ଅନାଦି ପୁରୁଷ ଜଗଦ୍‌ଗୁରୁ ପୁରୁଷୋତ୍ତମ ଭଗବାନଙ୍କର ଶରଣାପନ୍ନ ହେବାକୁ ବ୍ରହ୍ମା ସ୍ଥିର କଲେ । ତଦନୁସାରେ ଦେବତାମାନଙ୍କ ସହିତ ବ୍ରହ୍ମା କ୍ଷୀର ସମୁଦ୍ରକୂଳକୁ ଯାତ୍ରା କରି ଭଗବାନଙ୍କ ଉଦ୍ଦେଶ୍ୟରେ ସ୍ତୁତି କଲେ । ବ୍ରହ୍ମା ପ୍ରମୁଖ ଦେବତାମାନଙ୍କର ସ୍ତୁତିରେ ପ୍ରୀତ ହୋଇ ଭଗବାନ ହରି ସେମାନଙ୍କ ସମ୍ମୁଖରେ ସହସ୍ର ସୂର୍ଯ୍ୟର ତେଜ ବହନ କରି ଆବିର୍ଭୂତ ହେଲେ । ଭଗବାନଙ୍କୁ ଦର୍ଶନ କରି ବ୍ରହ୍ମା, ଶିବ ଓ ଅନ୍ୟାନ୍ୟ ଦେବଗଣ ଭଗବାନଙ୍କୁ ସଭକ୍ତି ପ୍ରଣାମ ଜଣାଇଲେ ।

ବ୍ରହ୍ମା କହିଲେ, 'ପ୍ରଭୁ ପଦ୍ମନାଭ, ଦାବାନଳ ପ୍ରପୀଡ଼ିତ ହସ୍ତୀମାନେ ଗଙ୍ଗାର ସୁଶୀତଳ ଜଳର ସ୍ପର୍ଶ ଲାଭ କଲେ ଯେପରି ପରମ ଶାନ୍ତି ପ୍ରାପ୍ତ ହୋଇଥାନ୍ତି, ଆଜ ଆମ୍ଭେମାନେ ଚିରବାଞ୍ଛିତ ଆପଣଙ୍କର ଦର୍ଶନ ଲାଭ କରି ଅନୁରୂପ ପରମାନନ୍ଦ ଲାଭ କରିଅଛୁ । ଆଜ ଏକ ବିଶେଷ କାର୍ଯ୍ୟ ସାଧନ ନିମନ୍ତେ ଆମ୍ଭେମାନେ ଏଠାରେ ସମବେତ ହୋଇ

ଆପଣଙ୍କ ନିକଟରେ ପ୍ରାର୍ଥନା ଜଣାଉଅଛୁ । ଆପଣ ତାହା ଅଚିରେ ସମ୍ପାଦନ କରନ୍ତୁ ଏବଂ ଯାହା କଲେ ଆମ୍ଭମାନଙ୍କର ମଙ୍ଗଳ ହେବ, ଆପଣ ସେ ସମ୍ପର୍କରେ ଉପଦେଶ ପ୍ରଦାନ କରନ୍ତୁ ।'

କୃତାଞ୍ଜଳିପୁଟରେ ଦଣ୍ଡାୟମାନ ହୋଇଥିବା ଦେବତାମାନଙ୍କୁ ଜଳଦଗମ୍ଭୀର ସ୍ୱରରେ ଭଗବାନ କହିଲେ, 'ହେ ବ୍ରହ୍ମା, ହେ ଶଙ୍କର, ହେ ଦେବଗଣ, ହେ ଗନ୍ଧର୍ବ ପ୍ରମୁଖ ଦେବଜାତିସମୂହ । ତୁମ୍ଭମାନଙ୍କର କଲ୍ୟାଣ ସାଧନ ନିମନ୍ତେ ମୁଁ ଉପଯୁକ୍ତ ପରାମର୍ଶ ପ୍ରଦାନ କରୁଅଛି, ଶ୍ରବଣ କର । ତୁମ୍ଭେମାନେ ଏଠାରୁ ଯାଇ ଶୁକ୍ରାଚାର୍ଯ୍ୟଙ୍କ ଅନୁଗ୍ରହ ପୁଷ୍ଟ ଦାନବ ଓ ଦୈତ୍ୟମାନଙ୍କ ସହିତ ଅଚିରେ ସନ୍ଧି ସ୍ଥାପନ କର । କାର୍ଯ୍ୟ ସାଧନ କରିବା ନିମନ୍ତେ ଶତ୍ରୁମାନଙ୍କ ସହିତ ସନ୍ଧି ସ୍ଥାପନ କରିବା ସମୟ ଭେଦରେ ପ୍ରୟୋଜନ ପଡ଼ିଥାଏ । ତୁମ୍ଭେମାନେ ଅମୃତ ଉତ୍ପାଦନ କରିବାକୁ ଯତ୍ନ କର । ଅମୃତ ସେବନ କଲେ ମୃତ୍ୟୁଶୀଳ ଓ ମୃତ୍ୟୁଗ୍ରସ୍ତ ପ୍ରାଣୀମାନେ ଅମରତ୍ୱ ଲାଭ କରିଥାନ୍ତି । ଅମୃତ ଉତ୍ପାଦନ କରିବା ନିମନ୍ତେ ତୁମ୍ଭେମାନେ ଏହି କ୍ଷୀରସାଗର ମଧ୍ୟରେ ବିଭିନ୍ନ ଔଷଧି ବୃକ୍ଷ ଗୁଳ୍ମ, ଲତାଦି ସାମଗ୍ରୀମାନ ନିକ୍ଷେପ କରି ସାଗରକୁ ମନ୍ଥନ କର । ସାଗରକୁ ମନ୍ଥନ କରିବା ନିମନ୍ତେ ମନ୍ଥନ ଦଣ୍ଡ ଭାବରେ ମନ୍ଦର ପର୍ବତକୁ ଓ ମନ୍ଥନ-ରଜ୍ଜୁ ଭାବରେ ବାସୁକୀ ନାଗକୁ ବ୍ୟବହାର କରି ଅସୁରମାନଙ୍କ ସହ ମିଶି ସାଗର ମନ୍ଥନ କର । ଏହି କାର୍ଯ୍ୟରେ ମୁଁ ଆବଶ୍ୟକୀୟ ସହ-ଯୋଗ ପ୍ରଦାନ କରିବି । ଏହା କଲେ ଦୈତ୍ୟମାନେ ସାଗର-ମନ୍ଥନ ଜନିତ କ୍ଲେଶ ଏବଂ ତୁମ୍ଭେମାନେ ପ୍ରାର୍ଥିତ ଫଳ ଲାଭ କରିବ । ସାବଧାନ ଶତ୍ରୁମାନଙ୍କ ସହଯୋଗରେ ଏହି କାର୍ଯ୍ୟ ତୁମ୍ଭେମାନେ କରିବାକୁ ଯାଉ-ଥିବାରୁ ସେମାନଙ୍କର ଆଗ୍ରହକୁ ଅକୁଣ୍ଠିତ ଚିତ୍ତରେ ଅନୁମୋଦନ କରୁ-ଥିବ । ଆଦୌ କ୍ରୋଧ ପ୍ରକାଶ କରିବା ନାହିଁ, କାରଣ ଉଦାରତା ହିଁ ସୁଫଳ ଲାଭର ପଥକୁ ସୁଗମ କରିଥାଏ । ସାଗର ମନ୍ଥନ ସମୟରେ ସମୁଦ୍ର ସଞ୍ଜାତ କାଳକୂଟ ବିଷକୁ ଆଦୌ ଭୟ କରିବ ନାହିଁ, ଏପରିକି ସମୁଦ୍ର ମଧ୍ୟରୁ ଯେଉଁ ବସ୍ତୁ ସବୁ ମନ୍ଥନ ଫଳରେ ଉତ୍ପନ୍ନ ହେବ ସେସବୁକୁ ନେବାପାଇଁ ଆଦୌ ଲୋଭ କିମ୍ବା ନ ପାଇଲେ କ୍ଷୋଭ ବା କ୍ରୋଧ ପ୍ରକାଶ କରିବ ନାହିଁ ।

ଏହା କହି ଭଗବାନ ଅନ୍ତର୍ହିତ ହୋଇଗଲେ ।

ଭଗବାନଙ୍କ ଉଦ୍ଦେଶ୍ୟରେ ପୁନର୍ବାର ପ୍ରଣିପାତ ହୋଇ ବ୍ରହ୍ମା ଓ ଶିବ ନିଜ ନିଜ ଆବାସସ୍ଥଳୀକୁ ଗମନ କଲେ ଏବଂ ଦେବତାମାନେ ଦୈତ୍ୟମାନଙ୍କ ସହିତ ସନ୍ଧି କରିବା ନିମନ୍ତେ ଦାନବରାଜ ବଳିଙ୍କ ପ୍ରାସାଦ ଉଦ୍ଦେଶ୍ୟରେ ଯାତ୍ରା କଲେ । ଅସୁରପୁରୀ ମଧ୍ୟରେ ନିରସ୍ତ୍ର ଦେବତା-ମାନଙ୍କୁ ପ୍ରବେଶ କରିବାର ଦେଖି ଦାନବ ସୈନ୍ୟମାନେ ଆକ୍ରମଣ ଆଶଙ୍କା କରି ଦେବତାମାନଙ୍କୁ ଆକ୍ରମଣ କରିବାକୁ ଉଦ୍ୟତ ହେବାରୁ ସନ୍ଧି ଓ ବିଗ୍ରହ ନିପୁଣ କୀର୍ତ୍ତିଶାଳୀ ଦାନବରାଜ ନିଜର ସୈନ୍ୟମାନଙ୍କୁ ନିବାରଣ କରି ଦେବରାଜ ପ୍ରମୁଖଙ୍କ ପ୍ରାସାଦ ମଧ୍ୟକୁ ସ୍ୱାଗତ କରିନେଲେ । ଦେବରାଜ ଇନ୍ଦ୍ର ଦୈତ୍ୟରାଜଙ୍କ ନିକଟରେ ଭଗବାନ ପୁରୁଷୋତ୍ତମଙ୍କଠାରୁ ଲବ୍ଧ କରିଥିବା ଉପଦେଶ ଅନୁସାରେ ଦେବ-ଦାନବଙ୍କ ମିଳିତ ସହ-ଯୋଗରେ ସାଗର ମନ୍ଥନର ପ୍ରସ୍ତାବ ଉପସ୍ଥାପିତ କଲେ । ଦେବରାଜଙ୍କ ପ୍ରସ୍ତାବରେ ଦାନବରାଜ ଓ ଅସୁର ପ୍ରଧାନମାନେ ସମ୍ମତ ହେଲେ । ପରେ ପରେ ଦେବତା ଓ ଅସୁରମାନଙ୍କ ମଧ୍ୟରେ ଶପଥ ଗ୍ରହଣ ମଧ୍ୟରେ ସୌହାର୍ଦ୍ଦ୍ୟ-ବନ୍ଧନ ସଂସ୍ଥାପିତ ହେଲା ।

ସାଗର-ମନ୍ଥନ କାର୍ଯ୍ୟରେ ମନ୍ଦର ପର୍ବତକୁ ମନ୍ଥନ-ଦଣ୍ଡ ଭାବରେ ବ୍ୟବହାର କରିବାର କଥା, ତଦନୁସାରେ ଦେବତା ଓ ଅସୁରମାନେ ମିଳିତ ହୋଇ ବିଶାଳକାୟ ମନ୍ଦର ପର୍ବତକୁ ସମୂଳେ ଉତ୍ପାଟିତ କରି କ୍ଷୀର ସମୁଦ୍ର ନିକଟକୁ ବୋହି ନେବାକୁ ଚେଷ୍ଟା-କଲେ । ମନ୍ଦର ପର୍ବତ ଏପରି ବିରାଟ ଥିଲା ଯେ କ୍ଷୀର-ସମୁଦ୍ର ପର୍ଯ୍ୟନ୍ତ ତାକୁ ନେବା ଦେବତା ଓ ଅସୁରମାନଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ, ଫଳରେ ଅର୍ଦ୍ଧ ପଥରେ ସେମାନେ କ୍ଳାନ୍ତ ହୋଇପଡ଼ିଲେ ଏବଂ ସେମାନଙ୍କ କାନ୍ଧରୁ ମନ୍ଦର ପର୍ବତ ତଳେ ଖସି ପଡ଼ିଲା । ପର୍ବତର ପତନଜନିତ ଗୁରୁ ଭାରରେ ଆକ୍ରାନ୍ତ ହୋଇ ବହୁ ଦେବତା ଓ ଅସୁରମାନେ ନିଷ୍ପେଷିତ ହୋଇଗଲେ ଏବଂ କେତେକଙ୍କର ବାହୁ, ବକ୍ଷ, ଗ୍ରୀବା, ଉରୁ ଆଦି ଭାଙ୍ଗିଗଲା । ଦେବାସୁରମାନଙ୍କର କ୍ଳାନ୍ତି ଓ ତଜ୍ଜନିତ ଦୁର୍ଘଟଣା ବିଷୟ ଅବଗତ ହୋଇ ଭଗବାନ ଶ୍ରୀହରି ସେଠାରେ ଉପସ୍ଥିତ ହୋଇ ନିଜର ଅମୃତ ଦୃଷ୍ଟି ନିକ୍ଷେପ କରି ମୃତ ଓ ନିଷ୍ପେଷିତ ଦେବତା ଓ ଅସୁରମାନଙ୍କୁ ପୁନର୍ଜୀବିତ କରିଦେଲେ ଏବଂ ନିଜର ଏକ ହସ୍ତରେ ମନ୍ଦର ପର୍ବତକୁ

ଉତ୍ତୋଳିତ କରି ଗରୁଡ଼ ପୃଷ୍ଠରେ ସ୍ଥାପନ କରି କ୍ଷୀର ସମୁଦ୍ର ନିକଟକୁ ଯାତ୍ରା କଲେ । ସମୁଦ୍ର ମଧ୍ୟରେ ମନ୍ଦର ପର୍ବତକୁ ସ୍ଥାପନ କରି ଗରୁଡ଼ ଭଗବାନଙ୍କଠାରୁ ବିଦାୟ ନେଇ ସେହିସ୍ଥାନରୁ ଚାଲିଗଲା । କାରଣ ଗରୁଡ଼ ସେଠାରେ ରହିଲେ ମନ୍ଥନ-ରଜ୍ଜୁ ହେବାପାଇଁ ଭୟରେ ବାସୁକୀ ସେଠାକୁ ଆସିବ ନାହିଁ । ସାଗର ମନ୍ଥନରୁ ଉତ୍ପନ୍ନ ହେବା ଅମୃତରୁ ଭାଗ ଦେବାର ପ୍ରତିଶ୍ରୁତି ଦେଇ ବାସୁକୀକୁ ମନ୍ଥନ-ରଜ୍ଜୁ ହେବା ନିମନ୍ତେ ସମ୍ମତ କରାଗଲା ।

ମନ୍ଦର ପର୍ବତ ଓ ବାସୁକୀ ନାଗର ସହଯୋଗରେ ମନ୍ଥନ-କାର୍ଯ୍ୟ କରିବାକୁ ଦେବତା ଓ ଅସୁରମାନେ ଉଦ୍ୟତ ହେବାରୁ ଭଗବାନ ହରି ପ୍ରଥମେ ବାସୁକୀର ମୁଖ ପାଖ ଧରିଲେ, ତାହାଦେଖି ଅସୁରମାନେ ବାସୁକୀର ପୁଚ୍ଛଦେଶ ଧରିବା ଅପମାନ ଜନକ ବୋଲି ମନେକରି ବାସୁକୀର ମୁଖପାଖ ଧରିବାକୁ ଜିଦ୍ଦ କଲେ, ଫଳରେ ଅସୁରମାନଙ୍କୁ ବାସୁକୀର ମୁଖପାଖ ଓ ଦେବତାମାନଙ୍କୁ ପୁଚ୍ଛଦେଶ ଧରିବାକୁ ଦିଆଗଲା ।

ସାଗର ମନ୍ଥନ କାର୍ଯ୍ୟ ଆରମ୍ଭ ହେଲା ।

ଦେବତା ଓ ଅସୁରମାନେ ବହୁ ପରିଶ୍ରମ କରି ମନ୍ଦର ପର୍ବତକୁ ମନ୍ଥନ-ଦଣ୍ଡ ଭାବରେ ବ୍ୟବହାର କରି ସାଗର ମନ୍ଥନ କରିବାକୁ ଲାଗି-ପଡ଼ିଲେ ସତ ମାତ୍ର ଅଳ୍ପ ସମୟ ମଧ୍ୟରେ ସେମାନେ କ୍ଳାନ୍ତ ହୋଇପଡ଼ିଲେ ଫଳରେ ମନ୍ଦର ପର୍ବତ ଧୀରେ ଧୀରେ ଜଳ ମଧ୍ୟରେ ବୁଡ଼ିଯିବାକୁ ଲାଗିଲା । ଏହା ଦେଖି ଭଗବାନ ସ୍ୱୟଂ କଚ୍ଛପ ମୂର୍ତ୍ତି ଧାରଣ କରି ଜଳ ମଧ୍ୟରେ ପ୍ରବେଶ କରି ମନ୍ଦର ପର୍ବତକୁ ନିଜର ପୃଷ୍ଠରେ ଉତ୍ତୋଳିତ କରି ଧରିଲେ । ମନ୍ଦର ପର୍ବତକୁ ଜଳ ମଧ୍ୟରୁ ଉତ୍ଥିତ ହେବାର ଦେଖି ଦେବତା ଓ ଅସୁରମାନେ ନୂତନ ଉତ୍ସାହରେ ପୁନର୍ବାର ମନ୍ଥନ କାର୍ଯ୍ୟରେ ଲାଗି ପଡ଼ିଲେ । ବିଶାଳ ମନ୍ଦର ପର୍ବତ କଚ୍ଛପରୂପଧାରୀ ଭଗବାନଙ୍କ ପୃଷ୍ଠଦେଶରେ ପ୍ରବଳ ବେଗରେ ଘୂର୍ଣ୍ଣିତ ହେବା ସମୟରେ ଭଗବାନ ପୃଷ୍ଠ କଣ୍ଡୁୟନର ସୁଖ ଲାଭ କରୁଥିଲେ । ଭଗବାନ ନିଜର ଶକ୍ତିକୁ ଦେବତା, ଅସୁର ଓ ବାସୁକୀଙ୍କ ମଧ୍ୟରେ ସେମାନଙ୍କ ଅଜ୍ଞାତ-ସାରରେ ସଞ୍ଚାରିତ କରି ସେମାନଙ୍କର କ୍ଳାନ୍ତିକୁ ଅପନୋଦନ କରି ଉତ୍ସାହିତ କଲେ । ମନ୍ଥନ କାର୍ଯ୍ୟ ଯେତେ ଆଗେଇଲା, ବାସୁକୀର

ଘନ ଘନ ନିଶ୍ୱାସ ପ୍ରଶ୍ୱାସ ନିର୍ଗତ ଜ୍ୱାଳାମୟୀ ଅଗ୍ନି-ବିଷତୁଲ୍ୟ ଅସହ୍ୟ ଉତ୍ତପ୍ତ ପବନର ଜ୍ୱାଳାରେ ଦେବତା ଓ ଅସୁରମାନେ ଏକପ୍ରକାର ସିଝିଗଲେ । ଭଗବାନ ତାହା ଦେଖି ମେଘ ବୃଷ୍ଟି କଲେ ଓ ସୁଶୀତଳ ପବନ ପ୍ରବାହିତ କଲେ, ଫଳରେ ଦେବତା ଓ ଅସୁରମାନେ ଆଶ୍ୱସ୍ତ ହେଲେ ।

ଅତ୍ୟଧିକ ମନ୍ଥନ ଫଳରେ ସମୁଦ୍ର ମଧ୍ୟରୁ ପ୍ରଥମେ ହଳାହଳ ନାମକ ଏକ ତୀବ୍ର ବିଷ ଅତି ପ୍ରବଳ ବେଗରେ ଉତ୍ଥିତ ହେଲା ଏବଂ ତା'ର ପ୍ରକୋପରେ ତ୍ରିଭୁବନ ଭୀତତ୍ରସ୍ତ ହୋଇପଡ଼ିଲା । ବିଷ ପ୍ରଭାବରୁ ରକ୍ଷା ପାଇବା ନିମନ୍ତେ ଦେବତା ଓ ଅସୁରମାନେ ଶିବଙ୍କୁ ପ୍ରାର୍ଥନା କଲେ ।

ଏପରି ଏକ ଭୟାନକ ବିପଦ ଦର୍ଶନ କରି ଦୟାଶୀଳ ମହାଦେବ ନିଜର ପତ୍ନୀ ଭବାନୀଙ୍କୁ କହିଲେ, 'ସାଗର ମନ୍ଥନ କରିବାକୁ ଯାଇ ଦେବତା ଓ ଅସୁରମାନେ ହଳାହଳର ପ୍ରକୋପରେ ବିପଦଗ୍ରସ୍ତ ହୋଇଅଛନ୍ତି । ମୁଁ ସେମାନଙ୍କୁ ଏହି ବିପଦରୁ ଉଦ୍ଧାର ନ କଲେ ସେମାନେ ନିଶ୍ଚୟ ବିଷଜ୍ୱାଳାରେ ବିନାଶପ୍ରାପ୍ତ ହେବେ ତେଣୁ ଏହି ହଳାହଳ ନାମକ କାଳକୂଟ ବିଷକୁ ମୁଁ ପାନ କରିବି, ଏତଦ୍ ବ୍ୟତୀତ ସେମାନଙ୍କ ମଙ୍ଗଳସାଧନର ଅନ୍ୟ ପନ୍ଥା ନାହିଁ ।

ଶିବଙ୍କ କଥାରେ ଭବାନୀ ସମ୍ମତ ହେଲେ ।

ଶିବ ସମୁଦ୍ର ଉତ୍ଥିତ ସେହି କାଳକୂଟ ବିଷକୁ ପାନ କଲେ । ସେହି ବିଷର ଜ୍ୱାଳା ଏତେ ତୀବ୍ର ଥିଲା ଯେ ଶିବ ତାହା ପାନ କରିବା ମାତ୍ରେ ତାଙ୍କର କଣ୍ଠ ନୀଳବର୍ଣ୍ଣ ଧାରଣ କଲା । ସେହିଦିନଠାରୁ ଶିବ 'ନୀଳକଣ୍ଠ' ନାମରେ ପରିଚିତ ହେଲେ । ଶିବଙ୍କର ସେହି ଅସାଧାରଣ କାର୍ଯ୍ୟ ଦେଖି ସମସ୍ତେ ତାଙ୍କୁ ପ୍ରଶଂସା କଲେ । ଶିବ ସେହି ବିଷପାନ କଲାବେଳେ ସାମାନ୍ୟ ବିଷ ତାଙ୍କ ହାତରେ ଖସି ତଳେ ପଡ଼ିଯାଇଥିଲା । ତାହାକୁ ସର୍ପ, ବିଛା ଓ ଅନ୍ୟାନ୍ୟ କେତେକ ପ୍ରାଣୀ ପାନ କରିଥିବାରୁ ସେମାନେ ବିଷଧର ହୋଇଗଲେ ।

ସମସ୍ତ ବିଷକୁ ଶିବ ପାନକରି ଥିବାରୁ ଦେବତା ଓ ଅସୁରମାନେ ବିପଦମୁକ୍ତ ହୋଇ ସାଗରକୁ ପୁନର୍ବାର ନୂତନ ଉତ୍ସାହରେ ମନ୍ଥନ କରିବାକୁ ଲାଗିଲେ । ମନ୍ଥନ ଆରମ୍ଭ ସଙ୍ଗେ ସଙ୍ଗେ ସାଗର ମଧ୍ୟରୁ

ଧୀରେ ଧୀରେ ବିଭିନ୍ନ ପଦାର୍ଥ ଓ ପ୍ରାଣୀ ଗୋଟିକ ପରେ ଗୋଟିଏ ଉତ୍ପନ୍ନ ହେବାକୁ ଲାଗିଲେ । ସାଗର ମଧ୍ୟରୁ ସୁରଭି ଧେନୁ, ଉଚ୍ଚୈଶ୍ରବା ଅଶ୍ୱ, ଐରାବତ ହସ୍ତୀ, ପାରିଜାତ ନାମକ କଳ୍ପବୃକ୍ଷ, ଆଠଟି ହସ୍ତୀଦମ୍ପତି, କୌସ୍ତୁଭ ନାମକ ପଦ୍ମରାଗମଣି, ସୁନ୍ଦରୀ ଅପସରାଗଣ, ଲକ୍ଷ୍ମୀଦେବୀ ଓ ବାରୁଣୀ ନାମକ ଅନ୍ନମୟୀ ସୁରା ଉତ୍ପନ୍ନ ହୋଇଥିଲା ଓ ସୁରଭି ଧେନୁକୁ ବ୍ରହ୍ମର୍ଷିମାନେ, ଉଚ୍ଚୈଶ୍ରବା ଅଶ୍ୱକୁ ଦାନବରାଜ ବଳି, କୌସ୍ତୁଭ ମଣିକୁ ଭଗବାନ ଶ୍ରୀହରି, ଅପ୍‌ସରାମାନଙ୍କୁ ଦେବତାମାନେ, ବାରୁଣୀ ସୁରାକୁ ଅସୁରମାନେ ଗ୍ରହଣ କରିଥିଲେ । ପରମାସୁନ୍ଦରୀ ଲକ୍ଷ୍ମୀ ଦେବୀଙ୍କୁ ଲାଭ କରିବାକୁ ସମସ୍ତେ ଆଗ୍ରହୀ ହୋଇଥିଲେ ମଧ୍ୟ, ଲକ୍ଷ୍ମୀ ଦେବୀ ସମସ୍ତଙ୍କ ସମ୍ମୁଖରେ ଭଗବାନ ହରିଙ୍କୁ ସର୍ବଶ୍ରେଷ୍ଠ ମନେକରି ବରଣ କରିଥିଲେ ।

ପରିଶେଷରେ ସମୁଦ୍ର ମନ୍ଥନରୁ ଧନ୍ୱନ୍ତରୀ ନାମରେ ଏକ ଅଦ୍ଭୁତ ସୁନ୍ଦର ପୁରୁଷ ହସ୍ତରେ ଅମୃତପୂର୍ଣ୍ଣ ପାତ୍ର ଧାରଣ କରି ଆବିର୍ଭୂତ ହେଲେ । ଧନ୍ୱନ୍ତରୀଙ୍କ ହସ୍ତରେ ଅମୃତ କଳସ ଦେଖି ଅସୁରମାନେ ଅତି ସତ୍ୱର ଆସି ଧନ୍ୱନ୍ତରୀଙ୍କ ହାତରୁ ତାହା ଛଡ଼ାଇ ନେଇଗଲେ । ଅସୁରମାନେ ଅମୃତକଳସ ନେଇ ଯାଉଅଛନ୍ତି ଦେଖି ଦେବତାମାନେ ନୈରାଶ୍ୟରେ ଭାଙ୍ଗି ପଡ଼ିଲେ ଏବଂ ପ୍ରତିକାର ବିଧାନ କରିବା ନିମନ୍ତେ ଭଗବାନ ଶ୍ରୀହରିଙ୍କର ଶରଣାପନ୍ନ ହେଲେ ।

ଏଣେ ଅସୁରମାନଙ୍କ ମଧ୍ୟରେ କିଏ ପ୍ରଥମେ ଅମୃତ ସେବନ କରିବ, ସେହି ପ୍ରଶ୍ନନେଇ କଳହର ସୂତ୍ରପାତ ହେଲା । 'ମୁଁ' ଆଗ ଅମୃତପାନ କରିବି, ତୁ ପଛେ ପାନ କରିବୁ' ଆଦି ଅସୁରଙ୍କ କଥା ଓ ଚିତ୍କାରରେ ଚତୁର୍ଦ୍ଦିଗ କମ୍ପିଉଠିଲା ଅସୁରମାନଙ୍କ ମଧ୍ୟରେ ଯେଉଁମାନେ ଅପେକ୍ଷାକୃତ ଦୁର୍ବଳ ଥିଲେ, ସେମାନେ ହତାଶ ହୋଇ କହିଲେ, ସାଗର ମନ୍ଥନ କାର୍ଯ୍ୟରେ ଉଭୟ ଦେବତା ଓ ଅସୁରମାନେ ସମାନ, ଦେବତାମାନେ ମଧ୍ୟ ଅସୁରମାନଙ୍କପରି ସମାନ ଅର୍ଥ ଓ ଶ୍ରମଦାନ କରିଥିବାରୁ ଅମୃତରେ ସେମାନଙ୍କର ସମାନ ଅଧିକାର ଅଛି ଏବଂ ଦେବତମାନଙ୍କର ସେହି ଅଧିକାରକୁ ସମ୍ମାନ ଦେବା ହିଁ ଧର୍ମ ।

କିନ୍ତୁ ସେହି ଦୁର୍ବଳ ଅସହାୟ ଅସୁରମାନଙ୍କର କଥା ଶୁଣୁଛି ବା କିଏ ?

ଏହି ସମୟରେ ଭଗବାନ ଏକ ଅପୂର୍ବ ସୁନ୍ଦରୀ ନାରୀର ରୂପ ଧାରଣ କରି କଳହରତ ଅସୁରମାନଙ୍କ ଦୃଷ୍ଟି ସମ୍ମୁଖରେ ଆବିର୍ଭୂତ ହେଲେ । ସେହି ରମଣୀ ରମଣୀୟ ଅଙ୍ଗକାନ୍ତିର ବାସ୍ତବିକ୍ ପରିକଳ୍ପନା ନ ଥିଲା । ତାଙ୍କର ଉତ୍ପଳ ଶ୍ୟାମ ବର୍ଣ୍ଣ ବିଶିଷ୍ଟ ସୁଗଠିତ ଅବୟବ ନବ ଯୌବନ ସ୍ପର୍ଶରେ ଅତ୍ୟନ୍ତ ସୁନ୍ଦର ଦେଖାଯାଉଥିଲା ଏବଂ ଉନ୍ନତ ସ୍ତନ-ଯୁଗଳର ଭାରରେ ତାଙ୍କର ନମନୀୟ ଶରୀର ସାମାନ୍ୟ ଆଗକୁ ଝୁଙ୍କି ପଡ଼ୁଥିଲା । ତାଙ୍କ ଶରୀର ନିଃସରିତ ସୁମଧୁର ସୌରଭରେ ଆକୃଷ୍ଟ ହୋଇ ଭ୍ରମରମାନେ ମୃଦୁ ଗୁଞ୍ଜନ କରି ତାଙ୍କ ଚତୁର୍ଦ୍ଦିଗରେ ଉଡ଼ି ବୁଲୁଥାନ୍ତି । ସୁସ୍ପଷ୍ଟ ଉଦର, ସୁନ୍ଦର ବେଶଭୂଷା, ସଲଜ୍ଜ ହସ ତାଙ୍କର ସୌନ୍ଦର୍ଯ୍ୟକୁ ବହୁଗୁଣିତ କରିଥିଲା । ସେହି ରମଣୀ ସଲଜ୍ଜ ହାସ ପ୍ରକାଶ କରି ଅମୃତ ନେଇ କଳହ କରୁଥିବା ପ୍ରଧାନ ପ୍ରଧାନ ଦୈତ୍ୟଙ୍କ ପ୍ରତି ଈଷତ୍ କଟାକ୍ଷପାତ କରିବାରୁ, ଅସୁରମାନେ ଅମୃତ ଓ କଳହ କଥା ଭୁଲିଯାଇ ଅସହ୍ୟ କନ୍ଦର୍ପପୀଡ଼ାରେ ବଶୀଭୂତ ହୋଇପଡ଼ିଲେ ଏବଂ ରମଣୀଟିକୁ ଚତୁର୍ଦ୍ଦିଗରୁ ଘେରିଯାଇ, 'ଆହା, ଏହି ରମଣୀର ରୂପ କି ସୁନ୍ଦର; କି ଅପୂର୍ବ ଏହା ଅଙ୍ଗକାନ୍ତି, ଏହି ନବଯୌବନାର ଉପମା ନାହିଁ ବୋଲି କହିଲେ ଏବଂ ରମଣୀଟି ଯେଉଁ ଆଡ଼େ ଗଲା କାମ ପାଗଳ ଅସୁରମାନେ ତାଙ୍କ ପଛେ ପଛେ ଧାଇଁଲେ ।

ଅସୁରମାନେ ରମଣୀଙ୍କୁ ସମ୍ବୋଧନ କରି କହିଲେ, 'ହେ ପଦ୍ମପଲାକ୍ଷି, ତୁମେ କାହାର କନ୍ୟା ? ତୁମର ଆବିର୍ଭାବ ଆମର ଚିତ୍ତକୁ ଚଞ୍ଚଳ କରି ଦେଇ ଅଛି । ତୁମେ କେଉଁଠାରୁ ଆସିଛ ? ତୁମର ଏପରି ଆସିବାର ଅଭିପ୍ରାୟ କ'ଣ ? ତୁମର ଏହି ଅନୁପମ ରୂପ ଲାବଣ୍ୟ ଦେଖି ଜାଣୁଛୁ, ତୁମକୁ ଦେବ, ଦାନବ, ସିଦ୍ଧ, ଗନ୍ଧର୍ବ, ଚାରଣ, ଏପରି କି ଲୋକପାଳଗଣ ମଧ୍ୟ ସ୍ପର୍ଶ କରିବାକୁ ସମର୍ଥ ହୋଇପାରି ନାହାନ୍ତି, ସାମାନ୍ୟ ମନୁଷ୍ୟଙ୍କର କଥା କ'ଣ କହିବୁ ? ଭଗବାନ କ'ଣ ପ୍ରାଣୀ-ମାନଙ୍କର ସମସ୍ତ ଇନ୍ଦ୍ରିୟ ଓ ଚିତ୍ତର ଆନନ୍ଦ ବର୍ଦ୍ଧନ କରିବା ନିମନ୍ତେ ତୁମକୁ ଏପରି ରମଣୀୟ ରୂପରେ ସୃଷ୍ଟି କରିଅଛନ୍ତି । କୃଶୋଦରି, ଆମେ ଏହି ଦୈତ୍ୟମାନେ ଗୋଟିଏ ବସ୍ତୁଲାଭ କରିବା ନିମନ୍ତେ ପରସ୍ପର କଳହ କରୁଅଛୁ । ଆମ୍ଭେମାନେ ମହର୍ଷି କଶ୍ୟପଙ୍କର ପୁତ୍ର ଓ ସମସ୍ତେ

ଅମୃତ ଉତ୍ପନ୍ନ କରିବା ନିମନ୍ତେ କଠିନ ପରିଶ୍ରମ କରିଅଛୁ । ତେଣୁ ତୁମେ ଆମ୍ଭମାନଙ୍କ ମଧ୍ୟରେ ଏହି ଅମୃତକୁ ସମାନଭାବରେ ବଣ୍ଟନ କରି ଆମର କଳହର ସମାପ୍ତି ଘଟାଅ ।

ଦୈତ୍ୟମାନଙ୍କର କଥା ଶୁଣି ଏବଂ ସେମାନଙ୍କ ପ୍ରତି ସୁନ୍ଦର ଭାବରେ କଟାକ୍ଷପାତ କରି ରମଣୀ ରୂପୀ ଭଗବାନ କହିଲେ, ହେ କଶ୍ୟପ ନନ୍ଦନଗଣ, ମୁଁ ଗୋଟିଏ ସାମାନ୍ୟ ବାରାଙ୍ଗନା । ମୋ ଉପରେ ନ୍ୟାୟ-ବଣ୍ଟନର ଦାୟିତ୍ୱ ତୁମେ କିପରି ଦେଉଛ, ମୁଁ ବୁଝି-ପାରୁ ନାହିଁ, କାରଣ ବିବେକୀମାନେ କେବେ କୌଣସି ରମଣୀକୁ ବିଶ୍ୱାସ କରନ୍ତି ନାହିଁ, ବାନରଙ୍କ ପରି ସ୍ୱେଚ୍ଛାଚାରିଣୀ ବାରାଙ୍ଗନାର ବନ୍ଧୁତା କେବେ ସ୍ଥାୟୀ ନୁହେଁ କାରଣ ସେମାନେ ସବୁବେଳେ ନୂଆ ନୂଆ ଶିକାରର ଅନ୍ୱେଷଣ କରିଥାନ୍ତି ।

ରମଣୀର ସେହି ପରିହାସପୂର୍ଣ୍ଣ ନିଷେଧ ବାକ୍ୟ ଅସୁରମାନଙ୍କ ମନରେ ବିରାଗ ସୃଷ୍ଟି କରିବା ପରିବର୍ତ୍ତେ ରମଣୀ ପ୍ରତି ଅଧିକ ବିଶ୍ୱାସ ଓ ଅନୁରାଗ ସୃଷ୍ଟି କଲା; ଫଳରେ ଅସୁରମାନେ ଅମୃତ ପୂର୍ଣ୍ଣ ପାତ୍ରଟିକୁ ସେହି ରମଣୀର ହସ୍ତରେ ଅର୍ପଣ କରିଦେଲେ ।

ଅସୁରମାନଙ୍କଠାରୁ ସୁଧାଭାଣ୍ଡଟିକୁ ଗ୍ରହଣ କରି ମୋହିନୀ ରୂପୀ ଭଗବାନ ପ୍ରୀତିପୂର୍ଣ୍ଣଭଙ୍ଗୀରେ କହିଲେ, 'ମୋ କାର୍ଯ୍ୟ ଭଲ ହେଉ ବା ମନ୍ଦ ହେଉ, ତୁମେ ଯଦି ମୋ କଥାରେ ଆପତ୍ତି ନ କର, ତେବେ ମୁଁ ତୁମ୍ଭମାନଙ୍କ ମଧ୍ୟରେ ଅମୃତ ଭାଗ କରିବାକୁ ପ୍ରସ୍ତୁତ ଅଛି । ତୁମ୍ଭେମାନେ ମୋ ସର୍ତ୍ତରେ ରାଜି ଅଛ ତ ?'

ରମଣୀର କଥା ଶୁଣିବା ମାତ୍ରେ ଅସୁରମାନେ ବିଚାରଶୂନ୍ୟ ଭାବରେ ସମସ୍ୱରରେ କହିଲେ, 'ଆମେ ରାଜି ।'

ରମଣୀଙ୍କ ନିର୍ଦ୍ଦେଶକ୍ରମେ ଅସୁରମାନେ ଉପବାସବ୍ରତ ପାଳନ କରି ସ୍ନାନ ଓ ହୋମାଦି କାର୍ଯ୍ୟ ସମ୍ପନ୍ନ କଲେ ଏବଂ ବ୍ରାହ୍ମଣ ପ୍ରମୁଖଙ୍କୁ ଦାନାଦି ପ୍ରଦାନ କଲେ । ବ୍ରାହ୍ମଣଙ୍କ ଦ୍ୱାରା ସ୍ୱସ୍ତ୍ୟୟନ ସମାପନ କରି ରୀତି ଅନୁସାରେ ନୂତନବସ୍ତ୍ର ଓ ଅଳଙ୍କାର ଆଦି ପରିଧାନ କରି ଅସୁରମାନେ ଅମୃତ ଆହରଣ କରିବା ନିମନ୍ତେ ଆସିଲେ । ଅନୁପମା

ସୁନ୍ଦରୀ ମୋହିନୀମୂର୍ତ୍ତି ଧାରଣକାରୀ ଭଗବାନ ହସ୍ତରେ ସୁଧାଭାଣ୍ଡ ଧରି ମନ୍ଥର ଗତିରେ ପଦକ୍ଷେପ କରି କରି ଦେବତା ଓ ଅସୁରମାନଙ୍କ ଗହଣରେ ମିଳିତ ହେଲେ । ସେତେବେଳେ ମୋହିନୀରୂପୀ ଭଗବାନ ନିଜକୁ ଅତ୍ୟନ୍ତ କାମ ଉଦ୍ରେକକାରିଣୀ ରୂପରେ ସଜାଇଥାନ୍ତି ଏବଂ ତାଙ୍କର ସ୍ତନାବରଣ ସାମାନ୍ୟ ଫିଟି ପଡ଼ିଥାଏ । ତାଙ୍କର କାମୋଦ୍ଦୀପକ ରୂପ ଦେଖି ସମସ୍ତେ ବିଶେଷ କରି ଅସୁରମାନେ ମୋହଗ୍ରସ୍ତ ହୋଇ-ପଡ଼ିଲେ । ମୋହିନୀରୂପୀ ଭଗବାନ ଦେବତା ଓ ଅସୁରମାନଙ୍କୁ ସ୍ୱତନ୍ତ୍ର ପଂକ୍ତିରେ ବସାଇଲେ ଏବଂ ସୁମଧୁର କଥାରେ ଅସୁରମାନଙ୍କୁ ଭୁଲାଇ ନୃଶଂସ ଅସୁରମାନଙ୍କୁ ଅମୃତ ପ୍ରଦାନ କରିବା ଉଚିତ ହେବ ନାହିଁ ବୋଲି ସ୍ଥିର କରି, ପ୍ରଥମେ ଦେବତାମାନଙ୍କ ମଧ୍ୟରେ ସେହି ଜରା ଓ ମୃତ୍ୟୁନାଶକ ଅମୃତ ବିତରଣ କଲେ । ରମଣୀ କାଳେ ରୁଷ୍ଟ ହେବ ଭାବି ମୋହିନୀର କାର୍ଯ୍ୟରେ ଦୈତ୍ୟମାନେ କୌଣସି ଆପତ୍ତି କଲେ ନାହିଁ । ଦେବତାମାନଙ୍କୁ ଅମୃତ ବିତରଣ କରାଯାଉଥିବା ବେଳେ ରାହୁ ନାମକ ଜନୈକ ଦୈତ୍ୟ ହଠାତ୍ ଚନ୍ଦ୍ର ଓ ସୂର୍ଯ୍ୟଙ୍କ ମଧ୍ୟରେ ଧାଡ଼ିରେ ବସିପଡ଼ି ଅନ୍ୟଙ୍କୁ ଅପେକ୍ଷା ନ କରି ଅମୃତ ସେବନ କରିବାରୁ, ଚନ୍ଦ୍ର ଓ ସୂର୍ଯ୍ୟ 'ଅସୁର, ଅସୁର' ବୋଲି ଚିତ୍କାର କଲେ । ଭଗବାନ ସଙ୍ଗେ ସଙ୍ଗେ ଅମୃତପାନ କରୁଥିବା ରାହୁର ମସ୍ତକକୁ ସୁଦର୍ଶନ ଚକ୍ରଦ୍ୱାରା ଛେଦନ କଲେ, ଫଳରେ ରାହୁର ମସ୍ତକହୀନ ଦେହଟି ସୁଧାସିକ୍ତ ନ ହୋଇ-ଥିବାରୁ ମୃତ୍ୟୁବରଣ କଲା କିନ୍ତୁ ତାର ଛିନ୍ନ ମସ୍ତକଟି ସୁଧାପାନ କରିଥିବାରୁ ଅମରତ୍ୱ ପ୍ରାପ୍ତ ହେଲା । ପରେ ବ୍ରହ୍ମା ତାକୁ ଗ୍ରହର ସମ୍ମାନ ପ୍ରଦାନ କରିଥିଲେ ।

ଏହି କାରଣରୁ ରାହୁ ଶତ୍ରୁ ମନୋଭାବ ପୋଷଣ କରି ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଗ୍ରାସ କରିବା ନିମନ୍ତେ ପୂର୍ଣ୍ଣିମା ଓ ଅମାବାସ୍ୟାରେ ଉଦ୍ୟମ କରିଥାଏ ।

ଦେବତାମାନଙ୍କର ଅମୃତପାନ ଶେଷ ହେବା ପରେ ପରେ ଭଗବାନ ନିଜର ମୋହିନୀରୂପକୁ ସମ୍ବରଣ କରି ଅସୁରମାନଙ୍କ ସମ୍ମୁଖରେ ନିଜର ପୂର୍ବ ରୂପ ଧାରଣ କରି ପ୍ରକଟିତ ହେଲେ ଏବଂ ପର ମୁହୂର୍ତ୍ତରେ ଅନନ୍ତ ଶୂନ୍ୟରେ ଅନ୍ତର୍ହିତ ହୋଇଗଲେ । ଦେବତା ଓ

ଅସୁରମାନେ ସମାନ ପରିଶ୍ରମ କରି ସାଗର-ମନ୍ଥନ କରିଥିଲେ ମଧ୍ୟ ଭଗବାନଙ୍କ ପାଦପଦ୍ମରେ ଦେବତାମାନେ ସର୍ବଦା ଧ୍ୟାନ ରଖିଥିବାରୁ ସେମାନେ ଅମୃତଲାଭର ଯୋଗ୍ୟ ହୋଇଥିଲେ; କିନ୍ତୁ ଭଗବାନ ପ୍ରତି ସର୍ବଦା ବିମୁଖ ଭାବ ପୋଷଣ କରୁଥିବାରୁ ଅସୁରମାନେ ଅମୃତ ସେବନରୁ ବଞ୍ଚିତ ହୋଇଥିଲେ ।

ଅମୃତ ଲାଭରୁ ବଞ୍ଚିତ ହେବାରୁ ଅସୁରମାନେ ବିଶେଷ ଭାବରେ କ୍ରୋଧାନ୍ୱିତ ହୋଇଥିଲେ ଏବଂ ଦେବତାମାନଙ୍କ ପ୍ରତି ଭଗବାନଙ୍କର ଏପରି ପକ୍ଷପାତିତ୍ୱ ଦର୍ଶନ କରି ଅସୁରମାନେ ଦେବତାମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଦେବତାମାନେ ଅମୃତ ଭକ୍ଷଣ କରିଥିବାରୁ ଅଧିକ ତେଜ ଓ ପରାକ୍ରମ ପ୍ରକାଶ କରି ଅସୁରମାନଙ୍କୁ ପରାଭୂତ କରିବାକୁ ସମର୍ଥ ହୋଇଥିଲେ ଏବଂ ସେମାନଙ୍କର ହୃତଗୌରବ ଫେରି ପାଇଥିଲେ ।



## ଭଗବାନଙ୍କର ବାମନାବତାର

ବିଷ୍ଣୁଭକ୍ତ ପ୍ରହ୍ଲାଦଙ୍କର ପୌତ୍ର ଓ ବୀରୋଚନର ପୁତ୍ର ବଳି ଅସୁରମାନଙ୍କର ରାଜା ଥିଲେ । ସାଗର-ମନ୍ଥନ ପରେ ଦେବତା ଓ ଅସୁର-ମାନଙ୍କ ମଧ୍ୟରେ ଅନୁଷ୍ଠିତ ଯୁଦ୍ଧରେ ଦେବତାମାନଙ୍କ ହସ୍ତରେ ଦାନବ-ରାଜ ବଳି ପରାସ୍ତ ଏବଂ ନିହତ ହୋଇଥିଲେ; କିନ୍ତୁ ପରେ ଅସୁର ମାନଙ୍କର ଗୁରୁ ଶୁକ୍ରାଚାର୍ଯ୍ୟଙ୍କର ଅପୂର୍ବ ମୃତସଞ୍ଜିବନୀ ଶକ୍ତି ବଳରେ ବଳିଙ୍କୁ ପୁନର୍ଜୀବିତ କରିଦେଇଥିଲେ । ପୁନର୍ଜୀବନ ଲାଭ କରିଥିଲେ ମଧ୍ୟ ପରାଜୟଜନିତ ଗ୍ଳାନି ବଳିଙ୍କ ପକ୍ଷରେ ଦୁର୍ବିସହ ଥିଲା । ଦେବତା-ମାନଙ୍କୁ ପରାସ୍ତ କରି ସ୍ୱର୍ଗ ଜୟ କରିବାକୁ ସେ ସତତ ଚେଷ୍ଟିତ ଥିଲେ ଏବଂ ସେଥିପାଇଁ ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ସହ ଭୃଗୁବଂଶୀୟ ବ୍ରାହ୍ମଣମାନଙ୍କ ପୌରୋହିତ୍ୟରେ ସେ ମହାଭିଷେକ ବିଧି ଅନୁସାରେ ବିଶ୍ୱଜିତ୍-ଯଜ୍ଞ ଆରମ୍ଭ କଲେ । ସେହି ଯଜ୍ଞ ମଧ୍ୟରୁ ଦିବ୍ୟରଥ, ଅଶ୍ୱ, ରଥଧ୍ୱଜ, ଧନୁ ତୂଣୀର, କବଚ ଉତ୍ଥିତ ହୋଇଥିଲା । ଦାନବ ରାଜ ବଳି ସେ ରଥ ଆଦି ଲାଭ କରି ବିଶେଷ ଉତ୍ସାହିତ ହୋଇଥିଲେ ଏବଂ ଦାନବ ସୈନ୍ୟଙ୍କ ସହ ସ୍ୱର୍ଗଲୋକକୁ ଚତୁର୍ଦ୍ଦିଗରୁ ଆକ୍ରମଣ କରିଥିଲେ । ଦାନବମାନଙ୍କର ସେହି ଅତର୍କିତ ଆକ୍ରମଣ ଓ ଅଭୂତ ବିକ୍ରମରେ ଭୟଭୀତ ହୋଇ ଦେବ-ଗୁରୁ ବୃହସ୍ପତିଙ୍କ ନିକଟକୁ ଯାଇ ଦେବରାଜ ଇନ୍ଦ୍ର ଆବଶ୍ୟକୀୟ ପରାମର୍ଶ ଭିକ୍ଷା କରିଥିଲେ ।

ଦେବରାଜ କହିଲେ, ଗୁରୁଦେବ, ମୋର ପୂର୍ବଶତ୍ରୁ ଅସୁରରାଜ ବଳି ସ୍ୱର୍ଗଲୋକକୁ ଆକ୍ରମଣ କରିଅଛି । କିଛିଦିନ ତଳେ ଆମ ହସ୍ତରେ ପରାଜିତ ହେବାପରେ ଏପରି ବିକ୍ରମ ସହକାରେ ସେ ଆମକୁ ପୁନର୍ବାର ଆକ୍ରମଣ କରିବ, ଏହା ଆମେ କେବେ କଳ୍ପନା କରି ନ ଥିଲୁ । ସେ କାହା ବଳରେ ଏପରି ବଳୀୟାନ ହୋଇଅଛି ମୁଁ ଜାଣିପାରୁ ନାହିଁ । ତା'ର ଏଇ ପରାକ୍ରମ ଦେଖି ମୋର ମନେ ହେଉଅଛି, ସତେ ଯେପରି

ସେ ସମଗ୍ର ସ୍ୱର୍ଗଲୋକକୁ ତା'ର ମୁଖଦ୍ୱାରା ଗ୍ରାସ କରିବ । ତାର ତେଜ ପ୍ରଳୟକାଳୀନ ଅଗ୍ନିତୁଲ୍ୟ ଭୀଷଣ । ତାକୁ ପ୍ରତିହତ କରିବାର ସାହସ ଓ ସାମର୍ଥ୍ୟ ଆମର ଥିଲା ପରି ମୁଁ ମନେ କରୁନାହିଁ । ସେ ଏପରି ଶକ୍ତି ପାଇଲା କେଉଁଠୁ, ତାହା ହିଁ ଶୋଚନାର ବିଷୟ ।'

ଦେବଗୁରୁ ବୃହସ୍ପତି କହିଲେ, ଦେବରାଜ, ଭୃଗୁବଂଶୀୟ ବ୍ରାହ୍ମଣ-ମାନଙ୍କ ଆଶୀର୍ବାଦରେ ଦାନବରାଜ ବଳି ଏପରି ତେଜସ୍ୱୀ ହୋଇଅଛି । ବଳିର ବ୍ରହ୍ମ ତେଜକୁ ମ୍ଳାନ କରିବାର ଶକ୍ତି ଭଗବାନ ଶ୍ରୀହରିଙ୍କ ଭିନ୍ନ ଅନ୍ୟ କାହାର ନାହିଁ । ତେଣୁ ଅସୁର-ରାଜର ଆକ୍ରମଣରୁ ରକ୍ଷା ପାଇବା ନିମନ୍ତେ ଦେବତାମାନେ କୌଣସି ଗୋପନ ସ୍ଥାନରେ ଆତ୍ମଗୋପନ କରି ଶତ୍ରୁ ପରାଭବ ପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ; ଏହାଛଡ଼ା ଅନ୍ୟପନ୍ଥା ନାହିଁ, ଯେଉଁ ବ୍ରାହ୍ମଣଙ୍କ ପ୍ରସାଦରେ ବଳି ଏତେ ତେଜସ୍ୱୀ ଅଧିକ ସ୍ୱୀ ହୋଇଅଛି ସେହି ବ୍ରାହ୍ମଣଙ୍କ ଅପମାନନାରେ ତା'ର ପତନ ଘଟିବ । ତେଣୁ ଧୈର୍ଯ୍ୟଧରି ହେଲା ସମୟ ପର୍ଯ୍ୟନ୍ତ ଆପଣ ଅପେକ୍ଷା କରନ୍ତୁ ।

ବୃହସ୍ପତିଙ୍କ ପରାମର୍ଶ ଅନୁସାରେ ଦେବତାମାନେ ସ୍ୱର୍ଗପୁରୀ ତ୍ୟାଗ କରି ଅନ୍ୟତ୍ର ପଳାୟନ ଓ ଆତ୍ମଗୋପନ କରିବାରୁ ଶାରଶୂନ୍ୟ ସ୍ୱର୍ଗପୁରୀକୁ ଅବରୋଧ କରିବା ବିରୋଚନ ପୁତ୍ର ଦାନବରାଜ ବଳିଙ୍କ ପକ୍ଷରେ ଆଦୌ କଷ୍ଟକର ହେଲା ନାହିଁ । ସେ ସ୍ୱର୍ଗପୁରୀ ଅବରୋଧ କରି ତ୍ରିଭୁବନରେ ନିଜର ଆଧିପତ୍ୟ ବିସ୍ତାର କଲେ ।

ସ୍ୱର୍ଗରାଜ୍ୟ ଦାନବଙ୍କ ଦ୍ୱାରା ଅଧିକୃତ ସ୍ୱର୍ଗବାସୀ ଦେବଗଣ ସ୍ୱର୍ଗପୁରୀରୁ ଏକ ପ୍ରକାର ନିର୍ବାସିତ ହେବା ଫଳରେ ଦେବ ମାତା ଅଦିତି ହୃଦୟରେ ଦାରୁଣ ଦୁଃଖ ଲାଭ କଲେ । ପତ୍ନୀଙ୍କ ମନରେ ଅବସାଦ ଭାବ ଲକ୍ଷ୍ୟକରି କଶ୍ୟପ ତା'ର କାରଣ କ'ଣ ଜାଣିବାକୁ ଚାହିଁବାରୁ ଅଦିତି କହିଲେ, 'ପ୍ରଭୁ, ଶତ୍ରୁମାନଙ୍କଦ୍ୱାରା ମୋର ପୁତ୍ର ଦେବତାମାନେ ସ୍ୱର୍ଗ-ଚ୍ୟୁତ ହେବା ଘଟଣାରେ ମୁଁ ବିଶେଷ ଭାବରେ ଆଘାତ ପାଇଅଛି । ଦେବତାମାନେ ଯେପରି ସେମାନଙ୍କର ପୂର୍ବ ଐଶ୍ୱର୍ଯ୍ୟ ଓ ରାଜ୍ୟ ଫେରି ପାଇବେ, ତା'ର ଉପାୟ ବିଧାନ କରନ୍ତୁ । ଦେବତାମାନଙ୍କର କଲ୍ୟାଣ ସାଧିତ ନ ହେବା ପର୍ଯ୍ୟନ୍ତ ମୋ ମନରେ ଶାନ୍ତି ନାହିଁ ।

କଶ୍ୟପ କହିଲେ, 'ସତି, ତୁମେ ସମସ୍ତଙ୍କ ହୃଦୟରେ ବାସ କରୁଥିବା ଜଗଦଗୁରୁ ପରମପୁରୁଷ ଭଗବାନ ବାସୁଦେବଙ୍କୁ ଆରାଧନା କର । ଭଗବତ୍ ସେବା କେବେ ବ୍ୟର୍ଥ ହୁଏ ନାହିଁ । ଦୀନଦୟାଳୁ ଭଗବାନ ନିଶ୍ଚୟ ତୁମ ମନର କାମନା ପୂରଣ କରିବେ ।'

ଏହା କହି କପରି ଭାବରେ ଭଗବାନଙ୍କର ଆରାଧନା କରିବାକୁ ହେବ କଶ୍ୟପ ତା'ର ସୂଚନା ଦେଇ ସର୍ବଯଜ୍ଞ ବା ସର୍ବବ୍ରତର ସୂକ୍ଷ୍ମ ଅଦିତିଙ୍କୁ ପ୍ରଦାନ କଲେ । ସ୍ୱାମୀଙ୍କର ଉପଦେଶାନୁସାରେ ଅଦିତି ପରମ ଭକ୍ତି ସହକାରେ ପୂଜାରାଧନା କରି ନିଖିଳ ଜଗତର ଆତ୍ମା ଭଗବାନ ବାସୁଦେବଙ୍କୁ ସନ୍ତୁଷ୍ଟ କଲେ । ଭଗବାନ ଚତୁର୍ଭୁଜ ସ୍ୱୟଂ ଶଙ୍ଖ-ଚକ୍ର-ଗଦା-ପଦ୍ମ ଧାରଣ କରି ଅଦିତିଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ ।

ଭଗବାନଙ୍କୁ ସ୍ୱଚକ୍ଷୁରେ ସମ୍ମୁଖରେ ଦର୍ଶନ କରି ଅଦିତି ପ୍ରେମୋଚ୍ଛ୍ୱାସରେ ଭାବବିହ୍ୱଳ ହୋଇଗଲେ ଓ ତାଙ୍କ ମୁଖରୁ ପ୍ରଥମେ କୌଣସି ବାକ୍ୟ ସ୍ଫୁରିଲା ନାହିଁ । ଧୀରେ ଧୀରେ ସେହି ଅପୂର୍ବ ଭାବ ବିହ୍ୱଳତାକୁ ଅତିକ୍ରମ କରି ଅଦିତି ଭଗବାନଙ୍କ ଉଦ୍ଦେଶ୍ୟରେ ସ୍ତୁତି କରି କହିଲେ, 'ହେ ଯଜ୍ଞେଶ୍ୱର, ହେ ଯଜ୍ଞପୁରୁଷ, ହେ ଅଚ୍ୟୁତ, ହେ ଜଗଦୀଶ୍ୱର, ହେ ଭଗବାନ । ଆପଣଙ୍କ ଶ୍ରୀଚରଣକମଳରୁ ଗଙ୍ଗାଦେବୀ ବହିର୍ଗତା ହୋଇଅଛନ୍ତି । ଆପଣଙ୍କ କୀର୍ତ୍ତି ପରମ ପବିତ୍ର । ଆପଣଙ୍କର ମଙ୍ଗଳମୟୀ ନାମ ଶୁଣିବା ମାତ୍ରେ ଶରଣାଗତ ବ୍ୟକ୍ତିର ସମସ୍ତ ପାପ ଅଚିରେ ବିନଷ୍ଟ ହୋଇଥାଏ । ଆପଣ ଦୀନବନ୍ଧୁ । ପ୍ରଭୁ, ଆପଣ ଜଗତର ସୃଷ୍ଟି ସ୍ଥିତି ଲୟର କର୍ତ୍ତା । ଆପଣଙ୍କୁ ପ୍ରଣାମ କରୁଅଛି । ଆପଣ ସନ୍ତୁଷ୍ଟ ହେଲେ ଜୀବର ସମସ୍ତ କାମନା ପୂର୍ଣ୍ଣ ହୋଇଥାଏ । ଆପଣ ଅନୁଗ୍ରହ ପୂର୍ବକ ଆମର କଲ୍ୟାଣ ବିଧାନ କରନ୍ତୁ ।'

ଭଗବାନ କହିଲେ, 'ଦେବଜନନି ଅସୁରମାନଙ୍କ ହସ୍ତରେ ତୁମର ପୁତ୍ରମାନେ ନିର୍ଯ୍ୟାତିତ ହୋଇ ସ୍ୱର୍ଗପୁରୀରୁ ଯେ ବିତାଡ଼ିତ ହୋଇ ଅଛନ୍ତି, ତାହା ମୋତେ ସୁବିଦିତ । ତୁମ୍ଭର ପୁତ୍ରମାନେ ଶତ୍ରୁମାନଙ୍କୁ ପରାଜିତ କରି ସ୍ୱର୍ଗପୁରୀକୁ ଉଦ୍ଧାର କରନ୍ତୁ, ଏହା ତୁମର ଇଚ୍ଛା; କିନ୍ତୁ ବ୍ରାହ୍ମଣମାନଙ୍କ ଦ୍ୱାରା ଅସୁରରାଜ ସୁରକ୍ଷିତ ଥିବାରୁ ତାକୁ ପରାଭୂତ କରିବା ସେପରି ସମ୍ଭବ ନୁହେଁ । ବିଶେଷ କରି ଏପରି ସମୟରେ ବଳ-

ବିକ୍ରମ ପ୍ରକାଶ କରିବା ସୁଖର କାର୍ଯ୍ୟ ହେବ ନାହିଁ । ତେବେ ତୁମେ ଯେତେବେଳେ ବିଶେଷ ଭକ୍ତିରେ ବ୍ରତ ଆଚରଣ କରି ମୋତେ ସନ୍ତୁଷ୍ଟ କରିଅଛ । ତୁମର ପୂଜାର୍ଚ୍ଚନା ଯେପରି ବ୍ୟର୍ଥ ନ ହୁଏ ସେଥିପାଇଁ ତୁମ ମନସ୍କାମନାର ପରିପୂର୍ତ୍ତି ନିମନ୍ତେ ମୋତେ ନିଶ୍ଚୟ କିଛି ଉପାୟ ଅବଲମ୍ବନ କରିବାକୁ ହେବ । ସେଥିପାଇଁ ମୁଁ ତୁମର ପୁତ୍ର ରୂପରେ ଜାତ ହୋଇ ତୁମ ଦେବପୁତ୍ରମାନଙ୍କର ମଙ୍ଗଳ ବିଧାନ କରିବି । ହେ ଭଦ୍ରେ, ଏହି କଥାକୁ ଗୋପନ ରଖିଲେ ତୁମର ପୂଜା ତୁମ ପାଇଁ କଲ୍ୟାଣପ୍ରଦ ହେବ ।'

ଭଗବାନ ଏହା କହି ଅନ୍ତର୍ହିତ ହୋଇଗଲେ ।

ଏହି ଘଟଣାର କିଛିଦିନ ପରେ ଭାଦ୍ରମାସ, ଶୁକ୍ଳପକ୍ଷ, ଦ୍ୱାଦଶୀ ତିଥି, ଶ୍ରବଣା ନକ୍ଷତ୍ରରେ ଚନ୍ଦ୍ର ଅବସ୍ଥାନ କାଳରେ, ଅଭିଜିତ୍ ନକ୍ଷତ୍ରରେ ଅଦିତିଙ୍କ ଗର୍ଭରୁ ଭଗବାନ ପ୍ରକଟିତ ହେଲେ । ତାଙ୍କର ଶରୀର ଉଜ୍ଜ୍ୱଳ ଶ୍ୟାମବର୍ଣ୍ଣ ବିଶିଷ୍ଟ ଥିଲା ଏବଂ ବକ୍ଷସ୍ଥଳ ଶ୍ରୀବତ୍ସ ଚିହ୍ନଦ୍ୱାରା ଶୋଭା ପାଉ-ଥିଲା । ତାଙ୍କର ଶରୀରଟି ବାମନାକୃତି ବିଶିଷ୍ଟ ଥିଲା । ଭଗବାନଙ୍କର ସେହି ଶୁଭ ଆବିର୍ଭାବ ଦର୍ଶନ କରି ଦେବତାମାନଙ୍କର ତଥା କଶ୍ୟପ ଦମ୍ପତିଙ୍କର ଆନନ୍ଦର ସୀମା ରହିଲା ନାହିଁ ।

ଧୀରେ ଧୀରେ ବାମନରୂପୀ ଭଗବାନ ଚନ୍ଦ୍ରକଳା ସଦୃଶ ବଢ଼ିବାକୁ ଲାଗିଲେ ।

ଦାନବରାଜ ବଳି ଭୃଗୁବଂଶୀୟ ବ୍ରାହ୍ମଣମାନଙ୍କ ପୌରୋହିତ୍ୟରେ ଅଶ୍ୱମେଧ ଯଜ୍ଞ ସମ୍ପୂର୍ଣ୍ଣ ଅନୁଷ୍ଠାନ କରି ବିଶେଷ ଖ୍ୟାତି ଅର୍ଜନ କରିଥାନ୍ତି । ବାମନ ଦେବ ତାହା ଶୁଣିବାକୁ ପାଇ ଦାନବରାଜ ବଳିଙ୍କ ଯଜ୍ଞସ୍ଥାନରେ ଯାଇ ଉପସ୍ଥିତ ହେଲେ ।

ଯଜ୍ଞସ୍ଥାନରେ ଉପସ୍ଥିତ ଥିବା ଅନ୍ୟ ବ୍ରାହ୍ମଣମାନେ ଛତ୍ର, ଦଣ୍ଡ, କମଣ୍ଡଳୁ ଓ ଉତ୍ତରୀୟଧାରୀ ତେଜସ୍ୱୀ ବାମନ ଦେବଙ୍କୁ ଦେଖି ତାଙ୍କ ତେଜରେ ଏକାବେଳକେ ଅଭିଭୂତ ହୋଇପଡ଼ିଲେ । ବାମନ ଦେବଙ୍କୁ ସ୍ୱାଗତ କରି ଆସନ ଆଦି ପ୍ରଦତ୍ତ ହେଲା । ଦାନବରାଜ ବଳି ମଧ୍ୟ ବାମନ ଦେବଙ୍କୁ ଯଜ୍ଞସ୍ଥାନରେ ଦର୍ଶନ କରି ତାଙ୍କୁ ଯଥାବିଧି ଅଭିବାଦନ କଲେ

ଏବଂ ତାଙ୍କର ପାଦଯୁଗଳକୁ ଧୌତ କରି ପାଦଧୌତ ଉଦକକୁ ନିଜର ଶିରରେ ଧାରଣ କରି ତାଙ୍କୁ ଅଭ୍ୟର୍ଥନା କଲେ ।

ଦାନବରାଜ ବଳି କହିଲେ, 'ହେ ବିପ୍ରନନ୍ଦନ, ମୋର ପ୍ରଣାମ ଗ୍ରହଣ କରନ୍ତୁ । ଆପଣଙ୍କର ଏଠାକୁ ଆଗମନ କରିବାରେ କୌଣସି ଅସୁବିଧା ହୋଇଥିଲେ ମୋର ଦୋଷ ମାର୍ଜନା କରିବେ । କ'ଣ କଲେ ଆପଣଙ୍କର ସନ୍ତୋଷ ବିଧାନ କରିପାରିବି, ଦୟାକରି ସେ ସମ୍ପର୍କରେ ମୋତେ ଆଦେଶ ପ୍ରଦାନ କରନ୍ତୁ । ସମସ୍ତ ବ୍ରହ୍ମର୍ଷିଙ୍କ ତେଜକୁ ଏକତ୍ରିତ କଲେ ଯେଉଁ ଅଲୌକିକ ତେଜ ସୃଷ୍ଟି ହେବ ଆପଣ ତା'ଠାରୁ ଅଧିକ ତେଜସ୍ୱୀ । ମୋର ପରମସୌଭାଗ୍ୟ ଯେ ଆପଣଙ୍କର ପାଦ ଏଠାରେ ପଡ଼ିଛି । ଆପଣଙ୍କ ଆଗମନରେ ନିଶ୍ଚୟ ମୋର ପିତୃ-ପୁରୁଷଗଣ ଆହ୍ଲାଦିତ ହେଉଥିବେ, ମୋର ବଂଶ ଆଜି ଧନ୍ୟ ହୋଇଅଛି । ମୋର ଯଜ୍ଞ ଆଜି ସାର୍ଥକ ହୋଇଅଛି । ଆପଣଙ୍କ ପଦସେବା କରିବାର ସୌଭାଗ୍ୟ ଲାଭକରି ମୁଁ ସକଳ ପାପରୁ ମୁକ୍ତ ହୋଇଅଛି ବୋଲି ନିଜକୁ ମନେ କରୁଅଛି । ଆପଣ ଯଦି ମୋ ନିକଟରେ ପ୍ରାର୍ଥୀ ହୋଇଥାନ୍ତି, ତେବେ ଆପଣଙ୍କର ଅଭିଳାଷ ଅନୁଗ୍ରହ ପୂର୍ବକ ପ୍ରକାଶ କରନ୍ତୁ । ଗୋ, ସୁବର୍ଣ୍ଣ, ଗୃହ, ଅନ୍ନ, ପାନୀୟ, କନ୍ୟା, ରଥ ଗଜ ଆଦି ଯାହା ଚାହାନ୍ତି, ପ୍ରକାଶ କଲେ ମୁଁ ତାହା ଅଚିରେ ଆପଣଙ୍କୁ ପ୍ରଦାନ କରିବି ।'

ବଳିଙ୍କର କଥା ଶୁଣି ବାମନ ଦେବ କହିଲେ, 'ଦାନବରାଜ, ଭୃଗୁବଂଶୀୟ ସୁଯୋଗ୍ୟ ବ୍ରାହ୍ମଣମାନେ ଯାହାଙ୍କର ପରାମର୍ଶଦାତା ଓ ହିତାକାଙ୍କ୍ଷୀ ଏବଂ କୁଳବୃଦ୍ଧ ପ୍ରଶାନ୍ତ ଚିତ୍ତ ଧର୍ମାତ୍ମା ପ୍ରହ୍ଲାଦ ଯେଉଁ ବଂଶକୁ ଅଲଂକୃତ କରିଥିଲେ, ସେହି ବଂଶର ଉପଯୁକ୍ତ ଦାୟାଦଭାବରେ ଆପଣ ସତ୍ୟ, ପ୍ରିୟ, ଧର୍ମଯୁକ୍ତ ବଂଶାନୁରୂପ ଯଶସ୍କର କଥା ପ୍ରକାଶ କରିଅଛନ୍ତି । ବ୍ରାହ୍ମଣମାନଙ୍କୁ ଦାନ କରିବାରେ କୁଣ୍ଠିତ ସ୍ୱଭାବ ସମ୍ପନ୍ନ କୌଣସି ବ୍ୟକ୍ତି ଆପଣଙ୍କ ବଂଶରେ ଜନ୍ମ ହୋଇଥିବାର କେବେ ଦୃଷ୍ଟି-ଗୋଚର ହୁଏ ନାହିଁ । ଆପଣଙ୍କ ବଂଶରେ ଯଶସ୍ୱୀ ପ୍ରହ୍ଲାଦ, ଅପ୍ରତିଦ୍ୱନ୍ଦ୍ୱୀ ବୀର ହିରଣ୍ୟାକ୍ଷ ଓ ହିରଣ୍ୟକଶିପୁ, ବ୍ରାହ୍ମଣ ବେଶଧାରୀ ନିଜର ଶତ୍ରୁ ଦେବତାଙ୍କୁ ଅକୁଣ୍ଠିତ ଚିତ୍ତରେ ନିଜର ଆୟୁଦାନକାରୀ ତୁମର ପିତା

ପ୍ରହ୍ଲାଦପୁତ୍ର ବୀରୋଚନ ପ୍ରମୁଖ ଯେଉଁ ବଂଶକୁ ଧନ୍ୟ କରିଅଛନ୍ତି, ସେହି ବଂଶରେ ଆପଣଙ୍କର ଜନ୍ମ । ହେ ଦୈତ୍ୟଶିରୋମଣି ! ଆପଣଙ୍କ ପରି ଯଶସ୍ୱୀ, ବଦାନ୍ୟ, ତ୍ରିଭୁବନର ଅଧୀଶ୍ୱର, ଦାତାଙ୍କଠାରୁ ମୁଁ କିଞ୍ଚିତ ମାତ୍ର ଭୂମି ପ୍ରାର୍ଥନା କରୁଅଛି । ମୋ ପାଦପରିମିତ ତ୍ରିପାଦ ଭୂମି ଲାଭ କଲେ ମୁଁ ସନ୍ତୁଷ୍ଟ ହେବି । ଏହାଛଡ଼ା ଅଧିକ କିଛି ମୁଁ ପ୍ରାର୍ଥନା କରୁ ନାହିଁ । ପ୍ରୟୋଜନ ଅପେକ୍ଷା ଅଧିକ ଦାନ ଗ୍ରହଣ କଲେ ଜ୍ଞାନୀମାନେ ପାପଭାଗୀ ହୋଇଥାନ୍ତି ।’

ବାମନ ଦେବଙ୍କର ସେହି ଅଦ୍ଭୁତ ପ୍ରାର୍ଥନା ଶ୍ରବଣ କରି ଦାନବରାଜ ବଳି କହିଲେ, ‘ହେ ବ୍ରାହ୍ମଣନନ୍ଦନ, ଆପଣଙ୍କର କଥା ବୃଦ୍ଧଜନୋଚିତ ବୋଲି ମନେ ହେଉଥିଲେ ମଧ୍ୟ ଆପଣ ଅଳ୍ପ ବୟସର ଅପରିପକ୍ୱ ବାଳକ ହୋଇଥିବାରୁ ନିଜର ସ୍ୱାର୍ଥ ବିଷୟରେ ଅତ୍ୟନ୍ତ ଅନଭିଜ୍ଞ । ମୋ ପରି ସବୁ କିଛି ଦାନ କରିବାରେ ସମର୍ଥ ତ୍ରିଭୁବନର ଏକଛତ୍ରପତି ସମ୍ରାଟଙ୍କଠାରୁ ଯେଉଁ ବ୍ୟକ୍ତି ତ୍ରିପାଦ ଭୂମି ମାତ୍ର ପ୍ରାର୍ଥନା କରେ ସେ ଯେ ବୁଦ୍ଧିମାନ ନୁହେଁ, ଏଥିରେ ସନ୍ଦେହ ନାହିଁ । ହେ ବ୍ରହ୍ମବଟୁ, ଯେଉଁ ବ୍ୟକ୍ତି ମୋ ନିକଟକୁ ଥରେ ମାତ୍ର ଆସିଅଛି, ତାର ସମସ୍ତ କାମନା ବାସନାକୁ ଏପରି ପର୍ଯ୍ୟାପ୍ତ ଭାବରେ ମୁଁ ପୂରଣ କରିଥାଏ ଯେ ଜୀବନକାଳ ମଧ୍ୟରେ ସେହି ବ୍ୟକ୍ତିକୁ ଆଉ କୌଣସି ସ୍ଥାନରେ କିଛି ପ୍ରାର୍ଥନା କରିବାର ପ୍ରୟୋଜନ ସେ ଅନୁଭବ କରେ ନାହିଁ । ତେଣୁ ପର୍ଯ୍ୟାପ୍ତ ଜୀବିକାର୍ଜନ ନିମନ୍ତେ ତ୍ରିପାଦ ଭୂମି ପରିବର୍ତ୍ତେ ଆପଣ ଯଥେଷ୍ଟ ଭୂମି ପ୍ରାର୍ଥନା କରନ୍ତୁ, ମୁଁ ତାହା ଅଚିରେ ଆପଣଙ୍କୁ ପ୍ରଦାନ କରିବି ।’

ବଳିଙ୍କ କଥା ଶୁଣି ବାମନ ଦେବ କହିଲେ, ‘ମହାରାଜ, ଅତ୍ୟଧିକ କାମନା ମନକୁ ଅତୃପ୍ତ କରିଥାଏ । ତ୍ରିଭୁବନରେ ଯେତେ ପ୍ରୀତିଦାୟକ ବିଷୟମାନ ଅଛି, ସେ ସବୁକୁ ଯଦି ଏକତ୍ର କରି ଜଣେ ଇନ୍ଦ୍ରିୟାସକ୍ତ ବ୍ୟକ୍ତିକୁ ପ୍ରଦାନ କରାଯାଏ, ସେସବୁ ମଧ୍ୟ ତା’ର କାମନାକୁ ସନ୍ତୁଷ୍ଟ କରିବାକୁ ସମର୍ଥ ହେବେ ନାହିଁ । ଅଧିକ କାମନା ହିଁ ଅଧିକ ଶିର ଅସମର୍ଥର କାରଣ । ତ୍ରିପାଦ ପରିମିତ ଭୂମିରେ ଯାହାର ମନ ସନ୍ତୁଷ୍ଟ ହୁଏ ନାହିଁ, ତାକୁ ଗୋଟିଏ ରାଜ୍ୟ କାହିଁକି ସମସ୍ତ ପୃଥିବୀ ଦାନ କଲେ

ମଧ୍ୟ ତା'ର ଲୋଭ ଶାନ୍ତ ହେବ ନାହିଁ । ସମସ୍ତ ପୃଥିବୀର ଅଧିପତି ହୋଇ ମଧ୍ୟ ପୃଥୁ ଓ ଗୟ ପ୍ରମୁଖ ରାଜାମାନେ ନିଜର ରାଜ୍ୟଭୋଗ ତୃଷ୍ଣାକୁ ପ୍ରଶମିତ କରିପାରି ନଥିଲେ । ଅଳ୍ପ ଯାହାକିଛି ମିଳେ ତହିଁରେ ମନକୁ ସନ୍ତୁଷ୍ଟ ରଖିବା ବ୍ୟକ୍ତି ହିଁ ବାସ୍ତବିକ ସୁଖୀ । ଧନସମ୍ପତ୍ତି ପ୍ରତି ଅଯଥା ଲୋଭ ଓ କାମନା ସମ୍ଭୋଗ ହିଁ ସମସ୍ତ ସାଂସାରିକ ଅସନ୍ତୋଷର ମୂଳ । ଯେଉଁ ବ୍ୟକ୍ତିର ମନ ଅଳ୍ପରେ ସନ୍ତୁଷ୍ଟ ହୋଇପାରେ, ସେ କେବଳ ପରମାନନ୍ଦ ଲାଭ କରିବାର ଯୋଗ୍ୟ ହୋଇଥାଏ, ତାହାନୁହେଁ ସେ ଅପୂର୍ବ ବ୍ରହ୍ମତେଜର ମଧ୍ୟ ଅଧିକାରୀ ହୋଇଥାଏ । ଜଳଦ୍ୱାରା ଯେପରି ଅଗ୍ନି ନିର୍ବାପିତ ହୁଏ ସେହିପରି ବ୍ରହ୍ମତେଜ ସକଳ ଅସନ୍ତୋଷକୁ ଚିର-କାଳ ପାଇଁ ପ୍ରଶମିତ କରିଥାଏ; ତେଣୁ ଆପଣ ଯଶସ୍ୱୀ ଦାତା ଭାବରେ ମୁକ୍ତହସ୍ତରେ ମୋତେ ବହୁ କିଛି ଦାନ କରିବାକୁ ପ୍ରସ୍ତୁତ ଥିଲେ ମଧ୍ୟ ମୁଁ ମୋର ପ୍ରାର୍ଥନାକୁ ମାତ୍ର ତିନିପାଦ ପରିମିତ ଭୂମିରେ ସୀମିତ କରୁ-ଅଛି । ତଦ୍ୱାରା ମୋର ପ୍ରୟୋଜନ ପ୍ରଶମିତ ହେବ । ଆବଶ୍ୟକ ଅନୁସାରେ ସମ୍ପତ୍ତି ଲାଭ ହିଁ ସୁଖ ଓ ସନ୍ତୋଷର କାରଣ ହୋଇଥାଏ ।'

ଦାନବରାଜ ବଳି କହିଲେ, 'ବେଶ୍, ଆପଣଙ୍କ ଇଚ୍ଛାନୁସାରେ ତିନିପାଦ ଭୂମି ହିଁ ମୁଁ ଦାନ କରୁଅଛି, ଆପଣ ତାହା ଗ୍ରହଣ କରନ୍ତୁ ।' ଏହା କହି ଦାନ କରିବା ନିମନ୍ତେ ଉତ୍ସର୍ଗ ଉପଯୋଗୀ ଜଳ ଦାନ କରିବା ନିମନ୍ତେ ଜଳକୁମ୍ଭ ବଳି ଗ୍ରହଣ କଲେ । କିନ୍ତୁ ବାମନରୂପୀ ଭଗବାନଙ୍କର ଅଭିପ୍ରାୟ ବୁଝିବାକୁ ବଳି ସମର୍ଥ ନ ହେଲେ ମଧ୍ୟ ଦୈତ୍ୟ-ଗୁରୁ ଶୁକ୍ରାଚାର୍ଯ୍ୟ ତାହା ଉତ୍ତମରୂପେ ଅବଗତ ହୋଇ ଦାନବରାଜଙ୍କୁ କହିଲେ, ଦାନବରାଜ, 'ଏହି ବାମନରୂପୀ ବ୍ରାହ୍ମଣ ସାକ୍ଷାତ ଭଗବାନ ବିଷ୍ଣୁ । ଦେବତାମାନଙ୍କର ମଙ୍ଗଳ ବିଧାନ କରିବା ନିମନ୍ତେ ସେ କଶ୍ୟପଙ୍କର ଔରସରେ ଅଦିତିଙ୍କ ଗର୍ଭରୁ ବାମନ ରୂପରେ ଜନ୍ମ ହୋଇ ଅଛନ୍ତି । ତାଙ୍କ ଭିକ୍ଷାର ଅନ୍ତର୍ନିହିତ ଅଭିପ୍ରାୟ ଓ ତାର ହିତାହିତ କିଛି ନ ବୁଝି, ଦାନ କରିବାକୁ ପ୍ରତିଶ୍ରୁତି ପ୍ରଦାନ କରିବା ଆପଣଙ୍କ ପକ୍ଷରେ ଉଚିତ ହୋଇ ନାହିଁ । ଏପରି ଦାନ କଲେ ଆପଣଙ୍କର ତଥା ଦାନବମାନଙ୍କର ସମୂହ ଅକଲ୍ୟାଣ ସାଧିତ ହେବ । ଏହି ବ୍ରହ୍ମଚାରୀ ରୂପଧାରୀ ଭଗବାନ ବିଷ୍ଣୁ ଏହି ଅଦ୍ଭୁତ ଦାନ ଛଳରେ ଆପଣଙ୍କର ସମସ୍ତ ରାଜ୍ୟ, ଐଶ୍ୱର୍ଯ୍ୟ, ତେଜ, ଯଶ, ଏବଂ ଶାସ୍ତ୍ରଜ୍ଞାନକୁ ନିଜର ମାୟା

ବଳରେ ହରଣ କରି ଦେବରାଜ ଇନ୍ଦ୍ରଙ୍କୁ ପ୍ରଦାନ କରିବେ । ଭଗବାନ ବିଷ୍ଣୁକାୟ । ସେ ନିଜର ତିବାର ପଦ ବିନ୍ୟାସ ଦ୍ୱାରା ଏହି ତ୍ରିଭୁବନକୁ ଅଧିକାର କରିନେବେ । ଆପଣଙ୍କଠାରେ ଉପଯୁକ୍ତ ବସ୍ତୁରଜ୍ଞାନର ଅଭାବ ପରିଲକ୍ଷିତ ହେଉଅଛି । ଆପଣ ଯଦି ଭଗବାନ ବିଷ୍ଣୁଙ୍କୁ ସମସ୍ତ ରାଜ୍ୟ ଦାନ କରିବେ, ତେବେ ଆପଣ ରହିବେ କେଉଁଠି ଓ ଜୀବନଧାରଣ କରିବେ କପରି ? ଏହି ବାମନ ରୂପଧାରୀ ଭଗବାନ ବିଷ୍ଣୁ ଏକ ପାଦରେ ପୃଥିବୀକୁ, ଦ୍ୱିତୀୟ ପାଦରେ ସ୍ୱର୍ଗଲୋକଙ୍କୁ ଅଧିକାର କରି-ନେବେ ଏବଂ ତାଙ୍କର ତୃତୀୟ ପାଦ ପାଇଁ ସ୍ଥାନାଭାବ ହେବ; ଫଳରେ ତ୍ରିପାଦ ପରିମିତ ଭୂମି ପ୍ରଦାନ କରିବାକୁ ଆପଣ ଯେଉଁ ପ୍ରତିଶ୍ରୁତି ଦେଇ ଅଛନ୍ତି, ତଦନୁସାରେ ଦାନ କରିବାକୁ ଅସମର୍ଥ ହୋଇ ଅନନ୍ତ ନରକ ଭୋଗ କରିବେ । ନିଜର ଦାନ କରିବାର ଇଚ୍ଛାକୁ ନିଜର ଶକ୍ତିସାମର୍ଥ୍ୟ ମଧ୍ୟରେ ସୀମିତ ରଖିବା ହିଁ ବିଜ୍ଞଜନୋଚିତ କାର୍ଯ୍ୟ । ପ୍ରତ୍ୟେକ ବ୍ୟକ୍ତି ନିଜର ଧନ ସମ୍ପତ୍ତିକୁ ଧର୍ମ ଅର୍ଜନ, ଯଶ ଲାଭ, ଅର୍ଥବୃଦ୍ଧି, ସୁଖ ଭୋଗ ଏବଂ ସ୍ୱଜନଙ୍କ ନିମିତ୍ତ ଏହିପରି ପାଞ୍ଚ ଭାଗରେ ବିଭକ୍ତ କରିବା ଉଚିତ ଏବଂ ତଦ୍ଦ୍ୱାରା ଇହଲୋକ ତଥା ପରଲୋକରେ ସୁଖ ମିଳିଥାଏ । ଋକ୍‌ବେଦରେ କୁହାଯାଇଅଛି ଯେ କାହାକୁ କିଛି ଦାନ କରିବାକୁ ସମ୍ମତ ହେବା ସତ୍ୟ ଏବଂ ସ୍ୱୀକାର କରି ପରେ ଅସ୍ୱୀକାର କରିବା ମିଥ୍ୟା । ଶ୍ରୁତି ମଧ୍ୟ କହୁଛି ଯେ ସେହି ସତ୍ୟ ହିଁ ଶରୀର ରୂପକ ବୃକ୍ଷର ପୁଷ୍ପଫଳ । ଦେହରୂପକ ବୃକ୍ଷ ଯଦି ବଞ୍ଚି ନ ରହେ, ସତ୍ୟରୂପକ ପୁଷ୍ପଫଳର ଉତ୍ପତ୍ତି ବା ସ୍ଥିତି ସମ୍ଭବ ନୁହେଁ । ତେଣୁ ସତ୍ୟ ରକ୍ଷା କରିବାକୁ ଯାଇ ନିଜର ଜୀବନପାତ କରିବା ବୁଦ୍ଧିମାନର କାର୍ଯ୍ୟ ନୁହେଁ, ବରଂ ଜୀବନରକ୍ଷାପାଇଁ ସାମାନ୍ୟ ଅସତ୍ୟର ଆଶ୍ରୟ ନେବା ସ୍ଥଳବିଶେଷରେ ଶ୍ରେୟସ୍କର ମନେହୁଏ । ସ୍ତ୍ରୀ ଲୋକଙ୍କୁ ପ୍ରସନ୍ନ କରିବା ପାଇଁ, ହାସ ପରିହାସ କାଳରେ, ବିବାହ ସମ୍ବନ୍ଧରେ, ଜୀବିକା ନିର୍ବାହ ନିମନ୍ତେ, ପ୍ରାଣସଙ୍କଟ ସମୟରେ, ଗୋ, ବ୍ରାହ୍ମଣଙ୍କ ମଙ୍ଗଳ ବିଧାନ ନିମନ୍ତେ କିମ୍ବା ଆସନ୍ନମୃତ୍ୟୁରୁ କାହାକୁ ରକ୍ଷା କରିବା ଉଦ୍ଦେଶ୍ୟରେ ମିଥ୍ୟାର ଆଶ୍ରୟ ନେବା ଦୂଷଣୀୟ ନୁହେଁ । ତେଣୁ ଆପଣ ମୋର ପରାମର୍ଶକୁ ବିଚାରକୁ ନେଇ କାର୍ଯ୍ୟ କରନ୍ତୁ, ତହିଁରେ ଆପଣଙ୍କର ମଙ୍ଗଳ ହେବ ।’

ଦାନବଗୁରୁ ଶୁକ୍ରାଚାର୍ଯ୍ୟଙ୍କଠାରୁ ଏପରି କଥା ଶୁଣି ଦାନବରାଜ ବଳି କିଛି ସମୟ ପାଇଁ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ପରେ ଶୁକ୍ରାଚାର୍ଯ୍ୟଙ୍କୁ କହିଲେ, 'ଗୁରୁଦେବ ! ଆପଣ ସତ୍ୟ କଥା ପ୍ରକାଶ କରିଅଛନ୍ତି । ଯେଉଁ କାର୍ଯ୍ୟଦ୍ୱାରା ଅର୍ଥ, କାମ, ଯଶ ଜୀବିକାରେ କୌଣସି ବାଧା ଉପୁଜେ ନାହିଁ ସେଥିପ୍ରତି ଆଗ୍ରହୀ ହେବା ଗୃହସ୍ଥର ଧର୍ମ । ଯଶସ୍ୱୀ ପ୍ରହ୍ଲାଦଙ୍କ ବଂଶରେ ଜନ୍ମହୋଇ ଦାନ ଦେବାକୁ ପ୍ରତିଶ୍ରୁତି ଦେବାପରେ ଧନ ଲୋଭରେ କିପରି ନିଜର ପ୍ରତିଜ୍ଞାକୁ ଭଙ୍ଗକରି ବ୍ରାହ୍ମଣଙ୍କୁ ପ୍ରତ୍ୟାଖ୍ୟାନ କରିବି ? ସର୍ବଂସହା ପୃଥିବୀ କହେ, ଅସତ୍ୟ ହିଁ ପରମ ଅଧର୍ମ, ମୁଁ ସବୁ ସହ୍ୟ କରିପାରିବି; କିନ୍ତୁ ମିଥ୍ୟାବାଦୀକୁ ସହ୍ୟ କରିପାରିବି ନାହିଁ, ତେଣୁ ମୋର ବରଂ ସବୁ କ୍ଷତି ଘଟୁ, ରାଜ୍ୟ ଯାଉ, ମୃତ୍ୟୁ ଆସୁ, ମୁଁ ସବୁ ମଥାପାତି ସହିନେବି; କିନ୍ତୁ ବ୍ରାହ୍ମଣଙ୍କୁ ବରଣ କରି ବଞ୍ଚିତ କରିପାରିବି ନାହିଁ । ଏହି ଧନ ସମ୍ପତ୍ତି ଯାହାକୁ ମୁଁ ଏତେ ପ୍ରିୟ ବୋଲି ଭାବୁଛି, ଦିନେ ନା ଦିନେ ମୋର ମୃତ୍ୟୁ ହେଲେ, ଆପଣା ଛାଏଁ ମୋ ପାଖରୁ ସେ ସବୁ ଦୂରେଇ ଯିବ; ତେଣୁ ଏହି ଜୀବଦ୍ଦଶାରେ ସେସବୁକୁ ତ୍ୟାଗ କରି ଯଶ ଅର୍ଜନ କରିବି ନାହିଁ କାହିଁକି ? ଦାନ ଦେବାରେ ବ୍ରାହ୍ମଣ ଅସନ୍ତୁଷ୍ଟ ହେଲେ ଦାନ ବ୍ୟର୍ଥ ହୁଏ । ଦଧୀଚି ଓ ଶିବି ପ୍ରମୁଖ ପ୍ରାଣ ପର୍ଯ୍ୟନ୍ତ ଦାନକରି ପ୍ରାଣୀମାନଙ୍କର ମଙ୍ଗଳ ବିଧାନ କରିବାର ସୁନ୍ଦର ଦୃଷ୍ଟାନ୍ତ ରଖିଯାଇଥିବା ବେଳେ ସାମାନ୍ୟ ଭୂମି ଦାନ କରିବାରେ ମୋର କୁଣ୍ଠା କରିବା ଅତ୍ୟନ୍ତ ନିନ୍ଦାର କାର୍ଯ୍ୟ ହେବ । ଯୁଦ୍ଧରେ ବୀରତ୍ୱର ସହିତ ପ୍ରାଣ ବିସର୍ଜନ କରିଥିବା ବ୍ୟକ୍ତିଙ୍କ ସଂଖ୍ୟା ବହୁତ; କିନ୍ତୁ ସତ୍‌ପାତ୍ରରେ ଶ୍ରଦ୍ଧାର ସହିତ ଦାନ କରିଥିବା ବ୍ୟକ୍ତି ଅତ୍ୟନ୍ତ ବିରଳ । ଦାନ କରିବାକୁ ପ୍ରତିଜ୍ଞାକରି ବରଂ ପ୍ରାଣପାତ କରିବା ଶ୍ରେୟସ୍କର; କିନ୍ତୁ ପ୍ରତିଶ୍ରୁତି ପାଳନରେ ପରାଙ୍ମୁଖ ହେବା ଆଦୌ ସ୍ପୃହଣୀୟ ନୁହେଁ । ମୋ ଉପରକୁ ଯେତେ ବିପଦ ଆସୁ ପଛକେ ମୁଁ ଏହି ବ୍ରହ୍ମଚାରୀଙ୍କୁ ତାଙ୍କ ପ୍ରାର୍ଥିତ ଭିକ୍ଷା ନିଶ୍ଚୟ ପ୍ରଦାନ କରିବି । ସେ ଭଗବାନ ହୋଇଥାନ୍ତୁ ବା ମୋର ଶତ୍ରୁ ହୋଇଥାନ୍ତୁ, ମୁଁ ନିରପରାଧ, ତଥାପି ଯଦି ମୋର ସରଳ ପ୍ରତିଶ୍ରୁତିର ସୁଯୋଗ ନେଇ ସେ ଅଧର୍ମ ଆଚରଣ କରି ମୋତେ ସଂହାର କରନ୍ତୁ, ମୁଁ ଏହି ବାମନରୂପୀ ବ୍ରାହ୍ମଣଙ୍କୁ ଭୟ କରୁ ନାହିଁ କି ତାଙ୍କପ୍ରତି ଶତ୍ରୁତା ଆଚରଣ କରିବି ନାହିଁ ।'

ଶୁକ୍ରାଚାର୍ଯ୍ୟଙ୍କର ସମୟୋପଯୋଗୀ ସତ୍ ପରାମର୍ଶକୁ ବଳି ପ୍ରତ୍ୟାଖ୍ୟାନ କରିବାରୁ ଶୁକ୍ରାଚାର୍ଯ୍ୟ କ୍ଷୁବ୍ଧ ହୋଇ ବଳିଙ୍କୁ କହିଲେ, 'ନିଜର ମୂର୍ଖତା ଉପଲବ୍ଧି ନ କରି ନିଜକୁ ପଣ୍ଡିତ ବୋଲି ଜ୍ଞାନ କରି ତୁ ଆନନ୍ଦ ଲାଭ କରୁଅଛୁ । ତୋର ଗର୍ବ ବିଶେଷ ବଢ଼ି ଯାଇଅଛି, ସେଥିଯୋଗୁଁ ମୋତେ ଅବମାନନା କରିବାକୁ ତୁ କୁଣ୍ଠାବୋଧ କରୁ ନାହୁଁ । ବେଶ୍, ଏହି ବ୍ରାହ୍ମଣ ଅବମାନନା ଦୋଷର ଶାସ୍ତି ସ୍ୱରୂପ ତୁ ଅଚିରେ ଶ୍ରୀଭ୍ରଷ୍ଟ ହେବୁ ।'

ଶୁକ୍ରାଚାର୍ଯ୍ୟଙ୍କ ଦ୍ୱାରା ଅଭିଶପ୍ତ ହୋଇ ମଧ୍ୟ ବଳି ନିଜର ପ୍ରତିଶ୍ରୁତିରୁ ଟଳିଲେ ନାହିଁ । ସେ ଜଳସ୍ପର୍ଶ କରି ବାମନ ଦେବଙ୍କୁ ତାଙ୍କର ପ୍ରାର୍ଥିତ ଭୂମି ଦାନ କରିବାକୁ ଉଦ୍ୟତ ହେଲେ । ବଳିଙ୍କର ପତ୍ନୀ ବିନ୍ଧ୍ୟାବଳୀ ବାମନ ଦେବଙ୍କର ପାଦପ୍ରକ୍ଷାଳନ କରିବା ନିମନ୍ତେ ଜଳପୂର୍ଣ୍ଣ କୁମ୍ଭ ଆଣି ସ୍ୱାମୀଙ୍କ ହସ୍ତରେ ପ୍ରଦାନ କଲେ ଏବଂ ବଳି ସେହି ଜଳରେ ବାମନ-ଦେବଙ୍କ ପାଦକୁ ପ୍ରସନ୍ନ ମନରେ ପ୍ରକ୍ଷାଳନ କରି ସେହି ପାଦୋଦକକୁ ନିଜର ମସ୍ତକରେ ଧାରଣ କଲେ । ବାମନ ଦେବଙ୍କୁ ଶତ୍ରୁ ରୂପେ ଜାଣି ମଧ୍ୟ ବଳି ଅକୁଣ୍ଠିତ ଚିତ୍ତରେ ଭୂମିଦାନ କରୁଅଛନ୍ତି ଦେଖି ଦେବତାମାନେ ମଧ୍ୟ ଦାନବର ଉଦାରତାରେ ବିସ୍ମିତ ହେଲେ ଏବଂ ବଳିର ପ୍ରଶଂସା ନ କରି ରହିପାରିଲେ ନାହିଁ ।

ବାମନରୂପୀ ଭଗବାନ ବିଷ୍ଣୁ ନିଜର ଖର୍ବକାୟ ବାମନ ରୂପକୁ ଧୀରେ ଧୀରେ ପରିବର୍ଦ୍ଧିତ କରି ବିଶ୍ୱରୂପ ଧାରଣ କଲେ । ଭଗବାନଙ୍କର ସେହି ବିରାଟ ରୂପକୁ ଦର୍ଶନ କରି ଭୟରେ ଅସୁରମାନେ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ଭଗବାନ ନିଜର ପରିବର୍ଦ୍ଧିତ ବିଶାଳ ପଦଦ୍ୱୟ ଦ୍ୱାରା ଭୂମିଦାନ ଗ୍ରହଣ କରିବାକୁ ଯାଇ ଏକ ପଦରେ ଦାନବରାଜ ବଳିଙ୍କର ଅଧିକୃତ ସମସ୍ତ ରାଜ୍ୟ, ଶରୀର ଦ୍ୱାରା ଆକାଶମଣ୍ଡଳ ଓ ବାହୁଦ୍ୱୟ ଦ୍ୱାରା ଦିଗ୍‌ମଣ୍ଡଳ ଆଚ୍ଛନ୍ନ କରିଦେଲେ, ଦ୍ୱିତୀୟ ପାଦ ଭୂମି ନେବାକୁ ଯାଇ ନିଜର ପଦକ୍ଷେପରେ ସମଗ୍ର ସ୍ୱର୍ଗଲୋକକୁ ପରିବ୍ୟାପ୍ତ କରି ରଖିଲେ କିନ୍ତୁ ତୃତୀୟ ପାଦ ଭୂମି ପାଇଁ ଆଉ ଭୂମି ନାହିଁ ।

ଭଗବାନ ବିଷ୍ଣୁଙ୍କର ସେହି ଅଦ୍ଭୁତ କାର୍ଯ୍ୟର ପ୍ରଶଂସା କରି ବ୍ରହ୍ମାପ୍ରମୁଖ ଦେବତାମାନେ ଭଗବାନଙ୍କର ସେହି ପରିବର୍ଦ୍ଧିତ ଅପୂର୍ବ

ବିଶାଳ ପାଦଦ୍ୱୟକୁ ପାଦ୍ୟ-ଜଳରେ ଧୌତ କରି ପୂଜା କଲେ । ବ୍ରହ୍ମା-ପ୍ରମୁଖ ଦେବତାମାନଙ୍କ ପ୍ରଦତ୍ତ ସେହି ପାଦ୍ୟ-ଜଳ ଭଗବାନ ବିଷ୍ଣୁଙ୍କର ପାଦର ନଖ କୋଣରୁ ନିଃସୃତ ହୋଇ ପତିତପାବନୀ ଗଙ୍ଗା ନାମରେ ପ୍ରବାହିତ ହୋଇ ତ୍ରିଭୁବନକୁ ପବିତ୍ର କରିଅଛି ।

ଭଗବାନ ବିଷ୍ଣୁଙ୍କର ବିଶାଳ ରୂପକୁ ସଙ୍କୁଚିତ କରି ପୂର୍ବର ବାମନ ରୂପ ପୁନର୍ବାର ଧାରଣ କଲେ । ବାମନ ଦେବଙ୍କର ସେହି ଛଳନାପୂର୍ଣ୍ଣ ଭିକ୍ଷାରେ ଅସୁରମାନେ ଏହିପରି ପ୍ରତାରିତ ହୋଇଥିବାରୁ ସେମାନଙ୍କର କ୍ରୋଧର ସୀମା ରହିଲା ନାହିଁ । ସେମାନେ ବାମନଦେବଙ୍କ ବିରୁଦ୍ଧରେ ସଂଗ୍ରାମ କରିବାକୁ ଉଦ୍ୟତ ହେଲେ; କିନ୍ତୁ ବଳି ସେମାନଙ୍କୁ ତହିଁରୁ ନିରସ୍ତ କରିବାକୁ ଉଦ୍ୟମ କରିଥିଲେ ମଧ୍ୟ ତାଙ୍କ କଥା ପ୍ରତି ଅସୁରମାନେ କର୍ଣ୍ଣପାତ କଲେ ନାହିଁ । ଭଗବାନ ବିଷ୍ଣୁଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ଯାଇ ବିଷ୍ଣୁଙ୍କ ଅନୁଚରଙ୍କ ହସ୍ତରେ ସେମାନେ ଶୋଚନୀୟ ଭାବରେ ମୃତ୍ୟୁ ବରଣ କରିଥିଲେ । ଭଗବାନ ବିଷ୍ଣୁଙ୍କର ବାହନ ପକ୍ଷୀରାଜ ଗରୁଡ଼ ବରୁଣ-ପାଶରେ ଦାନବରାଜ ବଳିଙ୍କୁ ବନ୍ଦୀ କଲା ।

ବାମନଦେବ କହିଲେ, 'ମହାରାଜ, ଆପଣ ମୋତେ ତ୍ରିପାଦ ପରିମିତ ଭୂମି ଦାନ କରିବାକୁ ପ୍ରତିଶ୍ରୁତି ଦେଇଅଛନ୍ତି । ତଦନୁସାରେ ମୁଁ ମାତ୍ର ଦୁଇ ପାଦ ପରିମିତ ଭୂମି ଗ୍ରହଣ କରିଅଛି; ତେଣୁ ମୋତେ ଶୀଘ୍ର ଆଉ ଏକପାଦ ପରିମିତ ଭୂମି ପ୍ରଦାନ କରନ୍ତୁ । ମୁଁ ମୋର ଏକ ପାଦରେ ଭୂଲୋକ, ଦେହଦ୍ୱାରା ଆକାଶ ଓ ଦିଗ୍‌ମଣ୍ଡଳ ଏବଂ ଦ୍ୱିତୀୟ ପାଦରେ ଆପଣଙ୍କର ସ୍ୱର୍ଗଲୋକ ଅଧିକାର କରିବା ଫଳରେ ଆପଣଙ୍କର ସର୍ବସ୍ୱ ବ୍ୟୟିତ ହୋଇଅଛି । ପ୍ରତିଶ୍ରୁତି ଅନୁସାରେ ତୃତୀୟ ପାଦ ପରିମିତ ଭୂମି ଦାନ ନ କଲେ ଆପଣ ପ୍ରତିଜ୍ଞାଭଙ୍ଗ ଦୋଷରେ ନରକଗାମୀ ହେବେ । ତେଣୁ ଆପଣ ନରକକୁ ଗମନ କରନ୍ତୁ । ଆପଣ ଅଧଃପତିତ, ସ୍ୱର୍ଗଲୋକରେ ଆପଣଙ୍କର ଆଉ ସ୍ଥାନ ନାହିଁ । ନିଜକୁ ଐଶ୍ୱର୍ଯ୍ୟଶାଳୀ ଦାତା ବୋଲି ମନେକରି ଗର୍ବର ସହିତ ମୋତେ ଦାନ କରିବାକୁ ପ୍ରତିଶ୍ରୁତି ଦେଇ ବର୍ତ୍ତମାନ ମୋତେ ପ୍ରତାରିତ କରିଅଛନ୍ତି । ଏହି ମିଥ୍ୟାଚରଣର ଶାସ୍ତି ସ୍ୱରୂପ ଆପଣ ନରକ ଭୋଗ କରନ୍ତୁ ।'

ବାମନ ଦେବଙ୍କ କଥା ଶୁଣି ବଳି ଉତ୍ତର ଦେଲେ, 'ହେ ପୁଣ୍ୟ-ଶ୍ଳୋକ ! ଆପଣ କପଟଚାର ଆଶ୍ରୟ ନେଇ ବାମନରୂପ ଧାରଣ କରି ମୋ ନିକଟରେ ତ୍ରିପାଦ ଭୂମି ପ୍ରାର୍ଥନା କରି ମୋଠାରୁ ପ୍ରତିଶ୍ରୁତି ଲାଭ କରିବା ପରେ ନିଜର ଶରୀରକୁ ପରିବର୍ଦ୍ଧିତ କରିବା ଫଳରେ, ମୁଁ ଆପଣଙ୍କ ପରିବର୍ଦ୍ଧିତ ପାଦର ପରିମାପ ଅନୁସାରେ ଭୂମି ଦେଇପାରି ନାହିଁ । ତା ବୋଲି ମୁଁ ଆପଣଙ୍କୁ କେବେ ମିଥ୍ୟା ପ୍ରତିଶ୍ରୁତି ଦେଇ ନ ଥିଲି । ତଥାପି ଯଦି ଆପଣ ପ୍ରତିଜ୍ଞାଭଙ୍ଗର ଦୋଷ ମୋଠାରେ ଆରୋପିତ କରୁଥାନ୍ତି, ତେବେ ହେ ଭଗବାନ, ମୁଁ ଆପଣଙ୍କ ସମ୍ମୁଖରେ ମଥା ନତ କରୁଛି, ଆପଣ ଦୟାକରି ମୋର ମସ୍ତକରେ ପଦାର୍ପଣପୂର୍ବକ ତୃତୀୟ ପାଦ ଭୂମି ଗ୍ରହଣ କରି ମୋର ପ୍ରତିଶ୍ରୁତିକୁ ପୂର୍ଣ୍ଣ କରନ୍ତୁ । ମୋର ସମସ୍ତ ପଦ ଓ ଐଶ୍ୱର୍ଯ୍ୟରୁ ମୁଁ ଆଜି ବଞ୍ଚିତ; ତଥାପି ସମସ୍ତ ଦୁଃଖ ଓ ନରକ ପୀଡ଼ନ ଠାରୁ ଅପଯଶକୁ ମୁଁ ବିଶେଷ ଭୟ କରେ । ପରମ ପୂଜନୀୟଙ୍କ ପ୍ରଦତ୍ତ ଶାସ୍ତି ହିଁ ଦଣ୍ଡିତ ବ୍ୟକ୍ତିଙ୍କ ପକ୍ଷରେ ପୁରସ୍କାର ସ୍ୱରୂପ । ମୁଁ ଆପଣଙ୍କ ଦ୍ୱାରା ଆଜି ବନ୍ଦୀ ହୋଇଥିଲେ ମଧ୍ୟ ଆଦୌ ଲଜ୍ଜିତ ନୁହେଁ । ଆପଣ ସ୍ୱୟଂ ଭଗବାନ । ଆପଣ ପରମଗୁରୁ । ଆପଣଙ୍କର ପରମଭକ୍ତ ମୋର ପିତାମହ ପ୍ରହ୍ଲାଦ ଆପଣଙ୍କର ପରମ ବିଦ୍ୱେଷୀ ହିରଣ୍ୟ କଶିପୁଙ୍କ ଦ୍ୱାରା ବହୁଭାବରେ ଉତ୍ପୀଡ଼ିତ ହୋଇ ପରି-ଶେଷରେ ଆପଣଙ୍କ ଚରଣ ପ୍ରାନ୍ତରେ ସ୍ଥାନ ପାଇ ସଜ୍ଜନ ଓ ଦେବ ଦ୍ୱାରା ପ୍ରଶଂସିତ ହୋଇଅଛନ୍ତି ; ତେଣୁ ଆପଣଙ୍କ ଦ୍ୱାରା ପରାଭୂତ ହୋଇଥିବା ମୋ ପାଇଁ ଆଦୌ ଲଜ୍ଜାକର ନୁହେଁ । ସାଂସାରିକ ବିଭବ ଓ ମାୟାମମତା ତୁଚ୍ଛ କରି ମୋର ପିତାମହ ଆପଣଙ୍କ ପାଦପଦ୍ମରେ ଶରଣ ଗ୍ରହଣ କରି ପାଇଅଛନ୍ତି । ପ୍ରହ୍ଲାଦଙ୍କ ପ୍ରସାଦରୁ ଆଜି ମୋର ପରମସୌଭାଗ୍ୟ ଲାଭ ହେଲା ଯେ ଯାହାଙ୍କୁ ଶତ୍ରୁ ମନେ କରିଥିଲି, ସେହି ପରମ ପୁରୁଷ ଭଗବାନଙ୍କ ଚରଣରେ ଶରଣାଗତ ହୋଇଅଛି । ପଦ, ସମ୍ପତ୍ତି ଓ ଐଶ୍ୱର୍ଯ୍ୟ ହରାଇଥିଲେ ମଧ୍ୟ ସେଥିଯୋଗୁ ସାମାନ୍ୟ ଦୁଃଖ ମୋତେ ସ୍ପର୍ଶ କରି ନାହିଁ ।'

ବଳିଙ୍କ ମୁହଁରୁ କଥା ସରିନାହିଁ, ଭଗବାନଙ୍କ ପରମ ଭକ୍ତ ପ୍ରହ୍ଲାଦ ସେଠାରେ ଆବିର୍ଭୂତ ହୋଇଥିଲେ । ବଳି ବରୁଣ ପାଶରେ ବନ୍ଦୀ ହୋଇଥିବାରୁ ପିତାମହଙ୍କ ଉଦ୍ଦେଶ୍ୟରେ ଯଥୋଚିତ ଅଭ୍ୟର୍ଥନା

ଓ ପ୍ରଣାମ ଜଣାଇବାକୁ ସମର୍ଥ ହେଲେ ନାହିଁ, କେବଳ ନୟନର ଲୋତକ ଦ୍ୱାରା ତାଙ୍କୁ ପ୍ରଣାମ ଜଣାଇଲେ ।

ପ୍ରହ୍ଲାଦ କହିଲେ, 'ଭଗବାନ, ଆପଣ ହିଁ ପୂର୍ବେ ବଳିଙ୍କୁ ଐଶ୍ୱର୍ଯ୍ୟପୂର୍ଣ୍ଣ ଇନ୍ଦ୍ର ପଦ ପ୍ରଦାନ କରିଥିଲେ ଏବଂ ବର୍ତ୍ତମାନ ସେହି ଐଶ୍ୱର୍ଯ୍ୟକୁ ହରଣ କରିଅଛନ୍ତି । ଏହି କାର୍ଯ୍ୟ ଅତ୍ୟନ୍ତ ସଙ୍ଗତ ହୋଇ-ଅଛି । ମୁଁ ମନେ କରୁଛି ଯେ, ମୋହ ଉଦ୍ରେକକାରୀ ଐଶ୍ୱର୍ଯ୍ୟ ଓ ପଦ-ସୁଖରୁ ବଞ୍ଚିତ କରି ଆପଣ ପ୍ରକାରାନ୍ତରେ ଉପକାର କରିଅଛନ୍ତି । ଧନ, ପଦ ଓ ଐଶ୍ୱର୍ଯ୍ୟ ପଣ୍ଡିତ ତଥା ସଂଯତ ଚିତ୍ତର ବ୍ୟକ୍ତିଙ୍କୁ ମଧ୍ୟ ଅନ୍ଧ କରିଦେଇଥାଏ; ଫଳରେ ସେମାନେ ନିଜର ସ୍ୱରୂପକୁ ଉପଲବ୍ଧି କରିପାରନ୍ତି ନାହିଁ । ଆପଣ ସେହି ଐଶ୍ୱର୍ଯ୍ୟକୁ ହରଣ କରି ବଳି ପ୍ରତି ଆଶୀର୍ବାଦ କରିଅଛନ୍ତି । ଆପଣ ମୋର ବିନମ୍ର ପ୍ରଣାମ ଗ୍ରହଣ କରନ୍ତୁ ।

ବଳିର ପତ୍ନୀ ବିନ୍ଧ୍ୟାବଳି ଭଗବାନଙ୍କୁ ସମ୍ବୋଧନ କରି କହିଲେ, 'ପ୍ରଭୁ ! ଆପଣ ନିଜର ଲୀଳା ପ୍ରକାଶ କରିବା ନିମନ୍ତେ ଏହି ଅଖିଳ ଜଗତ ସୃଷ୍ଟି କରିଅଛନ୍ତି; ଅଥଚ ଅଜ୍ଞାନୀମାନେ ତହିଁରେ ନିଜକୁ ପ୍ରଭୁ ବୋଲି ମନେ କରିଥିଲେ ମଧ୍ୟ ଆପଣ ଜଗତର ସୃଷ୍ଟି-ସ୍ଥିତି-ଲୟ କର୍ତ୍ତା । ଆପଣଙ୍କୁ ଦାନ ଦେବାର କ୍ଷମତା ସେ ଲାଭ କରିବେ କେଉଁଠୁ ?'

ବ୍ରହ୍ମା ସେଠାରେ ଉପସ୍ଥିତ ଥିଲେ । ସେ ଭଗବାନଙ୍କୁ କହିଲେ, 'ହେ ଜଗତକର୍ତ୍ତା, ହେ ଦେବଦେବ, ଆପଣ ସର୍ବସ୍ୱ ବଞ୍ଚିତ ବଳିଙ୍କୁ ବନ୍ଧନ-ମୁକ୍ତ କରନ୍ତୁ । ବଳି ଆପଣଙ୍କୁ ଅକପଟ ହୃଦୟରେ ସମସ୍ତ ଜଗତ ଓ ସ୍ୱୋପାର୍ଜିତ ସମସ୍ତ ପୁଣ୍ୟ ଦାନ କରିଅଛନ୍ତି । ହେ ଭଗବାନ, ସରଳ-ପ୍ରାଣ ଯେ କୌଣସି ବ୍ୟକ୍ତି ଆପଣଙ୍କ ପାଦପଦ୍ମରେ ପୂଜା ନିବେଦନ କରି ସାମାନ୍ୟ ମାତ୍ର ଜଳ କୁଶ ପ୍ରଦାନ କରିଥାଏ । ସେ ଆପଣଙ୍କ ପ୍ରସାଦରୁ ଉତ୍ତମ ଗତି ଲାଭ କରିଥାଏ । ଏପରି ସ୍ଥଳେ ଅକାତରରେ ତ୍ରିଭୁବନ ଦାନ କରିଥିବା ବଳିଙ୍କୁ ବନ୍ଦୀର ଦଶା ଭୋଗ କରିବାକୁ ପଡୁଛି । ଏହାର ବିଚିତ୍ର ରହସ୍ୟ ବୁଝିପାରୁ ନାହିଁ । ଆପଣ ବଳିଙ୍କ ପ୍ରତି ଅନୁଗ୍ରହ ପ୍ରକାଶ କରନ୍ତୁ ।'

ଭଗବାନ ବାମନଦେବ କହିଲେ, 'ବ୍ରହ୍ମା ! ମୁଁ ଯାହାକୁ ଅନୁଗ୍ରହ କରି ଧନଶାଳୀ କରିଥାଏ, ତାକୁ ମଧ୍ୟ ମୁଁ ସମସ୍ତ ଧନରୁ

ବଞ୍ଚିତ କରେ; କାରଣ ଧନ ଓ ଐଶ୍ୱର୍ଯ୍ୟଗର୍ବରେ ସେ ସମସ୍ତ ଜଗତକୁ ଏପରି କି ମୋତେ ମଧ୍ୟ ଅବଜ୍ଞା କରିଥାଏ । ଜୀବାତ୍ମା ନିଜର କର୍ମବଶତଃ ନାନା ଜନ୍ମରେ ନାନା ଯୋନିରେ ଭ୍ରମଣ କରି ସୌଭାଗ୍ୟକ୍ରମେ କେବେ ମନୁଷ୍ୟ ଜନ୍ମ ଲାଭ କରିଥାଏ । ଯଦି ମନୁଷ୍ୟ ଜନ୍ମଲାଭ କରି ଜୀବର ମନରେ ଉତ୍ତମବଂଶ, ଯୌବନ, ରୂପ, ସୌନ୍ଦର୍ଯ୍ୟ, ବିଦ୍ୟା, ପ୍ରଭୁତ୍ୱ ଓ ଧନସମ୍ପତ୍ତି ସମ୍ପର୍କୀୟ ଗର୍ବ ଭାବ ଦେଖାଦିଏ, ତେବେ ତା'ର ମନୁଷ୍ୟ ଜନ୍ମଲାଭ କରିବା ବୃଥା ଏବଂ ସେ ମଧ୍ୟ ମୋର ଅନୁଗ୍ରହ ଲାଭରୁ ବଞ୍ଚିତ ହୋଇଥାଏ । ଯେ ମୋର ପ୍ରକୃତ ଭକ୍ତ ସେ କେବେ ଏ ସବୁ ନେଇ ଗର୍ବ କରେ ନାହିଁ । ଦୈତ୍ୟଦାନବଙ୍କ ଅଗ୍ରଣୀ ଏହି ଯଶସ୍ୱୀ ବଳି ଧନ ସମ୍ପଦରେ ସକଳ ପ୍ରଲୋଭନକୁ ଜୟ କରିଅଛି; ଏପରିକି ଧନରତ୍ନ, ରାଜଐଶ୍ୱର୍ଯ୍ୟ, ଜ୍ଞାତିବନ୍ଧୁଙ୍କୁ ହରାଇଥିଲେ ମଧ୍ୟ, ନିଜର ଗୁରୁ ଶୁକ୍ରଙ୍କ ଦ୍ୱାରା ଭର୍ତ୍ସିତ ଓ ଅଭିଶପ୍ତ ହୋଇଥିଲେ ସୁଦ୍ଧା ଏବଂ ବରୁଣ ପାଶରେ ଆବଦ୍ଧ ହୋଇ ଦୁଃଖ ପାଉଥିଲେ ବି ସେ ନିଜର ଧର୍ମ ଓ ସତ୍ୟ ପଥରୁ ତିଳେହେଲେ ବିଚ୍ୟୁତ ହୋଇ ନାହିଁ । ମୁଁ ତାକୁ ପରୀକ୍ଷା କରିବା ପାଇଁ ଛଳନାପୂର୍ଣ୍ଣ କଥା କହିଥିଲେ ମଧ୍ୟ ସେ ପରମ ସତ୍ୟବାଦୀ ଭାବରେ ନିଜର କର୍ତ୍ତବ୍ୟ ଓ ଧର୍ମକୁ ଲଙ୍ଘନ କରି ନାହିଁ । ତେଣୁ ତାକୁ ମୁଁ ଦେବଦୁର୍ଲ୍ଲଭ ସ୍ଥାନ ଦାନ କରୁଅଛି । ସବାର୍ଣ୍ଣି ମନ୍ୱନ୍ତରରେ ବଳି ଇନ୍ଦ୍ରପଦ ଲାଭ କରିବେ ଏବଂ ଇନ୍ଦ୍ରପଦ ଲାଭ କରିବା ପର୍ଯ୍ୟନ୍ତ ସେ ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ 'ସୁତଳ' ନାମକ ମନୋରମ ପ୍ରାସାଦରେ ବାସ କରିବେ । ମୋର ଅନୁଗ୍ରହ ଫଳରେ ସୁତଳପୁରୀରେ ବାସ କରୁଥିବା ବ୍ୟକ୍ତିକୁ କୌଣସି ଦୁଃଖ, ବ୍ୟାଧି, କ୍ଲାନ୍ତି, ଗ୍ଲାନି ବା ଉପଦ୍ରବ ସ୍ପର୍ଶ କରିବ ନାହିଁ । ହେ ସୁବ୍ରତ, ଆପଣ ଜ୍ଞାତି ପରିବାର ସହିତ ଅଚିରେ ସୁତଳ-ପୁରକୁ ଗମନ କରି ସୁଖରେ ବାସ କରନ୍ତୁ । ସେଠାରେ ବାସ କରି ସର୍ବଦା ମୋତେ ଦର୍ଶନ କରିବା ସୁଯୋଗ ଲାଭ କରିବ ।'

ବରୁଣ ପାଶରୁ ବଳି ମୁକ୍ତ ହେଲେ ।

ବାମନଦେବଙ୍କୁ ପ୍ରଣାମ କରି ବଳି କହିଲେ, 'ପ୍ରଭୁ, ଆପଣ ପରମ କାରୁଣିକ । ଆପଣଙ୍କ ମହିମାର ପରିସୀମା ନାହିଁ । ଆପଣଙ୍କ ମହିମାର ସ୍ୱରୂପ ବୁଝିବା ମୋ ପକ୍ଷରେ ସମ୍ଭବ ନୁହେଁ । ଦେବତାମାନେ

ଯାହା ଲାଭ କରି ପାରନାହାନ୍ତି, ଆପଣ ସେହି ଦେବଦୁର୍ଲ୍ଲଭ ମହାର୍ଘ ସମ୍ପଦ ମୋତେ ପ୍ରଦାନ କରୁଅଛନ୍ତି । ଆପଣ ମୋର ପ୍ରଣତି ଗ୍ରହଣ କରନ୍ତୁ ।'

ଏହାପରେ ଭଗବାନଙ୍କ ଆଶୀର୍ବାଦ ଲାଭକରି ବଳି ନିଜର ଜ୍ଞାତି ବାନ୍ଧବଙ୍କ ସହିତ ପାତାଳପୁରକୁ ଗମନ କରି 'ସୁତଳ' ଭବନରେ ବାସ କଲେ । ସ୍ୱର୍ଗରାଜ୍ୟରେ ଦେବରାଜ ଇନ୍ଦ୍ରଙ୍କୁ ପୁନର୍ବାର ଅଭିଷିକ୍ତ କରାଗଲା । ଦେବତାମାନେ ସେମାନଙ୍କର ହୃତରାଜ୍ୟ, ଐଶ୍ୱର୍ଯ୍ୟ ଏବଂ ତେଜ ଫେରି ପାଇ ଆନନ୍ଦିତ ହେଲେ ।



# ଭଗବାନଙ୍କର ମତ୍ସ୍ୟାବତାର

ପରୀକ୍ଷିତଙ୍କ ନିକଟରେ ଭଗବାନଙ୍କର ଲୀଳା କଥା ବର୍ଣ୍ଣନା କରୁ କରୁ ଶୁକଦେବ କହିଲେ, 'ମହାରାଜ, ଗୋ, ବ୍ରାହ୍ମଣ, ବେଦ, ଦେବତା, ସାଧୁ, ଧର୍ମ ଏବଂ ଅର୍ଥ ଆଦିଙ୍କୁ ରକ୍ଷା କରିବା ନିମନ୍ତେ ବିଭିନ୍ନ ସମୟରେ ଭଗବାନ ବିଭିନ୍ନ ଅବତାର ଗ୍ରହଣ କରିଥାନ୍ତି । ଭଗବାନ ସ୍ୱୟଂ ନିର୍ଗୁଣ; କିନ୍ତୁ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ବାୟୁ ପରି ସେ ସ୍ୱଚ୍ଛନ୍ଦରେ ବିଚରଣ କରି ନିଜର ଲୀଳା ପ୍ରକାଶ କରିଥାନ୍ତି । ଅତୀତ କଳ୍ପ ଶେଷରେ ବ୍ରହ୍ମାଙ୍କର ନିଦ୍ରାକାଳ ଉପସ୍ଥିତ ହେବାରୁ ପ୍ରଳୟ ଘଟିଲା, ଫଳରେ ସମସ୍ତ ଜଗତ ସମୁଦ୍ର ଜଳରେ ନିମଗ୍ନ ହେଲା । ସେହି ସମୟରେ କାଳ ପ୍ରଭାବରେ ବ୍ରହ୍ମା ନିଦ୍ରା ଯୋଗୁ ଅବଶ ହୋଇ ପଡ଼ିବାରୁ ଦାନବଶ୍ରେଷ୍ଠ ହୟଗ୍ରୀବ ବ୍ରହ୍ମାଙ୍କ ମୁଖ ନିଃସୃତ ବେଦସମୂହକୁ ହରଣ କରିନେଲା । ଭଗବାନ ତାହା ଲକ୍ଷ୍ୟ କରି ବେଦକୁ ଉଦ୍ଧାର କରିବା ନିମନ୍ତେ ମତ୍ସ୍ୟ ରୂପ ଧାରଣ କଲେ ।

ସେହି ସମୟରେ ସତ୍ୟବ୍ରତ ନାମକ ଜନୈକ ରାଜର୍ଷି ନଦୀରେ ସ୍ନାନକରି ଜଳ-ତର୍ପଣ କରୁଥିଲେ । ଭଗବାନ ଏକ କ୍ଷୁଦ୍ରକାୟ ଶଫରୀ ମତ୍ସ୍ୟ ରୂପ ଧାରଣ କରି ସତ୍ୟବ୍ରତଙ୍କ ଅଞ୍ଜଳିସ୍ଥ ଜଳରେ ପ୍ରବେଶ କରି ସନ୍ତରଣ କରିବାକୁ ଲାଗିଲେ । ନିଜ ହସ୍ତର ଜଳରେ ଏକ ମତ୍ସ୍ୟକୁ ଦେଖି ରାଜର୍ଷି ସତ୍ୟବ୍ରତ ଜଳ ସହ ସେହି ମତ୍ସ୍ୟକୁ ନଦୀରେ ନିକ୍ଷେପ କରିବାକୁ ଉଦ୍ୟତ ହେବାରୁ, ହସ୍ତସ୍ଥିତ ମତ୍ସ୍ୟଟି ଆକୁଳ ସ୍ୱରରେ ନିବେଦନ କରି କହିଲା, 'ହେ ଦୀନବତ୍ସଳ ମହାରାଜ, ଜଳ ମଧ୍ୟରେ ଥିବା ହିଂସ୍ର ଜଳଜନ୍ତୁ-ଙ୍କର ଆକ୍ରମଣର ଆଶଙ୍କାରେ ଭୟଭୀତ ହୋଇ ମୁଁ ଆତ୍ମରକ୍ଷା ନିମନ୍ତେ ଆପଣଙ୍କ ହସ୍ତସ୍ଥିତ ଜଳରେ ପ୍ରବେଶ କରିଅଛି; ତେଣୁ ଦୟାକରି ମୋତେ ଏହି ନଦୀରେ ଆଉ ନିକ୍ଷେପ କରନ୍ତୁ ନାହିଁ ।'

ଭଗବାନ ଯେ ମତ୍ସ୍ୟ ରୂପ ଧାରଣ କରିଅଛନ୍ତି ଏ କଥା ସତ୍ୟବ୍ରତ ଜାଣିପାରିଲେ ନାହିଁ; ମାତ୍ର ମତ୍ସ୍ୟ ପ୍ରତି ତାଙ୍କ ହୃଦୟରେ କରୁଣା

ଉଦ୍ରେକ ହେଲା । ତେଣୁ ମତ୍ସ୍ୟକୁ ରକ୍ଷା କରିବା ନିମନ୍ତେ ସେ ନିଜର କମଣ୍ଡଳୁ ମଧ୍ୟରେ ଥିବା ଜଳରେ ମତ୍ସ୍ୟଟିକୁ ସ୍ନେହରେ ଛାଡ଼ିଦେଲେ ଏବଂ ପରେ କମଣ୍ଡଳୁ ସହ ଆଶ୍ରମକୁ ଫେରି ଆସିଲେ । ମାତ୍ର ଗୋଟିଏ ରାତି ଅତିବାହିତ ହୋଇଛି କି ନାହିଁ ସେହି ସମୟ ମଧ୍ୟରେ ସେହି କ୍ଷୁଦ୍ରକାୟ ମତ୍ସ୍ୟଟିର ଶରୀର ଏପରି ବଢ଼ିଗଲା ଯେ, ମତ୍ସ୍ୟଟି ଚିତ୍କାର କରି ସତ୍ୟବ୍ରତଙ୍କୁ କହିଲା, 'ମହାରାଜ, ମୋର ଶରୀର ଏ ମଧ୍ୟରେ ବିଶେଷ ବୃଦ୍ଧିପ୍ରାପ୍ତ ହୋଇଥିବା ଫଳରେ, ଏହି କମଣ୍ଡଳୁ ମଧ୍ୟରେ ମୋର ଆଉ ରହିବା ସମ୍ଭବ ନୁହେଁ; ତେଣୁ ମୋତେ ନେଇ କୌଣସି ଏକ ବୃହତ୍ ଜଳାଶୟରେ ଦୟାକରି ଶୀଘ୍ର ଛାଡ଼ନ୍ତୁ । ଏଠାରେ ରହିବାକୁ ମୋତେ ଭାରି କଷ୍ଟ ହେଉଅଛି ।'

ମତ୍ସ୍ୟର କଥା ଶୁଣି ଦୟାଶୀଳ ସତ୍ୟବ୍ରତ ଏକ କୂପ ମଧ୍ୟରେ ତତ୍‌କ୍ଷଣାତ୍ ମତ୍ସ୍ୟଟିକୁ ଛାଡ଼ି ଦେଲେ । ଆଶ୍ଚର୍ଯ୍ୟର କଥା, ମୁହୂର୍ତ୍ତକ ମଧ୍ୟରେ ମତ୍ସ୍ୟଟିର ଆକୃତି ଏପରି ବଢ଼ିଗଲା ଯେ, ମତ୍ସ୍ୟଟି ପୂର୍ବପରି ଅନୁରୋଧ କରି ରାଜର୍ଷିଙ୍କୁ କହିଲା, 'ମହାରାଜ, ଏହି ସ୍ଥାନ ମଧ୍ୟ ମୋର ବାସୋପଯୋଗୀ ନୁହେଁ । ମୋତେ ଏଠାରୁ ନେଇ ଅନ୍ୟ କୌଣସି ଅଧିକ ପ୍ରଶସ୍ତ ସ୍ଥାନକୁ ସ୍ଥାନାନ୍ତରିତ କରନ୍ତୁ । ମୁଁ ଆପଣଙ୍କର ଆଶ୍ରିତ; ତେଣୁ ମୋ ପ୍ରତି ଆପଣ ସଦୟ ହୁଅନ୍ତୁ ।' ମତ୍ସ୍ୟର ଅନୁରୋଧକ୍ରମେ ସତ୍ୟବ୍ରତ ଗୋଟିଏ ସରୋବରରେ ମତ୍ସ୍ୟଟିକୁ ନେଇ ଛାଡ଼ି ଦେଲେ; କିନ୍ତୁ ଅଳ୍ପ ସମୟ ମଧ୍ୟରେ ସରୋବରରେ ମତ୍ସ୍ୟଟିର ଶରୀର ବିଶେଷ ବୃଦ୍ଧି-ପାଇବାରୁ, ସରୋବରରୁ ନେଇ ହ୍ରଦରେ, ପରେ ପରେ ହ୍ରଦରୁ ନେଇ ସମୁଦ୍ରରେ ମତ୍ସ୍ୟଟିକୁ ସତ୍ୟବ୍ରତ ନେଇ ଛାଡ଼ିଲେ । ସମୁଦ୍ରରେ ମତ୍ସ୍ୟଟିକୁ ଛାଡ଼ିଲା ବେଳେ ମତ୍ସ୍ୟଟି କହିଲା, 'ମହାରାଜ, ମୋତେ ସମୁଦ୍ରରେ ପରିତ୍ୟାଗ କରନ୍ତୁ ନାହିଁ, କାରଣ ସମୁଦ୍ରରେ ବାସ କରୁଥିବା ବଳବାନ୍ ମକରାଦି ଜଳଜନ୍ତୁଙ୍କ ଆଡ଼ୁ ମୋ ପ୍ରତି ଯଥେଷ୍ଟ ବିପଦର ଆଶଙ୍କା ଅଛି ।'

ମତ୍ସ୍ୟର ସେହି କରୁଣା ଉଦ୍ରେକକାରୀ କଥା ରାଜର୍ଷି ସତ୍ୟବ୍ରତଙ୍କ ହୃଦୟକୁ ବିଶେଷଭାବରେ ବିଚଳିତ କଲା । ସେ ମତ୍ସ୍ୟକୁ କହିଲେ, 'ମତ୍ସ୍ୟରୂପ ଧରି ଆପଣ ମୋତେ ଏପରି ବିମୋହିତ କରିଥିବାରୁ, ଆପଣଙ୍କର ପ୍ରକୃତ ପରିଚୟ ଜାଣିବାକୁ ମୋ ମନରେ କୌତୂହଳ ଜାତ ହେଉଅଛି । ଆପଣ ଏକଦିନ ମଧ୍ୟରେ ଏପରି ଭାବରେ ବୃଦ୍ଧିପ୍ରାପ୍ତ ହୋଇଅଛନ୍ତି ଯେ, ଶତ ଯୋଜନପରିମିତ ଦୀର୍ଘ

ସର୍ଗେବର ମଧ୍ୟରେ ମଧ୍ୟ ଆପଣଙ୍କର ସ୍ଥାନାଭାବ ହେଲା । ଏପରି ଆଶ୍ଚର୍ଯ୍ୟକର ଜଳଚର ମୁଁ କେବେ ଜୀବନରେ ଦେଖିନାହିଁ କି ଥିବାର କେବେ ଶୁଣି ନାହିଁ । ଆପଣ ପ୍ରକୃତରେ କିଏ ? ଏପରି ପରମ ଆଶ୍ଚର୍ଯ୍ୟ-କର ଅଦ୍ଭୁତ କାର୍ଯ୍ୟ କରିବାର ସାମର୍ଥ୍ୟ କେବଳ ଭଗବାନଙ୍କ ବ୍ୟତୀତ ଅନ୍ୟ କାହାର ଥାଇ ପାରେନା । ଆପଣ ନିଶ୍ଚୟ ସର୍ବଶକ୍ତିମାନ୍ ଭଗବାନ ନାରାୟଣ, ଅଖିଳ ଜଗତର ମଙ୍ଗଳ ବିଧାନ କରିବା ନିମନ୍ତେ ଏପରି ଜଳଚର ପ୍ରାଣୀ ରୂପରେ ପ୍ରକଟିତ ହୋଇଅଛନ୍ତି । ହେ ଜଗତର ସୃଷ୍ଟି-ସ୍ଥିତି-ପ୍ରଳୟକର୍ତ୍ତା, ପୁରୁଷଶ୍ରେଷ୍ଠ, ପ୍ରଭୁ, ଆପଣଙ୍କୁ ନମସ୍କାର । ମୋ ପରି ଶରଣାଗତର ଆପଣ ଆଶ୍ରୟ ସ୍ୱରୂପ । ଆପଣ ବିଭିନ୍ନ ଅବତାରରେ ଭିନ୍ନ ଭିନ୍ନ ରୂପ ଧାରଣ କରି ଜୀବଜଗତର କଲ୍ୟାଣ ସାଧନ କରିଥାନ୍ତି; ତେଣୁ ଏପରି ମତ୍ସ୍ୟରୂପ ଧାରଣ କରିବାର କାରଣ କ'ଣ, ଜାଣିବାକୁ ମୋ ମନରେ ବିଶେଷ କୌତୂହଳ ଜାତ ହେଉଅଛି । ମୋର ପରମସୌଭାଗ୍ୟ ଯେ ମୁଁ ଆପଣଙ୍କର ଏହି ଅପୂର୍ବ ରୂପ ଦର୍ଶନ କରିବାର ସୁଯୋଗ ଲାଭ କଲି । ମୁଁ ଆପଣଙ୍କର ଶରଣାଗତ ବୋଲି ମୋ ପ୍ରତି ଆପଣଙ୍କର ଅନୁଗ୍ରହ ପ୍ରକାଶିତ ହୋଇଅଛି ।'

ରାଜର୍ଷି ସତ୍ୟବ୍ରତଙ୍କର ସେହି ପ୍ରୀତିପୂର୍ଣ୍ଣ ବିନୀତ କଥା ଶ୍ରବଣ କରି ଭଗବାନ କହିଲେ, 'ହେ ଅରିନ୍ଦମ, ଆଜିଠାରୁ ସାତଦିନ ପରେ ଭୂ, ଭୁବ ଓ ସ୍ୱର୍ଗ ଏପରି ତିନିଲୋକରେ ପ୍ରଳୟ ସଂଘଟିତ ହେବ; ଫଳରେ ଏସବୁ ପ୍ରଳୟ ଜଳରେ ନିମଗ୍ନ ହେବ । ପ୍ରଳୟ ସମୟରେ ମୋ ଦ୍ୱାରା ପ୍ରେରିତ ଏକ ବିଶାଳ ନୌକା ତୁମ ନିକଟରେ ଆସି ପହଞ୍ଚିବ । ତୁମେ ସପ୍ତର୍ଷିମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଏବଂ ସକଳ ପ୍ରାଣୀଙ୍କ ସୂକ୍ଷ୍ମ ଶରୀର ସହିତ ମିଳିତ ହୋଇ ଓ ସମସ୍ତ ପ୍ରକାରର ବୃକ୍ଷଲତାର ବୀଜ ସଙ୍ଗରେ ନେଇ ସେହି ନୌକାରେ ଆରୋହଣ କରିବ । ପ୍ରଳୟ ସମୟରେ ଚତୁର୍ଦ୍ଦିଗ ଘନ ଅନ୍ଧକାରରେ ଆଚ୍ଛନ୍ନ ଥିଲେ ମଧ୍ୟ ସପ୍ତର୍ଷିଙ୍କ ଶରୀରରୁ ବିଚ୍ଛୁରିତ ତେଜରେ ସେହି ନୌକାରେ ଆରୋହଣ କରିବ । ପ୍ରଳୟକାଳୀନ ପ୍ରବଳ ବାୟୁବେଗରେ ସେହି ନୌକା ଯେତେବେଳେ ଆନ୍ଦୋଳିତ ହେବ, ସେତେବେଳେ ମୁଁ ସେହି ନୌକା ନିକଟକୁ ଆସିବି ଏବଂ ତୁମେ ମହାସର୍ପ ବାସୁକୀକୁ ରଜ୍ଜୁ କରି ସେହି ନୌକାରେ ତାହା ବନ୍ଧନ କରି ମୋର ଶୃଙ୍ଗରେ ଛନ୍ଦିଦେବ । ତାହାହେଲେ ନୌକାରେ

ଥିବା ତୁମ୍ଭମାନଙ୍କର ଆଉ କୌଣସି ବିପଦ ହେବ ନାହିଁ । ମୁଁ ସେତେବେଳେ ତୁମର କୌତୂହଳ ଅପନୋଦନ କରି 'ପରମବ୍ରହ୍ମ'ର ସ୍ୱରୂପ ମହିମା ତୁମ ନିକଟରେ ପ୍ରକାଶ କରିବି । ମୋର ଅନୁଗ୍ରହ ଫଳରେ ତୁମେ ତାହା ନିଜ ହୃଦୟରେ ବେଶ୍ ଅନୁଭବ କରିପାରିବ ।'

ମତ୍ସ୍ୟ ରୂପୀ ଭଗବାନ ଏହା କହି ଶୂନ୍ୟରେ ଅନ୍ତର୍ହିତ ହୋଇଗଲେ ।

ଭଗବାନଙ୍କ ସୂଚନାନୁସାରେ ସତ୍ୟବ୍ରତ ଭଗବାନଙ୍କଠାରେ ଲୟରଖି ପ୍ରଳୟକାଳକୁ ପ୍ରତୀକ୍ଷା କରି ରହିଲେ । ସତ୍ୟବ୍ରତ ପୂର୍ବାଭିମୁଖୀ କୁଶାସନରେ ଉତ୍ତର-ପୂର୍ବକୁ ମୁଖ କରି ଉପବେଶନ କରି ରହିଲେ । ଠିକ୍ ସପ୍ତମ ଦିବସରେ ଚତୁର୍ଦ୍ଦିଗରେ ପ୍ରବଳ ବେଗରେ ମେଘ ବର୍ଷଣ ଆରମ୍ଭ ହେଲା ଏବଂ ଧୀରେ ଧୀରେ ସମୁଦ୍ରର ଜଳ ସ୍ଫୀତକୃତ ହୋଇ ବେଳାଭୂମିକୁ ଅତିକ୍ରମ କରି ପୃଥିବୀର ଚତୁର୍ଦ୍ଦିଗକୁ ଅଗାଧ ଜଳରେ ପ୍ଲାବିତ କରିଦେଲା । ସତ୍ୟବ୍ରତ ଭଗବାନଙ୍କ କଥା ଚିନ୍ତା କରୁଅଛନ୍ତି ଏହି ସମୟରେ ଏକ ବିଶାଳ ନୌକା ତାଙ୍କ ଆଡ଼କୁ ଆସୁଥିବାର ଦେଖିବାକୁ ପାଇଲେ । ସେହି ନୌକାରେ ସତ୍ୟବ୍ରତ ବୃକ୍ଷାଦିର ବୀଜ ସଙ୍ଗରେ ନେଇ ଆରୋହଣ କରି ସପ୍ତର୍ଷିଙ୍କ ସହିତ ମିଳିତ ହେଲେ । କିଛି ସମୟ ପରେ ପ୍ରଳୟ ଜଳ ମଧ୍ୟରେ ଭଗବାନ ନିୟୁତ ଯୋଜନ ଦୀର୍ଘ ସୁବର୍ଣ୍ଣମୟ ଏକ ବିଶିଷ୍ଟ ମତ୍ସ୍ୟରୂପ ଧାରଣ କରି ସେହି ନୌକା ନିକଟରେ ପହଞ୍ଚିଲେ ଏବଂ ସତ୍ୟବ୍ରତ ସେହି ମତ୍ସ୍ୟର ଏକମାତ୍ର ଶିଙ୍ଗରେ ରଜ୍ଜୁ ଭାବରେ ନୌକାକୁ ମିଶାଇ ବାସୁକୀ ସର୍ପକୁ ଛନ୍ଦି ଦେଲେ ।

ସତ୍ୟବ୍ରତ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ ।

ମତ୍ସ୍ୟରୂପୀ ଭଗବାନ ନିଜର ଶିଙ୍ଗରେ ନୌକାକୁ ପରିଚାଳିତ କରି ସତ୍ୟବ୍ରତଙ୍କୁ ବିଭିନ୍ନ ଉପଦେଶ ପ୍ରଦାନ କରିଥିଲେ । ପରେ ହୟଗ୍ରୀବ ଅସୁରକୁ ସଂହାର କରି ବେଦକୁ ଉଦ୍ଧାର କରିଥିଲେ ଏବଂ ପ୍ରଳୟ ଅବସାନ ହେବାପରେ, ବ୍ରହ୍ମା ଯେତେବେଳେ ଜାଗ୍ରତ ହେଲେ, ତାଙ୍କୁ ତାହା ପ୍ରଦାନ କରିଥିଲେ । ଭଗବାନଙ୍କର ଅନୁଗ୍ରହ ଲାଭକରି ସତ୍ୟବ୍ରତ ପରବର୍ତ୍ତୀ କଳ୍ପରେ ବୈବସ୍ୱତ ମନୁ ରୂପରେ ଜାତ ହୋଇଥିଲେ । ●

# ଅମ୍ବରୀଷ ଚରିତ

ମନୁଙ୍କର ନଭଗ ନାମରେ ଗୋଟିଏ ପୁତ୍ର ଥିଲେ । ସେହି ନଭଗଙ୍କର ପୁତ୍ରଙ୍କର ନାମ ଥିଲା ନାଭାଗ । ନାଭାଗଙ୍କ ଔରସରେ ଯେଉଁ ପୁତ୍ର ଜାତ ହୋଇଥିଲେ ତାଙ୍କର ନାମ ଅମ୍ବରୀଷ । ଅମ୍ବରୀଷ ଯେପରି ଧର୍ମପ୍ରାଣ ସେହିପରି ଭଗବତ୍ ଭକ୍ତ ଥିଲେ । ପିତାଙ୍କ ଅନ୍ତେ ଅମ୍ବରୀଷ ରାଜପଦ ଲାଭକରି ପରମ ସନ୍ତୋଷରେ ପ୍ରଜା ପାଳନ କରୁଥିଲେ । ସେ ଅକ୍ଷୟ ସମ୍ପଦ ଓ ଅତୁଳନୀୟ ରାଜୈଶ୍ୱର୍ଯ୍ୟ ଲାଭ କରିଥିଲେ ମଧ୍ୟ ଇନ୍ଦ୍ରିୟ ଭୋଗଲାଳସା ତାଙ୍କୁ ସ୍ପର୍ଶ କରି ନ ଥିଲା । ଇନ୍ଦ୍ରିୟ ତୃଷ୍ଣା ମନୁଷ୍ୟକୁ ତା'ର କର୍ତ୍ତବ୍ୟପଥରୁ ବିଚ୍ୟୁତ କରେ ବୋଲି ଅମ୍ବରୀଷ ସେଥିପ୍ରତି ବିଶେଷ ସାବଧାନତା ଅବଲମ୍ବନ କରୁଥିଲେ ଏବଂ ରାଜୈଶ୍ୱର୍ଯ୍ୟ ତଥା ବିଳାସବ୍ୟସନକୁ ତୁଚ୍ଛ ଜ୍ଞାନ କରି ସର୍ବଦା ତା'ଠାରୁ ଦୂରରେ ରହୁଥିଲେ ।

ଅମ୍ବରୀଷ ଭଗବାନ ବାସୁଦେବଙ୍କର ପରମ ଭକ୍ତ ଥିଲେ ଏବଂ ଭଗବତ ଭକ୍ତ ତଥା ସାଧୁସ୍ୱଭାବର ବ୍ୟକ୍ତିଙ୍କ ପ୍ରତି ପରମ ଭକ୍ତି ପ୍ରକାଶ କରୁଥିଲେ । ପରମ ଭକ୍ତି ସହକାରେ ଭଗବାନ କୃଷ୍ଣଙ୍କର ପଦାରବିନ୍ଦକୁ ନିଜର ଚିତ୍ତରେ ନିରନ୍ତର ଧ୍ୟାନକରି, ବାକ୍ୟରେ ଭଗବାନଙ୍କ ଗୁଣ କୀର୍ତ୍ତନ କରି, କରଯୁଗଳରେ ଭଗବାନଙ୍କର ସେବାର୍ଚ୍ଚନା କରି, କର୍ଣ୍ଣରେ ଭଗବାନଙ୍କର କଥାମୃତ ଶ୍ରବଣ କରି, ନୟନଯୁଗଳରେ ଭଗବାନଙ୍କର ନୟନାଭିରାମ ବିଗ୍ରହ ଦର୍ଶନ କରି, ଭଗବତ୍ ଭକ୍ତ-ମାନଙ୍କୁ ସ୍ନେହରେ ଆଲିଙ୍ଗନ କରି ଓ ସେମାନଙ୍କର ସାଧୁ ସଙ୍ଗ ଲାଭ କରି ନାସିକା ଦ୍ୱାରା ଭଗବତ୍ ବିଗ୍ରହର ପବିତ୍ର ସ୍ପର୍ଶ ଲାଭ କରିଥିବା ତୁଳସୀଦଳର ସୁଗନ୍ଧ ଆଘ୍ରାଣ କରି, ଜିହ୍ୱାରେ ଭଗବାନଙ୍କ ପ୍ରସାଦ ଆସ୍ୱାଦନ କରି, ପାଦରେ ପବିତ୍ର କ୍ଷେତ୍ରମାନ ପରିକ୍ରମା କରି, ମସ୍ତକ

ଦ୍ୱାରା ଭଗବାନଙ୍କ ପାଦପଦ୍ମରେ ପ୍ରଣାମ ଜଣାଇ ଭଗବାନଙ୍କ ନିମନ୍ତେ ମାଳ୍ୟ ଚନ୍ଦନାଦି ପ୍ରସ୍ତୁତ କରି ଅମ୍ବରୀଷ ନିଜର ସମସ୍ତ ଅତିବାହିତ କରୁଥିଲେ । ବିଷୟ-ଭୋଗ ପ୍ରତି ତାଙ୍କ ମନରେ ସାମାନ୍ୟ କାମନା ବା ଲୋଭ ନ ଥିଲା । ନିଜର ଦେହ ମନ-ପ୍ରାଣକୁ ଭଗବାନଙ୍କଠାରେ ଅର୍ପଣ କରି ଧର୍ମପ୍ରାଣ ବ୍ରାହ୍ମଣମାନଙ୍କର ପରାମର୍ଶ ଅନୁସାରେ ସେ ରାଜ୍ୟ ପାଳନ କରୁଥିଲେ ।

ରାଜା ଅମ୍ବରୀଷଙ୍କର ଭକ୍ତି ଓ ଧର୍ମପ୍ରାଣତାରେ ଭଗବାନ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ଭକ୍ତମାନଙ୍କର ସୁରକ୍ଷା ନିମନ୍ତେ ସଦା ବ୍ୟସ୍ତ ନିଜର ସୁଦର୍ଶନ ଚକ୍ରକୁ ରାଜା ଅମ୍ବରୀଷଙ୍କୁ ଅର୍ପଣ କରିଥିଲେ । ତଦନୁସାରେ ସୁଦର୍ଶନ ଚକ୍ର ଅଦୃଶ୍ୟରେ ରହି ସର୍ବଦା ରାଜା ଅମ୍ବରୀଷ-ଙ୍କର ଅନୁଗମନ କରୁଥିଲା ।

ଏକଦା ଭଗବାନ କୃଷ୍ଣଙ୍କ ଉଦ୍ଦେଶ୍ୟରେ ରାଜା ଅମ୍ବରୀଷ ଏକ ବର୍ଷବ୍ୟାପୀ ଦ୍ୱାଦଶୀ-ବ୍ରତ ପାଳନ କରୁଥିଲେ । ସେହି ସମୟରେ ଏକ ବିଶେଷ ଘଟଣା ଘଟିଗଲା । ରାଜା ଅମ୍ବରୀଷ କାର୍ତ୍ତିକ ମାସରେ ତିନିରାତି ଉପବାସ କରି ବ୍ରତ ସମାପନ କରିବା ନିମନ୍ତେ ପବିତ୍ର ଯମୁନା ନଦୀରେ ସ୍ନାନ କରି ଭଗବାନଙ୍କ ଉଦ୍ଦେଶ୍ୟରେ ପୂଜାର୍ଚ୍ଚନା କଲେ ଏବଂ ପୂଜା ପରେ ବ୍ରାହ୍ମଣମାନଙ୍କୁ ସାଦରେ ପୂଜା ଅଭ୍ୟର୍ଥନା ଜଣାଇ ଓ ବିବିଧ ସାମଗ୍ରୀ ସେମାନଙ୍କୁ ଦାନ କରି ଉତ୍କୃଷ୍ଟ ସୁସ୍ୱାଦୁ ଅନ୍ନ ଭୋଜନ ପ୍ରଦାନ କରି ସେମାନଙ୍କୁ ସନ୍ତୁଷ୍ଟ କଲେ । ଉପବାସ ପରେ ଅଳ୍ପ କିଛି ପାରଣା କରି ଉପବାସ ବ୍ରତ ସମାପ୍ତ କରିବା ହିଁ ବିଧି । ସେଥିପାଇଁ ଦ୍ୱାଦଶୀ ତିଥି ଅତିବାହିତ ହେବାକୁ ଅଳ୍ପ ସମୟ ଅଛି, ବ୍ରାହ୍ମଣମାନଙ୍କଠାରୁ ଅନୁମତି ନେଇ ରାଜା ଅମ୍ବରୀଷ ପାରଣା କରିବାକୁ ଯାଉଅଛନ୍ତି, ଏହି ସମୟରେ ମହର୍ଷି ଦୁର୍ବାସା ଅତିଥି ଭାବରେ ଅମ୍ବରୀଷଙ୍କ ଭବନରେ ଉପସ୍ଥିତ ହେଲେ । ମହର୍ଷି ଦୁର୍ବାସାଙ୍କୁ ଦେଖିବା ମାତ୍ରେ ରାଜା ଅମ୍ବରୀଷ ସଙ୍ଗେ ସଙ୍ଗେ ଆସି ତାଙ୍କୁ ସ୍ୱାଗତ ଅଭ୍ୟର୍ଥନା ଜଣାଇଲେ ଏବଂ ତାଙ୍କ ଭବନରେ ଭୋଜନ ଗ୍ରହଣ କରିବାକୁ ମହର୍ଷିଙ୍କୁ ନିମନ୍ତ୍ରଣ ଜଣାଇଲେ । ଅମ୍ବରୀଷଙ୍କର ଆମନ୍ତ୍ରଣ ଗ୍ରହଣ କରି ଦୁର୍ବାସା ଆହ୍ନିକ ଓ ସ୍ନାନକ୍ରିୟା ସମ୍ପାଦନ କରି ଭୋଜନ କରିବାକୁ କହି ଯମୁନା ନଦୀକୁ ଚାଲିଗଲେ ।

ନଦୀରେ ସ୍ନାନ ଓ ପୂଜାର୍ଚ୍ଚନା କରୁ କରୁ ଦୁର୍ବାସାଙ୍କର ବହୁ ସମୟ ବ୍ୟୟିତ ହେଲା । ଏଣେ ରାଜା ଅମ୍ବରୀଷ ଦୁର୍ବାସାଙ୍କୁ ଅପେକ୍ଷା କରି କରି ଶେଷରେ ଦେଖିଲେ ଯେ, ଦ୍ୱାଦଶୀ ତିଥି ଗଡ଼ିଯିବାକୁ ଅର୍ଦ୍ଧ ମୁହୂର୍ତ୍ତ ମାତ୍ର ସମୟ ଅବଶିଷ୍ଟ ଅଛି ଓ ସେହି ସମୟ ମଧ୍ୟରେ ପାରଣା ନ କଲେ ବ୍ରତ ପାଳନ ବ୍ୟର୍ଥ ହେବ ଏବଂ ଧର୍ମହାନୀ ଘଟିବ, ତେଣୁ ବ୍ରତ ରକ୍ଷା କରିବା ନିମନ୍ତେ ଅନ୍ତତଃ ପାରଣା କରିବା କର୍ତ୍ତବ୍ୟ । କିନ୍ତୁ ଦୁର୍ବାସାଙ୍କୁ ଯେତେବେଳେ ଅତିଥି ଭାବରେ ସେ ବରଣ କରିଛନ୍ତି, ସେତେବେଳେ ଅତିଥି ଭୋଜନ ନ କଲା ପର୍ଯ୍ୟନ୍ତ ସେ ବା କିପରି ଭୋଜନ କରିବେ, ଅମ୍ବରୀଷ ଏହି ଦ୍ୱନ୍ଦ୍ୱରେ ପଡ଼ି କିଛି ସ୍ଥିର କରିପାରିଲେ ନାହିଁ । ସମବେତ ବ୍ରାହ୍ମଣମାନଙ୍କର ପରାମର୍ଶ ଅମ୍ବରୀଷ ଭିକ୍ଷା କଲେ ।

ବ୍ରାହ୍ମଣମାନେ ବିଚାର କରି କହିଲେ, ଜଳ ପାନକୁ କେହି କେହି ଭୋଜନ ଭାବରେ ଗ୍ରହଣ କରିଥାନ୍ତି, ପୁଣି କେହି କେହି ତାକୁ ଭୋଜନରେ ଗଣ୍ୟ କରନ୍ତି ନାହିଁ । ତେଣୁ; ମହାରାଜ, ଆପଣ ଜଳ-ସେବନ କରି ପାରଣା କଲେ ବ୍ରତରକ୍ଷା ହେବ ଏବଂ ତଦ୍ଦ୍ୱାରା ଅତିଥି-ଙ୍କର ମଧ୍ୟ ଅମର୍ଯ୍ୟାଦା ହେବ ନାହିଁ ।

ବ୍ରାହ୍ମଣମାନଙ୍କର ପରାମର୍ଶ ଗ୍ରହଣ କରି ରାଜା ଅମ୍ବରୀଷ ସାମାନ୍ୟ ଜଳ ସେବନ କରି ବ୍ରତ ରକ୍ଷା କଲେ ଏବଂ ମହର୍ଷି ଦୁର୍ବାସାଙ୍କର ଆଗମନକୁ ପ୍ରତୀକ୍ଷା କରି ରହିଲେ ।

କିଛି ସମୟ ପରେ ମହର୍ଷି ଦୁର୍ବାସା ସ୍ନାନ ଓ ଆହ୍ନିକ ଆଦି ଶେଷ କରି ରାଜପ୍ରାସାଦକୁ ଆସିଲେ । ମହର୍ଷି ଦୁର୍ବାସା ଅସୀମ ଯୋଗ-ବଳର ଅଧିକାରୀ ଥିଲେ । ରାଜା ଅମ୍ବରୀଷ ଦୁର୍ବାସାଙ୍କ ଆଗମନକୁ ଅପେକ୍ଷା ନ କରି ଜଳପାନ କରିଅଛନ୍ତି ବୋଲି ଦୁର୍ବାସା ଯୋଗବଳରେ ଜାଣିପାରିଲେ । ରାଜାଙ୍କ ଦ୍ୱାରା ଅପମାନିତ ହୋଇଅଛନ୍ତି ବୋଲି ମନେ-କରି ଦୁର୍ବାସା କ୍ରୋଧରେ ଫାଟି ପଡ଼ିଲେ । ଦୁର୍ବାସା ଅତ୍ୟନ୍ତ କ୍ଷଣ-କୋପନ ସ୍ୱଭାବର ଲୋକ ଥିଲେ; ତା'ଛଡ଼ା ସେତେବେଳେ ଦୁର୍ବାସା ମଧ୍ୟ କ୍ଷୁଧାର୍ତ୍ତ ଥିଲେ । ଫଳରେ ଦୁର୍ବାସା ଅତ୍ୟଧିକ କ୍ରୋଧାନ୍ୱିତ ହୋଇପଡ଼ିବାରୁ, ରାଜା ଅମ୍ବରୀଷ ଦୁର୍ବାସାଙ୍କ ନିକଟରେ ବିନୀତ ହୋଇ

ନିଜର କାର୍ଯ୍ୟ ପାଇଁ ଯେତେ କ୍ଷମା ଗୁହିଁଲେ ମଧ୍ୟ ଓ ମହର୍ଷିଙ୍କର ପ୍ରସନ୍ନତା ଭିକ୍ଷା କଲେ ମଧ୍ୟ, ଦୁର୍ବାସା କିଛି ଶୁଣିଲେ ନାହିଁ ।

କ୍ରୋଧାନ୍ୱିତ ଦୁର୍ବାସା ବରଂ କହିଲେ, 'ଦେଖ ହେ, ଏହି ନୃଶଂସ ନିଜଐଶ୍ୱର୍ଯ୍ୟ ଓ ପ୍ରଭୁତ୍ୱ ଗର୍ବରେ ବିଷ୍ଣୁଙ୍କର ଅବମାନନା କରିବା ସଙ୍ଗେ ସଙ୍ଗେ ଧର୍ମର ମର୍ଯ୍ୟାଦା ମଧ୍ୟ ଲଙ୍ଘନ କରିଅଛି । ମୁଁ ଅତିଥି ରୂପରେ ଉପସ୍ଥିତ ହେବାପରେ ମୋତେ ନିମନ୍ତ୍ରଣ କରି ଅତିଥିକୁ ଭୋଜନ ପ୍ରଦାନ କରିବା ପୂର୍ବରୁ ନିଜେ ଭୋଜନ କରିଅଛି । ଏହି ଅପରାଧର ଫଳ ତୁ ବର୍ତ୍ତମାନ ଭୋଗ କରିବୁ ।'

ଏହା କହି ମହର୍ଷି ଦୁର୍ବାସା ନିଜର ଜଟାରୁ ଗୋଟିଏ କେଶ ଉତ୍ପାଟନ କରି 'ଅମ୍ବରୀଷକୁ ଧ୍ୱଂସ କର' ବୋଲି କହି କେଶଟିକୁ ଅମ୍ବରୀଷଙ୍କ ଉପରକୁ ନିକ୍ଷେପ କଲେ । ସେହି କେଶଟି ନିକ୍ଷିପ୍ତ ହେବାମାତ୍ରେ ଏକ ଖଡ଼୍‌ଗଧାରୀ ଘୋର ପୁରୁଷରେ ରୂପାନ୍ତରିତ ହୋଇ ଅମ୍ବରୀଷଙ୍କୁ ଆକ୍ରମଣ କରିବାକୁ ଆଗେଇ ଆସିଲା ।

କିନ୍ତୁ ଜ୍ୱଳନ୍ତ ଅଗ୍ନି ସମ ହେଇ ଘୋର ଅକ୍ରମଣ କରିବାକୁ ମାଡ଼ିଆସୁଥିବାର ଦେଖି ମଧ୍ୟ ରାଜା ଅମ୍ବରୀଷ ସାମାନ୍ୟତମ ବିଚଳିତ ହେଲେ ନାହିଁ । ଭକ୍ତମାନଙ୍କର ସୁରକ୍ଷା କାର୍ଯ୍ୟରେ ସଦା ନିଯୁକ୍ତ ଥିବା ଭଗବାନଙ୍କର ସୁଦର୍ଶନ ଚକ୍ର ସଙ୍ଗେ ସଙ୍ଗେ ଆବିର୍ଭୂତ ହୋଇ ଦୁର୍ବାସାଙ୍କ ପ୍ରେରିତ ଘୋର ପୁରୁଷକୁ ଅବିଳମ୍ବେ ସଂହାର କଲା ଏବଂ ଦୁର୍ବାସାଙ୍କୁ ଧ୍ୱଂସ କରିବା ନିମନ୍ତେ ଆଗେଇ ଆସିଲା । ସୁଦର୍ଶନ ଚକ୍ରର ଆକ୍ରମଣରେ ଆଶଂକିତ ହୋଇ ପ୍ରାଣରକ୍ଷା ନିମନ୍ତେ ଦୁର୍ବାସା ପଳାୟନ କଲେ । କିନ୍ତୁ ସେ ଯେଉଁଆଡ଼େ ଗଲେ ସୁଦର୍ଶନ ଚକ୍ର ତାଙ୍କର ଅନୁଧାବନ କଲା ଏବଂ ସୁଦର୍ଶନ ଚକ୍ରର ପ୍ରଜ୍ୱଳିତ ଦାବାଗ୍ନି ସଦୃଶ ଅସହ୍ୟ ତେଜରେ ଦୁର୍ବାସା ପୀଡ଼ିତ ହୋଇ ଆକାଶ, ପୃଥିବୀ, ସମୁଦ୍ର, ପାତାଳ ଏପରିକି ତ୍ରିଭୁବନ ବୁଲିଲେ ମଧ୍ୟ ସୁଦର୍ଶନ ଚକ୍ରର ଆକ୍ରମଣରୁ ପରିତ୍ରାଣ ପାଇଲେ ନାହିଁ । ସେ ଆଶ୍ରୟ ନେବା ନିମନ୍ତେ ବ୍ରହ୍ମାଙ୍କ ନିକଟକୁ ଗଲେ; କିନ୍ତୁ ସୁଦର୍ଶନ ଚକ୍ରର ଆକ୍ରମଣରୁ ରକ୍ଷା କରିବାର କ୍ଷମତା ବ୍ରହ୍ମାଙ୍କର ନାହିଁ ବୋଲି କହି ବ୍ରହ୍ମା ନିଜର ଅକ୍ଷମତା ପ୍ରକାଶ କରିବାରୁ ସେଠାରୁ ନିରାଶ ହୋଇ ଶିବଙ୍କ ନିକଟକୁ ଗଲେ ଏବଂ ସେଠାରୁ ମଧ୍ୟ ନିରାଶ ହୋଇଥିଲେ ।

ବ୍ରହ୍ମା କହିଥିଲେ, ଏହି ଅଖିଳ ଜଗତର ଯେ ପ୍ରଳୟକର୍ତ୍ତା, ସେ ଇଚ୍ଛାକଲେ ନିମିଷକ ମଧ୍ୟରେ ସମସ୍ତ ବିଶ୍ୱ ସହିତ ମୋର ଏହି ବ୍ରହ୍ମ-ଲୋକର ମଧ୍ୟ କୌଣସି ସତ୍ତା ରହିବ ନାହିଁ । ଶିବ, ଦକ୍ଷ, ଇନ୍ଦ୍ର ପ୍ରମୁଖଙ୍କ ସହ ମୁଁ ଯାହାଙ୍କର ଆଜ୍ଞାବହନକାରୀ, ସେହି ପରମ ପୁରୁଷ ବିଷ୍ଣୁଙ୍କ ଭକ୍ତର ସୁରକ୍ଷା ନିମନ୍ତେ ନିୟୋଜିତ ସୁଦର୍ଶନ ଚକ୍ରର ଆକ୍ରମଣରୁ ତୁମକୁ ରକ୍ଷା କରିପାରିବି ନାହିଁ । ତାହା ମୋର କ୍ଷମତା ବହିର୍ଭୂତ ବିଷୟ ।

କୈଳାସପତି ଶିବ କହିଲେ, "ବାବା, ଯେଉଁ ବ୍ରହ୍ମାଣ୍ଡରେ ଆମେ ଏତେ ସ୍ଥିତ ଫୁଲିଲଇ ବୁଲୁଛୁ ଏବଂ ଏହିପରି ଅସଂଖ୍ୟ ବିଶ୍ୱବ୍ରହ୍ମାଣ୍ଡ ଯାହାଙ୍କ ମଧ୍ୟରୁ ସଦା ଉତ୍ପନ୍ନ ହୋଇ ଯାହାଙ୍କଠାରେ ସଦା ବିଲୀନ ହେଉଅଛି, ସେହି ଜଗତ୍‌କର୍ତ୍ତା, ଅଚିନ୍ତ୍ୟ, ଅନାଦି ପୁରୁଷ, ପରମେଶ୍ୱରଙ୍କ ଉପରେ ଆମର କର୍ତ୍ତୃତ୍ୱ ଥାଇପାରେ ନା । ସନତ୍ କୁମାର, ନାରଦ, ବ୍ରହ୍ମା, କପିଳ, ବ୍ୟାସ, ଦେବଳ, ଧର୍ମ ପ୍ରମୁଖଙ୍କ ସହ ମୁଁ ସର୍ବଜ୍ଞ ହୋଇ ମଧ୍ୟ ଯାହାଙ୍କର ସ୍ୱରୂପର ଅନ୍ତ ପାଇ ନାହୁଁ ଏବଂ ଅନ୍ୟ ପକ୍ଷରେ ତାଙ୍କର ମାୟାରେ ମୋହିତ ହୋଇ ପଡ଼ିଥାଏ, ସେହି ଅଖିଳ ବିଶ୍ୱର ଅଧିବାସୀ ଭଗବାନଙ୍କର ଆୟୁଧ ସୁଦର୍ଶନଚକ୍ରକୁ ପ୍ରତିହତ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ସୁଦର୍ଶନଚକ୍ରର ଆକ୍ରମଣରୁ ରକ୍ଷା ପାଇବାକୁ ଚାହୁଁଥିଲେ ତୁମେ ଭଗବାନ ବିଷ୍ଣୁଙ୍କର ଶରଣାପନ୍ନ ହୁଅ ।"

ସମସ୍ତଙ୍କଠାରୁ ଏହିପରି ନିରାଶ ହୋଇ ମହର୍ଷି ଦୁର୍ବାସା ବୈକୁଣ୍ଠକୁ ଯାତ୍ରା କରି ଭଗବାନଙ୍କ ଶ୍ରୀଚରଣରେ ଶରଣାପନ୍ନ ହେଲେ ଏବଂ ସୁଦର୍ଶନଚକ୍ରର ଅସହ୍ୟ ତେଜରେ ସନ୍ତପ୍ତ ହୋଇ କାତର ସ୍ୱରରେ କହିଲେ, "ହେ ପ୍ରଭୁ, ହେ ଅଚ୍ୟୁତ, ହେ ଅନନ୍ତ, ହେ ବିଶ୍ୱଭାବନ, ହେ ସଜ୍ଜନବାଞ୍ଛିତ, ମୋର ଦୋଷ ହୋଇଅଛି । ମୋତେ ରକ୍ଷା କରନ୍ତୁ । ଆପଣଙ୍କ ପାପପ୍ରକ୍ଷାଳନ ନାମ ସ୍ମରଣ କରି ନରକ ପରି ଯନ୍ତ୍ରଣାରୁ ଅପରାଧୀମାନେ ମୁକ୍ତି ପାଇଥାନ୍ତି । ହେ ବିଧାତା, ମୁଁ ଆପଣଙ୍କର ଭକ୍ତମାନଙ୍କର ଅସୀମ ଭକ୍ତିର ପ୍ରଭାବ ବୁଝି ନ ପାରି ଘୋର ଅପରାଧ କରିଅଛି । ମୋର ଦୋଷ ମାର୍ଜନା କରନ୍ତୁ, ମୋତେ ରକ୍ଷା କରନ୍ତୁ ।"

ଦୁର୍ବାସାଙ୍କର ପ୍ରାର୍ଥନା ଶୁଣି ଭଗବାନ କହିଲେ, 'ବ୍ରାହ୍ମଣ, ମୁଁ ସର୍ବଦା ଭକ୍ତଙ୍କର ଅଧୀନ । ତେଣୁ ମୁଁ ସ୍ୱତନ୍ତ୍ର ହୋଇ ମଧ୍ୟ ଏହିପରି ଭାବରେ ସ୍ୱାତନ୍ତ୍ର୍ୟହୀନ । ମୋର ଭକ୍ତମାନେ ମୋର ପ୍ରାଣଠାରୁ ଅଧିକ ପ୍ରିୟ । ମୋର ପ୍ରାଣ ସର୍ବଦା ଭକ୍ତସର୍ବସ୍ୱ । ସମସ୍ତ ଐଶ୍ୱର୍ଯ୍ୟକୁ ମୁଁ ଚିରକାଳ ତ୍ୟାଗ କରିପାରେ, ଏପରି କି ମୁଁ ମୋ ନିଜକୁ ତ୍ୟାଗ କରିପାରେ; କିନ୍ତୁ ଭକ୍ତମାନଙ୍କୁ ତ୍ୟାଗ କରି ମୁଁ ଦଣ୍ଡିକ ପାଇଁ ରହିପାରିବି ନାହିଁ । ଯେଉଁ ବ୍ୟକ୍ତିମାନେ ପ୍ରିୟ ପରିଜନ, ଗୃହ, ଧନ ସମ୍ପତ୍ତି, ନିଜର ପ୍ରାଣ, ଏପରି କି ଇହଲୋକ ଓ ପରଲୋକ ସମ୍ପର୍କୀୟ ସମସ୍ତ ଆନନ୍ଦକୁ ଭୁଲି ମୋର ଶରଣାପନ୍ନ ହୋଇଅଛନ୍ତି, ମୁଁ ସେମାନଙ୍କୁ ପରିତ୍ୟାଗ କରିପାରେ ନାହିଁ । ସତୀ ରମଣୀମାନେ ନିଜର ସ୍ୱାମୀଙ୍କୁ ଯେପରି ମୋହିତ କରି ରଖିଥାନ୍ତି, ସେହିପରି ଭଗବତ୍ ତଦ୍‌ଗତ-ପ୍ରାଣ ଭକ୍ତମାନେ ନିଜର ଭକ୍ତି ଦ୍ୱାରା ମୋତେ ସର୍ବଦା ବଶୀଭୂତ କରି ରଖିଥାନ୍ତି । ସାଧୁ ଓ ଭକ୍ତମାନେ ମୋର ହୃଦୟ ପ୍ରାଣ ଏବଂ ମୁଁ ମଧ୍ୟ ସେମାନଙ୍କର ହୃଦୟ ସ୍ୱରୂପ । ମୋତେ ଛାଡ଼ି ସେମାନେ ବା ସେମାନଙ୍କୁ ତ୍ୟାଗ କରି ମୁଁ ଦଣ୍ଡେ ରହିପାରିବି ନାହିଁ । ତେଣୁ ହେ ବ୍ରାହ୍ମଣ, ତୁମେ ଯେପରି ରକ୍ଷା ପାଇବ, ସେହି ପନ୍ଥା ମୁଁ କହୁଅଛି ଶୁଣ । ଯାହାଙ୍କ ସହିତ ଦ୍ରୋହ କରିବା ଫଳରେ ଏପରି ବିପଦର ସୃଷ୍ଟି ହୋଇଅଛି, ତୁମେ ଅତି ଶୀଘ୍ର ସେହି ଅମ୍ବରୀଷଙ୍କର ଶରଣାପନ୍ନ ହୁଅ । ସାଧୁମାନଙ୍କ ପ୍ରତି ଅଯଥା ଦ୍ରୋହ ବା ହିଂସା କଲେ ବା ସେମାନଙ୍କ ବିରୁଦ୍ଧରେ ଶକ୍ତି ପ୍ରୟୋଗ କଲେ ତାହା ଦ୍ରୋହକାରୀ ବା ପ୍ରୟୋଗକାରୀର ଅନିଷ୍ଟ ହିଁ ସାଧନ କରିଥାଏ । ବ୍ରାହ୍ମଣମାନଙ୍କର ତପସ୍ୟା ଓ ବିଦ୍ୟା ଉଭୟ ମଙ୍ଗଳ-ଜନକ ହୋଇଥିଲେ ମଧ୍ୟ ତପସ୍ୱୀ ବା ବିଦ୍ୱାନ ବ୍ୟକ୍ତିମାନେ ଦୁଷ୍ଟ ସ୍ୱଭାବର ହୋଇଥିଲେ ସେମାନଙ୍କର ତପସ୍ୟା ଓ ବିଦ୍ୟା ବିପରୀତ ଫଳ ପ୍ରଦାନ କରିଥାଏ । ତୁମେ ତେଣୁ କାଳବିଳମ୍ବ ନ କରି ରାଜା ଅମ୍ବରୀଷଙ୍କର ଶରଣାପନ୍ନ ହୁଅ । ସେହି ଭାଗ୍ୟବାନ ଅମ୍ବରୀଷଙ୍କର ପ୍ରସନ୍ନତା ଭିକ୍ଷା କରିପାରିଲେ ତୁମର ମଙ୍ଗଳ ହେବ ।'

ଭଗବାନ ବିଷ୍ଣୁଙ୍କର ପରାମର୍ଶ ଅନୁସାରେ ମହର୍ଷି ଦୁର୍ବାସା ସଙ୍ଗେ ସଙ୍ଗେ ଆସି ରାଜା ଅମ୍ବରୀଷଙ୍କର ପଦଯୁଗଳ ଧରି ତଳେ ଲୋଟିଗଲେ ।

ମହର୍ଷି ଦୁର୍ବାସାଙ୍କ ପରି ବ୍ରାହ୍ମଣ ତାଙ୍କ ପାଦଧରି କ୍ଷମା ଭିକ୍ଷା କରୁଅଛନ୍ତି ଦେଖି କରୁଣାର୍ଦ୍ର ଚିତ୍ତ ରାଜା ଅମ୍ବରୀଷଙ୍କର ଲଜ୍ଜାର ସୀମା ରହିଲା ନାହିଁ । ଅମ୍ବରୀଷ ସୁଦର୍ଶନ ଚକ୍ରକୁ ଶାନ୍ତ କରିବା ନିମନ୍ତେ ସ୍ତୁତି କଲେ ।

ଅମ୍ବରୀଷ କହିଲେ, 'ହେ ସୁଦର୍ଶନ, ହେ ସହସ୍ରାର, ହେ ଅଚ୍ୟୁତପ୍ରିୟ, ହେ ଅଜିତ, ଆପଣଙ୍କ ଅଦ୍ଭୁତ ତେଜ ଓ ବେଗର ତୁଳନା ନାହିଁ । ହେ ଦୈତ୍ୟବଂଶ ବିନାଶକ, ଆପଣଙ୍କୁ ନମସ୍କାର କରୁଅଛି । ଆପଣ ବ୍ରାହ୍ମଣ ଦୁର୍ବାସାଙ୍କ ପ୍ରତି ପ୍ରସନ୍ନ ହୋଇ ତାଙ୍କୁ ରକ୍ଷା କରନ୍ତୁ । ଦୁଷ୍ଟମାନଙ୍କୁ ଶାସ୍ତି ଦେବା ନିମନ୍ତେ ଭଗବାନ ଆପଣଙ୍କୁ ସର୍ବଦା ପ୍ରେରଣ କରିଥାନ୍ତି । ଆମ ବଂଶର କଲ୍ୟାଣ ସାଧନ ନିମନ୍ତେ, ଏହି ବ୍ରାହ୍ମଣଙ୍କର ମଙ୍ଗଳ ବିଧାନ କରନ୍ତୁ । ଏହି ବ୍ରାହ୍ମଣ ବିପଦମୁକ୍ତ ହେଲେ ତାହା ହିଁ ହେବ ମୋ ପାଇଁ ଆପଣଙ୍କର ଅନୁଗ୍ରହ । ଭଗବାନଙ୍କୁ ସେବା ଭକ୍ତି କରି ଯଦି ମୁଁ ସାମାନ୍ୟତମ ପୁଣ୍ୟ ଅର୍ଜନ କରିଥାଏ, ସେହି ପୁଣ୍ୟ ପ୍ରସାଦରୁ ମହର୍ଷିଙ୍କୁ ରକ୍ଷା କରନ୍ତୁ ।'

ରାଜା ଅମ୍ବରୀଷଙ୍କର ଭକ୍ତିପ୍ଲୁତ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ସୁଦର୍ଶନ ଚକ୍ର ଶାନ୍ତ ହୋଇ ଅଦୃଶ୍ୟ ହୋଇ ଯାଇଥିଲେ । ମହର୍ଷି ଦୁର୍ବାସା ଏକ ନିଶ୍ଚିତ ବିପଦରୁ ରକ୍ଷା ପାଇଗଲେ ।

ରାଜା ଅମ୍ବରୀଷଙ୍କର ଅନୁପମ ଉଦାହରଣ ଲକ୍ଷ୍ୟ କରି ମହର୍ଷି ଦୁର୍ବାସା କହିଲେ, 'ମହାରାଜ, ଆପଣଙ୍କ ପ୍ରତି ଶତ୍ରୁତା କରି ବିରାଟ ଅପରାଧ କରିଥିଲେ ମଧ୍ୟ ଆପଣ ଯେ ମୋର କଲ୍ୟାଣ ସାଧନରେ ବ୍ରତୀ ହେଲେ, ସେହି ଉଦାହରଣର ବାସ୍ତବିକ ତୁଳନା ନାହିଁ । ମୁଁ ଆଜି ଭଗବତ୍ ଭକ୍ତଙ୍କର ଅନୁପମ ମହତ୍ତ୍ୱ ଦର୍ଶନ କଲି । ଯେ ନିଜର ଭକ୍ତି ଦ୍ୱାରା ପୁରୁଷଶ୍ରେଷ୍ଠ ଭଗବାନଙ୍କୁ ବଶୀଭୂତ କରିଅଛନ୍ତି, ସେହି ମହାତ୍ମାଙ୍କ ପକ୍ଷରେ ଅସାଧ୍ୟ କିଛି ନାହିଁ । ଆପଣଙ୍କ ପ୍ରତି ଶତ୍ରୁତା କରିଥିଲେ ମଧ୍ୟ ଆପଣ ସେସବୁ ଭୁଲିଯାଇ ମୋର ପ୍ରାଣ ରକ୍ଷାକରି କ୍ଷମା ଓ କରୁଣାର ସୁନ୍ଦର ଦୃଷ୍ଟାନ୍ତ ପ୍ରତିଷ୍ଠା କଲେ ଏବଂ ମୋତେ ଚିରନ୍ତନପାଇଁ ଅନୁଗୃହୀତ କଲେ । ଆପଣ ଧନ୍ୟ ! ସମଗ୍ର ପୃଥିବୀ ଆପଣଙ୍କର ଯଶ ଚିରକାଳ ଗାନ କରୁଥିବ ।'

ଦୁର୍ବାସା ଏହା କହି ରାଜା ଅମ୍ବରୀଷଙ୍କର ଉଦାରତା ଓ ଦୟାର ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । ଏ ମଧ୍ୟରେ ଏକ ବର୍ଷକାଳ ଅତିବାହିତ ହୋଇ ଯାଇଥିଲେ ମଧ୍ୟ ଉଭୟ, ଦୁର୍ବାସା ଓ ଅମ୍ବରୀଷ ଅଭୁକ୍ତ ଥିଲେ । ତେଣୁ ରାଜା ଅମ୍ବରୀଷ ଦୁର୍ବାସାଙ୍କର ପାଦଧରି ପ୍ରଣାମ କଲେ ଏବଂ ନିଜର ତ୍ରୁଟି ପାଇଁ କ୍ଷମା ଭିକ୍ଷା କଲେ । ଦୁର୍ବାସାଙ୍କୁ ପ୍ରସନ୍ନ କରି ତାଙ୍କୁ ଉତ୍କୃଷ୍ଟ ଅନ୍ନାଦି ଭୋଜନରେ ଆପ୍ୟାୟିତ କରିଥିଲେ ।

ରାଜାଙ୍କଠାରୁ ପ୍ରସନ୍ନ ଚିତ୍ତରେ ବିଦାୟ ନେଇ ଦୁର୍ବାସା ଚାଲିଗଲା ପରେ ଦୁର୍ବାସଙ୍କ ପବିତ୍ର ଉଚ୍ଛିଷ୍ଟ ଅନ୍ନକୁ ଭୋଜନ କରି ଅମ୍ବରୀଷ ନିଜର ଉପବାସ ବ୍ରତ ସମାପନ କରିଥିଲେ ।

ଅମ୍ବରୀଷଙ୍କର ଏହି ପବିତ୍ର ଚରିତ ଭକ୍ତିର ଅପୂର୍ବ ପରାକାଷ୍ଠାର ସାଶ୍ୱତ ଦୃଷ୍ଟାନ୍ତ ହୋଇ ରହିଅଛି ।



## ଯଯାତିଙ୍କର ଆତ୍ମତତ୍ତ୍ୱ

ଧର୍ମପ୍ରାଣ ରାଜା ନହୁଷଙ୍କର ବହୁପୁତ୍ରଙ୍କ ମଧ୍ୟରେ ଯଯାତି ଥିଲେ ଅନ୍ୟତମ । ନିଜର ପୁଣ୍ୟ ବଳରେ ରାଜା ନହୁଷ ସ୍ୱର୍ଗରାଜ୍ୟ ପ୍ରାପ୍ତ ହୋଇଥିଲେ; କିନ୍ତୁ ପରେ ଦେବରାଜ ଇନ୍ଦ୍ରଙ୍କର ପତ୍ନୀ ଶଚୀ ଦେବୀଙ୍କ ପ୍ରତି ଧୃଷ୍ଟତା ପ୍ରକାଶ କରି ମହର୍ଷି ଅଗସ୍ତ୍ୟଙ୍କ ଦ୍ୱାରା ଶାପଗ୍ରସ୍ତ ହୋଇ ଅଜଗର ସର୍ପ ହୋଇ ସ୍ୱର୍ଗଚ୍ୟୁତ ହୋଇଥିଲେ । ତେଣୁ ପିତୃରାଜ୍ୟରେ ଯଯାତି ଅଭିଷିକ୍ତ ହୋଇଥିଲେ ।

ସେହି ସମୟରେ ଅସୁରମାନଙ୍କର ରାଜା ଥିଲେ ବୃଷପର୍ବା । ଅସୁରମାନଙ୍କର ଗୁରୁ ଥିଲେ ଶୁକ୍ରାଚାର୍ଯ୍ୟ । ଦାନବରାଜ ବୃଷପର୍ବାଙ୍କର ଶର୍ମିଷ୍ଠା ନାମରେ ଏକ କନ୍ୟା ଥିଲେ । ଶୁକ୍ରାଚାର୍ଯ୍ୟଙ୍କର କନ୍ୟାର ନାମ ଥିଲା ଦେବଯାନୀ । ଶର୍ମିଷ୍ଠା ଓ ଦେବଯାନୀଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ଥିଲା ।

ଦିନେ ଦେବଯାନୀଙ୍କୁ ସଙ୍ଗରେ ନେଇ ଶର୍ମିଷ୍ଠା ନିଜର ସହସ୍ର ସଖୀ ଓ ଦାସୀଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଅରଣ୍ୟ ମଧ୍ୟସ୍ଥିତ ପୁଷ୍ପଶୋଭିତ ଏକ ସୁରମ୍ୟ କାନନକୁ ପରିଭ୍ରମଣ କରିବାକୁ ଯାଇଥିଲେ । କାନନ ଭ୍ରମଣ ସମୟରେ ସମବୟସୀ ସଖୀମାନଙ୍କ ସହିତ ଶର୍ମିଷ୍ଠା ଓ ଦେବଯାନୀ କାନନସ୍ଥିତ ସରୋବରରେ ସ୍ନାନ ଓ ଜଳକ୍ରୀଡ଼ା କରିବାକୁ ଇଚ୍ଛା କଲେ ଏବଂ ସମସ୍ତେ ଉଲଗ୍ନ ହୋଇ ସରୋବର ଜଳରେ ପ୍ରବେଶ କଲେ । ସେହି ସମୟରେ ଶିବ ଓ ପାର୍ବତୀଙ୍କୁ ବୃଷ ଉପରେ ଆରୋହଣ କରି ସେହି ସରୋବର ଉପରିସ୍ଥ ଆକାଶ ପଥରେ ଯାଉଥିବାର ଦେଖି ସେହି ଯୁବତୀମାନେ ସରୋବରରୁ ସହସା ଉଠିଆସି ସରୋବର କୂଳରେ ଥିବା ଲୁଗା ଗୁଡ଼ିକୁ ଅତି ତରବରରେ ପିନ୍ଧିଲେ । ସେହି ବ୍ୟସ୍ତତା ମଧ୍ୟରେ ଶର୍ମିଷ୍ଠା ଅଜ୍ଞାନତାବଶତଃ ସଖୀ ଦେବଯାନୀଙ୍କର ବସ୍ତ୍ରକୁ ନିଜର ଭାବି ପିନ୍ଧି ପକାଇଥିଲେ । ତେଣୁ ପିନ୍ଧିବାକୁ ନିଜର ବସ୍ତ୍ର ନ ପାଇ ଏବଂ ପରେ

ଶର୍ମିଷ୍ଠାଙ୍କୁ ତାହା ପରିଧାନ କରିଥିବାର ଦେଖି ଦେବଯାନୀ କ୍ରୋଧ ସ୍ୱରରେ ହିତାହିତ ଜ୍ଞାନଶୂନ୍ୟ ହୋଇ କହିଲେ, 'ଏହି ଦାସୀର ସ୍ପର୍ଦ୍ଧା ଦେଖ । କୁକ୍କୁର ଯଜ୍ଞହବି ସେବନ କଲା ପରି, ଏ ମୋର ପଟ୍ଟବସ୍ତ୍ରକୁ ପରିଧାନ କରିଅଛି । ଯେଉଁମାନେ ତପସ୍ୟାବଳରେ ଏହି ଜଗତ ସୃଷ୍ଟି କରିଅଛନ୍ତି, ଯେଉଁମାନେ ଭଗବାନ ବିଷ୍ଣୁଙ୍କର ମୁଖ ସ୍ୱରୂପ, ଯେଉଁ-ମାନେ ଜ୍ୟୋତିର୍ମୟ ବ୍ରହ୍ମତତ୍ତ୍ୱ ଅବଗତ ହୋଇଅଛନ୍ତି, ଯେଉଁମାନେ ବୈଦିକ ପଥର ଦ୍ରଷ୍ଟା ଓ ଉପଦେଷ୍ଟା, ଭଗବାନ ବିଷ୍ଣୁ ପ୍ରମୁଖ ଯେଉଁମାନଙ୍କୁ ସମ୍ମାନ କରିଥାନ୍ତି, ସେହି ବ୍ରାହ୍ମଣମାନେ ସର୍ବଦା ପୂଜ୍ୟ । ସେ ସର୍ବଜନପୂଜ୍ୟ ବ୍ରାହ୍ମଣମାନଙ୍କ ମଧ୍ୟରେ ଆମ ଭୃଗୁବଂଶର ସ୍ଥାନ ଅତି ଉଚ୍ଚରେ । ଆମ୍ଭେମାନେ ସେଥିପାଇଁ ବହୁ ସମ୍ମାନର ଅଧିକାରୀ । ଏହି ଦାସୀର ପିତା ବୃଷପର୍ବା ମୋ ପିତାଙ୍କର ଶିଷ୍ୟ । ଏପରି ସ୍ଥଳେ ଶୂଦ୍ରର ବେଦପାଠ ପରି ଏହି ଅସଭ୍ୟ ଅସୁରକନ୍ୟା ମୋ'ପରି ବ୍ରାହ୍ମଣ-କନ୍ୟାର ପବିତ୍ର ବସ୍ତ୍ରକୁ ପରିଧାନ କରିଅଛି ।'

ଦାସୀମାନଙ୍କ ସମ୍ମୁଖରେ ଶର୍ମିଷ୍ଠାଙ୍କୁ ଏହା କହି ଦେବଯାନୀ ତିରସ୍କାର କରିବାରୁ ଶର୍ମିଷ୍ଠା ପକ୍ଷରେ ସେ ସବୁ ଅପମାନ ଅସହ୍ୟ ହେଲା । ସେ ମଧ୍ୟ ପ୍ରତ୍ୟୁତ୍ତର ଛଳରେ ଦେବଯାନୀଙ୍କୁ ଦୁଇକଥା ଶୁଣାଇବାକୁ ଭୁଲିଲା ନାହିଁ । ଶର୍ମିଷ୍ଠା କହିଲା, 'ଚୁପ କର ଭିକାରୁଣୀ, ଛୋଟ ତୁଣ୍ଡରେ ଖୁବ୍ ବଡ଼ ବଡ଼ କଥା କହିଯାଉଛୁ । ଆମ ହାତଟେକାକୁ ତୁମେ ଗର୍ବି ବସିଛ । ଆମଠାରୁ ଦାନ ନ ପାଇଲେ ତୁମ ପେଟରେ ଦାନା ପଡ଼େ ନା, ତୁ ପୁଣି ମୋତେ ଭର୍ତ୍ସନା କରିବୁ ?'

ଦୁଇ ସଖୀଙ୍କ ମଧ୍ୟରେ ଏହିପରି କଥା କଟାକଟି ହେଉ ହେଉ ଅବସ୍ଥା ଏପରି ହେଲା ଯେ, ଶର୍ମିଷ୍ଠା ଓ ତାର ଦାସୀମାନେ ଦେବଯାନୀଙ୍କୁ ଭର୍ତ୍ସନା କରି ଓ ତା'ର ପରିଧାନ ତା'ଠାରୁ କାଢ଼ି ନେଇ ଉଲଗ୍ନ ଅବସ୍ଥାରେ ଦେବଯାନୀଙ୍କୁ ଏକ ପରିତ୍ୟକ୍ତ କୂପ ମଧ୍ୟକୁ ଠେଲି ଦେଇ ଶର୍ମିଷ୍ଠା ସଖୀ ଓ ଦାସୀମାନଙ୍କ ସହିତ ରାଜପ୍ରାସାଦକୁ ଫେରିଆସିଲା ।

ଦେବଯାନୀ ଏହିପରି ଭାବରେ ଦୁର୍ଦ୍ଦଶାଗ୍ରସ୍ତ ହୋଇ କୂପ ମଧ୍ୟରେ ପଡ଼ିଥିବା ସମୟରେ ରାଜା ଯଯାତି ମୃଗୟାରେ ଯାଇ ସେଠାରେ ଦୈବାତ୍ ଉପସ୍ଥିତ ହୋଇ ଦେବଯାନୀଙ୍କୁ ଦେଖିଲେ । ଯୁବତୀଟି ଉଲଗ୍ନ

ଥିବାରୁ ଯଯାତି ପ୍ରଥମେ ନିଜର ଉତ୍ତରୀୟଟିକୁ ଦେବଯାନୀଙ୍କୁ ପରିଧାନ କରିବାକୁ ଦେଇ ପରେ ଦେବଯାନୀର ହାତ ଧରି କୂପ ମଧ୍ୟରୁ ତାଙ୍କୁ ଉଦ୍ଧାର କଲେ ।

ନିଜର କୃତଜ୍ଞତା ପ୍ରକାଶ କରିବାକୁ ଯାଇ ଯୁବତୀ ଦେବଯାନୀ ସୌମ୍ୟଦର୍ଶନ ଦଶର୍ଥୀ ରାଜା ଯଯାତିଙ୍କୁ କହିଲେ; "ମହାରାଜ, କୂପରୁ ମୋତେ ଉଦ୍ଧାର କଲାବେଳେ ଆପଣ ମୋର ପାଣି ଗ୍ରହଣ କରିଅଛନ୍ତି । ଏହା ଦୈବକୃତ, କାରଣ ପୂର୍ବେ ମୁଁ ବୃହସ୍ପତିଙ୍କ ପୁତ୍ର କଚଙ୍କୁ ଅଭିଶାପ ଦେବାରୁ ସେ ମୋତେ ପ୍ରତିଅଭିଶାପ ଦେଇ କହିଲେ ଯେ, କୌଣସି ବ୍ରାହ୍ମଣ ମୋତେ ବିବାହ କରିବ ନାହିଁ । ଯାହାହେଉ ବ୍ରାହ୍ମଣ କନ୍ୟା ସହ କ୍ଷତ୍ରିୟର ବିବାହ ଶାସ୍ତ୍ରନିଷିଦ୍ଧ ହେଲେ ମଧ୍ୟ ଏହା ଦୈବକୃତ ହୋଇଥିବାରୁ ମୁଁ ଆପଣଙ୍କୁ ସ୍ୱାମୀ ଭାବରେ ଗ୍ରହଣ କରୁଅଛି ।"

ରାଜା ଏହି ଘଟଣାର ଆକସ୍ମିକତାରେ ଅଭିଭୂତ ହୋଇ ଦେବଯାନୀଙ୍କ ସହ ନିଜର ସାକ୍ଷାତ ଓ ମିଳନକୁ ବିଧିନିର୍ଦ୍ଦିଷ୍ଟ ବୋଲି ଗ୍ରହଣ କରି ଦେବଯାନୀଙ୍କୁ ନିଜର ପତ୍ନୀ ଭାବରେ ଗ୍ରହଣ କରିବାକୁ ସ୍ୱୀକୃତ ହୋଇଥିଲେ ।

ଦେବଯାନୀ ଘରକୁ ଫେରି କାନ୍ଦି କାନ୍ଦି ପିତା ଶୁକ୍ରାଚାର୍ଯ୍ୟଙ୍କ ନିକଟରେ ସମସ୍ତ କଥା ପ୍ରକାଶ କରିଥିଲେ । କନ୍ୟାପ୍ରତି ହୋଇଥିବା ଅପମାନରେ ବ୍ୟଥିତ ହୋଇ ଶୁକ୍ରାଚାର୍ଯ୍ୟ ନିଜର ପୌରୋହିତ୍ୟ ବୃତ୍ତିକୁ ଧିକ୍କାର କରି ବୃଷପର୍ବାଙ୍କ ରାଜ୍ୟ ତ୍ୟାଗ କରି ଅନ୍ୟତ୍ର ଗମନ କଲେ । ଦାନବରାଜ ବୃଷପର୍ବାଙ୍କ ପକ୍ଷରେ ଶୁକ୍ରାଚାର୍ଯ୍ୟଙ୍କୁ ଛାଡ଼ି ରହିବା ସମ୍ଭବ ନ ଥିଲା; ତେଣୁ ସେ ଶୁକ୍ରାଚାର୍ଯ୍ୟଙ୍କର ଅସୁରପୁରୀ ତ୍ୟାଗର କଥା ଜାଣିବାକୁ ପାଇବା ମାତ୍ରେ ସେ ନିଜେ ଶୁକ୍ରାଚାର୍ଯ୍ୟଙ୍କୁ ଅନ୍ୱେଷଣ କରି ତାଙ୍କର ଗୋଡ଼ତଳେ ପଡ଼ି କ୍ଷମାଭିକ୍ଷା କଲେ ।

ରାଜା ବୃଷପର୍ବାଙ୍କର ଅନୁନୟ ଓ ବିନୟରେ ସନ୍ତୁଷ୍ଟ ହୋଇ ଶୁକ୍ରାଚାର୍ଯ୍ୟ କହିଲେ, 'ମହାରାଜ, ମୋଠାରେ କିଛି ନାହିଁ । ଆପଣ ମୋର କନ୍ୟାକୁ ବୁଝାଇ ପ୍ରସନ୍ନ କରନ୍ତୁ । ତା'ର ଅଭିଳାଷ ପୂର୍ଣ୍ଣ ହେଲେ ସେ ପ୍ରସନ୍ନ ହେବ । ସେ ପ୍ରସନ୍ନ ହେଲେ ମୁଁ ଦାନବପୁରୀକୁ ପ୍ରତ୍ୟାଗମନ କରିବି ।

ଦେବଯାନୀଙ୍କର ଅଭିଳାଷ ପୂର୍ଣ୍ଣ କରିବାକୁ ବୃଷପର୍ବା ପ୍ରସ୍ତୁତ ଅଛନ୍ତି ବୋଲି ସ୍ୱୀକାର କରିବାରୁ ଦେବଯାନୀ କହିଲେ, 'ମହାରାଜ, ରାଜନନ୍ଦିନୀ ଶର୍ମିଷ୍ଠା ସହଚରୀମାନଙ୍କ ସହିତ ଆଜୀବନ ଦାସୀ ଭାବରେ ମୋର ସେବା କରିବ, ଏହାହିଁ ମୋର ଅଭିଳାଷ ।'

ଅଭିମାନିନୀ ଦେବଯାନୀଙ୍କର ଅଭିଳାଷ ଅତ୍ୟନ୍ତ କଠୋର ଥିଲା । ଏପରି ଅଭିଳାଷ ପୂରଣ କରିବା ରାଜା ବୃଷପର୍ବାଙ୍କ ପକ୍ଷରେ ଯେପରି କଷ୍ଟକର, ସେହିପରି ଦୁଃଖଦାୟକ ମଧ୍ୟ ଥିଲା । ତଥାପି ଅସୁର-ମାନଙ୍କର ସମୂହ କଲ୍ୟାଣ ଦୃଷ୍ଟିରୁ ଦାନବପୁରୀରେ ଶୁକ୍ରାଚାର୍ଯ୍ୟଙ୍କର ଉପସ୍ଥିତି ଅତ୍ୟନ୍ତ ଅପରିହାର୍ଯ୍ୟ ଥିବାରୁ ଦେବଯାନୀଙ୍କୁ ସନ୍ତୁଷ୍ଟ କରିବାକୁ ପଡ଼ିବ । ସେଥିପାଇଁ ଅନ୍ୟ ପନ୍ଥା ନ ଥିବାରୁ ରାଜନନ୍ଦିନୀ ଶର୍ମିଷ୍ଠାଙ୍କୁ ଦେବ-ଯାନୀଙ୍କର ଦାସୀତ୍ୱ ସ୍ୱୀକାର କରିବାକୁ ପଡ଼ିଥିଲା । ରାଜକୀୟ ଜୀବନର ବିଳାସବ୍ୟସନରେ ବଢ଼ି ଆସିଥିଲେ ମଧ୍ୟ ଦାସୀ ଭାବରେ ଦେବଯାନୀ-ଙ୍କର ସେବା ଶୁଶ୍ରୂଷା କରିବାରେ ଶର୍ମିଷ୍ଠା କେବେ ତ୍ରୁଟି କରୁ ନ ଥିଲେ । ପରେ ଯେତେବେଳେ ରାଜା ଯଯାତିଙ୍କ ସହିତ ଦେବଯାନୀଙ୍କର ବିବାହ ଅନୁଷ୍ଠିତ ହେଲା, ସେତେବେଳେ ନିଜର କନ୍ୟାର ଭବିଷ୍ୟତ ମଙ୍ଗଳ ନିମନ୍ତେ ଯଯାତିଙ୍କୁ ସାବଧାନ କରାଇ ଶୁକ୍ରାଚାର୍ଯ୍ୟ କହିଥିଲେ, ମହାରାଜ, ଦେବଯାନୀ ସହିତ ରାଜକନ୍ୟା ଶର୍ମିଷ୍ଠା ମଧ୍ୟ ଆପଣଙ୍କ ରାଜପୁରୀକୁ ଯାଉ ଅଛନ୍ତି । ଶର୍ମିଷ୍ଠା ସୁନ୍ଦରୀ ଏବଂ ଯୁବତୀ । ଶର୍ମିଷ୍ଠାଙ୍କ ସମ୍ପର୍କରେ ଆପଣ ସାବଧାନତା ଓ ସଂଯମ ଅବଲମ୍ବନ କରିବେ ଏବଂ କେବେହେଲେ ଶର୍ମିଷ୍ଠାଙ୍କୁ ନିଜର ଶଯ୍ୟାରେ ସ୍ଥାନ ଦେବେ ନାହିଁ ।

ଦେବଯାନୀଙ୍କ ସହିତ ଯଯାତି ସୁଖରେ କାଳାତିପାତ କରୁଥିବା ସମୟରେ ଦେବଯାନୀ ପୁତ୍ରବତୀ ହେବାରୁ ଶର୍ମିଷ୍ଠାଙ୍କ ମନରେ ପୁତ୍ର ସୁଖ କାମନା ଦେଖାଦେଲା; ତେଣୁ ଆଜୀବନ ଦେବଯାନୀର ଦାସୀ ହୋଇ ରହିବାକୁ ପଡ଼ିଥିବାରୁ ଦିନେ ସେ ନିର୍ଜନରେ ଯଯାତିଙ୍କୁ ନିଜର ମନକଥା କହି ତାଙ୍କୁ ସ୍ୱାମୀ ରୂପେ କାମନା କଲେ । ଶୁକ୍ରାଚାର୍ଯ୍ୟଙ୍କ ନିଷେଧ ସତ୍ତ୍ୱେ ରାଜା ଯଯାତି ଗୋପନରେ ଶର୍ମିଷ୍ଠାଙ୍କର ମନସ୍କାମନା ପୂର୍ଣ୍ଣ କରିଥିଲେ । ଶର୍ମିଷ୍ଠାଙ୍କ ସହିତ ରାଜା ଯଯାତିଙ୍କର ଏହି ଗୋପନ ସମ୍ପର୍କ ଦେବଯାନୀଙ୍କୁ ଆଦୌ ଜଣା ନ ଥିଲା । କାଳକ୍ରମେ ଯଯାତିଙ୍କ ଔରସରୁ

ଦେବଯାନୀଙ୍କ ଗର୍ଭରୁ ଯଦୁ ଓ ତୁର୍ବସୁ ନାମରେ ଦୁଇପୁତ୍ର ଏବଂ ଶର୍ମିଷ୍ଠାଙ୍କ ଗର୍ଭରୁ ଦ୍ରୁହ୍ୟୁ, ଅନୁ ଏବଂ ପୁରୁ ନାମରେ ତିନି ପୁତ୍ର ଜାତ ହୋଇଥିଲେ ।

ଦେବଯାନୀ ଯେପରି କ୍ଷଣକୋପିନୀ ସେହିପରି ଅଭିମାନିନୀ ଥିଲେ । ଶର୍ମିଷ୍ଠାଙ୍କ ପ୍ରତି ସ୍ୱାମୀଙ୍କର ଗୋପନ ପ୍ରଣୟ ଥିବା ଲକ୍ଷ୍ୟ କରି ଦେବଯାନୀ କ୍ରୋଧ ଓ ଅଭିମାନର ବଶବର୍ତ୍ତିନୀ ହୋଇ ଯଯାତିଙ୍କର ବହୁ ଅନୁରୋଧ ଓ ବାରଣ ସତ୍ତ୍ୱେ ପିତୃଗୃହକୁ ଚାଲିଗଲେ ଏବଂ ପିତା ଶୁକ୍ରାଚାର୍ଯ୍ୟଙ୍କୁ ସ୍ୱାମୀଙ୍କର କଥା ସବୁ ଜଣାଇ କହିଲେ । କନ୍ୟାଠାରୁ ସବୁ କଥା ଶୁଣି ଶୁକ୍ରାଚାର୍ଯ୍ୟ କ୍ରୋଧରେ ଜାମାତା ଯଯାତିଙ୍କୁ ଅଭିଶାପ ଦେଇ କହିଲେ, 'ହେ କାମୁକ ! ପ୍ରତିଜ୍ଞାଭଙ୍ଗକାରୀ ମୂର୍ଖ ! ଯେଉଁ ଯୌବନ ଗର୍ବରେ ତୁ ଏପରି ଅପକର୍ମ କରିପାରିଲୁ, ତୋର ସେହି ଯୌବନ ନଷ୍ଟ ହେଉ ଏବଂ ତୁ ଅଚିରେ ଜରାଗ୍ରସ୍ତ ହୋଇଯାଅ ।'

ଶ୍ୱଶୁରଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଯଯାତି କହିଲେ; 'ଆପଣ ମୋତେ କ୍ଷମା କରନ୍ତୁ । ଆପଣଙ୍କ କନ୍ୟା ଦେବଯାନୀ ପ୍ରତି ମୋର ଅନୁରାଗ ଏବେ ବି ଅତୁଟ ରହିଅଛି । ମୋର ବହୁ କାର୍ଯ୍ୟ ଅପୂର୍ଣ୍ଣ ରହିଅଛି, ଅକାଳରେ ଏପରି ବାର୍ଦ୍ଧକ୍ୟଗ୍ରସ୍ତ ହେଲେ ମୁଁ କୌଣସି କାର୍ଯ୍ୟ ପୂର୍ଣ୍ଣ କରିପାରିବି ନାହିଁ । ତେଣୁ ମୋର ଅବସ୍ଥା ହୃଦୟଙ୍ଗମ କରି ମୋ ପ୍ରତି ଦୟା କରନ୍ତୁ ।'

ଶୁକ୍ରାଚାର୍ଯ୍ୟ କହିଲେ; 'ଯଦି କୌଣସି ବ୍ୟକ୍ତି ତା'ର ଯୌବନକୁ ତୁମକୁ ପ୍ରଦାନ କରି ତୁମର ଜରାବସ୍ଥାକୁ ଗ୍ରହଣ କରେ, ତେବେ ତୁମେ ପୁନର୍ବାର ଯୌବନ ଲାଭ କରିବ ।'

ଶୁକ୍ରାଚାର୍ଯ୍ୟ ଦୟାପରବଶ ହୋଇ ଅଭିଶାପକୁ କୋହଳ କରିବାରୁ, ଯଯାତି ନିଜର ଅକାଳ ବାର୍ଦ୍ଧକ୍ୟକୁ ନିଜର କୌଣସି ପୁତ୍ରକୁ ପ୍ରଦାନ କରି ତାଙ୍କର ଯୌବନକୁ ଗ୍ରହଣ କରିବାକୁ ଇଚ୍ଛା ପୋଷଣ କଲେ; କିନ୍ତୁ ପୁତ୍ରମାନଙ୍କ ମଧ୍ୟରୁ ଶର୍ମିଷ୍ଠାଙ୍କ ଗର୍ଭଜାତ କନିଷ୍ଠ ପୁତ୍ର ପୁରୁଙ୍କ ବ୍ୟତୀତ ଅନ୍ୟ କେହି ନେବାକୁ ଇଚ୍ଛା କଲେ ନାହିଁ ।

ପୁରୁ କହିଲେ, 'ବାପା, ଯାହାଙ୍କର ଅନୁଗ୍ରହ ଲାଭ କଲେ ମନୁଷ୍ୟ ପରମ ପଦ ଲାଭ କରିବାକୁ ଯୋଗ୍ୟ ହୁଏ, ସେହି ପରମ ପୂଜ୍ୟ

ଜନ୍ମଦାତା ପିତାଙ୍କର ଉପକାରର ପ୍ରତ୍ୟୁପକାର କରିବା କୌଣସି ପୁତ୍ର ପକ୍ଷରେ ସମ୍ଭବ ନୁହେଁ । ଯେଉଁ ପୁତ୍ର ପିତାଙ୍କ ମନୋଗତ କଥା ବୁଝି ତଦନୁସାରେ ତାହା ସମ୍ପାଦନ କରେ, ସେହି ପୁତ୍ର ଉତ୍ତମ ଶ୍ରେଣୀର ପର୍ଯ୍ୟାୟଭୁକ୍ତ ହୋଇଥାଏ; ଯେଉଁ ପୁତ୍ର ପିତାଙ୍କର ଆଦେଶନୁସାରେ କାର୍ଯ୍ୟ କରେ ସେ ମଧ୍ୟମ ଶ୍ରେଣୀର, ଯେଉଁ ପୁତ୍ର କୁଣ୍ଠାର ସହିତ ପିତାଙ୍କ ଆଦେଶକୁ ପାଳନ କରେ ସେ ଅଧମ ଶ୍ରେଣୀର, ଏବଂ ଯେଉଁ ପୁତ୍ର ପିତାଙ୍କ ଆଦେଶକୁ ଅବମାନନା କରେ, ସେ ପୁରୀଷ ତୁଲ୍ୟ ଘୃଣ୍ୟ ବୋଲି ବିବେଚିତ ହୋଇଥାଏ । ଏତେ ଦିନେ ଆପଣଙ୍କର ଇଚ୍ଛାନୁରୂପ କାର୍ଯ୍ୟ କରିବାର ସୁଯୋଗ ମୁଁ ଲାଭ କରିଛି, ଏହା ମୋର ପରମ ସୌଭାଗ୍ୟ । ଆପଣ ମୋର ଏହି ଯୌବନ ଗ୍ରହଣ କରି ନିଜର ଏହି ଅକାଳ ବାର୍ଦ୍ଧକ୍ୟକୁ ମୋତେ ଅତି ଶୀଘ୍ର ପ୍ରଦାନ କରନ୍ତୁ ।

ରାଜା ଯଯାତି ନିଜ ଜରାବସ୍ଥା ବଦଳରେ ପୁତ୍ର ପୁରୁର ଯୌବନ ଗ୍ରହଣ କରି ବହୁ କାର୍ଯ୍ୟ ଓ ଯଜ୍ଞ ଅନୁଷ୍ଠାନ କରିଥିଲେ । ଯେତେ ଉପଭୋଗ କଲେ ମଧ୍ୟ ଯଯାତିଙ୍କ ମନର କାମନା ତୃପ୍ତ ହେବା ପରିବର୍ତ୍ତେ ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା । ପରେ ଇନ୍ଦ୍ରିୟ ପରତନ୍ତ୍ର ରାଜା ଯଯାତି ନିଜର ଭୁଲ ବୁଝିପାରିଲେ ଏବଂ ତାଙ୍କ ମନରେ ବୈରାଗ୍ୟ ଉଦୟ ହେଲା । ସେ ନିଜର ପ୍ରିୟତମା ପତ୍ନୀ ଦେବଯାନୀଙ୍କୁ କହିଲେ, 'ହେ ସୁନ୍ଦରୀ ଭୃଗୁନନ୍ଦିନୀ, ତୁମର ପ୍ରଣୟ ପାଶରେ ଆବଦ୍ଧ ହୋଇ ମୁଁ ଅତିଶୟ କାମୁକ, ବିଷୟ ଭୋଗଲାଳସୀ ଏବଂ ଆତ୍ମତତ୍ତ୍ୱ ବିସ୍ମୃତ ହୋଇଅଛି । ମୋ ଜୀବନର ଏହି ଦୀର୍ଘ ଅନୁଭୂତିରୁ ମୁଁ ଉପଲବ୍ଧି କରିଛି ଯେ, ଅଧିକ ଉପଭୋଗ କରିବା ଦ୍ୱାରା କାମନାର ଉପଶମ ହୁଏ ନାହିଁ । ଅଗ୍ନିରେ ଘୃତ ନିକ୍ଷେପ କଲେ ଯେପରି ଅଗ୍ନି ନିର୍ବାପିତ ନ ହୋଇ ଅଧିକରୁ ଅଧିକ ତେଜରେ ପ୍ରଜ୍ଜ୍ୱଳିତ ହୋଇଥାଏ, ଅନୁରୂପ ଭାବରେ ଭୋଗ ଦ୍ୱାରା କାମନାର ଉତ୍ତରୋତ୍ତର ଅଭିବୃଦ୍ଧି ହିଁ ଘଟିଥାଏ । ପୃଥିବୀର ସମସ୍ତ ଧନ, ସମ୍ପତ୍ତି, ଶସ୍ୟ, ସ୍ୱର୍ଣ୍ଣ, ପଶୁ, ରମଣୀ ଓ ବିଭିନ୍ନ ଭୋଗ୍ୟ ବସ୍ତୁକୁ ଯଦି ଜଣକୁ ଉପଭୋଗ କରିବାକୁ ଦିଆଯାଏ, ତେବେ ମଧ୍ୟ ତଦ୍ଦ୍ୱାରା କାମନାର ଉପଶମ ହେବ ନାହିଁ । ଯେତେବେଳେ ମନୁଷ୍ୟ ସକଳ ପ୍ରାଣୀ ଓ ସମ୍ପତ୍ତି ସୁଖ ପ୍ରତି କାମୁକତା, ଲୋଲୁପତା,

ଓ ହିଂସା ପରିହାର କରେ, ସେତେବେଳେ ସମସ୍ତ ଜଗତ ତା' ସମ୍ମୁଖରେ ସୁଖମୟ ହୋଇଥାଏ । ଶରୀର ଜରାଜୀର୍ଣ୍ଣ ହେଲେ ମଧ୍ୟ ବିଷୟ ଭୋଗ ତୃଷ୍ଣାର ବିନାଶ ଘଟେ ନାହିଁ । ଯେଉଁମାନେ ଇନ୍ଦ୍ରିୟ ସୁଖ ଲୋଲୁପ, ସେମାନଙ୍କ ପକ୍ଷରେ ବିଷୟଭୋଗ ତୃଷ୍ଣାକୁ ପରିହାର କରିବା ସମ୍ଭବ ନୁହେଁ । ଯେଉଁମାନେ ସେହି ଭୋଗତୃଷ୍ଣାକୁ ଜୟ କରି-ପାରିଛନ୍ତି, ସେମାନେ ଜୀବନରେ ଉନ୍ନତି କରିଥାନ୍ତି । ନାରୀ ହିଁ କାମନାର ମୂର୍ତ୍ତି । ସେ ନାରୀ ମାତା ହେଉ ବା ଭଗିନୀ ହେଉ; ଅଥବା କନ୍ୟା ହେଉ, ନିର୍ଜନରେ ସେମାନଙ୍କ ସହ ବାସ କରିବା ଅନୁଚିତ, କାରଣ ତଦ୍ଦ୍ୱାରା ପୁରୁଷର ମନରେ କାମଭାବ ଉଦ୍ରେକ ହୋଇଥାଏ । ତେଣୁ ନାରୀ ସମ୍ପର୍କରେ ସାବଧାନତା ଅବଲମ୍ବନ କରିବା ବିଧେୟ । ବିଷୟ ସୁଖଭୋଗ କରି କରି ଏକ ହଜାର ବର୍ଷ ମୋର ଅତିବାହିତ ହୋଇଗଲା, ଅଥଚ ବିଷୟ-ଭୋଗ ପ୍ରତି ମୋ ମନରେ ତୃପ୍ତି ଆସିବା ପରିବର୍ତ୍ତେ ଅଧିକ ଭୋଗବାସନା ଜାତ ହେଉଅଛି । ତେଣୁ କଲ୍ୟାଣ-ପଥ-ରୋଧକାରୀ ଏହି ବିଷୟ-ଭୋଗ-ତୃଷ୍ଣାକୁ ପରିହାର କରି ଦେହ, ମନ, ପ୍ରାଣକୁ ଭଗବାନଙ୍କଠାରେ ଅର୍ପଣ କରି ବନ୍ୟ ଜୀବ-ଜନ୍ତୁଙ୍କ ସହ ଦୁଃଖ କଷ୍ଟ ମଧ୍ୟରେ ଅବଶିଷ୍ଟ ଜୀବନ ଅରଣ୍ୟରେ ଅତିବାହିତ କରିବାକୁ ମୁଁ ସ୍ଥିର କରିଅଛି । ବିଷୟ-ଭୋଗ-କାମନା ଓ ସେ ସବୁର ଉପଭୋଗ ମନୁଷ୍ୟର ସାଂସାରିକ ବନ୍ଧନକୁ ଅଧିକ ଦୃଢ଼ କରିବା ସଙ୍ଗେ ସଙ୍ଗେ ଆତ୍ମାର ଅଧଃପତନ ଘଟାଇଥାଏ । ଯେଉଁ ବ୍ୟକ୍ତି ଏହି ତତ୍ତ୍ୱ ଉପଲବ୍ଧି କରି ସକଳ କାମନାରୁ ନିଜକୁ ଦୂରରେ ରଖିଥାଏ, ସେହି ବ୍ୟକ୍ତି ହିଁ ପ୍ରକୃତରେ ଆତ୍ମତତ୍ତ୍ୱଦର୍ଶୀ ଓ ଧନ୍ୟ ।'

ପତ୍ନୀକୁ ଏହା କହି ରାଜା ଯଯାତି ନିଜର ପିତୃଭକ୍ତ କନିଷ୍ଠ ପୁତ୍ର ପୁରୁଙ୍କୁ ଯୌବନ ଫେରାଇ ଦେଇ ନିଜର ଜରାବସ୍ଥା ଗ୍ରହଣ କରିଥିଲେ ଏବଂ ପୁରୁଙ୍କୁ ରାଜପଦରେ ଅଭିଷିକ୍ତ କରି ବନବାସୀ ହୋଇ ନିଜର ଅବଶିଷ୍ଟ ଜୀବନ ଭଗବାନଙ୍କ ଧ୍ୟାନରେ ଅତିବାହିତ କରିଥିଲେ । ଯଯାତି ବାନପ୍ରସ୍ଥାଶ୍ରମରେ ଥିବା ସମୟରେ ଯଥା ସମୟରେ ସ୍ୱର୍ଗ ଗତି ପ୍ରାପ୍ତ ହୋଇଥିଲେ । ଦେବଯାନୀ ମଧ୍ୟ ଇନ୍ଦ୍ରିୟ ସୁଖଲିପ୍ସାରୁ ନିଜକୁ ନିବୃତ୍ତ କରି କୃଷ୍ଣଙ୍କ ଚିନ୍ତାରେ ନିମଜ୍ଜିତ ହୋଇ ସଦ୍‌ଗତି ଲାଭ କରିଥିଲେ । ●

# କଂସର କାରାଗାରରେ ଦେବକୀ

ଯଯାତିଙ୍କର ଚରିତ ବର୍ଣ୍ଣନା କରି ଶୁକଦେବ ବିଭିନ୍ନ ବଂଶ ବର୍ଣ୍ଣନା କରି କହିଲେ, 'ମହାରାଜ ଯଯାତିଙ୍କ ଔରସରେ ଦେବଯାନୀଙ୍କ ଗର୍ଭରୁ ଯଦୁ ଓ ତୁର୍ବସୁ ଏବଂ ଶର୍ମିଷ୍ଠାଙ୍କ ଗର୍ଭରୁ ଦ୍ରୁହ୍ୟ, ଅନୁ ଓ ପୁରୁ ଏହିପରି ପାଞ୍ଚଟି ପୁତ୍ର ଜାତ ହୋଇଥିଲେ । ଯଯାତି ବାନପ୍ରସ୍ଥ ଆଚରଣ କରିବା ପୂର୍ବରୁ ନିଜର ପୁତ୍ରମାନଙ୍କୁ ବିଭିନ୍ନ ରାଜ୍ୟର ରାଜ-ପଦ ପ୍ରଦାନ କରିଥିଲେ ମଧ୍ୟ କନିଷ୍ଠ ପୁତ୍ର ପୁରୁଙ୍କୁ ସମସ୍ତ ଭୂମଣ୍ଡଳର ଅଧିପତି ପଦରେ ଅଭିଷିକ୍ତ କରିଥିଲେ । ପରବର୍ତ୍ତୀ କାଳରେ ପୁରୁଙ୍କର ବଂଶଧରମାନେ ପୁରୁବଂଶ ଭାବରେ ଏବଂ ଯଦୁଙ୍କର ବଂଶଧରମାନେ ଯାଦବ ଭାବରେ ପରିଚିତ ହୋଉଥିଲେ । ପୁରୁବଂଶରେ ଦୁଷ୍ମନ୍ତ, ଭରତ, କୁରୁ, ଶାନ୍ତନୁ, ଭୀଷ୍ମ, ଧୃତରାଷ୍ଟ୍ର ଓ ପାଣ୍ଡୁ ତଥା ଦୁର୍ଯ୍ୟୋଧନ ଓ ଯୁଧିଷ୍ଠିର ପ୍ରମୁଖ ଜାତ ହୋଇଥିଲେ । ଆପଣ ଏହି ପୁରୁବଂଶକୁ ଧନ୍ୟ କରିଅଛନ୍ତି । ଯଦୁଙ୍କର ବଂଶରେ ମଧୁ ଓ ବୃଷ୍ଣି ନାମରେ ଦୁଇଜଣ ପ୍ରସିଦ୍ଧ ନରପତି ଜନ୍ମଗ୍ରହଣ କରିଥିବାରୁ ଯାଦବ-ମାନେ ମାଧବ, ବାର୍ଷ୍ଣେୟ ତଥା ମଧୁକୁଳ ଓ ବୃଷ୍ଣିବଂଶ ନାମରେ ମଧ୍ୟ ପରିଚିତ ହୋଇଥିଲେ । ଯଦୁବଂଶରେ ଆହୁକ ନାମରେ ଏକ ରାଜା ଥିଲେ । ସେହି ଆହୁକଙ୍କର ଦେବକ ଓ ଉଗ୍ରସେନ ନାମରେ ଦୁଇ ପୁତ୍ର ଥିଲେ । ଦେବକଙ୍କ ଔରସରେ ଚାରିପୁତ୍ର ଓ ସାତ ଗୋଟି କନ୍ୟା ଜାତ ହୋଇଥିଲେ । ସେହି କନ୍ୟାମାନଙ୍କ ମଧ୍ୟରେ ଦେବକୀ ଥିଲେ ଅନ୍ୟତମା । ଆହୁକଙ୍କର ଅନ୍ୟତମ ପୁତ୍ର ଉଗ୍ରସେନଙ୍କ ଔରସରେ ନ'ଟି ପୁତ୍ର ଓ ପାଞ୍ଚ ଗୋଟି କନ୍ୟା ଜାତ ହୋଇଥିଲେ । ଉଗ୍ରସେନ-ଙ୍କର ସେହି ପୁତ୍ରମାନଙ୍କ ମଧ୍ୟରେ କଂସ ଥିଲେ ଜ୍ୟେଷ୍ଠ । ଯାଦବ-ବଂଶରେ ଶୂର ନାମରେ ଜନୈକ ରାଜା ଥିଲେ । ଶୂରଙ୍କର ଦଶଟି ପୁତ୍ର ଓ ପାଞ୍ଚଗୋଟି କନ୍ୟା ଥିଲେ ଏବଂ ସେମାନଙ୍କ ମଧ୍ୟରେ ବସୁଦେବ

ବୟସରେ ବଡ଼ ଥିଲେ । ଏହି ବସୁଦେବଙ୍କ ଜନ୍ମ କାଳରେ ବହୁ ଶୁଭ ସୂଚନା ମିଳିଥିଲା । ଶୂରଙ୍କ ଔରସରେ ଜାତ ହୋଇଥିବା କନ୍ୟାମାନଙ୍କ ମଧ୍ୟରେ ପୃଥା ଥିଲେ ଜ୍ୟେଷ୍ଠା । ଶୂରଙ୍କର କୁନ୍ତୀଭୋଜ ନାମରେ ଜଣେ ବନ୍ଧୁ ଥିଲେ । କୁନ୍ତୀଭୋଜଙ୍କର କୌଣସି ପୁତ୍ର କନ୍ୟା ନଥିବାରୁ ସେ ଶୂରଙ୍କଠାରୁ ପୃଥାଙ୍କୁ ପୋଷ୍ୟକନ୍ୟା ରୂପେ ଗ୍ରହଣ କରିଥିଲେ । ଏହି କନ୍ୟା ପୃଥା ପରବର୍ତ୍ତୀ କାଳରେ ପୋଷ୍ୟପିତାଙ୍କ ନାମାନୁସାରେ କୁନ୍ତୀ ନାମରେ ପରିଚିତା ହୋଇଥିଲେ ଓ ଆପଣ-ଙ୍କର ପ୍ରପିତାମହ ପାଣ୍ଡୁଙ୍କ ସହିତ କୁନ୍ତୀଙ୍କର ବିବାହ ହୋଇଥିଲା । ଶୂରଙ୍କର ଅନ୍ୟତମା କନ୍ୟା ଶ୍ରୁତଶ୍ରବାଙ୍କ ସହିତ ଚେଦିରାଜ ଦମଘୋଷଙ୍କର ବିବାହ ହୋଇଥିଲା ଏବଂ ଶ୍ରୁତଶ୍ରବାଙ୍କ ଗର୍ଭରୁ ଶିଶୁପାଳ ଜନ୍ମ ହୋଇଥିଲେ । ଦେବକଙ୍କର ଦେବକୀ ପ୍ରମୁଖ ସାତଗୋଟି କନ୍ୟାଙ୍କୁ ବସୁଦେବ ବିବାହ କରିଥିଲେ । ଏତଦ୍‌ବ୍ୟତୀତ ପୌରବୀ, ରୋହିଣୀ, ଭଦ୍ରା, ମଦିରା, ରୋଚନା, ଇଳା ପ୍ରମୁଖଙ୍କୁ ମଧ୍ୟ ବସୁଦେବ ବିବାହ କରିଥିଲେ । ରୋହିଣୀଙ୍କ ଗର୍ଭରୁ ବଳଦେବ ପ୍ରମୁଖ ସାତଟି ପୁତ୍ର ଜାତ ହୋଇଥିଲେ । ଦେବକୀଙ୍କ ଗର୍ଭରୁ ଯେଉଁ ଆଠଟି ପୁତ୍ର ଜାତ ହୋଇଥିଲେ, ସେମାନଙ୍କର ନାମ ହେଲା—କୀର୍ତ୍ତିମାନ, ସୁଷେଣ, ଭଦ୍ରସେନ, ଋଜୁ, ଭଦ୍ର, ସମ୍ମର୍ଦ୍ଦନ ଓ ସଂକର୍ଷଣ ମହାରାଜ । ଭଗବାନ ସ୍ୱୟଂ ଶ୍ରୀକୃଷ୍ଣ ରୂପରେ ଦେବକୀଙ୍କ ଗର୍ଭରୁ ଅଷ୍ଟମ ପୁତ୍ର ଭାବରେ ଜାତ ହୋଇଥିଲେ । ଯେତେବେଳେ ଜଗତରେ ଧର୍ମର କ୍ଷୟ ଓ ପାପର ବୃଦ୍ଧି ଘଟେ, ସେହି ସମୟରେ ସେ ସବୁର ନିରାକରଣ ନିମନ୍ତେ ଜଗଦୀଶ୍ୱର ଭଗବାନ ଅବତାର ଗ୍ରହଣ କରିଥାନ୍ତି । ଭଗବାନ ସ୍ୱୟଂ ମାୟାର ନିୟନ୍ତା ଏବଂ ସେ ମାୟାକୁ ଆଶ୍ରୟ କରି ବିଭିନ୍ନ ରୂପରେ ନିଜକୁ ପ୍ରକାଶ କରି ବିଭିନ୍ନ ଲୀଳା ପ୍ରକାଶ କରିଥାନ୍ତି । ଭଗବାନଙ୍କର ଏହି ମାୟାର ଲୀଳା ଜୀବଜଗତ ପାଇଁ ଆଶୀର୍ବାଦ ସ୍ୱରୂପ । ପ୍ରବଳ ପରାକ୍ରମଶାଳୀ ଅସୁରମାନଙ୍କର ଅତ୍ୟାଚାରରେ ପୀଡ଼ିତା ବସୁଧାର ଦୁଃଖଭାର ଲାଘବ କରିବା ନିମନ୍ତେ ଭଗବାନ ମାୟାର ଆଶ୍ରୟରେ ବିଭିନ୍ନ ଅବତାର ଗ୍ରହଣ କରି ଲୀଳା ପ୍ରକାଶ କରିଥାନ୍ତି । ସ୍ୱୟଂ ଭଗବାନ ଧରାପୃଷ୍ଠରେ କୃଷ୍ଣ ରୂପରେ ଆବିର୍ଭୂତ ହୋଇ ବଳଦେବଙ୍କ ସହିତ ବିଭିନ୍ନ ଲୀଳା କରିଥିଲେ । ସେ ସବୁର ଆଦ୍ୟଅନ୍ତ ଓ ସ୍ୱରୂପ

ଜାଣିବା ବ୍ରହ୍ମା ପ୍ରମୁଖଙ୍କ ପକ୍ଷରେ ମଧ୍ୟ ସହଜ ନୁହେଁ । କଳିଯୁଗରେ ଯେଉଁ ଭାଗବତ ଭକ୍ତମାନେ ଜନ୍ମଗ୍ରହଣ କରିବେ, ସେମାନଙ୍କ ପାଇଁ ଭଗବାନ ସେମାନଙ୍କର ଦୁଃଖ, ଶୋକ, ଅଜ୍ଞାନତା ଦୂର କରିବା ନିମନ୍ତେ ନିଜର ପବିତ୍ର ପାପନାଶକ ଲୀଳା ବିସ୍ତାର କରି ଯାଇଅଛନ୍ତି । ସାଧୁମାନେ ନିଜର କର୍ଣ୍ଣରେ ଭଗବାନଙ୍କର ଯଶୋମୟୀ ଅମୃତ ସ୍ୱରୂପ ଲୀଳାବୃତ୍ତାନ୍ତ ଥରେ ମାତ୍ର ଶ୍ରବଣ କଲେ ସମସ୍ତ ପାର୍ଥିବ କାମନା ପରିତ୍ୟାଗ କରିବା ସହଜ ହୋଇଥାଏ । ଭଗବାନ କୃଷ୍ଣ ପ୍ରଥମେ ଚତୁର୍ଭୁଜ ରୂପରେ ଆବିର୍ଭୂତ ହୋଇ ପରେ ମନୁଷ୍ୟସୁଲଭ ରୂପ ଧାରଣ କରି ବିଭିନ୍ନ ଅଲୌକିକ ଲୀଳା ପ୍ରକାଶ କରିଅଛନ୍ତି ଓ ପୃଥିବୀର ଗୁରୁ ଭାରକୁ ହରଣ କରିବା ନିମନ୍ତେ କୁରୁବଂଶୀୟ ବୀରମାନଙ୍କ ମଧ୍ୟରେ ଘଟିଥିବା କଳହଜନିତ ଯୁଦ୍ଧରେ ବହୁ ବୀରଙ୍କୁ ସଂହାର କରି ପାଣ୍ଡବ ବୀର ଅର୍ଜୁନଙ୍କୁ ବିଜୟୀ କରିଥିଲେ ଏବଂ ଉଦ୍ଧବଙ୍କୁ ପରମତତ୍ତ୍ୱ ସମ୍ପର୍କରେ ବିଭିନ୍ନ ଉପଦେଶ ପ୍ରଦାନ କରି ସ୍ୱଧାମକୁ ଯାତ୍ରା କରିଅଛନ୍ତି ।

ପରୀକ୍ଷିତ କହିଲେ, 'ହେ ମୁନିସତ୍ତମ, ଆପଣ ଦୟାପରବଶ ହୋଇ ମୋ ନିକଟରେ ବହୁକଥା ବର୍ଣ୍ଣନା କରିଅଛନ୍ତି । ଯଦୁ ବଂଶରେ ସ୍ୱୟଂ ଭଗବାନ କୃଷ୍ଣ ରୂପରେ ଅବତୀର୍ଣ୍ଣ ହୋଇ ଯେଉଁ ଲୀଳା ପ୍ରକାଶ କଲେ, ତାହା ବର୍ତ୍ତମାନ ଅନୁଗ୍ରହପୂର୍ବକ ବିସ୍ତାରିତ ଭାବରେ ପ୍ରକାଶ କରନ୍ତୁ । କୃଷ୍ଣ ଆମ ବଂଶର ପରମହିତୈଷୀ । କୁରୁକ୍ଷେତ୍ରର ସମର ପ୍ରାଙ୍ଗଣରେ ମୋର ପିତାମହମାନଙ୍କ ବିରୁଦ୍ଧରେ ଅମର ବିଜୟୀ ଭୀଷ୍ମ ପ୍ରମୁଖ ପ୍ରବଳ ପରାକ୍ରମଶାଳୀ ବୀରମାନେ ଦଣ୍ଡାୟମାନ ହୋଇଥିଲେ ମଧ୍ୟ କୃଷ୍ଣଙ୍କ ଚରଣକମଳକୁ ଆଶ୍ରାକରି ମୋର ପିତାମହମାନେ ଯୁଦ୍ଧରେ ଜୟଯୁକ୍ତ ହୋଇଥିଲେ । କୃଷ୍ଣଙ୍କ କରୁଣା ଫଳରେ ମୁଁ ଜୀବନ ଧାରଣ କରିବାକୁ ସମର୍ଥ ହୋଇଅଛି । ସେହି ପରମ କାରୁଣିକ ଦୟାମୟ, ଅଖିଳ ଜଗତର ଆତ୍ମା ସ୍ୱରୂପ ଭଗବାନ କୃଷ୍ଣଙ୍କର କଥା ଦୟାକରି ପ୍ରକାଶ କରନ୍ତୁ । ଆପଣ ପ୍ରସଙ୍ଗକ୍ରମେ ବଳରାମଙ୍କୁ ରୋହିଣୀ-ନନ୍ଦନ ବୋଲି କହି ପରେ ତାଙ୍କୁ ଦେବକୀଙ୍କ ଗର୍ଭସମ୍ଭୂତ ବୋଲି କିପରି ବର୍ଣ୍ଣନା କଲେ, ମୁଁ ତାହା ବୁଝିପାରିଲି ନାହିଁ । ଗୋଟିଏ ବ୍ୟକ୍ତି ଦୁଇଟି ଗର୍ଭରୁ କିପରି

ଜାତ ହେଲେ, ତାହା ଦୟାକରି ବୁଝାଇ କହନ୍ତୁ । ଅସୁରମାନଙ୍କର ମୁକ୍ତିଦାତା ଓ ଭକ୍ତମାନଙ୍କୁ କରୁଣା ପ୍ରଦାନକାରୀ ଭଗବାନ କୃଷ୍ଣ ପିତୃସାନ୍ନିଧ ପରିତ୍ୟାଗ କରି କାହିଁକି ବ୍ରଜକୁ ଗମନ କଲେ ଏବଂ ନିଜର ମାତୁଳ କଂସକୁ କାହିଁକି ସେ ସଂହାର କଲେ, ତାହା ଜାଣିବାକୁ ମୋର ବିଶେଷ କୌତୂହଳ ହେଉଅଛି । ଭଗବାନ କୃଷ୍ଣଙ୍କର ସମସ୍ତ ଲୀଳାକୁ ଆପଣ ବିସ୍ତାରିତ ଭାବରେ ମୋ ନିକଟରେ ପ୍ରକାଶ କରନ୍ତୁ । ଯେଉଁ କ୍ଷୁଧା ଓ ତୃଷାରେ କାତର ହୋଇ ମୁଁ ମହାନୁଭବ ବ୍ରାହ୍ମଣ ତପସ୍ୱୀଙ୍କ ନିକଟରେ ମସ୍ତବଡ଼ ଅପରାଧ କରିଥିଲି, ଆଜି ସେହି କ୍ଷୁଧା ତୃଷା ମୋତେ ଆଉ ପୀଡ଼ିତ କରୁନାହିଁ । ଅନ୍ନ ତ ଦୂରର କଥା, ସାମାନ୍ୟ ଜଳ ପର୍ଯ୍ୟନ୍ତ ଗ୍ରହଣ କରିବା ମୁଁ ପରିତ୍ୟାଗ କରିଅଛି । ଭଗବାନଙ୍କର ଅମୃତମୟୀ ଲୀଳାକଥା ଶ୍ରବଣ କରିବା ନିମନ୍ତେ ମୋର ମନ ବିଶେଷ ଭାବରେ ଉତ୍କଣ୍ଠିତ ହୋଇଅଛି । ଦୟାକରି କୃଷ୍ଣଙ୍କର ଲୀଳା ବୃତ୍ତାନ୍ତ ପ୍ରକାଶ କରି ମୋର କୌତୂହଳ ଅପନୋଦନ କରନ୍ତୁ ।'

ମହାରାଜ ପରୀକ୍ଷିତଙ୍କର କଥାରୁ ତାଙ୍କ ମନର ଆନ୍ତରିକ ବ୍ୟାକୁଳତା ଉପଲବ୍ଧି କରି ଶୁକଦେବ କହିଲେ, 'ହେ ରାଜର୍ଷି ଭଗବାନଙ୍କର ଅମୃତମୟୀ ଲୀଳାକଥା ଶ୍ରବଣ କରିବା ନିମନ୍ତେ ଆପଣଙ୍କ ମନର ଏହି ଅଦମ୍ୟ ଆଗ୍ରହ ଓ ଆନ୍ତରିକତା ମୋତେ ପ୍ରୀତ କରିଅଛି । ଆପଣଙ୍କ ସୁମହତ୍ ଚରିତ୍ର ଓ ଅପୂର୍ବ ଭକ୍ତିପ୍ରାଣତାର ଏହା ସୁନ୍ଦର ଓ ସମୀଚୀନ ଅଭିବ୍ୟକ୍ତି । ଭଗବାନଙ୍କ ସମ୍ପର୍କରେ ଯେ ପ୍ରଶ୍ନ କରେ, ଯେ ତାଙ୍କର ଲୀଳା ବର୍ଣ୍ଣନା କରେ ଏବଂ ଯେ ତାହା ଶୁଣେ, ସେମାନେ ସମସ୍ତେ ଧନ୍ୟ, ସମସ୍ତେ ପବିତ୍ର । ଆପଣ ଏପରି ଉତ୍ତମ ପ୍ରଶ୍ନ ଉତ୍ଥାପନ କରି ସମସ୍ତ ଜୀବଜଗତର ଅଶେଷ କଲ୍ୟାଣ ସାଧନ କରିଅଛନ୍ତି । ଭଗବାନଙ୍କର ଲୀଳାକଥା ଶ୍ରବଣ କରିବା ନିମନ୍ତେ ମୋତେ ଅନୁରୋଧ କରି ଆପଣ ମୋତେ ଏବଂ ସମବେତ ଶ୍ରୋତୃବର୍ଗଙ୍କୁ ମଧ୍ୟ ଉପକୃତ କରିଅଛନ୍ତି । ଆପଣଙ୍କର ଆନ୍ତରିକ ଅନୁସନ୍ଧିତ୍ସାର ଅପନୋଦନ ନିମନ୍ତେ ମୁଁ ଭଗବାନ କୃଷ୍ଣଙ୍କର ଅମୃତମୟୀ ଲୀଳା-କଥା ପ୍ରକାଶ କରୁଅଛି, ଶ୍ରବଣ କରନ୍ତୁ ।

ଅସୁର ତଥା ଆସୁରିକ ସ୍ୱଭାବସମ୍ପନ୍ନ ଦୁଷ୍ଟମାନଙ୍କ ଅତ୍ୟାଚାରରେ ବସୁନ୍ଧରା ଅତ୍ୟନ୍ତ ପୀଡ଼ିତ ହେଉଥିଲେ । ନିଜ ଦୁଃଖର ନିରାକରଣ ନିମନ୍ତେ ପୃଥିବୀ ଗାଭୀରୂପ ଧାରଣ କରି ଭଗବାନ ବ୍ରହ୍ମାଙ୍କ ନିକଟରେ ଉପସ୍ଥିତ ହୋଇ କରୁଣସ୍ୱରରେ ନିଜର ଦୁରବସ୍ଥା ନିବେଦନ କଲେ ।

ବସୁନ୍ଧରାଙ୍କର ଦୁଃଖର କଥା ଶୁଣି ବ୍ରହ୍ମା କହିଲେ, 'ଜଗତ ସୃଷ୍ଟି କରିବା ମୋର କାର୍ଯ୍ୟ କିନ୍ତୁ ଜଗତର ପାଳନ ଦାୟିତ୍ୱ ଭଗବାନ ବିଷ୍ଣୁଙ୍କର । ଭଗବାନ ବିଷ୍ଣୁ ବର୍ତ୍ତମାନ କ୍ଷୀର-ସମୁଦ୍ରରେ ଶୟନ କରୁଅଛନ୍ତି; ତେଣୁ ତାଙ୍କ ନିକଟରେ ନିଜର ଦୁଃଖ ନିବେଦନ କଲେ ସେ ଉପଯୁକ୍ତ ପ୍ରତିକାର ବିଧାନ କରିପାରିବେ ।'

ବ୍ରହ୍ମାଙ୍କ ଉପଦେଶକ୍ରମେ ଦେବତାମାନଙ୍କ ସହିତ ବସୁନ୍ଧରା କ୍ଷୀର ସମୁଦ୍ର ନିକଟକୁ ଯାଇ ବେଦୋକ୍ତ ମନ୍ତ୍ରଦ୍ୱାରା ସ୍ତୁତି କରି ଭଗବାନ ବିଷ୍ଣୁଙ୍କୁ ସନ୍ତୁଷ୍ଟ କଲେ । ଦେବତାମାନଙ୍କ ସ୍ତୁତି ପରେ ଦୈବବାଣୀ ହେଲା ଏବଂ ତାହା ଶ୍ରବଣ କରି ଭଗବାନ ବ୍ରହ୍ମା କହିଲେ, 'ହେ ଅମରବୃନ୍ଦ, ମୁଁ ଧ୍ୟାନ ବଳରେ ଭଗବାନ ବିଷ୍ଣୁଙ୍କ କୃତ ଦୈବବାଣୀ ଶ୍ରବଣ କରିଅଛି ଏବଂ ତାହା ତୁମ୍ଭମାନଙ୍କ ଗୋଚରାର୍ଥେ ପ୍ରକାଶ କରୁଅଛି । ଭଗବାନ ବହୁପୂର୍ବରୁ ପୃଥିବୀର ଅସହ୍ୟ ଦୁଃଖର କଥା ଉତ୍ତମ ରୂପେ ଅବଗତ ହୋଇଅଛନ୍ତି । ସେ ଈଶ୍ୱରଙ୍କର ଈଶ୍ୱର । ସେ ନିଜର ମାୟାଶକ୍ତିର ଆଶ୍ରୟ ନେଇ ପୃଥିବୀର ଭାର ଲାଘବ କରିବା ନିମନ୍ତେ ବସୁଦେବଙ୍କ ଔରସରୁ ସ୍ୱୟଂ ଜନ୍ମଗ୍ରହଣ କରି ନିଜର ଲୀଳା ପ୍ରକାଶ କରିବେ । ତେଣୁ ଭଗବାନ ଏପରି ଅବତାର ଗ୍ରହଣ କରିବା ପୂର୍ବରୁ, ତାଙ୍କ କାର୍ଯ୍ୟରେ ସହାୟକ ହେବା ନିମନ୍ତେ ତୁମ୍ଭେମାନେ ନିଜ ନିଜର ଶକ୍ତିଙ୍କ ସହିତ ଯଦୁକୁଳରେ ଜନ୍ମ ଗ୍ରହଣ କର । ଯଥାସମୟରେ ବସୁଦେବଙ୍କ ଗୃହରେ ସ୍ୱୟଂ ପୁରୁଷୋତ୍ତମ ଭଗବାନ ପ୍ରକଟିତ ହେବେ ।

ଦେବତାମାନଙ୍କୁ ଭଗବାନଙ୍କର ଆବିର୍ଭାବର ସୂଚନା ଦେଇ ବ୍ରହ୍ମା ଅନ୍ତର୍ହିତ ହୋଇଥିଲେ ଏବଂ ଦେବତାମାନେ ମଧ୍ୟ ନିଜ ନିଜ ସ୍ଥାନକୁ ପ୍ରତ୍ୟାଗମନ କରିଥିଲେ ।

ଦେବକ ଓ ଉଗ୍ରସେନ ଦୁଇ ଭାଇ । ଦେବକଙ୍କର ଚାରି ପୁତ୍ର ଓ ସାତ କନ୍ୟା ଜାତ ହୋଇଥିଲେ । ଦେବକଙ୍କର କନ୍ୟାମାନଙ୍କ ମଧ୍ୟରେ ଦେବକୀ ଥିଲେ କନିଷ୍ଠା । ଉଗ୍ରସେନଙ୍କର ନଅ ପୁତ୍ରଙ୍କ ମଧ୍ୟରେ କଂସ ଥିଲା ବୟୋଜ୍ୟେଷ୍ଠ । ଦେବକୀଙ୍କ ସହିତ ବସୁଦେବଙ୍କର ବିବାହ ଅନୁଷ୍ଠିତ ହୋଇଥିଲା । ବିବାହ ପରେ ସ୍ୱାମୀଙ୍କ ସହିତ ଦେବକୀ ଶାଶୁ-ଘରକୁ ଏକ ସ୍ୱର୍ଣ୍ଣ ରଥରେ ବସି ଯାଉଥିବା ସମୟରେ, କଂସ ସେହି ରଥରେ ସଂଯୋଜିତ ହୋଇଥିବା ଘୋଡ଼ାଙ୍କର ଲଗାମକୁ ନିଜ ହାତରେ ଧରି ରଥ ଚାଳନା କରୁଥିଲା । ଏହି ସମୟରେ ଏକ ଦୈବବାଣୀ ହେଲା, 'ରେ ମୂର୍ଖ, ରଥରେ ବସାଇ ତୁ ଯାହାକୁ ସ୍ୱାମୀ-ଗୃହକୁ ନେଇ ଯାଉଅଛୁ, ତା'ର ଗର୍ଭଜାତ ଅଷ୍ଟମ ସନ୍ତାନ ତୋର ମୃତ୍ୟୁ ଘଟାଇବ ।'

କଂସ ଅତ୍ୟନ୍ତ କ୍ରୂର ପ୍ରକୃତିର ଲୋକ ଥିଲା ଏବଂ ସେ ବହୁ ପାପକାର୍ଯ୍ୟରେ ଲିପ୍ତ ଥିଲା । ତା' ନିକଟରେ କରଣୀୟ ଓ ଅକରଣୀୟ ମଧ୍ୟରେ କୌଣସି ପାର୍ଥକ୍ୟ ନଥିଲା । କଂସ ଥିଲା ତା ନିଜ ବଂଶ ପାଇଁ ଏକ କଳଙ୍କ । ଏପରି ଦୈବବାଣୀ ଶୁଣିବା ମାତ୍ରେ କଂସର କ୍ରୋଧର ସୀମା ରହିଲା ନାହିଁ ସେ ସଙ୍ଗେ ସଙ୍ଗେ ଦେବକୀଙ୍କ କେଶ ଧରି ରଥରୁ ଟାଣିଆଣିଲା ଏବଂ ଖଡ୍‌ଗ ଉତ୍ତୋଳନ କରି ତାଙ୍କୁ ହତ୍ୟା କରିବାକୁ ଉଦ୍ୟତ ହେଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ଦେବକୀଙ୍କୁ ହତ୍ୟା କରିବାକୁ ଉଦ୍ୟତ ହେଲାବେଳେ କଂସର ମନରେ ଭାବାନ୍ତର ଦେଖା ଦେଲା ।

ଏହି ସମୟରେ ମହାତ୍ମା ବସୁଦେବ ନିର୍ଦ୍ଦୟ କଂସକୁ ଶାନ୍ତ କରିବା ନିମନ୍ତେ କହିଲେ, 'ହେ ବୀର, ଦେବତାମାନେ ଆପଣଙ୍କୁ ପ୍ରଶଂସା କରିଥାନ୍ତି ଏବଂ ଆପଣଙ୍କ ଦ୍ୱାରା ଭୋଜବଂଶର ଯଶ ବହୁ ଭାବରେ ବର୍ଦ୍ଧିତ ହୋଇଅଛି; ତେଣୁ ଆପଣଙ୍କ ପକ୍ଷରେ ସ୍ୱାମୀଗୃହକୁ ଯାଉଥିବା ନିଜର ଏହି ସଦ୍ୟ ବିବାହିତା ଭଉଣୀକୁ ହତ୍ୟା କରିବା କ'ଣ ଉଚିତ ହେଉଅଛି ?' ଜୀବ ମାତ୍ରେ ମରଣଶୀଳ । ପ୍ରତ୍ୟେକ ଜୀବର ଜନ୍ମ ସଙ୍ଗେ ସଙ୍ଗେ ତା'ର ମୃତ୍ୟୁ ମଧ୍ୟ ନିର୍ଦ୍ଧାରିତ ହୋଇଥାଏ । ଆଜି ହେଉ ବା କାଲି ହେଉ, ଅଥବା ଶହେ ବର୍ଷ ପରେ ହେଉ ଜୀବ ମାତ୍ରେ ହିଁ ଦିନେ ନା ଦିନେ ମୃତ୍ୟୁ ମୁଖରେ ପତିତ ହେବେ । ମୃତ୍ୟୁ

ଆସିଲେ, ଶରୀରର ବିନାଶ ଘଟେ ଏବଂ ଜୀବ ନିଜର ଆତ୍ମକୃତ କର୍ମାନୁସାରେ ଅନ୍ୟ ଦେହକୁ ଆଶ୍ରୟ କରିବାପାଇଁ ପୂର୍ବ ଦେହକୁ ପରିତ୍ୟାଗ କରିଥାଏ । ଚାଲିବା ସମୟରେ ମନୁଷ୍ୟ ଯେପରି ପାଦ ପରେ ପାଦ ଉଠାଇ ପକାଇଥାଏ, ଜୋକ ଯେପରି ଗୋଟିଏ ତୃଣକୁ ଅବଲମ୍ବନ କରି ପରେ ଅନ୍ୟ ତୃଣକୁ ଆଶ୍ରୟ କରି ପୂର୍ବ ତୃଣକୁ ପରିତ୍ୟାଗ କରିଚାଲେ, ସେହିପରି ଦେହୀମାନେ ନିଜ ନିଜର କର୍ମ ଅନୁସାରେ ଅନ୍ୟ ଦେହ ଅବଲମ୍ବନ କରି ପୂର୍ବ ଦେହକୁ ପରିତ୍ୟାଗ କରିଥାନ୍ତି । ମନୁଷ୍ୟ ଜାଗ୍ରତ ସମୟରେ ବିଭିନ୍ନ ବିଷୟ ଓ ଦୃଶ୍ୟମାନ ଦର୍ଶନ କରି ତହିଁରେ ଏପରି ଆକୃଷ୍ଟ ହୋଇପଡ଼େ ଯେ, ପରେ ନିଦ୍ରିତାବସ୍ଥାରେ ସେସବୁକୁ ସ୍ୱପ୍ନରେ ଦେଖି ସତ୍ୟ ବୋଲି ମନେ କରିଥାଏ । ଦର୍ପଣରେ ନିଜର ପ୍ରତିରୂପକୁ ଦେଖି ମନୁଷ୍ୟ ନିଜ ପ୍ରକୃତ ଦେହର ପ୍ରକୃତ ଅବସ୍ଥାକୁ ଭୁଲିଯାଇ ସ୍ୱପ୍ନକାଳୀନ ଦେହରେ ବିଶ୍ୱାସ କରିପରି ବସ୍ତୁସମ୍ଭୋଗ କରେ ଏବଂ ଏହି କର୍ମକୃତ କାମନା ଓ କାମନାକୃତ କର୍ମରେ ବଶୀଭୂତ ହୋଇ ବିଶିଷ୍ଟ ଶରୀର ପ୍ରାପ୍ତ ହୋଇ ପୂର୍ବ ଶରୀରକୁ ଭୁଲିଯାଏ । ସେହିପରି ମନୁଷ୍ୟର କାମନାମୟ ଚିତ୍ତ ନାନା ପ୍ରକାରର ସଂସ୍କାରରେ ଯୁକ୍ତ ହୋଇଥିଲେ ମଧ୍ୟ ମୃତ୍ୟୁ ସମୟରେ ନିଜର ଆତ୍ମକୃତ କର୍ମରେ ବଶୀଭୂତ ହୋଇ ତଦନୁସାରେ ବିଶିଷ୍ଟ ଶରୀର ଧାରଣ କରିଥାଏ । ଯେପରି ବାୟୁ-ଆନ୍ଦୋଳିତ ଜଳର ପୃଷ୍ଠରେ ପ୍ରତିବିମ୍ବିତ ଚନ୍ଦ୍ରକୁ ଆନ୍ଦୋଳିତ ହେବା ଦେଖିଲେ ପ୍ରକୃତ ଚନ୍ଦ୍ର ଆନ୍ଦୋଳିତ ହେଉଅଛି ବୋଲି ପ୍ରତୀତ ହୁଏ, ଅନୁରୂପ ଭାବରେ ଜୀବ ନିଜର ସ୍ୱରୂପକୁ ଓ ଅଜ୍ଞାନତା ପୁଷ୍ଟ ଶରୀରକୁ ଚିରନ୍ତନ ଓ ନିଜର ନିତ୍ୟସାଥୀ ବୋଲି ଭ୍ରମ କରିଥାଏ । ବାସ୍ତବିକ ଶରୀର ସତ୍ୟ ନୁହେଁ, ତାହା ମରଣଶୀଳ । ପ୍ରାଣୀର ଜୀବନରେ ମୃତ୍ୟୁ ଭବିତବ୍ୟ; ତେଣୁ ଯାହା ନିଶ୍ଚିତ ଓ ଭବିତବ୍ୟ, ସେହି ମୃତ୍ୟୁରେ ଭୀତ ହୋଇ ଭଗିନୀକୁ ହତ୍ୟାକରିବା ଆପଣଙ୍କ ପକ୍ଷରେ ଆଦୌ ସଙ୍ଗତ ନୁହେଁ । ଯେଉଁମାନେ କଲ୍ୟାଣକାମୀ ସେମାନେ ସେଥିପାଇଁ କାହା ପ୍ରତି କୌଣସି ଦ୍ରୋହ ଆଚରଣ କରନ୍ତି ନାହିଁ; କାରଣ ଜୀବର ଭବିଷ୍ୟତ ସର୍ବଦା ତା'ର କର୍ମଫଳର ଅଧୀନ । ପରର ଅନିଷ୍ଟକାରୀମାନଙ୍କର ଇହକାଳ ଓ ପରକାଳ ଦୁଃଖ ମଧ୍ୟରେ ଅତିବାହିତ ହୋଇଥାଏ । ଭାଇ କଂସ, ଧାନ ଓ ଆର୍ତ୍ତମାନଙ୍କ ପ୍ରତି

ତସ୍ମାତ୍ଭବ ପୋଷଣ କରିବା ସର୍ବଦା କର୍ତ୍ତବ୍ୟ । ସଦ୍ୟ ବିବାହିତା ଦେବକୀ ତୁମର କନିଷ୍ଠା ଭଗିନୀ; ତେଣୁ କନ୍ୟା ପରି ସେ ତୁମର ରକ୍ଷଣୀୟା । ବିନା ଅପରାଧରେ ଏହି ନିଷ୍ପାପ ବାଳିକାକୁ ହତ୍ୟା କରିବା କୌଣସି କାରଣରେ କେବଳ ଅନୁଚିତ ନୁହେଁ, ଘୋର ଅଧର୍ମ ମଧ୍ୟ ।’

ବସୁଦେବ ଏପରି କହିଲେ ମଧ୍ୟ, କଂସର ନିଷ୍ଠୁର ହୃଦୟରେ ସେପରି କୌଣସି ଭାବାନ୍ତର ପରିଦୃଷ୍ଟ ହେଲା ନାହିଁ । କଂସ ପରି ନିର୍ମମ ବ୍ୟକ୍ତିର ଆକ୍ରମଣରୁ ଦେବକୀଙ୍କୁ କିପରି ରକ୍ଷା କରିବେ ସେଥିପାଇଁ ବସୁଦେବ ବିଶେଷ ବିଚଳିତ ହୋଇ ପଡ଼ିଲେ । ବସୁଦେବ ମନେ ମନେ ଭାବିବାକୁ ଲାଗିଲେ, ‘ମୃତ୍ୟୁ କବଳରୁ ରକ୍ଷା ଲାଭ କରିବା ନିମନ୍ତେ ପ୍ରତ୍ୟେକ ନିଜର ବୁଦ୍ଧି ଓ ବଳ ଅନୁସାରେ ଯଥୋପଯୁକ୍ତ ଉଦ୍ୟମ କରିବା ଉଚିତ । ଯାହା ବିଧିନିର୍ଦ୍ଦିଷ୍ଟ ତାହା ଅବଶ୍ୟ ଘଟିବ; ତାକୁ ବା ଅନ୍ୟଥା କରିବ କିଏ ? ମୁଁ ଯଦି ସନ୍ତାନ ଲାଭ କରେ, ତେବେ କଂସର ହାତରେ ତାକୁ ଅର୍ପଣ କରିବି, ଏପରି ପ୍ରତିଶ୍ରୁତି ଦେଇ ଦେବକୀଙ୍କର ପ୍ରାଣରକ୍ଷା କରେ । ମୋର ପୁତ୍ରର ହସ୍ତରେ କଂସର ମୃତ୍ୟୁ ବରଣ କରିବାର ଥିଲେ, ତାକୁ ଅନ୍ୟଥା କରିବ କିଏ; ତାହା ଯଥାସମୟରେ ଘଟିବ । ଜନ୍ମ ଏବଂ ମୃତ୍ୟୁ—ସବୁ ଅଦୃଷ୍ଟର ଅଧୀନ । ଅନାଗତ ଭବିଷ୍ୟତକୁ ଅଦୃଷ୍ଟଙ୍କ ହାତରେ ଛାଡ଼ିଦେଇ ସେ କୌଣସି ଉପାୟରେ କୌଶଳକ୍ରମେ ଦେବକୀଙ୍କର ପ୍ରାଣ ରକ୍ଷା କରିବା ନିଶ୍ଚୟ ଅନ୍ୟାୟ ହେବ ନାହିଁ ।’ ଏପରି ଭାବି କଂସକୁ ପ୍ରସନ୍ନ କରିବା ନିମନ୍ତେ ବସୁଦେବ ଚେଷ୍ଟା କଲେ । ନିଜର ହୃଦୟ ଅବର୍ଣ୍ଣନୀୟ ଦୁଃଖରେ ସତତ ଦଗ୍ଧୀଭୂତ ହେଉଥିଲେ ମଧ୍ୟ ବସୁଦେବ ନିଜର ଦୁଃଖଭାବକୁ ଗୋପନ କରି, ମୁହଁରେ ହସ ଖେଳାଇ ନିର୍ଦ୍ଦୟ ହୃଦୟ ନିର୍ଲଜ୍ଜ କଂସକୁ କହିଲେ, ‘ସୌମ୍ୟ, ଏହି ଆକାଶବାଣୀକୁ ବିଶ୍ୱାସ କରି ଦେବକୀଙ୍କ ଆଡ଼ୁ କୌଣସି ଭୟର ଆଶଙ୍କା କରନ୍ତୁ ନାହିଁ । ଦେବକୀଙ୍କର ଗର୍ଭଜାତ ପୁତ୍ରଠାରୁ ଯଦି ତଥାପି ଭୟର ଆଶଙ୍କା କରୁଥାନ୍ତି, ତେବେ ନିଶ୍ଚିନ୍ତ ହୁଅନ୍ତୁ । ଦେବକୀଙ୍କର ଗର୍ଭରୁ ସନ୍ତାନ ଜାତ ହେବା ମାତ୍ରେ ମୁଁ ତାକୁ ଆପଣଙ୍କ ହସ୍ତରେ ଅର୍ପଣ

କରିଦେବ । ତେଣୁ ଆପଣ ନିଜ ମନରୁ ସମସ୍ତ ଭୟ ଓ ଦୁର୍ଭାବନାକୁ ଦୂର କରନ୍ତୁ ।'

ବସୁଦେବଙ୍କର ସତ୍ୟତା ଉପରେ କଂସର ଯଥେଷ୍ଟ ବିଶ୍ବାସ ଥିଲା । କଂସର ମନକୁ ବସୁଦେବଙ୍କର ସେହି ପ୍ରସ୍ତାବ ଅତ୍ୟନ୍ତ ଯୁକ୍ତିସଙ୍ଗତ ବୋଲି ବୋଧ ହେଲା । ସେ ବସୁଦେବଙ୍କ କଥାରେ ଆସ୍ଥା ରଖି ଦେବକୀଙ୍କୁ ଛାଡ଼ି ଦେଲା । ନବପରିଣୀତା ପତ୍ନୀଙ୍କ ସହିତ ବସୁଦେବ ପ୍ରସନ୍ନ ମନରେ ସ୍ବଗୃହକୁ ଯାତ୍ରା କଲେ ।

ଏହି ଘଟଣା ପରେ ବର୍ଷ ପରେ ବର୍ଷ ଅତିବାହିତ ହେବାକୁ ଲାଗିଲା । ପ୍ରତିବର୍ଷ ଦେବକୀଙ୍କ ଗର୍ଭରୁ ଗୋଟିଏ କରି ସନ୍ତାନ ଜନ୍ମ । ସନ୍ତତି ଜାତ ହେଉଥିଲେ; ସେମାନଙ୍କ ମଧ୍ୟରେ ଆଠଟି ପୁତ୍ର ଓ ଗୋଟିଏ କନ୍ୟା ଥିଲେ । ବସୁଦେବ ଅତ୍ୟନ୍ତ ସତ୍ୟପରାୟଣ ଥିଲେ; ତେଣୁ ସେ ନିଜର ପ୍ରତିଶ୍ରୁତି ଅନୁସାରେ ସନ୍ତାନ ବା ସନ୍ତତି ଜନ୍ମହେବା ମାତ୍ରେ ଅତ୍ୟନ୍ତ ଦୁଃଖର ସହିତ ଗୋଟିଏ ପରେ ଗୋଟିଏ ସେମାନଙ୍କୁ କଂସର ହସ୍ତରେ ଅର୍ପଣ କରି ଦେଉଥିଲେ । ବସୁଦେବଙ୍କର ସତ୍ୟନିଷ୍ଠା ଓ ସାଧୁତା ଦର୍ଶନ କରି କଂସ ମଧ୍ୟ ପ୍ରୀତ ଓ ଅଭିଭୂତ ହୋଇ ପଡ଼ୁଥିଲା । ବସୁଦେବଙ୍କୁ ନିଜର ପ୍ରଥମ ସନ୍ତାନ ସହିତ ଆସିବାର ଦେଖି, କଂସ ସହାସ୍ୟ ବଦନରେ କହିଥିଲା, 'ତୁମର ଅଷ୍ଟମ ପୁତ୍ର ହିଁ ମୋର ବିପଦର କାରଣ । ତୁମର ଅଷ୍ଟମ ପୁତ୍ର ଦ୍ଵାରା ମୋର ମୃତ୍ୟୁ ସଙ୍ଘଟିତ ହେବ ବୋଲି ଦୈବବାଣୀ ହୋଇଅଛି । ଏହି ଶିଶୁକୁ ତୁମେ ନେଇଯାଅ । ଏହାଦ୍ଵାରା ମୋର କୌଣସି ଭୟ ଉତ୍ପାଦିତ ହେବାର ସାମାନ୍ୟତମ ସମ୍ଭାବନା ନାହିଁ ।'

କଂସଠାରୁ ଏପରି ଅପୂର୍ବ ଓ ଅପ୍ରତ୍ୟାଶିତ ଦୟାପୂର୍ଣ୍ଣ ଉଦାରତା ବସୁଦେବ କେବେ ଆଶାକରି ନ ଥିଲେ । ତେଣୁ କଂସର କଥା ଯେ ବସୁଦେବଙ୍କ ପିତୃହୃଦୟକୁ ପ୍ରୀତ କରିଥିବ, ଏହା କହିବା ବାହୁଲ୍ୟ ମାତ୍ର । ଶିଶୁସନ୍ତାନକୁ ସଙ୍ଗରେ ନେଇ ବସୁଦେବ ଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିଲେ ସତ, ହେଲେ ଅସ୍ଥିର ଚିତ୍ତ ନିର୍ଦ୍ଦୟ କଂସଠାରୁ ସେ ସର୍ବଦା ବିପଦ ଆଶଙ୍କା କରୁଥିଲେ ।

ଏହି ସମୟରେ ଥରେ ଦେବର୍ଷି ନାରଦ କଂସ ନିକଟକୁ ଆସି କହିଲେ, 'କଂସ, ନନ୍ଦପ୍ରମୁଖ ଗୋପମାନେ ଓ ସେମାନଙ୍କର ପତ୍ନୀ ଏବଂ ପରିବାରବର୍ଗ, ବସୁଦେବ ଓ ବୃଷ୍ଣିବଂଶୀ ଯାଦବମାନେ ସମସ୍ତେ ଦେବତା, ନନ୍ଦ ଓ ବସୁଦେବଙ୍କର ଯେଉଁ ଜ୍ଞାତିବନ୍ଧୁମାନେ ତୁମର ସେବା କରୁଅଛନ୍ତି, ସେମାନେ ସମସ୍ତେ ଦେବ-ଅଂଶରେ ଜାତ ହୋଇ-ଅଛନ୍ତି । ଦୈତ୍ୟମାନଙ୍କ ଅତ୍ୟାଚାରରେ ବସୁଧାର ଭାର ବହୁଭାବରେ ବୃଦ୍ଧି ଲାଭ କରିଅଛି । ତେଣୁ ଦୈତ୍ୟମାନଙ୍କର ବିନାଶ ନିମନ୍ତେ ଦେବତାମାନେ ସତତ ଚେଷ୍ଟା କରୁଅଛନ୍ତି । ଏହା ତୁମର ଅବଗତି ନିମନ୍ତେ ମୁଁ ଜଣାଇଲି ।'

ଦେବର୍ଷି ନାରଦଙ୍କ କଥା ଶୁଣି କଂସ ବିଶେଷ ଚିନ୍ତିତ ହେଲା । ଯଦୁବଂଶୀୟ ବୀରମାନେ ଦେବଅଂଶୀ ହେଲେ ଦେବକୀଙ୍କ ଗର୍ଭରୁ ସ୍ୱୟଂ ବିଷ୍ଣୁ ଜାତ ହୋଇ କଂସର ନିଧନ ସାଧନ କରିବା ଅସମ୍ଭବ ନୁହେଁ ଭାବି ନିଜର ଭବିଷ୍ୟତ ନିରାପତ୍ତା ନିମନ୍ତେ କଂସ ଏକ ଉପାୟ ସ୍ଥିର କଲା ଏବଂ ତଦନୁସାରେ ବସୁଦେବ ଓ ଦେବକୀଙ୍କୁ ଶୃଙ୍ଖଳାବଦ୍ଧ କରି କାରାଗାର ମଧ୍ୟରେ ବନ୍ଦୀ କରି ରଖିଲା । ଦେବକୀଙ୍କ ଗର୍ଭରୁ ଯେଉଁ ସନ୍ତାନସନ୍ତତିମାନେ ଜାତ ହେଲେ, ସେମାନଙ୍କୁ ଗୋଟିଏ ପରେ ଗୋଟିଏ କଂସ ହତ୍ୟା କରିବାକୁ ଲାଗିଲା ।

ନିଜର ସ୍ୱାର୍ଥ ସାଧନ ପାଇଁ ରାଜାମାନେ ସବୁ କିଛି କରି ପାରନ୍ତି; ଏପରି କି ସେମାନେ ନିଜର ପିତା, ମାତା, ଭାଇ, ବନ୍ଧୁମାନଙ୍କୁ ହତ୍ୟା କରିବାକୁ ମଧ୍ୟ କୁଣ୍ଠା କରନ୍ତି ନାହିଁ । ଭଗବାନ ବିଷ୍ଣୁ ପୂର୍ବ-କାଳରେ କାଳନେମି ନାମକ ଏକ ଅସୁରକୁ ନିଧନ କରିଥିଲେ । ସେହି କାଳନେମି ଏହି ଜନ୍ମରେ କଂସ ରୂପରେ ଜନ୍ମ ହୋଇଥିବା କଥାମାନ କଂସର ସ୍ମରଣ ହେବାରୁ ସେ ପୂର୍ବର ବୈରିତାକୁ ସ୍ମରଣ କରି ଦେବ-ଅଂଶରେ ଜାତ ହୋଇଥିବା ଯାଦବମାନଙ୍କ ସହିତ ଘୋର ଶତ୍ରୁତା ଆରମ୍ଭ କରିଦେଲା । କଂସ ଅତ୍ୟନ୍ତ ପରାକ୍ରମଶାଳୀ ଥିଲା । କଂସର ପିତା ଉଗ୍ରସେନ ଯଦୁ, ଭୋଜ ଓ ଅନ୍ଧକ ବଂଶୀୟମାନଙ୍କର ତଥା ଶୂରସେନ ରାଜ୍ୟର ରାଜା ଥିଲେ । କଂସ କାଳବିଳମ୍ବ ନ କରି ପିତା ଉଗ୍ରସେନଙ୍କୁ ବନ୍ଦୀକରି କାରାଗାରରେ ନିକ୍ଷେପ କଲା ଏବଂ ନିଜେ

ଶୂରସେନ ଦେଶର ରାଜସିଂହାସନକୁ ଅଧିକାର କରି ଶାସନ କଲା ଏବଂ ରାଜସୁଖ ଉପଭୋଗ କରିବାକୁ ଲାଗିଲା । କାଳକ୍ରମେ ପ୍ରଲମ୍ବ, ବକ, ଚାଣୁର, ତୃଣାବର୍ତ୍ତ, ଅଘ, ମୁଷ୍ଟିକ, ବୃଷଭ, ଦ୍ୱିବିଧ, ପୂତନା, କେଶୀ, ଧେନୁକ, ବାଣ, ନରକ ପ୍ରମୁଖ ଅସୁର ପ୍ରଧାନମାନଙ୍କର ତଥା ମଗଧରାଜ ପ୍ରତାପୀ ଜରାସନ୍ଧର ବନ୍ଧୁତ୍ୱ ଲାଭ କରି କଂସ ଦିନକୁ ଦିନ ଅପ୍ରତିହତ ପରାକ୍ରମର ଅଧିକାରୀ ହେଲା ଏବଂ ନିଜର ଶତ୍ରୁମାନଙ୍କୁ ନିଧନ ଓ ଦମନ କରିବା ନିମନ୍ତେ ବିଭିନ୍ନ ଅସୁରମାନଙ୍କୁ କୁରୁ, ପାଞ୍ଚାଳ, କେକୟ, ଶାଲ୍ୱ, ବିଦର୍ଭ, ନିଷଧ, ବିଦେହ, କୋଶଳ ପ୍ରଭୃତି ଦେଶରେ ସମସ୍ତଙ୍କ ଅଲକ୍ଷ୍ୟରେ ପ୍ରଚ୍ଛନ୍ନ ଭାବରେ ବାସ କରିବାକୁ ନିର୍ଦ୍ଦେଶ ଦେଲା । ଯଦୁଲୋକ କଂସର ଅପୂର୍ବ ପ୍ରତାପରେ ଭୟଭୀତ ହୋଇ ତା'ର ବଶ୍ୟତା ସ୍ୱୀକାର କରି ତା'ର ମତ ଅନୁସାରେ କାର୍ଯ୍ୟ କରିବାକୁ ଲାଗିଲେ ।

ଗୋଟିଏ ପରେ ଗୋଟିଏ, ଏହିପରି ଦେବକୀଙ୍କ ଗର୍ଭଜାତ ଛ'ଗୋଟି ସନ୍ତାନଙ୍କୁ କଂସ ହତ୍ୟା କରିବା ପରେ ଦେବକୀଙ୍କ ଗର୍ଭରେ ସପ୍ତମ ସନ୍ତାନ ଭାବରେ ଅନନ୍ତ ନାମଧେୟ ଭଗବାନ ଶେଷଦେବ ଆବିର୍ଭୂତ ହେଲେ । ଦେବକୀଙ୍କ ଗର୍ଭରେ ଭଗବାନ ଶେଷଦେବଙ୍କ ଅବସ୍ଥାନ ଦେବତାମାନଙ୍କୁ ଯେଉଁ ପରିମାଣରେ ଆନନ୍ଦିତ କଲା; ତା'ଠାରୁ ଅଧିକ ଚିନ୍ତିତ କରିଥିଲା; କାରଣ ଦେବକୀଙ୍କର ପୂର୍ବ ସନ୍ତାନଙ୍କ ପରି ଏହି ସନ୍ତାନ ମଧ୍ୟ କଂସ ଦ୍ୱାରା ନିହତ ହେବା ନିଶ୍ଚିତ ।

ଦେବତାମାନଙ୍କର ଚିନ୍ତାର କଥା ଭଗବାନଙ୍କୁ ଅଛପା ରହିଲା ନାହିଁ । ସେ ନିଜର ଯୋଗମାୟାଙ୍କୁ ଆଦେଶ ଦେଲେ, 'ଭଦ୍ରେ, ଦେବି, ତୁମେ ଗୋପ ଗୋପୀମାନଙ୍କ ଆବାସସ୍ଥଳୀ ବ୍ରଜକୁ ଯାଅ । ସେଠାରେ ବସୁଦେବଙ୍କର ରୋହିଣୀ ପ୍ରମୁଖ ଅନ୍ୟ ପତ୍ନୀମାନେ କଂସ ଭୟରେ ଭୀତ ହୋଇ ନନ୍ଦଙ୍କର ଗୋକୁଳରେ ଗୋପନରେ ଅବସ୍ଥାନ କରୁଅଛନ୍ତି । ମୋର ଅଂଶରେ ଶେଷଦେବ ଦେବକୀଙ୍କ ଗର୍ଭରେ ଅବସ୍ଥାନ କରୁଅଛନ୍ତି । ତୁମେ ଦେବକୀଙ୍କ ଗର୍ଭରୁ ଶେଷଦେବଙ୍କୁ ଆକର୍ଷଣ କରି ସମସ୍ତଙ୍କ ଅଗୋଚରରେ ରୋହିଣୀଙ୍କ ଗର୍ଭରେ ସନ୍ନିବେଶିତ କର । କଲ୍ୟାଣୀ, ଏହାପରେ ମୁଁ ସମସ୍ତ ଅଂଶ ଓ ଭାବସମନ୍ୱିତ ହୋଇ ଦେବକୀଙ୍କର

ପୁତ୍ର ରୂପେ ତାଙ୍କ ଗର୍ଭରେ ଅବସ୍ଥାନ କରି, ପରେ ପ୍ରକଟିତ ହେବ ଏବଂ ତୁମେ ନନ୍ଦଙ୍କର ପତ୍ନୀ ଯଶୋଦାଙ୍କ ଗର୍ଭରୁ ଜାତ ହେବ । ତୁମେ ସର୍ବବରଦାୟିନୀ ଓ ସର୍ବଜନପୂଜ୍ୟା ହେବ ଏବଂ ଜନସମାଜରେ ଦୁର୍ଗା, ଭଦ୍ରକାଳୀ, ବିଜୟା, ବୈଷ୍ଣବୀ, କୁମୁଦା, ଚଣ୍ଡିକା, କୃଷ୍ଣା, ମାଧବୀ, କନ୍ୟକା, ମାୟା, ନାରାୟଣୀ ଈଶାନୀ, ଶାରଦା ଏବଂ ଅମ୍ବିକା ଆଦି ବହୁ ନାମରେ ତୁମର ବହୁଳ ପ୍ରଚାର ହେବ । ଦେବକୀଙ୍କ ଗର୍ଭରୁ ଏହି ସନ୍ତାନକୁ ଆକର୍ଷଣ କରି ରୋହିଣୀଙ୍କ ଗର୍ଭରେ ସ୍ଥାପନ କରିବା ଫଳରେ ଏହି ସନ୍ତାନ ସଙ୍କର୍ଷଣ ନାମରେ, ସମସ୍ତଙ୍କର ପ୍ରୀତି ଉତ୍ପାଦନ କରିବାକୁ କ୍ଷମ ଥିବାରୁ ରାମ ନାମରେ ଏବଂ ଅତ୍ୟନ୍ତ ବଳଶାଳୀ ହେବାରୁ ବଳଭଦ୍ର ନାମରେ କାଳକ୍ରମେ ପ୍ରସିଦ୍ଧି ଲାଭ କରିବେ ।'

ଭଗବାନଙ୍କଠାରୁ ଏହିପରି ଭାବରେ ଆଦିଷ୍ଟ ହୋଇ ଦେବୀ ଯୋଗମାୟା ଭଗବାନଙ୍କୁ ସଭକ୍ତି ପ୍ରଦକ୍ଷିଣ କରି ଭୂଲୋକକୁ ଯାତ୍ରା କଲେ ଏବଂ ଭଗବାନଙ୍କ ନିର୍ଦ୍ଦେଶାନୁସାରେ ଦେବକୀଙ୍କ ଗର୍ଭକୁ ଆକର୍ଷଣ କରି ରୋହିଣୀଙ୍କ ଗର୍ଭରେ ସ୍ଥାପନ କଲେ । ଯୋଗମାୟାଙ୍କର ଏହି କାର୍ଯ୍ୟ ସମସ୍ତଙ୍କ ଅଲକ୍ଷ୍ୟରେ ଘଟିଥିଲେ ମଧ୍ୟ ଦେବକୀଙ୍କର ଗର୍ଭନଷ୍ଟ ହୋଇଅଛି ଜାଣି ପୁରବାସୀମାନେ ଅତ୍ୟନ୍ତ ଦୁଃଖିତ ହେଲେ ଏବଂ କୁହାକୁହି କଲେ, 'ହାୟ, ଦେବକୀଙ୍କର ଏହି ଗର୍ଭ ନଷ୍ଟ ହୋଇଗଲା । ହାୟ, ହାୟ !'

ଏହି ଘଟଣାର କିଛି କାଳ ପରେ, ଯଥା ସମୟରେ ଭକ୍ତମାନଙ୍କର ଅଭୟଦାତା, ବିଶ୍ୱାତ୍ମା, ସର୍ବୈଶ୍ୱର୍ଯ୍ୟମୟ ଭଗବାନ ଦେବକୀଙ୍କ ଗର୍ଭରେ ପ୍ରବେଶ କଲେ । ଭଗବାନଙ୍କୁ ଗର୍ଭରେ ଧାରଣ କରିବା ଫଳରେ ଦେବକୀଙ୍କର ମନରେ ଅପୂର୍ବ ଆନନ୍ଦ ସଞ୍ଚାରିତ ହେଲା ଏବଂ ତାଙ୍କର ଶରୀର ଅପୂର୍ବ ଜ୍ୟୋତି ଧାରଣା କରି ବିକଶିତ ହୋଇ ଉଠିଲା ।

ଗର୍ଭବତୀ ଦେବକୀଙ୍କୁ ପ୍ରଫୁଲ୍ଲିତା ଦେଖି କଂସର ମନରେ ଭାବାନ୍ତର ଜାତ ହେଲା ଏବଂ ସେ ମନେ ମନେ ଭାବିବାକୁ ଲାଗିଲା, 'ଦେବକୀ ଏପରି ଆନନ୍ଦିତା ଥିବାର ଜଣାପଡ଼ୁଅଛି କାହିଁକି ? ପୂର୍ବରୁ ତ

ସେ କେବେ ଏପରି ନ ଥିଲା ? ମୋର ମୃତ୍ୟୁ ସଂଘଟନକାରୀ ଭଗବାନ ହରି କ'ଣ ତା'ର ଗର୍ଭରେ ବର୍ତ୍ତମାନ ଅବସ୍ଥାନ କରୁଅଛନ୍ତି ? ଯଦି ତାହି ହୋଇଥାଏ, ତେବେ ମୋତେ ଅତିଶୀଘ୍ର ଗୋଟାଏ କିଛି କରିବାକୁ ପଡ଼ିବ; ବର୍ତ୍ତମାନ ମୋର କର୍ତ୍ତବ୍ୟ କ'ଣ ? ଦେବକୀ ପ୍ରଥମତଃ ନାରୀ, ଦ୍ୱିତୀୟରେ ସେ ମୋର ଭଗିନୀ; ତା'ଛଡ଼ା ସେ ବର୍ତ୍ତମାନ ଗର୍ଭବତୀ ! ତାକୁ ଯଦି ମୁଁ ବର୍ତ୍ତମାନ ହତ୍ୟା କରେ ତେବେ ମୋର ପରାକ୍ରମ ଓ ପୌରୁଷ ପ୍ରକାଶ ପାଇବା ପରିବର୍ତ୍ତେ ନାରୀହତ୍ୟାର କଳଙ୍କ ମୋତେ ସ୍ପର୍ଶ କରିବ ଏବଂ ମୋର ସମସ୍ତ କୀର୍ତ୍ତି, ଯଶ, ଲକ୍ଷ୍ମୀ ଓ ଆୟୁ ସଙ୍ଗେ ସଙ୍ଗେ ବିନଷ୍ଟ ହେବ । ଯେଉଁ ବ୍ୟକ୍ତି କ୍ରୂରତା ଅବଲମ୍ବନ କରି ବଞ୍ଚିରହେ, ସେ ଜୀବିତ ଥାଇ ମଧ୍ୟ ସେ ମୃତ ତୁଲ୍ୟ । ସେ ବଞ୍ଚିଥିବା ବେଳେ ବହୁ ଅପମାନସୂଚକ ସମାଲୋଚନାର ଶରବ୍ୟ ହୁଏ ଏବଂ ମୃତ୍ୟୁ ପରେ କୁମ୍ଭୀପାକ ନରକରେ ବାସ କରେ । ଅନ୍ୟର ଅନିଷ୍ଟକାରୀକୁ ମଧ୍ୟ ଅନ୍ଧକାରାଚ୍ଛନ୍ନ ନରକ ଭୋଗ କରିବାକୁ ପଡ଼ିଥାଏ ।'

ଏହିପରି ବିଚାର କରି କଂସ ଦେବକୀଙ୍କର ହତ୍ୟା କିମ୍ବା ଗର୍ଭପାତ ଆଦି କୁକର୍ମରୁ ନିଜକୁ ନିବୃତ୍ତ କଲା । କିନ୍ତୁ ନିଜର ମୃତ୍ୟୁ-ଭୟଜନିତ ଦୁଶ୍ଚିନ୍ତା ତାକୁ ସବୁ ସମୟରେ ଅତ୍ୟନ୍ତ ବିଚଳିତ କରି ରଖିଲା । ସେ ସବୁ ସମୟରେ ଭଗବାନଙ୍କ ଜନ୍ମକୁ ଅତ୍ୟନ୍ତ ଉଦ୍‌ବିଗ୍ନ-ଚିତ୍ତର ସହିତ ପ୍ରତୀକ୍ଷା କରିବାକୁ ଲାଗିଲା । ସମସ୍ତ ଜଗତ ତାକୁ କୃଷ୍ଣମୟ ପ୍ରତୀତ ହେଲା ।

ଦେବକୀଙ୍କ ଗର୍ଭରେ ଭଗବାନ ପ୍ରବେଶ କରିଥିବା ଜାଣି ଭଗବାନ ବ୍ରହ୍ମା ଓ ଶଙ୍କର ନିଜ ନିଜର ଅନୁଚର ଦେବଗଣ ତଥା ଋଷୀ-ମାନଙ୍କ ସହିତ ବସୁଦେବ ଓ ଦେବକୀ ବନ୍ଦୀ ହୋଇ ଅବସ୍ଥାନ କରୁଥିବା କଂସର କାରାଗାରକୁ ଆସି ଭଗବାନଙ୍କ ଉଦ୍ଦେଶ୍ୟରେ ସ୍ତୁତି କରିବାକୁ ଲାଗିଲେ ।

'ହେ ପ୍ରଭୁ, ଆପଣ ସତ୍ୟବ୍ରତ ଏବଂ ସତ୍ୟାଚରଣ ମଧ୍ୟରେ ହିଁ ଆପଣଙ୍କୁ ଲାଭ କରାଯାଇଥାଏ । ସୃଷ୍ଟି ପୂର୍ବରୁ ଆପଣ ଥିଲେ, ଆପଣ ବର୍ତ୍ତମାନ ବିଦ୍ୟମାନ ଅଛନ୍ତି ଏବଂ ପ୍ରଳୟ ପରେ ମଧ୍ୟ ଆପଣ ରହିଥିବେ; ତେଣୁ ଆପଣ ଯଥାର୍ଥରେ ତ୍ରିସତ୍ୟ, ପୃଥିବୀ, ଜଳ, ତେଜ, ବାୟୁ ଓ

ଆକାଶ ଆଦି ପଞ୍ଚଭୂତର ଆପଣ ସୃଷ୍ଟିକର୍ତ୍ତା ଏବଂ ଏହି ପଞ୍ଚଭୂତର ବିନାଶ ଘଟିଲେ ମଧ୍ୟ ଆପଣ ଅବିନାଶୀ ପୁରୁଷ ଭାବରେ ତଥାପି ବିଦ୍ୟମାନ ରହିଥାନ୍ତି । ଆପଣ ସତ୍ୟସନ୍ଧ ଓ ସତ୍ୟସ୍ୱରୂପ ଅଟନ୍ତି । ଆପଣଙ୍କ ଠାରେ ଆମ୍ଭେମାନେ ଶରଣ ନେଇଅଛୁ । ଏହି ସଂସାର ଏକ ଚିରନ୍ତନ ବୃକ୍ଷ ସଦୃଶ । ପ୍ରକୃତି ହିଁ ଏହି ବୃକ୍ଷର ମୂଳ । ସୁଖ ଓ ଦୁଃଖ—ଏହି ବୃକ୍ଷର ଦୁଇଟି ଫଳ । ସତ୍ତ୍ୱ, ରଜ, ତମ—ଏହି ତ୍ରିଗୁଣ ଏହାର ପ୍ରଧାନ ଚେର ଏବଂ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚତୁର୍ବର୍ଗ ଏହାର ରସ । ଶ୍ରୋତ୍ର, ତ୍ୱକ୍, ଚକ୍ଷୁ, ଜିହ୍ୱା, ନାସିକା—ଏହି ପଞ୍ଚ ଜ୍ଞାନେନ୍ଦ୍ରିୟ ଏହାର ଜ୍ଞାନ ପ୍ରକାର । ଜନ୍ମ, ଅସ୍ତିତ୍ୱ, ବୃଦ୍ଧି, ବିପରିଣାମ, ଅପକ୍ଷୟ, ବିନାଶ, କିମ୍ବା ଶୋକ, ମୋହ, ଜରା, ମୃତ୍ୟୁ, କ୍ଷୁଧା, ପିପାସା—ଏହି ଛ, ଗୋଟି ଅବସ୍ଥା ଏହାର ସ୍ୱଭାବ । ତ୍ୱକ୍, ମାଂସ, ରୁଧିର, ମେଦ, ଅସ୍ଥି, ମଜ୍ଜା, ଶୁକ୍ର—ଏହି ସାତଗୋଟି ଏହାର ବଲ୍‌କଲ ଅଟେ । ଭୂମି, ଜଳ, ତେଜ, ବାୟୁ, ଆକାଶ, ମନ, ବୁଦ୍ଧି ଓ ଅହଙ୍କାର—ଏହି ଆଠଟି ଏହାର ଶାଖା ମୁଖ ଆଦି ନଅ ଗୋଟି ଛିଦ୍ର ପୁଞ୍ଜି ଏହାର କୋଟର । ପ୍ରାଣ, ଅପାନ, ସମାନ, ଉଦାନ, ବ୍ୟାନ, ନାଗ, କୂର୍ମ, କୃକର, ଦେବଦତ୍ତ, ଧନଞ୍ଜୟ—ଏହି ଦଶଟି ବାୟୁ ଏହାର ଦଶଟି ପତ୍ର । ଜୀବ ଓ ଈଶ୍ୱର ନାମକ ଦୁଇଟି ପକ୍ଷୀ ଏହି ସଂସାର ବୃକ୍ଷ ଉପରେ ବସିଅଛନ୍ତି । ଏହି ସଂସାରରୂପୀ ବୃକ୍ଷର ଆପଣ ସୃଷ୍ଟିକର୍ତ୍ତା, ବିଲୟକାରୀ ଏବଂ ପାଳନକର୍ତ୍ତା । ଯେଉଁମାନଙ୍କ ଚିତ୍ତ ଆପଣଙ୍କ ମାୟାରେ ସଦା ଆବୃତ୍ତ ସେମାନେ ଏହି ସତ୍ୟକୁ ଉପଲବ୍ଧି କରି ନ ପାରି ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କୁ ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା ଓ ସଂହାରକର୍ତ୍ତା ଭାବରେ ବିଶ୍ୱାସ କରିଥାନ୍ତି; କିନ୍ତୁ ଯେଉଁମାନେ ତତ୍ତ୍ୱଜ୍ଞାନୀ ସେମାନେ ସୃଷ୍ଟି-ସ୍ଥିତି-ଲୟ-କର୍ତ୍ତା ଭାବରେ ଆପଣଙ୍କୁ ହିଁ ଅବଲୋକନ କରିଥାନ୍ତି । ଆପଣ ଜ୍ଞାନସ୍ୱରୂପ ଆତ୍ମା । ଅଖିଳ ଜଗତର କଲ୍ୟାଣ ବିଧାନ ନିମନ୍ତେ ଆପଣ ବିଭିନ୍ନ ସମୟରେ ବିଭିନ୍ନ ରୂପ ଧାରଣ କରିଥାନ୍ତି ଏବଂ ସେହି ରୂପ ଯେପରି ଶୁଦ୍ଧ, ଅପ୍ରାକୃତ, ସତ୍ତ୍ୱମୟ ସେହିପରି ସାଧୁ ସନ୍ଥମାନଙ୍କ ପକ୍ଷରେ ସୁଖଦାୟକ । ହେ ପଦ୍ମପଲାଶ-ଲୋଚନ, ସାଧୁମାନେ ଆପଣଙ୍କ ଚରଣ କମଳ ରୂପକ ନୌକାରେ ନିଜକୁ ଏକାଗ୍ର-ଚିତ୍ତରେ ସମର୍ପଣ କରି ଭବସାଗରରୁ ଉତ୍ତୀର୍ଣ୍ଣ ହୋଇଥାନ୍ତି । ଆପଣ ଅନନ୍ତ କରୁଣାର ଅଧିକାରୀ । ଆପଣ ଅଖିଳ ଜଗତର ପାଳନ ତଥା

ଦେହଧାରୀମାନଙ୍କର କଲ୍ୟାଣ ନିମନ୍ତେ ବିଶୁଦ୍ଧ ସତ୍ତ୍ୱମୟ ସଚ୍ଚିଦାନନ୍ଦ ପୂର୍ଣ୍ଣ ପରମ ଦ୍ରବ୍ୟ ମଙ୍ଗଳମୟ ବିଗ୍ରହ ଧାରଣ କରି ପ୍ରକଟିତ ହୋଇଥାନ୍ତି ଏବଂ ଆପଣଙ୍କ ରୂପର ପ୍ରକାଶ ପରେ ଆପଣଙ୍କର ଭକ୍ତମାନେ ବେଦ, କର୍ମକାଣ୍ଡ, ଅଷ୍ଟାଙ୍ଗଯୋଗ, ତପସ୍ୟା ଓ ସମାଧି ଦ୍ୱାରା ଆପଣଙ୍କୁ ଆରାଧନା କରିଥାନ୍ତି । ଆପଣ ରୂପ ଧାରଣ କରି ଧରାଧାମରେ ପ୍ରକଟିତ ନ ହେଲେ ଜନସମାଜ କାହାକୁ ଆଶ୍ରୟ କରି ପୂଜା ଆରାଧନା କରନ୍ତେ ? ଫଳରେ ଜନସମାଜର କର୍ମଫଳ ସିଦ୍ଧି ହୁଅନ୍ତା ନାହିଁ । ଆପଣ ଯଦି ରୂପ ଧାରଣ କରି ପ୍ରକଟିତ ହୋଇ ନ ଥାନ୍ତେ ତେବେ ଭଜନର ଅଭାବରେ ଅଜ୍ଞାନ ଓ ଅଜ୍ଞାନକୃତ ଭେଦ, ଏହି ଉଭୟର ନିବର୍ତ୍ତକ ଆପଣଙ୍କ ସାକ୍ଷାତକାରମୂଳକ ବିଜ୍ଞାନ, ତାହା ମଧ୍ୟ ସମ୍ଭବ ହୁଅନ୍ତା ନାହିଁ । ଆପଣଙ୍କ ସମ୍ପର୍କରେ ନାନା ପ୍ରକାରର କଳ୍ପନା ଜଳ୍ପନା ସୃଷ୍ଟି ହୁଅନ୍ତା; କିନ୍ତୁ ଆପଣଙ୍କ ସମ୍ପର୍କରେ ପ୍ରକୃତ ସତ୍ୟର ଓ ସ୍ୱରୂପର ସାକ୍ଷାତକାର ସମ୍ଭବ ହୁଅନ୍ତା ନାହିଁ । ଆପଣ କରୁଣାପରବଶ ହୋଇ ରୂପ ଧାରଣ କରି ଅଖିଳ ଜଗତକୁ ଧନ୍ୟ କରିଅଛନ୍ତି । ଆପଣ ଆମ୍ଭମାନଙ୍କ କଲ୍ୟାଣ ସାଧନ ନିମନ୍ତେ ଜନ୍ମ ହୋଇଅଛନ୍ତି—ଏପରି ଭାବିବା ଆମ୍ଭମାନଙ୍କ ପକ୍ଷରେ ଧୃଷ୍ଟତା ହେବ, କାରଣ ଆପଣ ଅଜନ୍ମା, ଆପଣଙ୍କର ଜନ୍ମ ନାହିଁ । ଯେଉଁ ପୁରୁଷ ଆପଣଙ୍କର ନାମ ଓ ରୂପର କୀର୍ତ୍ତନ, ଶ୍ରବଣ, ସ୍ମରଣ ଓ ଧ୍ୟାନ କରେ ଏବଂ ଆପଣଙ୍କର ଚରଣ-କମଳର ସେବାରେ ମନପ୍ରାଣ ଢାଳିଦିଏ, ତା'ର ଜନ୍ମ ସାର୍ଥକ ହୁଏ ଏବଂ ସେ ଜନ୍ମ ମୃତ୍ୟୁ ରୂପକ ସଂସାରଚକ୍ରରୁ ଚିରଦିନ ପାଇଁ ମୁକ୍ତିଲାଭ କରିଥାଏ । ହେ ଦୁଃଖହରଣକାରୀ ପ୍ରଭୁ, ଆପଣ ଅଖିଳ ଜଗତର ଈଶ୍ୱର । ଏହି ପୃଥିବୀ ଆପଣଙ୍କର ଚରଣ ସଦୃଶ । ଆପଣଙ୍କ ଅବତାର ଗ୍ରହଣରେ ପୃଥିବୀର ସମସ୍ତ ଦୁଃଖ ଦୂର ହେଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ପରମ ସୌଭାଗ୍ୟର କଥା ଆପଣଙ୍କ ସର୍ବସୁଲକ୍ଷଣଯୁକ୍ତ ସୁନ୍ଦର ପାଦପଦ୍ମର ଚିହ୍ନକୁ ପୃଥିବୀପୃଷ୍ଠରେ ଦେଖିବାକୁ ସୁଯୋଗ ଲାଭ କରିବୁ ଏବଂ ସ୍ୱର୍ଗଲୋକରେ ଆପଣଙ୍କ କୃପାରୁ ଆନନ୍ଦରେ ଆମ୍ଭେମାନେ ଅବସ୍ଥାନ କରିବୁ ପ୍ରଭୁ, ପୂର୍ବେ ଯେପରି ଆପଣ ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ ଆଦି ରୂପରେ ଅବତୀର୍ଣ୍ଣ ହୋଇ ଅଖିଳ ଜଗତକୁ ଉଦ୍ଧାର

କରିଥିଲେ, ସେହିପରି ଅଚିରେ ଅବତାର ଗ୍ରହଣ କରି ବସୁଧାର ଭାର ଲାଘବ କରନ୍ତୁ, ଏହାହିଁ ଆମର ଆନ୍ତରିକ ପ୍ରାର୍ଥନା ।'

ଏହିପରି ସ୍ତୁତି କରି ଭଗବାନଙ୍କ ଚରଣକମଳ ଉଦ୍ଦେଶ୍ୟରେ ବ୍ରହ୍ମା ଓ ଶଙ୍କର ପ୍ରମୁଖ ପ୍ରଣାମ କଲେ ଏବଂ ବସୁଦେବ ଓ ଦେବକୀଙ୍କ ଅଲକ୍ଷ୍ୟରେ ଦେବକୀଙ୍କୁ ଆଶୀର୍ବାଦ କରି ସେହି ସ୍ଥାନରୁ ସେମାନେ ଅନ୍ତର୍ହିତ ହୋଇଗଲେ ।



## ଦେବକୀଙ୍କ ଗର୍ଭରୁ ଭଗବାନଙ୍କର ପ୍ରକଟନ

ଏହି ଘଟଣାର କିଛିଦିନ ପରେ, ଯେତେବେଳେ ସର୍ବଗୁଣ-ସମ୍ପନ୍ନ ପରମ କଲ୍ୟାଣପ୍ରଦ ସମୟ ଉପସ୍ଥିତ ହେଲା, ଆକାଶମଣ୍ଡଳରେ ଗ୍ରହ ଓ ନକ୍ଷତ୍ରମାନେ ଅତ୍ୟନ୍ତ ଶାନ୍ତଭାବରେ ଅବସ୍ଥାନ କରୁଥାନ୍ତି, ଆକାଶମଣ୍ଡଳ ଶାନ୍ତ, ସୁନ୍ଦର, ନିର୍ମଳ ଥିଲା ଏବଂ ତାରକାମାନେ ନିଜ ନିଜର ସୌନ୍ଦର୍ଯ୍ୟ ପ୍ରକାଶ କରି ଉଦିତ ହେଲେ, ସେତେବେଳେ ବସୁଧା ଅତ୍ୟନ୍ତ ରମଣୀୟ ରୂପ ଧାରଣ କରିଥିଲା । ସେହି ସମୟରେ ନଦୀ-ଗୁଡ଼ିକର ଜଳ ସ୍ୱଚ୍ଛ ଥିଲା, ବନ ଓ ହ୍ରଦ ଅପୂର୍ବ ଶୋଭା ଧାରଣ କରିଥିଲେ । ମଧୁପମାନେ ଆନନ୍ଦରେ ମୃଦୁ ଗୁଞ୍ଜନରତ ଥିଲେ ଏବଂ ସୁଗନ୍ଧଯୁକ୍ତ ପବିତ୍ର ବାୟୁ ସର୍ବତ୍ର ସଞ୍ଚାରିତ ହେଉଥିଲା । ସେହି ସମୟରେ ଭଗବାନଙ୍କର ଶୁଭ ପ୍ରକଟନର ଉପକ୍ରମ ହେଲା ଏବଂ ଦେବତାମାନେ ତାହା ଲକ୍ଷ୍ୟକରି ପ୍ରଫୁଲ୍ଲ ଚିତ୍ତରେ ଭଗବାନଙ୍କ ଶୁଭ ପ୍ରକଟନକୁ ଅପେକ୍ଷା କରି ରହିଲେ । କିନ୍ନର ଓ ଗନ୍ଧର୍ବମାନେ ଭଗବାନଙ୍କର ସ୍ତୁତିଗାନ କରିବାକୁ ଲାଗିଲେ ଏବଂ ବିଦ୍ୟାଧରଗଣ ଅପ୍‌ସରାମାନଙ୍କ ସହିତ ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ । ଦେବତା ଓ ଋଷିମାନେ ଆନନ୍ଦରେ କୁସୁମ ବୃଷ୍ଟି କରିବାକୁ ଲାଗିଲେ ।

ଘୋର ଅନ୍ଧକାରାଚ୍ଛନ୍ନ ଅର୍ଦ୍ଧରାତ୍ର ସମୟରେ ଦେବତା, ଋଷି ଓ ଭକ୍ତମାନେ ଆନନ୍ଦରେ ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରି କହିଲେ, 'ପ୍ରଭୁ, ଏହା ହିଁ ଆପଣଙ୍କର ପ୍ରକଟନର ପ୍ରକୃଷ୍ଟ ମୁହୂର୍ତ୍ତ । ଆପଣ ଆବିର୍ଭୂତ ହୁଅନ୍ତୁ । ଆପଣ ଏହି ସମୟରେ ଆବିର୍ଭୂତ ହୁଅନ୍ତୁ ।'

ସେହି ସମୟରେ ଜନ୍ମ-ମୃତ୍ୟୁ-ଚକ୍ରରୁ ଜୀବର ମୁକ୍ତିଦାତା ଭଗବାନ ସମସ୍ତ ଐଶ୍ୱର୍ଯ୍ୟ-ପରିପୂର୍ଣ୍ଣ-ରୂପ ଧାରଣ କରି ଚନ୍ଦ୍ର ଉଦିତ ହେଲା ପରି ଦେବ ରୂପିଣୀ ଦେବକୀଙ୍କ ଗର୍ଭରୁ ଆବିର୍ଭୂତ ହେଲେ ।

କାରାଗାର ମଧ୍ୟରେ ଦେବକୀଙ୍କ ନିକଟରେ ବସୁଦେବ ଉପସ୍ଥିତ ଥିଲେ । ବସୁଦେବ ଦେଖିଲେ ତାଙ୍କ ସମ୍ମୁଖରେ ଏକ ଅଦ୍ଭୁତ ଶିଶୁ ପ୍ରକଟିତ ହୋଇଅଛି । ଶିଶୁ ସୁନ୍ଦର ନେତ୍ର ପଦ୍ମଫୁଲ ପରି କୋମଳ ଏବଂ ବିଶାଳ; ଚାରିଗୋଟି ସୁନ୍ଦର ହସ୍ତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରିଛି, ବକ୍ଷସ୍ଥଳରେ ଶ୍ରୀବତ୍ସ ଚିହ୍ନ, ଗ୍ରୀବାରେ କୌସ୍ତୁଭ ମଣି, ଶିଶୁର ଶରୀର ନବଜଳଧର ସଦୃଶ ସୁନ୍ଦର ଶ୍ୟାମଳ ବର୍ଣ୍ଣ ବିଶିଷ୍ଟ, ଅଙ୍ଗରେ ପୀତବସନ, ମହାମୂଲ୍ୟ ବୈଦୁର୍ଯ୍ୟମଣି କିରୀଟ ଓ କୁଣ୍ଡଳ ଏବଂ ଅଳଙ୍କାରର କାନ୍ତିରେ ମସ୍ତକର କେଶ ସୂର୍ଯ୍ୟ କିରଣ ପରି ଉଦଭାସିତ । ଶିଶୁର ସମଗ୍ର ଶରୀର ନୈସର୍ଗିକ କାନ୍ତିରେ ଶୋଭା ପାଉଥିଲା ।'

ସ୍ୱୟଂ ଭଗବାନ ଯେ କଂସକୁ ସଂହାର କରିବା ନିମନ୍ତେ ଦେବକୀଙ୍କ ଗର୍ଭରୁ ଅବଶେଷରେ ଏହି ଶିଶୁ ରୂପରେ ଜାତ ହୋଇ-ଅଛନ୍ତି, ଏହା ଜାଣି ବସୁଦେବଙ୍କର ପ୍ରାଣ ଅପୂର୍ବ ବିସ୍ମୟ ଓ ପୁଲକରେ ରୋମାଞ୍ଚିତ ହୋଇଉଠିଲା । ସ୍ୱୟଂ ଭଗବାନ ତାଙ୍କର ପୁତ୍ର ରୂପରେ ଜାତ ହୋଇଅଛନ୍ତି ବୋଲି ଜାଣି ଶୃଙ୍ଖଳାବଦ୍ଧ ବସୁଦେବ ସେହି କାରାଗାର ଗୃହରୁ ବ୍ରାହ୍ମଣଙ୍କ ଉଦ୍ଦେଶ୍ୟରେ ଦଶ ସହସ୍ର ଗୋଦାନର ସଂକଳ୍ପ ମନେ ମନେ ଗ୍ରହଣ କଲେ । ସେହି ନବଜାତ ଶିଶୁର ଅପୂର୍ବ ଅଙ୍ଗ-କାନ୍ତିରେ ଅନ୍ଧକାରାଚ୍ଛନ୍ନ କାରାଗାରସ୍ଥିତ ସେହି ସୂତିକା ଗୃହ ଉଦ୍‌ଭାସିତ ହୋଇଉଠିଲା । ବସୁଦେବ ସେହି ଶିଶୁପୁତ୍ରଙ୍କୁ ପରମ ପୁରୁଷ ଭଗବାନ୍ ବୋଲି ଧାରଣା କରି ତାଙ୍କ ଉଦ୍ଦେଶ୍ୟରେ ସ୍ତୁତିଗାନ କରିବାକୁ ଲାଗିଲେ, 'ହେ ପ୍ରଭୁ, ଆଜ ମୋର ପରମସୌଭାଗ୍ୟ ଯେ, ଆପଣ ପ୍ରକୃତିରହିତ ଅନ୍ତର୍ଯ୍ୟାମୀ, ପରମାତ୍ମା, ପୁରୁଷୋତ୍ତମ । ଆପଣଙ୍କୁ ସ୍ୱଚକ୍ଷୁରେ ଦର୍ଶନ କରିବାର ଏହି ବିରଳ ସୁଯୋଗ ପ୍ରଦାନ କରି ମୋତେ ପରମ ସୌଭାଗ୍ୟର ଅଧିକାରୀ କରାଇଅଛନ୍ତି । ଆପଣ ନିଜର ମାୟାଶକ୍ତି ବଳରେ ତ୍ରିଗୁଣାମୟୀ ଏହି ଅଖିଳ ଜଗତକୁ ସୃଷ୍ଟି କରିଅଛନ୍ତି ଏବଂ ଆପଣ ମଧ୍ୟ ଏହି ଚରାଚର ଜଗତର ପାଳନକର୍ତ୍ତା ଓ ବିନାଶକାରୀ । ପ୍ରଭୁ, ଆପଣ ସର୍ବଶକ୍ତିମାନ୍ ଏବଂ ଅଖିଳ ଜଗତର ପ୍ରଭୁ ଅଟନ୍ତି । ଏହି ସଂସାରକୁ ରକ୍ଷା କରିବା ପାଇଁ ଆପଣ ଏହି ଧରାପୃଷ୍ଠରେ ଅବତାର ଗ୍ରହଣ କରିଅଛନ୍ତି । ହେ ଅଖିଳେଶ୍ୱର, ରାଜା-ନାମଧାରୀ ଅସଂଖ୍ୟ ଅସୁର ଓ ତାଙ୍କ ଅନୁଚରମାନଙ୍କୁ ଆପଣ ସଂହାର

କରିବେ । ଦେବତାମାନଙ୍କର ଆପଣ ମଧ୍ୟ ପରମ ଆଶ୍ରୟ ପ୍ରଭୁ । ଏହି କଂସ ଅତ୍ୟନ୍ତ ଦୁଷ୍ଟ ଓ ଦୁର୍ଦ୍ଧାନ୍ତ ଅଟେ । ଯେତେବେଳଠାରୁ ସେ ଜାଣିବାକୁ ପାଇଲା ଯେ ଆପଣ ମୋ ଗୃହରେ ଅବତାର ଗ୍ରହଣ କରି ତାକୁ ଧ୍ୱଂସ କରିବେ, ସେହି ଭୟରେ ବିଚଳିତ ହୋଇ ଆପଣଙ୍କର ଅଗ୍ରଜମାନଙ୍କୁ ସେ ନିର୍ମମ ଭାବରେ ସଂହାର କରିଅଛି । କଂସର ଦୂତମାନେ ସବୁବେଳେ ଆମ୍ଭମାନଙ୍କ ଉପରେ ସତର୍କ ଦୃଷ୍ଟି ରଖିଅଛନ୍ତି । ସେ ଯେତେବେଳେ ମୋ କୋଳରେ ଆପଣଙ୍କର ଆବିର୍ଭାବର କଥା ଦୂତମାନଙ୍କଠାରୁ ଶୁଣିବାକୁ ପାଇବ, ସେ ସଙ୍ଗେ ସଙ୍ଗେ ଆପଣଙ୍କୁ ସଂହାର କରିବା ଉଦ୍ଦେଶ୍ୟରେ ହାତରେ ଖଡ୍‌ଗ ଧରି ଏଠାକୁ ଦୌଡ଼ି ଆସିବ; ସେଥିପାଇଁ ମୋତେ ବଡ଼ ଭୟ ଲାଗୁଛି, ପ୍ରଭୁ !’

ବସୁଦେବଙ୍କ ପରି ଦେବକୀ ମଧ୍ୟ, ନିଜର ସଦ୍ୟ ଗର୍ଭଜାତ ପୁତ୍ରର ଶରୀରରେ ମହାପୁରୁଷୋଚିତ ସୁଲକ୍ଷଣମାନ ପରିଲକ୍ଷିତ ହେଉଥିବାର ଦର୍ଶନ କରି ପରମ ବିସ୍ମୟ ପୁଲକରେ ସ୍ତୁତି କରିବାକୁ ଲାଗିଲେ, ‘ପ୍ରଭୁ, ବେଦରେ ଯାହାଙ୍କୁ ଅବ୍ୟକ୍ତ, ସର୍ବକାରଣ, ପରମବ୍ରହ୍ମ, ଜ୍ୟୋତିସ୍ୱରୂପ, ନିର୍ଗୁଣ, ନିର୍ବିକାର, ସତ୍ତାମାତ୍ର ନିର୍ବିଶେଷ ବୋଲି କୁହାଯାଇଅଛି, ଆପଣ ହିଁ ସେହି ସ୍ୱୟଂ ପ୍ରକାଶ ସାକ୍ଷାତ ଭଗବାନ ବିଷ୍ଣୁ । ମହାପ୍ରଳୟରେ ଅଖିଳ ଜଗତ ଲୀନ ହେଲେ ମଧ୍ୟ ଆପଣଙ୍କର ବିନାଶ ଘଟେ ନାହିଁ; ସେଥିପାଇଁ ଆପଣ ‘ଶେଷ’ ନାମରେ କଥିତ ହୋଇଥାନ୍ତି । ଅନନ୍ତକାଳ ଆପଣଙ୍କର ଅନୁପମ ଲୀଳାର ପ୍ରକାଶ ମାତ୍ର । ଆପଣ ସର୍ବଶକ୍ତିମାନ୍ ଓ ପରମ କଲ୍ୟାଣଦାତା । ମୁଁ ଆପଣଙ୍କଠାରେ ଶରଣ ନେଉଅଛି । ମୃତ୍ୟୁ-ଭୟରେ ଭୟଭୀତ ହୋଇ ଜୀବ ମୃତ୍ୟୁ-ପାଶରୁ ରକ୍ଷା ଲାଭ କରିବା ନିମନ୍ତେ ବିଭିନ୍ନ ସ୍ଥାନ ଗମନ କଲେ ମଧ୍ୟ ମୃତ୍ୟୁଠାରୁ ସେ ମୁକ୍ତିଲାଭ କରିପାରେ ନାହିଁ; କିନ୍ତୁ ପ୍ରଭୁ, ଆପଣଙ୍କ ଚରଣାରବିନ୍ଦରେ ଆଶ୍ରୟ ନେଲେ ଜୀବର ସେହି ମୃତ୍ୟୁଭୟ ଅଚିରେ ଦୂର ହୋଇଥାଏ । ଆଜି ମୋର ପରମ ସୌଭାଗ୍ୟ ଯେ ମୃତ୍ୟୁ-ଭୟ-ଦୂରକାରୀ ଆପଣଙ୍କୁ ସ୍ୱଚକ୍ଷୁରେ ଦର୍ଶନ କରିବାର ସୁଯୋଗ ଲାଭ କଲି । ପ୍ରଭୁ, ଆପଣ ଭକ୍ତବତ୍ସଳ । ଦୁଷ୍ଟ କଂସର ଅତ୍ୟାଚାରରେ ଆମେ ଅତ୍ୟନ୍ତ ପୀଡ଼ିତ ଓ ଭୀତ । କଂସର ଅତ୍ୟାଚାରରୁ ଆମକୁ ଆପଣ ରକ୍ଷା କରନ୍ତୁ । ମଧୁସୂଦନ, ଆପଣ ଯେ ମୋ ଗର୍ଭରୁ ଜାତ ହୋଇ-

ଅଛନ୍ତି, ଏ କଥା କଂସ ବର୍ତ୍ତମାନ ଜାଣିପାରି ନାହିଁ; କିନ୍ତୁ ଜାଣିବା ମାତ୍ରେ ସେ ନିଶ୍ଚୟ ଆପଣଙ୍କୁ ସଂହାର କରିବା ନିମନ୍ତେ ଏଠାକୁ ଦୌଡ଼ି ଆସିବ ! ସେହି ନିର୍ମମ କଂସର ଅମାନୁଷିକ ଆଚରଣ ଆଶଙ୍କା କରି ମୋତେ ବଡ଼ ଭୟ ଲାଗୁଛି । ହେ ବିଶ୍ୱାତ୍ମା, ଆପଣ ଶଙ୍ଖ ଚକ୍ର-ଗଦା-ପଦ୍ମ ଧାରଣ କରି ଏହି ଯେଉଁ ଅଲୌକିକ ଚତୁର୍ଭୁଜ ରୂପ ପ୍ରକାଶ କରିଅଛନ୍ତି, ତାକୁ ଆପଣ ସମ୍ବରଣ କରନ୍ତୁ । କାରଣ ଏହି ଚତୁର୍ଭୁଜ ରୂପ ଧ୍ୟାନର ବସ୍ତୁ । ଅସ୍ଥି-ମାଂସ ଶରୀରଧାରୀ ଦେହାଭିମାନୀ ଲୋକଙ୍କ ପକ୍ଷରେ ଏହା ଦର୍ଶନ କରିବା ସମ୍ଭବ ନୁହେଁ । ପ୍ରଳୟ ସମୟରେ ଆପଣ ସମସ୍ତ ଜଗତକୁ ନିଜ ଶରୀର ମଧ୍ୟରେ ଲୀନ କରାଇ ଯେପରି ସ୍ୱାଭାବିକ ରୂପ ଧାରଣ କରିଥିଲେ, ବର୍ତ୍ତମାନ ସେହିପରି ଏହି ଅଲୌକିକ ରୂପକୁ ପ୍ରତ୍ୟାହାର କରିନେଇ ମାନବସୁଲଭ ସ୍ୱାଭାବିକ ରୂପ ଧାରଣ କରନ୍ତୁ । ହେ ଅଦ୍ଭୁତକର୍ମୀ ପରମ ପୁରୁଷ, ଆପଣ ମୋ ଗର୍ଭରୁ ପ୍ରକଟିତ ହେଲେ, ଏହା ବିଶ୍ୱାସ କରି ହୁଏ ନାହିଁ । ଏହା ଆପଣଙ୍କର ଅଲୌକିକ ଲୀଳା ମାତ୍ର ।'

ଦେବକୀଙ୍କ କଥା ଶୁଣି ଭଗବାନ କହିଲେ, 'ଦେବି, ସ୍ୱାୟମ୍ଭୁବ ମନ୍ୱନ୍ତରରେ ପ୍ରଥମ ଥର ପାଇଁ ଯେତେବେଳେ ଆପଣଙ୍କର ଜନ୍ମ ହେଲା ସେତେବେଳେ ଆପଣଙ୍କର ନାମ ଥିଲା ପୃଶ୍ନି ଏବଂ ବସୁଦେବ ମଧ୍ୟ ସେତେବେଳେ ସୁତପା ନାମଧେୟ ପ୍ରଜାପତି ଥିଲେ । ଆପଣ ଦୁହିଁଙ୍କର ହୃଦୟ ଅତ୍ୟନ୍ତ ନିର୍ମଳ ଥିଲା । ବ୍ରହ୍ମା ଯେତେବେଳେ ଆପଣ ଦୁହିଁଙ୍କୁ ସନ୍ତାନ ଉତ୍ପାଦନ କରିବାକୁ ଅନୁମତି ପ୍ରଦାନ କଲେ, ସେତେବେଳେ ଆପଣ ଦୁହେଁ ଇନ୍ଦ୍ରିୟ ଦମନ କରି ଶାନ୍ତଚିତ୍ତରେ କଠୋର ତପସ୍ୟା ଆଚରଣ କରିଥିଲେ ଏବଂ ଅଭୀଷ୍ଟ ସାଧନ ନିମନ୍ତେ ମୋର ଆରାଧନା କରିଥିଲେ । ସେହି ତପସ୍ୟାରେ ଆପଣମାନଙ୍କର ଦୀର୍ଘ ବାର ହଜାର ବର୍ଷ ଅତିବାହିତ ହେବାପରେ, ଆପଣଙ୍କର ତପସ୍ୟା, ଶ୍ରଦ୍ଧା, ପ୍ରେମ ଓ ଭକ୍ତିରେ ଅତ୍ୟନ୍ତ ପ୍ରସନ୍ନ ହୋଇ ବର ପ୍ରଦାନ କରିବା ନିମନ୍ତେ ସେତେବେଳେ ମୁଁ ଏହି ରୂପରେ ଆପଣ ଦୁହିଁଙ୍କ ସମ୍ମୁଖରେ ପ୍ରକଟିତ ହେଲି ଏବଂ 'ଇଚ୍ଛାନୁସାରେ ବର ମାଗନ୍ତୁ' ବୋଲି ଆପଣଙ୍କୁ କହିଲି, ମୋର ମାୟାରେ ବଶୀଭୂତ ହୋଇ ଆପଣ ଦୁହେଁ ମୋକ୍ଷ ଲାଭ ନିମନ୍ତେ ଆଶାୟୀ ନ ହୋଇ ମୋତେ ପୁତ୍ର ରୂପରେ ଲାଭ କରିବାକୁ କାମନା କରିଥିଲେ ।

ଇଚ୍ଛାନୁସାରେ ମୁଁ ବର ପ୍ରଦାନ କରି ଅନ୍ତର୍ହିତ ହେବା ପରେ, ଉପଯୁକ୍ତ ସମୟରେ ଆପଣଙ୍କ ଗର୍ଭରୁ ଜନ୍ମ ହୋଇ ମୁଁ ପୃଶ୍ନିଗର୍ଭ ନାମରେ ପରିଚିତ ହୋଇଥିଲି । ଦ୍ୱିତୀୟ ଜନ୍ମରେ ଆପଣ ଅଦିତି ଓ ବସୁଦେବ କଶ୍ୟପ ନାମରେ ଜାତ ହେବାରୁ, ମୁଁ ଆପଣଙ୍କ ଗର୍ଭରୁ ଜାତ ହୋଇ 'ଉପେନ୍ଦ୍ର' ନାମରେ ଅଭିହିତ ହୋଇଥିଲି । ସେହି ଜନ୍ମରେ ମୋର ଆକୃତି ଖର୍ବକାୟ ଥିବାରୁ ମୋତେ ଜନସମାଜ 'ବାମନ' ନାମରେ ମଧ୍ୟ ଅଭିହିତ କରୁଥିଲେ । ସତୀ ଦେବକି, ଏହା ଆପଣଙ୍କର ତୃତୀୟ ଜନ୍ମ । ଏଥର ମଧ୍ୟ ମୁଁ ଆପଣଙ୍କ ପୁତ୍ରତ୍ୱ ସ୍ୱୀକାର କରି ଆତ୍ମପ୍ରକାଶ କରିଛି । ମୋର ପ୍ରତିଶ୍ରୁତି କେବେ ମିଥ୍ୟା ହୁଏ ନାହିଁ । ଆପଣଙ୍କ ସମ୍ମୁଖରେ ଏହି ରୂପ ପ୍ରକଟିତ କରି ପୂର୍ବକଥା ଆପଣଙ୍କୁ ସ୍ମରଣ କରାଇଦେଲି ମାତ୍ର, କାରଣ ସାଧାରଣ ମନୁଷ୍ୟ ଶରୀରରେ ମୋର ଅବତାରରୂପକୁ ଚିହ୍ନିବା ଅତ୍ୟନ୍ତ ଦୁଷ୍କର । ମୋ ପ୍ରତି ଆପଣଙ୍କ ମନରେ ଚିରକାଳ ଧରି ଏହିପରି ପୁତ୍ର-ଭାବ ତଥା ବ୍ରହ୍ମ-ଭାବ ରହିଥାଉ । ମୋ ପ୍ରତି ଆପଣମାନଙ୍କ ହୃଦୟର ଏହି ନିରବଚ୍ଛିନ୍ନ ପବିତ୍ର ବାତ୍ସଲ୍ୟ ସ୍ନେହ ରହିବା ଫଳରେ ଆପଣମାନେ ଯଥା-କାଳରେ ପରମ ପଦର ଅଧିକାରୀ ହେବେ ।'

ଏହା କହି ଭଗବାନ ନୀରବ ରହିଲେ ଏବଂ ସଙ୍ଗେ ସଙ୍ଗେ ଯୋଗବଳରେ ନିଜର ସେହି ଦିବ୍ୟ ଅଲୌକିକ ରୂପକୁ ସମ୍ବରଣ କରି ନେଇ ତା' ପରିବର୍ତ୍ତେ ଏକ ସାଧାରଣ ନବଜାତ ଶିଶୁ ମନୁଷ୍ୟର ରୂପ ଧାରଣ କଲେ । ଏହି ଅଦ୍‌ଭୁତ ଦୃଶ୍ୟ ଦର୍ଶନ କରି ବସୁଦେବ ଅତ୍ୟନ୍ତ ଅଭିଭୂତ ହୋଇ ପଡ଼ିଥିଲେ ଏବଂ ଭଗବାନଙ୍କ ପ୍ରେରଣାରେ ପ୍ରଭାବିତ ହୋଇ ସେହି ନବଜାତ ଶିଶୁପୁତ୍ରକୁ ନେଇ ସୂତିକାଗୃହରୁ ବାହାରକୁ ଆସିବାକୁ ଇଚ୍ଛା ପୋଷଣ କଲେ । ନନ୍ଦପତ୍ନୀ ଯଶୋଦାଙ୍କ ଗର୍ଭରୁ ସେତିକବେଳେ ଯୋଗମାୟା ଏକ କନ୍ୟା ରୂପରେ ଜାତ ହୋଇଥାନ୍ତି । ଯୋଗମାୟା ନିଜର ଶକ୍ତିବଳରେ ବନ୍ଦୀଶାଳାର ସମସ୍ତ ଦ୍ୱାରପାଳ ଓ ପୁରବାସୀଙ୍କୁ ନିଦ୍ରାରେ ମୂର୍ଚ୍ଛିତ କରି ଦେଲେ । ବନ୍ଦୀ-ଶାଳାର ବିଶାଳ ଦ୍ୱାରଗୁଡ଼ିକ ଲୌହକବାଟ ଓ ତାଲାରେ ବନ୍ଦ ଥିଲା । ବଡ଼ ଆଶ୍ଚର୍ଯ୍ୟର କଥା, ବସୁଦେବଙ୍କ ମନରେ ପୁତ୍ର ସହ ବାହାରକୁ ଆସିବାର ଇଚ୍ଛା ଜାତ ହେବା ମାତ୍ରେ ତାଙ୍କ ଗୋଡ଼ ଓ ହାତରେ

ପଡ଼ିଥିବା ଲୁହାର ବେଡ଼ିମାନ ମନକୁ ମନ ଫିଟିଗଲା; ଫଳରେ ବସୁଦେବ ସ୍ୱଚ୍ଛନ୍ଦରେ ସେହି ନବଜାତ ପୁତ୍ର ସହ ବନ୍ଦୀଗୃହର ଦ୍ୱାର ନିକଟକୁ ଆସିଲେ । ସୂର୍ଯ୍ୟୋଦୟରେ ଅନ୍ଧକାର ଦୂର ହେଲାପରି ପୁତ୍ରସହ ବସୁଦେବ ଆସିବାରୁ ରୁଦ୍ଧ କାରାଗାରର ଦ୍ୱାରଗୁଡ଼ିକ ଆପଣାଛାଏଁ ଖୋଲିଗଲା । ବସୁଦେବ କାରାଗାରର ବାହାରକୁ ଆସିଲେ ।

ଗଭୀର ରାତ୍ରି । କାରାଗାରର ବାହାରଟା ଗଭୀର ଅନ୍ଧକାରରେ ଆଚ୍ଛନ୍ନ ଥିଲା । ଘନ ଘନ ମେଘ ଗର୍ଜନ କରୁଥିଲା ଏବଂ ଝିପି ଝିପି ବର୍ଷା ମଧ୍ୟ ହେଉଥିଲା । ନବଜାତ ପୁତ୍ରକୁ ଧରି ବସୁଦେବ ବାହାରକୁ ବାହାରି ଆସିବାରୁ, ବୃଷ୍ଟିପାତରୁ ପୁତ୍ରରୂପୀ ଭଗବାନଙ୍କୁ ରକ୍ଷା କରିବା ନିମନ୍ତେ ବସୁଦେବଙ୍କ ଅଲକ୍ଷ୍ୟରେ ରହି ବାସୁକୀ ନାଗ ନିଜର ଫଣା ବିସ୍ତାର କରି ଛତ୍ରଧାରଣ କଲା ପରି ବସୁଦେବଙ୍କ ପଛେ ପଛେ ଚାଲୁଥାଏ । ବସୁଦେବ ଯାଇ ଯାଇ ଯମୁନା ନଦୀକୂଳରେ ପହଞ୍ଚିଲେ । ପ୍ରବଳ ବନ୍ୟା ଓ ପ୍ରଖର ସ୍ରୋତରେ ଯମୁନା ନଦୀ ଏକ ପ୍ରକାର ଭାଙ୍ଗି ପଡ଼ୁଥିଲା । କିନ୍ତୁ ଭଗବାନ ସୀତାପତି ରାମଙ୍କୁ ସମୁଦ୍ର ତା'ର ପୃଷ୍ଠରେ ପଥ ପ୍ରଦାନ କରି ସୀତାଉଦ୍ଧାର କାର୍ଯ୍ୟରେ ସହାୟକ ହେଲାପରି ଯମୁନା ନଦୀ ଭଗବାନଙ୍କ ସହ ବସୁଦେବଙ୍କୁ ନଦୀ ପାରି କରିଦେବା ନିମନ୍ତେ ପଥ ପ୍ରଦାନ କଲା । ବସୁଦେବ ଯମୁନା ନଦୀ ଅତିକ୍ରମ କରି ନଦୀ ଆର ପଟରେ ଥିବା ନନ୍ଦଙ୍କର ଗୋକୁଳକୁ ଗଲେ । ସେଠାରେ ଗୋକୁଳବାସୀ ତଥା ନନ୍ଦ ଓ ଯଶୋଦାଙ୍କୁ ନିଦ୍ରାଭିଭୂତ ଥିବାର ଦେଖି ନିଜର ପୁତ୍ରକୁ ଯଶୋଦାଙ୍କ ଶଯ୍ୟାରେ ଶୁଆଇ ଦେଇ ଯଶୋଦାଙ୍କ ଗର୍ଭରୁ ସଦ୍ୟଜାତ ହୋଇଥିବା କନ୍ୟାକୁ ସଙ୍ଗରେ ନେଇ ବସୁଦେବ ସେହି ରାତିରେ କଂସର କାରାଗାରକୁ ଫେରି ଆସିଲେ । ଯଶୋଦାଙ୍କ ନିକଟରୁ ନେଇ ଆସିଥିବା କନ୍ୟାକୁ ଦେବକୀଙ୍କ ନିକଟରେ ଶୁଆଇ ଦେଇ ନିଜର ଲୌହବେଡ଼ିକୁ ପିନ୍ଧି ପୂର୍ବପରି ବନ୍ଦୀ ଭାବରେ ଅବସ୍ଥାନ କଲେ ।

ଯୋଗମାୟାଙ୍କ ଅପୂର୍ବ ପ୍ରଭାବ ଫଳରେ ଯଶୋଦା ଏପରି ଅଚ୍ଛନ୍ନ ହୋଇ ପଡ଼ିଥିଲେ ଯେ ପ୍ରସବ ସମୟରେ ସେ କେବଳ ପିଲାଟିଏ ପ୍ରସବ ହୋଇଅଛି ବୋଲି ଅନୁଭବ କରିଥିଲେ ମାତ୍ର ତାହା ପୁତ୍ର କି କନ୍ୟା ସେ ତାହା ଜାଣି ପାରି ନ ଥିଲେ । ପ୍ରସବର ପରମୁହୂର୍ତ୍ତରେ ଯଶୋଦା ଗଭୀର ନିଦ୍ରାରେ ମୂର୍ଚ୍ଛିତ ହୋଇ ଯାଇଥିଲେ ।

କନ୍ୟା ସହ ବସୁଦେବଙ୍କର କାରାଗାରକୁ ପ୍ରତ୍ୟାବର୍ତ୍ତନ କରିବାର କିଛି ସମୟ ପରେ କାରାଗାରର ଜଗୁଆଳମାନଙ୍କର ନିଦ୍ରାଭଙ୍ଗ ହେଲା । ସେମାନେ କାରାଗାର ମଧ୍ୟରୁ ନବଜାତ ଶିଶୁର କ୍ରନ୍ଦନଧ୍ୱନି ଶୁଣିବାକୁ ପାଇଲେ ଏବଂ ସଙ୍ଗେ ସଙ୍ଗେ ଭୋଜରାଜ କଂସକୁ ଦେବକୀଙ୍କର ସନ୍ତାନ ଜାତ ହୋଇଥିବା କଥା ଜଣାଇଲେ । କଂସ ଅତ୍ୟନ୍ତ ବ୍ୟାକୁଳତାର ସହିତ ଏହି ସମ୍ବାଦର ପ୍ରତୀକ୍ଷାରେ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଦ୍ୱାରପାଳଙ୍କଠାରୁ ସେହି ସମ୍ବାଦ ଶୁଣିବା ମାତ୍ରେ ସେ କାଳ-ବିଳମ୍ବ ନ କରି ଦ୍ରୁତବେଗରେ କାରାଗାର ମଧ୍ୟରେ ଥିବା ସୂତିକା ଗୃହ ଉଦ୍ଦେଶ୍ୟରେ ଆସିଲା । ବାଟରେ ଆସିବା ସମୟରେ କଂସର ମନରେ ଗୋଟିଏ କଥା ବାରମ୍ବାର ଉଦିତ ହେଉଥାଏ, 'ଦେବକୀର ଏହି ସନ୍ତାନ ହିଁ ମୋର କାଳ ।' ଏହି ଦାରୁଣ ଚିନ୍ତା କଂସକୁ ଏପରି ଚିନ୍ତାବିହ୍ୱଳ କରି ଦେଇଥାଏ ଯେ ଦ୍ରୁତଗତିରେ କାରାଗାର ଉଦ୍ଦେଶ୍ୟରେ ଆସିବା ସମୟରେ ତା'ର ପାଦ ଏଠି ସେଠି ପଡୁଥାଏ ।

ସୂତିକା-ଗୃହରେ କଂସକୁ ପ୍ରବେଶ କରିବାର ଦେଖି ସତୀ ଦେବକୀ ଅତ୍ୟନ୍ତ ଦୁଃଖ ଓ କରୁଣାରେ କଂସକୁ ଅନୁନୟ କରି କହିଲେ, 'ଭାଇ କଂସ ! ଏହି ନବଜାତ କନ୍ୟା ତୁମର ପୁତ୍ରବଧୂ ସ୍ୱରୂପ ରକ୍ଷଣୀୟା । ଏହି ନିଷ୍ପାପ ଶିଶୁକୁ ହତ୍ୟା କରି ନିଜକୁ ସ୍ତ୍ରୀ ହତ୍ୟା ଦୋଷରେ ଲିପ୍ତ କର ନାହିଁ । ଭାଇ, ଦୈବବଶରୁ ତୁମେ ମୋର ଅଗ୍ନିସମତେଜସ୍ୱୀ ବହୁ ପୁତ୍ରଙ୍କୁ ହତ୍ୟା କରିଅଛ ! ଏହି କନ୍ୟାଟିକୁ ଅନ୍ତତଃ ଛାଡ଼ି ଦିଅ । ମୁଁ ତୁମର ହତଭାଗିନୀ କନିଷ୍ଠ ଭଉଣୀ । ମୋର ପୁତ୍ରମାନଙ୍କର ମୃତ୍ୟୁ ମୋର ହୃଦୟକୁ ସତତ ବିଦୀର୍ଣ୍ଣ କରୁଅଛି । ସେହି ଅସହ୍ୟ ଦୁଃଖରେ ମୁଁ ଭାଙ୍ଗି ପଡ଼ିଲିଣି । ଏହି କନ୍ୟାଟି ମୋର କେବଳ ଶେଷ ସନ୍ତାନ ନୁହେଁ, ଏକମାତ୍ର ସାନ୍ତ୍ୱନା । ମୋର ସ୍ନେହର ଭାଇ, ତୁମର ଏହି ହତଭାଗିନୀ ଭଉଣୀର ଏହି ପ୍ରାର୍ଥନାକୁ ଦୟାକରି ପୂର୍ଣ୍ଣ କର । ଏହି କନ୍ୟାକୁ ହତ୍ୟା କର ନାହିଁ ।'

ଦେବକୀ ଏହା କହି ନବଜାତ କନ୍ୟାକୁ ବକ୍ଷରେ ଜାକି ଧରି ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲେ ; ତଥାପି ନିର୍ଦ୍ଦୟ କଂସର ହୃଦୟରେ କରୁଣା ଜାତ ହେଲା ନାହିଁ । ସେ ବଳପ୍ରୟୋଗ କରି ଦେବକୀଙ୍କ ହାତରୁ କନ୍ୟାକୁ ଛଡ଼ାଇ ଆଣିଲା ଏବଂ ସେହି ନବଜାତ ନିଷ୍ପାପ ଅବୋଧ

କନ୍ୟାକୁ ହତ୍ୟା କରିବା ଉଦ୍ଦେଶ୍ୟରେ କାରାଗାରର ପ୍ରସ୍ତର ଚଟାଣ ଉପରେ ତାକୁ ଖୁବ୍ ଜୋରରେ କଚାଡ଼ି ଦେଲା । ସେହି କନ୍ୟା ସାଧାରଣ ଶିଶୁ ନୁହେଁ, ସେ ସ୍ୱୟଂ ଦେବୀ ଯୋଗମାୟା । କଂସର ହାତରୁ ଖସିବା ମାତ୍ରେ କନ୍ୟାଟି ଚଟାଣରେ ନ ପଡ଼ି ଆକାଶକୁ ଉଠିଗଲା ଏବଂ ଶୂନ୍ୟରେ ସେହି କନ୍ୟାଟି ଆୟୁଧଧାରିଣୀ ଅଷ୍ଟଭୁଜା ଦେବୀ ରୂପରେ ରୂପାନ୍ତରିତ ହେଲା । ସେହି ଦେବୀଙ୍କ ଶରୀରରେ ଦିବ୍ୟମାଳ୍ୟ, ବସ୍ତ୍ର, ଚନ୍ଦନ, ଅଳଙ୍କାରମାନ ଶୋଭା ପାଇବା ସଙ୍ଗେ ସଙ୍ଗେ ଅଷ୍ଟଭୁଜରେ ଧନୁ, ତ୍ରିଶୂଳ, ବାଣ, ଢାଲ, ତରବାରି, ଶଙ୍ଖ, ଚକ୍ର ଏବଂ ଗଦା ରହିଥିଲା । ସିଦ୍ଧ, ଚାରଣ, ଗନ୍ଧର୍ବ, ଅପ୍ସରା, କିନ୍ନର ତଥା ନାଗମାନେ ବହୁତ ଉପହାର ନିବେଦନ କରି ସେହି ଦେବୀଙ୍କର ସ୍ତୁତି ଗାନ କରୁଥାନ୍ତି । ସେହି ଦେବୀ ଯୋଗମାୟା କଂସକୁ ସମ୍ବୋଧନ କରି କହିଲେ, 'ରେ ମୂଢ଼, ମୋତେ ମାରିବାକୁ ତୁ ବୃଥା ଚେଷ୍ଟା କଲୁ । ତୋର ପୂର୍ବଜନ୍ମର ଶତ୍ରୁ ତୋତେ ସଂହାର କରିବା ପାଇଁ କୌଣସି ନା କୌଣସି ସ୍ଥାନରେ ଜନ୍ମ ହୋଇ ସାରିଛି । ତେଣୁ ନିର୍ଦ୍ଦୋଷ ବାଳକମାନଙ୍କୁ ଆଉ ଅଯଥାରେ ହତ୍ୟା କରି ନିଜର ପାପମୟ ଜୀବନକୁ ଅଧିକ ପାପ ଲିପ୍ତ କର ନାହିଁ ।'

ଏହା କହି ଭଗବତୀ ଯୋଗମାୟା ଶୂନ୍ୟରେ ଅନ୍ତର୍ହିତ ହୋଇଗଲେ । କିନ୍ତୁ ଦେବୀଙ୍କର ସେହି ଅଦ୍ଭୁତ ବାଣୀ କଂସକୁ ଯେପରି ଆଶ୍ଚର୍ଯ୍ୟାନ୍ୱିତ ସେହିପରି ଚମତ୍କୃତ କଲା । ତା'ର ନିର୍ମମ ହୃଦୟରେ ଅଭାବନୀୟ ପରିବର୍ତ୍ତନ ଦେଖା ଦେଲା । ସେ ଦେବକୀ ଓ ବସୁଦେବଙ୍କ ହାତ ଗୋଡ଼ରୁ ଶିକୁଳିମାନ ଖୋଲିଦେଇ ବିନୀତ ଭାବରେ କହିଲା, 'ମୋର ସ୍ନେହର ଭଉଣୀ ଓ ଭାଇ । ହାୟ, ମୁଁ ଅତ୍ୟନ୍ତ ପାପୀ । ରାକ୍ଷସମାନେ ନିଜର ପୁତ୍ରକୁ ହତ୍ୟା କଲାପରି ମୁଁ ତୁମର ବହୁ ସନ୍ତାନଙ୍କୁ ରାକ୍ଷସସୁଲଭ ଆଚରଣରେ ହତ୍ୟା କରିଅଛି, ସେଥିପାଇଁ ମୁଁ ବଡ଼ ଦୁଃଖିତ । ମୋର ଦୁର୍ଦ୍ଦାନ୍ତ ଚରିତ୍ରରେ କାରୁଣ୍ୟର ସାମାନ୍ୟତମ ସ୍ଥାନ ନାହିଁ । ମୁଁ ମୋର ଭାଇ, ବନ୍ଧୁ, ହିତାକାଂକ୍ଷୀମାନଙ୍କୁ ଦୂରେଇ ଦେଇଅଛି; ଏଥିପାଇଁ ମୋତେ ଯେ କେଉଁ ଦାରୁଣ ନର୍କକୁ ଯିବାକୁ ପଡ଼ିବ, ଜାଣେନା । ବାସ୍ତବିକ ମୁଁ ଜୀବିତ ଥାଇ ଆଜି ମୃତ । କେବଳ ମନୁଷ୍ୟ ମିଥ୍ୟା କହେ ନାହିଁ; ଦେବତାମାନେ ମଧ୍ୟ ଅସତ୍ୟ କହିଥାନ୍ତି । ସେହି ଦେବତାଙ୍କ

କଥାକୁ ବିଶ୍ୱାସ କରି ତୋ ପରି ଭଉଣୀର କେତେ ସନ୍ତାନଙ୍କୁ ମୁଁ ନ ମାରିଲି ! ହାୟ୍, ମୋର ପାପର ସୀମା ନାହିଁ । ତୁମେ ଦୁହେଁ ମହାତ୍ମା । ନିଜର ସେହି ନିହତ ପୁତ୍ରମାନଙ୍କ ପାଇଁ ଶୋକ କର ନାହିଁ । ସେମାନେ ପୂର୍ବଜନ୍ମର କର୍ମଫଳ ଭୋଗ କରିଅଛନ୍ତି, କାରଣ ପ୍ରାରବ୍ଧକୁ କେହି ଅତିକ୍ରମ କରି ପାରେ ନାହିଁ । ଭଉଣି, ପୁତ୍ର-ଶୋକ ପରିତ୍ୟାଗ କର । ତୁମେ ସାଧୁ ଓ ଦୀନରକ୍ଷକ । ମୋର ଦୁଷ୍କୃତକୁ ତୁମେ ଉଦାର ହୃଦୟରେ କ୍ଷମାକର ।'

ଏହା କହି କଂସ କାନ୍ଦି କାନ୍ଦି ଦେବକୀ ଓ ବସୁଦେବଙ୍କ ଗୋଡ଼ ଧରି ତଳେ ଲୋଟିଗଲା ।

ଯୋଗମାୟାଙ୍କ କଥାକୁ ସ୍ମରଣ କରି ଦେବକୀ ଓ ବସୁଦେବଙ୍କ ପ୍ରତି କଂସ ଶତ୍ରୁତାଚରଣ ନ କରି ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାର ପ୍ରକାଶ କଲା ଏବଂ ସେମାନଙ୍କୁ ସଙ୍ଗେ ସଙ୍ଗେ କାରାଗାରରୁ ମୁକ୍ତ କଲା ।

କଂସକୁ ତାର କୁକର୍ମ ନିମନ୍ତେ ଅନୁତାପ କରୁଥିବାର ଦେଖି, ଦେବକୀ ଓ ବସୁଦେବଙ୍କର ମନରେ ପ୍ରସନ୍ନତା ପ୍ରକାଶ ପାଇଲା । ବସୁଦେବ କହିଲେ, 'ମନସ୍ୱୀ କଂସ; ଆପଣଙ୍କର କଥା ଯଥାର୍ଥ । ଜୀବ ଅଜ୍ଞାନତାବଶତ 'ମୁଁ' 'ମୋର' ବୋଲି ଅଭିମାନ କରିଥାଏ; ସେଥିପାଇଁ ସଂସାରରେ 'ମୋର' ଓ 'ପରର' ଏପରି ଭେଦଭାବ ଜାତ ହୋଇଥାଏ । ଏପରି ଆତ୍ମ ଅଭିମାନ ମନୁଷ୍ୟକୁ ଶୋକ, ହର୍ଷ, ଭୟ, ଦ୍ୱେଷ, ଲୋଭ ଓ ମୋହର ବଶୀଭୂତ କରି ତା'ର ବିଚାରଶକ୍ତିକୁ ଲୋପ କରିଦିଏ । ସେ ବୁଝିପାରେ ନାହିଁ ଯେ ସବୁର କର୍ତ୍ତା ହେଉଛନ୍ତି ଭଗବାନ । ତେଣୁ ଯାହା ସବୁ ଘଟିଗଲା, ସେସବୁ ସେହି ବିଶ୍ୱନିୟନ୍ତା ଭଗବାନଙ୍କର ଇଚ୍ଛା । ସେଥିରେ ତୁମର କିଛି ଦୋଷ ନାହିଁ । ତୁମେ ନିମିତ୍ତ ମାତ୍ର ।"

ଏହିପରି କଥୋପକଥନ ମଧ୍ୟରେ ଦେବକୀ ଓ ବସୁଦେବଙ୍କ-ଠାରୁ କଂସ ବିଦାୟ ନେଇ ରାଜପୁରୀକୁ ଫେରିଗଲା । ରାତି ପାହିବା ପରେ ସମସ୍ତ କଥା ନିଜର ମନ୍ତ୍ରୀମାନଙ୍କୁ କଂସ କହିଲା । କଂସର ମନ୍ତ୍ରୀମାନେ ସବୁବେଳେ ଆସୁରଭାବସମ୍ପନ୍ନ ହୋଇ ଦେବତାଙ୍କ ପ୍ରତି ଶତ୍ରୁଭାବ ପୋଷଣ କରୁଥିଲେ । ତେଣୁ କଂସର କଥା ଶୁଣି ସେମାନେ

କହିଲେ, 'ଭୋଜରାଜ, ଆପଣଙ୍କର ଶତ୍ରୁ ଯଦି ଅନ୍ୟତ୍ର ଜନ୍ମ ହୋଇ-ଥାଏ, ତେବେ ଆପଣ କୌଣସି ଶୋଚନା କରନ୍ତୁ ନାହିଁ । ସମସ୍ତ ପୃଥିବୀରେ ଯେତେ ପିଲା ଜନ୍ମ ହୋଇଅଛନ୍ତି ସମସ୍ତଙ୍କୁ ଦଶଦିନ ମଧ୍ୟରେ ଆମେ ସଂହାର କରିପାରିବୁ । ସମରଭୀରୁ ଦେବତାମାନେ ଆପଣଙ୍କର ପରାକ୍ରମର ସମ୍ମୁଖୀନ ହେବାକୁ ସମ୍ପୂର୍ଣ୍ଣ ଅସମର୍ଥ । ଆପଣଙ୍କ ଧନୁର ଟଙ୍କାର ଶବ୍ଦ ସେମାନଙ୍କୁ ରଣାଙ୍ଗନରୁ ପଳାୟନ କରାଇବା ପାଇଁ ଯଥେଷ୍ଟ । ନିର୍ଜନବାସୀ ବିଷ୍ଣୁ, ବନବାସୀ ଶଙ୍କର ଓ ତପସ୍ୟାରତ ବ୍ରହ୍ମା ତଥା ଅଳ୍ପବୀର୍ଯ୍ୟ ଇନ୍ଦ୍ର ପ୍ରମୁଖଙ୍କୁ ଭୟ କରିବାର କୌଣସି କାରଣ ନାହିଁ । ତେବେ ଶତ୍ରୁମାନେ ଦୁର୍ବଳ ବୋଲି ସେମାନଙ୍କୁ ଉପେକ୍ଷା କରିବା ମଧ୍ୟ ଉଚିତ ନୁହେଁ । ଶତ୍ରୁ ବଡ଼ ହେଉ ବା ସାନ ହେଉ, ତା'ର ମୂଳଚ୍ଛେଦ କରିବା ସର୍ବୋତୋଭାବେ କର୍ତ୍ତବ୍ୟ । ତେଣୁ ଶତ୍ରୁ ସଂହାର ପାଇଁ ଯତ୍ନବାନ୍ ହୋଇ ବିଶ୍ୱସ୍ତ ବ୍ୟକ୍ତିମାନଙ୍କୁ ଆପଣ ସର୍ବତ୍ର ନିଯୁକ୍ତ କରନ୍ତୁ । ଆମ ମତରେ ଏହା ହିଁ ସମୟୋପଯୋଗୀ କର୍ତ୍ତବ୍ୟ । ପ୍ରଥମାବସ୍ଥାରେ ରୋଗର ଚିକିତ୍ସା ନ କଲେ ପରେ ତାହା ଅସାଧ୍ୟ ହୋଇଥାଏ । ଇନ୍ଦ୍ରିୟ ସଂଯମ ନ କଲେ ଯେପରି ପରେ ଇନ୍ଦ୍ରିୟ ଦମନ ଅସମ୍ଭବ ହୋଇଉଠେ ଅନୁରୂପ ଭାବରେ ଶତ୍ରୁ କୌଣସି ସମୟରେ ଉପେକ୍ଷଣୀୟ ନୁହେଁ । ମହାରାଜ, ଦେବତାଙ୍କର ଏପରି କି ବ୍ରହ୍ମା ଓ ଶଙ୍କର ପ୍ରମୁଖଙ୍କର ମୂଳ ହେଉଛନ୍ତି ବିଷ୍ଣୁ । ବ୍ରାହ୍ମଣ, ଗୋ, ବେଦ, ତପସ୍ୟା, ସତ୍ୟ, ଇନ୍ଦ୍ରିୟ ସଂଯମ, ଶ୍ରଦ୍ଧା, ଦୟା, ତିତିକ୍ଷା ଓ ଯଜ୍ଞ ପ୍ରଭୃତି ବିଷ୍ଣୁଙ୍କର ଶରୀର ସ୍ୱରୂପ । ସେହି ବିଷ୍ଣୁ ପୃଥିବୀ ସର୍ବତ୍ର ବିଦ୍ୟମାନ ବୋଲି ସନାତନ ଧର୍ମ କହୁଅଛି । ତେଣୁ ବେଦ-ବାଦୀ ବ୍ରାହ୍ମଣ, ତପସ୍ୱୀ, ଯାଜ୍ଞିକମାନଙ୍କୁ ସଂହାର ଏବଂ ପୂଜା, ଯଜ୍ଞ ଆଦିକୁ ସମୂଳେ ନିଷେଧ କରାଯିବା ଉଚିତ । ତାହା କରାଗଲେ ଆମ୍ଭେ-ମାନେ ଶତ୍ରୁକୁ ସଫଳ ଭାବରେ ଦମନ କରିପାରିବା ।'

କାଳପାଶାବଦ୍ଧ କଂସକୁ ମନ୍ତ୍ରୀମାନଙ୍କର ସେହି ପରାମର୍ଶ ହିତକର ବୋଲି ମନେହେଲା । ତଦନୁସାରେ ବିଭିନ୍ନ ରୂପ ଧାରଣ କରିପାରୁଥିବା ବିଶ୍ୱସ୍ତ ରାକ୍ଷସମାନଙ୍କୁ କଂସ ବ୍ରାହ୍ମଣ, ସାଧୁ, ସନ୍ଥ ତଥା ଶିଶୁମାନଙ୍କୁ ହତ୍ୟା କରିବା କାର୍ଯ୍ୟରେ ନିଯୁକ୍ତ କଲା ଏବଂ ନିଶ୍ଚିନ୍ତ ମନରେ ସମୟ ଅତିବାହିତ କରିବାକୁ ଲାଗିଲା ।

ନନ୍ଦ ଥିଲେ ସାଧୁସ୍ୱଭାବସମ୍ପନ୍ନ ଓ ଉଦାରଚରିତ୍ର ବ୍ୟକ୍ତି । ଯଶୋଦାଙ୍କ ଗର୍ଭରୁ ପୁତ୍ର ଜାତ ହୋଇଅଛି ଦେଖି, ସେ ଆନନ୍ଦରେ ଆତ୍ମହରା ହୋଇଗଲେ । ସେ ସ୍ନାନ କରି ଶୁଦ୍ଧପୂତ ହେଲେ ଏବଂ ନୂତନ ବସ୍ତ୍ର ପରିଧାନ କଲେ । ବ୍ରାହ୍ମଣଙ୍କ ଦ୍ୱାରା ନବଜାତ ପୁତ୍ରର ଜାତକର୍ମ ସଂସ୍କାର ଆଦି ସମ୍ପନ୍ନ କଲେ ଏବଂ ଦେବତା ତଥା ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପୂଜାର୍ଘ୍ୟ ପ୍ରଦାନ କଲେ । ବ୍ରାହ୍ମଣଙ୍କୁ ନୂତନ ବସ୍ତ୍ର ଓ ଅଳଙ୍କାରାଦିରେ ସୁସଜ୍ଜିତ କରାଇ ତାଙ୍କୁ ବହୁ ଧେନୁ ଦାନ କଲେ । ବ୍ରାହ୍ମଣ, ସୂତ, ମାଗଧ, ବନ୍ଦୀମାନେ ମାଙ୍ଗଳିକ ପାଠକରି ଆଶୀର୍ବାଦ କଲେ । ସଙ୍ଗୀତ ଓ ବାଦ୍ୟ ଧ୍ୱନିରେ ବ୍ରଜମଣ୍ଡଳ ମୁଖରିତ ହୋଇଉଠିଲା । ବ୍ରଜବାସୀମାନେ ଆନନ୍ଦରେ ନିଜ ନିଜର ଗୃହଅଙ୍ଗନକୁ ସୁସଜ୍ଜିତ କଲେ ଓ ଗାଈଗୋରୁଙ୍କୁ ସ୍ନାନ କରାଇ ବିଭିନ୍ନ ଫୁଲ, ବସ୍ତ୍ର, ହଳଦୀ ଆଦି ରଙ୍ଗରେ ସୁନ୍ଦରଭାବରେ ସଜାଇ ସେମାନଙ୍କ ବେକରେ ସୁନାର ଶିକୁଳି ଓ ଘଣ୍ଟିମାନ ଲମ୍ବାଇ ଦେଲେ ଏବଂ ବହୁମୂଲ୍ୟର ଉପହାରମାନ ନନ୍ଦଙ୍କୁ ଭେଟି ଦେଇ ନବଜାତ ପୁତ୍ରକୁ ଦର୍ଶନ କଲେ । ଗୋପାଙ୍ଗନାମାନେ ଶିଶୁ ପୁତ୍ରକୁ ଦର୍ଶନ କରି ଭଗବାନଙ୍କ ନିକଟରେ ପ୍ରାର୍ଥନା ଜଣାଇଲେ, 'ପ୍ରଭୁ, ଏହି ସନ୍ତାନଟି ଚିରଜୀବୀ ହେଉ । ଏହାକୁ ସର୍ବତୋଭାବେ ରକ୍ଷାକର ।' ନନ୍ଦଙ୍କର ସନ୍ତାନ ଲାଭ ଗୋପବାସୀମାନଙ୍କୁ ଏତେ ଆନନ୍ଦିତ କରିଥିଲା ଯେ ସେମାନେ ଆନନ୍ଦବିହ୍ୱଳ ହୋଇ ପୁରୁଷମାନେ ପରସ୍ପରଙ୍କ ଉପରକୁ ଦଧି, ଲବଣି, ଘୃତ, ଦୁଗ୍ଧ ଏବଂ ନାରୀମାନେ ହଳଦୀ ତେଲ ମିଶ୍ରିତ ଜଳ ଫିଙ୍ଗାଫିଙ୍ଗି କରି ନୃତ୍ୟ କରିବାକୁ ଲାଗିଲେ । ନନ୍ଦ ଅତ୍ୟନ୍ତ ବନ୍ଧୁବତ୍ସଳ ଥିଲେ । ନବଜାତ ପୁତ୍ରର ମଙ୍ଗଳ ବିଧାନ ନିମନ୍ତେ ବ୍ରଜବାସୀମାନଙ୍କୁ ସେ ନୂତନ ବସ୍ତ୍ର ଓ ଅଳଙ୍କାରମାନ ପ୍ରଦାନ କରି ସମ୍ବର୍ଦ୍ଧିତ କଲେ । ଏହିପରି ଭାବରେ ମହାସମାରୋହରେ ନବଜାତ ପୁତ୍ରର ଜନ୍ମୋତ୍ସବ ପାଳିତ ହେଲା ।

କିଛିଦିନ ପରେ ଭୋଜରାଜ କଂସକୁ ଗୋକୁଳର ବାର୍ଷିକ ଖଜଣା ପ୍ରଦାନ କରିବା ନିମନ୍ତେ ନନ୍ଦ କଂସର ବାସସ୍ଥାନ ମଥୁରାକୁ ଆସିଲେ । ସେହି ସମୟରେ ନନ୍ଦଙ୍କ ସହ ବସୁଦେବଙ୍କର ମଥୁରାରେ ସାକ୍ଷାତ ହେଲା । ଦୁଇ ବନ୍ଧୁଙ୍କ ମଧ୍ୟରେ ସ୍ୱାଗତ ସତ୍କାର ଓ କୁଶଳବାର୍ତ୍ତା ଜ୍ଞାପିତ ହେବା

ପରେ ବସୁଦେବ କହିଲେ, 'ଭାଇ, ସନ୍ତାନସନ୍ତତି ଲାଭ କରିବାର କୌଣସି ସମ୍ଭାବନା ତୁମର ନ ଥିବା ବେଳେ ତୁମର ଏକ ପୁତ୍ର ଜାତ ହୋଇଥିବା ପରମ ସୌଭାଗ୍ୟର କଥା । ତୁମକୁ ସାକ୍ଷାତ କରି ମୁଁ ଅତ୍ୟନ୍ତ ଆନନ୍ଦିତ । ପ୍ରିୟଜନଙ୍କ ସହ ସାକ୍ଷାତ ଆଜିକାଲି ଏତେ ଦୁର୍ଲଭ ଯେ ବନ୍ଧୁମିଳନ ନବଜୀବନ ଲାଭର ଆନନ୍ଦ ଦେଉଅଛି । ଗୋକୁଳର ସବୁ କୁଶଳ ତ ? ଗୋକୁଳରେ ଭାଇବନ୍ଧୁ ଓ ଗୋସମ୍ପଦ ନେଇ ରହିଅଛ, ସେଠାରେ ଜଳ, ତୃଣ, ଲତାପତ୍ରାଦି ପ୍ରଚୁର ପରିମାଣରେ ମିଳୁଛି ତ ? ଗୋସମ୍ପଦ ମାରୀରୋଗ ଓ ଉପଦ୍ରବରେ ଅଛନ୍ତି ତ ଭାଇ ? ମୋର ପୁତ୍ର ତା'ର ଜନନୀ ରୋହିଣୀ ସହିତ ତୁମ ବ୍ରଜରେ କୁଶଳରେ ବାସ-କରୁଅଛନ୍ତି ତ ? ତୁମେ ଓ ଯଶୋଦା ସେହି ପୁତ୍ରର ଯେପରି ଯତ୍ନ ନେଉଛ, ଯଥାର୍ଥରେ ତୁମେ ଦୁହେଁ ହିଁ ତା'ର ପିତାମାତା । ଯେଉଁ ବ୍ୟକ୍ତି ସ୍ୱଜନସୁଖ ଲାଭ କରିଅଛି, ତା'ର ଧର୍ମ, ଅର୍ଥ, କାମ ଲାଭ ହୋଇଅଛି ବୋଲି କହିବାକୁ ହେବ । ସେ ଦିଗରୁ ତୁମେ ପ୍ରକୃତରେ ଭାଗ୍ୟବାନ ।'

ବସୁଦେବଙ୍କ କଥା ଶୁଣି ନନ୍ଦ କହିଲେ, 'ଭାଇ ବସୁଦେବ, ଦେବକୀଙ୍କ ଗର୍ଭଜାତ ପୁତ୍ରମାନଙ୍କୁ କଂସ ହତ୍ୟାକଲା ଏବଂ ଶେଷରେ ଯେଉଁ କନ୍ୟାଟି ଜାତ ହୋଇଥିଲା, ତାହା ପୁଣି ଆକାଶରେ ଉଭେଇ ଗଲା । ହାୟ, ସବୁ ଭାଗ୍ୟ । ପ୍ରାଣୀର ସୁଖ ଦୁଃଖ ସବୁ ଭାଗ୍ୟ ଉପରେ ନିର୍ଭରଶୀଳ, ଏଥିରେ ସନ୍ଦେହ ନାହିଁ । ତେଣୁ ସୁଖରେ ମୋହିତ ହେବା ବା ଦୁଃଖରେ ବିଚଳିତ ହେବା ଆଦୌ ଉଚିତ ନୁହେଁ ।'

ଦୁଇ ବନ୍ଧୁଙ୍କ ମଧ୍ୟରେ ବହୁ ସମୟ ଧରି ବହୁଭାବ ସୁଖଦୁଃଖର କଥା ପଡ଼ିଲା ପରେ ବସୁଦେବ କହିଲେ, 'ଭାଇ, ରାଜା କଂସଙ୍କୁ ତୁମେ ବାର୍ଷିକ ପ୍ରାପ୍ୟ ବୁଝାଇଦେଇ ସାରିଛ । ତା'ଛଡ଼ା ଆମ ଦୁହିଁଙ୍କ ମଧ୍ୟରେ ମଧ୍ୟ ସାକ୍ଷାତ ଆଳାପ ହେଲା । ତେଣୁ ଏଠାରେ ତୁମର ଆଉ ବେଶି ଦିନ ରହିବାର ଆବଶ୍ୟକତା ନାହିଁ । ତା ଛଡ଼ା ଗୋକୁଳରେ ଆଜିକାଲି ଯେଉଁ ସବୁ ଉତ୍ପାତର ଆଶଙ୍କା ରହିଛି ସେ ଦୃଷ୍ଟିରୁ ଏଠାରେ ଆଉ ବେଶି ସମୟ ଅତିବାହିତ କରିବା ତୁମ ପକ୍ଷରେ ଉଚିତ ହେବ ନାହିଁ ।'

ବସୁଦେବଙ୍କ କଥାନୁସାରେ ପରିଶେଷରେ ବସୁଦେବଙ୍କଠାରୁ ବିଦାୟ ନେଇ ନନ୍ଦ ଗୋକୁଳକୁ ଯାତ୍ରା କଲେ । ବାଟରେ ଆସିଲା ବେଳେ ନନ୍ଦଙ୍କ ମନରେ ବସୁଦେବଙ୍କର ଶେଷ ଆଶଙ୍କାର କଥା ବାରମ୍ବାର ପ୍ରତିଧ୍ୱନିତ ହେବାକୁ ଲାଗିଲା । ଗୋକୁଳର ଉତ୍ପାତ ଘଟିବାର ଯେଉଁ ଆଶଙ୍କା ବସୁଦେବଙ୍କ ମନରେ ସ୍ଥାନ ନେଇଛି ତାହା ମିଥ୍ୟା ହେବାର ନୁହେଁ । ସେହି କଥା ଭାବି ନନ୍ଦ ଭୟବିହ୍ୱଳ ହୋଇ ପଡ଼ିଲେ ଏବଂ ମନେ ମନେ କହିଲେ, 'ପ୍ରଭୁ ହିଁ ରକ୍ଷାକର୍ତ୍ତା । ପ୍ରଭୁ ହିଁ ଶରଣ ।'



# ପୂତନା ଓ ତୃଣାବର୍ତ୍ତ ଉଦ୍ଧାର

ଶିଶୁମାନଙ୍କୁ ହତ୍ୟା କରିବା କାର୍ଯ୍ୟରେ ଅନ୍ୟ ରାକ୍ଷସ ରାକ୍ଷସୀମାନଙ୍କ ସହିତ ପୂତନା ନାମକ ଏକ ରାକ୍ଷସୀକୁ ମଧ୍ୟ କଂସ ନିଯୋଜିତ କରିଥିଲା । ପୂତନାର ଶକ୍ତି ଅତି ଅଦ୍ଭୁତ ଥିଲା । ସେ ଆକାଶରେ ଉଡ଼ିପାରେ ଏବଂ ନିଜର ଇଚ୍ଛାନୁସାରେ ବିଭିନ୍ନ ରୂପ ମଧ୍ୟ ଧାରଣ କରିପାରେ ।

ଥରେ ନନ୍ଦଙ୍କର ଗୋକୁଳରେ ପ୍ରବେଶ କରିବା ନିମନ୍ତେ ପୂତନା ନିଜର ରାକ୍ଷସୀ-ମାୟା ବଳରେ ନିଜକୁ ଏକ ସମ୍ଭ୍ରାନ୍ତବଂଶୀୟା ସୁନ୍ଦରୀ ଯୁବତୀରେ ରୂପାନ୍ତରିତ କଲା ଓ ଗୋକୁଳର ବିଭିନ୍ନ ସ୍ଥାନ ଭ୍ରମଣ କରି ଅବଶେଷରେ ନନ୍ଦଙ୍କର ପ୍ରାସାଦ ମଧ୍ୟରେ ପୂତନା ପ୍ରବେଶ କଲା । ସେତେବେଳେ ନନ୍ଦଙ୍କର ନବଜାତ ପୁତ୍ର ଶଯ୍ୟାରେ ଶୟନ କରିଥିଲା । ପୂତନା ମଧ୍ୟ ପୁତ୍ରକୁ ଦେଖିବା ନିମନ୍ତେ ସେହି ଘର ମଧ୍ୟକୁ ଗଲା । ପୁତ୍ରକୁ ଦେଖିବା ନିମନ୍ତେ ବହୁ ସମୟରେ ବହୁ ରମଣୀ ଆସୁଥିଲେ, ତେଣୁ ପୂତନାକୁ କେହି ବାରଣ କଲେ ନାହିଁ । ପୂତନା ସେଯ ପାଖକୁ ଆସିବାରୁ ନବଜାତ ପୁତ୍ରଟି ନିଜର ନେତ୍ର ମୁଦ୍ରିତ କରି ସେଯରେ ପଡ଼ି-ରହିଲା । ଭ୍ରମବଶତ ଶାୟିତ ସର୍ପକୁ ଦଉଡ଼ି ମନେକରି ଉଠାଇନେଲା ପରି ଶିଶୁହତ୍ୟାକାରିଣୀ ପୂତନା ଶେଯ ଉପରୁ ଶିଶୁପୁତ୍ରକୁ ଉଠାଇ ନେଇ ନିଜର କୋଳରେ ଧରିଲା ଏବଂ ଶିଶୁପୁତ୍ରର ମୁହଁରେ ନିଜର ସ୍ତନ ପୂରାଇ ଦେଲା । ପୂର୍ବରୁ ପୂତନା ସ୍ତନରେ ଉଗ୍ର ବିଷ ବୋଳି ଦେଇ ଥିଲା, ଯେପରି ସ୍ତନ୍ୟପାନ କରିବା ମାତ୍ରେ ପୁତ୍ରଟି ମରିଯିବ । କିନ୍ତୁ ବିଧିର ବିଧାନ ଅନ୍ୟ ପ୍ରକାର । ଶିଶୁପୁତ୍ରଟି ସ୍ତନ୍ୟପାନ କରିବାକୁ ଯାଇ କ୍ରୋଧର ସହିତ ଦୁଇ ହାତରେ ପୂତନାର ସ୍ତନକୁ ଜାବୁଡ଼ି ଧରି ସ୍ତନ୍ୟ ସହିତ ପୂତନାର ପ୍ରାଣବାୟୁକୁ ମଧ୍ୟ ପାନ କରିବାକୁ ଲାଗିଲା । ଶିଶୁ-ପୁତ୍ରର ହାତର ଶକ୍ତିକୁ ପୂତନା ସହ୍ୟ କରିପାରିଲା ନାହିଁ । ସେ ପ୍ରାଣ

ବିକଳରେ 'ଆରେ ଗୁଡ଼୍, ଗୁଡ଼୍, ମରିଗଲି, ମରିଗଲି, ବୋଲି ଚିତ୍କାର କରିବାକୁ ଲାଗିଲା । ପୂତନାର ବିକଟ ଚିତ୍କାରରେ ସମଗ୍ର ଗୋକୁଳ ସତେ ଯେପରି ଥରିଉଠିଲା । ଶିଶୁ ପୁତ୍ରର ଶକ୍ତି ପୂତନା ପକ୍ଷରେ ଏପରି ଅସହ୍ୟ ଥିଲା ଯେ ତା'ର ଛଦ୍ମ ରୂପ ମନକୁ ମନ ଉଭେଇ ଗଲା, ତା'ର ବିକଟକାୟ ରାକ୍ଷସୀରୂପ ପ୍ରକଟିତ ହେଲା ଏବଂ ପରମୁହୂର୍ତ୍ତରେ ପୂତନାର ପ୍ରାଣହୀନ ଶରୀର ତଳେ ପଡ଼ିଗଲା । ପୂତନାର ଶରୀର ଏପରି ବିରାଟ ଥିଲା ଯେ ତାହା ଛ' କ୍ରୋଶ ପରିମିତ ଭୂମିକୁ ବ୍ୟାପୀ ପଡ଼ି ରହିଥିଲା । ପୂତନାର ଆର୍ତ୍ତ ଚିତ୍କାର ଶୁଣି ଗୋପବାସୀମାନେ ଆସି ସେଠାରେ ପହଞ୍ଚିଲେ ଏବଂ ଏକ ଭୀଷଣକାୟା ରାକ୍ଷସୀର ମୃତଶରୀର ଉପରେ ନନ୍ଦଙ୍କର ନବଜାତ ପୁତ୍ରକୁ ନିର୍ଭୟରେ ଖେଳୁଥିବାର ଦେଖିଲେ । ଦର୍ଶକମାନଙ୍କର ଦେହ ଭୟରେ ଶିହରି ଉଠିଲା । ରାକ୍ଷସୀର ମୃତ ଶରୀର ଉପରୁ ଶିଶୁ-ପୁତ୍ରକୁ ଉଠାଇନେଲେ ଏବଂ ପରେ ଗୋମୟ ଓ ଗୋମୂତ୍ର ଆଦି ଦ୍ୱାରା ପୁତ୍ରକୁ ସ୍ନାନ କରାଇ ଦେବଦେବୀଙ୍କ ନାମରେ ବିବିଧ ମନ୍ତ୍ରାଦି ପାଠକରି ତା'ର ଅଙ୍ଗନ୍ୟାସ କରାଇଲେ ଏବଂ ପୁତ୍ରର କଲ୍ୟାଣ ବିଧାନ ନିମନ୍ତେ ପ୍ରାର୍ଥନା କରି କହିଲେ, 'ଅଜନ୍ମା ଭଗବାନ ତୋର ପାଦକୁ ରକ୍ଷା କରନ୍ତୁ, ଯଜ୍ଞ ପୁରୁଷ ତୋର ଜଙ୍ଘକୁ, ଅଚ୍ୟୁତ କଟିକୁ, ହୟଗ୍ରୀବ ଉଦରକୁ, କେଶବ ହୃଦୟକୁ, ଈଶ ବକ୍ଷକୁ, ସୂର୍ଯ୍ୟ କଣ୍ଠକୁ, ବିଷ୍ଣୁ ବାହୁକୁ, ଉରୁକ୍ରମ ମୁଖକୁ, ଈଶ୍ୱର ମସ୍ତକକୁ ରକ୍ଷା କରନ୍ତୁ । ତୋର ସମ୍ମୁଖରେ ଭଗବାନ ଚକ୍ରଧର, ପଶ୍ଚାଦ୍‌ଭାଗରେ ଗଦାଧର ହରି, ଦୁଇପାର୍ଶ୍ୱରେ ଭଗବାନ ମଧୁସୂଦନ, ଊର୍ଦ୍ଧ୍ୱରେ ଉପେନ୍ଦ୍ର, ପୃଥିବୀରେ ହଳଧର ଅବସ୍ଥାନ କରି ତୋତେ ବାବା ସର୍ବଦା ରକ୍ଷା କରନ୍ତୁ । ହୃଷୀକେଶ ତୋର ଇନ୍ଦ୍ରିୟକୁ, ନାରାୟଣ ପ୍ରାଣକୁ, ଶ୍ୱେତଦ୍ୱୀପବାସୀ ଚିତ୍ତକୁ, ଯୋଗେଶ୍ୱର ମନକୁ, ପୃଶ୍ନିଗର୍ଭ ବୁଦ୍ଧିକୁ, ପରମାତ୍ମା ଅହଙ୍କାରକୁ ରକ୍ଷା କରନ୍ତୁ । କ୍ରୀଡ଼ାରତ ସମୟରେ ଗୋବିନ୍ଦ, ଶୟନକାଳରେ ମାଧବ, ଗମନ ସମୟରେ ବୈକୁଣ୍ଠବିହାରୀ, ଉପବେଶନ ସମୟରେ ଶ୍ରୀପତି, ଭୋଜନକାଳରେ ସର୍ବଭୋକ୍ତା ଭଗବାନ ତୋତେ ରକ୍ଷା କରନ୍ତୁ ।'

ଏହିପରି ଭାବରେ ଭୂତ-ପ୍ରେତ-ରାକ୍ଷସ-ନାଶିନୀ ବିବିଧ ମନ୍ତ୍ର ପାଠକରି ଶିଶୁପୁତ୍ରକୁ ଶୁଦ୍ଧ ପୂତ କରି ଗୋପଗୋପୀମାନେ ଗୃହ-କର୍ମରେ ମନ ଦେଲେ । ଏହି ଘଟଣାର ପରେ ପରେ ମଥୁରାରୁ ଫେରି

ନନ୍ଦ ଗୋକୁଳରେ ପହଞ୍ଚିଲେ । ସେ ପୂତନାର ଭୟଙ୍କର ରୂପ ଦେଖି ବିସ୍ମିତ ଓ ଭୟଭୀତ ହୋଇଗଲେ । ସେ କହିଲେ, 'ବଡ଼ ଆଶ୍ଚର୍ଯ୍ୟର କଥା, ବସୁଦେବଙ୍କର ଆଶଙ୍କା ସତ୍ୟରେ ପରିଣତ ହୋଇଅଛି । ବସୁଦେବ ନିଶ୍ଚୟ ପୂର୍ବଜନ୍ମରେ କୌଣସି ପ୍ରସିଦ୍ଧ ଋଷି ଥିଲେ ।' ଶିଶୁର ରାକ୍ଷସୀ କୌଣସି ଅନିଷ୍ଟ କରିପାରି ନାହିଁ ଜାଣି ନନ୍ଦ ଆଶ୍ୱସ୍ତ ହେଲେ ।

ବ୍ରଜବାସୀମାନେ ପୂତନାର ଶରୀରକୁ ଖଣ୍ଡ ଖଣ୍ଡ କରି କାଟି ଅଗ୍ନିରେ ଦାହ କଲେ । ପୁତ୍ରକୁ ମାରିବାକୁ ଆସି ପୂତନା ମୃତ୍ୟୁ ବରଣ କରିଛି, ଏହି ଘଟଣା ବ୍ରଜବାସୀଙ୍କୁ ଆଶ୍ଚର୍ଯ୍ୟାନ୍ୱିତ ଓ ଆନନ୍ଦିତ କରିଥିଲା, ଏହା କହିବା ନିଷ୍ପ୍ରୟୋଜନ ।

ଏହି ପୂତନା-ଘଟଣା ପରେ ପରେ ନନ୍ଦଙ୍କର ସେହି ଶିଶୁ-ପୁତ୍ରକୁ କେନ୍ଦ୍ରକରି ଆଉ ଦୁଇଟି ଅଦ୍ଭୁତ ଘଟଣା ଘଟିଗଲା । କୃଷ୍ଣଙ୍କର ବର୍ଷ ପୂର୍ତ୍ତି ଦିବସରେ ନନ୍ଦଙ୍କ ଭବନରେ ଏକ ବିଶେଷ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଯଶୋଦା ପୁତ୍ରକୁ ସ୍ନାନ କରାଇ, ଚନ୍ଦନ ତିଳକ ଆଦି ପିନ୍ଧାଇ ଓ ନୂତନ ଅଳଙ୍କାର ଏବଂ ବେଶପୋଷାକରେ ଭୂଷିତ କରି ଗୃହପ୍ରାଙ୍ଗଣରେ ଶୁଆଇଦେଲେ ଏବଂ ନିଜେ ଅତିଥିମାନଙ୍କ ସେବା-ସତ୍କାରରେ ମନୋନିବେଶ କଲେ । କିଛି ସମୟ ପରେ ଶିଶୁପୁତ୍ରର ନିଦ୍ରାଭଙ୍ଗ ହେବାରୁ ସେ ସ୍ତନପାନ କରିବାକୁ ଆଗ୍ରହୀ ହୋଇ କ୍ରନ୍ଦନ କରିବାକୁ ଲାଗିଲା । କିନ୍ତୁ ଗୃହର ଆନନ୍ଦକୋଳାହଳ ମଧ୍ୟରେ ଯଶୋଦା ଅନ୍ୟତ୍ର କାର୍ଯ୍ୟବ୍ୟସ୍ତ ଥିବାରୁ ପୁତ୍ରର କ୍ରନ୍ଦନଧ୍ୱନି ଶୁଣି ପାରିଲେ ନାହିଁ । ଶିଶୁଟି ବ୍ୟସ୍ତହୋଇ ହାତ ଗୋଡ଼ ହଲାଇ କ୍ରନ୍ଦନ କରୁଥାଏ । ପୁତ୍ରଟି ଶୟନ କରିଥିବା ସ୍ଥାନରେ ଗୋଟିଏ ବୃହତ୍‌କାୟ ଶଗଡ଼ ରହିଥିଲା । ପୁତ୍ରଟି ହାତଗୋଡ଼ ହଲାଇ କାନ୍ଦୁଥିବାବେଳେ ତା'ର ପଦାଘାତରେ ସେଠାରେ ଥିବା ଶଗଡ଼ଟି ଆଘାତପ୍ରାପ୍ତ ହୋଇ ବିପରୀତ ଦିଗରେ ବିକଟ ଶବ୍ଦ କରି ଓଲଟି ପଡ଼ିଲା, ଫଳରେ ଶଗଡ଼ ଉପରେ ଥିବା ଦୁଧ ଓ ଦହିପୂର୍ଣ୍ଣ ଭାଣ୍ଡମାନ ତଳେ ପଡ଼ି ଭାଙ୍ଗିଗଲା । ଶଗଡ଼ ଆଦି ପଡ଼ିବା ଶବ୍ଦରେ ଆକୃଷ୍ଟ ହୋଇ ଯଶୋଦାପ୍ରମୁଖ ସେଠାରେ ଆସି ପହଞ୍ଚିଲେ । ଏଡ଼େ ବଡ଼ ଶଗଡ଼ଟା ଯେ କିପରି ଆପଣା ଛାଏଁ ଓଲଟି ପଡ଼ିଲା, ସେମାନେ ତାହା ଅନୁମାନ କରିପାରିଲେ ନାହିଁ ।

ଏହା କ'ଣ କୌଣସି ଅସୁରର କାର୍ଯ୍ୟ, ନା କୌଣସି ଅମଙ୍ଗଳଆ ଗ୍ରହ ଏପରି ଘଟାଇଛି, ଏପରି ବିଚାର କରୁଥିବା ବେଳେ ସେଠାରେ ଥିବା ଗୋପବାଳକମାନେ ଶିଶୁପୁତ୍ରର ପଦାଘାତରେ ଶଗଡ଼ଟି ଓଲଟି ପଡ଼ିଲା ବୋଲି କହିଲେ, କିନ୍ତୁ ଜଣେ ସାମାନ୍ୟ ଶିଶୁର ଏପରି ଅପ୍ରମେୟ ଶକ୍ତି ଥାଇପାରେ ବୋଲି ଗୋପବାସୀ ବିଶ୍ୱାସ କରିପାରିଲେ ନାହିଁ । ନିଗ୍ରପଦରେ ଶେଯରେ ଶୟନ କରି ରୋଦନ କରୁଥିବା ଶିଶୁପୁତ୍ରକୁ କୋଳକୁ ନେଇ ଯଶୋଦା ସ୍ତନପାନ କରାଇଲେ ଏବଂ ବ୍ରାହ୍ମଣଙ୍କ ଦ୍ୱାରା ପୁତ୍ରକୁ ମନ୍ତ୍ର ଜଳରେ ସ୍ନାନପୂତ କରାଇଲେ ।

ଏହି ଘଟଣାର କିଛିଦିନ ପରେ, ଦିନେ ପୁତ୍ରକୁ କୋଳରେ ଧରି ଯଶୋଦା ସ୍ତନପାନ କରାଇ ତାର ମୁଖ ଚୁମ୍ବନ କରି ସ୍ନେହ କରୁଥିଲେ, ହଠାତ୍ ପୁତ୍ରର ଶରୀର ଓଜନ ଅସମ୍ଭବ ପ୍ରକାରରେ ବୃଦ୍ଧିପ୍ରାପ୍ତ ହୋଇଗଲା; ଏପରିକି ଯଶୋଦାଙ୍କ ପକ୍ଷରେ ପୁତ୍ରକୁ କୋଳରେ ଧରିବା ସମ୍ଭବ ହେଲା ନାହିଁ । ଯଶୋଦା ପୁତ୍ରକୁ ତଳେ ବସାଇ ଦେଇ ଊର୍ଦ୍ଧ୍ୱକୁ ଚାହିଁ କହିବାକୁ ଲାଗିଲେ, 'ମୋର ପୁତ୍ରକୁ କୌଣସି ଦୁଷ୍ଟଗ୍ରହ ଆବେଶ କଲା ନା କ'ଣ ; ତା'ନ ହୋଇଥିଲେ ଶିଶୁର ଶରୀର ଏପରି ହଠାତ୍ ଗୁରୁଭାର ହୁଅନ୍ତା କାହିଁକି ? ହେ ଭଗବାନ, ତୁମ କୃପାରୁ ମୁଁ ପୁତ୍ରଟିକୁ ପାଇଛି , ତୁମେ ଏହାକୁ ରକ୍ଷାକର, ପ୍ରଭୁ ।' ଏହା କହି ଭଗବାନ ନାରାୟଣଙ୍କ ଉଦ୍ଦେଶ୍ୟରେ ଯଶୋଦା ପ୍ରଣାମ ଜଣାଇଲେ ଏବଂ କୌଣସି ବ୍ରାହ୍ମଣଙ୍କ ଦ୍ୱାରା ପୁତ୍ରର ନିରାମୟ ନିମନ୍ତେ ପୂଜାପାଠ କରାଇବା ଉଦ୍ଦେଶ୍ୟରେ ବ୍ରାହ୍ମଣଙ୍କୁ ଆହ୍ୱାନ କରିବା ନିମନ୍ତେ ପୁତ୍ରକୁ ସେହିଠାରେ ବସାଇଦେଇ ଯଶୋଦା ସ୍ଥାନାନ୍ତର ଗମନ କଲେ । ଏହି ସମୟରେ ସେଠାରେ ଏକ ଅଦ୍ଭୁତ ଘଟଣା ଘଟିଲା । କଂସ ଦ୍ୱାରା ନିୟୋଜିତ ତୃଣାବର୍ତ୍ତ ନାମକ ଏକ ଅସୁର ସେଠାରେ ପ୍ରଚ୍ଛନ୍ନଭାବରେ ଉକ୍ତ ସୁଯୋଗର ଅପେକ୍ଷା କରୁଥିଲା । ଯଶୋଦା ସେହି ସ୍ଥାନ ଛାଡ଼ିଯିବା ମାତ୍ରେ ତୃଣାବର୍ତ୍ତ ଏକ ପ୍ରବଳ ଘୂର୍ଣ୍ଣିବାୟୁର ରୂପ ଧାରଣ କରି ଧୂଳି ଉଡ଼ାଇ ପ୍ରଚଣ୍ଡ ଘୂର୍ଣ୍ଣିବାତ୍ୟା ସୃଷ୍ଟି କଲା ; ଫଳରେ ନିମିଷକ ମଧ୍ୟରେ ସମଗ୍ର ବ୍ରଜମଣ୍ଡଳ ଅପୂର୍ବ ଧୂଳି ଝଡ଼ରେ ଆଚ୍ଛନ୍ନ ହୋଇଗଲା । ଝଡ଼ର ପ୍ରଚଣ୍ଡତା ତଥା ଝଡ଼ଜନିତ

ଧୂଳିର ଘନତାରେ, ବ୍ରଜବାସୀମାନେ ଆଖି ଖୋଲି ପାରିଲେ ନାହିଁ । ତଥାପି ଯଶୋଦା ବହୁ କଷ୍ଟରେ ପୁତ୍ରକୁ ବସାଇ ଦେଇ ଯାଇଥିବା ସ୍ଥାନକୁ ଆସି ପୁତ୍ରକୁ ଖୋଜିଲେ, କିନ୍ତୁ ସେଠାରେ କେଉଁଠି ପୁତ୍ରକୁ ପାଇଲେ ନାହିଁ । ତାଙ୍କର ମୁଣ୍ଡ ଘୂରିଗଲା । ମୃତବତ୍ସା-ଗାଈ ପରି ପାଗିଳମା ହୋଇ ସେ ସେହି ସ୍ଥାନରେ ଗଡ଼ି ଗଡ଼ି ଉଚ୍ଚ ସ୍ୱରରେ ରୋଦନ କରିବାକୁ ଲାଗିଲେ । କିଛି ସମୟ ପରେ ଧୂଳିଝଡ଼ ଓ ଘୂର୍ଣ୍ଣିବାତ୍ୟା ସାମାନ୍ୟ ହ୍ରାସ ପାଇବାରୁ ଯଶୋଦାଙ୍କର କ୍ରନ୍ଦନଧ୍ୱନି ଶୁଣି ପ୍ରତିବେଶୀ ଗୋପ-ଗୋପୀମାନେ ସେଠାରେ ଆସି ପହଞ୍ଚିଲେ ଏବଂ ଯଶୋଦାଙ୍କଠାରୁ ସମସ୍ତ କଥା ଅବଗତ ହୋଇ ସେମାନେ ଦୁଃଖ ଓ ଦୁଶ୍ଚିନ୍ତାରେ ଭାଙ୍ଗିପଡ଼ିଲେ । ସେମାନେ ଚତୁର୍ଦ୍ଦିଗରେ ଅନ୍ୱେଷଣ କଲେ ।

ଏଣେ ତୃଣାବର୍ତ୍ତ ଘୂର୍ଣ୍ଣିବାୟୁ ରୂପରେ ଯଶୋଦାଙ୍କ ପୁତ୍ରକୁ ହରଣ କରି ଆକାଶମାର୍ଗରେ ନେଇ ଯାଉଥିବାବେଳେ ଶିଶୁପୁତ୍ରର ଶରୀରରେ କ୍ରମବର୍ଦ୍ଧମାନ ଗୁରୁତ୍ୱକୁ ବହନ କରି ପଳାୟନ କରିବା ତା' ପକ୍ଷରେ ସମ୍ଭବ ହେଲା ନାହିଁ । ସତେ ଯେପରି ନୀଳମଣି ପର୍ବତ ତା' ଉପରେ ଲଦି ହୋଇ ରହିଛି, ଏପରି ତୃଣାବର୍ତ୍ତକୁ ବୋଧ ହେଲା । ସେ ପୁତ୍ରକୁ ତଳେ ପକାଇ ଦେବାକୁ ଚେଷ୍ଟା କରିବାରୁ, ପୁତ୍ରଟି ତୃଣାବର୍ତ୍ତର ଗଳାକୁ ନିଜ ହସ୍ତଦ୍ୱୟରେ ଦୃଢ଼ଭାବରେ ଚପି ଧରିଲେ; ଫଳରେ କିଛି ସମୟ ଛଟପଟ ହୋଇ ତୃଣାବର୍ତ୍ତ ମୃତ୍ୟୁ ବରଣକଲା ଏବଂ ଶିଶୁପୁତ୍ର ସହିତ ତା'ର ମୃତଦେହ ବ୍ରଜଦାଣ୍ଡରେ ନିପତିତ ହେଲା । ତୃଣାବର୍ତ୍ତର ମୃତ ଶରୀର ତଳେ ପଡ଼ି ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା, କିନ୍ତୁ ଆଶ୍ଚର୍ଯ୍ୟର କଥା ଶିଶୁପୁତ୍ରର କୌଣସି ଅନିଷ୍ଟ ହେଲା ନାହିଁ । ପୁତ୍ରକୁ ଦେଖି ଗୋପବାସୀମାନେ କୋଟି-ନିଧି ପାଇବା ପରି ମନେକଲେ ଏବଂ ପୁତ୍ରକୁ ନେଇ ବିଳାପରତା ଯଶୋଦାଙ୍କ ହସ୍ତରେ ଅର୍ପଣ କଲେ । ପୁତ୍ରକୁ ଦେଖି ନନ୍ଦ ଓ ଯଶୋଦା ନିଜର ପ୍ରାଣ ଯେପରି ଫେରି ପାଇଲେ । ଗୋପବାସିନୀମାନେ ଆନନ୍ଦ ଗଦ୍‌ଗଦ ହୋଇ କୁହାକୁହି ହେଲେ, 'ଓଃ କି ଆଶ୍ଚର୍ଯ୍ୟ । ଏହି ଦୁଷ୍ଟ ରାକ୍ଷସର କବଳିତ ହୋଇ ପୁତ୍ରଟି ନିଶ୍ଚିତ ମୃତ୍ୟୁରୁ ଅକ୍ଷତ ଶରୀରରେ ରକ୍ଷା ପାଇଅଛି ଏବଂ ପରର ଅନିଷ୍ଟକାରୀ ରାକ୍ଷସ ନିଜ କୃତକର୍ମର ସମୁଚିତ ଶାସ୍ତି ଲାଭ କରିଅଛି । ଆମର କି ସୌଭାଗ୍ୟ, ପୁତ୍ରକୁ ଆମେ ନିରାପଦରେ ଫେରି ପାଇଲେ !!'

ବସୁଦେବଙ୍କର ହେବା ଆଶଙ୍କାପୂର୍ଣ୍ଣ ସତର୍କବାଣୀ ପୁନର୍ବାର ସତ୍ୟରେ ପରିଣତ ହେଲା ଦେଖି, ନନ୍ଦଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ।

ଦିନେ ଯଶୋଦା ପୁତ୍ରକୁ ସ୍ତନ ପାନ କରାଇ ପୁତ୍ରର ମୁଖକୁ ସ୍ନେହରେ ଚୁମ୍ବନ କରୁ କରୁ ପୁତ୍ରର ମୁଖ ମଧ୍ୟରେ ଏକ ଅପୂର୍ବ ଦୃଶ୍ୟ ଦେଖିବାକୁ ପାଇଲେ । ଯଶୋଦା ଦେଖିଲେ, ପୁତ୍ରର ମୁଖଗହ୍ୱରରେ ଆକାଶ, ଅନ୍ତରୀକ୍ଷ, ଜ୍ୟୋତିମଣ୍ଡଳ, ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ବାୟୁ, ସମୁଦ୍ର, ପର୍ବତ, ଅରଣ୍ୟ ଓ ଦଶଦିଗ ଆଦି ଅଖିଳ ଜଗତ ଅବସ୍ଥାନ କରୁଅଛନ୍ତି । ପୁତ୍ରର ମୁଖରେ ଚରାଚର ବିଶ୍ୱ ଦର୍ଶନ କରି ମୃଗନୟନା ଯଶୋଦାଙ୍କର ଶରୀର ଅପୂର୍ବ ବିସ୍ମୟରେ ଶିହରି ଉଠିଲା । ସେହି ଦୃଶ୍ୟକୁ ଅଧିକ ସମୟ ଧରି ଦେଖିବା ତାଙ୍କ ପକ୍ଷରେ ସମ୍ଭବପର ହେଲା ନାହିଁ । ସଙ୍ଗେ ସଙ୍ଗେ ସେ ନିଜର ନୟନ ମୁଦ୍ରିତ କରି ନିଜକୁ ସଂଯତ କରିନେଲେ ।



# ନାମକରଣ

ଯଦୁବଂଶର କୁଳପୁରୋହିତଙ୍କର ନାମ ଗର୍ଗାଚାର୍ଯ୍ୟ । ସେ ଜଣେ ବିଶିଷ୍ଟ ପଣ୍ଡିତ, ତତ୍ତ୍ୱଦର୍ଶୀ ଏବଂ ତପସ୍ୱୀ ଥିଲେ । ବସୁଦେବଙ୍କ ଇଚ୍ଛାନୁସାରେ ଦିନେ ଗର୍ଗାଚାର୍ଯ୍ୟ ଗୋକୁଳକୁ ଆସି ନନ୍ଦଙ୍କୁ ସାକ୍ଷାତ କଲେ ।

ଗର୍ଗାଚାର୍ଯ୍ୟଙ୍କୁ ଦର୍ଶନ କରି ନନ୍ଦ ପ୍ରସନ୍ନଚିତ୍ତରେ ପ୍ରଣାମ ଜଣାଇ ତାଙ୍କର ସ୍ୱାଗତ ଅଭ୍ୟର୍ଥନା କଲେ ଏବଂ କହିଲେ, 'ଆଚାର୍ଯ୍ୟ ମହାଶୟ, ଆପଣ ସ୍ୱୟଂ ପୂର୍ଣ୍ଣକାମ । ଆପଣଙ୍କର ଯଥାଯୋଗ୍ୟ ସେବା ସ୍ୱୀକାର କରିବାର ସାମର୍ଥ୍ୟ ମୋର ନାହିଁ । ମୋର ପରମ ସୌଭାଗ୍ୟ ଯେ ଆପଣଙ୍କ ପରି ମହାତ୍ମାଙ୍କ ଚରଣର ସ୍ପର୍ଶ ମୋର ଗୃହ ଲାଭ କଲା । ଆପଣ ନିଜର ଅସାଧାରଣ ପାଣ୍ଡିତ୍ୟ ବଳରେ ଭୂତଭବିଷ୍ୟତର କଥା ଅବଗତ ହୋଇଥାନ୍ତି । ଆପଣ ବ୍ରହ୍ମବେତ୍ତାଙ୍କ ମଧ୍ୟରେ ଶ୍ରେଷ୍ଠ । ମୋର ଏହି ଶିଶୁପୁତ୍ର ଦୁହିଁଙ୍କର ନାମକରଣ ସଂସ୍କାର ଆପଣଙ୍କ ଦ୍ୱାରା କରାଇବା ମୋର ଇଚ୍ଛା । ଆପଣ ଅନୁଗ୍ରହପୂର୍ବକ ସେହି କାର୍ଯ୍ୟ ସମ୍ପାଦନ କରନ୍ତୁ । ଆପଣଙ୍କ ପରି ବ୍ରହ୍ମବେତ୍ତା ବ୍ରାହ୍ମଣ ଗୁରୁଙ୍କର ଆଶୀର୍ବାଦ ଲାଭ କରିବା ସେମାନଙ୍କ ପକ୍ଷରେ ସୌଭାଗ୍ୟର ବିଷୟ ହେବ ।'

ନନ୍ଦଙ୍କର କଥା ଶୁଣି ଗର୍ଗାଚାର୍ଯ୍ୟ କହିଲେ, 'ନନ୍ଦ, ଯଦୁବଂଶର କୁଳପୁରୋହିତ ଭାବରେ ମୁଁ ସର୍ବଜନ ସୁପରିଚିତ । ମୋଦ୍ୱାରା ଆପଣଙ୍କର ଏହି ପୁତ୍ରଦ୍ୱୟଙ୍କର ନାମକରଣ ସଂସ୍କାର ସମ୍ପନ୍ନ ହେଲେ ଜନସାଧାରଣ ଏହି ପୁତ୍ରଦ୍ୱୟଙ୍କୁ ଆପଣଙ୍କର ପୁତ୍ର ବୋଲି ନ କହି ଯଦୁବଂଶୀୟ ଦେବକୀ-ବସୁଦେବଙ୍କର ପୁତ୍ର ବୋଲି କହିବେ । କଂସ ଅତ୍ୟନ୍ତ ଦୁଷ୍ଟ ଓ ପାପୀ । ବସୁଦେବଙ୍କ ସହିତ ଆପଣଙ୍କର ଘନିଷ୍ଠ ବନ୍ଧୁତା କାହାକୁ ଅବିଦିତ

ନାହିଁ । ଦେବକୀଙ୍କ ଗର୍ଭଜାତ କନ୍ୟାଠାରୁ କଂସ ଶୁଣିବାକୁ ପାଇଛନ୍ତି ଯେ ତା'ର ହନ୍ତାକାରୀ ଅନ୍ୟତ୍ର ଜନ୍ମ ହୋଇସାରିଛି । ସେଥିପାଇଁ ଦେବକୀଙ୍କ ଗର୍ଭରୁ କନ୍ୟାଜାତ ହେବା କଥାକୁ ସେ ଆଦୌ ବିଶ୍ୱାସ କରିପାରୁ ନାହିଁ । ଏପରି ସ୍ଥଳେ ମୁଁ ଯଦି ଆପଣଙ୍କର ଏହି ପୁତ୍ରମାନଙ୍କର ନାମକରଣ ସଂସ୍କାର କାର୍ଯ୍ୟ କରେ ତେବେ ଏହି ଶିଶୁପୁତ୍ରମାନଙ୍କୁ ବସୁଦେବଙ୍କର ପୁତ୍ର ବୋଲି ଅନୁମାନ କରି କଂସ ଏମାନଙ୍କର ଅନିଷ୍ଟ ସାଧନ କରିବା ବିଚିତ୍ର ନୁହେଁ । ତେଣୁ ଏହି ଶିଶୁ ପୁତ୍ରମାନଙ୍କ ଉପରକୁ ଏତେ ବଡ଼ ବିପଦକୁ ମୁଁ ଜାଣି ଜାଣି କିପରି ଡାକି ଆଣିବି ?'

ନନ୍ଦ କହିଲେ, 'ଆଚାର୍ଯ୍ୟ ମହାଶୟ, ଆପଣ ମୋର ଅନୁରୋଧ ରକ୍ଷାକରି ଅତ୍ୟନ୍ତ ଗୋପନରେ ଏହି ଗୋଶାଳା ମଧ୍ୟରେ କେବଳ ସ୍ୱସ୍ତିବାଚନ ପାଠକରି ଏହି ଶିଶୁଦ୍ୱୟଙ୍କର ଦ୍ୱିଜାତି ସୁଲଭ ନାମ ସଂସ୍କାର ଦୟାକରି ସମ୍ପନ୍ନ କରନ୍ତୁ । ଏ କଥା ଅନ୍ୟ କେହି ଜାଣିବାକୁ ପାଇବେ ନାହିଁ ।'

ଗର୍ଗାଚାର୍ଯ୍ୟଙ୍କର ଆଗ୍ରହ ଥିଲା; ତେଣୁ ନନ୍ଦଙ୍କର ସେହି ପ୍ରସ୍ତାବରେ ସେ ସମ୍ମତ ହୋଇ ଏକ ଗୋଶାଳା ମଧ୍ୟରେ ଗୋପନରେ ଦୁଇ ପୁତ୍ରଙ୍କର ନାମକରଣ ସଂସ୍କାର ସମ୍ପାଦନ କଲେ ।

ପୁତ୍ରଦ୍ୱୟଙ୍କୁ ଦେଖି ଗର୍ଗାଚାର୍ଯ୍ୟ କହିଲେ, 'ଏ ରୋହିଣୀଙ୍କ ପୁତ୍ର; ତେଣୁ ମାତାଙ୍କ ନାମାନୁସାରେ ତାଙ୍କର ନାମ ହେବ ରୌହିଣେୟ । ଏ ଅତ୍ୟନ୍ତ ବଳବାନ୍ ହେବେ, ସେଥିଯୋଗୁ ସେ ଲୋକମୁଖରେ 'ବଳ' ନାମରେ ଏବଂ ନିଜର ଚରିତ୍ରଗୁଣରେ ତାଙ୍କର ସମସ୍ତଙ୍କୁ ମୁଗ୍ଧ କରିପାରିବାର ଶକ୍ତି ଥିବାରୁ ଲୋକେ ତାଙ୍କୁ ମଧ୍ୟ 'ରାମ' ନାମରେ ଅଭିହିତ କରିବେ । ଆପଣଙ୍କର ଜାତି ଓ ଦେବତାଙ୍କ ମଧ୍ୟରେ ଥିବା ସମସ୍ତ ଭେଦଭାବକୁ ସେ ଦୂର କରିବେ, ସେଥିପାଇଁ ସେ ମଧ୍ୟ 'ସଂକର୍ଷଣ' ନାମରେ ପରିଚିତ ହେବେ । ଏହି ଶ୍ୟାମଳ ବର୍ଣ୍ଣର ଦ୍ୱିତୀୟ ପୁତ୍ରଟି, ପ୍ରତ୍ୟେକ ଯୁଗରେ ମାନବଶରୀର ଧାରଣ କରୁଅଛନ୍ତି । ଅତୀତରେ ତାଙ୍କ ଶରୀରର ବର୍ଣ୍ଣ ପ୍ରଥମେ ଶ୍ୱେତ, ପରେ ରକ୍ତ ଏବଂ ପୀତ ଥିଲା । ବର୍ତ୍ତମାନ ସେ କୃଷ୍ଣ ବର୍ଣ୍ଣ ଧାରଣ କରିଅଛନ୍ତି; ସେଥିଯୋଗୁ ତାଙ୍କର ନାମ ହେଉ 'କୃଷ୍ଣ' । ଏହି ପୁତ୍ର ଆପଣଙ୍କ ଗୃହରେ ଜାତହେବା

ପୂର୍ବରୁ କେବେ ବସୁଦେବଙ୍କ ଗୃହରେ ଜନ୍ମଗ୍ରହଣ କରିଥିଲେ । ଏହି ରହସ୍ୟ ସମ୍ପର୍କରେ ଅବଗତ ଥିବା ବ୍ୟକ୍ତିମାନେ ଏହାଙ୍କୁ 'ବାସୁଦେବ' ନାମରେ ଅଭିହିତ କରିବେ । ଏତଦ୍‌ବ୍ୟତୀତ ଏହି ପୁତ୍ର ସଂସାରରେ ନିଜର ଗୁଣ ଓ କୀର୍ତ୍ତି ଅନୁସାରେ ବହୁ ନାମରେ ପରିଚିତ ହେବେ । ଏହି ପୁତ୍ର ଆପଣଙ୍କର ପ୍ରଭୂତ କଲ୍ୟାଣ ସାଧନ କରିବେ ଓ ଗୋପବାସୀ-ମାନଙ୍କୁ ବହୁ ଆନନ୍ଦ ପ୍ରଦାନ କରିବେ ଏବଂ ବହୁ ବିପଦରୁ ରକ୍ଷା କରିବେ । ବ୍ରଜରାଜ ନନ୍ଦ, ବହୁ ଯୁଗ ପୂର୍ବେ ପୃଥିବୀ ଏକ ସମୟରେ ଅରାଜକ ଥିଲା; ଫଳରେ ଚୋର, ଡକାୟତ ଆଦି ଦୁଷ୍ଟମାନଙ୍କ ଦ୍ୱାରା ମାନବଜାତି ଅତ୍ୟାଚରିତ ହେଉଥିଲା, ସେହି ସମୟରେ ଆପଣଙ୍କର ଏହି ପୁତ୍ର ଜନ୍ମ ହୋଇ ସାଧୁସଜ୍ଜନମାନଙ୍କୁ ଦୁଷ୍ଟଙ୍କ କବଳରୁ ରକ୍ଷା କରିଥିଲେ ଏବଂ ଦୁଷ୍ଟମାନଙ୍କୁ ସାଧୁମାନଙ୍କ ଦ୍ୱାରା ବିନାଶ କରାଇଥିଲେ । 'ଯେଉଁ ଲୋକ ଆପଣଙ୍କର ଏହି ପୁତ୍ରକୁ ସ୍ନେହ କରିବ, ମନୁଷ୍ୟଙ୍କ ମଧ୍ୟରେ ତାଙ୍କୁ ପରମ ଭାଗ୍ୟବାନ ବୋଲି ଜାଣିବେ । ଯେପରି ଭଗବାନ ବିଷ୍ଣୁଙ୍କ ଦ୍ୱାରା ସୁରକ୍ଷିତ ଦେବତାମାନଙ୍କର ଅସୁରମାନେ କୌଣସି ଅନିଷ୍ଟ କରିପାରନ୍ତି ନାହିଁ, ସେହିପରି ଏହି ପୁତ୍ରଙ୍କୁ ସ୍ନେହ ଓ ପ୍ରେମ କରୁଥିବା ବ୍ୟକ୍ତିଙ୍କର କେହି କୌଣସି ଅନିଷ୍ଟ କରିବାକୁ ସମର୍ଥ ହେବେ ନାହିଁ । ନନ୍ଦରାଜ, ଆପଣଙ୍କର ଏହି ପୁତ୍ର ଗୁଣ, ବିଭବ, ସୌନ୍ଦର୍ଯ୍ୟ, କୀର୍ତ୍ତି, ପ୍ରଭାବ ଓ ପରାକ୍ରମରେ ସାକ୍ଷାତ ଭଗବାନ ନାରାୟଣଙ୍କ ସଦୃଶ । ଆପଣ ଅତ୍ୟନ୍ତ ସାବଧାନତା ଓ ସ୍ନେହର ସହିତ ଏହି ପୁତ୍ରଙ୍କୁ ଲାଳନପାଳନ କରନ୍ତୁ ।

ଏହା କହି ଗର୍ଗାଚାର୍ଯ୍ୟ ନନ୍ଦରାଜାଙ୍କଠାରୁ ବିଦାୟ ନେଇ ନିଜ ଆଶ୍ରମକୁ ପ୍ରତ୍ୟାଗମନ କଲେ । ଗର୍ଗାଚାର୍ଯ୍ୟଙ୍କ କଥାକୁ ମନେ ମନେ ସ୍ମରଣ କରି ନନ୍ଦଙ୍କର ଆନନ୍ଦର ସୀମା ରହିଲା ନାହିଁ । ଏପରି ଗୁଣବାନ୍ ପୁତ୍ରରତ୍ନ ଲାଭ କରିଥିବାରୁ ନନ୍ଦ ନିଜର ସମସ୍ତ ଆଶା ଓ କାମନା ପୂର୍ଣ୍ଣ ହୋଇଅଛି ବୋଲି ଉପଲବ୍ଧି କରିବାକୁ ଲାଗିଲେ ।

ଦିନ ପରେ ଦିନ ଅତିବାହିତ ହେବାକୁ ଲାଗିଲା ।

ସମୟର ଗତି ସଙ୍ଗେ ସଙ୍ଗେ କୃଷ୍ଣ ଓ ବଳରାମ ବଢ଼ିବାକୁ ଲାଗିଲେ । କୃଷ୍ଣ ଓ ବଳରାମଙ୍କର ରୂପ ଅତ୍ୟନ୍ତ ଆକର୍ଷଣୀୟ ଥିଲା ।

ସେମାନଙ୍କର ଚାଲିଚଳନ, ଶିଶୁସୁଲଭ ଚପଳତା, ହସ ହସ କଥାବାର୍ତ୍ତା, ଖେଳ ଓ ବନ୍ଧନ କାର୍ଯ୍ୟ ବ୍ରଜବାସୀଙ୍କ ପାଇଁ ବିଶେଷ ପ୍ରୀତିଦାୟକ ଥିଲା । କୃଷ୍ଣ ଓ ବଳରାମଙ୍କୁ ଦଣ୍ଡେ ନ ଦେଖିଲେ ସେମାନେ ପାଗଳ ହୋଇ ଯାଉଥିଲେ ।

ଦିନେ କୃଷ୍ଣଙ୍କର କ୍ରୀଡ଼ାସଙ୍ଗୀମାନେ ବଳରାମଙ୍କ ସଙ୍ଗରେ ଆସି ଯଶୋଦାଙ୍କୁ କହିଲେ, 'ମା, କୃଷ୍ଣ ମାଟି ଖାଉଛି ।' ଯଶୋଦା ସଙ୍ଗେ ସଙ୍ଗେ କୃଷ୍ଣଙ୍କ ନିକଟକୁ ଯାଇ ତାଙ୍କୁ ଧରି କହିଲେ, 'ଏକୁଟିଆ ବସି ତୁ ମାଟି ଖାଉଛୁ ବୋଲି ତୋର ସାଙ୍ଗମାନେ କହୁଛନ୍ତି । ଚଗଲିଟା ! ଛିଃ, ମାଟି ଖାଆନ୍ତି ?'

ମା'ଙ୍କର ଭର୍ତ୍ସନା ଶୁଣି କୃଷ୍ଣ କହିଲେ, 'ମା, ମୁଁ ତ ମାଟି ଖାଉ ନାହିଁ । ସେମାନେ ମିଛ କହୁଛନ୍ତି । ସତ କି ମିଛ, ମୋ ମୁହଁ ଦେଖ ।'

ଯଶୋଦା କହିଲେ, 'ତୁ ମାଟି ଖାଉ ନାହୁଁ ? ବେଶ୍ ପାଟି ଆଁ କର । ମୁଁ ଦେଖେ ।'

କୃଷ୍ଣ ସଙ୍ଗେ ସଙ୍ଗେ ମା'ଙ୍କ କଥାନୁସାରେ ପାଟି ଆଁ କଲେ । କୃଷ୍ଣଙ୍କର ଐଶ୍ୱର୍ଯ୍ୟ ଅନନ୍ତ । ପ୍ରକୃତରେ ପୁଅ ମାଟି ଖାଇଛି କି ନାହିଁ ଦେଖିବାକୁ ଯାଇ କୃଷ୍ଣଙ୍କ ମୁଖ ମଧ୍ୟରେ ଯଶୋଦା ମାଟି ବଦଳରେ ସ୍ଥାବର, ଜଙ୍ଗମ, ଅନ୍ତରୀକ୍ଷ, ପର୍ବତ, ଦ୍ୱୀପ, ସମୁଦ୍ର, ଭୂଲୋକ, ବାୟୁ, ଅଗ୍ନି, ଚନ୍ଦ୍ର, ଗ୍ରହ, ନକ୍ଷତ୍ର, ସ୍ୱର୍ଗ, ଆକାଶ, ଜଳ, ଦେବତା ଆଦି ଚରାଚର ଅଖିଳ ଜଗତ ସହ ସମଗ୍ର ବ୍ରଜ ତଥା ନିଜକୁ ମଧ୍ୟ ଦେଖିବାକୁ ପାଇଲେ । ଯଶୋଦାଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେ ଭାବିଲେ, 'ଏ କ'ଣ ସ୍ୱପ୍ନ ନା ସତ୍ୟ ?' ମୋର ବୁଦ୍ଧି ଭ୍ରମ ଘଟି ନାହିଁ ତ ? ଏହା କ'ଣ ଭଗବାନଙ୍କର ମାୟା ନା ମୋର ପୁତ୍ର ପ୍ରକୃତରେ କୌଣସି ଯୋଗସିଦ୍ଧ ପୁରୁଷ ?' ଯଶୋଦା ମନରେ ଭାବାନ୍ତର ଉପସ୍ଥିତ ହେଲା । ସେ ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି କହିଲେ, 'ତର୍କ ଦ୍ୱାରା ଯାହାଙ୍କର ସନ୍ଧାନ ମିଳେ ନାହିଁ, ଯେ ଏହି ବିଶ୍ୱର ଆଶ୍ରୟ ଓ ଇନ୍ଦ୍ରିୟ-ମାନଙ୍କର ଅଧିଷ୍ଠାତା ଏବଂ ଯାହାଙ୍କର ଚେତନାଶକ୍ତିରୁ ଏହି ବିଶ୍ୱ

ପ୍ରକାଶିତ ହୋଇଅଛୁ, ମୁଁ ସେହି ଦୁର୍ଜ୍ଞେୟ ପରମପୁରୁଷଙ୍କର ଚରଣାର-ବିନ୍ଦରେ ପ୍ରଣାମ କରୁଛୁ । ଯାହାଙ୍କର ମାୟାର ବଶବର୍ତ୍ତିନୀ ହୋଇ, ମୁଁ ଭାବୁଛୁ, ମୁଁ ଯଶୋଦା, ମୁଁ ନନ୍ଦଙ୍କର ପତ୍ନୀ ଓ ବ୍ରଜରାଣୀ, ସେ ମୋର ସ୍ୱାମୀ, ଏ ମୋର ପୁତ୍ର, ଏମାନେ ଗୋପ, ଏମାନେ ଗୋପୀ, ଏ ଗୋଧନ ମୋର ଇତ୍ୟାଦି ସେହି ଅନ୍ତର୍ଯ୍ୟାମୀ ଭଗବାନଙ୍କଠାରେ ମୁଁ ଶରଣ ନେଉଅଛୁ ।'

ଯଶୋଦା ଏହିପରି ଭାବରେ ଭଗବାନଙ୍କର ଅକଳ୍ପନୀୟ ତତ୍ତ୍ୱ ଅବଗତ ହେବାରୁ, କୃଷ୍ଣ ରୂପଧାରୀ ଭଗବାନ ନିଜର ବୈଷ୍ଣବୀମାୟା ବିସ୍ତାର କରି ସ୍ନେହମୟୀ ମାତା ଯଶୋଦାଙ୍କ ସ୍ମୃତିରୁ ନିଜ ସମ୍ପର୍କୀୟ ସେହି ପରମ ତତ୍ତ୍ୱଜ୍ଞାନକୁ ବିନାଶ କଲେ; ଫଳରେ କୃଷ୍ଣଙ୍କର ସେହି ଅଲୌକିକ ଲୀଳାର କଥା ଯଶୋଦା ସମ୍ପୂର୍ଣ୍ଣରୂପେ ଭୁଲିଗଲେ । ପୂର୍ବପରି ସ୍ନେହରେ କୃଷ୍ଣଙ୍କୁ କୋଳକୁ ନେଇ ଯଶୋଦା ବାତ୍ସଲ୍ୟମମତାରେ ବୁଡ଼ି ରହିଲେ ।

ଶୁକଦେବଙ୍କ ମୁଖରୁ ମହାରାଜ ପରୀକ୍ଷିତ କୃଷ୍ଣଲୀଳାସମ୍ବଳିତ ପବିତ୍ର ଭାଗବତ ଶ୍ରବଣ କରୁଥିଲେ । ପରୀକ୍ଷିତ ପ୍ରଶ୍ନ କଲେ, 'ହେ ମୁନି-ଶ୍ରେଷ୍ଠ, ମୋ ମନରେ ଜାତ ହୋଇଥିବା ଏକ ସନ୍ଦେହକୁ ଦୟାକରି ଦୂର କରନ୍ତୁ । ଯାହାଙ୍କର ପବିତ୍ର ଲୀଳାକଥା ଶୁଣିଲେ ଏବଂ କୀର୍ତ୍ତନ କଲେ ଶ୍ରୋତା ଓ ବକ୍ତାମାନେ ପରମ ପୁଣ୍ୟଲାଭ କରିଥାନ୍ତି ସେହି ଭଗବାନ କୃଷ୍ଣଙ୍କୁ ବସୁଦେବ ଓ ଦେବକୀ ଜାତ କରିଥିଲେ ମଧ୍ୟ ସେମାନେ ତାଙ୍କୁ ଲାଳନପାଳନ କରିବାର ବାତ୍ସଲ୍ୟସୁଖରୁ ବଞ୍ଚିତ ହେଲାବେଳେ, ନନ୍ଦ ଓ ଯଶୋଦା ଏପରି କି ପୁଣ୍ୟ କରିଥିଲେ ଯେ କୃଷ୍ଣଙ୍କର ଜନ୍ମିତ ପିତାମାତା ନ ହୋଇ ମଧ୍ୟ କୃଷ୍ଣଙ୍କୁ ନିଜର ପୁତ୍ର-ରୂପରେ ଲାଳନ ପାଳନ କରିବାର ଅନନ୍ତ ସୁଖ ସେମାନେ ଲାଭକଲେ ଏବଂ ଭଗବାନ ମଧ୍ୟ ନନ୍ଦଯଶୋଦାଙ୍କର ପୁତ୍ରତ୍ୱକୁ ସ୍ୱୀକାର କରି ଯଶୋଦାଙ୍କୁ ସ୍ତନପାନ କରାଇବାର ସୁଖ ପ୍ରଦାନ କଲେ ? ମୁଁ ଏହା ବୁଝି ପାରୁନାହିଁ ।'

ଶୁକଦେବ କହିଲେ, 'ମହାରାଜ, ବସୁମାନଙ୍କ ମଧ୍ୟରେ ଦ୍ରୋଣ ଥିଲେ ପ୍ରଧାନ । ଏକଦା ଦ୍ରୋଣ ନିଜର ପତ୍ନୀ ଧରାଙ୍କ ସହିତ ଯାଇ

ଭଗବାନ ବ୍ରହ୍ମାଙ୍କ ନିକଟରେ ପ୍ରାର୍ଥନା କଲେ, 'ପ୍ରଭୁ, ପୃଥିବୀପୃଷ୍ଠରେ ଯଦି କେବେ ଆମେ ମାନବ ଜନ୍ମଲାଭ କରୁ, ତେବେ ପ୍ରେମମୟ ଜଗଦୀଶ୍ୱର ଭଗବାନ ଶ୍ରୀ ହରିଙ୍କଠାରେ ଯେପରି ଆମର ଅତୁଟ ଭକ୍ତି ଓ ଶ୍ରଦ୍ଧା ରହେ ଏବଂ ସେହି ଭକ୍ତି ବଳରେ ଆମେ ଯେପରି ଅନାୟାସରେ ଭବସାଗରରୁ ଉତ୍ତୀର୍ଣ୍ଣ ହୋଇପାରିବୁ, ଅନୁଗ୍ରହପୂର୍ବକ ସେହି ବର ଆମକୁ ପ୍ରଦାନ କରନ୍ତୁ ।' ସେମାନଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ଭଗବାନ ବ୍ରହ୍ମା ସେହି ବର ସେମାନଙ୍କୁ ପ୍ରଦାନ କରିଥିଲେ । ତଦନୁସାରେ ଯଶସ୍ୱୀ ଦ୍ରୋଣ ଓ ଧରା ପୃଥିବୀରେ ମାନବରୂପରେ ଜନ୍ମହୋଇ ବ୍ରଜରେ ନନ୍ଦ ଓ ଯଶୋଦା ନାମରେ ପରିଚିତ ହୋଇଥିଲେ । ବ୍ରହ୍ମାଙ୍କ ବରକୁ ସତ୍ୟରେ ପରିଣତ କରିବା ନିମନ୍ତେ ଭଗବାନ ଜନାର୍ଦ୍ଦନ କୃଷ୍ଣ ରୂପରେ ବଳରାମଙ୍କ ସହିତ ଜନ୍ମ ହୋଇ ନନ୍ଦ ଓ ଯଶୋଦାଙ୍କ ପୁତ୍ରତ୍ୱ ସ୍ୱୀକାର କରି ସେମାନଙ୍କ ସ୍ନେହରେ ଲାଳିତପାଳିତ ହେଲେ ଏବଂ ସମଗ୍ର ବ୍ରଜବାସୀଙ୍କୁ ନିଜର ଅମୃତମୟୀ ଲୀଳାରେ ବିମୋହିତ କରିଥିଲେ ।



# ଅଲୌକିକ ବାଲ୍ୟ-ଲୀଳା

କୃଷ୍ଣଙ୍କୁ ସଂହାର କରିବା ନିମନ୍ତେ କଂସର ଷଡ଼ଯନ୍ତ୍ରର ଯେପରି ଶେଷ ନ ଥିଲା ସେହିପରି କୃଷ୍ଣ ମଧ୍ୟ କଂସର ସମସ୍ତ ଉଦ୍ୟମକୁ ପଣ୍ଡ କରିବା ସଙ୍ଗେ ସଙ୍ଗେ ନିଜର ଅଲୌକିକ ବାଲ୍ୟଲୀଳାରେ ସମଗ୍ର ବ୍ରଜବାସୀଙ୍କୁ ମୁଗ୍ଧଚକିତ କରି ରଖୁଥିଲେ । ଏହି ପ୍ରସଙ୍ଗରେ କୃଷ୍ଣଙ୍କର ବାଲ୍ୟଲୀଳାରୁ କେତେଗୋଟି ଉଲ୍ଲେଖଯୋଗ୍ୟ ଘଟଣା ଏଠାରେ ଉଦ୍ଧାର କରିବା ପ୍ରାସଙ୍ଗିକ ହେବ ।

କୃଷ୍ଣ ଯେତେବେଳେ ଅତ୍ୟନ୍ତ ଶିଶୁ ଥିଲେ ସେତେବେଳେ ଘଟିଥିବା ଶକଟଭଞ୍ଜନ ଓ ତୃଣାବର୍ତ୍ତ ରାକ୍ଷସର ମୃତ୍ୟୁ ଆଦି କଥା ପୂର୍ବରେ ବର୍ଣ୍ଣିତ ହୋଇଅଛି । ପରେ ଦିନେ ଦାସ-ଦାସୀମାନେ ଵିଭିନ୍ନ କାର୍ଯ୍ୟରେ ବ୍ୟସ୍ତଥିବାବେଳେ ଯଶୋଦା ଦଧିମନ୍ଥନ କରୁଛନ୍ତି, ଏହି ସମୟରେ କୃଷ୍ଣ ମାତୃସ୍ତନ ପାନ କରିବା ଇଚ୍ଛାରେ ଯଶୋଦାଙ୍କ ପାଖକୁ ଯାଇ ତାଙ୍କୁ ମନ୍ଥନକାର୍ଯ୍ୟରୁ ବିରତ କରିବାକୁ ଚେଷ୍ଟାକଲେ । ଯଶୋଦା ପୁତ୍ରର ହାସ୍ୟଯୁକ୍ତ ମୁଖକୁ ଚୁମ୍ବି ପ୍ରସନ୍ନଚିତ୍ତରେ ମନ୍ଥନ କାର୍ଯ୍ୟ ସ୍ଥଗିତ ରଖି କୃଷ୍ଣଙ୍କୁ ସ୍ତନ୍ୟପାନ କରାଇଲେ । ଏହି ସମୟରେ ଚୁଲିରେ ବସିଥିବା ଦୁଗ୍ଧହଣ୍ଡିରୁ ଦୁଗ୍ଧ ଉତୁରି ପଡ଼ୁଥିବା ଦେଖି ଯଶୋଦା ପୁତ୍ରଙ୍କୁ ସଙ୍ଗେ ସଙ୍ଗେ କୋଳରୁ ଓହ୍ଲାଇ ନେଇ ଚୁଲି ପାଖକୁ ଉଠିଗଲେ । ପୁତ୍ର ପ୍ରତି ମାତାର ଏହି ସାମାନ୍ୟ ଅବହେଳା କୃଷ୍ଣଙ୍କ ପକ୍ଷରେ ଅସହ୍ୟ ହେଲା । ସେ ବିରକ୍ତ ହୋଇ କ୍ଷୁଦ୍ର କ୍ଷୁଦ୍ର ପ୍ରସ୍ତରମାନ ନିକ୍ଷେପ କରି ଦଧିମନ୍ଥନ ପାତ୍ରକୁ ଭାଙ୍ଗି ପକାଇଲେ ଓ ଯେଉଁ ଲହୁଣି ଯଶୋଦା ସଂଗ୍ରହ କରି ରଖିଥିଲେ ତାକୁ ନିଜେ କିଛି ଖାଇ ଅନତିଦୂରରେ ବସିଥିବା ବାନରମାନଙ୍କୁ ତାହା ପ୍ରଦାନ କଲେ । ଯଶୋଦା ଫେରିଆସି ଦଧିଭାଣ୍ଡ ଭାଙ୍ଗି ଯାଇଥିବା ଓ କୃଷ୍ଣ ଋଖା ଉପରେ ଚଢ଼ି ଶିକାରେ ଥିବା ଭାଣ୍ଡରୁ ଲହୁଣି ଆଣି ବାନରମାନଙ୍କୁ

ପ୍ରଦାନ କରୁଥିବା ଦୂରରୁ ଦେଖି, ଅତ୍ୟନ୍ତ ସନ୍ତର୍ପଣରେ ଗୋଡ଼ ଚପି ଚପି ଆସି କୃଷ୍ଣଙ୍କ ପଛରେ ବାଡ଼ିଧରି ଛିଡ଼ାହେଲେ । ମା'ଙ୍କୁ ଦେଖି କୃଷ୍ଣ ତରବରରେ ରୁଖାରୁ ଓହ୍ଲାଇ ପଳାୟନ କରିବାକୁ ଚେଷ୍ଟା କରିବାରୁ ଯଶୋଦା ପୁତ୍ରକୁ ଧରି ପକାଇଲେ । କୃଷ୍ଣ ଧରା ପଡ଼ିଯିବାରୁ ଆଖି ମଳି ମଳି କାନ୍ଦିଲେ । ଯଶୋଦା ତଥାପି କୃଷ୍ଣଙ୍କୁ ଛାଡ଼ିଲେ ନାହିଁ, କୃଷ୍ଣଙ୍କୁ ଆଖି ଦେଖାଇ ଭୟ ପ୍ରଦର୍ଶନ କଲେ, ବାଡ଼ିରେ ପ୍ରହାର କଲେ ଏବଂ ରୁଖା ସହ କୃଷ୍ଣଙ୍କୁ ବାନ୍ଧି ପକାଇବାକୁ ଚେଷ୍ଟାକଲେ । କିନ୍ତୁ ବାନ୍ଧିବା ନିମନ୍ତେ ଯେଉଁ ଦଉଡ଼ିଖଣ୍ଡିକ ଯଶୋଦା ଆଣିଥିଲେ ତାହା କୃଷ୍ଣଙ୍କ ଶରୀର ତୁଳନାରେ ସାମାନ୍ୟ ଛୋଟ ପଡ଼ିବାରୁ ସେ ଆଉଖଣ୍ଡେ ଦଉଡ଼ି ତହିଁରେ ଯୋଡ଼ିଦେଲେ ଏବଂ କୃଷ୍ଣଙ୍କୁ ସେହି ଦଉଡ଼ିରେ ବାନ୍ଧିବାକୁ ଯାଇ ଯଶୋଦା ଦେଖିଲେ ଯେ ତଥାପି ଦଉଡ଼ି ପାଉନାହିଁ; ତେଣୁ ଯଶୋଦା ପୁନର୍ବାର ଆଉ ଖଣ୍ଡେ ବଡ଼ ଦଉଡ଼ି ତହିଁରେ ଯୋଡ଼ିଲେ; କିନ୍ତୁ ତଥାପି ପାଇଲା ନାହିଁ । ଏହିପରି ଯେତେ ଦଉଡ଼ି ଯଶୋଦା ଯୋଡ଼ିଲେ, କୃଷ୍ଣଙ୍କ ଶରୀର ତଥାପି ବୃଦ୍ଧିପ୍ରାପ୍ତ ହେଉଥିବାରୁ ଯଶୋଦାଙ୍କର ଉଦ୍ୟମର ସୀମା ରହିଲା ନାହିଁ । ସେ ବିରକ୍ତ ହୋଇ-ପଡ଼ିଲେ । ମା'ଙ୍କର ମାନସିକ ଅବସ୍ଥା ଲକ୍ଷ୍ୟକରି କୃଷ୍ଣ ନିଜକୁ ସଙ୍କୁଚିତ କରି ପୂର୍ବର ସ୍ୱାଭାବିକ ଅବସ୍ଥାକୁ ଫେରିଗଲେ ଏବଂ ରଜ୍ଜୁ ବନ୍ଧନକୁ ସ୍ୱୀକାର କରିନେଲେ । ତଦ୍ୱାରା ଅଖିଳ ଜଗତର ଅଧୀଶ୍ୱର ଭଗବାନ କୃଷ୍ଣ ନିଜର ଭକ୍ତ ପରାଧୀନତା ପ୍ରକଟିତ କଲେ । ପୁତ୍ର କୃଷ୍ଣଙ୍କଠାରୁ ଯଶୋଦା ସେ ଦିନ ଯେଉଁ ପ୍ରସାଦ ଲାଭ କରିଥିଲେ, ତାହା ଭଗବାନ ବ୍ରହ୍ମା, ଶିବ, ଏପରିକି ଅର୍ଦ୍ଧାଙ୍ଗିନୀ ଲକ୍ଷ୍ମୀ ମଧ୍ୟ ଲାଭ କରିପାରି ନାହାନ୍ତି । ଭଗବାନ କୃଷ୍ଣ ଭକ୍ତମାନଙ୍କ ନିକଟରେ ଯେପରି ସହଜଲଭ୍ୟ, ଦେହାଭିମାନୀ ତପସ୍ୱୀ କିମ୍ବା ମୁକ୍ତ ଅଭିମାନୀ ଆତ୍ମଜ୍ଞାନୀ-ମାନଙ୍କ ପାଇଁ ସେପରି ସହଜଲଭ୍ୟ ନୁହଁନ୍ତି ।

ଧନାଧିପତି କୁବେରଙ୍କର, ନଳକୁବେର ଓ ମଣିଗ୍ରୀବ ନାମରେ ଦୁଇ ପୁତ୍ର ଥିଲେ । ସେମାନେ ମହାଦେବଙ୍କ ଅନୁଚର ହେବାର ସୌଭାଗ୍ୟ ଲାଭ କରିଥିଲେ ଏବଂ ତେଣୁପାଇଁ ସେମାନେ ନିଜକୁ ମଧ୍ୟ କମ୍ ଗୌରବାନ୍ୱିତ ମନେ କରୁ ନ ଥିଲେ । ଥରେ ସେ ଦୁହେଁ ବାରୁଣୀ ନାମକ ମଦିରା ଅତ୍ୟଧିକ ପାନକରି ନୃତ୍ୟଗୀତକାରିଣୀ ସୁନ୍ଦରୀ

ନାରୀମାନଙ୍କ ସହିତ ମନ୍ଦାକିନୀ ନଦୀ ତଟସ୍ଥ ପୁଷ୍ପସମୃଦ୍ଧ ରମଣୀୟ ଉଦ୍ୟାନରେ ବିହାର କରି ପରେ ସେହି ରମଣୀମାନଙ୍କ ସହିତ ନଦୀରେ ଜଳକ୍ରୀଡ଼ା କରୁଛନ୍ତି, ଏହି ସମୟରେ ପରମ ଭାଗବତ ଦେବର୍ଷି ନାରଦ ଯଦୃଚ୍ଛାକ୍ରମେ ଭ୍ରମଣ କରୁ କରୁ ସେଠାରେ ଆସି ପହଞ୍ଚିଲେ । ନାରଦଙ୍କୁ ସେଠାରେ ଦେଖି ଜଳକ୍ରୀଡ଼ାରତା ବିବସ୍ତ୍ରା ଅପ୍ସରା ଯୁବତୀମାନଙ୍କର ଲଜ୍ଜାର ସୀମା ରହିଲା ନାହିଁ । କାଳେ ଦେବର୍ଷି ଅଭିଶାପ ଦେବେ, ସେହି ଭୟରେ ସେମାନେ ମନେ ମନେ ଭୀତ ହୋଇ ସଙ୍ଗେ ସଙ୍ଗେ ଜଳ ମଧ୍ୟରୁ ଉଠିଆସି ବସ୍ତ୍ର ପରିଧାନ କଲେ ; କିନ୍ତୁ ମଦ୍ୟପାନମତ୍ତ ଧନଗର୍ବୀ କୁବେରପୁତ୍ର ଦ୍ୱୟଙ୍କ ମନରେ ସଦ୍‌ଜ୍ଞାନ ଉଦୟ ହେଲା ନାହିଁ । ସେମାନେ ପୂର୍ବପରି ଉଲଗ୍ନ ଅବସ୍ଥାରେ ଜଳରେ କ୍ରୀଡ଼ା କରୁଥାନ୍ତି । ଦେବର୍ଷି ନାରଦ ତାହା ଲକ୍ଷ୍ୟକରି କରୁଣାପରବଶ ହୋଇ କହିଲେ, 'ମନୁଷ୍ୟର ଯେଉଁ ଶରୀର ଦେବ, ଭୂଦେବ, ନରଦେବ ନାମରେ ପରିଚିତ, ଧନଗର୍ବୀ, ଐଶ୍ୱର୍ଯ୍ୟମଦମତ୍ତ ଓ ଆତ୍ମତତ୍ତ୍ୱ ଅଜ୍ଞ ଲୋକମାନେ ସେହି ଶରୀରକୁ ଅଜର ଅମର ବୋଲି ମନେକରି ବିଭିନ୍ନ ବ୍ୟକ୍ତିଙ୍କ ସହିତ ଶତ୍ରୁତା କରିବା ସଙ୍ଗେ ସଙ୍ଗେ ଧର୍ମକୁ ସବୁ ଜ୍ଞାନ କରନ୍ତି ନାହିଁ । ସେମାନେ ବୁଝିପାରନ୍ତି ନାହିଁ ଯେ, ମୃତ୍ୟୁ ପରେ ସେହି ଶରୀରକୁ କୁକୁର ଶାଗୁଣା ଭକ୍ଷଣ କରି ପୂତିଗନ୍ଧମୟ ବିଷ୍ଠାରେ ପରିଣତ କରିବେ କିମ୍ବା ତାହା ଅଗ୍ନିରେ ଦଗ୍‌ଧ ହୋଇ ଭସ୍ମରେ ପରିଣତ ହେବ । ଏହି କୁବେର ପୁତ୍ରଦ୍ୱୟ ଐଶ୍ୱର୍ଯ୍ୟଗର୍ବୀ, ମଦମତ୍ତ, ସ୍ତୈଣ, ଅଜିତେନ୍ଦ୍ରିୟ ହୋଇ ସେହି ଅଜ୍ଞାନତାର ବଶବର୍ତ୍ତୀ ହୋଇଅଛନ୍ତି ଏବଂ ସେଥିପାଇଁ ବିବସ୍ତ୍ର ଅବସ୍ଥାରେ ଥାଇ ମଧ୍ୟ ଲଜ୍ଜା ଅନୁଭବ କରିପାରୁ ନାହାନ୍ତି । ଏହି ହତଭାଗା କୁବେର-ପୁତ୍ରଦ୍ୱୟ ବୃକ୍ଷଜନ୍ମ ପ୍ରାପ୍ତ ହୁଅନ୍ତୁ । ବୃକ୍ଷ ଭାବରେ ସେମାନଙ୍କର ଶତ ବର୍ଷ ଅତୀତ ହେଲେ ଭଗବାନ ବାସୁଦେବଙ୍କର ସାନ୍ନିଧ୍ୟ ଲାଭକରି ମୁକ୍ତିଲାଭ କରିବେ ଏବଂ ପୂର୍ବର ସ୍ୱରୂପ ଓ ଦେବତ୍ୱ ଲାଭକରି ସ୍ୱର୍ଗଲୋକକୁ ପ୍ରତ୍ୟାବର୍ତ୍ତନ କରିବେ ।'

ଦେବର୍ଷି ନାରଦଙ୍କ ଅଭିଶାପ ଅନୁସାରେ ନଳ କୁବେର ଓ ମଣିଗ୍ରୀବ ସଙ୍ଗେ ସଙ୍ଗେ ବ୍ରଜମଣ୍ଡଳରେ ଯାମଳାର୍ଜୁନ ବୃକ୍ଷ ରୂପରେ ଜନ୍ମଗ୍ରହଣ କଲେ ।

ରୁଖା ସହିତ କୃଷ୍ଣଙ୍କୁ ବାନ୍ଧିପକାଇ ଯଶୋଦା ଅନ୍ୟତ୍ର ଚାଲିଯିବା ପରେ ଭଗବାନ କୃଷ୍ଣ ନିକଟରେ ଥିବା ସେହି ଯାମଳାର୍ଜ୍ଜୁନ ବୃକ୍ଷକୁ ଚାହିଁ ଦେବର୍ଷି ନାରଦଙ୍କ କଥା ସ୍ମରଣ କଲେ ଏବଂ କୁବେର-ପୁତ୍ରଦ୍ୱୟଙ୍କୁ ବୃକ୍ଷଜନ୍ମରୁ ମୁକ୍ତ କରିବା ଉଦ୍ଦେଶ୍ୟରେ ରୁଖାରେ ଆବଦ୍ଧ ହୋଇଥିଲେ ମଧ୍ୟ ଧୀରେ ଧୀରେ ସେହି ବୃକ୍ଷ ନିକଟକୁ ଯିବାକୁ ଲାଗିଲେ । ଚାଲିବା ଫଳରେ ଅଣ୍ଟାରେ ବନ୍ଧା ହୋଇଥିବା ରୁଖାଟି ଭୂଗ୍ଭୂଇଁ ତଳେ ଲେଟିପଡ଼ିଲା । କୃଷ୍ଣ ଆଗକୁ ଆଗକୁ ଚାଲିବାରୁ ଦଉଡ଼ି ସହ ରୁଖାଟି ଯାମଳାର୍ଜ୍ଜୁନ ବୃକ୍ଷରେ ଲାଗିଲା ଏବଂ କୃଷ୍ଣ ଟାଣିହୋଇ ଯିବାରୁ ରସି ସହ ରୁଖାର ସ୍ପର୍ଶରେ ଆସି ଯାମଳାର୍ଜ୍ଜୁନ ବୃକ୍ଷ ଦୁଇଟି ସମୂଳେ ଉତ୍ପାଟିତ ହୋଇ ତଳେ ପଡ଼ିଗଲା । ଉତ୍ପାଟିତ ବୃକ୍ଷ ମଧ୍ୟରୁ ଉଜ୍ଜ୍ୱଳ କାନ୍ତିଧାରୀ କୁବେରପୁତ୍ରଦ୍ୱୟ ବହିର୍ଗତ ହୋଇ କୃଷ୍ଣଙ୍କୁ ସଭକ୍ତି ପ୍ରଣାମ କଲେ ।

କୁବେର ପୁତ୍ରଦ୍ୱୟ ସ୍ତୁତି କରି କହିଲେ, 'କୃଷ୍ଣ, ଆପଣ ମହା-ଯୋଗୀ । ଆପଣ ପ୍ରକୃତିର ଅତୀତ ପୁରୁଷୋତ୍ତମ ଓ ଆଦିପୁରୁଷ । ବେଦଜ୍ଞ-ମାନେ ଏ ସ୍ଥୂଳ ଏ ସୂକ୍ଷ୍ମ, ଏ ବ୍ୟକ୍ତ ଏ ଅବ୍ୟକ୍ତ, ସମ୍ପୂର୍ଣ୍ଣ ଜଗତକୁ ଆପଣଙ୍କ ରୂପ ବୋଲି କଳ୍ପନା କରିଥାନ୍ତି । ଆପଣ ସମସ୍ତ ପ୍ରାଣୀଙ୍କର ଶରୀର, ମନ, ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କର ଈଶ୍ୱର । ଆପଣ ହିଁ ସର୍ବଶକ୍ତି-କାଳ, ସର୍ବବ୍ୟାପକ ଓ ଅବିନାଶୀ । ଅଖିଳ ଜଗତର ତଥା ଜୀବଜଗତର ଅଶେଷ କଲ୍ୟାଣ ସାଧନ କରିବା ନିମନ୍ତେ ଆପଣ ପରିପୂର୍ଣ୍ଣ ରୂପରେ ଏହି ନରରୂପ ଧାରଣ କରି ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଅଛନ୍ତି । ଆପଣ ପରମ ବ୍ରହ୍ମ । ଆପଣ ବାଞ୍ଛାକଳ୍ପତରୁ । ଆପଣଙ୍କୁ ନମସ୍କାର । ଆମେ ଦୁହେଁ ଆପଣଙ୍କର ଭକ୍ତ ଭଗବାନ ଶଙ୍କର, ଦେବର୍ଷି ନାରଦ ଓ କୁବେରଙ୍କର ଆଜ୍ଞାପାଳନକାରୀ । ଦେବର୍ଷି ନାରଦଙ୍କର କରୁଣାପୂର୍ଣ୍ଣ ଅଭିଶାପ ଫଳରେ ଆଜି ଆମେ ଆପଣଙ୍କୁ ପ୍ରତ୍ୟକ୍ଷରେ ଦର୍ଶନ କରିବାର ପରମବିରଳ ସୌଭାଗ୍ୟ ଲାଭ କରିଅଛୁ । ଆପଣଙ୍କର ଲୀଳା କୀର୍ତ୍ତନରେ ଆମର ବାଣୀ, ଆପଣଙ୍କ ଲୀଳା ଶ୍ରବଣରେ ଆମର କର୍ଣ୍ଣ, ଆପଣଙ୍କ ମନ୍ଦିର ମାର୍ଜନାରେ ଆମର ସକଳ କର୍ମ, ଆପଣଙ୍କର ଶ୍ରୀଚରଣରେ ଆମର ମନ, ଆପଣଙ୍କର ଭକ୍ତ ବୈଷ୍ଣବମାନଙ୍କୁ ପ୍ରଣାମ କରିବାରେ

ଆମର ମସ୍ତକ, ଆପଣଙ୍କର ଭକ୍ତମାନଙ୍କୁ ଦର୍ଶନ କରିବାରେ ଆମର ନୟନ, ସଦା ନିୟୋଜିତ ରହୁ—ଏହା ହିଁ ଆପଣଙ୍କ ଚରଣାରବିନ୍ଦରେ ଆମର ବିନୀତ ପ୍ରାର୍ଥନା ।'

କୁବେରପୁତ୍ରଙ୍କ ପ୍ରାର୍ଥନାରେ ପ୍ରସନ୍ନ ହୋଇ ହସି ହସି କୃଷ୍ଣ କହିଲେ, 'ତୁମର ଐଶ୍ୱର୍ଯ୍ୟମତ୍ତତା ତଥା ନାରଦଙ୍କର ଅଭିଶାପ ଆଦି ସକଳ ବୃତ୍ତାନ୍ତ ମୁଁ ଅବଗତ ହୋଇଅଛି । ସୂର୍ଯ୍ୟଙ୍କର ଉଦୟନ ଯେପରି ଦୃଷ୍ଟି ସମ୍ମୁଖରେ ସମସ୍ତ ବିଷୟକୁ ଦୃଶ୍ୟମାନ ଓ ସୁସ୍ପଷ୍ଟ କରାଇଥାଏ, ସେହିପରି ମୋଠାରେ ଚିତ୍ତ ସମର୍ପଣକାରୀ, ସମଭାବ ପୋଷଣକାରୀ, ସ୍ୱଧର୍ମନିରତ ସାଧୁପ୍ରକୃତିର ଲୋକମାନଙ୍କୁ ଦର୍ଶନ କଲେ ଦୁସ୍ତର ଭବବନ୍ଧନରୁ ଜୀବ ମୁକ୍ତିଲାଭ କରିଥାଏ । ହେ କୁବେରପୁତ୍ରଦ୍ୱୟ, ନାରଦ ତୁମକୁ ଅଭିଶାପଗ୍ରସ୍ତ କରି ତୁମପ୍ରତି ଅନୁଗ୍ରହ ପ୍ରକାଶ କରିଅଛନ୍ତି ସଂସାର ଚକ୍ରରୁ ମୁକ୍ତିଲାଭ କରିବା ନିମନ୍ତେ ତୁମ୍ଭେମାନେ ଯେଉଁ ଅଭିଳାଷ ପୋଷଣ କରି ବହୁଦିନ ଧରି ମୋ ଦର୍ଶନ ନିମନ୍ତେ ପ୍ରାର୍ଥନା କରିଆସୁଥିଲ, ତା' ଫଳରେ ତୁମେ ଦୁହେଁ ଭକ୍ତିଭାବ ପ୍ରାପ୍ତ ହୋଇଅଛ । ବର୍ତ୍ତମାନ ସ୍ୱସ୍ଥାନକୁ ଗମନ କର ଏବଂ ସନ୍ତାପରହିତ ସନ୍ତୁଷ୍ଟପୂର୍ଣ ହୁଅ ।

କୃଷ୍ଣ ଏହା କହି କୁବେରପୁତ୍ରଦ୍ୱୟଙ୍କୁ ସ୍ୱସ୍ଥାନ ପ୍ରତ୍ୟାଗମନ କରିବାକୁ ଆଜ୍ଞା ପ୍ରଦାନ କରିବାରୁ ସେ ଦୁହେଁ କୃଷ୍ଣଙ୍କୁ ପରିକ୍ରମା କରି ବାରମ୍ବାର ପ୍ରଣାମ କଲେ ଏବଂ କୃଷ୍ଣଙ୍କଠାରୁ ବିଦାୟ ନେଇ ଉତ୍ତର-ଦିଗକୁ ଯାତ୍ରାକରି ସ୍ୱଧାମକୁ ଫେରିଗଲେ ।

ଏଣେ ଅର୍ଜୁନ ବୃକ୍ଷ ଦୁଇଟିର ପତନ ଶବ୍ଦରେ ଚମକିପଡ଼ି 'କ'ଣ ହେଲା' ବୋଲି ଜାଣିବାକୁ ନନ୍ଦ, ଯଶୋଦା ପ୍ରମୁଖ ଅନ୍ତେବାସୀମାନେ ଦୌଡ଼ିଆସି ବୃକ୍ଷ ଦୁଇଟିକୁ ତଳେ ଲୋଟିଥିବାର ଦେଖିଲେ; କିନ୍ତୁ କୃଷ୍ଣଙ୍କୁ ତାଙ୍କ ବନ୍ଧନ ସ୍ଥାନରେ ଦେଖିବାକୁ ପାଇଲେ ନାହିଁ । ସେମାନେ ଅତ୍ୟନ୍ତ ବ୍ୟାକୁଳ ହୋଇପଡ଼ିଲେ ଏବଂ ଖୋଜି ଖୋଜି ଉତ୍ପାଟିତ ବୃକ୍ଷ ଦୁଇଟିର ଶାଖାପତ୍ର ମଧ୍ୟରେ କୃଷ୍ଣଙ୍କୁ ତଥାପି ବନ୍ଧନ ଅବସ୍ଥାରେ ରହିଥିବାର ଦେଖି ସଙ୍ଗେ ସଙ୍ଗେ ତାଙ୍କୁ ବନ୍ଧନମୁକ୍ତ କଲେ । ଏତେ ବଡ଼ ବୃକ୍ଷ ଯେ କିପରି ଭାଙ୍ଗିପଡ଼ିଲା, ସେମାନେ ତା'ର କାରଣ କିଛି କଳନା କରିପାରିଲେ ନାହିଁ । ସେଠାରେ ଖେଳୁଥିବା

କେତେଜଣ ଗୋପବାଳକ କହିଲେ, 'କୃଷ୍ଣ ଚନ୍ଦନ ଅବସ୍ଥାରେ ଉଖୁଳି ସହିତ ବନ୍ଧନରଜ୍ଜୁକୁ ଆକର୍ଷଣ କରି ବୃକ୍ଷ ଦୁଇଟିକୁ ଉତ୍ପାଟିତ କରିଅଛି । କୃଷ୍ଣ ସାମାନ୍ୟ ଶିଶୁ ହୋଇ ଏତେ ବଡ଼ ଗଛ ଦୁଇଟାକୁ ଓପାଡ଼ିଦେବା ତା' ପକ୍ଷରେ କ'ଣ ସମ୍ଭବ ବୋଲି ଗୋପବାସୀମାନେ ତର୍କବିତର୍କ କଲେ । ନନ୍ଦ କିନ୍ତୁ ସେପରି ଭାବିଲେ ନାହିଁ । ଗର୍ଗାଚାର୍ଯ୍ୟଙ୍କ କଥା ତାଙ୍କର ବାରମ୍ବାର ମନେ ପଡ଼ିଲା । ଭଗବାନ ନାରାୟଣଙ୍କ ପରି କୃଷ୍ଣ ପରାକ୍ରମଶାଳୀ ହେବ ବୋଲି ଗର୍ଗାଚାର୍ଯ୍ୟ କହିଥିଲେ । ସେହି କଥା ମନେ ମନେ ସ୍ମରଣ କରି ପରମ ବିସ୍ମୟତାର ସହିତ ନନ୍ଦ ନୀରବ ରହିଲେ ।

ଶିଶୁମାନଙ୍କ ପ୍ରତି ପୂତନା ରାକ୍ଷସୀଠାରୁ ଆରମ୍ଭ କରି ତୃଣାବର୍ତ୍ତ, ଶକଟ ବିପ୍ଳାଡ଼, ଯାମଳାର୍ଜ୍ଜୁନ ଉତ୍ପାଟନ ଆଦି ଅଘଟଣମାନ ବାରମ୍ବାର ଘଟୁଥିବାର ଲକ୍ଷ୍ୟକରି ନନ୍ଦପ୍ରମୁଖ ବ୍ରଜବାସୀ ଗୋପମାନେ ବ୍ରଜ-ମଣ୍ଡଳକୁ ରାକ୍ଷସଅଧ୍ୟୁଷିତ ବୋଲି ମନେକରି ବ୍ରଜମଣ୍ଡଳର ନିକଟବର୍ତ୍ତୀ ଯମୁନାନଦୀ ତଟସ୍ଥ 'ବୃନ୍ଦାବନ' ନାମକ ଏକ ରମଣୀୟ ବନକୁ ସମଗ୍ର ବ୍ରଜବାସୀଙ୍କ ସହ ଯାତ୍ରାକଲେ । ବ୍ରଜମଣ୍ଡଳରେ ଘରଦ୍ୱାର ତ୍ୟାଗକରି ଆସିଥିଲେ ମଧ୍ୟ ବୃନ୍ଦାବନର ରମଣୀୟ ପରିବେଶ ଗୋପଗୋପୀମାନଙ୍କର ମନକୁ ମୁଗ୍ଧ କରିରଖିଲା । ସେମାନେ ପରମ ସୁଖରେ ସେଠାରେ ବାସ କରିବାକୁ ଲାଗିଲେ ।

ଦିନେ ବୃନ୍ଦାବନର ଯମୁନାକୂଳରେ ବଳରାମଙ୍କ ସହିତ କୃଷ୍ଣ ଗୋଚାରଣ କରୁଥାନ୍ତି । କୃଷ୍ଣଙ୍କର ସେତେବେଳେ କୌମାରାବସ୍ଥା । କୃଷ୍ଣ ଓ ବଳରାମଙ୍କୁ ସଂହାର କରିବା ନିମନ୍ତେ ବତ୍ସାସୁର ନାମକ ଏକ ଅସୁର ମାୟାରୂପ ଧାରଣ କରି ଗାଈପଲଙ୍କ ମଧ୍ୟରେ ଗୋଟିଏ ବାଛୁରି ରୂପରେ ପଶିଯାଇ ସୁଯୋଗ ଉଣ୍ଡି ଉଣ୍ଡି ବୁଲୁଥାଏ । କୃଷ୍ଣଙ୍କୁ ବତ୍ସାସୁରର କଥା ଅଛପା ରହିଲା ନାହିଁ । କାଳବିଳମ୍ବ ନ କରି ବତ୍ସାସୁରର ସମ୍ପର୍କରେ ବଳରାମଙ୍କୁ ଇଙ୍ଗିତରେ ସୂଚନା ଦେଇ ଧୀରେ ଧୀରେ କୃଷ୍ଣ ବାଛୁରି-ରୂପୀ ବତ୍ସାସୁର ନିକଟକୁ ଗଲେ ଏବଂ କୌଶଳକ୍ରମେ ବତ୍ସାସୁରର ଲାଙ୍ଗୁଳ ସହିତ ପଛଗୋଡ଼ ଦୁଇଟିକୁ ଧରି ତାକୁ ଟେକି ଘୂରାଇବାକୁ ଲାଗିଲେ । ଏହିପରି କିଛି ସମୟ ଘୂରାଇବା ଫଳରେ ବତ୍ସାସୁରର ପ୍ରାଣ-

ବାୟୁ ବହିର୍ଗତ ହେଲା । କୃଷ୍ଣ ବତ୍ସାସୁରର ମୃତଦେହକୁ ନିକଟସ୍ଥ ଏକ କଇଁଥ ଗଛ ଉପରକୁ ଫିଙ୍ଗିଦେଲେ । ବତ୍ସାସୁରର ବିରାଟ ଶରୀରକୁ ଧରି ରଖିବାର ଶକ୍ତି ବୃକ୍ଷର ନ ଥିଲା । ବୃକ୍ଷଟି ଅସୁରର ମୃତଶରୀର ଭାରରେ ରଡ଼ ରଡ଼ ଶବ୍ଦ କରି ଭାଙ୍ଗି ତଳେ ପଡ଼ିଗଲା ଏବଂ ସେହି ଶବ୍ଦରେ ଆକୃଷ୍ଟ ହୋଇ ଅନ୍ୟ ଗୋପବାଳକମାନେ ଆସି ସେହି ଅଦ୍ଭୁତ ଦୃଶ୍ୟକୁ ଦେଖି କୃଷ୍ଣଙ୍କୁ ପ୍ରଶଂସା କରିବାକୁ ଲାଗିଲେ । କୃଷ୍ଣଙ୍କର ସେହି କାର୍ଯ୍ୟ ଦର୍ଶନ କରି ଦେବତାମାନେ ଆନନ୍ଦରେ ଆକାଶମଣ୍ଡଳରୁ ପୁଷ୍ପ ବୃଷ୍ଟି କରିଥିଲେ ।

ଏକଦା ଗୋପବାଳକଙ୍କ ସହିତ କୃଷ୍ଣ ନିଜ ନିଜର ତୃଷାର୍ତ୍ତ ଗାଈ ବାଛୁରିଙ୍କୁ ନେଇ ନିକଟବର୍ତ୍ତୀ ଏକ ପୁଷ୍କରିଣୀକୁ ଜଳପାନ କରାଇବା ନିମନ୍ତେ ଯାଇ ଜଳାଶୟ ନିକଟରେ ଏକ ବିରାଟମୟ ବକ-ରୂପଧାରୀ ଅଦ୍ଭୁତ ପ୍ରାଣୀଟିଏ ଦେଖିବାକୁ ପାଇଲେ । ଗୋପବାଳକମାନେ ସେହି ବିରାଟକାୟ ପକ୍ଷୀଟିକୁ ଦେଖି ଭୟଭୀତ ହୋଇପଡ଼ିଲେ । ସେହି ବିଶାଳ ଶରୀରଧାରୀ ବକଟି ଗୋଟିଏ ରାକ୍ଷସ ଥିଲା । ହଠାତ୍ ହଠାତ୍ ବକରୂପୀ ରାକ୍ଷସ ବିଦ୍ୟୁତ୍‌ବେଗରେ ଆସି କୃଷ୍ଣଙ୍କୁ ଗ୍ରାସକଲା । ବଳରାମ ପ୍ରମୁଖ ଗୋପବାଳକମାନେ କୃଷ୍ଣଙ୍କୁ କିପରି ଅକ୍ଷତ ଶରୀରରେ ଉଦ୍ଧାର କରିବେ କିଛି ଉପାୟ ଭାବ ସ୍ଥିର କରିପାରିଲେ ନାହିଁ । କୌତୂହଳବଶତ କୃଷ୍ଣ ବକ-ରାକ୍ଷସର ଚଞ୍ଚୁ ମଧ୍ୟଦେଇ ମୁଖଗହ୍ୱରରେ ପ୍ରବେଶ କରି ତା'ର ତାଳୁମୂଳ ଗଳଦେଶରେ ଅବସ୍ଥାନ କଲେ ଏବଂ ନିଜର ସିଂହାରିକା ଶକ୍ତି ପ୍ରଭାବରେ ତା'ର ତାଳୁକୁ ଦହନ କରିବାକୁ ଲାଗିଲେ । ବକାସୁର ସେହି ଦହନ-ଯନ୍ତ୍ରଣା ସହ୍ୟ କରି ନ ପାରି ନିଜର ଗଳାକୁ ସଫା କରିବା ନିମନ୍ତେ ଓକାଳିଲା; ଫଳରେ କୃଷ୍ଣ ପଦାକୁ ବାହାରି ଆସିଲେ । କୃଷ୍ଣଙ୍କୁ ଅକ୍ଷତ ଶରୀରରେ ତାରି ପାଟିରୁ ବାହାରି ଆସି ଦଣ୍ଡାୟମାନ ହୋଇଥିବାର ଦେଖି ବକାସୁର କ୍ରୋଧରେ ଜଳିଗଲା । ସେ କୃଷ୍ଣଙ୍କୁ ଆକ୍ରମଣ କରିବାକୁ ଆଗେଇ ଆସିଲା । ସାଧୁମାନଙ୍କର କଲ୍ୟାଣକାରୀ ଓ ଦେବତାମାନଙ୍କର ଆନନ୍ଦ ବର୍ଦ୍ଧନକାରୀ ଭଗବାନ କୃଷ୍ଣ ନିଜର ଦୁଇ ହାତରେ ଆକ୍ରମଣୋଦ୍ୟତ ବକାସୁରର ବିସ୍ତାରିତ ଚଞ୍ଚୁକୁ ଧରି ଫାଡ଼ିଦେଲେ । ଫଳରେ ରାକ୍ଷସର ମୃତ୍ୟୁ ହେଲା । ବକାସୁର

ମୃତ୍ୟୁରେ ଦେବତାମାନେ ପରମ ଉଲ୍ଲାସ ପ୍ରକାଶ କରି ସ୍ୱର୍ଗରୁ କୃଷ୍ଣଙ୍କ ଉପରେ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ ।

ଗୋପବାଳକମାନେ ବକାସୁର ଗର୍ଭରୁ କୃଷ୍ଣଙ୍କ ନିରାପଦରେ ବହିର୍ଗତ ଓ ପରେ ବିରାଟକାୟ ଅସୁରକୁ ସଂହାର କରିବାରେ କୃଷ୍ଣଙ୍କର ଅପୂର୍ବ ପରାକ୍ରମ ଦର୍ଶନ କରି ଆନନ୍ଦରେ ସ୍ତମ୍ଭୀଭୂତ ହୋଇଗଲେ ଏବଂ କୃଷ୍ଣଙ୍କୁ ସ୍ନେହରେ ଆଲିଙ୍ଗନ କରି ନୂତନ ଜୀବନ ଲଭିର ଅବ୍ୟକ୍ତ ଆନନ୍ଦ ଅନୁଭବ କଲେ ।

ଗୋପାଳମାନଙ୍କଠାରୁ ପରେ ଏହିସବୁ ବୃତ୍ତାନ୍ତ ଶ୍ରବଣ କରି ନନ୍ଦପ୍ରମୁଖ କୁତୂହଳୀ ହେଲେ, 'ଆହା, କି ଆଶ୍ଚର୍ଯ୍ୟର କଥା, କୃଷ୍ଣଙ୍କୁ ସଂହାର କରିବାକୁ ଅସୁରମାନେ ବହୁ ଚକ୍ରାନ୍ତ କଲେ ମଧ୍ୟ କୃଷ୍ଣଙ୍କ ହସ୍ତରେ ସେମାନେ ଗୋଟିଏ ପରେ ଗୋଟିଏ ଶୋଚମୀୟ ଭାବରେ ମୃତ୍ୟୁ ବରଣ କରିଅଛନ୍ତି । ଅଗ୍ନିରେ ପତଙ୍ଗ ଝାସ ଦେଲାପରି କୃଷ୍ଣଙ୍କ ସମ୍ମୁଖରେ ସେମାନେ ବିନାଶପ୍ରାପ୍ତ ହୋଇଅଛନ୍ତି । ବେଦଜ୍ଞ ଓ ତତ୍ତ୍ୱଦର୍ଶୀମାନଙ୍କ ବାକ୍ୟ କେବେ ମିଥ୍ୟା ହୁଏ ନାହିଁ । ଗର୍ଗାଚାର୍ଯ୍ୟଙ୍କର ସୂଚନା ସତ୍ୟରେ ପରିଣତ ହୋଇଅଛି । ଏହି ପୁତ୍ର କୃଷ୍ଣ ବାସ୍ତବିକ ପ୍ରଭୁ ନାରାୟଣଙ୍କ ସଦୃଶ ଗୁଣଶାଳୀ ।'

ଦିନେ କୃଷ୍ଣ ଓ ବଳରାମ ପ୍ରମୁଖ ଗୋପବାଳକମାନଙ୍କ ସହିତ ବଣରେ ଗୋଚାରଣ କରୁଥିବା ସମୟରେ ସମସ୍ତେ ମିଶି ବଣଭୋଜି କରିବା ନିମନ୍ତେ ସ୍ଥିରକରି, ଅତି ପ୍ରତ୍ୟୁଷରୁ ଉଠି ଭଲ ଲୁଗାପଟା ପିନ୍ଧି ନିଜ ନିଜର ଗାଈପଲଙ୍କୁ ସାଙ୍ଗରେ ନେଇ ଗୋଚାରଣ ପାଇଁ ବଣକୁ ବାହାରି ପଡ଼ିଲେ । ପ୍ରତ୍ୟେକ ଗୋପବାଳକ ନିଜ ନିଜର ଶିକା ବାହୁଙ୍ଗୀରେ ଭୋଜ୍ୟଦ୍ରବ୍ୟମାନ କାନ୍ଧେଇ ଶିଙ୍ଗା ଓ ବଂଶୀ ବାଦନ କରି କରି ଆଗପଛ ହୋଇ ଚାଲୁଥାନ୍ତି ଏବଂ ଗୋଚାରଣ ସଙ୍ଗେ ସଙ୍ଗେ ମନ ଆନନ୍ଦରେ ବିଭିନ୍ନ କ୍ରୀଡ଼ାକୌତୁକ କରୁଥାନ୍ତି । ଯେଉଁ ଅନାଦି ପୁରୁଷଙ୍କର ସାନ୍ନିଧ୍ୟ ଜ୍ଞାନୀମାନଙ୍କ ପାଇଁ ବ୍ରହ୍ମସୁଖର କାରଣ ହୋଇଥାଏ ଓ ଦାସ୍ୟଭାବସମ୍ପନ୍ନ ଭକ୍ତମାନଙ୍କ ନିକଟରେ ଯେ ପରମ ଆରାଧ୍ୟ ସେହି ମନୁଷ୍ୟ ରୂପଧାରୀ ବାଳକ କୃଷ୍ଣଙ୍କ ସହିତ କ୍ରୀଡ଼ାକୌତୁକ କରି କରି ପରମ ସୌଭାଗ୍ୟଶାଳୀ ଗୋପବାଳକମାନେ ଯୋଗୀଜନ-

ଅଲଭ୍ୟ ଭଗବତ୍ ସାନ୍ନିଧ୍ୟ ଓ ତଜ୍ଜନିତ ପରମସୁଖ ଲାଭ କରୁଥିଲେ —ତାହା ବାସ୍ତବିକ ଭାଷାରେ ଅବର୍ଣ୍ଣନୀୟ ।

କୃଷ୍ଣଙ୍କୁ କେନ୍ଦ୍ରକରି ଗୋପବାଳକମାନେ ଏହିପରି କ୍ରୀଡ଼ା-କୌତୁକ କରୁଛନ୍ତି, ସେହି ସ୍ଥାନରେ ହଠାତ୍ ଅଘ ନାମକ ଏକ ଅସୁର ଆସି ଉପସ୍ଥିତ ହେଲା । ଅଘାସୁର ଥିଲା କଂସର ଦୂତ ଏବଂ ପୂତନା ଓ ବକାସୁରଙ୍କର କନିଷ୍ଠ ଭ୍ରାତା । ସେ କୃଷ୍ଣଙ୍କୁ ଦେଖିବା ମାତ୍ରେ 'ଏହି ବାଳକ ମୋର ସହୋଦର ଭ୍ରାତା ଓ ଭଗିନୀଙ୍କୁ ସଂହାର କରିଅଛି' ଭାବି କ୍ରୋଧରେ ରକ୍ତଚକ୍ଷୁ ହୋଇଗଲା । ଗୋପବାଳକଙ୍କ ସହିତ କୃଷ୍ଣଙ୍କୁ ସଂହାର କରି ସେମାନଙ୍କ ମାଂସରେ ତା'ର ମୃତ ଭ୍ରାତାଭଗିନୀଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କରିବାକୁ ସ୍ଥିରକରି ଅଘାସୁର ନିଜର ଆସୁରିମାୟା ବଳରେ ହଠାତ୍ ଏକ ବିରାଟକାୟ ସର୍ପର ରୂପ ଧାରଣ କଲା । ସେହି ସର୍ପର ଶରୀର ଯୋଜନ ପରିମିତ ଦୀର୍ଘ ଥିଲା ଏବଂ ତା'ର ଉନ୍ମୁକ୍ତ ମୁଖ ପର୍ବତର ବିଶାଳ ଗୁହାପରି ଦେଖା ଯାଉଥିଲା । କୃଷ୍ଣଙ୍କୁ ଗ୍ରାସ କରିବା ଉଦ୍ଦେଶ୍ୟରେ ସେ ପୂର୍ବରୁ ମୁହଁ କରି ମୁଖବ୍ୟାଦାନ କରି ଶୋଇ ରହିଲା । ସର୍ପଟି ମୁଖବ୍ୟାଦାନ କରିବା ଫଳରେ ତା'ର ମୁଖ ଏପରି ବିଶାଳ ଥିଲା ଯେ ତା'ର ପାଟିର ନିମ୍ନଓଷ୍ଠ ଧରିତଳେ ଓ ଊର୍ଦ୍ଧ୍ୱାଂଶ ଆକାଶର ଭାସମାନ ମେଘମଣ୍ଡଳକୁ ସ୍ପର୍ଶକରି ରହିଥିଲା । ତା'ର ପାଟିର ଦାନ୍ତଗୁଡ଼ିକ ପର୍ବତଶୃଙ୍ଗ ପରି ଦେଖାଯାଉଥାଏ ଏବଂ ତା'ର ଲମ୍ବମାନ ସୁଦୀର୍ଘ ଜିହ୍ୱା ବିସ୍ତୀର୍ଣ୍ଣ ରାସ୍ତା ସହିତ ମିଶିଯାଇଥାଏ । ସେହି ସାପର ଆଖି ଦୁଇଟି ଦାବାନଳ ପରି ପ୍ରଜ୍ୱଳମାନ ହେଉଥାଏ ଏବଂ ତା'ର ନିଃଶ୍ୱାସପ୍ରଶ୍ୱାସରି ପ୍ରଖରତା ଝଡ଼ର ଭ୍ରମ ସୃଷ୍ଟି କରୁଥାଏ । ସେହି ବିରାଟ-କାୟ ସର୍ପକୁ ଦେଖି ଗୋପବାଳକମାନଙ୍କ ମଧ୍ୟରୁ କେତେକ ଅତ୍ୟନ୍ତ ଭୟଭୀତ ହୋଇପଡ଼ିଲେ ଏବଂ ଅନ୍ୟ କେତେକ ତାହା ପ୍ରକୃତରେ ସର୍ପ କି ନା ଜାଣିବାକୁ କୌତୂହଳପରବଶ ହେଲେ । ସେମାନଙ୍କ ମନରେ ସବୁଠାରୁ ବଡ଼ ସାହସ ଥିଲା ସଙ୍ଗରେ କୃଷ୍ଣଙ୍କର ଉପସ୍ଥିତି । 'କୃଷ୍ଣ ଅଛି, ଭୟ କ'ଣ' ଭାବି ସତ୍ୟାସତ୍ୟ ନିର୍ଣ୍ଣୟ କରିବା ନିମନ୍ତେ ସେମାନେ ଆଗକୁ ଚାଲିଲେ; କିନ୍ତୁ ସେମାନେ ଜାଣିପାରିଲେ ନାହିଁ ଯେ ସଡ଼କପଥ ବୋଲି ମନେକରି ସେମାନେ ସର୍ପର ପ୍ରସାରିତ ଜିହ୍ୱା ଉପରେ ଚାଲି ତା'ର ମୁଖ

ମଧ୍ୟରେ ପ୍ରବେଶ କରିଗଲେଣି । ଗୋପବାଳକମାନଙ୍କୁ ଅନୁସରଣ କରିଥିବା ଧାବି ଗାଈପଲ ମଧ୍ୟ ସେହି ସର୍ପର ଉଦରସ୍ଥ ହେଲେ । ଗୋପବାଳକ ତଥା ଧେନୁବତ୍ସ ସକଳ ତା'ର ମୁଖ ମଧ୍ୟରେ ପ୍ରବେଶ କରିଥିଲେ ମଧ୍ୟ ଅଘାସୁର ପୂର୍ବପରି ମୁଖବ୍ୟାଦାନ କରି କୃଷ୍ଣଙ୍କ ଆଗମନକୁ ଅପେକ୍ଷା କରି ରହିଥାଏ । ଅଖିଳ ଜଗତର ଅଭୟଦାତା ଭଗବାନ କୃଷ୍ଣ ନିଶ୍ଚିତ ମୃତ୍ୟୁ-ମୁଖରେ ଗୋପବାଳକ ଓ ଧେନୁପଲଙ୍କୁ ପତିତ ହୋଇଥିବାର ଦେଖି ସେମାନଙ୍କୁ ସର୍ପରୂପୀ ଅଘାସୁରର ଆକ୍ରମଣରୁ ରକ୍ଷା କରିବା ଉଦ୍ଦେଶ୍ୟରେ ସହସା ଏକ ଉପାୟ ଚିନ୍ତାକଲେ ଏବଂ ତଦନୁସାରେ ସର୍ପର ମୁଖ ମଧ୍ୟରେ କିଛି ନ ଜାଣିଲା ପରି କୃଷ୍ଣ ମଧ୍ୟ ପ୍ରବେଶ କଲେ । ଦେବତାମାନେ ସମସ୍ତଙ୍କ ଅଲକ୍ଷ୍ୟରେ ରହି ଏହି ଘଟଣା ଲକ୍ଷ୍ୟ କରୁଥିଲେ । ସେମାନେ କୃଷ୍ଣଙ୍କୁ ସର୍ପର ମୁଖ ମଧ୍ୟରେ ପ୍ରବେଶ କରିବାର ଦେଖି କୃଷ୍ଣଙ୍କର ନିରାପତ୍ତା ନିମନ୍ତେ ଶଙ୍କିତ ହୋଇ ଭୟ ଓ ଦୁଃଖରେ ହା ହା କାର କରିଉଠିଲେ; କିନ୍ତୁ ଅଘାସୁରର ସାଥୀ ଅସୁରମାନେ ଏହି ଘଟଣାରେ ବିଶେଷ ଆନନ୍ଦ ଅନୁଭବ କରୁଥାନ୍ତି । ଏଣେ କୃଷ୍ଣ ସର୍ପର ମୁଖରେ ପ୍ରବେଶ କରି ତା'ର ତ ଳମୂଳ ଗଳାରେ ଅବସ୍ଥାନ କରି ନିଜର ଶରୀରକୁ ବୃଦ୍ଧିପ୍ରାପ୍ତ କଲେ । ଫଳରେ ସର୍ପର କଣ୍ଠରୋଧ ହେଲା ଏବଂ ସେ ଅସହ୍ୟ ଯନ୍ତ୍ରଣାରେ ଛଟପଟ କରିବାକୁ ଲାଗିଲା ଏବଂ ବହୁ ସମୟ ପରେ ତା'ର ମୃତ୍ୟୁ ଘଟିଲା । ସର୍ପର ଉଦରରେ ସେତେବେଳେ ଗୋପବାଳକ ତଥା ଧେନୁପଲ ମୂର୍ଚ୍ଛିତ ଅବସ୍ଥାରେ ପଡ଼ିରହିଥାନ୍ତି; କୃଷ୍ଣ ସେମାନଙ୍କ ଉପରେ ନିଜର ଅମୃତମୟୀ ଦୃଷ୍ଟି ନିକ୍ଷେପ କରିବା ମାତ୍ରେ ସେମାନେ ଚେତନା ଲାଭକରି ସର୍ପର ଉଦରରୁ ବାହାରକୁ ବାହାରି ଆସିଲେ । ସମସ୍ତ ବାଳକ ଓ ଧେନୁଗୁଡ଼ିକ ପଦାକୁ ବାହାରି ଆସିବା ପରେ କୃଷ୍ଣ ନିଜେ ସର୍ପର ମୁଖରୁ ବାହାରିଲେ । ସର୍ପରୂପୀ ଅଘାସୁର କୃଷ୍ଣଙ୍କ ହସ୍ତରେ ନିହତ ହେବାରୁ ତା'ର ଜୀବାତ୍ମା କୃଷ୍ଣଙ୍କ ବିଗ୍ରହକୁ ସ୍ପର୍ଶ କଲା ଏବଂ ସଙ୍ଗେ ସଙ୍ଗେ ବୈକୁଣ୍ଠକୁ ଯାତ୍ରାକଲା । ଅଘାସୁରର ବିନାଶରେ ଦେବତାମାନେ ଅତ୍ୟନ୍ତ ଆନନ୍ଦିତ ହେଲେ । ଏହି ଘଟଣା ସମୟକୁ କୃଷ୍ଣଙ୍କୁ ମାତ୍ର ପାଞ୍ଚବର୍ଷ ବୟସ । ଏହି ଘଟଣାର ଏକ ବର୍ଷ ପରେ, ଅର୍ଥାତ୍ କୃଷ୍ଣଙ୍କୁ ଯେତେବେଳେ ଛ'ବର୍ଷ ବୟସ ଗୋପବାଳକ-ମାନେ ଗୃହକୁ ଫେରି ନିଜ ନିଜ ଜନନୀଙ୍କ ନିକଟରେ 'ଆଜି କୃଷ୍ଣ

ଅଘାସୁରକୁ ସଂହାର କରି ଆମକୁ ରକ୍ଷା କଲ' ବୋଲି କହି ଘଟଣାଟିକୁ ଆମୂଳଚୂଳ ବର୍ଣ୍ଣନା କଲେ ।'

ମହାରାଜ ପରୀକ୍ଷିତ ଅତ୍ୟନ୍ତ ଉତ୍କଣ୍ଠା ତଥା ଏକାଗ୍ରତାର ସହିତ ଶୁକଦେବଙ୍କଠାରୁ ଏହା ଶ୍ରବଣ କରୁଥିଲେ । ସେ ପ୍ରଶ୍ନକଲେ, 'ହେ ଯୋଗୀଶ୍ରେଷ୍ଠ ! ଭଗବାନଙ୍କର ପବିତ୍ର ଚରିତର ସକଳ ବୃତ୍ତାନ୍ତ ଆପଣଙ୍କର ଜ୍ଞାନର ଅନ୍ତର୍ଗତ । କୃଷ୍ଣଙ୍କୁ ଯେତେବେଳେ ପାଞ୍ଚବର୍ଷ ବୟସ ସେତେବେଳେ ସେ ଅଘାସୁରକୁ ସଂହାର କଲେ; କିନ୍ତୁ ତା'ର ଏକ ବର୍ଷ ପରେ ଗୋପ-ବାଳକମାନେ ସେହି କଥାକୁ ସେମାନଙ୍କ ଜନନୀଙ୍କ ନିକଟରେ ବର୍ଣ୍ଣନା କଲାବେଳେ 'ଆଜି ଅଘାସୁରକୁ କୃଷ୍ଣ ସଂହାର କଲେ' ବୋଲି କହିଲେ କିପରି, ତାହା ମୁଁ ବୁଝିପାରିଲି ନାହିଁ । ଏହା ନିଶ୍ଚୟ ବିଷ୍ଣୁ-ମାୟା । ତାହା ବୁଝିବାର ଶକ୍ତି ମୋର ନାହିଁ; କାରଣ ଗୋପବାଳକମାନଙ୍କର ତ ଏପରି ଭ୍ରମ ହେବାର କଥା ନୁହେଁ । ମୋ ପରି ହତଭାଗ୍ୟଙ୍କୁ ଆପଣ ଭଗବାନଙ୍କର ପବିତ୍ର ଲୀଳାକଥା ଶୁଣାଇ ମୋତେ ପରମ ସୌଭାଗ୍ୟର ଅଧିକାରୀ କରାଇ ଅଛନ୍ତି । ଏହି ରହସ୍ୟ ଯଦି ଗୋପନୀୟ ହୋଇ ନ ଥାଏ, ତେବେ ଦୟାକରି ଏହାର କାରଣ ପ୍ରକାଶ କରି ମୋର କୌତୂହଳ ଅପନୋଦନ କରନ୍ତୁ ।'

ପରୀକ୍ଷିତଙ୍କର ଏହି ପ୍ରାସଙ୍ଗିକ ପ୍ରଶ୍ନ ଶୁକଦେବଙ୍କୁ ବିଶେଷ ପ୍ରୀତ କଲା । ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଶୁକଦେବ କହିଲେ, 'ହେ ମହାଭାଗ, ଭାଗବତୋତ୍ତମ ! ଆପଣ ଉତ୍ତମ ପ୍ରଶ୍ନ ଉତ୍ଥାପନ କରିଅଛନ୍ତି । ତା'ର ପ୍ରକୃତ କାରଣ ଶ୍ରବଣ କରନ୍ତୁ । ଅଘାସୁରକୁ ସଂହାର କରି ଭଗବାନ କୃଷ୍ଣ ତା'ର ମୁଖ ମଧ୍ୟରୁ ବହିର୍ଗତ ହୋଇ ନିଜର ସଖା ବାଳକମାନଙ୍କୁ କହିଲେ, 'ସଖାଗଣ, ଦେଖ କି ସୁନ୍ଦର ଏହି ନଦୀର କୋମଳ ବାଲୁକା ଶଯ୍ୟା ! ନଦୀ ସହିତ ପାର୍ଶ୍ବସ୍ଥ ବୃକ୍ଷଲତାଦି ଅନ୍ୟାନ୍ୟ ପ୍ରାକୃତିକ ପରିବେଶ ଏହି ସ୍ଥାନକୁ ଅତ୍ୟନ୍ତ ରମଣୀୟ ଓ କ୍ରୀଡ଼ାପଯୋଗୀ କରିଅଛି । ବେଳ ମଧ୍ୟ ହେଲାଣି ହୋଇଗଲାଣି । ବାଛୁରୀମାନେ ତ ଚରୁଛନ୍ତି, ଚରନ୍ତୁ । ଆସ, ଏହି ସ୍ଥାନରେ ବସି ଆମ୍ଭେମାନେ ଗୃହରୁ ଆଣିଥିବା ଖାଦ୍ୟମାନ ଏଠାରେ ବସି ଭୋଜନ କରିବା ।'

କୃଷ୍ଣଙ୍କ କଥାନୁସାରେ ଗୋପବାଳକମାନେ ଗୋବତ୍ସାଙ୍କୁ ଜଳପାନ କରାଇ ଏବଂ ଏକ ସ୍ଥାନରେ ଗାଈ ଓ ଅନ୍ୟ ସ୍ଥାନରେ ବାଛୁରୀଙ୍କୁ ଚରିବାକୁ ଛାଡ଼ିଦେଇ ଭୋଜନ କରିବା ନିମନ୍ତେ ସମସ୍ତେ ନଦୀର ସେହି ସୁନ୍ଦର ବାଲୁକା ଶଯ୍ୟାରେ ଉପବେଶନ କଲେ । କୃଷ୍ଣଙ୍କୁ ମଝିରେ ବସାଇ ଚତୁର୍ଦ୍ଦିଗରେ ଗୋପବାଳକମାନେ ତାଙ୍କୁ ଘେରି ପଦ୍ମାକାରରେ ବସିଲେ । ଗୋପବାଳକମାନେ ସଙ୍ଗରେ ବିଭିନ୍ନ ଭକ୍ଷ୍ୟଦ୍ରବ୍ୟ ଆଣିଥିଲେ । କେହି କେହି ପତ୍ରରେ, ପଥୂରରେ, ଡାଣ୍ଡିବଢ଼ାରେ ଖାଦ୍ୟସାମଗ୍ରୀ ରଖି, ସବୁ ପ୍ରକାରର ଖାଦ୍ୟରୁ ସମସ୍ତେ କିଛି କିଛି କୃଷ୍ଣଙ୍କୁ ଦେଇ ଭୋଜନ କରିବାକୁ ଲାଗିଲେ । ବିଶେଷ ପାତ୍ର ନ ଥିବାରୁ, ସଖାମାନଙ୍କର ପ୍ରୀତିପ୍ରଦତ୍ତ ଖାଦ୍ୟକୁ ନିଜର ବାମ ହସ୍ତର କରତଳପୃଷ୍ଠରେ, ଅଙ୍ଗୁଳି ମଧ୍ୟବର୍ତ୍ତୀ ସ୍ଥାନରେ ରଖି ବନ୍ଧୁମାନଙ୍କ ସହିତ ହସଖୁସି ମଧ୍ୟରେ କୃଷ୍ଣ ଭୋଜନ କରିବାକୁ ଲାଗିଲେ । ଭଗବାନଙ୍କର ସେହି ଲୀଳା ଅତ୍ୟନ୍ତ ଉପଭୋଗ୍ୟ ଥିଲା । ଦେବତାମାନେ ସଙ୍ଗୀ ବାଳକମାନଙ୍କ ସହିତ ବାଲ୍ୟଲୀଳା-ପରାୟଣ ଭଗବାନ କୃଷ୍ଣଙ୍କର ସେହି ଅପୂର୍ବ ଲୀଳା ଦର୍ଶନ କରି ପରମ ଆଶ୍ଚର୍ଯ୍ୟାନ୍ୱିତ ଓ ଆନନ୍ଦିତ ହେଉଥାନ୍ତି ।

ଗୋପବାଳକମାନେ ଭୋଜନର ଆନନ୍ଦରେ ମତ୍ତ ଥିବାରୁ ସେମାନଙ୍କ ଧେନୁପଲ ଯେ ଚରୁ ଚରୁ ଏ ମଧ୍ୟରେ ଅରଣ୍ୟର ଅତି ଭିତରକୁ ଧୀରେ ଧୀରେ ଚାଲିଗଲେଣି, ସେଥିପ୍ରତି ସେମାନଙ୍କର ଲକ୍ଷ୍ୟ ନ ଥିଲା । କିଛି ସମୟ ପରେ ଧେନୁପଲଙ୍କୁ ନିକଟରେ କେଉଁଠି ନ ଦେଖି ଗୋପବାଳକମାନେ ବ୍ୟସ୍ତ ହେବାରୁ କୃଷ୍ଣ କହିଲେ, 'ସଖାମାନେ, ବ୍ୟସ୍ତ ହୁଅ ନାହିଁ । ତୁମ୍ଭେମାନେ ନିଶ୍ଚିନ୍ତ ମନରେ ଭୋଜନ କର । ମୁଁ ଏକା ଯାଉଛି, ଧେନୁପଲଙ୍କୁ ଗୋଡ଼ାଇ ଆଣିବି ।' ଏହା କହି କୃଷ୍ଣ ଖାଉଁ ଖାଉଁ ଧେନୁପଲଙ୍କୁ ଅନ୍ୱେଷଣ କରିବା ନିମନ୍ତେ ଚାଲିଗଲେ ।

ଅଘାସୁର ଘଟଣାଠାରୁ ପଂକ୍ତି ଭୋଜନ ପର୍ଯ୍ୟନ୍ତ କୃଷ୍ଣଙ୍କର ସକଳ କାର୍ଯ୍ୟକୁ ଭଗବାନ ବ୍ରହ୍ମା ସ୍ୱର୍ଗଲୋକରୁ ଲକ୍ଷ୍ୟ କରୁଥିଲେ । କୃଷ୍ଣଙ୍କର ସେହି ଅପୂର୍ବ ଲୀଳା ଦେଖି ତାଙ୍କର ବିସ୍ମୟର ସୀମା ରହିଲା ନାହିଁ । କୃଷ୍ଣଙ୍କର ଦୈବୀଶକ୍ତିକୁ ପରୀକ୍ଷା ତଥା ତାଙ୍କର ଅନ୍ୟାନ୍ୟ ଲୀଳା ଅବଲୋକନ କରିବା ଉଦ୍ଦେଶ୍ୟରେ ବ୍ରହ୍ମା ନିଜର ମାୟାବଳରେ

ଚୋରଣରତ ଧେନୁପଲଙ୍କୁ କୃଷ୍ଣଙ୍କ ଅଲକ୍ଷ୍ୟରେ ଅପହରଣ କରିନେଲେ ଏବଂ କୃଷ୍ଣ ଧେନୁପଲଙ୍କୁ ଅନ୍ୱେଷଣ କରିବା ନିମନ୍ତେ ଗୋପବାଳକଙ୍କୁ ଛାଡ଼ି ଅରଣ୍ୟ ମଧ୍ୟକୁ ଆସିବାରୁ, ବ୍ରହ୍ମା ଗୋପବାଳକମାନଙ୍କୁ ମଧ୍ୟ ଅପହରଣ କରିନେଇ ଅନ୍ତର୍ହିତ ହୋଇଗଲେ । କୃଷ୍ଣ ବହୁ ଅନ୍ୱେଷଣ କରି ମଧ୍ୟ କେଉଁଠି ହେଲେ ଧେନୁପଲଙ୍କୁ ନ ପାଇ ସାଥୀମାନଙ୍କ ନିକଟକୁ ଫେରି ଆସିଲେ, କିନ୍ତୁ ସେମାନଙ୍କୁ ମଧ୍ୟ ନଦୀକୂଳରେ ନ ଦେଖି, ସେ ଚିନ୍ତିତ ହୋଇ ଏଣେ ତେଣେ ଅନ୍ୱେଷଣ କଲେ, କିନ୍ତୁ କେଉଁଠି ପାଇଲେ ନାହିଁ । କୃଷ୍ଣ ବିସ୍ମିତ ହୋଇ ଭାବିଲେ ଏବଂ 'ଏ ଯେ ବ୍ରହ୍ମାଙ୍କର କାର୍ଯ୍ୟ' ତାହା ବୁଝିବାକୁ ତାଙ୍କର ଆଉ ବାକି ରହିଲା ନାହିଁ । ତେଣୁ ବ୍ରହ୍ମାଙ୍କୁ ଉପଯୁକ୍ତ ଶିକ୍ଷା ଦେବା ନିମନ୍ତେ ଅଖିଳ ଜଗତର ସୃଷ୍ଟିକର୍ତ୍ତା ସ୍ୱୟଂ ଈଶ୍ୱର ଭଗବାନ କୃଷ୍ଣ ନିଜର ମାୟାଶକ୍ତି ବଳରେ ନିଜକୁ ସେହି ଅପହୃତ ଧେନୁବତ୍ସ ଓ ଗୋପବାଳକ ସମୂହରେ ପରିଣତ କଲେ । ଏହି ଚରାଚର ବିଶ୍ୱ ଆଦି ସକଳ ବସ୍ତୁ ତ ବିଷ୍ଣୁମୟ । ଏହି ବେଦବାକ୍ୟର ସ୍ୱରୂପକୁ ପ୍ରତ୍ୟକ୍ଷ କରାଇବା ନିମନ୍ତେ କୃଷ୍ଣ ଯେପରି ଆଗରୁ ଧେନୁପଲ ଓ ସାଙ୍ଗସାଥୀ ଥିଲେ ଅବିକଳ ସେହିପରି ରୂପ ଓ ସ୍ୱଭାବସମ୍ପନ୍ନ ଧେନୁ ଓ ସାଥୀମାନଙ୍କୁ ସୃଷ୍ଟି କଲେ ଓ ନିଜର ମାୟା ସୃଷ୍ଟି ସେହି ଧେନୁ ଓ ସାଥୀମାନଙ୍କ ସହିତ କ୍ରୀଡ଼ାକୌତୁକ କରି ସମୟ ଗଡ଼ିବାରୁ ନିଜ ନିଜ ଘରକୁ ଫେରି ଆସିଲେ । ବ୍ରଜର କୌଣସି ବ୍ୟକ୍ତି ଜାଣିପାରିଲେ ନାହିଁ ଯେ ଏଗୁଡ଼ିକ ସେମାନଙ୍କର ପ୍ରକୃତ ପୁତ୍ର ବା ଧେନୁ ନୁହନ୍ତି ଏବଂ ଏଗୁଡ଼ିକ କୃଷ୍ଣଙ୍କର ମାୟାସୃଷ୍ଟ ଧେନୁ ଓ ବାଳକ । ଗୃହସ୍ୱାମୀ ଓ ଜନନୀମାନେ ସେମାନଙ୍କୁ ଯଥାରୀତି ନିଜ ନିଜର ଧେନୁ ଓ ସନ୍ତାନ ବୋଲି ମନେକରି କାଳଯାପନ କରିବାକୁ ଲାଗିଲେ । କିନ୍ତୁ ସେମାନଙ୍କର ଚାଲିଚଳନରେ ପୂର୍ବ ଅପେକ୍ଷା ସାମାନ୍ୟ ପରିବର୍ତ୍ତନ ପରିଲକ୍ଷିତ ହେଲା । ତାହା ହେଉଛି, ଆଗେ ଗୋପ ଓ ଗୋପୀମାନେ ନିଜ ନିଜର ପୁତ୍ର ଅପେକ୍ଷା କୃଷ୍ଣଙ୍କୁ ଅଧିକ ସ୍ନେହ କରୁଥିଲେ; ଏବେ ସ୍ୱୟଂ କୃଷ୍ଣ ସେମାନଙ୍କର ସନ୍ତାନ ଓ ଧେନୁରେ ରୂପାନ୍ତରିତ ହୋଇଥିବାରୁ ସେମାନେ ନିଜର ଧେନୁ ଓ ପୁତ୍ରମାନଙ୍କୁ କୃଷ୍ଣ ତୁଲ୍ୟ ସ୍ନେହ କରିବାକୁ ଲାଗିଲେ ।

ଏହାପରେ ଏକ ବର୍ଷ ସମୟ ଅତିବାହିତ ହୋଇଗଲା । ମର୍ତ୍ତ୍ୟ ଲୋକର ଏକ ବର୍ଷ ସମୟ ବ୍ରହ୍ମାଙ୍କ ନିକଟରେ ନିମିଷେ ମାତ୍ର । ବ୍ରହ୍ମା ଗୋପବାଳକ ଓ ଧେନୁପଲଙ୍କୁ ହରଣ କରିନେଇ ପରମ ଆନନ୍ଦରେ ଭାବିଲେ ଯେ କୃଷ୍ଣ କି ଅସୁବିଧାର ସମ୍ମୁଖୀନ ହେଉଛନ୍ତି ତାହା ସେ ସ୍ୱଚକ୍ଷୁରେ ଦେଖିବେ । କିନ୍ତୁ ବଡ଼ ଆଶ୍ଚର୍ଯ୍ୟର କଥା, ସେ ଦେଖିଲେ ଯେ କୃଷ୍ଣ ପୂର୍ବପରି ଯମୁନାକୂଳରେ ସାଙ୍ଗସାଥୀ ସହ ଧେନୁପଲ ନେଇ ଗୋଚାରଣ ଓ କ୍ରୀଡ଼ା କରୁଅଛନ୍ତି । ଏହା ଦେଖି ବ୍ରହ୍ମାଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେ ଭାବିଲେ, 'ଗୋକୁଳରେ ଯେତେ ସଂଖ୍ୟକ ଗୋପବାଳକ ଓ ଧେନୁବତ୍ସ ଥିଲେ, ସମସ୍ତଙ୍କୁ ତ ମୁଁ ହରଣ କରି ମୋର ମାୟାରେ ମୂର୍ଚ୍ଛିତ କରି ରଖିଅଛି ଏବଂ ସେମାନେ ତ ସେହିପରି ସଂଜ୍ଞାହୀନ ଅବସ୍ଥାରେ ମୋ ନିକଟରେ ରହିଛନ୍ତି, ଅଥଚ ଅବିକଳ ସେହି ରୂପ ଓ ବୟସର ଗୋପବାଳକମାନେ କୃଷ୍ଣଙ୍କ ସହିତ ବର୍ତ୍ତମାନ ଯମୁନାକୂଳରେ ଗୋଚାରଣ ଓ କ୍ରୀଡ଼ା କରୁଅଛନ୍ତି କିପରି ? ଏହି ଚରଣରତ ଧେନୁପଲ ଓ କ୍ରୀଡାରତ ଗୋପବାଳକମାନେ କିଏ ଏବଂ ସେମାନେ କେଉଁଠୁ ଆସିଲେ ? ମୋ ଦ୍ୱାରା ଅପହୃତ ହୋଇଥିବା ଧେନୁ-ବତ୍ସ ଓ ଗୋପବାଳକମାନଙ୍କୁ କୃଷ୍ଣ ଏ ମଧ୍ୟରେ ନେଇଯାଇ ନାହାନ୍ତି ତ ? ନା, ସେମାନେ ତ ଠିକ୍ ମୋ ପାଖରେ ଅଛନ୍ତି, ତେବେ ପ୍ରକୃତ ଗୋପବାଳକ କିଏ ? ଯାହାଙ୍କୁ ମୁଁ ମାୟାରେ ମୂର୍ଚ୍ଛିତ କରିରଖିଛି ସେମାନେ ପ୍ରକୃତ ନା ଯେଉଁମାନେ କୃଷ୍ଣଙ୍କ ସହିତ ନଦୀକୂଳରେ କ୍ରୀଡ଼ାରତ ଅଛନ୍ତି, ସେମାନେ ପ୍ରକୃତ ?' ଦିବାଲୋକରେ ଯେପରି ଖଦ୍ୟୋତର ଆଲୋକସତ୍ତା ନଷ୍ଟ ହୋଇଯାଏ ଏବଂ ମହାନ୍ ବ୍ୟକ୍ତିତ୍ୱସମ୍ପନ୍ନ ପୁରୁଷଙ୍କ ସମ୍ମୁଖରେ ଅପେକ୍ଷାକୃତ ନିକୃଷ୍ଟ ପୁରୁଷଙ୍କ ବ୍ୟକ୍ତିତ୍ୱ ହୀନପ୍ରଭ ହୋଇପଡ଼େ, ସେହିପରି କୃଷ୍ଣଙ୍କ ସମ୍ମୁଖରେ ଭଗବାନ ବ୍ରହ୍ମା ନିଜକୁ ଅତ୍ୟନ୍ତ ଅପ୍ରତିଭ ମନେକଲେ । ସେ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇ ନ ପାରି ବାରମ୍ବାର ନିଜ ଦ୍ୱାରା ଅପହୃତ ଗୋପବାଳକ ଓ ଧେନୁପଲ ଏବଂ କୃଷ୍ଣଙ୍କ ନିକଟରେ ବିଚରଣ କରୁଥିବା ଗୋପବାଳକ ଓ ଧେନୁବତ୍ସାଙ୍କୁ ନିରୀକ୍ଷଣ କରିବାକୁ ଲାଗିଲେ । କିଏ ପ୍ରକୃତ ଓ କିଏ ମାୟାସୃଷ୍ଟ, ତାହା ଜାଣିବାକୁ ମନେ ମନେ ତୁଳନା କରିବାକୁ ଲାଗିଲେ ।

ଏହି ସମୟରେ ବ୍ରହ୍ମାଙ୍କ ଦୃଷ୍ଟି ସମ୍ମୁଖରେ ଏକ ଅପୂର୍ବ ଦୃଶ୍ୟ ପ୍ରକଟିତ ହେଲା । ବ୍ରହ୍ମା ଦେଖିଲେ ଯେ, କୃଷ୍ଣଙ୍କ ଚତୁର୍ଦ୍ଦିଗରେ ବିଚରଣ କରୁଥିବା ଗୋଧନ ଓ ଗୋପବାଳକମାନେ ପ୍ରତ୍ୟେକ ହଠାତ୍ ଗୋଟିଏ ଗୋଟିଏ କୃଷ୍ଣ ରୂପରେ ରୂପାନ୍ତରିତ ହୋଇଗଲେ ଏବଂ ସ୍ଥାବରଜଙ୍ଗମ ପ୍ରମୁଖ ମନୁଷ୍ୟ ରୂପ ଧାରଣ କରି ବ୍ରହ୍ମାଙ୍କ ସହିତ ମିଳିତ ହୋଇ ସେହି ଅସଂଖ୍ୟ କୃଷ୍ଣଙ୍କୁ ସ୍ତୁତି ଓ ପୂଜା କରିବା ଆରମ୍ଭ କଲେ ।

ଏହି ଦୃଶ୍ୟ ବ୍ରହ୍ମାଙ୍କ ସମସ୍ତ ଈଶ୍ୱରଶକ୍ତିକୁ ଦୋହଲାଇ ଦେଲା । ଏହା କ'ଣ ଦେଖୁଛନ୍ତି ବୋଲି ଭାବି ଭାବି ସେ ବିସ୍ମୟାଭିଭୂତ ହୋଇଗଲେ । ବ୍ରହ୍ମାଙ୍କର ଶୋଚନୀୟ ଅବସ୍ଥା ସମ୍ପର୍କରେ ଅବଗତ ହୋଇ କୃଷ୍ଣ ନିଜର ମାୟାକୁ ଅପସାରିତ କରିନେଲେ; ଫଳରେ ପୂର୍ବପରି ଗୋପବାଳକ ତଥା ଧେନୁବତ୍ସ ସମୂହ ଯମୁନାନଦୀ ଶଯ୍ୟାରେ ଭୋଜନ ଓ କ୍ରୀଡ଼ା କରିବାକୁ ଲାଗିଲେ । ବ୍ରହ୍ମା ନିଜର ଭ୍ରମ ଓ ଅହଂକାର ବୁଝିପାରି ନିଜର ବାହନ ହଂସ-ପୃଷ୍ଠରୁ ଅବତରଣ କଲେ ଏବଂ ଯମୁନାର କୋମଳ ବାଲୁକା-ଶଯ୍ୟାରେ ଦଣ୍ଡାୟମାନ ଛ' ବର୍ଷ ବୟସ୍କ ବାଳକ କୃଷ୍ଣଙ୍କ ଚରଣକୁ ନିଜର ମୁକୁଟ ଚତୁଷ୍ଟୟ ଦ୍ୱାରା ସ୍ପର୍ଶ କରି କୃଷ୍ଣଙ୍କ ଚରଣପ୍ରାନ୍ତରେ ଲୋଟିଗଲେ । ବ୍ରହ୍ମାଙ୍କ ଆଖିରୁ ଧାରି ଧାରି ହୋଇ ଆନନ୍ଦ ଓ ଲଜ୍ଜାଶ୍ରୁ ବୋହିଯାଉଥାଏ; ମନେ ହେଉଥାଏ, ସତେ ଯେପରି ଚତୁର୍ମୁଖ ବ୍ରହ୍ମା ନିଜର ଲୋତକ ଜଳରେ କୃଷ୍ଣଙ୍କର ଚରଣକୁ ଧୌତ କରୁଅଛନ୍ତି ।

କୃତାଞ୍ଜଳିପୁଟରେ ଅବସ୍ଥାନ କରି ବ୍ରହ୍ମା ଏକାଗ୍ରଚିତ୍ତରେ କୃଷ୍ଣଙ୍କ ଉଦ୍ଦେଶ୍ୟରେ ସ୍ତୁତିଗାନ କରି କହିଲେ, 'ହେ ବନ୍ଦନୀୟ, ହେ ନବଘନ-ଶ୍ୟାମ, ଆପଣଙ୍କର ଶରୀରର ସ୍ନିଗ୍ଧ ଶ୍ୟାମଳ ବର୍ଣ୍ଣରେ ଆପଣଙ୍କ ପରିହିତ ପୀତାମ୍ବର ସାକ୍ଷାତ ମେଘପୃଷ୍ଠରେ ବିଦ୍ୟୁତ୍ ପ୍ରକାଶର ଶୋଭା ଧାରଣ କରିଅଛି । ଆପଣଙ୍କ ଗଳାରେ ବିବିଧ କୁସୁମର ମାଳ୍ୟ, କର୍ଣ୍ଣରେ ମକର କୁଣ୍ଡଳ ଏବଂ ଶିରରେ ମୟୂରପୁଚ୍ଛର ମୁକୁଟ ଆପଣଙ୍କ ସୁନ୍ଦର ରୂପ ତଥା ସଦା ହାସ୍ୟୋଜ୍ଜ୍ୱଳ ମୁଖକୁ ଅତ୍ୟନ୍ତ ମନୋହର କରିଅଛି । ଆପଣଙ୍କ ବାମ ହସ୍ତରେ ବିଭିନ୍ନ ଖାଦ୍ୟବସ୍ତୁ, କଟିରେ ବଂଶୀ ଓ ଶିଙ୍ଗା, କମଳ ସଦୃଶ ସୁନ୍ଦର ସୁକୁମାର ଚରଣଯୁଗଳ ସର୍ବୋପରି ଗୋପବାଳକ ସୁଲଭ ବେଶ ଓ ପରିବେଶ ଆପଣଙ୍କୁ ଅନୁପମ ଶୋଭାରେ ବିମଣ୍ଡିତ କରିଅଛି ।

ପ୍ରଭୁ, ନନ୍ଦନନ୍ଦନ; ଆପଣ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ମୁଁ ଆପଣଙ୍କ ଚରଣରେ ବାରମ୍ବାର ପ୍ରଣତି ଜଣାଉଅଛି । ପ୍ରଭୁ, ମୋ ପ୍ରତି ଦୟା-ପରବଶ ହୁଅନ୍ତୁ ଇଚ୍ଛାନୁସାରେ ଆପଣଙ୍କ ପ୍ରକଟିତ ବିରାଟ ରୂପକୁ ମୁଁ ଅତୀତରେ ବହୁ ଚେଷ୍ଟା କରି ମଧ୍ୟ ଯେତେବେଳେ ଜାଣିବାକୁ ସମର୍ଥ ହୋଇପାରି ନଥିଲି, ଆଜି ଏହି ସକ୍ଷତ୍ ଆତ୍ମସୁଖାନୁଭୂତ ସଚ୍ଚିଦାନନ୍ଦ ରୂପର ମହିମା ଓ ସ୍ୱରୂପକୁ ହୃଦୟଙ୍ଗମ କରିବା ମୋ ପକ୍ଷରେ କପରି ବା ସମ୍ଭବ ହୁଅନ୍ତା ! ହେ ଅଜିତ, ଜ୍ଞାନଲାଭ କରିବା ନିମନ୍ତେ ପ୍ରୟାସ ନ କରି କେବଳ ସତ୍ସଙ୍ଗ ଓ ଆପଣଙ୍କ ଲୀଳାକଥା ଶ୍ରବଣ କରି ଭକ୍ତମାନେ ଆପଣଙ୍କଭି ଅପରାଜେୟ ବ୍ୟକ୍ତିତ୍ୱକୁ ବଶୀଭୂତ କରିପାରିଥାନ୍ତି; ତେଣୁ ଆପଣ ବାସ୍ତବିକ ଭକ୍ତ-ପରାଧୀନ । ଭକ୍ତି ବିନା ଆପଣଙ୍କ ସ୍ୱରୂପକୁ ଉପଲବ୍ଧି କରିବା ସମ୍ଭବ ନୁହେଁ । ପ୍ରଭୁ, ମୋର ଧୃଷ୍ଟତା ମାର୍ଜନା କରନ୍ତୁ । ମୁଁ ଆପଣଙ୍କ ଦ୍ୱାରା ସୃଷ୍ଟ, ତଥାପି ମୁଁ ଆପଣଙ୍କ ସ୍ୱରୂପକୁ ଉପଲବ୍ଧି କରିବାକୁ ଚେଷ୍ଟା ନ କରି ଆପଣଙ୍କ ପ୍ରଭାବକୁ ପରୀକ୍ଷା କରିବାକୁ ଇଚ୍ଛାକରି ଅମାର୍ଜନୀୟ ଅପରାଧ କରିଅଛି । ମୁଁ ଆପଣଙ୍କର ଅନୁଗୃହୀତ ସେବକ । ମୋ ପ୍ରତି କ୍ଷମାଚରଣ କରନ୍ତୁ ।’

କୃଷ୍ଣଙ୍କୁ ଏହିପରି ଭାବରେ ବହୁ ସ୍ତୁତି କରି ଏବଂ ପରିଶେଷରେ କୃଷ୍ଣଙ୍କଠାରୁ ଅନୁମତି ଲାଭକରି ବ୍ରହ୍ମା ସ୍ୱଧାମକୁ ଯାଥାକଲେ ଏବଂ ଅପହରଣ କରି ନେଇଥିବା ଗୋପବାଳକ ଓ ଧେନୁବତ୍ସାଙ୍କୁ ପୂର୍ବର ସେହି ଭୋଜନ ସ୍ଥାନରେ ଆଣି ଛାଡ଼ିଦେଇଗଲେ ।

‘ମହାରାଜ, ଏ ମଧ୍ୟରେ ଏକ ବର୍ଷ ଅତିବାହିତ ହୋଇଥିଲେ ମଧ୍ୟ ଗୋପବାଳକମାନେ ସେହି ସମସ୍ତ ଧରି ମାୟାରେ ମୂର୍ଚ୍ଛିତାବସ୍ଥାରେ ରହିଥିବାରୁ ସମୟର ଦୀର୍ଘତା ଅନୁଭବ କରିପାରିଲେ ନାହିଁ । ବ୍ରହ୍ମା ସେମାନଙ୍କୁ ଭୋଜନରତ ଅବସ୍ଥାରେ ଯମୁନାକୂଳରେ ଛାଡ଼ିଦେବାରୁ ସେମାନେ ପୂର୍ବପରି ଭୋଜନ କରୁଛନ୍ତି ବୋଲି ମନେ କଲେ । ମାୟାମୋହିତ ବ୍ୟକ୍ତିଙ୍କ ପକ୍ଷରେ ଏପରି ଭ୍ରମ ଏକାନ୍ତ ସ୍ୱାଭାବିକ ।’

ବ୍ରହ୍ମାଙ୍କଠାରୁ ମୁକ୍ତି ଲାଭକରି ଗୋପବାଳକମାନେ କୃଷ୍ଣଙ୍କୁ କହିଲେ, ‘କୃଷ୍ଣ, ଆମର ଧାରଣା ଥିଲା ଗାଈଗୁଡ଼ିକ ଅନେକ ଦୂରକୁ

ଚାଲିଯାଇଛନ୍ତି । କିନ୍ତୁ ଯାହାହେଉ, ଅତି ଅଳ୍ପ ସମୟ ମଧ୍ୟରେ ତୁମେ ଧେନୁବତ୍ସଙ୍କୁ ଗୋଡ଼ାଇ ଆଣିଛ । ବଡ଼ ଆନନ୍ଦର କଥା । ତୁମେ ଆଦୌ ଖାଇ ନଥିଲ, ଗୋରୁ ଖୋଜିବାକୁ ଚାଲିଗଲ ଏବଂ ତୁମେ ଫିବା ଯାଏଁ, ଦେଖ, ଆମେ ଗୋଟାଏ ଗ୍ରାସ ମଧ୍ୟ ଖାଇ ନାହୁଁ ।' ତେଣୁ ଆସ, ପୂର୍ବପରି ସମସ୍ତେ ପଂକ୍ତିରେ ବସି ଭୋଜନ କରିବା ।'

ସାଙ୍ଗମାନଙ୍କର କଥା ଶୁଣି ଅଖିଳଜଗତର ନିୟନ୍ତା ଭଗବାନ କୃଷ୍ଣ ନ ହସି ରହିପାରିଲେ ନାହିଁ । ସାଥୀମାନଙ୍କ ସହିତ ଏକତ୍ର ସେ ଭୋଜନ କଲେ ଏବଂ କହିଲେ, 'ସଖାଗଣ ! ଆଜି ଅଜଗରରୂପୀ ଅଘାସୁରର ମୃତ୍ୟୁ ଘଟିଛି । ଚାଲ, ବେଶି ଡେରି ନ କରି ଶୀଘ୍ର ଶୀଘ୍ର ଘରକୁ ଫେରିଯିବା ।'

କୃଷ୍ଣଙ୍କ ପ୍ରସ୍ତାବ ଅନୁସାରେ ଗୋପବାଳକମାନେ ଘରକୁ ଫେରିବାକୁ ସ୍ଥିର କଲେ । ବାଟରେ ଫେରିଲାବେଳେ ଶିଙ୍ଗା ଓ ବେଣୁ ବଜାଇ, ଅଘାସୁରର ମୃତ୍ୟୁ ଜନିତ ଆନନ୍ଦରେ ନୃତ୍ୟାଦି କରି କରି ବୃନ୍ଦାବନକୁ ଫେରିଆସିଲେ । ଗୋପବାଳକମାନେ ନିଜ ନିଜ ଘରେ ମା'ମାନଙ୍କ ନିକଟରେ କହିବାକୁ ଲାଗିଲେ, 'ମା, ନନ୍ଦ-ଯଶୋଦାଙ୍କ ପୁତ୍ର କୃଷ୍ଣ ଗୋଟାଏ ପ୍ରକାଣ୍ଡକାୟ ସର୍ପକୁ ଆଜି ମାରି ଆମକୁ ରକ୍ଷା କରିଛି ।' ମହାରାଜ, କୃଷ୍ଣ ପାଞ୍ଚ ବର୍ଷ ବୟସରେ ଅଘାସୁରକୁ ମାରିଥିଲେ ମଧ୍ୟ ଏବଂ ତା'ପରେ ଏକ ବର୍ଷ ଅତିବାହିତ ହୋଇଥିଲେ ମଧ୍ୟ ଗୋପବାଳକମାନେ କୃଷ୍ଣଙ୍କର ସେହି ମାୟାଜନିତ ଅଜ୍ଞାନତାର ସ୍ୱାଭାବିକ ପ୍ରଭାବର ବଶବର୍ତ୍ତୀ ହୋଇ 'ଆଜି' ଶବ୍ଦ ଏହିପରି ଭାବରେ ଭ୍ରମବଶତ ବ୍ୟବହାର କରିଥିଲେ ।'

ବୟସ ବଢ଼ିବା ସଙ୍ଗେ ସଙ୍ଗେ ସଙ୍ଗୀ ଗୋପବାଳକମାନଙ୍କ ସହିତ ମିଶି ଗୋଚାରଣ କରିବା ବ୍ୟପଦେଶରେ କୃଷ୍ଣ ବ୍ରଜ ଓ ବୃନ୍ଦାବନର ବିଭିନ୍ନ ସ୍ଥାନରେ ବିଚରଣ କରି ନିଜର ଚରଣସ୍ପର୍ଶରେ ବୃନ୍ଦାବନ ତଥା ବ୍ରଜମଣ୍ଡଳକୁ ଧନ୍ୟ କରିଥିଲେ ।

ସମବୟସୀ ଗୋପବାଳକମାନଙ୍କ ମଧ୍ୟରେ ଶ୍ରୀଦାମା ଓ ସୁବଳ ନାମରେ ଦୁଇଜଣ ପିଲା ଥିଲେ । ସେମାନେ ତାଳ ଖାଇବାକୁ ଭାରି ଭଲ ପାଉଥିଲେ ଏବଂ ପାଚିଲା ତାଳ ଆଣି କୃଷ୍ଣ ଓ ବଳରାମଙ୍କୁ ମଧ୍ୟ ଦେଉଥିଲେ ।

ଦିନେ, ଶ୍ରୀଦାମା ଓ ସୁବଳ କହିଲେ, 'ସଖା କୃଷ୍ଣ, ଏହି ଗୋବର୍ଦ୍ଧନ ପର୍ବତର ଅନତିଦୂରରେ ଗୋଟିଏ ଅରଣ୍ୟ ଅଛି । ସେଠାରେ ବହୁତ ସଂଖ୍ୟକ ତାଳଗଛ ଅଛି ଏବଂ ବହୁତ ପାଚିଲା ତାଳ ମଧ୍ୟ ସେଠାରେ ପଡ଼ିଅଛି । କିନ୍ତୁ ଧେନୁକାସୁର ନାମରେ ଗୋଟାଏ ଅସୁର ସେଠାରେ ରହୁଥିବାରୁ, ତା' ଭୟରେ କେହି ସେଠାକୁ ଯାଉ ନାହାନ୍ତି; ଏପରିକି ପଶୁପକ୍ଷୀମାନେ ମଧ୍ୟ ସେ ବଣରେ ଭୟରେ ବାସ କରୁନାହାନ୍ତି । ସେହି ଅସୁରର ଆକୃତି ଅବିକଳ ଗଧ ପରି । ଯଦି ତୁମେ ସେହି ବଣକୁ ଯାଆନ୍ତ, ତେବେ ବହୁ ପରିମାଣରେ ତାଳ ଆମେ ପାଇ ପାରନ୍ତେ । ଏଇଠାରୁ ଲକ୍ଷ୍ୟକଲେ, ସେହି ଅରଣ୍ୟରୁ ଆସୁଥିବା ତାଳର ବାସନା ତୁମେ ମଧ୍ୟ ବାରି ପାରିବ । ତୁମେ ଆମ ପାଇଁ ଏହି କାର୍ଯ୍ୟଟି କର ।'

ସଖାମାନଙ୍କ କଥା ଶୁଣି ସଦଳବଳେ କୃଷ୍ଣ ଓ ବଳରାମ ସେହି ଅରଣ୍ୟ ଅଭିମୁଖେ ଯାତ୍ରା କଲେ ।

ପ୍ରକୃତରେ ଅରଣ୍ୟଟିରେ ତାଳଗଛ ବହୁ ପରିମାଣରେ ରହିଥିଲା ଓ ବହୁ ତାଳ ଫଳ ଥିଲା । ଗୋପବାଳକମାନଙ୍କ ସହିତ କୃଷ୍ଣ ଓ ବଳରାମ ତାଳଗଛମାନଙ୍କରୁ ତାଳମାନ ତୋଳିବାକୁ ଆରମ୍ଭ କଲେ । ଧେନୁକାସୁର ସେହି ଅରଣ୍ୟରେ ରହି ଗୋପବାଳକମାନଙ୍କ କାର୍ଯ୍ୟକୁ ଲକ୍ଷ୍ୟ କରୁଥିଲା; ତେଣୁ ସେମାନଙ୍କର ଅରଣ୍ୟପ୍ରବେଶ ଓ ଫଳ ସଂଗ୍ରହ ତା' ପକ୍ଷରେ ଅସହ୍ୟ ହୋଇପଡ଼ିଲା । ସେ କ୍ରୋଧାନ୍ୱିତ ହୋଇ ସଙ୍ଗେ ସଙ୍ଗେ ବିକଟ ଗର୍ଜ୍ଜନ କରି ସେଠାକୁ ଦୌଡ଼ିଆସିଲା ଏବଂ ବଳରାମଙ୍କ ବକ୍ଷସ୍ଥଳରେ ଆଘାତ କରି ତାଙ୍କୁ ଆକ୍ରମଣ କଲା । ବଳରାମ ଏପରି ଧରଣର ଆକ୍ରମଣ ପାଇଁ ପ୍ରସ୍ତୁତ ନ ଥିଲେ; ତେଣୁ ସେ ଆଘାତକୁ ସହିସିବା ପରେ, ଅସୁର ଦ୍ୱିତୀୟବାର ଆକ୍ରମଣ କରିବାକୁ ଯେତେବେଳେ ନିଜର ପାଦ ଉତ୍ତୋଳନ କଲା, ବଳରାମ ସଙ୍ଗେ ସଙ୍ଗେ ତା'ର ପାଦ ଦୁଇଟାକୁ ଧରିପକାଇ ଗୋଡ଼ ସହ ଅସୁରକୁ ପ୍ରବଳ ବେଗରେ ଘୂରାଇବାକୁ ଲାଗିଲେ । ଅସୀମ ପରାକ୍ରମଶାଳୀ ବଳରାମଙ୍କର ସେହି ପ୍ରଚଣ୍ଡ ଘୂର୍ଣ୍ଣନକୁ ସହ୍ୟ କରିବାର ଶକ୍ତି ଧେନୁକାସୁରର ନ ଥିଲା; ଫଳରେ ଅଣନିଶ୍ୱାସୀ ହୋଇ ସେ ମୃତ୍ୟୁ ବରଣ କଲା । ବଳରାମ, ଧେନୁକାସୁରର ମୃତ ଦେହକୁ ଅରଣ୍ୟ ମଧ୍ୟକୁ

ପିଙ୍ଗି ଦେଲେ ଏବଂ ଅସୁରର ଶରୀରର ଭାରରେ ଅରଣ୍ୟର ବହୁ ବୃକ୍ଷ ଭାଙ୍ଗି ପଡ଼ିଲା । ଧେନୁକାସୁରର ମୃତ୍ୟୁ ସମ୍ବାଦ ତା'ର ଆତ୍ମୀୟମାନଙ୍କର ନିକଟରେ ପହଞ୍ଚିବା ମାତ୍ରେ ସେମାନେ ଦଳ ବଳ ଧରି ଗୋପବାଳକମାନଙ୍କୁ ଆକ୍ରମଣ କଲେ କିନ୍ତୁ ଗୋପବାଳକମାନଙ୍କର ଅସୁରମାନେ କୌଣସି ଅନିଷ୍ଟ କରିବା ପୂର୍ବରୁ କୃଷ୍ଣ ଓ ବଳରାମଙ୍କ ହସ୍ତରେ ସେମାନେ ମୃତ୍ୟୁ ବରଣ କଲେ । ଅସୁରମାନଙ୍କ ମୃତ୍ୟୁରେ ଗୋପବାଳକମାନେ ବିଶେଷ ଆନନ୍ଦିତ ହୋଇ ନିର୍ଭୟ ଚିତ୍ତରେ ବୃକ୍ଷରେ ଚଢ଼ି ତାଳ ତୋଳିବାରେ ଓ ଭକ୍ଷଣ କରିବାରେ ଲାଗିଲେ ।

ଗୋଚାରଣ କୃଷ୍ଣଙ୍କର ନିତ୍ୟ ନୈମିତ୍ତିକ କାର୍ଯ୍ୟରେ ପରିଣତ ହୋଇଯାଇଥିଲା । ଦିନେ ବୃନ୍ଦାବନରେ ଗୋଚାରଣ କରୁ କରୁ କୃଷ୍ଣ ଓ ବଳରାମ ସାଙ୍ଗମାନଙ୍କ ସହିତ ଯମୁନା ନଦୀ କୂଳରେ ପହଁଞ୍ଚିଲେ । ରୌଦ୍ରତାପରେ ପୀଡ଼ିତ ହୋଇଥିବାରୁ ଗୋପବାଳକ ତଥା ଧେନୁପଲ ତୃଷ୍ଣା ଅପନୋଦନ କରିବା ନିମନ୍ତେ ଯମୁନାର ଜଳ ପାନ କଲେ । ଯମୁନା ନଦୀର ସେହି ଜଳ ଅତ୍ୟନ୍ତ ବିଷାକ୍ତ ଥିଲା ଏବଂ ଜଳପାନ କରିବା ମାତ୍ରେ ଗାଈଗୋରୁଙ୍କ ସହିତ ଗୋପବାଳକମାନେ ମୂର୍ଚ୍ଛିତ ହୋଇ ଗୋଟିଏ ପରେ ଗୋଟିଏ ସେହି ନଦୀଜଳରେ ଖସି ପଡ଼ିଲେ, ଗୋପବାଳକ ତଥା ଧେନୁମାନଙ୍କର ସେହି ଦୁର୍ଦ୍ଦଶା ଲକ୍ଷ୍ୟକରି ଅଲୌକିକ ବ୍ୟକ୍ତିତ୍ୱ ସମ୍ପନ୍ନ ଯୋଗେଶ୍ୱର କୃଷ୍ଣ ସେମାନଙ୍କ ପ୍ରତି କୃପାପରବଶ ହୋଇ ନିଜର ଅମୃତମୟୀ ଦୃଷ୍ଟି ନିକ୍ଷେପ କଲେ; ତା' ଫଳରେ ମୃତପ୍ରାୟ ମୂର୍ଚ୍ଛିତ ଗୋପବାଳକ ଓ ଧେନୁବଛା ତୁରନ୍ତ ପୁନରୁଜ୍ଜୀବନ ଲାଭକରି ସୁସ୍ଥ ହୋଇ ଉଠିଲେ । ଅପରିମିତ ଶକ୍ତିସମ୍ପନ୍ନ କୃଷ୍ଣ ଯେ ସେମାନଙ୍କୁ ନିଜର ଅଲୌକିକ ଶକ୍ତିବଳରେ ସୁସ୍ଥ ଓ ପୁନର୍ଜ୍ଜୀବିତ କରିଅଛନ୍ତି, ଏହା ଜାଣିବାକୁ ସେମାନଙ୍କର ବାକି ରହିଲା ନାହିଁ । ସଖା କୃଷ୍ଣଙ୍କ ସହ ସେମାନେ ତାଙ୍କ କୃତଜ୍ଞତାର ଅତୁଟ ବନ୍ଧନରେ ଆବଦ୍ଧ ହୋଇ ପଡ଼ିଲେ ।

ମହାରାଜ ପରୀକ୍ଷିତଙ୍କର ଏକ କୌତୂହଳ ଅପନୋଦନ କରିବା ନିମନ୍ତେ ଶୁକଦେବ କହିଲେ, 'ଯମୁନା ନଦୀର ଦକ୍ଷିଣ ପଟରେ ଏକ ହ୍ରଦ ପରି ସ୍ଥାନ ଥିଲା । ସେଠାରେ କାଳୀୟ ନାଗ ବାସ କରୁଥିଲା କାଳୀୟ

ନାଗର ବିଷ ଏପରି ପ୍ରଖର ଥିଲା ଯେ ତା’ର ପ୍ରକୋପରେ ହ୍ରଦର ଜଳ ଅତ୍ୟନ୍ତ ବିଷାକ୍ତ ହୋଇପଡ଼ିଥିଲା । ସେହି ହ୍ରଦର ଜଳକୁ ସେବନ କରିବା ଦୂରେଥାଉ, ସେହି ହ୍ରଦ ଉପର ଦେଇ ଯଦି କେବେ କୌଣସି ପକ୍ଷୀ ଉଡ଼ିଯାଉଥିଲା, ସେହି ଜଳର ବିଷପ୍ରଭାବରେ ତତ୍‌କ୍ଷଣାତ୍ ମୃତ୍ୟୁ ବରଣ କରି ହ୍ରଦରେ ପତିତ ହେଉଥିଲା । ସେହି ହ୍ରଦର ପାର୍ଶ୍ୱବର୍ତ୍ତୀ ସମସ୍ତ ବୃକ୍ଷଲତା ବହୁକାଳରୁ କାଳୀୟ ନାଗର ବିଷର ପ୍ରଭାବରେ ବିଗତପ୍ରାଣ ହୋଇ ଏକ ପ୍ରକାର ଜଳିଯାଇଥିଲେ ।’

ଦୁଷ୍ଟମାନଙ୍କର ଦଳନ ଓ ସାଧୁମାନଙ୍କୁ ପାଳନ ଓ ପରିତ୍ରାଣ କରିବା ଉଦ୍ଦେଶ୍ୟରେ ଯେଉଁ ଭଗବାନ ବିଭିନ୍ନ ସମୟରେ ମତ୍ସ୍ୟ କୂର୍ମାଦି ବିଭିନ୍ନ ରୂପ ଧାରଣ କରି ଧରାଧାମରେ ଅବତୀର୍ଣ୍ଣ ହୋଇଥାନ୍ତି, ସେହି ଭଗବାନ କୃଷ୍ଣ ହ୍ରଦକୁ କାଳୀୟ ପ୍ରଭାବରୁ ମୁକ୍ତ ଓ ହ୍ରଦର ବିଷଦୁଷ୍ଟ ଜଳକୁ ଶୋଧନ କରିବା ନିମନ୍ତେ ଇଚ୍ଛା କରି ଦୃଢ଼-ଭାବରେ ନିଜର କଟିବସନ ଓ ଝୁଲନ୍ତ କେଶକୁ ବନ୍ଧନ କରି ପାର୍ଶ୍ୱସ୍ଥ ଏକ ମୃତ ଅଥଚ ସମୁଚ୍ଚ କଦମ୍ବ ବୃକ୍ଷରେ ଆରୋହଣ କରି ବିଷଧର କାଳୀୟ ନାଗସର୍ପ ଅଧ୍ୟୁଷିତ ସେହି ବିଷକ୍ଳାମୟୀ କାଳୀୟ ହ୍ରଦ ମଧ୍ୟକୁ ଲମ୍ଫ ପ୍ରଦାନ କଲେ । ହ୍ରଦ ମଧ୍ୟରେ କୃଷ୍ଣ ପଡ଼ିବା ମାତ୍ରେ ବିଷ ଉଚ୍ଛ୍ୱସିତ କାଳୀୟ ହ୍ରଦର ଜଳରେ ଅପୂର୍ବ ତରଙ୍ଗ ସୃଷ୍ଟି ହେଲା । ନିଖିଳ ଜଗତର ସମସ୍ତ ବିଷ ଯାହାଙ୍କଠାରୁ ସୃଷ୍ଟ ହୋଇଅଛି, ସେହି ଅନନ୍ତବଳଶାଳୀ ଭଗବାନ କୃଷ୍ଣଙ୍କ ନିକଟରେ କାଳୀୟ ହ୍ରଦର ବିଷ କିଛି ନୁହେଁ, କହିଲେ ଅତ୍ୟୁକ୍ତି ହେବ ନାହିଁ । ହ୍ରଦ ମଧ୍ୟରେ ପଡ଼ିବା ପରେ କୃଷ୍ଣ ନିଜର ସନ୍ତରଣପଟୁତା ଓ ବାହୁବିଳଂନାରେ କାଳୀୟ ହ୍ରଦରେ ପ୍ରବଳ ତରଙ୍ଗ ଓ ବିକ୍ଷୋଭ ସୃଷ୍ଟି କଲେ । କୃଷ୍ଣଙ୍କର ଜଳକ୍ରୀଡ଼ା ଜନିତ ଶବ୍ଦ ଚକ୍ଷୁଶ୍ରବା କାଳୀୟ ନାଗକୁ ଜାଗ୍ରତ ଓ କୃଷ୍ଣଙ୍କ ପ୍ରତି ଆକୃଷ୍ଟ କଲା । ସେ ଜଳରୁ ମୁଣ୍ଡଟେକି କୃଷ୍ଣଙ୍କୁ ଚାହିଁଲା । ନବଘନ ସଦୃଶ କମନୀୟ ବର୍ଣ୍ଣ ବିଶିଷ୍ଟ କୃଷ୍ଣ ଅତ୍ୟନ୍ତ ସୌମ୍ୟ ଓ ସୁକୁମାର ଶରୀରର ଅଧିକାରୀ ଥିଲେ ମଧ୍ୟ କୃଷ୍ଣଙ୍କର ରୂପ କାଳୀୟ ନାଗର ମନରେ କୌଣସି ସୁପ୍ରଭାବ ପକାଇଲା ନାହିଁ । କାଳୀୟ ନାଗ ଦେଖିଲା, ନବଘନ ସଦୃଶ ଉଜ୍ଜ୍ୱଳ ଶ୍ୟାମବର୍ଣ୍ଣ ବିଶିଷ୍ଟ, ପୀତବସନଧାରୀ, ବକ୍ଷରେ ଶ୍ରୀବତ୍ସ ଚିହ୍ନ

ଶୋଭିତ, ବଦନମଣ୍ଡଳ ହାସ୍ୟୋଜ୍ଜ୍ୱଳ, ଅରୁଣବର୍ଣ୍ଣ ବିଶିଷ୍ଟ କୋମଳ କମଳଦଳ ସଦୃଶ ଚରଣଯୁଗଳଧାରୀ ଏକ ଅଳ୍ପ ବୟସର ବାଳକ ନିର୍ଭୟ ଚିତ୍ତରେ କାଳୀୟ ହ୍ରଦର ବିଷମୟୀ ଅଗାଧ ଜଳରେ ସନ୍ତରଣ କରି ଜଳରେ ତରଙ୍ଗ ସୃଷ୍ଟି କରୁଅଛି ଏବଂ କାଳୀୟ ନାଗକୁ ଦେଖି ମଧ୍ୟ ବାଳକଟି ଶଙ୍କିତ ହେଉ ନାହିଁ । କାଳୀୟ ନାଗର କ୍ରୋଧ ଉଦ୍ଦୀପିତ ହେଲା । ସେ କ୍ରୋଧର ଆବେଶରେ କୃଷ୍ଣଙ୍କର ବକ୍ଷସ୍ଥଳକୁ ଦଂଶନ କଲା ଏବଂ ତଦ୍ଦ୍ୱାରା କୃଷ୍ଣଙ୍କ ଉପରେ ତା'ର କୌଣସି ମନ୍ଦ ପ୍ରଭାବ ନ ପଡ଼ିବାରୁ ନିଜର ସୁଦୀର୍ଘ ଶରୀର ଦ୍ୱାରା କୃଷ୍ଣଙ୍କ ଶରୀରରେ ଦୃଢ଼ ଭାବରେ ଗୁଡ଼ାଇ ହୋଇଗଲା । ନାଗ ପାଶରେ ଆବଦ୍ଧ ହୋଇ କୃଷ୍ଣ ନିଶ୍ଚେଷ୍ଟ ହୋଇଗଲେ । ଗୋପବାଳକ ମାନଙ୍କର କୃଷ୍ଣ ପ୍ରାଣ ସ୍ୱରୂପ ଥିଲେ । କୃଷ୍ଣଙ୍କର ଦୁର୍ଦ୍ଦଶା ଦେଖି କୂଳରେ ଦଣ୍ଡାୟମାନ ଥିବା ଗୋପବାଳକ-ମାନେ ଦୁଃଖ ଓ ହତାଶାରେ ଭାଙ୍ଗି ପଡ଼ିଲେ ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ଦୁଃଖ-ପୀଡ଼ାର ଆତିଶଯ୍ୟରେ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ଗାଈବାଛୁରୀମାନେ ମଧ୍ୟ ଦୁଃଖରେ ବିଚଳିତ ହୋଇ ଉଚ୍ଚ ସ୍ୱରରେ ହମ୍ବାଳିଲେ ।

ସର୍ପ-ବନ୍ଧନରେ ଆକ୍ରାନ୍ତ ହୋଇ କୃଷ୍ଣ ମୃତ ପ୍ରାୟ ନିଶ୍ଚଳ ଅବସ୍ଥାରେ ପଡ଼ି ରହିଥାନ୍ତି ।

ଏଣେ, ବୃନ୍ଦାବନରେ ନନ୍ଦ, ଯଶୋଦା ପ୍ରମୁଖ ଗୋପଗୋପୀ-ମାନେ ନାନା ଅଶୁଭ ଦୃଶ୍ୟମାନ ଦେଖିବାକୁ ପାଇ, ଆସନ୍ନ ବିପଦର ଆଶଙ୍କାରେ ବିଚଳିତ ହେଲେ । ବଳରାମଙ୍କୁ ସଙ୍ଗରେ ନ ନେଇ କୃଷ୍ଣ ଏକା ଗୋପବାଳକଙ୍କ ସହ ଯାଇଥିବା ଦେଖି, କାଳେ କୃଷ୍ଣର କିଛି ବିପଦ ଘଟିଲା ଆଶଙ୍କାରେ ନନ୍ଦ ଓ ଯଶୋଦା ପ୍ରମୁଖ ବ୍ୟାକୁଳ ହୋଇ କୃଷ୍ଣଙ୍କୁ ଅନ୍ୱେଷଣ କରିବା ନିମନ୍ତେ ବାହାରି ପଡ଼ିଲେ । କୃଷ୍ଣଙ୍କର ପାଦରେ ଧ୍ୱଜ, ବଜ୍ର, ଯବ, ଅଙ୍କୁଶ ଓ ପଦ୍ମ ଆଦି ଶୁଭ ଚିହ୍ନମାନ ରହିଥିଲା । ବୃନ୍ଦାବନର ଅଧିବାସୀମାନେ ରାସ୍ତାରେ ପଡ଼ିଥିବା କୃଷ୍ଣଙ୍କର ପଦଚିହ୍ନକୁ ଅନୁସରଣ କରି କରି ଯମୁନା ହ୍ରଦ କୂଳରେ ଆସି ପହଞ୍ଚିଲେ । ଯମୁନା କୂଳରେ ଗୋପବାଳକମାନଙ୍କ ମଧ୍ୟରୁ କେତେକଙ୍କୁ ମୂର୍ଚ୍ଛିତ ଓ ଅନ୍ୟ କେତେକଙ୍କୁ କିଂକର୍ତ୍ତବ୍ୟ-ବିମୂଢ଼ ହୋଇ ରହିଥିବାର ଦେଖିବା

ସଙ୍ଗେ ସଙ୍ଗେ ବିଷଧର କାଳୀୟ ନାଗସର୍ପର ବନ୍ଧନ ମଧ୍ୟରେ କୃଷ୍ଣଙ୍କୁ ମୃତ-ପ୍ରାୟ ପଡ଼ିଥିବାର ଦେଖିଲେ । ନିଜର ଆତ୍ମାସ୍ୱରୂପ ପ୍ରାଣପ୍ରିୟ କୃଷ୍ଣଙ୍କୁ ଏପରି ଶୋଚନୀୟ ଅବସ୍ଥାରେ ପଡ଼ିଥିବାର ଅବଲୋକନ କରି ଦାରୁଣ ଶୋକ ଭୟରେ ସେମାନଙ୍କ ମଧ୍ୟରୁ କେତେକଙ୍କର ଚେତା ବୁଡ଼ିଗଲା । ନିଜର ପୁତ୍ରକୁ କାଳୀୟନାଗ ଦ୍ୱାରା ଆକ୍ରାନ୍ତ ହୋଇଥିବାର ଦେଖି ଯଶୋଦା 'ହାୟ କୃଷ୍ଣ, ହାୟ କୃଷ୍ଣ' କହି କହି କାଳୀୟ ହ୍ରଦରେ ଝାସ ଦେବାକୁ ବସିବାରୁ କେତେକ ଗୋପଗୋପୀ ତାଙ୍କୁ ବହୁ କଷ୍ଟରେ ବାରଣ କଲେ ଏବଂ ଯଶୋଦାଙ୍କର ଚେତା ବୁଡ଼ିଯିବାରୁ ସେମାନେ ଶୀତଳ ଜଳ ସିଞ୍ଚନ କରି ତାଙ୍କର ଚେତା ଫେରାଇଲେ ।

ନିଜ ନିଜର ହୃଦୟ କୃଷ୍ଣଙ୍କ ପାଇଁ ଦୁଃଖ ଓ ଭୟରେ ଫାଟି ପଡ଼ୁଥିଲେ ମଧ୍ୟ ଯଶୋଦାଙ୍କୁ ସାନ୍ତ୍ୱନା ଦେବା ପାଇଁ ସେମାନେ କହୁଥାନ୍ତି, 'ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । କୃଷ୍ଣଙ୍କର କିଛି କ୍ଷତି ହେବ ନାହିଁ । ଯେ ପୂତନା, ତୃଣାବର୍ତ୍ତ, ଅଘାସୁର, ବକାସୁର ଆଦି ପ୍ରତାପି ଅସୁରମାନଙ୍କୁ ବିନାଶ କରିଅଛି, ସେହି ଅଦ୍‌ଭୁତକର୍ମା କୃଷ୍ଣଙ୍କର ଏହି ସର୍ପ ବା କ'ଣ କରିପାରିବ ? ଆପଣ ଧୈର୍ଯ୍ୟ ଧରନ୍ତୁ ।'

ଏଣେ, କାଳୀୟର ବନ୍ଧନରେ ଆବଦ୍ଧ ହୋଇ କୃଷ୍ଣ ନିଶ୍ଚେଷ୍ଟ ଅବସ୍ଥାରେ ଅବସ୍ଥାନ କରୁଥିଲେ । ଯମୁନାକୂଳରେ ନନ୍ଦ, ଯଶୋଦା ପ୍ରମୁଖ ସମସ୍ତ ଗୋପବାସୀମାନଙ୍କୁ ଭୟଭୀତ ଓ ପରମ ବ୍ୟାକୁଳ ଅବସ୍ଥାରେ ରହିଥିବାର ଦେଖି କୃଷ୍ଣ ନିଜର ବିକ୍ରମ ପ୍ରକାଶ କରିବାକୁ ସ୍ଥିର କଲେ ଏବଂ ସଙ୍ଗେ ସଙ୍ଗେ ନିଜର ଶରୀରକୁ ବୃଦ୍ଧି କରାଇ କାଳୀୟର ବନ୍ଧନରୁ ନିଜକୁ ମୁକ୍ତ କଲେ । କୃଷ୍ଣଙ୍କୁ ବନ୍ଧନମୁକ୍ତ ହୋଇଥିବା ଦେଖି କାଳୀୟ ସର୍ପ କ୍ରୋଧରେ ଘନ ଘନ ଦୀର୍ଘ ନିଶ୍ୱାସମାନ ତ୍ୟାଗ କରି କରି କୃଷ୍ଣଙ୍କୁ ଏକ ଲୟରେ କିଛି ସମୟ ଚାହିଁ ରହିଲା । ସେତେବେଳେ ତା'ର ଜିହ୍ୱାରୁ ଅଗ୍ନିସ୍ଫୁଲିଙ୍ଗ ପରି ପ୍ରବଳ ବିଷ କ୍ଷରିତ ହେଉଥାଏ । କାଳୀୟକୁ ସେପରି ଅବସ୍ଥାରେ ରହିଥିବାର ଦେଖି, କାଳୀୟକୁ ଆଉ ଦଂଶନ କରିବାର ସୁଯୋଗ ନ ଦେବା ନିମନ୍ତେ କୃଷ୍ଣ ହ୍ରଦରେ ଇତସ୍ତତଃ ସନ୍ତରଣ କରିବାକୁ ଲାଗିଲେ । କାଳୀୟନାଗ କୃଷ୍ଣଙ୍କୁ ଦଂଶନ କରିବାକୁ ବହୁ ଚେଷ୍ଟା କରି ବ୍ୟର୍ଥ

ହେଲ ଏବଂ ଇତସ୍ତତଃ ବିଚରଣ କରି କାଳୀୟନାଗ ଅବଶେଷରେ କ୍ଳାନ୍ତ ହୋଇପଡ଼ିଲା । କୃଷ୍ଣ ସେହି ସୁଯୋଗରେ ନିଜର ହସ୍ତଦ୍ୱାରା କାଳୀୟର ମସ୍ତକକୁ ଅବନତ କରି ତା'ର ମସ୍ତକ ଉପରେ ନିଜେ ଆରୋହଣ କରି ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ । ଗରୁଡ଼ ପୃଷ୍ଠରେ ବିଷ୍ଣୁ ଆରୋହଣ କରି ବିଚରଣ କଲାପରି କାଳୀୟନାଗର ମସ୍ତକରେ କୃଷ୍ଣଙ୍କର ଅବସ୍ଥାନ ସେହିପରି ଶୋଭା ପାଉଥିଲା ।

ବିଷଧର କାଳୀୟନାଗକୁ କୃଷ୍ଣ ବଶୀଭୂତ କରିଥିବାର ଦେଖି ଦେବ, ଗନ୍ଧର୍ବ, ଯକ୍ଷ, କିନ୍ନର, ସିଦ୍ଧ, ଚାରଣମାନେ ବାଦ୍ୟଧ୍ୱନି କରି ଆକାଶରୁ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ ଓ ଦିବ୍ୟସଙ୍ଗୀତମାନ ଗାନ କଲେ ।

କାଳୀୟନାଗର ମସ୍ତକର ସଂଖ୍ୟା ଏକଶତ ଥିଲା । କୃଷ୍ଣ ତା'ର ମସ୍ତକ ଉପରେ ନୃତ୍ୟ କରିବାରୁ ନୃତ୍ୟ ଜନିତ ପଦାଘାତରେ କାଳୀୟନାଗ ଅତ୍ୟନ୍ତ ଆହତ, ପୀଡ଼ିତ ଓ କ୍ଳାନ୍ତ ହୋଇପଡ଼ିଲା ଏବଂ ବିଷ ନିକ୍ଷେପ କରିବା ପରିବର୍ତ୍ତେ ରକ୍ତ ବାନ୍ତି କରିବାକୁ ଲାଗିଲା । ସେ ବୁଝିପାରିଲା ଯେ, କୃଷ୍ଣ ସାମାନ୍ୟ ଗୋପବାଳକ ନୁହନ୍ତି । ସେ ନିଶ୍ଚୟ ମହାପରାକ୍ରମଶାଳୀ ଚରାଚରଗୁରୁ ପରମ ପୁରୁଷ ହରି । ଯାହାଙ୍କ ଉଦର ମଧ୍ୟରେ ଅନନ୍ତ କୋଟି ବ୍ରହ୍ମାଣ୍ଡ ବିଦ୍ୟମାନ ରହିଛି, ସେହି ପରମ ପୁରୁଷ କୃଷ୍ଣଙ୍କର ଶରୀରର ଭାର ବହନ କରିବା କାଳୀୟନାଗ ପକ୍ଷରେ ସମ୍ଭବ ହେଲା ନାହିଁ । ସେ ଅବସନ୍ନ ହୋଇପଡ଼ିଲା ଓ ତା'ର ଶତମୁଖରୁ ଅବିଶ୍ରାନ୍ତ ଭାବରେ ରକ୍ତ ବମନ ହେଉଥାଏ ।

କାଳୀୟ ସର୍ପର ସେହି ଶୋଚନୀୟ ଦୁର୍ଦ୍ଦଶା ଅବଲୋକନ କରି, ଶିଶୁଙ୍କୁ ଦେଖିଲେ କୃଷ୍ଣଙ୍କ ହୃଦୟରେ ନିଶ୍ଚୟ ଦୟା ସଞ୍ଚାର ହେବ ବୋଲି ଭାବି କାଳୀୟ ନାଗର ପତ୍ନୀମାନେ ନିଜ ନିଜର କନ୍ଦନରତ ଶିଶୁମାନଙ୍କୁ ସଙ୍ଗରେ ନେଇ କୃଷ୍ଣଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ବିନୀତ ଭାବରେ ପ୍ରାର୍ଥନା କରିଲେ, ପ୍ରଭୁ, ଦୁଷ୍ଟଦଳନ ଓ ସନ୍ଥପାଳନ ନିମନ୍ତେ ଆପଣ ଯୁଗେ ଯୁଗେ ଅବତାର ଗ୍ରହଣ କରିଥାନ୍ତି, ତେଣୁ ଏହି ଦୁଷ୍ଟସ୍ୱଭାବସମ୍ପନ୍ନ କାଳୀୟ ନାଗ ପ୍ରତି ଆପଣ ସମୁଚିତ ଦଣ୍ଡବିଧାନ କରିଅଛନ୍ତି । ଏହି ଦଣ୍ଡବିଧାନ ସେ କାଳୀୟର ଆତ୍ମକୃତ ପାପ ପାଇଁ ଉପଯୁକ୍ତ ପ୍ରାୟଶ୍ଚିତ

କରିବାର ପଥକୁ ସୁଗମ କରିଅଛନ୍ତି, ଏଥିରେ ସନ୍ଦେହ ନାହିଁ । ଆପଣଙ୍କ ପ୍ରଦତ୍ତ ଏହି ଶାସ୍ତି ତା'ପ୍ରତି ଯେପରି କଲ୍ୟାଣପ୍ରଦ ସେହିପରି ମଧ୍ୟ ନାଯ୍ୟୋଚିତ । କାଳୀୟ ପ୍ରତି ଆପଣ ଏପରି ବ୍ୟବହାର କରିବାଟା ଅପାତ ଦୃଷ୍ଟିରେ ଶତ୍ରୁତାମୂଳକ ବୋଲି ପ୍ରତୀୟମାନ ହେଲେ ମଧ୍ୟ ଏହା ଦ୍ୱାରା କାଳୀୟ ତଥା ଆମ୍ଭମାନଙ୍କ ପାଇଁ ଆପଣ ଅଶେଷ କରୁଣା ପ୍ରକାଶ କରିଅଛନ୍ତି । କାଳୀୟ ତଥା ଆମ୍ଭେମାନେ ଯେ ଦୁଷ୍ଟ ଓ ପାପୀ ଏଥିରେ ସନ୍ଦେହ ନାହିଁ, କାରଣ ତା' ନ ହୋଇଥିଲେ ଆମ୍ଭେମାନେ ଏହି ସର୍ପଜନ୍ମ ଲାଭ କରି ନ ଥାନ୍ତୁ । ଆପଣଙ୍କ ହସ୍ତରେ ଦଣ୍ଡିତ ବ୍ୟକ୍ତିର ସମସ୍ତ ପାପ ପ୍ରକ୍ଷାଳିତ ହୋଇଥାଏ, ତେଣୁ ଆପଣଙ୍କର ଏହି ଦଣ୍ଡବିଧାନ କାଳୀୟକୁ ବହୁ ସୌଭାଗ୍ୟର ଅଧିକାରୀ କରାଇଅଛି । ସମ୍ଭବତ ବହୁ ଜନ୍ମର ତପସ୍ୟା ଫଳରେ ସେ ଏପରି ବିରଳ ସୌଭାଗ୍ୟ ଲାଭ କଲା । ସମଗ୍ର ଜୀବନ ଆପଣଙ୍କର ସେବା କରି ମଧ୍ୟ ଆପଣଙ୍କର ଚରଣଧୂଳି ଲାଭ କରିବା ଜଗନ୍ମାତା ଲକ୍ଷ୍ମୀଙ୍କ ପକ୍ଷରେ ସମ୍ଭବ ନ ହେଉଥିଲାବେଳେ, କି ପୁଣ୍ୟ ବଳରେ ଏହି ପରମପାପୀ କାଳୀୟ ସେହି ବିରଳ ଚରଣରଜ ଲାଭ କରିବାର ସୌଭାଗ୍ୟ ଅର୍ଜନ କଲା, ଆମ ପକ୍ଷରେ ତାହା ବୁଝିବା ଦୁରୂହ ହୋଇପଡ଼ୁଛି । ଆପଣଙ୍କର ପବିତ୍ର ଚରଣରଜ ଲାଭ କରିବା ତୁଳନାରେ ସମଗ୍ର ପୃଥିବୀର ରାଜପଦ, ସ୍ୱର୍ଗପଦ, ବ୍ରହ୍ମପଦ, ସର୍ବଯୋଗସିଦ୍ଧି ଏବଂ ପୁନର୍ଜନ୍ମ ଲାଭ ଅତ୍ୟନ୍ତ ତୁଚ୍ଛ । ଆଜି ବ୍ରହ୍ମାଦି ଦେବଗଣଙ୍କର ଦୁଷ୍ପ୍ରାପ୍ୟ ସେହି ପରମପବିତ୍ର ଚରଣରଜକୁ ମସ୍ତକରେ ଧାରଣ କରିବାର ସୌଭାଗ୍ୟ ଏହି ମହାପରାଧୀ ତମଗୁଣୋଦ୍‌ଭବ କ୍ରୋଧସର୍ବସ୍ୱ ଏହି ନାଗରାଜ କାଳୀୟ ଲାଭ କରିଅଛି । ପ୍ରଭୁ, ଆପଣ ଅନନ୍ତ, ଅଚିନ୍ତ୍ୟ, ସକଳ ଐଶ୍ବର୍ଯ୍ୟସମ୍ପନ୍ନ, ସକଳଜୀବର ପରମ ଆଶ୍ରୟଦାତା, ପ୍ରକୃତିର ଅତୀତ, ନିର୍ବିକାର, ସ୍ୱୟଂ ପରମାତ୍ମା । ଆପଣଙ୍କୁ ଆମେ ନାଗପତ୍ନୀମାନେ ବାରମ୍ବାର ନମସ୍କାର କରୁଅଛୁ । ଆପଣ କାଳସ୍ୱରୂପ, ବିଶ୍ୱମୟ, ବିଶ୍ୱରୂପ, ଅଖିଳବିଶ୍ୱର ସ୍ରଷ୍ଟା, ଦ୍ରଷ୍ଟା ଓ କର୍ତ୍ତା । ଆପଣ ଦେଶ-କାଳ-ପାତ୍ରର ଅତୀତ । ଆପଣଙ୍କୁ ନମସ୍କାର । ଆପଣ ସମସ୍ତ ଶାସ୍ତ୍ରର ଜନକ ଏବଂ ପ୍ରତ୍ୟକ୍ଷ ଅପ୍ରତ୍ୟକ୍ଷ ସମସ୍ତ ପ୍ରମାଣର ଭିତ୍ତିସ୍ୱରୂପ ଆପଣ ସ୍ୱତଃସିଦ୍ଧ । ଆପଣଙ୍କୁ ବାରମ୍ବାର ନମସ୍କାର ଜଣାଉଛୁ । ପ୍ରଭୁ ! ଆପଣ ଆଖିଳଜଗତର ସୃଷ୍ଟି-ପାଳନ ସଂହାରକର୍ତ୍ତା ଓ ଏହି ବିଶ୍ୱର ସକଳ ପ୍ରାଣୀଙ୍କୁ ସୃଷ୍ଟି କରିଅଛନ୍ତି । ଏହି କାଳୀୟନାଗ ଦୁଷ୍ଟ

ହେଲେ ମଧ୍ୟ ଆପଣଙ୍କର ପୁତ୍ର-ତୁଲ୍ୟ; ତେଣୁ ପୁତ୍ରର ପ୍ରଥମ ଅପରାଧକୁ ପିତାମାତା ମାର୍ଜନା କଲାପରି ଆପଣ କାଳୀୟକୁ ତା'ର ଦୁଷ୍କୃତ ପାଇଁ କ୍ଷମା କରନ୍ତୁ । କାଳୀୟ ନାଗ ତାମସ-ସ୍ୱଭାବସମ୍ପନ୍ନ, ଜ୍ଞାନହୀନ ସେଥିପାଇଁ ସେ ଆପଣଙ୍କର ଏହି ଅଲୌକିକ ଲୀଳା ଦର୍ଶନ କରି ମଧ୍ୟ ଆପଣଙ୍କୁ ଚିହ୍ନି-ପାରି ନାହିଁ । ତା'ର ଅଜ୍ଞାନକୃତ ସେହି ଅପରାଧକୁ ମଧ୍ୟ ଦୟାକରି ମାର୍ଜନା କରନ୍ତୁ । କାଳୀୟ ପ୍ରତି କରୁଣା ପ୍ରକାଶ ନ କଲେ ତା'ର ମୃତ୍ୟୁ ଅନିବାର୍ଯ୍ୟ ହୋଇପଡ଼ିବ । ପ୍ରଭୁ, ସ୍ୱାମୀଙ୍କର ମୃତ୍ୟୁ ଘଟିଲେ ଆମ୍ଭେମାନେ ଅନାଥିନୀ ହେବୁ ଏବଂ ଆମର ଜୀବନ ଦୁର୍ବିସହ ହୋଇଉଠିବ । ଆମ ପ୍ରତି କରୁଣା ପରବଶ ହୋଇ କାଳୀୟର ପ୍ରାଣସଂହାର କରିବା ଚିନ୍ତା ଓ ଚେଷ୍ଟାରୁ ନିବୃତ୍ତ ରହନ୍ତୁ । ଆମ୍ଭେମାନେ ଆପଣଙ୍କର ଦାସୀ ସ୍ୱରୂପ । ଆପଣଙ୍କର ଆଦେଶକୁ ପରମ ଶ୍ରଦ୍ଧାର ସହିତ ପାଳନ କରିବାକୁ ଆମ୍ଭେମାନେ ପ୍ରସ୍ତୁତ ।'

ନାଗ-ପତ୍ନୀମାନଙ୍କର ସେହି ସ୍ତୁତିରେ ପ୍ରସନ୍ନ ହୋଇ କୃଷ୍ଣ ନିଜର ଶରୀର ଭାର ଓ ପଦାଘାତରେ ମୂର୍ଚ୍ଛିତ ପ୍ରାୟ କାଳୀୟନାଗର ମସ୍ତକରୁ ଅବତରଣ କରି କାଳୀୟର ସମ୍ମୁଖରେ ଅବସ୍ଥାନ କଲେ । କାଳୀୟନାଗ ପରମ ବିନୀତ ଭାବରେ ଏବଂ ବହୁ କଷ୍ଟରେ ଧୀରେ ଧୀରେ କୃଷ୍ଣଙ୍କୁ କହିଲା, 'ପ୍ରଭୁ, ନିଜର ସ୍ୱଭାବ ପରିହାର କରିବା ଜୀବ ପକ୍ଷରେ ଅତ୍ୟନ୍ତ ଦୁରୂହ ହୋଇଥାଏ । ମୁଁ ଜନ୍ମାବଧି ଦୁଷ୍ଟ, ଜ୍ଞାନଶୂନ୍ୟ, କ୍ରୋଧପରତନ୍ତ୍ର ଓ ହିଂସାପ୍ରିୟ । ମୋ ପ୍ରତି ଦୟାପରବଶ ହୋଇ ମୋତେ ଆଶୀର୍ବାଦ କରନ୍ତୁ, ଯେପରି ଏହି ଦୁର୍ନିବାର୍ଯ୍ୟ ଦୁଷ୍ଟସ୍ୱଭାବରୁ ମୁଁ ମୁକ୍ତ ଲାଭ କରେ ।'

ଜଗତର କଲ୍ୟାଣ ନିମନ୍ତେ ଯେଉଁ ଭଗବାନ ମର୍ତ୍ତ୍ୟରେ ମନୁଷ୍ୟ ଶରୀର ଧାରଣ କରି ଜନ୍ମଗ୍ରହଣ କରିଅଛନ୍ତି ସେହି କୃଷ୍ଣ କାଳୀୟ ସ୍ତୁତିରେ ପ୍ରସନ୍ନ ହୋଇ କହିଲେ, 'କାଳୀୟ, ତୋର ବିଷରେ ଏହି ଯମୁନାର ଜଳ ବିଷମୟ ହୋଇ ବ୍ୟବହାର ଅନୁପଯୁକ୍ତ ହୋଇଅଛି । ତେଣୁ ଯମୁନାର ଜଳକୁ ତୋର ବିଷପ୍ରଭାବରୁ ମୁକ୍ତ କରି ଏହାକୁ ପ୍ରାଣୀମାନଙ୍କର ବ୍ୟବହାର ଉପଯୋଗୀ କରିବାକୁ ହେଲେ, ତୋତେ ସପରିବାର ଏହି ହ୍ରଦକୁ ତ୍ୟାଗ କରିବାକୁ ପଡ଼ିବ । ଯେଉଁ ବ୍ୟକ୍ତି ତୋତେ ମୁଁ ଦେଉଥିବା

ଏହି ଆଦେଶରେ କଥା ଶ୍ରବଣ କରିବ, ତା'ରୁ ସର୍ପ କୌଣସି ଅନିଷ୍ଟ କରିପାରିବ ନାହିଁ । ଏହି ହ୍ରଦର ଜଳରେ ଯେଉଁମାନେ ସ୍ନାନ ଓ ତର୍ପଣ କରିବେ ଏବଂ ମୋର ପୂଜା କରିବେ ସେମାନେ ସମସ୍ତ ପାପରୁ ତତ୍‌କ୍ଷଣାତ୍ ମୁକ୍ତ ହେବେ । ଗରୁଡ଼ ଭୟରେ ତୁ ରମଣକ ଦ୍ୱୀପ ପରିତ୍ୟାଗ କରି ଏହି ହ୍ରଦକୁ ଆସିଥିଲୁ, ମୁଁ ତୋତେ ଅଭୟ ପ୍ରଦାନ କରୁଅଛି, ଆଉ ଗରୁଡ଼ ତୋର କୌଣସି ଅନିଷ୍ଟ କରିବ ନାହିଁ ? କାରଣ ତୁ ମୋର ପଦସ୍ପର୍ଶ ଲାଭକରିବାର ସୌଭାଗ୍ୟ ଅର୍ଜନ କରିଅଛୁ ।'

କୃଷ୍ଣଙ୍କଠାରୁ ଏହି ଆଦେଶ ଲାଭ କଲା ପରେ କାଳୀୟନାଗ ନିଜର ପୁତ୍ରକଳତ୍ର ସହ ପରମଆନନ୍ଦରେ ଗରୁଡଧ୍ୱଜ କୃଷ୍ଣଙ୍କୁ ପୂଜାର୍ଚ୍ଚନା କରି ଓ ତାଙ୍କୁ ପରିଶେଷରେ ପରିକ୍ରମା କରି ପ୍ରଣାମ କଲା ଓ ଯମୁନାର ସେହି ହ୍ରଦକୁ ପରିତ୍ୟାଗ କରି ସମୁଦ୍ର ମଧ୍ୟସ୍ଥିତ ରମଣକ ଦ୍ୱୀପକୁ ପ୍ରସ୍ଥାନ କଲା ।

କୃଷ୍ଣଙ୍କର ଅଲୌକିକ କୃପାବଳରେ ଯମୁନା ଅନ୍ତର୍ଗତ ସେହି କାଳୀୟ ହ୍ରଦର ଜଳ କେବଳ ବିଷମୁକ୍ତ ନୁହେଁ ଅମୃତ ତୁଲ୍ୟ ମଧୁର ହୋଇଗଲା ।

କାଳୀୟ-ଦଳନ ବୃତ୍ତାନ୍ତ ବର୍ଣ୍ଣନା କରୁ କରୁ ଶୁକଦେବ କହିଲେ, 'ମହାରାଜ, ରମଣକ ଦ୍ୱୀପରେ ପୂର୍ବେ କାଳୀୟ ବାସକରୁଥିବାବେଳେ ସେହି ଦ୍ୱୀପର ଲୋକମାନଙ୍କୁ ସେ ନିୟମିତ ଭକ୍ଷଣ କରୁଥିଲା । ସେଥିପାଇଁ ସେହି ଦ୍ୱୀପର ଅଧିବାସୀମାନେ କାଳୀୟର ଭୟରେ ଭୀତତ୍ରସ୍ତ ହୋଇ ପ୍ରାଣରକ୍ଷା କରିବା ନିମନ୍ତେ ଭଗବାନ ବିଷ୍ଣୁଙ୍କର ବାହନ ଗରୁଡ଼ଙ୍କୁ ପୂଜା ଓ ପ୍ରାର୍ଥନା କରି ସନ୍ତୁଷ୍ଟ କଲେ । ଗରୁଡ଼ଙ୍କ ପ୍ରତି କାଳୀୟନାଗର ମଧ୍ୟ ହେୟଜ୍ଞାନ ଥିଲା । ଲୋକମାନଙ୍କୁ ରକ୍ଷା କରିବା ନିମନ୍ତେ ଗରୁଡ଼ ସେହି କାଳୀୟ ସର୍ପକୁ ଆକ୍ରମଣ କରିଥିଲେ, ଫଳରେ ଗରୁଡ଼ଙ୍କ ନିକଟରେ କାଳୀୟ ପରାସ୍ତ ହୋଇ ଆତ୍ମରକ୍ଷା କରିବା ନିମନ୍ତେ ରମଣକଦ୍ୱୀପ ପରିତ୍ୟାଗ କରି ଯମୁନାହ୍ରଦରେ ଆସି ବାସ କରୁଥିଲା । ଜଳ ମଧ୍ୟରେ ପ୍ରବେଶ କଲେ ମୃତ୍ୟୁ ବରଣ କରିବ ବୋଲି ଗରୁଡ଼ଙ୍କ ପ୍ରତି ଋଷି ଅଭିଶାପ ଥିବାରୁ କାଳୀୟ ଜଳ ମଧ୍ୟରେ ଆତ୍ମଗୋପନ କରି ରହିବାକୁ ଶ୍ରେୟ ମନେ କରିଥିଲା ଏବଂ ତଦନୁସାରେ ଯମୁନାର ସେହି ହ୍ରଦରେ ବାସ କରୁଥିଲା ।'

କାଳୀୟ ହ୍ରଦରୁ କୃଷ୍ଣ ଅକ୍ଷତ ଶରୀରରେ କୂଳକୁ ଫେରି ଆସିବାରୁ ନନ୍ଦ ଯଶୋଦା ତଥା ଗୋପଗୋପାଙ୍ଗନାମାନେ ଅତ୍ୟନ୍ତ ଆନନ୍ଦିତ ହେଲେ । ଯଶୋଦା ଆନନ୍ଦର ଆତିଶଯ୍ୟରେ କୃଷ୍ଣଙ୍କୁ ଆଲିଙ୍ଗନ କରି ସ୍ନେହ କଲେ । ଯଶୋଦାଙ୍କ ନୟନରୁ ଆନନ୍ଦାଶ୍ରୁ ବର୍ଷିତ ହେଉଥାଏ । କୃଷ୍ଣଙ୍କର ଦୁର୍ଦ୍ଦଶା ଦର୍ଶନ କରି ଯେଉଁ ଧେନୁବତ୍ସ ଓ ତରୁଲତା ସକଳ ଶୋକଭରରେ ମୂର୍ଚ୍ଛିତ ହୋଇ ପଡ଼ିଥିଲେ, କୃଷ୍ଣଙ୍କ ଆଗମନରେ ସେମାନେ ଉତ୍ଫୁଲ୍ଲିତ ହେଲେ ।

କାଳୀୟ ହ୍ରଦରୁ କୃଷ୍ଣଙ୍କର ପ୍ରତ୍ୟାଗମନ ବେଳକୁ ବହୁ ସମୟ ଅତିବାହିତ ହୋଇଯାଇ ରାତି ହୋଇଯାଇଥିଲା । ଯମୁନା କୂଳରୁ ବୃନ୍ଦାବନ ବହୁ ଦୂରବର୍ତ୍ତୀ ଥିବାରୁ ସେହି ରାତିରେ ଗୋପଗୋପୀମାନେ ବୃନ୍ଦାବନକୁ ପ୍ରତ୍ୟାଗମନ କରିବାକୁ ଉଚିତ ମନେକଲେ ନାହିଁ । ଯମୁନା-କୂଳସ୍ଥ ଏକ ଅରଣ୍ୟରେ ରାତ୍ରିଯାପନ କରିବାକୁ ସ୍ଥିରକରି ଧେନୁବତ୍ସାଙ୍କ ସହିତ ରହିଲେ । ଗୋପବାସୀମାନେ ରାତିରେ ଗଭୀର ନିଦ୍ରାରେ ଆଚ୍ଛନ୍ନ ଅଛନ୍ତି, ଏହି ସମୟରେ ପ୍ରବଳ ଦାବାନଳରେ ଆକ୍ରାନ୍ତ ହୋଇ ସମଗ୍ର ବନଟି ଜଳିବାକୁ ଲାଗିଲା । ଅଗ୍ନିଦାଉରୁ ପରିତ୍ରାଣ ଲାଭ କରିବାର ଅନ୍ୟ କୌଣସି ଉପାୟ ନ ଦେଖି ଗୋପଗୋପୀମାନେ କୃଷ୍ଣଙ୍କର ଶରଣାପନ୍ନ ହେଲେ ଏବଂ ଅତ୍ୟନ୍ତ ବ୍ୟାକୁଳ ହୋଇ କହିଲେ, 'ହେ ଅଲୌକିକ ଶକ୍ତିସମ୍ପନ୍ନ କୃଷ୍ଣ, 'ହେ ବଳରାମ ! ଏହି ପ୍ରଳୟଙ୍କରୀ ଅଗ୍ନି ଆମ୍ଭମାନଙ୍କୁ ଗ୍ରାସ କରିବାକୁ ବସିଅଛି । ପ୍ରଭୁ, ତୁମେ ସର୍ବକର୍ମସମର୍ଥ । ତୁମେ ଆମକୁ ଏହି ପ୍ରବଳ ଦାବାନଳର ଆକ୍ରମଣରୁ ରକ୍ଷାକର ।'

ନିଜର ଆତ୍ମୀୟ ସ୍ୱଜନଙ୍କର ବ୍ୟାକୁଳ ନିବେଦନ ଶ୍ରବଣ କରି ଅନନ୍ତ ଶକ୍ତିଧର ଜଗଦୀଶ୍ୱର କୃଷ୍ଣ ସମସ୍ତଙ୍କ ସମ୍ମୁଖରେ ସେହି ପ୍ରଳୟଙ୍କରୀ ଦାବାନଳକୁ ପାନ କରିଥିଲେ; ତଦ୍ଦ୍ୱାରା ଅଗ୍ନି ନିର୍ବାପିତ ହେବାରୁ ଗୋପଗୋପୀମାନେ ଧେନୁବତ୍ସା ସହ ନିଶ୍ଚିତ ମୃତ୍ୟୁରୁ ପରିତ୍ରାଣ ଲାଭ କରିଥିଲେ ।

ରାତି ପାହିବାରୁ କୃଷ୍ଣଙ୍କ ଗହଣରେ ସମସ୍ତେ ଗୋକୁଳକୁ ଫେରି ଆସିଥିଲେ ।

ଦିନ ପରେ ଦିନ ଅତିବାହିତ ହେବାକୁ ଲାଗିଲା ।

ଗ୍ରୀଷ୍ମଋତୁ ହୋଇଥାଏ । ବଦାଘରଂ ସ୍ପର୍ଶ ବୃନ୍ଦାବନକୁ ସ୍ୱର୍ଗତୁଲ୍ୟ ରମଣୀୟ କରିଥାଏ । ବିଭିନ୍ନ ପ୍ରକାରର ପୁଷ୍ପ, ବୃକ୍ଷ ଓ ଲତା, ହ୍ରଦ, ଝରଣା ସମାକୀର୍ଣ୍ଣ, ବିଭିନ୍ନ ପ୍ରକାରର ପକ୍ଷୀକୂଜନରେ ମୁଖରିତ ବୃନ୍ଦାବନରେ ସତେ ଯେପରି ଚିରବସନ୍ତ ବିରାଜମାନେ କରୁଥିଲା । ଗୋପବାଳକମାନଙ୍କ ପକ୍ଷରେ ବୃନ୍ଦାବନଟି ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଥାଏ । ଗୋଚାରଣ କଲାବେଳେ ବୃନ୍ଦାବନର ଆରଣ୍ୟକ ଶୋଭାର ଦର୍ଶନରେ ସେମାନେ ଆତ୍ମହରା ହୋଇଯାଉଥାନ୍ତି । ଗୋ ଚାରଣ ସମୟରେ ଆନନ୍ଦରେ ନୃତ୍ୟଗୀତାଦି କରି ସେମାନେ ଆନନ୍ଦ ବିଭୋର ହୋଇପଡୁଥାନ୍ତି । କୃଷ୍ଣ ମଧ୍ୟ ସେମାନଙ୍କ ସଙ୍ଗରେ ନୃତ୍ୟ କରୁଥିଲେ । କୃଷ୍ଣଙ୍କର ନୃତ୍ୟ ମଧ୍ୟ ବିଶେଷ ଚିତ୍ତାକର୍ଷକ ଥିଲା । ସାଙ୍ଗସାଥୀମାନେ କୃଷ୍ଣଙ୍କ ନୃତ୍ୟର ଭୂରି ଭୂରି ପ୍ରଶଂସା କରୁଥିଲେ ।

ଦିନେ ଗୋପବାଳକଙ୍କ ସହିତ ମିଶି କୃଷ୍ଣ ଓ ବଳରାମ ସମ୍ମିଳିତ ନୃତ୍ୟ କରୁଥିବା ଏହି ସମୟରେ ପ୍ରଲମ୍ବ ନାମକ ଏକ ଅସୁର ସେହି କ୍ରୀଡ଼ା ସ୍ଥାନରେ ଆସି ଉପସ୍ଥିତ ହେଲା । ସେ କୃଷ୍ଣ ଓ ବଳରାମଙ୍କୁ ସଂହାର କରିବା ନିମନ୍ତେ ଗୋପବାଳକ ପରି ଏକ ଛଦ୍ମରୂପ ଧାରଣ କରି ସମସ୍ତଙ୍କ ଅଲକ୍ଷ୍ୟରେ ଗୋପବାଳକଙ୍କ ମେଳରେ ପଶି କୃଷ୍ଣ ଓ ବଳରାମଙ୍କ ସହିତ ନୃତ୍ୟ କରିବାକୁ ଲାଗିଲା ଏବଂ ଉପଯୁକ୍ତ ସୁଯୋଗର ଅପେକ୍ଷାରେ ରହିଲା । ନୃତ୍ୟ କରୁ କରୁ ହଠାତ୍ ପ୍ରଲମ୍ବାସୁର ବଳରାମଙ୍କୁ ଜୋରକରି ଧରିନେଇ ଦ୍ରୁତଗତିରେ ପଳାୟନ କରିବାକୁ ଲାଗିଲା । ଅସୁର ଦ୍ୱାରା ଆକ୍ରାନ୍ତ ହୋଇଛନ୍ତି ଜାଣି ବଳରାମ ନିଜ ଶରୀର ଓଜନକୁ ଅସ୍ୱାଭାବିକ ପ୍ରକାରେ ବୃଦ୍ଧି କରାଇଲେ । ପ୍ରଲମ୍ବାସୁର ପକ୍ଷରେ ବଳରାମଙ୍କୁ ନେଇ ପଳାଇବା ତେଣୁ ଅତି ଦୁଷ୍କର ହେଲା । ସେହି ଅବସରରେ ପ୍ରଲମ୍ବାସୁରର ମସ୍ତକରେ ବଳରାମ ମୁଷ୍ଟିରେ ଆଘାତ କଲେ । ସେହି ଆଘାତ ବେଗରେ ପ୍ରଲମ୍ବାସୁର ରକ୍ତବାନ୍ତି କରି ମୃତ୍ୟୁ ବରଣ କଲା । ପ୍ରଲମ୍ବାସୁରକୁ ଦେଖି ଗୋପବାଳକମାନେ ଯେତିକି ବିସ୍ମିତ ହୋଇଥିଲେ ତା'ର ମୃତ୍ୟୁରେ ତତୋଽଧିକ ଆନନ୍ଦିତ ହେଲେ ଏବଂ ବଳରାମଙ୍କର ଅପୂର୍ବ ଶକ୍ତିକୁ ପ୍ରଶଂସା କରିବାକୁ ଲାଗିଲେ । ଗୋପବାଳକମାନେ ଅରଣ୍ୟରେ କ୍ରୀଡ଼ା କରୁଥିବା

ସମୟରେ ଏକ ପ୍ରଚଣ୍ଡ ଦାବାନଳ ଦେଖାଦେଲା ଏବଂ ଗୃହ୍ଣ ଗୃହ୍ଣ ପ୍ରାୟ ସମଗ୍ର ଅରଣ୍ୟ ଧୁ ଧୁ ହୋଇ ଜଳିବାକୁ ଲାଗିଲା । ଅଗ୍ନ୍ୟୁତ୍ପାତରୁ ରକ୍ଷା ପାଇବା ନିମନ୍ତେ ଗୋପବାଳକମାନେ କୃଷ୍ଣଙ୍କର ଶରଣାପନ୍ନ ହେଲେ ଏବଂ ନିବେଦନ କଲେ, 'ସାଉଶିରୋମଣି କୃଷ୍ଣ ଓ ବଳରାମ, ଆମ୍ଭମାନଙ୍କୁ ଏହି ପ୍ରଚଣ୍ଡ ଦାବାନଳରୁ ରକ୍ଷା କର । ରକ୍ଷା କର ।' ବନ୍ଧୁମାନଙ୍କର କାତରୋକ୍ତି ଶ୍ରବଣ କରି କୃଷ୍ଣ କହିଲେ, 'ତୁମ୍ଭେମାନେ ଭୟ କର ନାହିଁ । ନିଜ ନିଜର ନୟନ ମୁଦ୍ରିତ କରି ଦଣ୍ଡାୟମାନ ହୁଅ । ମୁଁ ଅଗ୍ନିକୁ ନିର୍ବାପିତ କରିବାକୁ ଚେଷ୍ଟା କରୁଅଛି ।' ଏହା କହିବାରୁ କୃଷ୍ଣଙ୍କ କଥାନୁସାରେ ସମସ୍ତେ ଆଖି ବୁଜିଲେ, କୃଷ୍ଣ ନିଜର ମୁଖ ଦ୍ୱାରା ସମଗ୍ର ଅରଣ୍ୟବ୍ୟାପ୍ତ ସେହି ପ୍ରଚଣ୍ଡ ଦାବାନଳକୁ ସମ୍ପୂର୍ଣ୍ଣ ପାନ କରିଦେଲେ, ଫଳରେ ଅଗ୍ନି ନିର୍ବାପିତ ହେଲା । ସମସ୍ତେ ଚକ୍ଷୁ ଉନ୍ମୋଚିତ କରି ସମସ୍ତ ଅଗ୍ନି ନିର୍ବାପିତ ହୋଇଥିବାର ଦେଖି ବିସ୍ମିତ ଏବଂ ଆନନ୍ଦିତ ହୋଇଥିଲେ । ପରେ କୃଷ୍ଣଙ୍କ ସହିତ ଗୋପବାଳକମାନେ ଗୃହକୁ ଫେରିଆସି ସେହି ଅଦ୍ଭୁତ ଘଟଣାମାନ ଘରେ ବର୍ଣ୍ଣନା କଲେ ଏବଂ ତାହା ଶୁଣି ଗୋପଗୋପୀମାନେ କୃଷ୍ଣଙ୍କୁ ସାକ୍ଷାତ୍ ପରମେଶ୍ୱର ବୋଲି ମନେକଲେ ।

ଏହିପରି ଭାବରେ କୃଷ୍ଣଙ୍କର ଅଲୌକିକ ଲୀଳାମାନ ଦର୍ଶନ ଓ ଅନୁଭବ କରି ସମଗ୍ର ବ୍ରଜବାସୀମାନେ ପରମ ଆନନ୍ଦରେ କାଳାତିପାତ କରୁଥିଲେ । ଧୀରେ ଧୀରେ ଗ୍ରୀଷ୍ମ ପରେ ବର୍ଷା ଋତୁ ଅତିବାହିତ ହୋଇ-ଯିବା ପରେ ପରମ ଉପଭୋଗ୍ୟ ଶରତ ଋତୁ ଆସି ଉପସ୍ଥିତ ହେଲା ।



# ସୁମଧୁର ବଂଶୀ ସ୍ୱନ

ଶରତଋତୁର କାଉଁଶ ସ୍ପର୍ଶ ସମଗ୍ର ବସୁଧାକୁ ବିଶେଷକରି ପୁଷ୍ପଲତା ପରିପୂର୍ଣ୍ଣ ବୃନ୍ଦାବନକୁ ଅନିର୍ବଚନୀୟ ସୁଷମାରେ ବିମଣ୍ଡିତ କରିଥିଲା ।

ସମବୟସୀ ଗୋପବାଳକମାନଙ୍କ ସହିତ କୃଷ୍ଣ ବୃନ୍ଦାବନରେ ଗୋଚାରଣ କରୁଥିବା ଅବସରରେ ନିଜର ବଂଶୀ ବାଦନ କଲେ । କୃଷ୍ଣଙ୍କର ବଂଶୀର ସେହି ସୁଲଳିତ ଓ ସୁମଧୁର ସ୍ୱର ଶ୍ରୋତାର ମନରେ ଭଗବତ-ପ୍ରେମ ଓ ମିଳନ-ଆକାଙ୍କ୍ଷା ସୃଷ୍ଟି କରିବା ନିମନ୍ତେ ଅଭିପ୍ରେତ ଥିଲା । ସେହି ଚିତ୍ତ-ଉଲ୍ଲାସକର ସୁମଧୁର ବଂଶୀ-ସ୍ୱର ଶ୍ରବଣ କରି ବ୍ରଜମଣ୍ଡଳର ଗୋପାଙ୍ଗନାମାନଙ୍କର ହୃଦୟରେ କୃଷ୍ଣଙ୍କ ପ୍ରତି ପ୍ରେମ-ଭାବର ଅପୂର୍ବ ଜାଗରଣ ଦେଖାଦେଲା ଏବଂ ସେମାନେ ଏକାନ୍ତରେ ସମବୟସୀ ସଖିମାନଙ୍କ ସହିତ କଥୋପକଥନ ପ୍ରସଙ୍ଗରେ କୃଷ୍ଣଙ୍କର ରୂପ, ଗୁଣ ଓ ସେହି ପ୍ରଭାବଶାଳୀ ବଂଶୀ-ସ୍ୱରର ଅପୂର୍ବ ମହିମା ବର୍ଣ୍ଣନା କରିବାକୁ ଲାଗିଲେ । ବଂଶୀକୁ କେନ୍ଦ୍ରକରି କୃଷ୍ଣଙ୍କ କଥା ବର୍ଣ୍ଣନା କରୁ କରୁ ଭାବବିହ୍ୱଳତାର ଆତିଶଯ୍ୟରେ କୃଷ୍ଣଙ୍କର ସର୍ବଜନଚିତ୍ତାକର୍ଷକ ରୂପ ସେମାନଙ୍କ ଦୃଷ୍ଟି ସମ୍ମୁଖରେ ଉଦ୍ଭାସିତ ହୋଇଯାଉଥିଲା ଏବଂ ସେମାନଙ୍କର ମନେ ହେଉଥିଲା ସତେ ଯେପରି ବ୍ରଜଧାମ ତ୍ୟାଗକରି ସେମାନେ ବଂଶୀବାଦନ କରୁଥିବା ସୁଦୂର ବୃନ୍ଦାବନରେ କୃଷ୍ଣଙ୍କ ନିକଟରେ ଅବସ୍ଥାନ କରି କୃଷ୍ଣଙ୍କର ଚିତ୍ତବିମୋହନ ରୂପ-ସୁଧାକୁ ପ୍ରେମୋଲ୍ଲସିତ ମାନସପଟରେ ଆକଣ୍ଠ ପାନ କରୁଅଛନ୍ତି ।

ବ୍ରଜମଣ୍ଡଳର ସୁନ୍ଦରୀ ଗୋପ ଯୁବତୀମାନେ କୃଷ୍ଣଙ୍କ ପ୍ରତି ଅପୂର୍ବ ପ୍ରୀତିଭାବାପନ୍ନ ହୋଇ ଭାବାବେଶରେ ପରସ୍ପରକୁ ଆଲିଙ୍ଗନ କରି କୁହାକୁହି ହେଲେ, 'ସଖି, ବ୍ରଜରାଜନନ୍ଦନ କୃଷ୍ଣଙ୍କର ବଂଶୀ-ବାଦନ କାଳୀନ

କଟାକ୍ଷପାତ ଓ ସୌମ୍ୟବଦନର ସୁଧାଝର ସୌନ୍ଦର୍ଯ୍ୟ ଯେଉଁମାନେ ଦେଖିବାର ସୁଯୋଗ ଲଭ କରିଅଛନ୍ତି, ସେମାନେ ବାସ୍ତବିକ ଧନ୍ୟ ! ସେମାନଙ୍କର ନୟନ ସାର୍ଥକ । ସଖି; କୃଷ୍ଣ ଓ ବଳରାମ ରଙ୍ଗବେରଙ୍ଗର ବସନ ପରିଧାନ କରି, ଶିରରେ ଆମ୍ର ମୁକୁଳ, କଣ୍ଠରେ କୁସୁମଗୁଚ୍ଛ, ଗଳରେ ବିଭିନ୍ନ କୁସୁମର ମାଳା ଓ ହସ୍ତରେ କମଳ ଧାରଣ କରି ସମବୟସୀ ଗୋପମାନଙ୍କ ଗହଣରେ ବିଚରଣ କରି ସଙ୍ଗୀତ ଗାନ ଓ ନୃତ୍ୟ କଲାବେଳେ ମନେହୁଏ ସତେ ଯେପରି ଦୁଇଜଣ ସୁନ୍ଦର ନଟ ରଙ୍ଗମଞ୍ଚରେ ନିଜର ଅଭିନବ ନୟନ-ମନଲୋଭା ନୃତ୍ୟସଙ୍ଗୀତ ପରିବେଷଣ କରୁଛନ୍ତି; ସେମାନଙ୍କର ସେତେବେଳର ଶୋଭାର କଥା ମୁଁ କ'ଣ କହିବି ? ତାହା ଅନିର୍ବଚନୀୟ । ସଖି, ଯେଉଁ କାଷ୍ଠରେ କୃଷ୍ଣଙ୍କର ଏହି ବଂଶୀଟି ନିର୍ମିତ ହୋଇଅଛି ସେ ପୂର୍ବଜନ୍ମରେ କି ତପସ୍ୟାଚରଣ କରିଥିଲା, କେଜାଣି, ଆଜି ବଂଶୀବାଦନ ସମୟରେ କୃଷ୍ଣଙ୍କର ଅଧର-ସୁଧା ବାରମ୍ବାର ପାନ କରିବାର ଅପୂର୍ବ ସୌଭାଗ୍ୟ ଲାଭ କରିଛି । ବଂଶୀର ଏହି ସୌଭାଗ୍ୟର କଥା ଭାବିଲେ ମନରେ ଈର୍ଷାଜାତ ହୁଏ । ଯେଉଁ ବୃକ୍ଷର କାଷ୍ଠରେ ଏହି ବଂଶୀଟି ନିର୍ମିତ ଏବଂ ସେହି ବୃକ୍ଷକୁ ଯେଉଁ ନଦୀ ରସପ୍ରଦାନ କରି ବୃକ୍ଷର ପରିବର୍ଦ୍ଧନରେ ସହାୟକ ହୋଇଥିଲା, ଦେଖ, ଆଜି ବଂଶୀର ସୁମଧୁର ସ୍ୱର ଶ୍ରବଣ କରି ସେହି ବୃକ୍ଷ ଓ ନଦୀ ଅପୂର୍ବ ପୁଲକରେ କିପରି ଉତ୍ଫୁଲ୍ଲିତ ହୋଇ ଉଠୁଛନ୍ତି । ସଖି, କୃଷ୍ଣଙ୍କର ପରମ ପବିତ୍ର ଓ ରମଣୀୟ ପାଦପଦ୍ମର ଚିହ୍ନ ବକ୍ଷରେ ଧାରଣ କରିବାର ସୁଯୋଗ ଲଭକରି ସମଗ୍ର ପୃଥିବୀରେ ବୃନ୍ଦାବନ ଆଜି ବୈକୁଣ୍ଠ ଅପେକ୍ଷା ଅଧିକ କୀର୍ତ୍ତିର ଅଧିକାରିଣୀ ହୋଇଅଛି । ସଖି, କୃଷ୍ଣଙ୍କର ଏହି ସୁମଧୁର ବଂଶୀ ସ୍ୱରକୁ ନବୀନ ମେଘର ମୃଦୁଗର୍ଜନ ବୋଲି ଭ୍ରମ କରି ମୟୂରମାନେ କିପରି ନୃତ୍ୟ କରୁଅଛନ୍ତି, ଦେଖ । ବନର ପଶୁପକ୍ଷୀଙ୍କୁ ଏହି ମନମୋହିନୀ ମୂର୍ଚ୍ଛନାଧ୍ୱନି କିପରି ଆହା ବିମୋହିତ କରିଅଛି । କୃଷ୍ଣଙ୍କର ଅପୂର୍ବ ବଂଶୀ ସ୍ୱରରେ ଆକୃଷ୍ଟ ହୋଇ ବନର ହରିଣୀମାନେ, ଦେଖ, କିପରି ନିର୍ଭୟ ଚିତ୍ତରେ କୃଷ୍ଣଙ୍କ ସମୀପରେ ଦଣ୍ଡାୟମାନ ହୋଇ ଏକ ଲୟରେ ଚାହିଁରହି କୃଷ୍ଣଙ୍କୁ ମନେ ମନେ ପୂଜା କରୁଅଛନ୍ତି । ହାୟ, ଧନ୍ୟ ସେମାନଙ୍କର ଜୀବନ । ଆହା, ସଖି, ଆକାଶଚାରିଣୀ ଦେବୀମାନଙ୍କର କି ଭାଗ୍ୟ ସତେ ! ଦେଖ, ନିଜ ନିଜର ସ୍ୱାମୀମାନଙ୍କର କୋଡ଼ରେ

ଅବସ୍ଥାନ କରି ଆକାଶମଣ୍ଡଳରେ ବିଚରଣ କରୁଥିବାବେଳେ କୃଷ୍ଣଙ୍କର ଚିତ୍ତଜୟୀ ବଂଶୀ ଧ୍ୱନି ଶ୍ରବଣ କରି କୃଷ୍ଣଙ୍କ ସହିତ ମିଳିତ ହେବାର ଅଦମ୍ୟ କାମନାରେ ସେମାନଙ୍କର କିପରି ଧୈର୍ଯ୍ୟଚ୍ୟୁତି ଘଟୁଛି ଓ ସେମାନଙ୍କ ମଧ୍ୟରୁ କେହି କେହି ପ୍ରଣୟାବେଗରେ ମୂର୍ଚ୍ଛିତ ହୋଇ ପଡ଼ୁଛନ୍ତି; ଫଳରେ ସେମାନଙ୍କର କବରୀ ଓ ଅଙ୍ଗମଣ୍ଡନ କରିଥିବା କୁସୁମମାନ ଭ୍ରଷ୍ଟ ଓ କଟୀବସନ ଶିଥିଳ ହୋଇପଡ଼ୁଛି । ହାୟ ! କି ଅପୂର୍ବ ସୌଭାଗ୍ୟର ସେମାନେ ଅଧିକାରିଣୀ ! କୃଷ୍ଣଙ୍କର ବଂଶୀ ସ୍ୱର ଶ୍ରବଣ କରିବାର ସୁଯୋଗ ଲାଭକରିଥିବାରୁ ବନ, ପକ୍ଷୀ, ପଶୁ ତଥା ତରୁଲତା, ନଦ ନଦୀ, ପାହାଡ଼ମାନେ ସମସ୍ତେ ଧନ୍ୟ ! ବନରେ ବାସକରୁଥିବା ଶବରରମଣୀମାନେ ମଧ୍ୟ କିଛି କମ୍ ଭାଗ୍ୟବତୀ ନୁହଁନ୍ତି ! ବନଗ୍ଭରଣ ସମୟରେ କୃଷ୍ଣଙ୍କର ପାଦ ସ୍ପର୍ଶ ଲାଭ କରିଥିବା ପୁଷ୍ପରାଗ କୁଙ୍କୁମକୁ ସେମାନେ ନେଇ ନିଜର ବଦନ ଓ କୁଚମଣ୍ଡଳରେ ପ୍ରଲେପନ କରି କନ୍ଦର୍ପ ପୀଡ଼ାରୁ ନିଜ ନିଜକୁ ମୁକ୍ତ କରିବାକୁ ଚେଷ୍ଟା କରିଥାନ୍ତି, ସେମାନେ ବାସ୍ତବିକ ଧନ୍ୟ ।'

ଏହିପରି ଭାବରେ ଗୋପୀମାନେ କୃଷ୍ଣଙ୍କ ଗୁଣଗାନ କରିକରି ଅପୂର୍ବ ତନ୍ମୟତାରେ ପ୍ରେମଭାବାବିଷ୍ଟ ହୋଇପଡ଼ିଲେ ।



# ବସ୍ତ୍ର-ହରଣ

ଗୃହୁଁ ଗୃହୁଁ ଶରତ ଋତୁ ଅନ୍ତବାହିତ ହୋଇ ହେମନ୍ତଋତୁ ଉପସ୍ଥିତ ହେଲା । ମାର୍ଗଶିର ମାସରୁ ବ୍ରଜମଣ୍ଡଳର ଗୋପଯୁବତୀମାନେ ହବିଷାନ୍ନବ୍ରତ ଗ୍ରହଣ କରି କାତ୍ୟାୟନୀ ଦେବୀଙ୍କର ପୂଜା ଆରମ୍ଭ କଲେ । ବ୍ରତର ବିଧି ଅନୁସାରେ ପ୍ରତ୍ୟହ ସୂର୍ଯ୍ୟୋଦୟ ପୂର୍ବରୁ ଗୋପାଙ୍ଗନାମାନେ ଯମୁନାରେ ସ୍ନାନ କରି ନଦୀକୂଳରେ ବାଲୁକାରେ ଦେବୀ ଭଦ୍ରକାଳୀଙ୍କର ପ୍ରତିମା ନିର୍ମାଣ କରି, ଧୂପ, ଦୀପ, ପୁଷ୍ପ ଚନ୍ଦନତିଳକ, ବସ୍ତ୍ର, ଭୂଷଣ ଓ ନୈବେଦ୍ୟାଦି ଅର୍ପଣ କରି ଦେବୀଙ୍କର ପୂଜାରାଧନା କରନ୍ତି ଏବଂ ଦେବୀଙ୍କ ନିକଟରେ ପ୍ରତ୍ୟେକ ଗୋପାଙ୍ଗନା ନିଜର ମନକଥା ପ୍ରକାଶ କରି ପ୍ରାର୍ଥନା କରନ୍ତି, 'ଦେବୀ, କାତ୍ୟାୟନି, ମହାମାୟି, ମହାଯୋଗିନି, ଜଗତର ଅଧିଶ୍ୱରି, ମା, ତୋ ଚରଣରେ ପ୍ରଣତି ଜଣାଇ ପ୍ରାର୍ଥନା କରୁଛି, ନନ୍ଦନନ୍ଦନ କୃଷ୍ଣଙ୍କୁ ମୁଁ ଯେପରି ପତି ରୂପରେ ଲାଭ କରେ । ମୋର ମନସ୍କାମନା ଅଚିରେ ପୂର୍ଣ୍ଣକର, ମା ।' କୃଷ୍ଣାସକ୍ତଚିତ୍ତ ଗୋପକୁମାରୀଗଣ ଏହିପରି ଭାବରେ ନିୟମିତ ଏକମାସ ଧରି ଦେବୀ କାତ୍ୟାୟନୀଙ୍କର ପୂଜାର୍ଚ୍ଚନା କଲେ । ଗୋପାଙ୍ଗନାମାନେ ପ୍ରତ୍ୟହ ଉଷାକାଳରେ ଶଯ୍ୟାତ୍ୟାଗ କରି ପରସ୍ପରକୁ ଡକାଡକି କରି ଯମୁନାକୁ ସ୍ନାନ କରିବାକୁ ଯିବା ସମୟରେ ଏକମେଳରେ ଉଚ୍ଚସ୍ୱରରେ କୃଷ୍ଣଙ୍କର ଗୁଣମାନ ସୁଲଳିତ କଣ୍ଠରେ ଗାନ କରିକରି ଯାଆନ୍ତି । ମାର୍ଗଶିର ମାସର ପୂର୍ଣ୍ଣିମା ଦିନ ସେମାନଙ୍କର ଏକମାସ ଧରି କରିଥିବା ବ୍ରତର ପରିପୂର୍ତ୍ତି ହେବାର କଥା । ସେଦିନ ପୂର୍ବଦିନପରି ନଦୀକୂଳରେ ନିଜ ନିଜର ବସନ ଆଦି ପରିତ୍ୟାଗ କରି ଗୋପାଙ୍ଗନାମାନେ କୃଷ୍ଣଙ୍କର ଗୁଣଗାନ କରିକରି ଯମୁନା ଜଳରେ ପ୍ରବେଶ କଲେ ଏବଂ ପରମାନନ୍ଦରେ କୃଷ୍ଣତଦ୍‌ଗତପ୍ରାଣା ଗୋପାଙ୍ଗନାମାନେ ସ୍ନାନ କରିବାକୁ ଲାଗିଲେ ।

ଏଣେ, କୃଷ୍ଣ ଗୋପକୁମାରୀମାନଙ୍କର ମନୋଗତ ଭାବ ଅବଗତ ହୋଇ ସେମାନଙ୍କ ପ୍ରତି ପ୍ରସନ୍ନ ହେଲେ ଏବଂ ସେମାନଙ୍କୁ ପ୍ରାପ୍ୟ ବ୍ରତଫଳ

ପ୍ରଦାନ କରିବା ନିମନ୍ତେ ନିଜର କେତେଜଣ ସାଥିକୁ ସାଙ୍ଗରେ ଧରି ଗୋପୀମାନଙ୍କ ଅଗୋଚରରେ ଯମୁନାକୂଳରେ ଯାଇ ପହଞ୍ଚିଲେ । ନଦୀ-କୂଳରେ ନିଜ ନିଜର ବସ୍ତ୍ରମାନ ପରିତ୍ୟାଗ କରି ଗୋପାଙ୍ଗନାମାନେ ବିବସ୍ତ୍ରାବସ୍ଥାରେ ନଦୀରେ ସ୍ନାନ କରୁଥିବା ଦେଖି ସେମାନଙ୍କର ପରିତ୍ୟକ୍ତ ବସ୍ତ୍ରକୁ ସେମାନଙ୍କର ଅଲକ୍ଷ୍ୟରେ କୃଷ୍ଣ ନେଇ ନିକଟସ୍ଥ ଏକ କଦମ୍ବ ବୃକ୍ଷରେ ଆରୋହଣ କଲେ ଏବଂ ସଖାମାନଙ୍କ ସହିତ ହସାହସି ହୋଇ କୃଷ୍ଣ ଗୋପକୁମାରୀମାନଙ୍କୁ ପରିହାସପୂର୍ଣ୍ଣ କଥା କହିଲେ ।

କୃଷ୍ଣଙ୍କୁ ସେଠାରେ ଦେଖି ବସ୍ତ୍ରହୀନା ଗୋପାଙ୍ଗନାଙ୍କର ଲଜ୍ଜାର ସୀମା ରହିଲା ନାହିଁ । ସେମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ ।

କୃଷ୍ଣ ସେମାନଙ୍କୁ କହିଲେ, 'ଅବଳାଗଣ, ତୁମ୍ଭେମାନେ ନଦୀ ଜଳରୁ ଉଠିଆସି ଏଠାରୁ ନିଜ ନିଜର ବସ୍ତ୍ର ନେଇଯାଅ । ବିଶ୍ୱାସ କର । ମୁଁ ତୁମ୍ଭମାନଙ୍କୁ ଆଦୌ ପରିହାସ କରୁନାହିଁ । ନିଷ୍ଠାର ସହିତ ବ୍ରତପାଳନ କରିବାର କ୍ଳିଷ୍ଟତା ତୁମ୍ଭମାନଙ୍କୁ ଅତ୍ୟନ୍ତ ପରିଶ୍ରାନ୍ତ ଓ କୃଶ କରିପକାଇଅଛି । ବିଳମ୍ବ ନ କରି ଆସ । ମୁଁ କେବେ ମିଛ କହିନାହିଁ କି ବର୍ତ୍ତମାନ ମିଛ କହୁନାହିଁ । ହେ ସୁମଧ୍ୟମାଗଣ, ତୁମ୍ଭେମାନେ ଜଣ ଜଣ କରି ହେଉ କିମ୍ବା ଏକମେଳରେ ଆସି ମୋ ପାଖରୁ ବସ୍ତ୍ରମାନ ନେଇ ଯାଅ ।'

କୃଷ୍ଣଙ୍କୁ ସେଠାରେ ଦେଖି ଓ ତାଙ୍କର ପରିହାସପୂର୍ଣ୍ଣ କଥା ଶ୍ରବଣ କରି ପ୍ରେମପରିପ୍ଳୁତା ଗୋପାଙ୍ଗନାମାନେ ଅତ୍ୟନ୍ତ ଲଜ୍ଜିତା ହୋଇଥିଲେ; ତେଣୁ ଜଣେହେଲେ କେହି ବସ୍ତ୍ର ନେବାପାଇଁ ଚେଷ୍ଟା କଲେ ନାହିଁ, ବରଂ ପରସ୍ପର ପରସ୍ପର ମଧ୍ୟରେ ଠାରାଠାରି ଓ ମୃଦୁ ହସାହସି ହେଲେ; କିନ୍ତୁ କେହି ଜଳ ମଧ୍ୟରୁ ଉଠିଲେ ନାହିଁ । ସେହି ପ୍ରଚଣ୍ଡ ଶୀତକାଳରେ ପରିହାସପୀଡ଼ିତା ଲଜ୍ଜାବତୀ ଯୁବତୀମାନେ ବେକ ପର୍ଯ୍ୟନ୍ତ ନିଜକୁ ଜଳରେ ବୁଡାଇ ରଖିଲେ । ଅତ୍ୟଧିକ ଶୈତ୍ୟ ଫଳରେ ସେମାନଙ୍କ ଶରୀର ଥରି ଉଠୁଥାଏ ।

ଗୋପାଙ୍ଗନାମାନେ ବହୁ କଷ୍ଟରେ କୃଷ୍ଣଙ୍କୁ ସମ୍ବୋଧନ କରି ଧୀରେ ଧୀରେ କହିଲେ, 'ଛି, ତୁମେ ଏପରି ଅନୀତିକର କାର୍ଯ୍ୟ କରୁଛ କିପରି ? ତୁମେ ନନ୍ଦରାଜାଙ୍କର ଆଦରର ପୁତ୍ର ଏବଂ ଆମ୍ଭେମାନେ ମଧ୍ୟ

ତୁମକୁ ଯଥେଷ୍ଟ ସ୍ନେହକରନ୍ତି । ସମଗ୍ର ବ୍ରଜମଣ୍ଡଳ ତୁମର ପ୍ରଶଂସାରେ ପଞ୍ଚମୁଖ । ଏପରି ସମୟରେ ତୁମର ଏପରି ନିନ୍ଦନୀୟ କାର୍ଯ୍ୟ କରିବା ଆଦୌ ଉଚିତ ନୁହେଁ । ଦେଖ, ଆମେ କିପରି ଶୀତରେ ଥରୁଛୁ । ଦିଅ, ଆମର ଲୁଗାଗୁଡ଼ିକୁ ଆମକୁ ଦେଇଦିଅ । ହେ ଶ୍ୟାମସୁନ୍ଦର, ଆମେ ତୁମର ଆଜ୍ଞାଧୀନା ଦାସୀ । ତୁମେ ଯାହା କହିବ, ଆମେ ତାହା ଅଚିରେ ପାଳନ କରିବୁ । ତୁମେ ଧର୍ମଜ୍ଞ ହୋଇ ଆମ୍ଭମାନଙ୍କ ପ୍ରତି ଏପରି ନିଷ୍ଠୁର ହୁଅନାହିଁ । ଆମ ଲୁଗାଗୁଡ଼ିକ ଦେଇଦିଅ, ନଚେତ୍ ନନ୍ଦରାଜାଙ୍କ ନିକଟରେ ଆମେ ଯାଇ ଫେରାଦ ହେବୁ ।'

ଗୋପକୁମାରୀମାନଙ୍କ କଥା ଶୁଣି କୃଷ୍ଣ କହିଲେ, 'ହେ ଶୁଚିସ୍ମିତା କୁମାରୀଗଣ, ତୁମେ ଯଦି ନିଜକୁ ମୋର ଆଜ୍ଞାଧୀନା ବୋଲି ମନେ କରୁଥାଅ ଏବଂ ଦାସୀ ଭାବରେ ମୋର ଆଦେଶ ପାଳନ କରିବାକୁ ପ୍ରସ୍ତୁତ ଥାଅ, ତେବେ ମୋର ଆଦେଶ ପାଳନ କର, ଏଠାକୁ ଆସ ଏବଂ ମୋ ପାଖରୁ ନିଜ ନିଜର ବସ୍ତ୍ର ନେଇ ଯାଅ ।'

ନିଜ କଥାରେ ନିଜେ ପରାଜିତ ହୋଇଅଛନ୍ତି ଭାବି ଶୀତ-କମ୍ପିତ-କଳେବରା ବ୍ରଜଦୁଲାଳୀମାନେ ନିଜ ନିଜର ହସ୍ତଦ୍ୱାରା ନିଜ ଶରୀରର ଗୋପନ ଅଙ୍ଗକୁ ଆଚ୍ଛାଦିତ କରି ଯମୁନା ଜଳରୁ ଅତି ସନ୍ତର୍ପଣରେ ଉଠିଲେ । ଗୋପାଙ୍ଗନାମାନଙ୍କର ମନର ପବିତ୍ରତା ଓ ବିଶୁଦ୍ଧ ପ୍ରେମଭାବ ଲକ୍ଷ୍ୟକରି କୃଷ୍ଣ ପ୍ରସନ୍ନ ହେଲେ ଏବଂ ସେମାନଙ୍କର ବସ୍ତ୍ରଗୁଡ଼ିକୁ ନିଜ କାନ୍ଧରେ ରଖି କହିଲେ, 'ହେ ବ୍ରତଚାରିଣୀଗଣ, ତୁମ୍ଭେମାନେ ଯଥାଯଥ ଭାବରେ ବ୍ରତ ପାଳନ କରିଥିବା ଆନନ୍ଦର କଥା; କିନ୍ତୁ ବ୍ରତପରାୟଣା ହୋଇ ଉଲଗ୍ନ ଅବସ୍ଥାରେ ଯମୁନାରେ ସ୍ନାନ କରିବା ଦ୍ୱାରା ଜଳର ଅଧିଷ୍ଠାତା ବରୁଣ-ଦେବ ତଥା ମାତା ଯମୁନାଙ୍କ ପ୍ରତି ତୁମ୍ଭେମାନେ ଯଥେଷ୍ଟ ଅବମାନନା ପ୍ରଦର୍ଶନ କରିଅଛ । ସେହି ଆତ୍ମକୃତ ଘୋର ପାପର ଅପନୋଦନ ନିମନ୍ତେ ସେମାନଙ୍କ ଉଦ୍ଦେଶ୍ୟରେ ପ୍ରତ୍ୟେକ ଯୋଡ଼ି ହସ୍ତରେ ନିଜ ନିଜର ମସ୍ତକ ସ୍ପର୍ଶକରି ପ୍ରଣାମ କରି ଏବଂ ତତ୍ପରେ ମୋଠାରୁ ବସ୍ତ୍ରଗୁଡ଼ିକ ଗ୍ରହଣ କର ।'

କୃଷ୍ଣଙ୍କ ଦ୍ୱାରା ଏହିପରି ଭାବରେ କଥିତ ହୋଇ ଗୋପାଙ୍ଗନାମାନେ ବିବସ୍ତ୍ର-ସ୍ନାନ ଦ୍ୱାରା ବ୍ରତଭଙ୍ଗ ହେବାର ସମ୍ଭାବନା ଅଛି ବୋଲି ଆଶଙ୍କା କରି ବ୍ରତସିଦ୍ଧି ନିମନ୍ତେ-ସମସ୍ତ କର୍ମର ସାକ୍ଷୀ ସ୍ୱରୂପ ଭଗବାନ କୃଷ୍ଣଙ୍କ ଉଦ୍ଦେଶ୍ୟରେ କୃତାଞ୍ଜଳି ପୂର୍ବକ ଭକ୍ତିପ୍ଲୁତ ପ୍ରଣାମ ଜଣାଇଲେ । ଲଜ୍ଜାବତୀ ଗୋପଯୁବତୀମାନଙ୍କର ସେହି ବିନୟପୂର୍ଣ୍ଣ ସଭକ୍ତି ପ୍ରଣାମରେ କରୁଣାର୍ଦ୍ର ଚିତ୍ତ କୃଷ୍ଣ ପରମ ସନ୍ତୋଷ ଲାଭକରି ସେମାନଙ୍କୁ ସେମାନଙ୍କର ଅପହୃତ ବସ୍ତ୍ରମାନ ପ୍ରତ୍ୟର୍ପଣ କଲେ । କୃଷ୍ଣଙ୍କ ଦ୍ୱାରା ଗୋପଯୁବତୀମାନେ ଏହିପରି ଭାବରେ ଲଜ୍ଜିତା, ପରିହାସିତା ଓ ପୀଡ଼ିତା ହୋଇ ମଧ୍ୟ ସେମାନଙ୍କର ପ୍ରିୟସାନ୍ନିଧ୍ୟସୁଖ ବାଞ୍ଛିତ ପ୍ରାଣ ପ୍ରିୟପ୍ରଦତ୍ତ ସେହି ଦୁଃଖକୁ ପରମ ସୁଖ ରୂପରେ ଗ୍ରହଣ କରି ଆନନ୍ଦରେ ପ୍ରଫୁଲ୍ଲିତ ହୋଇ ଉଠିଥିଲେ । କୃଷ୍ଣଙ୍କ ହସ୍ତରୁ ବସ୍ତ୍ରମାନ ନେଇ ସେମାନେ ପରିଧାନ କଲେ ଏବଂ କୃଷ୍ଣଙ୍କ ସମ୍ମୁଖରେ ସଲଜ୍ଜ ବଦନରେ ତଥାପି ଦଣ୍ଡାୟମାନ ହୋଇ ରହିଲେ । କୃଷ୍ଣଙ୍କ ଚରଣ ସ୍ପର୍ଶକରି ବ୍ରତ ଉଦ୍‌ଯାପନ କରିବାକୁ ଅଭିଳାଷ ପୋଷଣ କରି ଯେ ଗୋପାଙ୍ଗନାମାନେ ଦଣ୍ଡାୟମାନ ହୋଇ ରହିଅଛନ୍ତି, ତାହା କୃଷ୍ଣଙ୍କ ପକ୍ଷରେ ବୁଝିବା କଷ୍ଟକର ହେଲନାହିଁ । ତେଣୁ ସେ ଗୋପାଙ୍ଗନାମାନଙ୍କୁ ସମ୍ବୋଧନ କରି କହିଲେ, 'ହେ ସାଧ୍ୱୀଗଣ, ମୋତେ ପତି ରୂପରେ ଲାଭ କରିବା ଉଦ୍ଦେଶ୍ୟରେ ତୁମ୍ଭେମାନେ ଯେ ଏହି ପର୍ଯ୍ୟନ୍ତ ଧରି କାତ୍ୟାୟନୀ-ବ୍ରତ ପାଳନ କରିଥିଲ, ତାହା ମୋତେ ସୁବିଦିତ ଅଛି । ତୁମ୍ଭମାନଙ୍କର ଏହି ହାର୍ଦ୍ଦିକ କାମନାକୁ ମୁଁ ଅନୁମୋଦନ କରୁଅଛି ଏବଂ ତାହା ଅଚିରେ ପୂର୍ଣ୍ଣ ହେବ । ତୁମ୍ଭମାନଙ୍କର ଏହି ବ୍ରତପାଳନ ସଫଳ ହୋଇଅଛି । ଆଗାମୀ ଶାରଦୀୟ ରଜନୀରେ ତୁମ୍ଭମାନଙ୍କ ସହିତ ମୁଁ ରମଣ କରି ତୁମ୍ଭମାନଙ୍କର, ମନସ୍କାମନା ପୂର୍ଣ୍ଣ କରିବି । ତୁମ୍ଭେମାନେ ବର୍ତ୍ତମାନ ଘରକୁ ଫେରିଯାଅ ।

କୃଷ୍ଣଙ୍କୁ ଛାଡ଼ି ଘରକୁ ଯିବାକୁ ଗୋପୀମାନଙ୍କର ଆଦୌ ଇଚ୍ଛା ନ ଥିଲା; ତଥାପି କୃଷ୍ଣଙ୍କର ଅନୁଜ୍ଞାମତେ ଗୋପୀମାନେ କୃଷ୍ଣଙ୍କର ଚରଣାରବିନ୍ଦକୁ ମନେ ମନେ ଧ୍ୟାନକରି ନିଜ ନିଜର ଇଚ୍ଛା ବିରୁଦ୍ଧରେ ସ୍ୱ ସ୍ୱ ଘରକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

# ଗୋବର୍ଦ୍ଧନ-ଧାରଣ ଓ ସ୍ୱରୂପ ପ୍ରକାଶ

ବ୍ରଜମଣ୍ଡଳର ଅଧିବାସୀମାନେ ଥରେ ଦେବରାଜ ଇନ୍ଦ୍ରଙ୍କ ଉଦ୍ଦେଶ୍ୟରେ ଏକ ବିରାଟ ଯଜ୍ଞର ଆୟୋଜନ କଲେ । ଯଜ୍ଞ ସମ୍ପର୍କରେ ଉତ୍ତମରୂପେ ଜାଣିଥିଲେ ମଧ୍ୟ ନନ୍ଦରାଜାଙ୍କୁ କୃଷ୍ଣ ପଚାରିଲେ, 'ବାପା, ଏପରି ଏକ ଯଜ୍ଞ ଆୟୋଜିତ ହେବାର କାରଣ କଣ ? କାହାପାଇଁ ଏହି ଯଜ୍ଞ ହେବ ? ଏହାର କାରଣ ମୋତେ ଜଣାଇବାରେ ଯଦି ଆପତ୍ତି ନ ଥାଏ, ତେବେ ମୋତେ ଦୟାକରି କହି ମୋ ମନର କୌତୂହଳ ଦୂର କରନ୍ତୁ ।'

ପୁତ୍ରର କଥା ଶୁଣି ନନ୍ଦ କହିଲେ, 'ବାବା, ବର୍ଷା ଆମ୍ଭମାନଙ୍କର ଜୀବନ ସ୍ୱରୂପ । ଦେବରାଜ ଇନ୍ଦ୍ର ସେହି ବର୍ଷାର ଅଧୀଶ୍ୱର ହୋଇଥିବାରୁ ଆମର ଏହି ଅଞ୍ଚଳ ପ୍ରତି ତାଙ୍କର ପ୍ରସନ୍ନତା ଲାଭ କରିବା ନିମନ୍ତେ ପ୍ରତିବର୍ଷ ପାରମ୍ପରିକ ରୀତିରେ ଲୋକମାନେ ଦେବରାଜଙ୍କ ଉଦ୍ଦେଶ୍ୟରେ ପୂଜା, ହୋମ ଓ ଯଜ୍ଞାଦି କରିଥାନ୍ତି । ପରମ୍ପରା ସର୍ବଦା ପାଳନୀୟ । ପରମ୍ପରାକୁ ରକ୍ଷା କରିବା ଦ୍ୱାରା ଲୋକମାନେ କଲ୍ୟାଣଭାଗୀ ହୋଇଥାନ୍ତି । ସେହି କାରଣରୁ ଦେବରାଜ ଇନ୍ଦ୍ରଙ୍କ ଉଦ୍ଦେଶ୍ୟରେ ଏହି ଯଜ୍ଞ ଆୟୋଜିତ ହେଉଅଛି ।'

ଇନ୍ଦ୍ରଙ୍କ ନିମନ୍ତେ ଏତେ ବଡ଼ ଯଜ୍ଞର ଆୟୋଜନ ହେଉଥିବାରୁ ଇନ୍ଦ୍ରଙ୍କ ମନରେ ଗର୍ବର ସୀମା ନ ଥିଲା । ପିତାଙ୍କଠାରୁ ଏପରି ଶୁଣି ଯଜ୍ଞଫଳଦାୟୀ ଇନ୍ଦ୍ରର ଗର୍ବ ଖଣ୍ଡନ କରିବାକୁ କୃଷ୍ଣ ମନେ ମନେ ସ୍ଥିର କରି, ନନ୍ଦଙ୍କୁ କହିଲେ, 'ବାପା, କର୍ମ ହିଁ ମନୁଷ୍ୟ ଜୀବନର ନିୟାମକ । ନିଜର କର୍ମ ଅନୁସାରେ ମନୁଷ୍ୟ ଜୀବନକାଳ ମଧ୍ୟରେ ବିଭିନ୍ନ ସୁଖ ଓ ଦୁଃଖ ଭୋଗ କରିଥାଏ । ମନୁଷ୍ୟ-ଜୀବନର ସୁଖ ଦୁଃଖରେ ଇନ୍ଦ୍ରଙ୍କର ସେପରି କିଛି ଗୁରୁତ୍ୱପୂର୍ଣ୍ଣ ଭୂମିକା ପରିଲକ୍ଷିତ ହୁଏ ନାହିଁ । ବ୍ରାହ୍ମଣ, କ୍ଷତ୍ରିୟାଦି ବିଭିନ୍ନ ଜାତି ନିଜ ନିଜର ଜାତୀୟବୃତ୍ତି ପାଳନ କରି

ଜୀବିକାର୍ଜନ କରିଥାନ୍ତି, ସେହି ଦୃଷ୍ଟିରୁ ଗୋପାଳନ ହିଁ ଆମର ଜାତିଗତ ବୃତ୍ତି । ଏହି ଜଗତର ସୃଷ୍ଟି ସ୍ଥିତି-ଲୟ, ସତ୍ତ୍ୱ, ରଜ ଓ ତମ ଗୁଣଦ୍ୱାରା ନିୟନ୍ତ୍ରିତ ହୋଇ ଆସୁଅଛି । ଏହି ଜଗତ ରଜୋଗୁଣଦ୍ୱାରା ଉତ୍ପନ୍ନ ହୋଇଅଛି, ପୁନର୍ବାର ଏହି ରଜୋଗୁଣର ପ୍ରେରଣାରେ ମେଘ ସୃଷ୍ଟି ହୁଏ, ମେଘବର୍ଷଣ ଫଳରେ ବିଭିନ୍ନ ଶସ୍ୟ ଜାତହୁଏ ଏବଂ ଶସ୍ୟ ଭକ୍ଷଣ କରି ଜୀବମାନେ ପ୍ରାଣରକ୍ଷା କରିଥାନ୍ତି । ତେଣୁ ମେଘ ସୃଷ୍ଟି ବା ମେଘବର୍ଷଣରେ ଇନ୍ଦ୍ରଙ୍କର କୌଣସି କର୍ତ୍ତୃତ୍ୱ ନାହିଁ । ବାପା, ଆମର ନା ଅଛି ରାଜ୍ୟ ନା ଅଛି ଘର । ଆମେ ବନବାସୀ । ଗୋପାଳନ ଆମର ପାରମ୍ପରିକ ବୃତ୍ତି ଏବଂ ଏହି ଗୋବର୍ଦ୍ଧନ ପାହାଡ଼ ହିଁ ଆମର ଗୃହ । ଏହି ଗୋଜାତି ଏବଂ ଗୋବର୍ଦ୍ଧନ ପାହାଡ଼କୁ ଆମର ପୂଜା କରିବା ଉଚିତ; କାରଣ ସେମାନଙ୍କ କୃପାରୁ ଆମେ ବନବାସ କରି ଜୀବିକାର୍ଜନ କରିବାକୁ ସମର୍ଥ ହୋଇଅଛେଁ । ଇନ୍ଦ୍ରଙ୍କ ଉଦ୍ଦେଶ୍ୟରେ ଯଜ୍ଞ କରିବା ନିମନ୍ତେ ଯେଉଁ ଉପକରଣମାନ ସଂଗୃହୀତ ହୋଇଅଛି ତଦ୍ୱାରା ଇନ୍ଦ୍ରଙ୍କ ଉଦ୍ଦେଶ୍ୟରେ ଯଜ୍ଞ ନ କରି ଗୋବର୍ଦ୍ଧନ ପାହାଡ଼ ଓ ଗୋସମ୍ପଦଙ୍କର ପୂଜା କରିବା ସମୀଚୀନ । ଆପଣ ସ୍ନାନାଦି ନିତ୍ୟକର୍ମ ସମାପନ କରି ଏବଂ ବସ୍ତ୍ର ଚନ୍ଦନରେ ଭୂଷିତ ହୋଇ ବ୍ରାହ୍ମଣମାନଙ୍କ ପୌରୋହିତ୍ୟରେ ଗୋ, ବ୍ରାହ୍ମଣ ଏବଂ ଗୋବର୍ଦ୍ଧନଙ୍କର ପୂଜାକରି ସେମାନଙ୍କୁ ପ୍ରଦକ୍ଷିଣ କରନ୍ତୁ । ଏପରି କଲେ ଆମ୍ଭମାନଙ୍କର ବିଶେଷ କଲ୍ୟାଣ ସାଧିତ ହେବ ।

•

ଇନ୍ଦ୍ରଙ୍କର ଗର୍ବ ଖଣ୍ଡନ କରିବାକୁ ଅଭିଳାଷୀ ହୋଇ କାଳର ପ୍ରବର୍ତ୍ତକ ଭଗବାନ କୃଷ୍ଣ ଏପରି କହିବାରୁ ତଦନୁସାରେ ବ୍ରଜବାସୀମାନେ ଇନ୍ଦ୍ରଙ୍କ ଉଦ୍ଦେଶ୍ୟରେ ପ୍ରସ୍ତାବିତ ଯଜ୍ଞ ନିମନ୍ତେ ସଂଗୃହୀତ ଯଜ୍ଞୋପକରଣରେ ଗୋବର୍ଦ୍ଧନଗିରି, ଗୋସମ୍ପଦ ଓ ବ୍ରାହ୍ମଣମାନଙ୍କର ପୂଜାର୍ଚ୍ଚନା କଲେ । ପାହାଡ଼ କିପରି ସେମାନଙ୍କ ପ୍ରଦତ୍ତ ପୂଜୋପକରଣ ଗ୍ରହଣ କରିବ, ଏ ସମ୍ପର୍କରେ ନନ୍ଦପ୍ରମୁଖ ଗୋପଙ୍କ ମନରେ ଯଥେଷ୍ଟ ସନ୍ଦେହ ରହିଥିଲା । ତେଣୁ ସେମାନଙ୍କ ମନରେ ବିଶ୍ୱାସ ଉଦ୍ରେକ କରିବା ନିମନ୍ତେ ସମସ୍ତଙ୍କ ଅଗୋଚରରେ କୃଷ୍ଣ ନିଜେ ଏକ ବିଶାଳ ବପୁ ଧାରଣ କରି ପାହାଡ଼ ଉପରେ ଆବିର୍ଭୂତ ହୋଇ 'ମୁଁ ଗୋବର୍ଦ୍ଧନ ଗିରି'

ବୋଲି କହି ଗୋପମାନଙ୍କ ପ୍ରଦତ୍ତ ପୂଜାର୍ଘ୍ୟ ଗ୍ରହଣ କଲେ ଏବଂ କୃଷ୍ଣ ନିଜେ ଗୋପବାସୀମାନଙ୍କ ସହିତ ସେହି ମୂର୍ତ୍ତିମନ୍ତ ଗୋବର୍ଦ୍ଧନ ଗିରିକୁ ପ୍ରଣାମ କରି 'ଆମ୍ଭମାନଙ୍କ ପ୍ରତି ସଦୟ ହୋଇ, ଗିରିରାଜ ସାକ୍ଷାତ ଆବିର୍ଭୂତ ହେଲେ, ଏହା ପରମାନନ୍ଦର କଥା' ବୋଲି କହି ଗୋପମାନଙ୍କ ମନରୁ ପୂର୍ବ ସନ୍ଦେହକୁ ଦୂର କଲା । ଏହିପରି ଭାବରେ ପୂଜାର୍ପଣ କରି ନନ୍ଦପ୍ରମୁଖ ଘରକୁ ଫେରିଆସିଲେ ।

ନିଜ ପଦମର୍ଯ୍ୟାଦା ସମ୍ପର୍କରେ ଇନ୍ଦ୍ରଙ୍କ ମନରେ ଯଥେଷ୍ଟ ଗର୍ବ ଥିଲା । ସେ ନିଜକୁ ତ୍ରିଭୁବନର ଈଶ୍ୱର ବୋଲି ଜ୍ଞାନ କରୁଥିଲେ । ଇନ୍ଦ୍ର ଯେତେବେଳେ ଜାଣିଲେ ଯେ ଗୋପବାସୀମାନେ ତାଙ୍କ ପୂଜା କରିବା ପରିବର୍ତ୍ତେ ଗୋବର୍ଦ୍ଧନ ଗିରିର ପୂଜା କରିଅଛନ୍ତି, ସେ କ୍ରୋଧରେ ଭାଙ୍ଗିପଡ଼ିଲେ । .

ଇନ୍ଦ୍ର କ୍ରୋଧାବେଗରେ ଗର୍ଜନ କରି କହିଲେ, ଛିରି 'ବନଗୃହୀ ଗୋପବାସୀମାନଙ୍କର କି ସ୍ପର୍ଦ୍ଧା ! କୃଷ୍ଣ ପରି ଏକ ଅପରିପକ୍ୱ ସାଧାରଣ ବାଳକର କଥାରେ ପଡ଼ି ଗୋପବାସୀମାନେ ମୋତେ ଅବମାନନା କରିଅଛନ୍ତି !! କୃଷ୍ଣର ବଳରେ ବଳୀୟ ନ ହୋଇ ଗୋପମାନେ ଧନମଦରେ ଫାଟି ପଡ଼ୁଛନ୍ତି !!! ହେ ସାଂବର୍ତ୍ତିକ, ଯାଅ । ପ୍ରଚଣ୍ଡ ବେଗରେ ମେଘ ବର୍ଷଣ କରି ଗୋପବାସୀମାନଙ୍କର ଗୋଠ ଓ ଗୋସମ୍ପଦକୁ ବିନାଶ କର । ନନ୍ଦଙ୍କର ବ୍ରଜକୁ ସମ୍ପୂର୍ଣ୍ଣରୂପେ ବିନାଶ କରିବା ନିମନ୍ତେ ଐରାବତରେ ଆରୋହଣ କରି ମରୁଦ୍‌ଗଣଙ୍କ ସହିତ ମୁଁ ନିଜେ ତୁମ ପଛେ ପଛେ ବ୍ରଜକୁ ଯାଉଅଛୁ । ତୁମେ ଚାଲ ।'

ଦେବରାଜଙ୍କଠାରୁ ଆଦେଶ ପାଇବା ମାତ୍ରେ ମେଘମାନେ ବନ୍ଧନମୁକ୍ତ ହୋଇ ଅବାରିତ ବେଗରେ ନନ୍ଦଙ୍କ ବ୍ରଜ ଉଦ୍ଦେଶ୍ୟରେ ଅବିଳମ୍ବେ ଯାତ୍ରାକଲେ ଏବଂ ପ୍ରବଳ ବର୍ଷଣ, ବିଦ୍ୟୁତ୍ ଏବଂ କରକାପାତ ଦ୍ୱାରା ସମଗ୍ର ବ୍ରଜକୁ ପ୍ରପୀଡ଼ିତ କଲେ । କ୍ଷଣକ ମଧ୍ୟରେ ବ୍ରଜମଣ୍ଡଳ ବର୍ଷା ଜଳରେ ପୂର୍ଣ୍ଣ ହୋଇଉଠିଲା । ବ୍ରଜବାସୀ ତଥା ଧେନୁବତ୍ସମାନେ ପ୍ରଚଣ୍ଡ ବର୍ଷାରେ ଅତ୍ୟନ୍ତ ପୀଡ଼ିତ ହୋଇ ପ୍ରାଣରକ୍ଷା କରିବା ନିମନ୍ତେ କୃଷ୍ଣଙ୍କର ଶରଣାପନ୍ନ ହେଲେ ।

ବ୍ରଜବାସୀମାନେ ବ୍ୟାକୁଳ ହୋଇ କୃଷ୍ଣଙ୍କୁ ପ୍ରାର୍ଥନା କଲେ, 'ହେ କୃଷ୍ଣ, ହେ ମହାଭାଗ, ହେ ଭକ୍ତବତ୍ସଳ, ହେ ପ୍ରଭୁ । କ୍ରୋଧାନ୍ୱିତ ଦେବରାଜଙ୍କର ଏହି ପ୍ରଚଣ୍ଡ ଆକ୍ରମଣରୁ ଆମ୍ଭମାନଙ୍କୁ ରକ୍ଷାକର ।' ଗୋପମାନଙ୍କର ସେହି ଆର୍ତ୍ତ ଚିତ୍କାରରେ ବାରିବର୍ଷଣ ନିର୍ଘୋଷିତ ବ୍ରଜମଣ୍ଡଳ ପ୍ରକମ୍ପିତ ହୋଇଉଠିଲା ।

ଦେବରାଜ ଯେ କ୍ରୋଧାନ୍ୱିତ ହୋଇ ଗୋପବାସୀଙ୍କ ପ୍ରତି ଶାସ୍ତି ବିଧାନ କରିବା ନିମନ୍ତେ ଏପରି ବୃଷ୍ଟିପାତ କରୁଥିଲେ, ଏହା କୃଷ୍ଣ ଉତ୍ତମରୂପେ ବୁଝିଥିଲେ । ତେଣୁ କୃଷ୍ଣ ମନେ ମନେ ଭାବିଲେ, 'ଇନ୍ଦ୍ରଙ୍କ ଉଦ୍ଦେଶ୍ୟରେ ଆୟୋଜିତ ଯଜ୍ଞକୁ ଆମେ ବ୍ୟାହତ କରିବାରୁ ଇନ୍ଦ୍ର କୁପିତ ହୋଇ ଆମକୁ ବିନାଶ କରିବା ନିମନ୍ତେ ଏପରି ପ୍ରଚଣ୍ଡ ତୋଫାନ ସହିତ ଶିଳା ଓ ବାରିବର୍ଷଣ କରୁଅଛନ୍ତି । ବେଶ୍, ମୁଁ ମୋର ମାୟାଶକ୍ତି ବଳରେ ଏହାର ପ୍ରତିବିଧାନ କରିବି; ତଦ୍ଦ୍ୱାରା ଇନ୍ଦ୍ରର ଗର୍ବ ଖର୍ବ ହେବ । ଦେବତାମାନେ ସତ୍ତ୍ୱ-ଗୁଣ ପ୍ରଧାନ । ସେମାନଙ୍କ ମନରେ ନିଜର ଐଶ୍ୱର୍ଯ୍ୟ ଓ ପଦମର୍ଯ୍ୟାଦା ନେଇ ଆଦୌ ଗର୍ବ ରହିବା ଉଚିତ ନୁହେଁ । ଇନ୍ଦ୍ରଙ୍କ ମନରେ ଥିବା ଏହି ଅଯଥା ଗର୍ବ ଆଜି ବ୍ୟାଧି ସ୍ୱରୂପ ହୋଇଅଛି; ତା'ର ନିରାକରଣ କଲେ ଯାଇ ଇନ୍ଦ୍ର ଉପଯୁକ୍ତ ଜ୍ଞାନ ଓ ଶାନ୍ତି ଲାଭ କରିବ । ଏହି ସମଗ୍ର ବ୍ରଜମଣ୍ଡଳ ମୋର କେବଳ ଆଶ୍ରିତ ନୁହେଁ ପ୍ରିୟ ମଧ୍ୟ । ମୁଁ ତା'ର ରକ୍ଷାକର୍ତ୍ତା । ଯୋଗମାୟା ବଳରେ ମୁଁ ଆଜି ମୋର ପ୍ରିୟ ବ୍ରଜମଣ୍ଡଳକୁ ଇନ୍ଦ୍ରଙ୍କର ଏହି ଅତ୍ୟାଚାରରୁ ରକ୍ଷା କରିବ । ସାଧୁସ୍ୱଭାବ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଅନ୍ୟାୟ ଓ ଅତ୍ୟାଚାରରୁ ରକ୍ଷା କରିବା ତ ମୋ ଜୀବନର ବ୍ରତ । ସେହି ବ୍ରତପାଳନ କରିବାର ଏକ ଉପଯୁକ୍ତ ସମୟ ବର୍ତ୍ତମାନ ଉପସ୍ଥିତ ।

ଏହାପରେ ଭବ ବର୍ଷାରୁ ରକ୍ଷା ଲାଭ କରିବା ନିମନ୍ତେ ଛତ୍ର ଧାରଣ କଲାପରି ନିଜର ଅସୀମ ଶକ୍ତି ଦ୍ୱାରା ହଠାତ ଲକାୟ ଗୋବର୍ଦ୍ଧନ ଗିରିକୁ ଭଗବାନ କୃଷ୍ଣ ଏକ ହସ୍ତରେ ଅବଲୀଳାକ୍ରମେ ଉତ୍ତୋଳିତ କରି ଧାରଣ କଲେ ଏବଂ କହିଲେ, 'ମା, ବାପା ଏବଂ ବ୍ରଜବାସୀଗଣ, ଆପଣମାନେ ନିର୍ଭୟରେ ନିଜ ନିଜର ଧେନୁବତ୍ସ ସହିତ ସମ୍ପତ୍ତିବାର ଏହି ଉତ୍ତୋଳିତ ଗୋବର୍ଦ୍ଧନ ଗିରି ତଳେ ଆସି ଅବସ୍ଥାନ କରନ୍ତୁ । ଏହି ପର୍ବତର ତଳେ ରହିଲେ କାଳେ ମୋ ହାତରୁ ପର୍ବତ ଖସିପଡ଼ିବ କମ୍ବା ଦେବରାଜ

ଆପଣମାନଙ୍କର ଅଧିକ ଅନିଷ୍ଟ କରିବେ, ଏପରି ଦୁଶ୍ଚିନ୍ତାକୁ ମନ ମଧ୍ୟରେ ସ୍ଥାନ ଦିଅନ୍ତୁ ନାହିଁ । ଆପଣମାନଙ୍କର ଆଉ କିଛି ଭୟ ନାହିଁ । ଏହି ପ୍ରବଳ ବର୍ଷା ଓ ଝଡ଼ରୁ ଆପଣମାନଙ୍କୁ ରକ୍ଷା କରିବା ନିମନ୍ତେ ମୁଁ ଦୃଢ଼-ସଙ୍କଳ୍ପ କରିଅଛି ।'

କୃଷ୍ଣଙ୍କର ସେହି ଅଲୌକିକ ଶକ୍ତି ଦର୍ଶନ କରି ଏବଂ ତାଙ୍କର ଅଭୟବାଣୀ ଦ୍ୱାରା ଆଶ୍ୱାସିତ ହୋଇ ବ୍ରଜବାସୀମାନେ ନିଜ ନିଜର ଧେନୁବତ୍ସା, ଧନସମ୍ପତ୍ତି ତଥା ପରିବାରବର୍ଗଙ୍କ ସହିତ ଗୋବର୍ଦ୍ଧନ ପର୍ବତ ତଳେ ଆଶ୍ରୟ ନେଲେ । ଇନ୍ଦ୍ରଙ୍କ ଦ୍ୱାରା ପ୍ରେରିତ ପର୍ଜନ୍ୟ ଓ ପ୍ରଭଞ୍ଜନ ସେମାନଙ୍କର କୌଣସି ଅନିଷ୍ଟ ସାଧନ ଆଉ କରିପାରିଲେ ନାହିଁ । ଭଗବାନ କୃଷ୍ଣ ସେହି ଗୋଟିଏ ସ୍ଥାନରେ ନିଶ୍ଚଳ ଭାବରେ ଅବସ୍ଥାନ କରି ସେହି ଏକ ହସ୍ତରେ ଏକ ସପ୍ତାହ କାଳ ଧରି ଗୋବର୍ଦ୍ଧନ ଗିରିକୁ ଇନ୍ଦ୍ରଶକ୍ତି ବିରୁଦ୍ଧରେ ଧାରଣ କରି ରହିଲେ କୃଷ୍ଣଙ୍କର ସେହି ଅପରିସୀମ ଶକ୍ତି ଦର୍ଶନ କରି ଦେବରାଜ ଇନ୍ଦ୍ର ବିସ୍ମିତ ହେଲେ ଏବଂ ତାଙ୍କ ମନରୁ ଗର୍ବଭାବ ଦୂର ହେଲା । ବ୍ରଜମଣ୍ଡଳକୁ ବିନାଶ କରିବା ଧୃଷ୍ଟତା ହେବ ବୋଲି ହୃଦୟଙ୍ଗମ କରି ନିଜର ସମ୍ବର୍ତ୍ତକ ଦୂତମାନଙ୍କୁ ପ୍ରତ୍ୟାହୃତ କରି ନେଲେ; ଫଳରେ ସଙ୍ଗେ ସଙ୍ଗେ ଆକାଶରେ ମେଘ ଓ ତୋଫାନ ଦୂର ହେଲା ଏବଂ ସୂର୍ଯ୍ୟ ସ୍ପଷ୍ଟଭାବରେ ପରିଦୃଷ୍ଟ ହେଲେ । ସୂର୍ଯ୍ୟକିରଣର ସ୍ପର୍ଶରେ ନିରବଚ୍ଛିନ୍ନ ବର୍ଷା ସନ୍ତାପିତ ବ୍ରଜବାସୀଙ୍କ ମନରେ ନବୀନ ଆନନ୍ଦ ପ୍ରକାଶିତ ହେଲା ।

କୃଷ୍ଣ କହିଲେ, 'ଗୋପଗଣ, ବର୍ଷା ଓ ତୋଫାନ ଅପସାରିତ ହୋଇଅଛି ଏବଂ ବୃଷ୍ଟିପାତ ଫଳରେ ବୃଦ୍ଧି ପାଇଥିବା ନଦୀର ଜଳ ମଧ୍ୟ ହ୍ରାସ ପାଇଲଣି । ତେଣୁ ଧନସମ୍ପତ୍ତି ସହ ସପରିବାର ଏଠାରେ ଆଉ ଆଶ୍ରୟ ନେବାର କୌଣସି ପ୍ରୟୋଜନ ନାହିଁ । ବର୍ତ୍ତମାନ ନିଜ ନିଜ ଗୃହକୁ ଫେରିଯାଅ ।'

ଗୋପବାସୀମାନେ ଧୀରେ ଧୀରେ ନିଜ ନିଜର ଗୃହକୁ ପରମ ଆନନ୍ଦରେ ପ୍ରତ୍ୟାବର୍ତ୍ତନ କଲେ ଏବଂ ପରେ କୃଷ୍ଣ ଗୋବର୍ଦ୍ଧନ ଗିରିକୁ ତା'ର ପୂର୍ବ ସ୍ଥାନରେ ପୂର୍ବପରି ସ୍ଥାପନ କରିଦେଲେ ।

ଗୋପମାନେ ଆନନ୍ଦ ମନରେ କୃଷ୍ଣଙ୍କୁ ଆଲିଙ୍ଗନ, ତାଙ୍କର ମସ୍ତକକୁ ଆଘ୍ରାଣ ଓ ଚୁମ୍ବନ କରିବା ସଙ୍ଗେ ସଙ୍ଗେ ବୟସକ୍ରମରେ କେହି କେହି ତାଙ୍କୁ ଆଶୀର୍ବାଦ କଲେ ଓ କେହି କେହି ତାଙ୍କର ପାଦକୁ ସ୍ପର୍ଶକରି ପ୍ରଣାମ କଲେ । ଗୋପୀମାନେ ଅତୁଳନୀୟ ସ୍ନେହର ବଶବର୍ତ୍ତୀ ହୋଇ ଦଧି, ଅକ୍ଷତ ଓ ପବିତ୍ର ଜଳମାନ କୃଷ୍ଣଙ୍କ ଉପରେ ସିଞ୍ଚନ କରି, 'ସବୁବେଳେ ଦୁଷ୍ଟମାନଙ୍କୁ ଦମନ କରି ଶିଷ୍ଟମାନଙ୍କୁ ପାଳନ କର, ଜନକଜନନୀଙ୍କର ଆନନ୍ଦବର୍ଦ୍ଧନ କରି ଧନୈଶ୍ୱର୍ଯ୍ୟସମ୍ପନ୍ନ ହୁଅ' ବୋଲି ଆଶୀର୍ବାଦ-ପୂର୍ଣ୍ଣ ବାକ୍ୟ କହି କୃଷ୍ଣଙ୍କୁ ସମ୍ବର୍ଦ୍ଧିତ କଲେ ।

କୃଷ୍ଣଙ୍କର ସେହି ଅଲୌକିକ କାର୍ଯ୍ୟ ଦର୍ଶନ କରି ସ୍ୱର୍ଗର ସିଦ୍ଧ, ଗନ୍ଧର୍ବ, ଚାରଣ ତଥା ଦେବତାମାନେ କୃଷ୍ଣଙ୍କ ମସ୍ତକରେ କୁସୁମ ବୃଷ୍ଟି କରିବା ସଙ୍ଗେ ସଙ୍ଗେ ତାଙ୍କର ସ୍ତୁତିଗାନ କରିବାକୁ ଲାଗିଲେ ।

କୃଷ୍ଣଙ୍କର ଅଲୌକିକ କାର୍ଯ୍ୟ ଗୋପବାସୀଙ୍କୁ ସମ୍ପୂର୍ଣ୍ଣରୂପେ ଅଭିଭୂତ କରିଦେଇଥିଲା । ସେମାନେ ନନ୍ଦଙ୍କ ନିକଟକୁ ଆସି ସଭକ୍ତି ପ୍ରଣାମ କରି କହିଲେ, 'ନନ୍ଦରାଜ, କୃଷ୍ଣ ଗୋଟିଏ ସାଧାରଣ ବାଳକ ନୁହନ୍ତି । ତାଙ୍କର କାର୍ଯ୍ୟ ଅତ୍ୟନ୍ତ ଅଦ୍ଭୁତ ଓ ଅଲୌକିକ । ଆମର ଏହି ନଗଣ୍ୟ ଗୋପବଂଶରେ କୃଷ୍ଣଙ୍କ ପରି ଅଦ୍ଭୁତକର୍ମା ବାଳକ ଯେ କିପରି ଜନ୍ମହେଲେ, ତାହା ଆମେ ବୁଝିପାରୁ ନାହୁଁ । ଗଜରାଜ ନିଜର ଶୁଣ୍ଢ ସାହାଯ୍ୟରେ ସରୋବରରୁ ପଦ୍ମପୁଷ୍ପ ଉତ୍ପାଟିତ କଲାପରି ସାତ ବର୍ଷ ବୟସର ଏହି ସାମାନ୍ୟ ବାଳକ କୃଷ୍ଣ ଅନାୟାସରେ ଗୋବର୍ଦ୍ଧନ ପରି ଗିରିରାଜକୁ ଉତ୍ପାଟିତ କରି ଏକାଦିକ୍ରମେ ସାତଦିନ ଧରି ଗୋଟାଏ ହାତରେ ତାକୁ ଧାରଣ କରି ରହିଲେ, ତାହା ବାସ୍ତବିକ ବିଶ୍ୱାସ କରି ହୁଏ ନାହିଁ । ଜଣେ ସାଧାରଣ ମନୁଷ୍ୟ ପକ୍ଷରେ ଏପରି କାର୍ଯ୍ୟ ଆଦୌ ସମ୍ଭବ ନୁହେଁ । ଏହି କୃଷ୍ଣ ସାମାନ୍ୟ ଶିଶୁ ଥିବା ସମୟରେ କାଳ ଅୟୁଷ ପାନ କଲା ପରି ମହାବିକ୍ରମଶାଳିନୀ ପୂତନାର ସ୍ତନ୍ୟପାନ କରିବା ଛଳରେ ତା'ର ପ୍ରାଣବାୟୁକୁ ମଧ୍ୟ ପାନ କରିଥିଲେ । ଯେତେବେଳେ କୃଷ୍ଣଙ୍କ ବୟସ ମାତ୍ର ତିନି ମାସ ସେତେବେଳେ ଶକଟତଳେ ଶୟନ କରିଥିବା ସମୟରେ ନିଜର ଅଲକ୍ଷିତ ପଦାଘାତରେ ଶକଟକୁ ଓଲଟାଇ ଦେଇଥିଲେ । ଏକବର୍ଷ ବୟସ କାଳରେ ତୃଣାବର୍ତ୍ତ ନାମକ ଅସୁରକୁ

ସେ ବିନାଶ କରିଥିଲେ'। ଲବଣୀଚୋରୀ ଅପରାଧରେ ମାତା ଯଶୋଦା କୃଷ୍ଣଙ୍କ ଅଣ୍ଟାରେ ରୁଖାଟାଏ ବାନ୍ଧିଦେଲା ପରେ ସେହି ଅବସ୍ଥାରେ ସେ ବିଶାଳ ଯାମଳାର୍ଜ୍ଜୁନ ବୃକ୍ଷକୁ ଉତ୍ପାଟିତ କରିଥିଲେ । ଏହି କୃଷ୍ଣ ନିଜର ସାଙ୍ଗସାଥିମାନଙ୍କ ସହିତ କ୍ରୀଡ଼ା କରୁଥିବା ବେଳେ ନିଜର ଦୁଇ ହସ୍ତରେ ବୃହଦାକାର ବତ୍ସାସୁର, ଧେନୁକାସୁର ପ୍ରମୁଖ ଦୈତ୍ୟଙ୍କୁ ବିନାଶ କରିଥିଲେ । ବିଷଧର କାଳୀୟନାଗର ଗର୍ବ ଖର୍ବ କରିବା କଥା ତ ଆମେ ସ୍ୱଚକ୍ଷୁରେ ସେଦିନ ଦର୍ଶନ କଲେ । ନନ୍ଦରାଜ, ଆପଣଙ୍କର ଏହି କୃଷ୍ଣ ନାମଧାରୀ ପୁତ୍ରଙ୍କ ପ୍ରତି ଆମ୍ଭମାନଙ୍କ ହୃଦୟରେ ଅକୁଣ୍ଠିତ ଅଜସ୍ର ଅନୁରାଗ ଜାତ ହୋଇଅଛି ଏବଂ ସେ ମଧ୍ୟ ଆମ୍ଭମାନଙ୍କ ପ୍ରତି ସ୍ୱାଭାବିକ ପ୍ରୀତି ପ୍ରକାଶ କରୁଅଛନ୍ତି । କୃଷ୍ଣଙ୍କୁ କେନ୍ଦ୍ରକରି ଆମ ମନରେ ବହୁ ଧାରଣା ଓ କୌତୂହଳ ସୃଷ୍ଟି ହେଉଅଛି । କୃଷ୍ଣଙ୍କର ଏହି ଅଲୌକିକ କାର୍ଯ୍ୟ ଆମକୁ ଆଶ୍ଚର୍ଯ୍ୟାନ୍ୱିତ କରୁଅଛି । ତାଙ୍କର ପରିଚୟ ସମ୍ପର୍କରେ ପ୍ରକୃତ କଥା କହି ଆମ୍ଭମାନଙ୍କର କୌତୂହଳକୁ ଆପଣ ଦୂର କରନ୍ତୁ ।'

ଗୋପମାନଙ୍କର କଥା ଶୁଣି ନନ୍ଦ କହିଲେ, 'ହେ ଗୋପଗଣ, ତୁମ୍ଭମାନଙ୍କର ମନର କଥା ମୁଁ ଉତ୍ତମରୂପେ ହୃଦୟଙ୍ଗମ କରିପାରୁଅଛି । ମୋ କଥାକୁ ମନଦେଇ ଶୁଣ । କୃଷ୍ଣଙ୍କୁ ଦେଖି ତା' ସମ୍ପର୍କରେ ମହର୍ଷି ଗର୍ଗ ବହୁକଥା ମୋତେ କହିଥିଲେ । ସେସବୁ କଥା ମୁଁ ତୁମ୍ଭମାନଙ୍କ ଆଗରେ ପ୍ରକାଶ କରୁଅଛି, ଶୁଣ । ସେ କହିଥିଲେ, 'ଆପଣଙ୍କର ଏହି ପୁତ୍ର ପ୍ରତ୍ୟେକ ଯୁଗରେ ଶରୀର ଗ୍ରହଣ କରିଥାଏ ଏବଂ ବିଭିନ୍ନ ଯୁଗରେ ଶ୍ୱେତ, ପୀତ, ରକ୍ତ ଓ କୃଷ୍ଣ ଆଦି ଭିନ୍ନ ଭିନ୍ନ ବର୍ଣ୍ଣ ଧାରଣ କରିଥାଏ । ସେଥିଯୋଗୁ ଏହି ଜନ୍ମରେ ତା'ର ଶରୀରର ବର୍ଣ୍ଣ କୃଷ୍ଣ ହୋଇଅଛି । ନନ୍ଦରାଜ, ଆପଣଙ୍କର ଏହି ପୁତ୍ର କେବେ ନା କେବେ ବସୁଦେବଙ୍କ ଗୃହରେ ଜନ୍ମ ହୋଇଥିବ, ସେଥିପାଇଁ ଏହି ପୁତ୍ରକୁ ଲୋକେ ବାସୁଦେବ ନାମରେ ମଧ୍ୟ ଅଭିହିତ କରିବେ । ନିଜର ଗୁଣ ଅନୁସାରେ ଏହି ପୁତ୍ର ବହୁ ନାମ ଓ ଯଶର ଅଧିକାରୀ ହେବ । ଏହି ସନ୍ତାନ ଆପଣଙ୍କର ପରମକଲ୍ୟାଣ ସାଧନ କରିବା ସଙ୍ଗେ ସଙ୍ଗେ ଗୋପବାସୀମାନଙ୍କୁ ବହୁ ବିପଦରୁ ଉଦ୍ଧାର କରି ସେମାନଙ୍କୁ ଆନନ୍ଦ ପ୍ରଦାନ କରିବ । ପୂର୍ବେ ଏହି ପୁତ୍ର ଦୁଷ୍ଟମାନଙ୍କୁ ଦଳନ ଓ ସାଧୁମାନଙ୍କୁ

ରକ୍ଷା କରୁଥିଲ ।' ନନ୍ଦରାଜ, 'ଏହି ପୁତ୍ରକୁ ସ୍ନେହ କରୁଥିବା ବ୍ୟକ୍ତିମାନେ ବାସ୍ତବିକ୍ ଭାଗ୍ୟବାନ୍ । ସେମାନେ ସମସ୍ତ ବିପଦରୁ ସହଜରେ ମୁକ୍ତି ଲାଭ କରିଥାନ୍ତି । ଆପଣଙ୍କର ଏହି ପୁତ୍ର ଗୁଣ, ଐଶ୍ୱର୍ଯ୍ୟ, ସୌନ୍ଦର୍ଯ୍ୟ, କାନ୍ତି ଓ ପ୍ରଭାବରେ ସାକ୍ଷାତ ଭଗବାନ ନାରାୟଣଙ୍କ ସଦୃଶ । ତେଣୁ ଏହି ବାଳକର ଅଲୌକିକ କାର୍ଯ୍ୟ ଦେଖି ଆଶ୍ଚର୍ଯ୍ୟ ହେବେ ନାହିଁ । ଏ ଅଦ୍ଭୁତକର୍ମା ।' ହେ ଗୋପବାସୀମାନେ, 'ଗର୍ଗାଚାର୍ଯ୍ୟ ମୋତେ ଏହା କହି ତାଙ୍କ ଆଶ୍ରମକୁ ଚାଲିଗଲେ । ଏହି ପୁତ୍ର କୃଷ୍ଣଙ୍କୁ ମୁଁ ସାଧାରଣ ବାଳକ ବୋଲି ମନେକରୁ ନାହିଁ । ଏ ବାସ୍ତବିକ ଅଦ୍ଭୁତକର୍ମା । ମୁଁ ଏହାଙ୍କୁ ଭଗବାନ ନାରାୟଣଙ୍କ ଅଂଶ ଜାତ ବୋଲି ମନେ କରୁଅଛି ।'

କୃଷ୍ଣଙ୍କ ସମ୍ପର୍କରେ ନନ୍ଦରାଜାଙ୍କ ମୁଖରୁ ଏ ସମସ୍ତ କଥା ଶୁଣି ଗୋପବାସୀମାନେ ଆନନ୍ଦିତ ହେଲେ ଏବଂ ସେମାନେ ପରମଭକ୍ତି ଓ ଆନନ୍ଦରେ ନନ୍ଦରାଜ ଓ କୃଷ୍ଣଙ୍କୁ ଗନ୍ଧ, ଚନ୍ଦନ, ବସ୍ତ୍ର ଓ ଭୂଷଣରେ ଅର୍ଚ୍ଚନା କଲେ ।

କୃଷ୍ଣଙ୍କର ସେହି ଅପୂର୍ବ ଲୀଳା ଅବଲୋକନ କରି ଦେବରାଜ ଇନ୍ଦ୍ର ଅତ୍ୟନ୍ତ ଲଜ୍ଜିତ ହୋଇ ଏକାନ୍ତରେ କୃଷ୍ଣଙ୍କ ନିକଟରେ ଉପସ୍ଥିତ ହୋଇ ନିଜର ଅଯଥା କ୍ରୋଧ ଓ କୃଷ୍ଣଙ୍କ-ଅବଜ୍ଞାଜନିତ ଦୋଷ ପାଇଁ କ୍ଷମା ପ୍ରାର୍ଥନା କଲେ ।

କୃଷ୍ଣଙ୍କୁ ସମ୍ବୋଧନ କରି ଦେବରାଜ କହିଲେ, 'ପ୍ରଭୁ, ଆପଣଙ୍କର ସ୍ୱରୂପ ଅନନ୍ତ । ଆପଣଙ୍କ ସ୍ୱରୂପକୁ ଯଥାର୍ଥରୂପେ ଅବଗତ ହେବାର ସାମର୍ଥ୍ୟ ମୋର ନାହିଁ । ଆପଣ ଜଗତ୍‌ପିତା, ଜଗଦ୍‌ଗୁରୁ ଏବଂ ଜଗଦୀଶ୍ୱର । ଆପଣ ଜଗତକୁ ନିୟନ୍ତ୍ରିତ କରିବା ନିମନ୍ତେ ହସ୍ତରେ କାଳରୂପକ ଦଣ୍ଡ ଧାରଣ କରିଅଛନ୍ତି ଓ ଭକ୍ତମାନଙ୍କ ମନୋବାଞ୍ଛା ପୂରଣ କରିବା ନିମନ୍ତେ ବିଭିନ୍ନ ଶରୀର ଧାରଣ କରି ନିଜର ଦିବ୍ୟ ଲୀଳାମାନ ପ୍ରକାଶ କରିଥାନ୍ତି । ପ୍ରଭୁ, ମୁଁ ଐଶ୍ୱର୍ଯ୍ୟମଦମତ୍ତ ହୋଇ ଏବଂ ଆପଣଙ୍କର ସ୍ୱରୂପକୁ ହୃଦୟଙ୍ଗମ କରିବାକୁ ଅସମର୍ଥ ହୋଇ ଆପଣଙ୍କ ପ୍ରତି ଅଯଥା କ୍ରୋଧଭାବ ପୋଷଣ କରି ଆପଣଙ୍କ ନିକଟରେ ପ୍ରଭୂତ ଅପରାଧ କରିଅଛି । ମୋର ଅଜ୍ଞାନକୃତ ଅପରାଧକୁ କରୁଣା ପୂର୍ବକ କ୍ଷମାକରନ୍ତୁ ଏବଂ ମୋତେ ଅନୁଗ୍ରହ ପୂର୍ବକ ଆଶୀର୍ବାଦ କରନ୍ତୁ, ଯେପରି ମୁଁ ଏହି ଅଜ୍ଞାନତା ଓ ଗର୍ବର

ଶରବ୍ୟ ଆଉ ନ ହୁଏ । ଆପଣ ସର୍ବନିୟନ୍ତା, ସର୍ବକାରଣ ସ୍ୱରୂପ ଜଗଦ୍‌ଗୁରୁ । ଆପଣଙ୍କର ଶ୍ରୀଚରଣରେ ଶରଣ ଭିକ୍ଷା କରୁଅଛୁ ।'

ଅନୁତପ୍ତ ଦେବରାଜଙ୍କ କଥା ଶୁଣି ଭଗବାନ କୃଷ୍ଣ ଈଷତ୍ ହାସ୍ୟ କରି କହିଲେ, 'ଇନ୍ଦ୍ର, ସ୍ୱର୍ଗରାଜ୍ୟର ରାଜପଦ ଲାଭକରିବା ଫଳରେ ତୁମ ମନରେ ଗର୍ବ ଦେଖାଦେଲା; ତେଣୁ ତୁମେ ମୋତେ ଭୁଲିଯାଇ ଅନ୍ୟାୟାଚରଣରେ ଆସକ୍ତ ହେଲ । ତୁମର ସେହି ଗର୍ବଭାବକୁ ଚୂର୍ଣ୍ଣ କରି ମୋର ସ୍ୱରୂପ ସମ୍ପର୍କରେ ତୁମକୁ ଚେତାଇଦେବା ନିମନ୍ତେ ତୁମ ଉଦ୍ଦେଶ୍ୟରେ ଆୟୋଜିତ ଯଜ୍ଞକୁ ମୁଁ ଭଙ୍ଗ କରିଥିଲି । ଯେଉଁ ବ୍ୟକ୍ତି ଐଶ୍ୱର୍ଯ୍ୟମଦମତ୍ତ ହୋଇ ମୋତେ ଭୁଲେ, ସେପରି ବ୍ୟକ୍ତିକୁ ସାଧାରଣତଃ ସମ୍ପଦଭ୍ରଷ୍ଟ କରି ମୁଁ ତାକୁ ସତ୍‌ପଥ ଦେଖାଇଥାଏ । ଏହା ହିଁ ମୋର କରୁଣା । କିନ୍ତୁ ତୁମ ପ୍ରତି ମୁଁ ସେପରି କଠୋରତା ଅବଲମ୍ବନ କରି ନାହିଁ । କେବଳ ଯଜ୍ଞଭଙ୍ଗ କରି ତୁମର ଭ୍ରମ ତୁମକୁ ଦେଖାଇ ଦେଇ ଅଛି । ଦେବରାଜ, ବର୍ତ୍ତମାନ ସ୍ୱର୍ଗକୁ ତୁମେ ଫେରିଯାଅ ଏବଂ ନିଜର କର୍ତ୍ତବ୍ୟ ପାଳନରେ ମନ ଦିଅ ।'

ଦେବରାଜଙ୍କ ସହିତ ସ୍ୱର୍ଗଗାଭୀ ସୁରଭି ମଧ୍ୟ ଆସିଥିଲେ । ସେ ନିଜର କ୍ଷୀରରେ କୃଷ୍ଣଙ୍କର ଅଭିଷେକ ସମ୍ପନ୍ନ କରିଥିଲେ ଏବଂ ଦେବରାଜ କୃଷ୍ଣଙ୍କୁ 'ଗୋବିନ୍ଦ' ନାମରେ ଅଭିହିତ କରିଥିଲେ ।

ଏହି ଘଟଣାର କିଛିଦିନ ପରେ, କାର୍ତ୍ତିକ ମାସ ଶୁକ୍ଳ ଏକାଦଶୀ ଦିନ ନନ୍ଦରାଜା ଉପବାସବ୍ରତ ପାଳନ କରି ଭଗବାନଙ୍କୁ ଆରାଧନା କଲେ ଏବଂ ଦ୍ୱାଦଶୀ ହେବା ପୂର୍ବରୁ ସ୍ନାନ କରିବା ନିମନ୍ତେ ଏକାଦଶୀ ରାତିରେ ଯମୁନା ନଦୀକୁ ଗଲେ । ଯମୁନା ନଦୀର ଏକ ସ୍ଥାନର ଜଳ ନନ୍ଦଙ୍କୁ ଅତ୍ୟନ୍ତ ସୁନ୍ଦର ଓ ସୁଗଭୀର ଜଣାପଡ଼ିବାରୁ ସେ ସେଠାରେ ସ୍ନାନ କରିବାକୁ ଜଳରେ ପ୍ରବେଶ କଲେ । ପ୍ରକୃତରେ ତାହା ଜଳ ହୋଇଥିଲେ ମଧ୍ୟ ସେଠାରେ ଏକ ଅସୁର ନିଜର ଆସୁରୀମାୟା ସୃଷ୍ଟିକରି ନନ୍ଦଙ୍କୁ ଆକୃଷ୍ଟ କରୁଥିଲା । ନନ୍ଦ ତାହା ଅନୁମାନ କରି ନ ପାରି ଜଳରେ ପ୍ରବେଶ କରିବାମାତ୍ରେ ସେହି ଅସୁରଟି ନନ୍ଦଙ୍କୁ ଧରିନେଇ ବରୁଣଙ୍କ ନିକଟରେ ଉପସ୍ଥିତ ହେଲା ।

ନଦୀରେ ସ୍ନାନ କରୁଥିବା ବେଳେ ନନ୍ଦରାଜାଙ୍କର କୌଣସି ପତ୍ତା ମିଳୁନାହିଁ ବୋଲି ସମ୍ବାଦ ଗୋପପୁରରେ ବିଦ୍ୟୁତବେଗରେ ଖେଳିଗଲା ଏବଂ ସମଗ୍ର ଗୋପ ଅଧିବାସୀମାନେ ଭୟ ଓ ଶୋକରେ ଭାଙ୍ଗିପଡ଼ିଲେ ।

ଗୋପବାସୀମାନେ କୃଷ୍ଣଙ୍କ ନିକଟକୁ ଯାଇ ନନ୍ଦଙ୍କୁ ଉଦ୍ଧାର କରି ଆଣିବା ନିମନ୍ତେ ବ୍ୟାକୁଳ ଅନୁରୋଧ କଲେ । ବରୁଣଙ୍କର ଜନୈକ ଅସୁର-ସେବକ ନନ୍ଦଙ୍କୁ ଧରିନେଇ ଥିବା କଥା କୃଷ୍ଣ ସଙ୍ଗେ ସଙ୍ଗେ ଜାଣି ପାରିଲେ । ତେଣୁ କୃଷ୍ଣ ବିଳମ୍ବ ନ କରି ସିଧା ବରୁଣପୁରକୁ ଯାତ୍ରା କଲେ । ବରୁଣ ଯେତେବେଳେ ଦେଖିଲେ, ଯେ ଅଖିଳ ଜଗତର ସ୍ରଷ୍ଟା ଓ ଅଧୀଶ୍ୱର ସ୍ୱୟଂ କୃଷ୍ଣ ତାଙ୍କ ସମ୍ମୁଖରେ ଉପସ୍ଥିତ, ସେ ସଙ୍ଗେ ସଙ୍ଗେ ଅତ୍ୟନ୍ତ ଭକ୍ତିର ସହିତ କୃଷ୍ଣଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇ ପୂଜାକଲେ ଏବଂ କହିଲେ, 'ପ୍ରଭୁ, ଆଜି ମୋର ଜୀବନ ସାର୍ଥକ ହେଲା । ଆପଣଙ୍କର ଚରଣସେବା କରିବାର ବିରଳ ସୁଯୋଗ ଲାଭକରିବା ମୋ ପକ୍ଷରେ ପରମ ସୌଭାଗ୍ୟର କଥା । ଆପଣଙ୍କ ଚରଣ ସେବା କରିଥିବା ବ୍ୟକ୍ତିମାନେ ଭବସାଗରରୁ ମୁକ୍ତିଲାଭ କରିଥାନ୍ତି । ଆପଣ ଯୋଗୀଜନ-ଧ୍ୟେୟ ପରମାତ୍ମା, ବେଦାନ୍ତବାଦୀଙ୍କର ପୂଜ୍ୟ ପରମବ୍ରହ୍ମ ଏବଂ ଭକ୍ତମାନଙ୍କର ଆରାଧ୍ୟ ଭଗବାନ ପ୍ରଭୁ, ମୋର ଏହି ଭୃତ୍ୟ ଅତ୍ୟନ୍ତ କର୍ତ୍ତବ୍ୟ-ବିଚାରଶୂନ୍ୟ ମୂର୍ଖ ଅଟେ । ସେ ଆପଣଙ୍କର ପିତାଙ୍କୁ ହରଣ କରି ମହାଅପରାଧ କରିଅଛି । ହେ କରୁଣାବାରିଧି, ଆପଣ ତା'ର ଦୋଷ ମାର୍ଜନା କରନ୍ତୁ । ଗୋବିନ୍ଦ, ଆପଣଙ୍କ ପିତାଙ୍କ ପ୍ରତି ଆପଣ ପ୍ରଗାଢ଼ ଭକ୍ତି ଓ ଅନୁ-ରକ୍ତି ପ୍ରକାଶ କରିଥାନ୍ତି । ଏହି ଘଟଣାରେ ଆପଣଙ୍କ ହୃଦୟରେ କି ଦାରୁଣ ଆଘାତ ଲାଗିଥିବ, ତାହା ମୁଁ ବୁଝିପାରୁଛି । ଆପଣ ବର୍ତ୍ତମାନ ପିତାଙ୍କୁ ସଙ୍ଗରେ ନେଇ ଯାଆନ୍ତୁ । ହେ ଅଖିଳଜଗତର ସ୍ରଷ୍ଟା, ପ୍ରଭୁ, ଆପଣଙ୍କର ଏହି ଦୀନଦାସ ବରୁଣ ପ୍ରତି ସର୍ବଦା ଅନୁଗ୍ରହ ଥାଉ, ଏହା ହିଁ ଆପଣଙ୍କ ଶ୍ରୀଚରଣରେ ମୋର ବିନୀତ ପ୍ରାର୍ଥନା ।'

ବରୁଣଙ୍କର ସ୍ତୁତିବାକ୍ୟରେ ପ୍ରସନ୍ନ ହୋଇ ପିତା ବସୁଦେବଙ୍କ ସହିତ କୃଷ୍ଣ ବ୍ରଜକୁ ଫେରି ଆସିଲେ । ଅକ୍ଷତ ଶରୀରରେ ନନ୍ଦଙ୍କୁ ଫେରି ପାଇ ବ୍ରଜବାସୀମାନେ ଆନନ୍ଦିତ ହେଲେ ।

ବରୁଣଲୋକରେ ନନ୍ଦ ଅବସ୍ଥାନ କରୁଥିବା ସମୟରେ ନନ୍ଦ ସ୍ୱଚକ୍ଷୁରେ ଦେଖିଥିଲେ ଯେ, ପରମ ଐଶ୍ୱର୍ଯ୍ୟ ମଧ୍ୟରେ ବାସକରୁଥିବା ବରୁଣଦେବ ତାଙ୍କର ପୁତ୍ର କୃଷ୍ଣଙ୍କୁ ପ୍ରଣାମ କରି ବିଭିନ୍ନ ସ୍ତୁତିବାକ୍ୟରେ ପ୍ରସନ୍ନ କରାଇଲେ । ସେହି ଦୃଶ୍ୟ ତାଙ୍କ ମନରେ ପରମ ବିସ୍ମୟ ସୃଷ୍ଟି କଲା । ସେ ବ୍ରଜବାସୀଙ୍କ ନିକଟରେ ସେହି କଥା ବର୍ଣ୍ଣନା କଲେ । ଗୋପମାନେ କୃଷ୍ଣଙ୍କୁ ସ୍ୱୟଂ ଭଗବାନ ବୋଲି ବୁଝିଥିଲେ; ତେଣୁ ନନ୍ଦଙ୍କର କଥା ଶୁଣି ଭଗବାନ କୃଷ୍ଣଙ୍କର ଐଶ୍ୱର୍ଯ୍ୟ ଦର୍ଶନ କରିବାକୁ ଗୋପବାସୀଙ୍କ ମନରେ ପ୍ରବଳ ଉତ୍କଣ୍ଠା ଜାତହେଲା । କୃଷ୍ଣ ସ୍ୱୟଂ ଭଗବାନ ଓ ଅନ୍ତର୍ଯ୍ୟାମୀ । ଗୋପବାସୀଙ୍କ ମନକଥା ତାଙ୍କୁ ଅବିଦିତ ରହିଲା ନାହିଁ । ସେ ଗୋପବାସୀଙ୍କ ପ୍ରତି କରୁଣାପରବଶ ହୋଇ ସେମାନଙ୍କ ମନର ଉତ୍କଣ୍ଠାକୁ ପ୍ରଶମିତ କରିବା ନିମନ୍ତେ ସେମାନଙ୍କୁ ବ୍ରହ୍ମସୁଖ ତଥା ବୈକୁଣ୍ଠସୁଖର ଅବିସ୍ମରଣୀୟ ଅନୁଭୂତି ପ୍ରଦାନ କରିବା ଉଦ୍ଦେଶ୍ୟରେ ନିଜର ସ୍ୱରୂପ ଏବଂ ପ୍ରକୃତିର ଅତୀତ ପରମଧାମକୁ ସେମାନଙ୍କର ଦୃଷ୍ଟି ସମ୍ମୁଖରେ ପ୍ରକଟିତ କରାଇଲେ । ଗୋପବାସୀମାନେ ଦେଖିଲେ ଯେ, ସମସ୍ତ ବେଦ ମୂର୍ତ୍ତିମାନ୍ ହୋଇ ଭଗବାନ କୃଷ୍ଣଙ୍କର ସ୍ତୁତିଗାନ କରୁଅଛନ୍ତି । ଭଗବାନଙ୍କର ସେହି ଦିବ୍ୟ ଭଗବତ୍ ସ୍ୱରୂପକୁ ଦର୍ଶନ କରି ନନ୍ଦ ତଥା ଗୋପବାସୀମାନେ ଯେ ପରମାନନ୍ଦ ଲାଭ କରି-ଥିଲେ, ଏହା କହିବା ବାହୁଲ୍ୟ ମାତ୍ର ।



# ରାସ-ଲୀଳା

ଶରତ ଋତୁର ସ୍ପର୍ଶରେ ରାତି ଅତ୍ୟନ୍ତ ରମଣୀୟ ହୋଇଉଠିଲା । ବିଭିନ୍ନ ପୁଷ୍ପର ସୌରଭ ଚତୁର୍ଦ୍ଦିଗକୁ ଆମୋଦିତ କରୁଥିଲା ।

ଗୋପାଙ୍ଗନାମାନଙ୍କ ବସ୍ତ୍ରହରଣ ସମୟରେ ପ୍ରଦାନ କରିଥିବା ପ୍ରତିଶ୍ରୁତିକୁ ପାଳନ କରିବାର ଉପଯୁକ୍ତ ସମୟ ଉପସ୍ଥିତ ହୋଇଅଛି ବୋଲି ଭାବି ଭଗବାନ କୃଷ୍ଣ ଗୋପଯୁବତୀମାନଙ୍କର ମନସ୍କାମନା ପୂର୍ଣ୍ଣ କରି ସେମାନଙ୍କ ସହ କ୍ରୀଡ଼ା କରିବା ନିମନ୍ତେ ନିଜର ଯୋଗଶକ୍ତିକୁ ଆଶ୍ରୟ କଲେ । ସେଦିନ ଥିଲା ଶୁଭ ପୂର୍ଣ୍ଣିମା । ଗୋପଯୁବତୀମାନଙ୍କ ସହିତ ବିହାର କରିବାକୁ ଇଚ୍ଛା କରିବା ମାତ୍ରେ ଶରତ ଆକାଶରେ ଚନ୍ଦ୍ରମା ଉଦୟ ହେଲେ । ଚିରଆକାଂକ୍ଷିତା ଗୋପାଙ୍ଗନାମାନଙ୍କର ମଧୁର କାମନା ସତେ ଯେପରି ଚନ୍ଦ୍ରର ସେହି ଉଦ୍‌ଭାସିତ ରୂପରେ ଲଜ୍ଜାନ୍ୱିତ ଅରୁଣିମା ହୋଇ ଲାଗିରହିଥିଲା । ରମଣୀୟ ଚନ୍ଦ୍ରମାର ଉପଭୋଗ୍ୟ ଜ୍ୟୋତ୍ସ୍ନାର ପ୍ଳାବନ ସମଗ୍ର ବୃନ୍ଦାବନକୁ ମୋହାଚ୍ଛନ୍ନ କରିରଖିଥିଲା ।

ଜ୍ୟୋତ୍ସ୍ନାବିଧୌତ ରଜନୀର ସେହି ଅନୁକୂଳ ପରିବେଶ ଅବଲୋକନ କରି ବ୍ରଜସୁନ୍ଦରୀମାନଙ୍କର ଚିତ୍ତକୁ ହରଣ କରିବା ନିମନ୍ତେ କୃଷ୍ଣ ନିଜର ବଂଶୀରେ ସୁମଧୁର ସ୍ୱର ମୂର୍ଚ୍ଛନା ସୃଷ୍ଟି କଲେ । କୃଷ୍ଣଙ୍କ ବଂଶୀର ସେହି ଅପୂର୍ବ ଚିତ୍ତହାରିଣୀ ସ୍ୱର ଗୋପୀମାନଙ୍କ ହୃଦୟରେ କୃଷ୍ଣଙ୍କ ପ୍ରତି ଥିବା ପ୍ରେମଭାବ ଓ ମିଳନାକାଂକ୍ଷାକୁ ଅଧିକ ଉଚ୍ଚାଟିତ କଲା । କୃଷ୍ଣଙ୍କ ସହିତ ମିଳିତ ହେବା ନିମନ୍ତେ ଗୋପାଙ୍ଗନାମାନେ ନିଜ ନିଜର ଅନାୟତ୍ତ ମନକୁ କୃଷ୍ଣଙ୍କ ଚରଣରେ ବହୁପୂର୍ବରୁ ସମର୍ପଣ କରିଦେଇଥିଲେ; ତେଣୁ ସେହି ବଂଶୀ-ସ୍ୱନ ଶ୍ରବଣ କରିବା ମାତ୍ରେ କନ୍ଦର୍ପପ୍ରପୀଡ଼ିତା ଗୋପାଙ୍ଗନାମାନଙ୍କର ଭୟ, ଲଜ୍ଜା, ଧୈର୍ଯ୍ୟ ଓ ମର୍ଯ୍ୟାଦାଜ୍ଞାନ ସମ୍ପୂର୍ଣ୍ଣ ରୂପେ ଲୋପପାଇଗଲା । ପ୍ରତ୍ୟେକ ଗୋପାଙ୍ଗନା

କୃଷ୍ଣଙ୍କୁ କାନ୍ତ ରୂପରେ ଲାଭ କରିବା ନିମନ୍ତେ ମନେ ମନେ କାମନା କରୁଥିଲେ; ତେଣୁ ବଂଶୀସ୍ୱର ସେମାନଙ୍କର କର୍ଣ୍ଣଗୋଚର ହେବାମାତ୍ରେ କେହି କାହାକୁ ନ ଜଣାଇ ଅତ୍ୟନ୍ତ ଗୋପନରେ କୃଷ୍ଣଙ୍କ ସହିତ ମିଳିତ ହେବା ନିମନ୍ତେ ବଂଶୀର ସେହି ସ୍ୱର ମୂର୍ଚ୍ଛନାକୁ ଅନୁସରଣ କରି କରି ଦ୍ରୁତବେଗରେ କୃଷ୍ଣ ବସିଥିବା ବନ ଉଦ୍ଦେଶ୍ୟରେ ଯାତ୍ରାକଲେ । କୃଷ୍ଣଙ୍କର ବଂଶୀବାଦନ ସମୟକୁ ଗୋପଯୁବତୀମାନଙ୍କ ମଧ୍ୟରୁ କେହି କେହି ଗୃହର ବିଭିନ୍ନ କାର୍ଯ୍ୟରେ ଲିପ୍ତଥିଲେ, କେହି କେହି ଭ୍ରାତା-ମାନଙ୍କୁ ଗୋଦୋହନ କାର୍ଯ୍ୟରେ ସହାୟତା କରୁଥିଲେ, କେହି କେହି ଅଗ୍ନିରେ ଦୁଗ୍ଧ ସିଦ୍ଧ କରୁଥିଲେ ତ କେହି ପରିବାର ତଥା ବନ୍ଧୁଙ୍କୁ ଅନ୍ନାଦି ପରିବେଷଣ କରୁଥିଲେ ଓ କେହି କେହି ସ୍ୱାମୀଙ୍କର ସେବା କରୁଥିଲେ ବା କେହି କେହି ବେଶଭୂଷା ହେଉଥିଲେ । ବଂଶୀ-ସ୍ୱନ ଶୁଣିବା ମାତ୍ରେ ଗୋପାଙ୍ଗନାମାନେ ସେହିସବୁ କାର୍ଯ୍ୟକୁ ପରିତ୍ୟାଗ କରି ବନକୁ ଯାତ୍ରାକଲେ । ଭାଇ, ବନ୍ଧୁ, ପତି ଓ ପରିଜନମାନେ ସେମାନଙ୍କୁ କେଉଁଆଡ଼େ ଯାଉଅଛ ବୋଲି କହି ବାରଣ କଲେ ମଧ୍ୟ ସେମାନେ ସେଥିପ୍ରତି କର୍ଣ୍ଣପାତ କଲେ ନାହିଁ । ଗୋପାଙ୍ଗନାମାନଙ୍କର ହିତାହିତ ଜ୍ଞାନ ଲୋପ ପାଇଥିଲା । କିପରି ଓ କେଉଁ ବାଟେ ସେମାନେ କୃଷ୍ଣଙ୍କ ପାଖକୁ ଗଲେ ନିଜେ ସେମାନେ ମଧ୍ୟ ଜାଣିପାରି ନ ଥିଲେ । କୃଷ୍ଣଙ୍କ ସହିତ ମିଳିତ ହେବାର ବାସନା ସେମାନଙ୍କର ମନରେ ଏପରି ପ୍ରବଳ ହୋଇପଡ଼ିଥିଲା ଯେ, ସେମାନଙ୍କ ଦେହରେ ଚେତା ନ ଥିଲା କହିଲେ ଅସଙ୍ଗତ ହେବ ନାହିଁ । ସେମାନେ କୃଷ୍ଣଙ୍କ ନିକଟକୁ ଯିବାକୁ ଏପରି ବ୍ୟଗ୍ର ଓ ବ୍ୟାକୁଳ ହୋଇପଡ଼ିଥିଲେ ଯେ, ସେହି ବ୍ୟସ୍ତତା ମଧ୍ୟରେ କେବେ କାନର ଭୂଷଣକୁ ନାସିକାରେ, ନାସିକାର ଅଳଙ୍କାରକୁ ମସ୍ତକରେ, ଉତ୍ତରୀୟକୁ ବସ୍ତ୍ର ଭାବରେ ଓ ବସ୍ତ୍ରକୁ ଉତ୍ତରୀୟ ଭାବରେ ପରିଧାନ କରି କୃଷ୍ଣଙ୍କ ନିକଟକୁ ଯାତ୍ରାକଲେ ।

ଯେଉଁ ଗୋପାଙ୍ଗନାମାନେ ଗୃହମଧ୍ୟରେ ତଥାପି ରହିଥିଲେ, ଓ ବାହାରକୁ ଯାଇ କୃଷ୍ଣଙ୍କ ସହିତ ମିଳିତ ହେବାର କୌଣସି ସୁବିଧା ପାଇପାରିଲେ ନାହିଁ । ସେମାନେ ଅନନ୍ୟୋପାୟ ହୋଇ ନିଜ ନିଜର ନେତ୍ର ମୁଦ୍ରିତ କରି ଅତ୍ୟନ୍ତ ପ୍ରେମତନ୍ମୟତାର ସହିତ କୃଷ୍ଣଙ୍କର ରୂପ,

ଗୁଣ ଓ ଲୀଳାକୁ ମନ ମଧ୍ୟରେ ଧ୍ୟାନ କରିବାକୁ ଲାଗିଲେ । ସାନ୍ନିଧ୍ୟ ଜନିତ ବିରହାନଳ ଗୋପାଙ୍ଗନାଙ୍କ ପକ୍ଷରେ ଅତ୍ୟନ୍ତ ଅସହ୍ୟ ହୋଇ-ପଡ଼ିଥିଲା; ତେଣୁ ଧ୍ୟାନମଗ୍ନା ଗୋପରମଣୀଙ୍କର ମାନସ ଚକ୍ଷୁ ସମ୍ମୁଖରେ କୃଷ୍ଣ ପ୍ରକଟିତ ହୋଇ ଗୋପାଙ୍ଗନାଙ୍କର ହୃଦୟରୁ ବିରହ ମୂଳକ ସମସ୍ତ ବ୍ୟଥା ଓ ପାପକୁ ଦୂର କରିଦେଲେ । ସେହି ଧ୍ୟାନ ମଧ୍ୟରେ ପ୍ରାଣପ୍ରିୟ ପ୍ରଭୁ କୃଷ୍ଣଙ୍କୁ ଗୋପୀମାନେ ପରମ ପ୍ରୀତିର ସହିତ ଆଲିଙ୍ଗନ କଲେ । ବହୁ ଆକାଂକ୍ଷିତ ପ୍ରିୟ ସାନ୍ନିଧ୍ୟ ପ୍ରାପ୍ତିର ସେହି ଅବ୍ୟକ୍ତ ସୁଖାନୁଭୂତି ସେମାନଙ୍କ ମନରେ ଏପରି ପ୍ରଶାନ୍ତିର ପ୍ରଲେପ ବୋଳି ଦେଲା ଯେ ସେମାନେ କୃଷ୍ଣଙ୍କୁ ଆଲିଙ୍ଗନ କରିବାର ପୁଣ୍ୟ ଫଳର ପରିବର୍ତ୍ତେ ଭଗବାନଙ୍କ ସହିତ ରମଣ କରିବା ନିମନ୍ତେ ଲୀଳାଯୋଗ୍ୟ ଦିବ୍ୟ ଶରୀର-ମାନର ଅଧିକାରିଣୀ ହେଲେ ।

ଶୁକଦେବଙ୍କ ମୁଖରୁ ଭଗବାନଙ୍କର, ଲୀଳାକଥା ଶୁଣୁ ଶୁଣୁ ପରୀକ୍ଷିତ ଏହି ସମୟରେ ପ୍ରଶ୍ନ କଲେ, 'ହେ ଯୋଗସିଦ୍ଧ ମୁନି, ମୋ ମନରେ ଏକ ସନ୍ଦେହ ଜାତ ହେଉଅଛି, ଦୟାକରି ତାହା ମୋଚନ କରନ୍ତୁ । ଗୋପୀମାନେ କୃଷ୍ଣଙ୍କୁ ନିଜର ପ୍ରିୟତମ ରୂପରେ ଲାଭ କରିବାକୁ ଅଭିଳାଷ ପୋଷଣ କରିଥିଲେ । ସେମାନଙ୍କ ମନରେ ସେପରି ବ୍ରହ୍ମ-ଭାବର ଉଦୟ ହୋଇ ନ ଥିଲା । ସେମାନେ ଅତ୍ୟନ୍ତ ସାଧାରଣ ପ୍ରାକୃତ ଗୁଣରେ ଆବଦ୍ଧ ଥିଲେ । ସେମାନେ ସାଂସାରିକ ଜୀବନରୁ ଏପରି ନିଷ୍କୃତି ଲାଭ କଲେ କିପରି ?'

ଶୁକଦେବ କହିଲେ, 'ମହାରାଜ, ଚେଦିରାଜ ଶିଶୁପାଳଙ୍କ କଥା ଆପଣ ଜାଣନ୍ତି । ଭଗବାନ କୃଷ୍ଣଙ୍କ ପ୍ରତି ଶିଶୁପାଳ ଦ୍ୱେଷ-ଭାବ ପୋଷଣ କରି ମଧ୍ୟ ପରିଶେଷରେ କୃଷ୍ଣଙ୍କ ସଂସ୍ପର୍ଶରେ ଆସି ନିଜର ପ୍ରାକୃତ ଶରୀରକୁ ସେ ତ୍ୟାଗ କରି ଅପ୍ରାକୃତ ଦିବ୍ୟ ଶରୀର ଲାଭ କରିଥିଲେ ଏବଂ ସେ ଭଗବାନଙ୍କର ପାର୍ଷଦ ହେବାର ସୌଭାଗ୍ୟ ମଧ୍ୟ ଅର୍ଜନ କରିଥିଲେ । ତେଣୁ କାୟ-ମନବାକ୍ୟରେ କୃଷ୍ଣଙ୍କୁ ସ୍ୱାମୀ ରୂପରେ ଲାଭ କରିବାକୁ ଅଭିଳାଷ ପୋଷଣ କରିଥିବା ଅନନ୍ୟ ପ୍ରେମଭାବ-ପରାୟଣା ଗୋପରମଣୀମାନେ ଯେ ସିଦ୍ଧିଲାଭ କରିବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ପ୍ରକୃତରେ ଭଗବାନ ପ୍ରକୃତିର ଅତୀତ, ପ୍ରମାଣ-ପ୍ରମେୟ-ଗୁଣ ରହିତ

ଅଚିନ୍ତ୍ୟ ଅନନ୍ତ, ଅପ୍ରାକୃତ ଏବଂ ପରମକଲ୍ୟାଣ ସ୍ୱରୂପ । ମନୁଷ୍ୟ ଜୀବନର ଅଶେଷ କଲ୍ୟାଣ ସାଧନ କରିବା ହିଁ ଭଗବାନଙ୍କ ଲୀଳାର ପ୍ରଧାନ ଲକ୍ଷ୍ୟ ତେଣୁ କୌଣସି ନା କୌଣସି ପ୍ରକାରରେ ଭଗବାନଙ୍କ ସହିତ ଜୀବର ସମ୍ବନ୍ଧ ପ୍ରତିଷ୍ଠିତ ହେବା ଏକାନ୍ତ ବାଞ୍ଛନୀୟ । କାମ-ଭାବରେ ହେଉ ଅଥବା କ୍ରୋଧ ମାଧ୍ୟମରେ ହେଉ ଅଥବା ଭୟ, ସ୍ନେହ, ସୌହାର୍ଦ୍ଦ୍ୟମୂଳକ ହେଉ, କୌଣସି ନା କୌଣସି ଭାବରେ ଭଗବାନଙ୍କ ସହିତ ନିଜକୁ ନିବିଡ଼ଭାବରେ ଜଡ଼ିତ କରିବା ବିଧେୟ । ତାହାହେଲେ ଜୀବ ଭଗବତ୍ ଭାବ ତନ୍ମୟ ହୁଏ ଓ ଭଗବାନଙ୍କର କରୁଣା ଲାଭ କରେ । ଭଗବାନଙ୍କ ସମ୍ବନ୍ଧରେ କୌଣସି ମନ୍ଦ, ସନ୍ଦେହ ବା ଭ୍ରାନ୍ତ ଧାରଣା ପୋଷଣ କରିବା ଉଚିତ ନୁହେଁ । ଭଗବାନଙ୍କ ନିକଟରେ ଅସମ୍ଭବ ବା ଆଶ୍ଚର୍ଯ୍ୟକର ହୋଇ କିଛି ନାହିଁ । ତାଙ୍କ ପକ୍ଷରେ ସବୁ ସମ୍ଭବ ଓ ସେ ସମସ୍ତ ସାମର୍ଥ୍ୟର ଅଧିକାରୀ ।

ଯେତେବେଳେ ଭଗବାନ କୃଷ୍ଣ ଦେଖିଲେ ଯେ ପରମ ପ୍ରେମବିହ୍ୱଳା ଗୋପରମଣୀମାନେ ବଂଶୀସ୍ୱନରେ ଆକୃଷ୍ଟ ହୋଇ ତାଙ୍କ ନିକଟରେ ଆସି ଉପସ୍ଥିତ ହୋଇଅଛନ୍ତି, କୃଷ୍ଣ ନିଜର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଅନୁପମ ବାକ୍ୟବିନ୍ୟାସର ଆଶ୍ରୟ ନେଇ କହିଲେ, 'ହେ ସୌଭାଗ୍ୟମୟୀ ଗୋପରମଣୀମାନେ, ହଠାତ୍ ତୁମ୍ଭମାନଙ୍କର ଏଠାକୁ ଏପରି ଆସିବାର କାରଣ କ'ଣ ଜାଣିପାରେ କି ? ତୁମ୍ଭମାନଙ୍କର ଏହି ଭାବବିହ୍ୱଳ ଅବସ୍ଥା ଲକ୍ଷ୍ୟ କରି ମୋ ମନରେ ଆଶଙ୍କା ଜାତ ହେଉଅଛି, ବ୍ରଜ-ମଣ୍ଡଳରେ କୌଣସି କିଛି ଅମଙ୍ଗଳ ଘଟିନାହିଁ ତ ? କୁହ, କି ଉଦ୍ଦେଶ୍ୟରେ ତୁମ୍ଭେମାନେ ଏଠାକୁ ଆସିଅଛ ଏବଂ ତୁମ୍ଭମାନଙ୍କ ପାଇଁ ମୁଁ କ'ଣ କଲେ ତୁମ୍ଭେମାନେ ପ୍ରସନ୍ନ ହେବ ? ହେ ସୁମଧ୍ୟମାମାନେ, ଏହି ଘୋର ରଜନୀରେ ଜୀବଜନ୍ତୁ ପରିପୂର୍ଣ୍ଣ ଏହି ଅରଣ୍ୟ ଆଦୌ ନିରାପଦ ନୁହେଁ । ଏଠାରେ ଭୟର ଯଥେଷ୍ଟ କାରଣ ରହିଅଛି । ଏଠାରେ ଆଉ ନ ରହି ଅବିଳମ୍ବେ ଘରକୁ ପ୍ରତ୍ୟାବର୍ତ୍ତନ କର । ରାତ୍ରିକାଳୀନ ଭୟଉଦ୍ରେକକାରୀ ଅରଣ୍ୟରେ ରମଣୀମାନଙ୍କର ଅବସ୍ଥାନ ଆଦୌ ସମୀଚୀନ ନୁହେଁ । ତୁମ୍ଭମାନଙ୍କୁ ନ ଦେଖି ତେଣେ ତୁମ୍ଭମାନଙ୍କର ପିତା, ମାତା, ପତି ଓ ପୁତ୍ରମାନେ ନିଶ୍ଚୟ ବିଚଳିତ ହୋଇ ଏଣେତେଣେ ଅନ୍ୱେଷଣ କରୁଥିବେ । ସେମାନଙ୍କୁ ଏପରି ଅଯଥା ଦୁଃଖ ଓ ଦୁଶ୍ଚିନ୍ତା ମଧ୍ୟରେ ପକାଇବା ତୁମ୍ଭମାନଙ୍କର

ଉଚିତ ହେଲା ନାହିଁ । ବୁଝାକର ଭାବ ତ, ଯଦି ତୁମ୍ଭମାନଙ୍କୁ ଅନ୍ୱେଷଣ କରୁଁ କରୁ ହଠାତ୍ ସେମାନେ ଏଠାରେ ଆସି ପହଞ୍ଚି ଯାଆନ୍ତି, ତୁମ୍ଭମାନଙ୍କର ଅବସ୍ଥା କ'ଣ ହେବ ଏବଂ କଥାଟା କେଡ଼େ ଖରାପ ଦେଖାଯିବ । ଲଜ୍ଜା ଓ ଭୟରେ ମୁହଁ ଦେଖାଇବା ଅସମ୍ଭବ ହୋଇ ପଡ଼ିବ । ପୁଷ୍ପଦ୍ରୁମ ସମାକୀର୍ଣ୍ଣ ଓ ଜ୍ୟୋତ୍ସ୍ନା ବିଧୌତ ଅରଣ୍ୟର ରମଣୀୟ ଶୋଭାକୁ ତ ତୁମ୍ଭେମାନେ ଦର୍ଶନ କଲ, କେବଳ, ବର୍ତ୍ତମାନ କାଳ ବିଳମ୍ବ ନ କରି ତୁମ୍ଭେମାନେ ଗୃହକୁ ପ୍ରତ୍ୟାଗମନ କର । ଅରଣ୍ୟର ଏହି ଅପୂର୍ବ ଶୋଭା ଦର୍ଶନ କରି ସାରିବା ପରେ ତୁମ୍ଭମାନଙ୍କର ମନର ସମସ୍ତ ଅଭିଳାଷ ତ ପ୍ରଶମିତ ହୋଇଅଛି, ତେଣୁ ଏଠାରେ ଅଧିକ କାଳ ରହିବାର ଆବଶ୍ୟକତା ତୁମ୍ଭମାନଙ୍କର ନାହିଁ । ତୁମ୍ଭେମାନେ ଘରକୁ ଫେରିଯାଅ । ତୁମ୍ଭେମାନେ କୁଳୀନ ସ୍ତ୍ରୀ ଓ ସାଧ୍ୱୀ । ନିଷ୍କପଟ ଚିତ୍ତରେ ନିଜ ନିଜର ସ୍ୱାମୀ ଓ ଶ୍ୱଶୁରମାନଙ୍କର ସେବା ଯତ୍ନ କରିବା ଏବଂ ସନ୍ତାନାଦି ପାଳନ କରିବା ହିଁ ତୁମ୍ଭମାନଙ୍କର କର୍ତ୍ତବ୍ୟ; ତେଣୁ ନିଜ ନିଜର ସତୀତ୍ୱ ଓ ସୁନାମ ନଷ୍ଟ ହେବାର ଆଶଙ୍କା କଥା ଚିନ୍ତା କରି ପରପୁରୁଷଠାରୁ ତୁମ୍ଭେମାନେ ସର୍ବଦା ଦୂରରେ ରହିବା ଉଚିତ । ତେଣୁ ସାବଧାନତା ଅବଲମ୍ବନ କରି ଗୃହକୁ ବର୍ତ୍ତମାନ ଫେରିଯାଅ । ତେବେ, ପରିବାରର ଲୋକମାନେ ତୁମ୍ଭମାନଙ୍କୁ ଖୋଜୁଥିବେ ତୁମକୁ ନ ପାଇ ପିଲାମାନେ କାନ୍ଦୁଥିବେ ଏବଂ ବାଛୁରୀମାନେ ହମ୍ବାରଡ଼ି ଦେଉଥିବେ । ତେଣୁ ଘରକୁ ଫେରିଯାଇ ସେମାନଙ୍କୁ ଦୁଗ୍ଧପାନ କରାଇ ଆଶ୍ୱସ୍ତ କର । ସତୀମାନଙ୍କ ପକ୍ଷରେ ପରପୁରୁଷର ସେବା କରିବା ପରମ ଅଧର୍ମ ଓ ପରମ ନିନ୍ଦାର ବିଷୟ । ଏହିପରି ଅପକର୍ମ ଦ୍ୱାରା ନାରୀମାନେ ଇହଲୋକ ଓ ପରଲୋକରେ ନାନାଦି ନିର୍ଯ୍ୟାତନା ଓ ଦୁର୍ଭାଗ୍ୟର ସମ୍ମୁଖୀନ ହୋଇଥାନ୍ତି । ସ୍ୱାମୀ ଦୁଶ୍ଚରିତ୍ର, ହତଭାଗା, ବୃଦ୍ଧ, ରୁଗ୍‍ଣ, ଦରିଦ୍ର ବା ପଙ୍ଗୁ ହେଲେ ମଧ୍ୟ ସ୍ତ୍ରୀର ସେ ପରମ ପୂଜନୀୟ ଓ ସର୍ବଦା ସେବ୍ୟ । ମୋ ପ୍ରତି ଆସକ୍ତ ହୋଇ ତୁମ୍ଭେମାନେ ଯଦି ଏଠାକୁ ଆସିଥାଅ, ଭଲ କଥା । ମୋତେ ତ ସମସ୍ତେ ସ୍ନେହ ଓ ଆଦର କରିଥାନ୍ତି ମୋତେ ଦର୍ଶନ କରି ସମସ୍ତେ ଆନନ୍ଦ ଲାଭ କରିଥାନ୍ତି । ମୋର ଲୀଳା ଶ୍ରବଣ, କୀର୍ତ୍ତନ ଓ ଧ୍ୟାନଦ୍ୱାରା ଯେଉଁ ଅନନ୍ତ ପ୍ରେମ ମିଳିଥାଏ ମୋର ସଙ୍ଗସୁଖ ବା ସାନ୍ନିଧ୍ୟ ଲାଭ ଦ୍ୱାରା ସେପରି ପ୍ରେମ ଲାଭ ହୋଇ ନ

ଥାଏ । ତେଣୁ ମୋ ନିକଟରେ ଆଉ ଅଧିକ ସମ୍ଭବ. ଅବତାବସ୍ଥିତ ନ କରି ତୁମ୍ଭେମାନେ ନିଜ ନିଜର ଘରକୁ ଫେରିଯାଅ ।'

କୃଷ୍ଣଙ୍କର ବଂଶୀ-ସ୍ୱନ ଶୁଣି କୃଷ୍ଣଙ୍କ ସହିତ ରମଣ କରିବା ଆଶାରେ କାମପୀଡ଼ିତା ଗୋପାଙ୍ଗନାମାନେ ପାଗଳିନୀ ପରି ଅରଣ୍ୟକୁ ଧାଇଁ ଆସିଥିଲେ; କିନ୍ତୁ କୃଷ୍ଣଙ୍କ ମୁଖରୁ ସେପରି ନିର୍ଘଣ ବାଣୀ ଶୁଣି ସେମାନେ ଦୁଃଖ ଓ ହତାଶାରେ ଭାଙ୍ଗି ପଡ଼ିଲେ । ସେମାନଙ୍କର ନାସିକାରୁ ଘନଘନ ଦୀର୍ଘ ନିଶ୍ୱାସ ବହିର୍ଗତ ହେଉଥାଏ । ସେମାନଙ୍କର ପକ୍ୱ ବିମ୍ବଫଳ ସଦୃଶ ସୁଦୃଶ୍ୟ ଓଷ୍ଠପଟ ଶୁଷ୍କ ହୋଇଥାଏ । ସେମାନଙ୍କର କଜ୍ଜ୍ୱଳ ପୂରିତ ନୟନରୁ ଧାର ଧାର ହୋଇ ଲୋତକ ଝରି ସେମାନଙ୍କର ଉନ୍ନତ ସ୍ତନ ଯୁଗଳକୁ ଅଶ୍ରୁସିକ୍ତ କରି ଦେଉଥାଏ । ସେମାନେ ଲଜ୍ଜାସିକ୍ତ ଅଧୋବଦନରେ ନିର୍ବାକ ଓ ଦଣ୍ଡାୟମାନା ହୋଇ ନିଜ ନିଜର ପଦାଙ୍ଗୁଷ୍ଠିରେ ଭୂମିରେ ରେଖାମାନ କାଟୁଥାନ୍ତି ।

ମାରବତାରେ କିଛି ସମୟ ଅତିବାହିତ ହୋଇଗଲା । ପରିଶେଷରେ ଦୁଃଖାଭିଭୂତା ଗୋପାଙ୍ଗନାମାନେ ନିଜ ନିଜର ନୟନରୁ ଲୋତକ ମାର୍ଜନ କରି ଧୀରେ ଧୀରେ କୃଷ୍ଣଙ୍କୁ କହିଲେ, 'ହେ ପ୍ରାଣନାଥ, ଆମ୍ଭମାନଙ୍କର ହୃଦୟର କଥା ସବୁ ଅବଗତ ହୋଇ ମଧ୍ୟ ଆମ୍ଭମାନଙ୍କ ପ୍ରତି ଏପରି ନିଷ୍ଠୁର ବାକ୍ୟ ପ୍ରୟୋଗ କରିବା ତୁମ ପକ୍ଷରେ ଆଦୌ ଉଚିତ ହୋଇ ନାହିଁ । ଆମେ ସବୁ କିଛି ତ୍ୟାଗ କରି ଆଜି ତୁମରି ଶ୍ରୀଚରଣରେ ଆଶ୍ରୟ ନେବା ଆଶାରେ ଏଠାକୁ ଧାଇଁ ଆସିଅଛୁ । ଆମକୁ ଏପରି କଥା କହି ତୁମ୍ଭେ ପରିତ୍ୟାଗ କର ନାହିଁ । ଆଦି ପୁରୁଷ ଭଗବାନ ତାଙ୍କର ମୁମୁକ୍ଷୁମାନଙ୍କ ପ୍ରତି ସଦୟ ହେଲା ପରି ତୁମେ ଆମ୍ଭମାନଙ୍କ ପ୍ରତି ଅନୁରୂପ ଅନୁଗ୍ରହ ପ୍ରକାଶ କରି ଆମ୍ଭମାନଙ୍କୁ ଗ୍ରହଣ କର ଓ ଆମ୍ଭମାନଙ୍କର ମନୋରଥ ପୂର୍ଣ୍ଣ କର । କୃଷ୍ଣ, ସାଧ୍ୱୀରମଣୀମାନଙ୍କ ପକ୍ଷରେ ନିଜର ସ୍ୱାମୀ, ସନ୍ତାନ, ତଥା ଜ୍ଞାତିବନ୍ଧୁମାନଙ୍କ ପ୍ରତି ଭକ୍ତି ଓ ସ୍ନେହ ଭାବ ପୋଷଣ କରିବା ଓ ସେମାନଙ୍କର ସେବା କରିବା ପରମ କର୍ତ୍ତବ୍ୟ ଏବଂ ତାହା ହିଁ ସ୍ତ୍ରୀ-ଧର୍ମ ବୋଲି ତୁମେ ଯେଉଁ ସଦୁପଦେଶ ପ୍ରଦାନ କଲ, ତାହା ଯଥାର୍ଥ । ତୁମର ସେହି ଉପଦେଶ ଅନୁସାରେ ତୁମେ ହିଁ ଆମର ପରମସେବ୍ୟ ଓ ଧ୍ୟେୟ, କାରଣ ଆମ ସମସ୍ତଙ୍କ ଶରୀରରେ ପରମାତ୍ମା ରୂପରେ ତୁମେ ସଦା ବିରାଜିତ ।

ତୁମେ ପ୍ରତ୍ୟେକ ପ୍ରାଣୀଙ୍କର ପରମପୂଜ୍ୟ ଓ ପରମବନ୍ଧୁ । ହେ କମଳ-ଲୋଚନ, ହେ ପ୍ରଭୁ, ଜ୍ଞାନୀମାନେ ସର୍ବଦା ତୁମ ପ୍ରତି ଭକ୍ତି ଓ ଶ୍ରଦ୍ଧା ପ୍ରକାଶ କରିଥାନ୍ତି, କାରଣ ତୁମେ ନିତ୍ୟ, ଅବିନାଶୀ, ସର୍ବପ୍ରିୟ ଓ ସମସ୍ତଙ୍କର ଆତ୍ମା ଅଟ । ସ୍ୱାମୀ ପରିଜନମାନେ ସାଂସାରିକ ଦୃଷ୍ଟିରେ ପ୍ରିୟ ଓ ପୂଜ୍ୟ ହେଲେ ମଧ୍ୟ ସେମାନେ ଅନିତ୍ୟ । ତେଣୁ ଅନିତ୍ୟଙ୍କୁ ତ୍ୟାଗ କରି ନିତ୍ୟ ଓ ଚିରନ୍ତନ ପ୍ରତି ଆକୃଷ୍ଟ ହେବା ନିଶ୍ଚୟ ଅନ୍ୟାୟ ନୁହେଁ । ହେ ବାଞ୍ଛାକଳ୍ପତରୁ, ତୁମକୁ ଲାଭ କରିବା ନିମନ୍ତେ ଜନ୍ମାବଧି ଅଭିଳାଷ ପୋଷଣ କରି ଆସିଅଛୁ । ଆଜି ଆମର ଏହି ଚିରପୋଷିତ ଆଶା ଲତାକୁ ଛେଦନ କର ନାହିଁ ଆମକୁ ଗ୍ରହଣ କରି ଆମର ଆଜନ୍ମର ଆଶାକୁ ସଫଳ କର । ହେ ମନମୋହନ, ଗୃହକୁ ଫେରିଯାଇ ଗୃହକର୍ମରେ ମନୋନିବେଶ କରିବାକୁ ଆମକୁ ଉପଦେଶ ଦେଉଅଛ; କିନ୍ତୁ ଆମପରି ଏକଦା ଗୃହକର୍ମ-ନିପୁଣା ରମଣୀମାନଙ୍କର ଚିତ୍ତକୁ ଯେ ତୁମେ ସମ୍ପୂର୍ଣ୍ଣରୂପେ ହରଣ କରି ନେଇଅଛ ଏବଂ ତା'ଫଳରେ ତୁମକୁ ତ୍ୟାଗ କରି ପାହୁଣ୍ଡେ ମଧ୍ୟ ଯିବାକୁ ଯେ ଆମର ଏହି ପଦଯୁଗଳ ଅସମର୍ଥ, ଏ କଥା ତୁମେ ଉତ୍ତମ ରୂପେ ବୁଝି ମଧ୍ୟ ଅବୁଝ ହେଉଅଛ କାହିଁକି ? ବ୍ରଜକୁ ଯିବୁ କିପରି ଓ କ'ଣ ପାଇଁ ବା ଯିବୁ ? ହେ ପ୍ରାଣବଲ୍ଲଭ, ତୁମର ସୁନ୍ଦର ରୂପ, ସାହାସ୍ୟ ବଦନ, ଓ ତୁମର ଏହି ମୋହନ ବଂଶୀର ସ୍ୱର ତୁମପ୍ରତି ଆମର ମନକୁ ବିଶେଷ ଭାବରେ ଉଦ୍ଦୀପିତ କରି ଅସହ୍ୟ କାମାଗ୍ନିରେ ଆମର ଶରୀରକୁ ପୀଡ଼ିତ କରୁଅଛି । ତୁମର ଏହି ଅଧର ସୁଧା ପ୍ରଦାନ କରି ଆମର କାମ ପୀଡ଼ାକୁ ଶାନ୍ତ କର । ତାହା ନ କଲେ, ହେ ପ୍ରିୟତମ, ଏହି ଅସହ୍ୟ ବିରହାନଳରେ ଶରୀର ତ୍ୟାଗ କରି ଧ୍ୟାନଯୋଗ ବଳରେ ତୁମକୁ ଲାଭ କରିବାକୁ ଯତ୍ନ କରିବୁ । ହେ ଅମ୍ବୁଜାକ୍ଷ, ତୁମେ ବନବାସୀମାନଙ୍କୁ ଯେପରି ଆଦର କରିଥାଅ, ବନବାସୀମାନେ ମଧ୍ୟ ତୁମକୁ ସେହିପରି ଭଲ ପାଇଥାନ୍ତି । ଯେଉଁ ଦୁର୍ଲ୍ଲଭ ମୁହୂର୍ତ୍ତରେ ତୁମର ଲକ୍ଷ୍ମୀବାଞ୍ଛିତ ଚରଣ ଯୁଗଳକୁ ସ୍ପର୍ଶ କରିବାର ବିରଳ ସୌଭାଗ୍ୟ ଆମ୍ଭମାନଙ୍କୁ ପ୍ରଦାନ କରିଥିଲ, ସେହି ସମୟରୁ ଆମର ମନ ତୁମର ଏହି ପଦଯୁଗଳ ବ୍ୟତୀତ ଅନ୍ୟ କେଉଁଠାରେ ଲାଗୁନାହିଁ । ତୁମର ଶ୍ରୀଚରଣରେ ଶରଣ ନେବା ନିମନ୍ତେ ଆମ୍ଭେମାନେ ବିଶେଷ ଆଶାୟୀ । ତୁମ ଚରଣରେ ଆଶ୍ରୟ ନେଇଥିବା ଲୋକମାନଙ୍କର ସମସ୍ତ ଦୁଃଖ ତୁମେ ଅପନୋଦନ କରିଥାଅ । ଆମ୍ଭମାନଙ୍କ ପ୍ରତି କରୁଣା

ପରବଶ ହୋଇ ଆମ୍ଭମାନଙ୍କୁ ସେହି ଦିବ୍ୟ ପ୍ରସାଦର ଅଧିକାରିଣୀ କରାଅ । ତୁମର ଚରଣସେବା କରିବା ନିମନ୍ତେ ଆଜ ଆମେ ଘର ଦ୍ୱାର, ଧନସମ୍ପତ୍ତି ଓ ପ୍ରିୟପରିଜନ ସମସ୍ତଙ୍କୁ ପରିତ୍ୟାଗ କରି ଆସିଅଛୁ । ହେ ପୁରୁଷରତ୍ନ, ତୁମର ଏହି ସୁନ୍ଦର ହାସ୍ୟୋଜ୍ଜ୍ୱଳ ଦୃଷ୍ଟି ଆମ ମନରେ ତୁମ ସହିତ ମିଳିତ ହେବାର ଆକାଂକ୍ଷାକୁ ଉଦ୍ଦୀପିତ କରୁଅଛି । ତୁମେ ଅନୁଗ୍ରହ ପୂର୍ବକ ଆମ୍ଭମାନଙ୍କୁ ତୁମ ଚରଣର ଦାସୀ ଭାବରେ ସ୍ୱୀକାର କରିନିଅ । ତୁମର ଅଳକାବୃତ ସୁନ୍ଦର ମୁଖମଣ୍ଡଳ, କୁଣ୍ଡଳଯୁଗଳ ଶୋଭିତ ଗଣ୍ଡସ୍ଥଳ, ହାସ୍ୟୋଜ୍ଜ୍ୱଳ କଟାକ୍ଷ, ଅଭୟପ୍ରଦ, ଭୁଜଦଣ୍ଡଯୁଗଳ, ସଦାଲକ୍ଷ୍ମୀରମଣ କରୁଥିବା ବକ୍ଷସ୍ଥଳ ଆମର ମନକୁ ହରଣ କରି ନେଇଅଛି । ତୁମର ଏହି ଶ୍ରୀଚରଣ ଯୁଗଳରେ ଦାସୀ ହେବା ନିମନ୍ତେ ଆମେ ଅଭିଳାଷ ପୋଷଣ କରି ଅଛୁ । ହେ ଶ୍ୟାମସୁନ୍ଦର, ତୁମର ଏହି ଅନନ୍ତ ସୌନ୍ଦର୍ଯ୍ୟର ଗୋଟିଏ କଣିକା ସହିତ ସମଗ୍ର ତ୍ରିଭୁବନର ସମସ୍ତ ଘନୀଭୂତ ସୌନ୍ଦର୍ଯ୍ୟ ତୁଳନୀୟ ନୁହେଁ । ତୁମର ଏହି ବିଶ୍ୱବିମୋହନ ରୂପ ଦର୍ଶନ କରି ଏବଂ ତୁମର ନିନାଦିତ ଏହି ସୁମଧୁର ବଂଶୀସ୍ୱନ ଶ୍ରବଣ କରି କେଉଁ ସ୍ତ୍ରୀ ବିଚଳିତ ନ ହୋଇ ଧୈର୍ଯ୍ୟ ଧରି ଘରେ ରହିପାରିବ ? ଆଜ ତୁମର ଏହି ଅପ୍ରତିହତ ବଂଶୀର ମୂର୍ଚ୍ଛନାରେ ଆକୃଷ୍ଟ ହୋଇ ସକଳ ଲଜ୍ଜା ଧର୍ମମର୍ଯ୍ୟାଦା ତ୍ୟାଗ କରି ତୁମ ନିକଟକୁ ଧାଇଁ ଆସିଅଛୁ । ଆମକୁ ତୁମ ଶ୍ରୀଚରଣରେ ଅନୁଗ୍ରହ ପୂର୍ବକ ଆଶ୍ରୟ ପ୍ରଦାନ କର । ଭଗବାନ ନାରାୟଣ ଦେବତାମାନଙ୍କୁ ସମସ୍ତ ବିପଦ ଆପଦରୁ ରକ୍ଷା କଲାପରି ତୁମେ ସମସ୍ତ ଦୁଃଖକଷ୍ଟ ଅପନୋଦନ କରିବା ନିମନ୍ତେ ଜନ୍ମ ନେଇଅଛ, ଏକଥା ଆମକୁ ଅଛପା ନାହିଁ । ଦୀନ ଦୁଃଖୀଙ୍କ ପ୍ରତି ତୁମର ରହିଛି ଅପ୍ରମେୟ କରୁଣା । ହେ ଆର୍ତ୍ତବନ୍ଧୁ, ଆମ ପରି ଦୁଃଖିନୀ ଆଉ କିଏ ଅଛି ? ତୁମର ସାନ୍ନିଧ୍ୟଲିପ୍ସା ଆଜ ଆମର ହୃଦୟକୁ ଦଗ୍ଧ କରୁଅଛି । ମୃତପ୍ରାୟ ଦୀନଦୁଃଖିନୀ ଏହି ଗୋପାଙ୍ଗନାମାନଙ୍କର ପୀଡ଼ିତ ବକ୍ଷସ୍ଥଳ ଓ ମସ୍ତକରେ ତୁମର ଚିରଅଭୟପ୍ରଦାନକାରୀ କୋମଳ କରକମଳ ସଞ୍ଚାଳନ କରି ଏହି ଦାସୀମାନଙ୍କୁ ନିଜର କରିନିଅ ।'

ଗୋପୀମାନଙ୍କର ସେହି ପ୍ରେମସିକ୍ତ ଆବେଗମୟୀ ବାକ୍ୟମାନ ଶ୍ରବଣ କରି ଆତ୍ମାରାମ କୃଷ୍ଣ ଈଷତ୍ ହାସ୍ୟ କରି ସେମାନଙ୍କର ଅଭିଳାଷ

ପୂରଣ କରିବାକୁ ଆଗ୍ରହ ପ୍ରକାଶ କଲେ । ସେମାନଙ୍କର ବାସନାପୂର୍ତ୍ତି କରିବା ନିମନ୍ତେ କରୁଣାମୟ କୃଷ୍ଣ ପ୍ରସନ୍ନ ହୋଇଅଛନ୍ତି, ତାହା ଗୋପୀମାନଙ୍କୁ ଅତ୍ୟନ୍ତ ଆନନ୍ଦିତ କରିଥିଲା । ସେମାନଙ୍କର ମୁଖମଣ୍ଡଳ ଅପୂର୍ବ ଆନନ୍ଦରେ ବିକଶି ଉଠିଲା । ଆକାଶରେ ତାରାମାନେ ଚନ୍ଦ୍ରଙ୍କୁ ପରିବେଷ୍ଟନ କରି ଅବସ୍ଥାନ କଲା ପରି ଗୋପାଙ୍ଗନାମାନେ ପ୍ରାଣପ୍ରିୟ କୃଷ୍ଣଙ୍କର ଚତୁର୍ଦ୍ଦିଗରେ ଅବସ୍ଥାନ କଲେ । ଶତ ଶତ ରମଣୀ ଶିରୀର ନାୟକ ଭଗବାନ କୃଷ୍ଣ ବୈଜୟନ୍ତୀମାଳା ଧାରଣ କରି ଗୋପୀମାନଙ୍କ ଗହଣରେ ବିହାର କରିବାକୁ ଲାଗିଲେ । ବନ ମଧ୍ୟରେ ବିଚରଣ କରୁ କରୁ ପ୍ରେୟସୀ ଗୋପାଙ୍ଗନାମାନଙ୍କ ସହ କୃଷ୍ଣ ଯମୁନା ନଦୀର ଶୀତଳ ଓ କୋମଳ ବାଲୁକାରେ ଆସି ପହଞ୍ଚିଲେ ।

ମନ୍ଦ ସମୀରଣ କୁସୁମର ସୁମିଷ୍ଟ ସୌରଭ ବହନ କରି ପ୍ରବାହିତ ହେଉଥିଲା । ଜ୍ୟୋତ୍ସ୍ନା ପ୍ଲାବିତ ରଜନୀରେ ପବିତ୍ର ଯମୁନାର ସ୍ୱଚ୍ଛ ବାଲୁକା ଶଯ୍ୟାର ମାଦକଭରା ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଥିଲା । ସେହି ଚିତ୍ତ ମୋହନକାରୀ ପରିବେଶରେ ଭଗବାନ କୃଷ୍ଣ ଗୋପୀମାନଙ୍କ ମନର ଅଭିଳାଷ ପୂରଣ କରିବା ନିମନ୍ତେ ଅପୂର୍ବ କ୍ରୀଡ଼ା ରଚନା କଲେ ।

ଭଗବାନ କୃଷ୍ଣ ଗୋପାଙ୍ଗନାମାନଙ୍କ ସହିତ ପ୍ରମୋଦ-କ୍ରୀଡ଼ା କରିବା ନିମନ୍ତେ ଗୋପୀମାନଙ୍କ ମଧ୍ୟରୁ କାହାକୁ ଆଲିଙ୍ଗନ, କାହାର ହସ୍ତକୁ ନିଜର ହସ୍ତରେ ଧାରଣ, କାହାର ଉରୁ, ନୀବୀ, ସ୍ତନ ଆଦିକୁ ସ୍ପର୍ଶ କରି ହାସ ପରିହାସ ମଧ୍ୟରେ ସେମାନଙ୍କ ଶରୀରରେ ନଖ କ୍ଷତ କରି ସେମାନଙ୍କ ମନରେ ଜାତ ହୋଇଥିବା ଦିବ୍ୟ କାମ-ଭାବକୁ ଅଧିକ ଜାଗ୍ରତ ଓ ଉଦ୍ଦୀପିତ କଲେ । ଅନାସକ୍ତଚିତ୍ତ ଭଗବାନଙ୍କ ଦ୍ୱାରା ଏହିପରି ଭାବରେ ସମାଦୃତା ଓ ସମ୍ମାନିତା ହୋଇ ପ୍ରଣୟ ଅଭିମାନିନୀ ଗୋପାଙ୍ଗନାଙ୍କ ମନରେ ଅପୂର୍ବ ପ୍ରଣୟ-ପ୍ରତିଯୋଗିତା ପରିଦୃଷ୍ଟ ହେଲା; ଫଳରେ ପ୍ରତ୍ୟେକ ଗୋପୀ ନିଜକୁ ଅନ୍ୟ ଗୋପୀଙ୍କ ଅପେକ୍ଷା କୃଷ୍ଣଙ୍କର ଅଧିକ ପ୍ରିୟ, ଅଧିକ ଭାଗ୍ୟବତୀ ବୋଲି ମନେ କରିବାକୁ ଲାଗିଲେ । 'ସମସ୍ତଙ୍କ ଅପେକ୍ଷା କୃଷ୍ଣ ମୋତେ ଅଧିକ ଭଲ ପାଆନ୍ତି' ବୋଲି ଗୋପାଙ୍ଗନାମାନେ ଭାବିଲେ ଏବଂ ସେଥିପାଇଁ ସେମାନଙ୍କ ମନରେ ଗର୍ବ ଦେଖାଦେଲା । ଗୋପରମଣୀମାନଙ୍କ ମନର ସେହି ଅଯଥା ଗର୍ବକୁ ଖର୍ବ

କରିବା ଉଦ୍ଦେଶ୍ୟରେ କୃଷ୍ଣ ଏକ ଉପାୟ ଅବଲମ୍ବନ କରି ସେହି ପ୍ରେମବହ୍ୱଳା ଅଭିମାନିନୀ ଗୋପ-ଯୁବତୀଙ୍କ ଗହଣରୁ ହଠାତ୍ ଅନ୍ତର୍ହିତ ହୋଇଗଲେ । କୃଷ୍ଣଙ୍କର ଅପୂର୍ବ ସାନ୍ନିଧ୍ୟ, ଚିତ୍ତ ସୁଖକର ମଧୁର ଆଳାପ ଚିତ୍ତହରଣକାରୀ ବ୍ୟବହାର ଓ ତଜ୍ଜନିତ ଅନିର୍ବଚନୀୟ ସୁଖ ଅନୁଭୂତି ଗୋପରମଣୀମାନଙ୍କର ପ୍ରେମପ୍ଳୁତ ମନକୁ ଏକ ପ୍ରକାର ମୋହାଚ୍ଛନ୍ନ କରି ରଖିଥିଲା । କୃଷ୍ଣଙ୍କର ସେହି ଆକସ୍ମିକ ଅନ୍ତର୍ଦ୍ଧାନ ଫଳରେ ଗୋପୀ-ମାନେ ଅସହ୍ୟ ବିରହାନଳରେ ଉନ୍ମାଦିନୀ ପ୍ରାୟ ହୋଇଗଲେ । ଭାବବହ୍ୱଳା ପ୍ରଣୟବତୀ ଗୋପ ଯୁବତୀମାନଙ୍କ ମଧ୍ୟରୁ କେହି କେହି କୃଷ୍ଣଙ୍କର ଚାଲି, କେହି କେହି କହିବାର ଭଙ୍ଗୀ ଓ ଚାତୁରୀକୁ ଅନୁକରଣ କରି ଅପୂର୍ବ ଅଭିନୟ ପ୍ରଦର୍ଶନ କଲେ ଓ କେହି କେହି ନିଜକୁ 'କୃଷ୍ଣ' ବୋଲି କହି ସଖିମାନଙ୍କ ସହିତ ହାସପରିହାସ କରିବାକୁ ଲାଗିଲେ । ଗୋପାଙ୍ଗନାମାନଙ୍କ ମଧ୍ୟରୁ କେହି କେହି ବିଭିନ୍ନ ସ୍ଥାନରେ କୃଷ୍ଣଙ୍କର ଅନ୍ୱେଷଣ କଲେ; କିନ୍ତୁ କେଉଁଠାରେ ହେଲେ କୃଷ୍ଣଙ୍କୁ ଦେଖିବାକୁ ପାଇଲେ ନାହିଁ ଏବଂ କୃଷ୍ଣଙ୍କ ବିରହରେ କାତର ହୋଇ ବୃକ୍ଷଲତାଙ୍କୁ ଧରି ଉଚ୍ଚ ସ୍ୱରରେ ବିଳାପ କରିବାକୁ ଲାଗିଲେ ।

ଗୋପାଙ୍ଗନାମାନେ ବିଳାପ କରି କହିବାକୁ ଲାଗିଲେ, 'ହେ ଅଶ୍ୱତ୍ଥବୃକ୍ଷ, ହେ ବଟ ବୃକ୍ଷ, ହେ କୁରୁବକ, ହେ ପୁନ୍ନାଗ, ହେ ଚମ୍ପକ ବୃକ୍ଷ, ନନ୍ଦରାଜାଙ୍କର ବୈଜୟନ୍ତୀମାଳା ପରିହିତ ଯେଉଁ ପୁତ୍ର ନିଜର ରୂପ, ବାକ୍‌ଚାତୁରୀ ଓ ରମଣୀ ଚିତ୍ତାକର୍ଷୀ ହାସ୍ୟ କଟାକ୍ଷ ଦ୍ୱାରା ଆମ୍ଭମାନଙ୍କ ମନ ହରଣ କରି ଏଠାରେ କ୍ରୀଡ଼ା କରୁଥିଲେ ସେହି କୃଷ୍ଣ କେଉଁଆଡେ ଗଲେ, ତୁମେ ସବୁ ତାଙ୍କୁ ଦେଖିଛ କି ? ହେ ମଲ୍ଲୀ, ମାଳତୀ, ଯୁଥିକା, ଆମେ କୃଷ୍ଣଙ୍କ ବିରହରେ ଅତ୍ୟନ୍ତ ପୀଡ଼ିତ ହେଉଅଛୁ, ସେହି ନବ-ଘନଶ୍ୟାମ କେଉଁଠ ରେ ଆତ୍ମଗୋପନ କରିଛନ୍ତି କହିବ କି ?'

ଏହିପରି ଭାବରେ କେତେକ ଗୋପ ଯୁବତୀମାନେ ପାଗଳିନୀ ପ୍ରାୟ ବୃକ୍ଷଲତାଙ୍କୁ ଆଲିଙ୍ଗନ କରି କୃଷ୍ଣଙ୍କ ଅନ୍ୱେଷଣରେ ବିଳାପ କଲାବେଳେ ଅନ୍ୟ କେତେକ ଗୋପୀ ନିଜକୁ କୃଷ୍ଣ ବୋଲି ପରିଚୟ ଦେଇ କୃଷ୍ଣଙ୍କର ବିଭିନ୍ନ କାର୍ଯ୍ୟକୁ ଅଭିନୟ ଛଳରେ ପ୍ରକାଶ କଲେ । କୌଣସି ଗୋପୀ କୃଷ୍ଣଙ୍କର ପୂତନା-ବଧ ଲୀଳାକୁ ଅନୁକରଣ କରିବାକୁ

ଯାଇ ଅନ୍ୟ ଗୋପୀର ସ୍ତନ ପାନ କରି ତାଙ୍କୁ ପୂତନା ପରି ସଂହାର କରିବାକୁ ଅଭିନୟ କଲା ତ, ଅନ୍ୟ କୌଣସି ଗୋପୀ ବତ୍ସାସୁର, ତୃଣାବର୍ତ୍ତ ବଧ ଓ କାଳୀୟଦଳନ ଆଦି ଲୀଳାମାନ ଅଭିନୟ କରିବାକୁ ଲାଗିଲେ । କୌଣସି ଗୋପୀ କୃଷ୍ଣଙ୍କ ପରି ଅଙ୍ଗଭଙ୍ଗୀ କରି ବଂଶୀ-ବାଦନ କଲା ତ କୌଣସି ଗୋପୀ ସଖିମାନଙ୍କ ସ୍କନ୍ଧରେ ନିଜର ହସ୍ତ ସ୍ଥାପନ କରି କୃଷ୍ଣଙ୍କ ଚାଲିର ଅନୁକରଣ କଲା । କେହି କେହି ଗୋପୀ କୃଷ୍ଣଙ୍କର ଗୋବର୍ଦ୍ଧନ ଧାରଣକାଳୀନ ଦୃଶ୍ୟର ଅବତାରଣା କରି 'ଏହି ଝଡ଼ ଓ ବର୍ଷାକୁ ଭୟ କରନାହିଁ । ମୁଁ ତୁମକୁ ରକ୍ଷା କରିବି' ବୋଲି କହି ନିଜର ପ୍ରସାରିତ ହସ୍ତରେ ଉତ୍ତରୀୟକୁ ଉପରେ ବିସ୍ତାରିତ କରି ଉଡ଼ାଇଲେ ।

କୃଷ୍ଣଙ୍କ ଅବର୍ତ୍ତମାନରେ ବିରହବିଧୁରା ପ୍ରେମତୃଷିତା ଗୋପ-ଯୁବତୀମାନେ ପାଗଳିନୀ ପ୍ରାୟ କୃଷ୍ଣଙ୍କୁ ଅନ୍ୱେଷଣ କରି ଯମୁନା କୂଳ ଓ ତତ୍-ସଂଲଗ୍ନ ବନରେ ବିଚରଣ କରୁଥିବା ସମୟରେ ହଠାତ୍ ଗୋଟାଏ ସ୍ଥାନରେ କୃଷ୍ଣଙ୍କର ପଦଚିହ୍ନ ପଡ଼ିଥିବା ଦେଖିବାକୁ ପାଇଲେ । ସେହି ପରିଚିତ ପଦଚିହ୍ନକୁ ଚିହ୍ନିବାରେ ସେମାନଙ୍କ ପକ୍ଷରେ କଷ୍ଟକର ହେଲା ନାହିଁ । ସେମାନେ କୁହାକୁହି ହେଲେ, 'ସଖି, ଦେଖ, ଏହି ପଦଚିହ୍ନରେ ପଦ୍ମ, ବଜ୍ର, ଅଙ୍କୁଶ ଓ ଯବ ଆଦି ସାତ୍ତ୍ୱିକ ଚିହ୍ନମାନ ପରିଲକ୍ଷିତ ହେଉଅଛି । ଏହା ନିଶ୍ଚୟ ଉଦାରଚରିତ, ନନ୍ଦ ନନ୍ଦନ ନବ ଘନଶ୍ୟାମଙ୍କର ପଦଚିହ୍ନ ।' ସେହି ପଦଚିହ୍ନ ପ୍ରକୃତରେ କୃଷ୍ଣଙ୍କର ଥିଲା । ତାକୁ ଦେଖିବା ମାତ୍ରେ ଗୋପାଙ୍ଗନାମାନେ ଭାବବିହ୍ୱଳା ହୋଇଗଲେ ଏବଂ କୃଷ୍ଣଙ୍କର ସେହି ପଦଚିହ୍ନକୁ ଅନୁସରଣ କରି ଗୋପୀମାନେ କିଛି ବାଟ ଗଲାପରେ କୃଷ୍ଣଙ୍କ ପଦଚିହ୍ନ ସହିତ ଅନ୍ୟ କୌଣସି ଗୋପୀର ପଦଚିହ୍ନ ପଡ଼ିଥିବାର ଦେଖିଲେ । ସଙ୍ଗେ ସଙ୍ଗେ ସେମାନେ ଦୁଃଖରେ ଭାଙ୍ଗିପଡ଼ିଲେ ଓ ସେମାନଙ୍କ ମନର ଗର୍ବ ଭାଙ୍ଗିଗଲା ।

ସେମାନେ ବିଳାପ କରିବାକୁ ଲାଗିଲେ, 'ହାୟ, ସଖି । ପଦଚିହ୍ନକୁ ଦେଖ । ନନ୍ଦନନ୍ଦନ ଶ୍ୟାମସୁନ୍ଦରଙ୍କ ସଙ୍ଗରେ ତାଙ୍କ କାନ୍ଧରେ ଭରା ଦେଇ କୌଣସି ସୌଭାଗ୍ୟବତୀ କୃଷ୍ଣଙ୍କ ସଙ୍ଗରେ ନିଶ୍ଚୟ ଯାଇଅଛି, ଏହି ପଦଚିହ୍ନରୁ ତାହା ହିଁ ଅନୁମିତ ହୁଏ । ଏହି ସୌଭାଗ୍ୟବତୀଟି କିଏ ? ସେ ନିଶ୍ଚୟ ସର୍ବଶକ୍ତିମାନ ଭଗବାନ କୃଷ୍ଣଙ୍କର ପରମ ଆରାଧିକା ହେବ;

ତା’ ନ ହୋଇଥିଲେ ଆମ୍ଭମାନଙ୍କୁ ଏପରି ପରିତ୍ୟାଗ କରି ଏହି ଗୋପୀକୁ ଏକାନ୍ତରେ ପ୍ରସନ୍ନ କରିବା ନିମନ୍ତେ ପ୍ରାଣପ୍ରିୟ କୃଷ୍ଣ ତାକୁ ଏକା'କ୍ସା ସଙ୍ଗରେ ନେଇ ନିର୍ଜନ ସ୍ଥାନକୁ ଯାଇ ନ ଥାନ୍ତେ ! ସଖି, ବ୍ରହ୍ମା, ଶଙ୍କର, ଲକ୍ଷ୍ମୀ ପ୍ରମୁଖ ଦେବଦେବୀମାନେ ଯାହାଙ୍କର ଚରଣଧୂଳିକୁ ପରମଭକ୍ତିର ସହିତ ନିଜ ନିଜ ମସ୍ତକରେ ଧାରଣ କରିଥାନ୍ତି, ସେହି କୃଷ୍ଣଙ୍କର ଚରଣସ୍ପର୍ଶ ଲାଭ କରି ଏହି ଧୂଳିକଣା ଧନ୍ୟ ହୋଇଅଛି । ସଖି, ଏହି ଗୋପୀର ଚରଣଚିହ୍ନକୁ ଦେଖିଲା ମାତ୍ରେ ଆମ ହୃଦୟ ଦାରୁଣ ଦୁଃଖରେ ଫାଟି ପଡ଼ୁଛି । ହାୟ, ହାୟ, ଆମ ସବୁ ଗୋପୀଙ୍କର ପ୍ରାଣବଲ୍ଲଭ କୃଷ୍ଣଙ୍କର ଅଧରାମୃତକୁ ସେହି ଗୋପୀ ଯାହା ଏକା'କମା ଏକାନ୍ତରେ ଉପଭୋଗ କରିବାର ସୌଭାଗ୍ୟ ଲାଭ କଲା ! ହାୟ, ସତେ କି ଭାଗ୍ୟବତୀ ସେ !! ଦେଖ, ଆଉ ଏଣେ ତ କାହିଁ ସେହି ସୌଭାଗ୍ୟବତୀ କୃଷ୍ଣପ୍ରିୟାର ଚରଣପାତ ପରିଦୃଷ୍ଟ ହେଉ ନାହିଁ ? ପ୍ରିୟାର କମନୀୟ କୋମଳ ଚରଣ ତୃଣାଙ୍କୁରରେ ବିଦ୍ଧ ଓ ପୀଡ଼ିତ ହେବା ଲକ୍ଷ୍ୟକରି କୃଷ୍ଣ ସମ୍ଭବତଃ ତାକୁ ନିଜ କାନ୍ଧରେ ବସାଇ ନେଇ ଅଛନ୍ତି ! ହାୟ, ହାୟ, ସଖି, ଦେଖ, କୃଷ୍ଣଙ୍କର ଚରଣଚିହ୍ନ କିପରି ବାଲୁକା ପ୍ରାନ୍ତରରେ ଗଭୀରକୁ ଭୁଷି ହୋଇ ଯାଇଅଛି । ତହିଁରୁ ଅନୁମାନ ହେଉଅଛି, କୃଷ୍ଣ ସମ୍ଭବତ କୌଣସି ଓଜନିଆ ବସ୍ତୁକୁ ବହନ କରି ଗମନ କରିଅଛନ୍ତି । ସେହି ଓଜନିଆ ବସ୍ତୁଟି ନିଶ୍ଚୟ କୃଷ୍ଣଙ୍କର ସେହି ପ୍ରିୟତମା ଗୋପୀ, ଏଥିରେ ସନ୍ଦେହ ନାହିଁ । ଦେଖ, ଏଠାରେ କୃଷ୍ଣଙ୍କର ଚରଣର ଅଗ୍ରଭାଗ ବାଲୁକାରେ ଭୁଷି ହୋଇ ଯାଇଅଛି; ତହିଁରୁ ଜଣାପଡ଼ୁଛି କାମୁକଙ୍କ ପରି କୃଷ୍ଣ ପ୍ରିୟାର କବରୀକୁ କୁସୁମମଣ୍ଡିତ କରିବା ନିମନ୍ତେ ନିଶ୍ଚୟ ଏଠାରେ ବୃକ୍ଷରୁ ପୁଷ୍ପଚୟନ କରିଅଛନ୍ତି ଏବଂ ଏଠାରେ ନିଜେ ପ୍ରିୟାର କେଶ ପ୍ରସାଧନ କରିଅଛନ୍ତି । ତା’ ନ ହୋଇଥିଲେ, ଏହି ସ୍ଥାନରେ ଏପରି କେଶ ବନ୍ଧନର ଚିହ୍ନମାନ ପରିଦୃଷ୍ଟ ହେଉ ନ ଥାନ୍ତା ।’

ଗୋପାଙ୍ଗନାମାନେ ବିରହରେ ବ୍ୟଥିତା ହୋଇ ସେହି ଅନାମଧେୟା ଗୋପୀର ସୌଭାଗ୍ୟଶ୍ରୀ କଥା ଭାବି ଭାବି କାତର ହୋଇ-ପଡ଼ିଲେ ଓ ବିଳାପ କରିବାରେ ଲାଗିଲେ ।

ସମସ୍ତ କାମଲାଲସା ପ୍ରତି ଅନାସକ୍ତିରଇ ଆତ୍ମାରାମ କୃଷ୍ଣଙ୍କଠାରେ କାମଭାବର ସମ୍ପର୍କ ସ୍ଥାପନ କରିବା ମୂଢ଼ତା ହେବ । ଗୋପୀମାନଙ୍କ ସହିତ ଏପରି କ୍ରୀଡ଼ା କରିବା କମ୍ବା କୌଣସି ଏକ ଗୋପୀକୁ ସଙ୍ଗରେ ନେଇ ଅନ୍ତର୍ହିତ ହେବା ସମସ୍ତ ତାଙ୍କର ଲୀଳାମାତ୍ର ।

ଯାହାହେଉ, ପରୀକ୍ଷିତଙ୍କ ବାଦରାୟଣଙ୍କ ଗୋପାଙ୍ଗନାମାନଙ୍କର ଅନୁମାନ ସତ୍ୟ । 'ମୁଁ ସର୍ବସୁଲକ୍ଷଣା ହୋଇଥିବାରୁ ଅନ୍ୟ ଗୋପୀମାନଙ୍କ ଅପେକ୍ଷା କୃଷ୍ଣ ମୋତେ ଅଧିକ ଭଲ ପାଆନ୍ତି' ବୋଲି ପ୍ରତ୍ୟେକ ଗୋପୀଙ୍କ ମନରେ ଜାତ ହୋଇଥିବା ଅହେତୁକ ଗର୍ବକୁ ଚୂର୍ଣ୍ଣ କରିବା ନିମନ୍ତେ କୃଷ୍ଣ ଜଣେଇକା ଗୋପୀକୁ ସଙ୍ଗରେ ନେଇ ଅନ୍ୟ ଗୋପୀମାନଙ୍କର ଦୃଷ୍ଟିର ଅନ୍ତରାଳକୁ ଚାଲି ଯାଇଥିଲେ । ଯେଉଁ ଗୋପୀ ସହିତ କୃଷ୍ଣ ଅନ୍ତର୍ହିତ ହୋଇ ଥିଲେ, ସେହି ଗୋପୀର ମନରେ ବିଶେଷ ଗର୍ବ ପ୍ରକାଶ ପାଇବା ସ୍ୱାଭାବିକ । ଏତେ ସୁନ୍ଦରୀ ସୁନ୍ଦରୀ ଯୁବତୀ ଥାଉଁ ଥାଉଁ ପ୍ରାଣପ୍ରିୟ କୃଷ୍ଣ ସମସ୍ତଙ୍କୁ ପରିତ୍ୟାଗ କରି ଯେତେବେଳେ ସେହି ଗୋପଯୁବତୀ ପ୍ରତି ଆକୃଷ୍ଟ ହେଲେ, ସେ ଯେ ସମାଗତ ଗୋପାଙ୍ଗନାମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ, ଏପରି ସ୍ୱାଭାବିକ ଚିନ୍ତା ସେହି ଯୁବତୀର ମନରେ ଉଦୟ ହେଲା । କୃଷ୍ଣଙ୍କ ସହିତ କିଛିଦୂର ଯିବା ପରେ ରୂପଗର୍ବିଣୀ ସେହି ଗୋପ ଯୁବତୀଟି ଟିକେ ଅଭିମାନର ବଶବର୍ତ୍ତିନୀ ହୋଇ କୃଷ୍ଣଙ୍କୁ କହିଲା, 'ପ୍ରିୟ, ଏହି ସୁଦୂର ପଥ ଅତିକ୍ରମ କରି ମୁଁ ଅତ୍ୟନ୍ତ ପଥଶ୍ରାନ୍ତ ହୋଇପଡ଼ିଛି । ଆଉ ପାଦେ ଚାଲିବା ମୋ ପକ୍ଷରେ ସମ୍ଭବ ନୁହେଁ । ସେଥିପାଇଁ କହୁଛି, ଯଦି ତଥାପି ଅନ୍ୟତ୍ର ଯିବାକୁ ଚାହୁଁ ଥାଅ, ତେବେ ମୋତେ ତୁମ କାନ୍ଧରେ ବସାଇ ନେଇଚାଲ ।'

ଗୋପଯୁବତୀର ସେହି କଥା ଶୁଣି କୃଷ୍ଣ କହିଲେ, 'ପ୍ରିୟେ, ଠିକ୍ କହୁଛ । ତୁମର ଏହି ସୁକୁମାର ଶରୀରକୁ ଆଉ ଏପରି ଅଧିକ ପୀଡ଼ିତ କରିବା ଉଚିତ ହେବ ନାହିଁ । ଯଦି ଚାହୁଁଛ, ଆସ । ମୋର ସ୍କନ୍ଧରେ ଆରୋହଣ କର ।'

କୃଷ୍ଣଙ୍କର କଥା ଶୁଣି ପରମ ଆନନ୍ଦ ଓ ଗର୍ବରେ ପ୍ରଫୁଲ୍ଲିତା ସେହି ଗୋପୀ କୃଷ୍ଣଙ୍କ ସ୍କନ୍ଧରେ ଆରୋହଣ କରିବାକୁ ଉଦ୍ୟମ କରିବା

ମାତ୍ରେ କୃଷ୍ଣ ହଠାତ୍ ସେଠାରୁ ଅଦୃଶ୍ୟ ହୋଇଗଲେ । କୃଷ୍ଣଙ୍କୁ ନ ଦେଖି ଗୋପୀଟି ଶୋକରେ ବିଚଳିତ ହୋଇପଡ଼ିଲା ଏବଂ ଉଚ୍ଚ ସ୍ୱରରେ କ୍ରନ୍ଦନ କରି ବିଳାପ କଲା, 'ହେ ସ୍ୱାମି, ହେ ରମଣ, ହେ ମହାଭୁଜ, ହେ ପ୍ରିୟତମ, ହେ ସଖା, ତୁମେ କେଉଁଠି ? ତୁମେ କେଉଁଆଡ଼େ ଗଲ ? ଏହି ଦୀନା ଦାସୀକୁ ତୁମର ସେହି ସାନ୍ନିଧ୍ୟ ସୁଖରୁ ବଞ୍ଚିତ କଲ କାହିଁକି ? ହେ ପ୍ରାଣବଲ୍ଲଭ, ଥରେ ଏ ଅନାଥିନୀର ଦୃଷ୍ଟିଗୋଚର ହୁଅ ।'

ଅନ୍ୟ ଗୋପୀମାନେ ଯମୁନା ତଟରେ କୃଷ୍ଣଙ୍କର ଅନ୍ୱେଷଣ କରୁ କରୁ ସେହି ପ୍ରିୟବିରହବିଧୁରା ନିଃସଙ୍ଗ ଗୋପୀକୁ ଶୋକମୂର୍ଚ୍ଛିତାବସ୍ଥାରେ ଏକ ସ୍ଥାନରେ ପଡ଼ି ରହିଥିବାର ଦେଖିଲେ । ସଙ୍ଗେ ସଙ୍ଗେ ଗୋପୀମାନେ ସେହି ସ୍ଥାନରେ ରୁଣ୍ଡହୋଇ ଏପରି ଘଟିବାର କାରଣ ପଚାରିଲେ । ସେହି ଗୋପୀଠାରୁ ପ୍ରଥମେ ତା'ର ଅପୂର୍ବ ସୌଭାଗ୍ୟ ଓ ପରେ ଶୋଚନୀୟ ଦୁର୍ଦ୍ଦଶାର ସମସ୍ତ ବୃତ୍ତାନ୍ତ ଶ୍ରବଣ କରି ସମବେତ ଗୋପୀମାନଙ୍କର ବିସ୍ମୟର ସୀମା ରହିଲା ନାହିଁ ।

ବହୁସ୍ଥାନ ଅନ୍ୱେଷଣ କରି ମଧ୍ୟ ଗୋପାଙ୍ଗନାମାନେ କୃଷ୍ଣଙ୍କୁ କୌଣସିଠାରେ ଦେଖିଲେ ନାହିଁ । ଅନ୍ଧକାରାଚ୍ଛନ୍ନ ନିବିଡ଼ ଅରଣ୍ୟରେ ଅନ୍ୱେଷଣ କରିବା ସମ୍ଭବ ନୁହେଁ ଭାବି ଗୋପାଙ୍ଗନାମାନେ କୃଷ୍ଣଙ୍କର ମାଧୁର୍ଯ୍ୟମୟ ଲୀଳାକୁ ସୁମଧୁର କଣ୍ଠରେ ଗାନ କରିବାକୁ ଲାଗିଲେ । ଗୋପଯୁବତୀମାନଙ୍କ ଶୟନ, ସ୍ୱପନ ଓ ଜାଗରଣରେ କୃଷ୍ଣ ହିଁ ଥିଲେ ପ୍ରଧାନ ଆକର୍ଷଣ । ତେଣୁ ଗୋପୀଙ୍କର ପ୍ରତ୍ୟେକ ଚିନ୍ତା, କଥା ଓ କାର୍ଯ୍ୟରେ କୃଷ୍ଣଙ୍କ ଭାବନା ଛଡ଼ା ଅନ୍ୟ କିଛି ନ ଥିଲା । ଗୋଟିଏ କଥାରେ କହିଲେ କୃଷ୍ଣବିରହବିଧୁରା ଗୋପାଙ୍ଗନାମାନଙ୍କର ଦେହ, ମନ ଓ ପ୍ରାଣ ଅନିର୍ବଚନୀୟ କୃଷ୍ଣମୟତାରେ ପରିପୂର୍ଣ୍ଣ ହୋଇ ଯାଇଥିଲା ।

ଗୋପାଙ୍ଗନାମାନେ ତାଙ୍କର ରମଣୀସୁଲଭ ସୁମଧୁର କଣ୍ଠରେ ଗାନ କରୁଥାନ୍ତି—'ହେ ପ୍ରିୟ, ହେ ଦୟିତ, ତୁମେ ନିଜର ଆବିର୍ଭାବ ଦ୍ୱାରା ଏହି ବ୍ରଜକୁ ବୈକୁଣ୍ଠ ଅପେକ୍ଷା ଅଧିକ ସୌଭାଗ୍ୟ ଓ ସମ୍ମାନର ଅଧିକାରିଣୀ କରାଇଛ । ମନେହୁଏ ସତେ ଯେପରି ଲକ୍ଷ୍ମୀଦେବୀ ତୁମକୁ ଲାଭ କରିବା ନିମନ୍ତେ ନିଜର ଆବାସସ୍ଥଳୀ ବୈକୁଣ୍ଠକୁ ତ୍ୟାଗ କରି ଏହି

ଭୂଜରେ ଆସି ଅବସ୍ଥାନ କରୁଅଛନ୍ତି । ହେ ସୁରତନାଥ, ଶରତକାଳୀନ ପଦ୍ମର ଶୋଭା ହରଣକାରୀ ନିଜର କମନୀୟ ନେତ୍ରର କଟାକ୍ଷରେ ଆମ ପରି ଅଶୁଳ୍କ ଦାସୀଙ୍କର ପ୍ରାଣ ସଂହାର କରିବାକୁ କାହିଁକି ଯାଉଅଛ ? ତୁମର ତଦ୍ଦ୍ୱାରା ଅଧର୍ମ ହେବ ନାହିଁ ? ତୁମକୁ ନ ଦେଖି ଆମେ ଜୀବନଧାରଣ କିପରି କରିବୁ ? ଆମ ପ୍ରତି କରୁଣା ପ୍ରକାଶ କରି ତୁମେ ଆମକୁ ଦର୍ଶନ ଦିଅ । ହେ ପୁରୁଷଶିରୋମଣି, ଅଘାସୁରର ସଂହାରଠାରୁ ଆରମ୍ଭ କରି କାଳୀୟଦଳନ ତଥା ଇନ୍ଦ୍ରଙ୍କ କୋପାଦ୍ଧ ବିଭିନ୍ନ ବିପଦରୁ ସମଗ୍ର ଗୋପବାସୀଙ୍କୁ ତୁମେ ରକ୍ଷାକରି ଆସିଅଛ । ତୁମକୁ କେବଳ ଯଶୋଦାନନ୍ଦନ ବୋଲି କହିଲେ ଭୁଲ ହେବ; କାରଣ ପ୍ରକୃତରେ ଅଖିଳ ଜଗତର ପ୍ରତ୍ୟେକ ଜୀବଙ୍କର ତୁମେ ଆତ୍ମା ଓ ଅନ୍ତର୍ଯ୍ୟାମୀ । ବ୍ରହ୍ମାଙ୍କ ପ୍ରାର୍ଥନାକୁ ସ୍ୱୀକାର କରି ଭକ୍ତମାନଙ୍କର କଲ୍ୟାଣ ସାଧନ କରିବା ନିମନ୍ତେ ତୁମେ ଯାଦବ କୁଳରେ ଜନ୍ମ ପରିଗ୍ରହ କରିଅଛ । ହେ ଯାଦବଶ୍ରେଷ୍ଠ, ତୁମର ଶରଣାଗତମାନଙ୍କର ସମସ୍ତ ଅଭିଳାଷ ତୁମେ ଅଚିରେ ପୂର୍ଣ୍ଣ କରିଥାଅ । ସଂସାର-ଚକ୍ରର ଭୟରେ ଭୀତ ପ୍ରାଣୀମାନେ ତୁମର ଚରଣରେ ଶରଣ ଗ୍ରହଣ କଲେ, ତୁମେ ନିଜର କରକମଳ ରୂପକ ଅଭୟ ଛତ୍ରଛାୟାରେ ସେମାନଙ୍କୁ ଅଭୟ ପ୍ରଦାନ କରିଥାଅ । ହେ କାନ୍ତ, ଲକ୍ଷ୍ମୀଦେବୀଙ୍କ ହସ୍ତକୁ ଗ୍ରହଣ କରିଥିବା ନିଜର ସେହି ପରମ ଅଭୟପ୍ରଦାନକାରୀ କରକମଳ ଦ୍ୱାରା ଆମ ପରି ହତଭାଗିନୀଙ୍କର ମସ୍ତକକୁ ବାରେ ସ୍ପର୍ଶ କର । ଶରଣାଗତମାନଙ୍କର ସକଳ ପାପକୁ ନାଶ କରିବାକୁ ସଦାସମର୍ଥ, ଜଗନ୍ମାତା ଲକ୍ଷ୍ମୀଙ୍କର ଦ୍ୱାରା ନିରନ୍ତରସେବିତ ଓ କାଳୀୟନାଗର ମସ୍ତକ ସ୍ଥାପିତ ତୁମର ସେହି ପରମସୁନ୍ଦର ପଦଯୁଗଳକୁ ତୁମ ବିରହରେ ବ୍ୟଥିତା ଏହି ହତଭାଗିନୀ ଗୋପାଙ୍ଗନାମାନଙ୍କର ବକ୍ଷସ୍ଥଳ ଓ ପୟୋଧର ଉପରେ ସ୍ଥାପନ କରି ପ୍ରିୟସାନ୍ନିଧ୍ୟ ସୁଖଲାଭ ଜନିତ କାମାନନ୍ଦରେ ଆମର ତୃଷିତ ପ୍ରାଣକୁ ଶାନ୍ତକର । ହେ କମଳଲୋଚନ, ତୁମ ଜ୍ଞାନୀଜନପ୍ରିୟ ସୁମଧୁର ବାଣୀଦ୍ୱାରା ଆମ୍ଭେମାନେ ମୋହିତ ହୋଇଅଛୁ । ତେଣୁ ଏହି ଦାସୀମାନଙ୍କ ପ୍ରତି ସଦୟ ହୋଇ ତୁମର ସେହି ଅଧରାମୃତ ପାନ କରିବାର ସୌଭାଗ୍ୟ ଆମକୁ ପ୍ରଦାନ କର । ପ୍ରଭୁ, ତୁମର ଲୀଳାବୃତ୍ତାନ୍ତ ଅମୃତ ତୁଲ୍ୟ ସୁଖପ୍ରଦ । ତୁମର ଲୀଳା-କଥା କବିମାନଙ୍କର ଯେପରି ପ୍ରିୟ ସେହିପରି ଶ୍ରୁତିସୁଖକର

ଓ ପାପନାଶକାରୀ, ହେ କପଟନାଗର, ତୁମର ସେହି ପ୍ରେମପୂର୍ଣ୍ଣ କଟାକ୍ଷପାତ, ସୁମଧୁର ହାସ୍ୟ, ଲୀଳାୟିତ କ୍ରୀଡ଼ା ବିହାର ଏବଂ ଏକାନ୍ତରେ ତୁମର ପ୍ରେମପୂର୍ଣ୍ଣ ଚିତ୍ତୋଲ୍ଲାସକର ବଚୋକ୍ତି ଓ ଇଙ୍ଗିତାଦି ଦ୍ୱାରା ଆମର ମନକୁ ତୁମେ ବହୁଭାବରେ ଆମୋଦିତ ଓ ହରଣ କରିଥିଲ । ଆଜ ଅତୀତର ସେହି ସ୍ମରଣୀୟ ସୁଖକର କଥାସବୁ ଆମର ସ୍ମୃତିପଟରେ ଜାଗ୍ରତ ହୋଇ ଆମର ଚିତ୍ତକୁ ବିଶେଷ ବ୍ୟଥିତ କରୁଅଛି । ହେ ପ୍ରିୟ, ତୁମେ ଗୋଷ୍ଠଚାରଣ ନିମନ୍ତେ ଧେନୁବତ୍ସମାନଙ୍କ ବନକୁ ଗମନ କଲେ, ବନର ବନ୍ଧୁର ପଥ ତୁମର ସୁକୋମଳ ସୁନ୍ଦର ପଦ ଯୁଗଳକୁ କେତେ ପୀଡ଼ିତ କରୁନଥିବ ବୋଲି ଭାବି ଆମେ କାତର ହୋଇ ପଡୁଥିଲୁ । ଗୋଚାରଣରୁ ପରିଶ୍ରାନ୍ତ ଓ ଧୂଳି ଧୂସରିତ କଳେବରରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲାବେଳେ, ତୁମର ନୀଳକୁନ୍ତଳ ବିନ୍ୟସ୍ତ ମୁଖମଣ୍ଡଳକୁ ଅପଲକ ନୟନରେ ଦର୍ଶନ କରି ଆମେ ଦେହ ଓ ମନରେ ଅପୂର୍ବ କନ୍ଦର୍ପ ପୀଡ଼ା ଅନୁଭବ କରୁ ଏବଂ ତୁମ ସହ ମିଳିତ ହେବାର ଆକାଙ୍କ୍ଷା ଆମ ମନରେ ଜାତ ହୁଏ । ହେ ରମଣ, ହେ ଦୁଃଖନାଶନ, ହେ ଅନ୍ତର୍ଯାମି, ଆମର ଏହି ହୃଦୟଗତ ଦୁଃଖକୁ ତୁମେ କ'ଣ ଅନୁଭବ କରିପାରୁ ନାହିଁ ? ଆମ ପ୍ରତି ସଦୟ ହୋଇ, ଆମର କୁଚମଣ୍ଡଳକୁ ତୁମର ସେହି ଅଖିଳ ଜଗତର ପାପନାଶକାରୀ ଚରଣଯୁଗଳ ଦ୍ୱାରା ସ୍ପର୍ଶ କରି ଏହି ଅସହ୍ୟ ବିରହଜ୍ୱାଳାରୁ ଆମକୁ ରକ୍ଷାକର । ହେ ବୀରଶିରୋମଣି, ତୁମର ଅଧରାମୃତ ଯେପରି ଆମ ମନରେ ମିଳନ ଆକାଂକ୍ଷାକୁ ଜାଗ୍ରତ କରାଏ ସେହିପରି ମିଳନ ସୁଖକୁ ମଧ୍ୟ ବର୍ଦ୍ଧିତ କରିଥାଏ ଏବଂ ବିରହଜ୍ୱାଳାକୁ ପ୍ରଶମିତ କରିଥାଏ । ତୁମେ ହସ୍ତରେ ଧାରଣ କରିଥିବା ବଂଶୀର କି ସୌଭାଗ୍ୟ ! ସର୍ବଦା ସେ ତୁମର ଅଧର ଚୁମ୍ବନର ସୁଖ ଲାଭ କରୁଥିବା ବେଳେ, ଆମେ ଆଜ ସେହି ସୁଖ ଲାଭରୁ ବଞ୍ଚିତା । ପ୍ରଭୁ, ଥରେ ତୁମର ସେହି ଅଧରାମୃତ ପାନ କରିବାର ସୌଭାଗ୍ୟ ଆମକୁ ପ୍ରଦାନ କର । ହେ ଅଚ୍ୟୁତ, ତୁମର ସେହି ବଂଶୀ-ସ୍ୱନର ଆହ୍ୱାନରେ ମୋହିତା ହୋଇ ଆମ୍ଭେମାନେ ପତି, ପୁତ୍ର, ପରିବାର ପରିତ୍ୟାଗ କରି ଏବଂ ସେମାନଙ୍କର ବାରଣକୁ ଅମାନ୍ୟ କରି ତୁମ ନିକଟକୁ ଧାଇଁ ଆସିଥିଲୁ । ଆମର ଏହି ଆଗମନରେ ଆମର ସ୍ୱଭାବ ଓ ଐକାନ୍ତିକଭାବ ସୁପ୍ରକାଶିତ ହେଉଥିଲେ

ମଧ୍ୟ ଏବଂ ଆମର ନଷ୍ଟା ସମ୍ପର୍କରେ ତୁମେ ସମ୍ପୂର୍ଣ୍ଣ ଅବଗତ ଥାଇ ମଧ୍ୟ, ଏପରି ରାତିରେ ଆମ ପରି ଯୁବତୀମାନଙ୍କୁ ଅସହାୟ ଅବସ୍ଥାରେ ଏଠାରେ ପରିତ୍ୟାଗ କରି ଚାଲିଯିବା ତୁମ ପରି ନର୍ମମ ପ୍ରବଞ୍ଚକ ପକ୍ଷରେ ହିଁ ଏତ ସମ୍ଭବ ହେଲା । ହାୟ, ଆମେ ବର୍ତ୍ତମାନ କ'ଣ କରିବୁ ? କନ୍ଦର୍ପର ପଞ୍ଚଶର ବିରହିଣୀର ଶରୀରକୁ ସଦା ବ୍ୟଥିତ କଲାପରି, ତୁମର ସେହି ଅପରୂପ ଅଙ୍ଗସୌଷ୍ଠବ, ଆମର ନେତ୍ରରନ୍ଧ୍ରରେ ପ୍ରବେଶ କରି ଆମର ହୃଦୟକୁ ବିଚଳିତ ଓ ରତିସୁଖକାମନା ସମ୍ପର୍କରେ ଉଦ୍ଦୀପିତ କରୁଅଛି । ତୁମର ବିରହ ଆମର ହୃଦୟକୁ ବିଦୀର୍ଣ୍ଣ କରୁଅଛି । ହେ ପ୍ରାଣପ୍ରିୟ, ଆମ ପ୍ରତି ଆଉ କପଟାଚରଣ ନ କରି ଆମକୁ ତୁମ ଦର୍ଶନସୁଖ ପ୍ରଦାନ କର । ହେ ଶ୍ୟାମସୁନ୍ଦର, ହେ ପ୍ରାଣନାଥ, ହେ କୃଷ୍ଣ, ତୁମେ ହିଁ ଆମର ପ୍ରାଣସ୍ୱରୂପ । ତୁମର ବିଚ୍ଛେଦରେ ଆମର ପ୍ରାଣ ଅସହ୍ୟ ପୀଡ଼ାରେ ସତତ ପୀଡ଼ିତ ହେଉଅଛି । ଆମ ପ୍ରତି ପ୍ରସନ୍ନ ହୁଅ ଏବଂ ଆମ ସମ୍ମୁଖରେ ଆବିର୍ଭୂତ ହୋଇ ଏହି ଅସହ୍ୟ ଦୁଃଖରୁ ଆମକୁ ରକ୍ଷାକର, ପ୍ରଭୁ !"

କୃଷ୍ଣଙ୍କ ଦର୍ଶନ ଲାଭ କରିବା ନିମନ୍ତେ ଅତ୍ୟନ୍ତ ବ୍ୟାକୁଳ ହୋଇ ଏହିପରି ଭାବରେ ଗୋପଯୁବତୀମାନେ ଉଚ୍ଚସ୍ୱରରେ କୃଷ୍ଣ-ଲୀଳା ଗାନ କରି ରୋଦନ କରିବାକୁ ଓ କୃଷ୍ଣଙ୍କ ଉଦ୍ଦେଶ୍ୟରେ ବାରମ୍ବାର ପ୍ରଣାମ କରିବାକୁ ଲାଗିଲେ । ଗୋପାଙ୍ଗନାମାନଙ୍କର ସୁମଧୁର କଣ୍ଠରେ ଯମୁନା ତଟ ମୁଖରିତ ହୋଇଉଠିଲା । ରୋରୁଦ୍ୟମାନା ଗୋପୀମାନଙ୍କର ହୃଦୟର ଆନ୍ତରିକତାର ଗଭୀରତା ଉପଲବ୍ଧି କରି କୃପାମୟ କୃଷ୍ଣ ପରିଶେଷରେ ଦୟାପରବଶ ହେଲେ ଏବଂ ବିରହବିଧୁରା ରୋରୁଦ୍ୟମାନା ଗୋପାଙ୍ଗନାମାନଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ ।

କୃଷ୍ଣଙ୍କର ସେହି ରୂପର ସୌନ୍ଦର୍ଯ୍ୟ ବାସ୍ତବିକ ଅନିର୍ବଚନୀୟ । ତାଙ୍କ ଗଳାରେ ବନମାଳା, ଅଙ୍ଗରେ ପୀତବସନ ଓ ହସ ହସ ମୁଖର ଅପରୂପ ଶୋଭା ଏପରି ଚିତ୍ତାକର୍ଷକ ଥିଲା ଯେ ତାଙ୍କର ରୂପର ସେହି ଚିତ୍ତବିମୋହନ ଦୀପ୍ତିରେ ଶତ ଶତ କନ୍ଦର୍ପ ମଧ୍ୟ ନିଷ୍ପ୍ରଭ ହୋଇଯିବେ ! ଚିରସୁନ୍ଦର ପ୍ରାଣପ୍ରିୟ କୃଷ୍ଣଙ୍କୁ ଦର୍ଶନ କରିବା ମାତ୍ରେ ମୃତକଳ୍ପ ଗୋପ ଯୁବତୀଙ୍କ ମଧ୍ୟରେ ସତେ ଯେପରି ନବୀନପ୍ରାଣ ସଞ୍ଚାରିତ ହେଲା ଏବଂ ସେମାନେ ଉତ୍ଫୁଲ୍ଲ ସତୃଷ୍ଣ ନୟନରେ କୃଷ୍ଣଙ୍କର ସେହି ରୂପଲାବଣ୍ୟ-ସୁଧାକୁ ପାନ

କରିବାକୁ ଲାଗିଲେ । କୃଷ୍ଣଙ୍କର ଚତୁର୍ଦ୍ଦିଗରେ ଗୋପାଙ୍ଗନାମାନେ ରୁଣ୍ଡ ହେଲେ ଏବଂ ସେମାନଙ୍କ ମଧ୍ୟରୁ କେହି କେହି କୃଷ୍ଣଙ୍କର ହସ୍ତକୁ ଧାରଣ କଲେ ତ କେହି କେହି ତାଙ୍କ ଅଧରରୁ ତାମ୍ବୁଲ ଗ୍ରହଣ କଲେ, କେହି କେହି କୃଷ୍ଣଙ୍କର ହସ୍ତକୁ ନେଇ ନିଜର ସ୍କନ୍ଧରେ ସ୍ଥାପନ କଲେ ତ କେହି କେହି ନିଜର ବକ୍ଷରେ ନେଇ ସ୍ଥାପନ କଲେ ଏବଂ କେହି କେହି ପ୍ରଣୟଭାବରେ ନିଜର ଓଷ୍ଠ ଦଂଶନ କରି କୃଷ୍ଣଙ୍କ ପ୍ରତି ପ୍ରଣୟପୂର୍ଣ୍ଣ କଟାକ୍ଷପାତ କରିବାକୁ ଲାଗିଲେ ।

ଗୋପାଙ୍ଗନାମାନଙ୍କ ଗହଣରେ କୃଷ୍ଣ ଯମୁନା ପୁଳିନରେ ପୂର୍ବ ପରି ଆନନ୍ଦରେ ବିହାର କରିବାକୁ ଲାଗିଲେ ।

ଜ୍ୟୋତ୍ସ୍ନା-ବିଧୌତ ରଜନୀରେ ଅପୂର୍ବ ମାଦକତା ସର୍ବତ୍ର ଅନୁଭୂତ ହେଉଥିଲା । ଚତୁର୍ଦ୍ଦିଗରେ କୁନ୍ଦ ଓ ମନ୍ଦାର ପୁଷ୍ପର ସୌରଭର ଆମୋଦ ମଧୁପିପାସୀ ଭ୍ରମରମାନଙ୍କର ମୃଦୁ ଗୁଞ୍ଜରଣ, ପ୍ରବାହିତ ଧୀର ସମୀରଣ ଓ ସୁଦୂର ପ୍ରସାରିତ ଯମୁନାର ଶୀତଳ କୋମଳ ବାଲୁକାଶେଯ ଏକ ସୁନ୍ଦର ଉପଭୋଗ୍ୟ ପରିବେଶ ସୃଷ୍ଟି କରିଥିଲା । ମନେ ହେଉଥିଲା, ସତେ ଯେପରି ସେହି ପ୍ରଶାନ୍ତ ଶରତ-ପୂର୍ଣ୍ଣିମାର ଜ୍ୟୋତ୍ସ୍ନା ବିଧୌତ ରଜନୀ ଭଗବାନ କୃଷ୍ଣଙ୍କର ଏକ ଅପୂର୍ବ ଦିବ୍ୟଲୀଳାକୁ ପ୍ରକଟିତ କରିବାରେ ସହାୟକ ହେବା ନିମନ୍ତେ ଆନନ୍ଦ ମଙ୍ଗଳର ଅପୂର୍ବ ମୋହମୟ ଅନୁକୂଳ ପୃଷ୍ଠ-ଭୂମି ରଚନା କରିଥିଲା ।

କୃଷ୍ଣଙ୍କୁ ଦର୍ଶନ କରିବା ମାତ୍ରେ ବିରହ-ବିଧୂର ଗୋପାଙ୍ଗନାମାନେ ପୂର୍ବର ସମସ୍ତ ବିରହ ଦୁଃଖ ଭୁଲିଗଲେ ଏବଂ ସେମାନଙ୍କର ସକଳ ମନୋରଥ ପୂର୍ଣ୍ଣ ହୋଇଅଛି ବୋଲି ଭାବି ଅପୂର୍ବ ଆନନ୍ଦ ଅନୁଭବ କଲେ । ଗୋପାଙ୍ଗନାମାନେ ନିଜ ନିଜର ପଣତକାନିକୁ ସେହି କୋମଳ ବାଲୁକାଶଯ୍ୟାରେ ପ୍ରସାରିତ କରି ପ୍ରାଣପ୍ରିୟ କୃଷ୍ଣଙ୍କ ନିମନ୍ତେ ଉପବେଶନର ସ୍ଥାନ ପ୍ରସ୍ତୁତ କଲେ । ବଡ଼ ବଡ଼ ଯୋଗୀମାନେ ସୁଦୀର୍ଘ ତପସ୍ୟା ଆଚରଣ କରି ମଧ୍ୟ ଯେଉଁ ଭଗବାନଙ୍କୁ ନିଜର ସୁନିର୍ମଳ ହୃଦୟାସନରେ ଲାଭ କରିପାରି ନାହାନ୍ତି, ଆଜି ସେହି ଯୋଗୀଜନ-ଦୁର୍ଲଭ ସର୍ବ ଐଶ୍ୱର୍ଯ୍ୟମଣ୍ଡିତ ସର୍ବନିୟନ୍ତା ଭଗବାନ କୃଷ୍ଣ ଗୋପାଙ୍ଗନା-ମାନଙ୍କ ଦ୍ୱାରା ସେହି ପଣତକାନିରେ ପ୍ରସ୍ତୁତ ଆସନରେ ପରମ ଆଗ୍ରହ ଓ

ସନ୍ତୋଷରେ ଉପବେଶନ କଲେ । ଗୋପାଙ୍ଗନାମାନେ କୃଷ୍ଣଙ୍କୁ ବେଢ଼ି ଚତୁର୍ଦ୍ଦିଗରେ ମଣ୍ଡଳାକାରରେ ବସିଲେ । ସେହି ଦୃଶ୍ୟର ଶୋଭା ବାସ୍ତବିକ ଅବର୍ଣ୍ଣନୀୟ । ସତେ ଯେପରି ଅଖିଳ ଜଗତର ସମସ୍ତ ସୌନ୍ଦର୍ଯ୍ୟ ସେହିଠାରେ ଘନୀଭୂତ ହୋଇଅଛି ।

କୃଷ୍ଣ କହିଲେ, 'ସଖିଗଣ, ଯେଉଁମାନେ ଉପକାର ବା ପ୍ରତ୍ୟୁପକାର ଆଶାରେ ପରସ୍ପରକୁ ଭଜନା କରନ୍ତି ସେମାନଙ୍କର ସେହି ପ୍ରେମ ଏକାନ୍ତ ସ୍ୱାର୍ଥାନ୍ୱେଷୀ କାରଣ ତହିଁରେ ନା ଥାଏ ଆନ୍ତରିକତା ନା ଥାଏ ପ୍ରକୃତ ସୌହାର୍ଦ୍ଦ୍ୟ । ନିଃସ୍ୱାର୍ଥପରତା ହିଁ ପ୍ରେମକୁ ଅତୁଳନୀୟ କରିଥାଏ । ହେ ସୁମଧ୍ୟମାମାନେ, କରୁଣାଶୀଳ ପିତାମାତାମାନେ ନିଜର ଗୁଣବାନ ଓ ଗୁଣହୀନ ସନ୍ତାନସନ୍ତତିଙ୍କୁ ସମାନ ଭାବରେ ସ୍ନେହ କରିଥାନ୍ତି ଏବଂ ସେମାନଙ୍କର ସେହି ସ୍ନେହରେ ଧର୍ମ ଓ ଆନ୍ତରିକତା ପୂର୍ଣ୍ଣଭାବରେ ଅବସ୍ଥାନ କରିଥାଏ ହେ ପ୍ରିୟ ଅବଳାଗଣ, ତୁମ୍ଭେମାନେ ଉପକାର ବା ପ୍ରତ୍ୟୁପକାରର କୌଣସି ପ୍ରତ୍ୟାଶା ନ ରଖି ବେଦମାର୍ଗ ଓ ଧର୍ମକୁ ଅପେକ୍ଷା ନ କରି, ଏପରି କି ଆତ୍ମୀୟସ୍ୱଜନ ତଥା ନିଜର ମାନମର୍ଯ୍ୟାଦାକୁ ଭ୍ରୂକ୍ଷେପ ନ କରି ମୋତେ ଯେପରି ଭାବରେ ଭଜନା କରିଆସୁଅଛ, ତୁମ ଅନ୍ତରର ସେହି ଅନୁପମ ଭାବକୁ ଗଭୀର ଭାବରେ ଉପଲବ୍ଧି କରିବା ନିମନ୍ତେ କେବଳ ମୁଁ ତୁମ୍ଭମାନଙ୍କ ଗହଣରୁ ଅନ୍ତର୍ହିତ ହୋଇଥିଲି । ମୁଁ ତୁମ୍ଭମାନଙ୍କଠାରୁ ଅଦୃଶ୍ୟ ହୋଇଥିଲେ ମଧ୍ୟ ନିରନ୍ତର ମୁଁ ତୁମ୍ଭମାନଙ୍କ କଥା ଭାବୁଥିଲି । ତୁମ୍ଭେମାନେ ମୋତେ ଗଭୀର ଭାବରେ ଭଲ ପାଅ ଏବଂ ସେଥିପାଇଁ କହୁଛି, ମୋର ଆନ୍ତରିକତାକୁ ଦୟାକରି ସନ୍ଦେହ କର ନାହିଁ । ମୋ ସହିତ ତୁମ୍ଭମାନଙ୍କର ଏହି ମିଳନ ଯେପରି ନିର୍ମଳ ସେହିପରି ଦୋଷଶୂନ୍ୟ । ତୁମ୍ଭେମାନେ କୁଳବଧୂ ହୋଇ ମଧ୍ୟ ଐହିକ ଓ ପାରଲୌକିକ ସୁଖପ୍ରଦ ସମସ୍ତ ଲୋକ ଧର୍ମ ଓ ମର୍ଯ୍ୟାଦାକୁ ଅକୁଣ୍ଠିତ ଚିତ୍ତରେ ପରିହାର କରି ପରମ ନିଷ୍ଠା ଓ ଅନୁରାଗର ସହିତ ମୋତେ ଯେପରି ତୁମ୍ଭେମାନେ ଭଜନା କରିଛ ଓ ନିଷ୍କପଟଚିତ୍ତରେ ମୋ ଠାରେ ଯେପରି ଆତ୍ମନିବେଦନ କରିଛ, ତାହାର ବାସ୍ତବିକ ତୁଳନା ନାହିଁ । ଅନନ୍ତକାଳ ଧରି ମୁଁ ତୁମ୍ଭମାନଙ୍କର ସେବା କଲେ ମଧ୍ୟ ତୁମର ଏହି

ଅତୁଳନୀୟ ପ୍ରେମର ଋଣରୁ ମୁକ୍ତ ଲାଭ କରିପାରିବ ନାହିଁ । ତୁମ୍ଭେମାନେ ଚିରଦିନ ପାଇଁ ମୋତେ ସ୍ନେହରେ ଋଣୀ କରି ଦେଇଅଛ ।'

କୃଷ୍ଣଙ୍କର କଥା ଶୁଣି ଏବଂ ନିଜ ନିଜର ସୁକୋମଳ ଶରୀରରେ ପ୍ରିୟହସ୍ତର ସୁଖସ୍ପର୍ଶ ଲାଭକରି ଗୋପାଙ୍ଗନାମାନେ ନିଜକୁ କଲ୍ୟାଣସମୃଦ୍ଧା ମନେ କଲେ ।

ଯମୁନାର ପ୍ରଶସ୍ତ ବାଲୁକାପ୍ରାନ୍ତରରେ କୃଷ୍ଣଙ୍କର ଚତୁର୍ଦ୍ଦିଗରେ ପ୍ରେମମୁଗ୍‌ଧା ଗୋପାଙ୍ଗନାମାନେ ବାହୁ ଛନ୍ଦାଛନ୍ଦି ହୋଇ ଦଣ୍ଡାୟମାନ ହେଲେ । ଗୋପଯୁବତୀମାନଙ୍କ ସହିତ ରାସକ୍ରୀଡ଼ା କରିବାକୁ କୃଷ୍ଣ ସ୍ଥିର କରି ଗୋପାଙ୍ଗନାମାନଙ୍କର ଗଳାରେ ନିଜର ବାହୁବେଷ୍ଟନ କଲେ । କୃଷ୍ଣଙ୍କର ହସ୍ତ ସ୍ପର୍ଶରେ ଗୋପାଙ୍ଗନାଙ୍କର ଶରୀର ଅପୂର୍ବ ରୋମାଞ୍ଚରେ ଶିହରି ଉଠୁଥାଏ ।

ସ୍ୱର୍ଗୀୟ ଦୁନ୍ଦୁଭି ବାଜି ଉଠିଲା ।

ଭଗବାନ କୃଷ୍ଣଙ୍କର ସେହି ଅନବଦ୍ୟମୀୟ ରାସକ୍ରୀଡ଼ା ଦର୍ଶନ କରିବା ନିମନ୍ତେ ଦେବତାମାନେ ଆକାଶମଣ୍ଡଳରେ ଅବସ୍ଥାନ କରି ଦର୍ଶନ କରୁଥାନ୍ତି ଓ ନିରବଚ୍ଛିନ୍ନ ଭାବରେ କୁସୁମ ବୃଷ୍ଟି କରୁଥାନ୍ତି ।

ହାସ ପରିହାସ ଓ ନୃତ୍ୟ-ଗୀତ ମାଧ୍ୟମରେ ରାସ-କ୍ରୀଡ଼ା ଆରମ୍ଭ ହେଲା । ଯମୁନାର ସୁକୋମଳ ଓ ସୁଶୀତଳ ବାଲୁକାଶଯ୍ୟା ଉପରେ ନୃତ୍ୟର ତାଳେ ତାଳେ କୃଷ୍ଣ ସମନ୍ୱିତା ଗୋପାଙ୍ଗନାମାନଙ୍କର ବିବିଧ ଅଳଙ୍କାରର ନିକ୍ୱଣରେ ଚତୁର୍ଦ୍ଦିଗ ମୁଖରିତ ହୋଇଉଠିଲା । ରାସ-କ୍ରୀଡ଼ା ସମୟରେ ବ୍ରଜବାଳାମାନଙ୍କର ଛନ୍ଦମୟୀଚରଣ ଗ୍ରଳନା, କରପଲ୍ଲବ ସଞ୍ଚାଳନ, ସସ୍ମିତ ଭ୍ରୂ-ବିଳାସ, ନୃତ୍ୟ-ଶ୍ଳଥିତ ଦୋଳାୟମାନ ନିତମ୍ବ ଓ କ୍ଷୀଣ କଟି, ଆନ୍ଦୋଳିତ ସ୍ତନଯୁଗଳ, ଉଡ୍‌ଡୀୟମାନ ସ୍ତନଦୁକୂଳ, ଦୋଦୁଲ୍ୟମାନ କର୍ଣ୍ଣକୁଣ୍ଡଳ ଓ କୁଣ୍ଡଳଲାଞ୍ଛିତ ଗଣ୍ଡସ୍ଥଳ, ସ୍ୱେଦସିକ୍ତ ସୁନ୍ଦର ବଦନମଣ୍ଡଳ ଏବଂ ଉନ୍ମୋଚନୋନ୍ମୁଖୀ ନିବିବନ୍ଧନର ଶୋଭା ଅତ୍ୟନ୍ତ ରମଣୀୟ ଥିଲା । ନୃତ୍ୟକାଳରେ କୃଷ୍ଣଙ୍କର ବକ୍ଷଲଗ୍ନା ଗୋପାଙ୍ଗନାମାନେ ମେଘ ପୃଷ୍ଠର ଉଦ୍‌ଭାସିତ ବିଦ୍ୟୁଲ୍ଲତା ପରି ଶୋଭା

ପାଉଥିଲେ । କୃଷ୍ଣଙ୍କର ଆଲିଙ୍ଗନ ସ୍ପର୍ଶରେ ପ୍ରଣୟବିଧୁରା ଗୋପାଙ୍ଗନା-ମାନେ ପ୍ରମୋଦିତା ହେଲେ ଏବଂ କୃଷ୍ଣଙ୍କସହ କଣ୍ଠ ମିଳାଇ ସେମାନେ ସୁମଧୁର ସ୍ୱରରେ ବିଭିନ୍ନ ରାଗରାଗିଣୀଯୁକ୍ତ ସଙ୍ଗୀତମାନ ଗାନ କଲେ । କୃଷ୍ଣ ସେମାନଙ୍କର ନୃତ୍ୟ ଓ ଗୀତକୁ ପ୍ରଶଂସା କରି ସେମାନଙ୍କୁ ଅଧିକ ଉତ୍ସାହିତ କରୁଥାନ୍ତି । କୌଣସି କୌଣସି ଗୋପୀ ରାସକ୍ରୀଡ଼ାରେ ପରିଶ୍ରାନ୍ତ ହୋଇ କୃଷ୍ଣଙ୍କର ସ୍କନ୍ଧରେ ବାହୁସ୍ଥାପନ କରି କିୟତକାଳ ବିଶ୍ରାମ କଲାବେଳେ ଅନ୍ୟ କୌଣସି ଗୋପୀ କୃଷ୍ଣଙ୍କର କଣ୍ଠଲଗ୍ନା ହୋଇ ପ୍ରିୟର ଅଧରକୁ ଚୁମ୍ବନ କରୁଥାଏ, କେହି କେହି କୃଷ୍ଣଙ୍କ ଗଣ୍ଡରେ ନିଜର ଗଣ୍ଡକୁ ସଂଯୋଜିତ କରୁଥାଏ ତ ଆଉ କିଏ କୃଷ୍ଣଙ୍କ ମୁଖରୁ ନିଜର ମୁଖଦ୍ୱାରା ତାମ୍ବୁଲ ଗ୍ରହଣ କରୁଥାଏ, କୌଣସି ଗୋପୀ କୃଷ୍ଣଙ୍କ କରକୁ ନିଜର ପୟୋଧର ଉପରେ ସ୍ଥାପନ କରି ଆନନ୍ଦଲାଭ କରୁଥାଏ, ତ ଅନ୍ୟ କିଏ କୃଷ୍ଣଙ୍କ ସହିତ ତାଳ ମିଳାଇ ଉଚ୍ଚ ସ୍ୱରରେ ନୃତ୍ୟକରି ସଙ୍ଗୀତ ଗାନ କରୁଥାଏ, ନୃତ୍ୟ ଫଳରେ ଗୋପାଙ୍ଗନାମାନଙ୍କର ବଳୟ, ନୂପୁର, କିଙ୍କିଣୀ ଆଦି ଅଳଙ୍କାର ସୁମଧୁର ଶବ୍ଦରେ ବାଦ୍ୟଧ୍ୱନିର ଭ୍ରମ ସୃଷ୍ଟି ହେଉଥାଏ ଏବଂ ତାଙ୍କ ମସ୍ତକର କେଶ ଓ କଣ୍ଠରୁ ପୁଷ୍ପମାନ ସ୍ଖଳିତ ହୋଇ ଯମୁନା ପୁଳିନକୁ ପୁଷ୍ପଶୋଭିତ କରୁଥାଏ ।

ବାଳକମାନେ ଯେପରି ନିଜର ପ୍ରତିବିମ୍ବ ସହିତ କ୍ରୀଡ଼ା କରୁଥାନ୍ତି ଅନୁରୂପ ଭାବରେ ରମାରମଣ ଭଗବାନ କୃଷ୍ଣ ବ୍ରଜରମଣୀ-ମାନଙ୍କ ସହିତ ଆଲିଙ୍ଗନ, କରମର୍ଦ୍ଦନ, ଅବଲୋକନ, ହାସ ପରିହାସ ଓ ନୃତ୍ୟାଦି କରୁଥାନ୍ତି ।

ବହୁ ସମୟ ଧରି ଏହିପରି ନୃତ୍ୟାଦି ହେବା ଫଳରେ ପ୍ରେମବିହ୍ୱଳା ଗୋପରମଣୀମାନେ ଧୀରେ ଧୀରେ କ୍ଳାନ୍ତ ହୋଇ ପଡ଼ିଲେ ଏବଂ ଅଧିକ ନୃତ୍ୟ କରିବା ତ ଦୂରର କଥା, ସତେ ଯେପରି ନିଜ ନିଜର କେଶକଳାପ, ଅଙ୍ଗ ଦୁକୂଳ ଓ ବକ୍ଷାବରଣ ଆଦିକୁ ବନ୍ଧନ କରିବାର ସାମର୍ଥ୍ୟ ସେମାନଙ୍କର ନ ଥିଲା । ବିବଶେନ୍ଦ୍ରିୟା ଗୋପାଙ୍ଗନା-ମାନଙ୍କର ଅବସ୍ଥା ଲକ୍ଷ୍ୟ କରି ଭଗବାନ କୃଷ୍ଣ ନିଜର ଯୋଗଶକ୍ତି ବଳରେ ଯେତେ ସଂଖ୍ୟକ ଗୋପୀ ସେଠାରେ ଥିଲେ ନିଜକୁ ସେତେ

ସଂଖ୍ୟକ କୃଷ୍ଣରେ ପରିଣତ କରି ପ୍ରତ୍ୟେକ ଗୋପରମଣୀଙ୍କ ସହିତ ପୃଥକ ପୃଥକ ଭାବରେ ଅବସ୍ଥାନ କରି ସେମାନଙ୍କ ସହିତ ରମଣ କଲେ ଏବଂ ନିଜର କ୍ଳାନ୍ତିଅପନୋଦନକାରୀ ହସ୍ତ ଦ୍ୱାରା ରମଣଶ୍ରମକ୍ଳାନ୍ତା ସୁକୁମାରୀ ଗୋପାଙ୍ଗନାମାନଙ୍କର ବଦନରୁ ପରିଦୃଷ୍ଟ ସ୍ୱେଦବିନ୍ଦୁଗୁଡ଼ିକୁ ଅପସାରଣ କରି ସେମାନଙ୍କର ମସ୍ତକର ଅଂସବୃତ କେଶକୁ ସଂଯତ କରିବା ସଙ୍ଗେ ସଙ୍ଗେ ନିଜର ସସ୍ନେହ ଆଦରରେ ଶ୍ରମକ୍ଳାନ୍ତା ଗୋପାଙ୍ଗନାମାନଙ୍କର ମ୍ଳାନ ବଦନକୁ ପ୍ରେମୋଜ୍ଜ୍ୱଳ କଲେ । କୃଷ୍ଣଙ୍କ ଆଦର ଯତ୍ନରେ ପ୍ରମୋଦିତା ହୋଇ ସୁନ୍ଦରୀ ବ୍ରଜାଙ୍ଗନାମାନେ ସସ୍ମିତ ବଦନରେ ପ୍ରିୟତମ କୃଷ୍ଣଙ୍କର ଅପୂର୍ବ ମହିମାଗାନ କରିବାକୁ ଲାଗିଲେ । ଶ୍ରମକ୍ଳାନ୍ତା ହସ୍ତିନୀମାନଙ୍କର କ୍ଳାନ୍ତି ଅପନୋଦନ କରିବା ନିମନ୍ତେ ସେମାନଙ୍କୁ ସଙ୍ଗରେ ନେଇ ଗଜରାଜ ଜଳରେ ଆଶ୍ରୟ ନେବା ପରି ରତିଶ୍ରମକ୍ଳାନ୍ତା ଗୋପରମଣୀମାନଙ୍କୁ ସାଥିରେ ନେଇ କୃଷ୍ଣ ଯମୁନା ଜଳରେ ପ୍ରବେଶ କଲେ ଓ ସେମାନଙ୍କ ସହ ଜଳବିହାର କରିବାକୁ ଲାଗିଲେ ।

ମହାରାଜ ପରୀକ୍ଷିତ ଏହି ସ୍ଥାନରେ ଏକ ପ୍ରଶ୍ନ ଉତ୍‌ଥାପନ କରି କହିଲେ, 'ହେ ସୁବ୍ରତ ଶୁକଦେବ, ଜଗତରେ ଧର୍ମ ସଂସ୍ଥାପନ କରିବା ଉଦ୍ଦେଶ୍ୟରେ ଭ୍ରାତା ବଳରାମଙ୍କ ସହିତ ଭଗବାନ କୃଷ୍ଣ ଧରାଧାମରେ ଆବିର୍ଭୂତ ହୋଇଥିଲେ; କିନ୍ତୁ ସେହି ଧର୍ମରକ୍ଷକ, ଧର୍ମପ୍ରବର୍ତ୍ତକ, ପୂର୍ଣ୍ଣକାମ ଭଗବାନ କୃଷ୍ଣ କିପରି ପରଦାରାଭିମର୍ଷଣ ରୂପକ ଧର୍ମ ବିରୁଦ୍ଧ ପରମ ନିନ୍ଦନୀୟ କାର୍ଯ୍ୟରେ ପ୍ରବୃତ୍ତ ହେଲେ, ମୁଁ ବୁଝିପାରୁ ନାହିଁ । ଏହାର ପ୍ରକୃତ ରହସ୍ୟ ପ୍ରକାଶ କରି ମୋର ମନରେ ଜାତ ହୋଇଥିବା ଏହି ସନ୍ଦେହକୁ ଦୟାକରି ଦୂର କରନ୍ତୁ ।

ପରୀକ୍ଷିତଙ୍କ ପ୍ରଶ୍ନ ଶୁଣି ଶୁକଦେବ କହିଲେ, "ମହାରାଜ ସୂର୍ଯ୍ୟ ଓ ଅଗ୍ନି ପ୍ରମୁଖ ଦେବତାମାନେ ସମୟ ସମୟରେ ଧର୍ମ ଲଙ୍ଘନ କଲା ପରି କାର୍ଯ୍ୟ କରିଥାଆନ୍ତି; କିନ୍ତୁ ସେମାନେ ତେଜସ୍ୱୀ ଥିବାରୁ କୌଣସି ଦୋଷ ସେମାନଙ୍କୁ ସ୍ପର୍ଶ କରେ ନାହିଁ । ଅଗ୍ନି ସର୍ବଭୋକ୍ତା, ସେଥିପାଇଁ କୌଣସି ଭୁକ୍ତ ପଦାର୍ଥର ଦୋଷରେ ବା ପ୍ରଭାବରେ ଅଗ୍ନି ଲିପ୍ତ ହୁଏ ନାହିଁ । କିନ୍ତୁ ସାମର୍ଥ୍ୟ ନ ଥାଇ ସେପରି ସାହସିକ କାର୍ଯ୍ୟ କଲେ ତାହା ଦୂଷଣୀୟ

ହୋଇଥାଏ । ଦେବତାମାନଙ୍କ ଆଚରିତ କାର୍ଯ୍ୟରେ ଉତ୍ସାହିତ ହୋଇ କମ୍ବା ଜ୍ଞାତ ଅଜ୍ଞାତସାରରେ ସେପରି କାର୍ଯ୍ୟକୁ ଅନୁକରଣ କରିବାକୁ ଯିବା ମନୁଷ୍ୟ ପକ୍ଷରେ ଆଦୌ ସ୍ପୃହଣୀୟ ନୁହେଁ ! ତହିଁରେ ଅନେଷ୍ଟ ସାଧିତ ହୁଏ । ଭଗବାନ ଶିବଙ୍କ ପକ୍ଷରେ କାଳକୂଟ ହଳାହଳ ବିଷ ଭକ୍ଷଣ କରିବା ସମ୍ଭବ ହେଲ; କିନ୍ତୁ ଅନ୍ୟମାନଙ୍କ ପକ୍ଷରେ ସେପରି କାର୍ଯ୍ୟ ନିଶ୍ଚିତ ମୃତ୍ୟୁର କାରଣ ହୋଇଥାନ୍ତା । ଈଶ୍ୱରଙ୍କର ବାକ୍ୟ ସତ୍ୟ କିନ୍ତୁ ତାଙ୍କର ଆଚରଣ ସବୁ ଅନୁକରଣୀୟ ନୁହେଁ । ତେଣୁ ବିଜ୍ଞ ଜନମାନେ ନିଜର ସାମର୍ଥ୍ୟ ଓ ବିବେକ ବୁଦ୍ଧି ଦୃଷ୍ଟିରେ ଭଗବାନଙ୍କ କାର୍ଯ୍ୟ କେତେଦୂର ପାଳନୀୟ ତାହା ବିଚାର କରି କାର୍ଯ୍ୟ କରିବା ଉଚିତ । ଭଗବାନ ସର୍ବଦା ସ୍ୱାର୍ଥ ଓ ଅନର୍ଥର ଊର୍ଦ୍ଧ୍ୱରେ ଅବସ୍ଥାନ କରିଥାନ୍ତି । ଯେଉଁ ଭଗବାନଙ୍କର ଚରଣରଜ ଲଭ କରିବା ନିମନ୍ତେ ଭକ୍ତମାନଙ୍କର ସାଧନାର ଅନ୍ତ ନାହିଁ ଓ ତାହା ଲଭ କଲେ ପରମତୃପ୍ତି ଲଭ କରିଥାନ୍ତି, ଯାହାଙ୍କର ଲେଶମାତ୍ର କରୁଣା ଲଭ କରି ଯୋଗୀମାନେ ସମସ୍ତ କର୍ମବନ୍ଧନରୁ ମୁକ୍ତି ଲଭ କରିଥାନ୍ତି, ଜ୍ଞାନୀମାନେ ଯାହାଙ୍କର ରହସ୍ୟଘନ ତତ୍ତ୍ୱକୁ ବିଚାର କରି ଭବବନ୍ଧନରୁ ମୁକ୍ତ ହୋଇଥାନ୍ତି, ସେହି କରୁଣାମୟ ଭଗବାନ ଭକ୍ତମାନଙ୍କର କାମନାନୁସାରେ ବିଭିନ୍ନ ଚିନ୍ମୟ ରୂପ ଧାରଣ କରି ନିଜର ଲୀଳା ପ୍ରକାଶ କରିଥାନ୍ତି । ଭଗବାନଙ୍କ ଲୀଳା ବ୍ୟବହାରରେ ପାପପୁଣ୍ୟର ପାର୍ଥିବ ବିଚାର କରାଯାଏ ନାହିଁ । ଯେଉଁ ଭଗବାନ ବ୍ରଜ ଗୋପୀମାନଙ୍କର ତଥା ଅଖିଳ ଜଗତର ହୃଦୟାକାଶରେ ଅନ୍ତର୍ଯ୍ୟାମୀ ରୂପରେ ନିତ୍ୟ ବିରାଜିତ, ସେହି ସର୍ବସାକ୍ଷୀ ପରମପତି ଭଗବାନ କୃଷ୍ଣ ନିଜର ଦିବ୍ୟ ଚିନ୍ମୟ ରୂପ ପ୍ରକାଶ କରି ଏହିପରି ଲୀଳା ପ୍ରକାଶ କଲେ । ଜୀବମାନଙ୍କ ପ୍ରତି କରୁଣାପରବଶ ହୋଇ ସେମାନଙ୍କର କଲ୍ୟାଣ ସାଧନ ନିମନ୍ତେ ଭଗବାନ ଏପରି ମନୁଷ୍ୟ ରୂପ ଧାରଣ କରି ଏହି ପରମ ପବିତ୍ର ଲୀଳା ଆଚରଣ କଲେ । ଅନ୍ୟମାନଙ୍କର କଥା ଦୂରରେ ଥାଉ ଏହି ଲୀଳା-କଥାକୁ ଯେଉଁମାନେ ଭକ୍ତି ସହକାରେ ଶ୍ରବଣ କରିଥାଆନ୍ତି ସେମାନେ ଅଶେଷ ପୁଣ୍ୟର ଅଧିକାରୀ ହୋଇ ଭଗବତ ପଦ୍ମପ୍ରାପ୍ତ ହୋଇ-ଥାନ୍ତି । ଯମୁନା ତଟରେ ରାସ-କ୍ରୀଡ଼ା ଚାଲିଥିବା ବେଳେ ଭଗବାନଙ୍କର ମାୟାରେ ମୋହିତ ହୋଇଥିବା ଗୋପବାସୀମାନେ ନିଜ ନିଜ ପାର୍ଶ୍ୱରେ ସେମାନଙ୍କର ସ୍ୱ ସ୍ୱ ପତ୍ନୀମାନଙ୍କୁ ରହିଥିବାର ଅନୁଭବ କରୁଥାଆନ୍ତି ।

ତେଣୁ କୃଷ୍ଣଙ୍କ ପ୍ରତି ଅସୂୟା ପ୍ରକାଶ କରିବାର କୌଣସି ଅବକାଶ ସେମାନଙ୍କର ନ ଥିଲା । ମହାରାଜ, ଭଗବାନଙ୍କ ସହିତ ସେହି ରାତିଟି ଏହିପରି ଭାବରେ ପରମ ମିଳନ ଆନନ୍ଦ ମଧ୍ୟରେ ଅତିବାହିତ କରି ଭଗବତ ପରାୟଣା କୃଷ୍ଣପ୍ରିୟା ଗୋପାଙ୍ଗନ ମାନେ ରାତି ଅବସାନ ହେବାର ଉପକ୍ରମ ହେବା ଲକ୍ଷ୍ୟ କରି କୃଷ୍ଣଙ୍କ ଅନୁମତି କ୍ରମେ ଶତ ଅନିଚ୍ଛା ସତ୍ତ୍ୱେ ନିଜ ନିଜର ଗୃହକୁ ବ୍ରାହ୍ମମୁହୂର୍ତ୍ତ ପୂର୍ବରୁ ପ୍ରତ୍ୟାବର୍ତ୍ତନ କରିଥିଲେ ।



## କୃଷ୍ଣଙ୍କର ଲୀଳା ଓ କଂସର ଚକ୍ରାନ୍ତ

ଏବେ ଶିବରାତ୍ରି ହୋଇଥାଏ । ନନ୍ଦପ୍ରମୁଖ ଗୋପବାସୀମାନେ ଅମ୍ବିକା ବନ ନିକଟସ୍ଥ ସରସ୍ୱତୀ ନଦୀ କୂଳକୁ ଯାଇ ସେଠାରେ ଶିବରାତ୍ରି ବ୍ରତ ପାଳନ କଲେ । ସେମାନେ ନଦୀରେ ସ୍ନାନ କରି ଭଗବାନ ଶିବ ଓ ଦେବୀ ଅମ୍ବିକାଙ୍କ ଉଦ୍ଦେଶ୍ୟରେ ପୂଜାର୍ଘ୍ୟ ନିବେଦନ କଲେ ଏବଂ ବ୍ରାହ୍ମଣମାନଙ୍କୁ ଭୋଜନ ଓ ଦକ୍ଷିଣାଦି ପ୍ରଦାନ କରି କେବଳ ଜଳ ସେବନ କରି ସରସ୍ୱତୀ ନଦୀ ତୀରରେ ଅବସ୍ଥାନ କରି ସମଗ୍ର ରାତିଟି ଅତିବାହିତ କରିବାକୁ ସ୍ଥିରକଲେ ।

ନଦୀ କୂଳରେ ସମସ୍ତେ ରାତିଯାପନ କରୁଅଛନ୍ତି, ହଠାତ୍ ଏକ ବିଶାଳକାୟ କ୍ଷୁଧାତୁର ଅଜଗର ସର୍ପ କେଉଁଆଡ଼ୁ ଆସି ନନ୍ଦଙ୍କୁ ଗୋଡ଼ଆଡ଼ୁ ଗ୍ରାସ କରିବାକୁ ଲାଗିଲା । ସର୍ପଦ୍ୱାରା ଆକ୍ରାନ୍ତ ହୋଇ ନନ୍ଦ ଭୟରେ ଚିତ୍କାର କଲେ ଏବଂ ଚିତ୍କାର ଶୁଣି ଗୋପମାନେ ନନ୍ଦଙ୍କର କ'ଣ ହେଲା ଜାଣିବାକୁ ଆସି ଏକ ବିଶାଳକାୟ ବିଷଧର ସର୍ପକୁ ଦେଖି ଭୟ ଓ ଦୁଃଖରେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ପରେ ଜ୍ୱଳନ୍ତକାଷ୍ଠାଦି ଦ୍ୱାରା ସର୍ପକୁ ପ୍ରହାର କଲେ ମଧ୍ୟ ସର୍ପଟି ନନ୍ଦଙ୍କୁ ଛାଡ଼ିଲା ନାହିଁ । ପିତାଙ୍କର କରୁଣ ଚିତ୍କାର କୃଷ୍ଣଙ୍କ କାନରେ ମଧ୍ୟ ପଡ଼ିଥିଲା । ସେ ନନ୍ଦଙ୍କୁ ଦେଖିବାକୁ ଆସି ନିଜର ପଦଦ୍ୱାରା ସର୍ପର ପୁଚ୍ଛଦେଶକୁ ସ୍ପର୍ଶ କଲେ । ଆଶ୍ଚର୍ଯ୍ୟର କଥା କୃଷ୍ଣଙ୍କର ପଦ ସର୍ପକୁ ସ୍ପର୍ଶ କଲା ମାତ୍ରେ ସର୍ପ କେଉଁ-ଆଡ଼େ ଅଦୃଶ୍ୟ ହୋଇଗଲା ଏବଂ ସର୍ପ ସ୍ଥାନରେ ଦିବ୍ୟଭୂଷଣଭୂଷିତ ଏକ ସୌମ୍ୟଦର୍ଶନ ବିଦ୍ୟାଧର ଦେଖାଗଲା । ସେହି ବିଦ୍ୟାଧରଟି କୃଷ୍ଣଙ୍କୁ ପ୍ରଣାମ କରି ତାଙ୍କ ସମ୍ମୁଖରେ ମାଉବଟରେ ଦଣ୍ଡାୟମାନ ହୋଇ ରହିଲା ।

କୃଷ୍ଣ ପଚାରିଲେ, 'ତୁମେ ପ୍ରକୃତରେ କିଏ ? ଏପରି ଏକ ସର୍ପ ରୂପ ଧାରଣ କରିଥିଲ କାହିଁକି ?'

ବିଦ୍ୟାଧର କହିଲେ, 'ହେ ଅଚ୍ୟୁତ, ମୁଁ ସର୍ପ ନୁହେଁ, ପ୍ରକୃତରେ ଜଣେ ବିଦ୍ୟାଧର । ମୋର ନାମ ସୁଦର୍ଶନ । ମୋର ସୁନ୍ଦର ରୂପ ପାଇଁ ମୋ ମନରେ ବିଶେଷ ଗର୍ବ ଥିଲା । ଦିନେ ମୁଁ ବିମାନରେ ଆରୋହଣ କରି ଆକାଶରେ ବିହାର କରୁଥିବା ସମୟରେ ତପକ୍ଳିଷ୍ଟ ତପସ୍ୱୀ-ମାନଙ୍କର ସ୍ୱାଭାବିକ କ୍ଷୀଣ ଶରୀର ଦର୍ଶନ କରି ପରିହାସ କଲି; ଫଳରେ ଋଷିମାନେ ମୋ ବ୍ୟବହାରରେ କୁପିତ ହୋଇ ମୋତେ ହୀନ ସର୍ପ ଜନ୍ମ ଲାଭ କରିବାକୁ ଅଭିଶାପ ଦେଲେ । ଏପରି ଅଭିଶାପ ପାଇଁ ବାସ୍ତବିକ ମୁଁ ପ୍ରସ୍ତୁତ ନ ଥିଲି । ତେଣୁ ସେହି ଅଭିଶାପର ନିରାକରଣ ନିମନ୍ତେ ମୁଁ ଋଷିମାନଙ୍କ ନିକଟରେ ବିନୀତ ପ୍ରାର୍ଥନା ଜଣାଇବାରୁ ସେମାନେ ମୋ ପ୍ରତି ସାମାନ୍ୟ ପ୍ରସନ୍ନ ହୋଇ କହିଥିଲେ ଯେ, ଭଗବାନଙ୍କର ଚରଣ ସ୍ପର୍ଶ ଲାଭ କଲେ ସର୍ପଜନ୍ମରୁ ମୁଁ ମୁକ୍ତିଲାଭ କରିବି । ହେ ସର୍ବ ପାପ ନିବାରକ, ପ୍ରଭୁ, ଆପଣଙ୍କର ଚରଣ ସ୍ପର୍ଶରେ ମୋର ସେହି ଦାରୁଣ ଅଭିଶାପ ସମ୍ପୂର୍ଣ୍ଣ ରୂପେ ପ୍ରଶମିତ ହୋଇଥିବାରୁ ଏବଂ ମୁଁ ମୋର ପୂର୍ବ ଶରୀର ଫେରି ପାଇଥିବାରୁ ଆପଣଙ୍କ ଶ୍ରୀଚରଣରେ ମୋର କୃତଜ୍ଞତା ଜ୍ଞାପନ କରୁଅଛି । ହେ ଶରଣାଗତବତ୍ସଳ, ମୁଁ ଆପଣଙ୍କର ଦାସାନୁଦାସ । ମୋତେ ମୋର ସ୍ୱସ୍ଥାନ ସ୍ୱର୍ଗଲୋକକୁ ଯିବା ନିମନ୍ତେ ଦୟାକରି ଅନୁମତି ପ୍ରଦାନ କରନ୍ତୁ । ହେ ଅଚ୍ୟୁତ, ଆପଣଙ୍କର ନାମୋଚ୍ଚାରଣ କରିବା ମାତ୍ରେ ଜୀବ ସମସ୍ତ ପାପରୁ ମୁକ୍ତ ହୋଇଥାଏ । ଆପଣଙ୍କର ଅନୁଗ୍ରହରୁ ଆପଣଙ୍କ ମହିମାମୟ ଚରଣ ସ୍ପର୍ଶ ଲାଭ କରିବାର ସୌଭାଗ୍ୟ ମୁଁ ଆଜି ଅର୍ଜନ କଲି ।'

ଏହିପରି କହି କୃଷ୍ଣଙ୍କୁ ପ୍ରଦକ୍ଷିଣ ଓ ବନ୍ଦନା କରି ବିଦ୍ୟାଧର କୃଷ୍ଣଙ୍କ ଆଦେଶକ୍ରମେ ସ୍ୱର୍ଗକୁ ଯାତ୍ରା କଲେ । କୃଷ୍ଣଙ୍କର ସେହି ଅପୂର୍ବ ଅଦ୍ଭୁତ ଦର୍ଶନ କରି ସମବେତ ବ୍ରଜବାସୀଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେମାନେ କୃଷ୍ଣଙ୍କର ସେହି ଆଶ୍ଚର୍ଯ୍ୟକର କଥାକୁ ଆଲୋଚନା କରି କରି ଗୃହକୁ ଫେରି ଆସିଲେ ।

ଅନ୍ୟ ଏକ ଦିନର କଥା ।

ସେଦିନ ଥିଲା ଦୋଳପୂର୍ଣ୍ଣିମା ହୋଇଥାଏ ।

ସେହିଦିନ ରାତ୍ରରେ ବ୍ରଜରମଣୀମାନଙ୍କ ସହିତ କୃଷ୍ଣ ଓ ବଳରାମ-ପ୍ରମୁଖ ଗୋପବାଳକମାନେ କ୍ରୀଡ଼ା କରୁଥା'ନ୍ତି । ଗୋପାଙ୍ଗନାମାନେ ସେମାନଙ୍କର ସୁମଧୁର କଣ୍ଠରେ ବିଭିନ୍ନ ସଙ୍ଗୀତ ଗାନ କରୁଥାନ୍ତି । କୃଷ୍ଣ ମଧ୍ୟ ବିଭିନ୍ନ ସଙ୍ଗୀତ ଗାନ କଲେ । କୃଷ୍ଣଙ୍କ କଣ୍ଠରୁ ସୁମଧୁର ସଙ୍ଗୀତ ଶ୍ରବଣ କରି ଗୋପାଙ୍ଗନାମାନେ ଅତ୍ୟନ୍ତ ଭାବବିହ୍ୱଳ ହୋଇ ପଡ଼ିଲେ । ନୃତ୍ୟ-ସଙ୍ଗୀତମୟୀ କ୍ରୀଡ଼ାରେ ସେମାନଙ୍କର କେଶବାସ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲେ ମଧ୍ୟ ସେଥିପ୍ରତି ସେମାନଙ୍କର ଆଦୌ ଲକ୍ଷ୍ୟ ନ ଥିଲା ।

ଗୋପାଙ୍ଗନାମାନଙ୍କୁ ଭାବବିହ୍ୱଳା ଦେଖି କୁବେରର ଶଙ୍ଖଚୂଡ଼ ନାମକ ଏକ ଅନୁଚର ସେଠାରେ ହଠାତ୍ ଆବିର୍ଭୂତ ହୋଇ ଗୋପା-ଙ୍ଗନାମାନଙ୍କୁ ଅପହରଣ କରିନେବାକୁ ଉଦ୍ୟମ କଲା । ଦସ୍ୟୁଦ୍ୱାରା ଆକ୍ରାନ୍ତା ହୋଇ ଗୋପରମଣୀମାନେ ଭୟରେ ଚିତ୍କାର କଲେ । ଗୋପାଙ୍ଗନାମାନଙ୍କର ଦୁରବସ୍ଥା ଲକ୍ଷ୍ୟକରି କୃଷ୍ଣ ଓ ବଳରାମ ସଙ୍ଗେ ସଙ୍ଗେ ଶାଳବୃକ୍ଷମାନ ଉତ୍ପାଟିତ କରି ଶଙ୍ଖଚୂଡ଼କୁ ଆକ୍ରମଣ କଲେ; ଫଳରେ ପ୍ରାଣଭୟରେ ଶଙ୍ଖଚୂଡ଼ ଗୋପାଙ୍ଗନାମାନଙ୍କୁ ପରିତ୍ୟାଗ କରି ପଳାୟନ କରିବାକୁ ଲାଗିଲା । କୃଷ୍ଣ କିନ୍ତୁ ତାକୁ ସେତିକିରେ ଛାଡ଼ିଲେ ନାହିଁ; କୃଷ୍ଣ ଦ୍ରୁତଗତିରେ ଯାଇ ପଳାୟନରତ ଶଙ୍ଖଚୂଡ଼କୁ ଧରିଲେ ଏବଂ ହତ୍ୟା କଲେ । ଶଙ୍ଖଚୂଡ଼ର ମସ୍ତକରୁ ଶିରୋମଣି ହରଣ କରି ଭାଇ ବଳରାମଙ୍କୁ ପ୍ରଦାନ କଲେ ।

ଏହି ଘଟଣାର କିଛିଦିନ ପରେ, ଅରିଷ୍ଟ ନାମକ ଏକ ଅସୁର ରାକ୍ଷସୀ ମାୟାରେ ବୃଷ ରୂପ ଧାରଣ କରି ବ୍ରଜବାସୀମାନଙ୍କର ଅନିଷ୍ଟ ସାଧନ କରିବା ନିମନ୍ତେ ଗୋଷ୍ଠରେ ପ୍ରବେଶ କଲା । ଅରିଷ୍ଟର ଆକ୍ରମଣରେ ସନ୍ତାପିତ ହୋଇ ଗୋପବାସୀମାନେ କୃଷ୍ଣଙ୍କର ଶରଣାପନ୍ନ ହେବାରୁ କୃଷ୍ଣ ନିଜର ବିକ୍ରମ ପ୍ରକାଶ କରି ସେହି ଅସୁରକୁ ସଂହାର କରିଥିଲେ ।

କୃଷ୍ଣଙ୍କର ବିଭିନ୍ନ ଲୀଳା ଓ ବିଭିନ୍ନ ରାକ୍ଷସମାନଙ୍କର ନିଧନ ସମ୍ବାଦ କଂସ ନିକଟରେ ପହଞ୍ଚୁଥାଏ । ଦେବର୍ଷି ନାରଦ ବିଭିନ୍ନ ସ୍ଥାନରେ ଭ୍ରମଣ କରୁ କରୁ ଦିନେ କଂସର ରାଜପୁରୀରେ ଆବିର୍ଭୂତ ହୋଇ କଂସକୁ କହିଲେ, 'ଭୋଜପତି ଆପଣ ଯେଉଁ କନ୍ୟାକୁ ଦେବକୀଙ୍କର

ଅଷ୍ଟମ ଗର୍ଭ ବୋଲି ଭାବି ସଂହାର କରିବାକୁ ଚେଷ୍ଟା କରୁଥିଲେ, ସେହି କନ୍ୟା ପ୍ରକୃତରେ ଥିଲା ନନ୍ଦ ପତ୍ନୀ ଯଶୋଦାଙ୍କର ଗର୍ଭପ୍ରସୂତା, ଦେବକୀଙ୍କର ନୁହେଁ । ଯଶୋଦାଙ୍କର ଗର୍ଭଜାତ ପୁତ୍ର ରୂପେ ପ୍ରସିଦ୍ଧ କୃଷ୍ଣ ଓ ରୋହିଣୀଙ୍କ ପୁତ୍ର ବଳରାମ ପ୍ରକୃତରେ ଦେବକୀଙ୍କର ପୁତ୍ର । ଆପଣଙ୍କ ଭୟରେ ଭୀତ ହୋଇ ବସୁଦେବ ନିଜର ନବଜାତ ପୁତ୍ରକୁ ସେହି ରାତ୍ରାରାତ୍ରି ଗୋପନରେ ନେଇ ନିଜର ବନ୍ଧୁ ନନ୍ଦଙ୍କ ତତ୍ତ୍ୱାବଧାନରେ ଛାଡ଼ି ଦେଇ ଆସିଥିଲେ । ସମ୍ଭବତଃ ଆପଣ ତାହା ଅଦ୍ୟାବଧି ଜାଣିପାରି ନାହାନ୍ତି । ବସୁଦେବଙ୍କର କୃଷ୍ଣ ଓ ବଳରାମ ନାମକ ପୁତ୍ରଦ୍ୱୟ ଆପଣଙ୍କର ଆଜ୍ଞାଧୀନ ତୃଣାବର୍ତ୍ତ ପ୍ରମୁଖ ଅସୁରମାନଙ୍କୁ ଅବଲୀଳାକ୍ରମେ ସଂହାର କରିଅଛନ୍ତି ।'

ମହର୍ଷି ନାରଦଙ୍କ ମୁଖରୁ ସେହି କଥା ଶୁଣିବା ମାତ୍ରେ ଅସହ୍ୟ କ୍ରୋଧରେ ସତେ ଯେପରି କଂସ ଭାଙ୍ଗି ପଡ଼ିଲା । ମିଥ୍ୟାବାଦୀ ପ୍ରବଞ୍ଚକ ବସୁଦେବଙ୍କୁ ସଂହାର କରିବା ନିମନ୍ତେ କଂସ ନିଜର ଶାଣିତ ଖଡ୍ଗ ଉତ୍ତୋଳିତ କଲା । କ୍ରୋଧାନ୍ୱିତ କଂସର ଉଦ୍ଦେଶ୍ୟ ବୁଝିପାରି ମହର୍ଷି ନାରଦ 'ବସୁଦେବଙ୍କୁ ବର୍ତ୍ତମାନ ହତ୍ୟା କରିବାର କୌଣସି ଆବଶ୍ୟକତା ନାହିଁ' ବୋଲି କହି କଂସକୁ ବାରଣ କଲେ । ମହର୍ଷିଙ୍କ କଥା ମାନି ବସୁଦେବଙ୍କୁ ହତ୍ୟା କରିବାର ସିଦ୍ଧାନ୍ତରୁ କଂସ ନିବୃତ୍ତ ହେଲା ଏବଂ ଦେବକୀଙ୍କ ସହ ବସୁଦେବଙ୍କୁ ପୁନର୍ବାର ଲୌହଶିକୁଳିରେ ଆବଦ୍ଧ କରି କାରାଗାରରେ କଂସ ନିକ୍ଷେପ କଲା ।

ଦେବର୍ଷି ନାରଦଙ୍କ ପ୍ରସ୍ଥାନ ପରେ ନିଜର ଅନୁଗତ କେଶୀ ନାମକ ଏକ ଦୈତ୍ୟକୁ ଆହ୍ୱାନ କରି କଂସ କହିଲା, 'ବର୍ତ୍ତମାନ ବ୍ରଜକୁ ଯାଅ । କଳେବଳେ କୌଶଳେ, ଯେ କୌଣସି ଉପାୟରେ, ସେଠାରେ ବାସ କରୁଥିବା କୃଷ୍ଣ ଓ ବଳରାମକୁ ସଂହାର କର ।'

କେଶୀ ସଙ୍ଗେ ସଙ୍ଗେ ଖେଚରରାଜ କଂସର ଆଦେଶ ପାଳନ କରି ବ୍ରଜକୁ ଯାତ୍ରା କଲା । ମୁଷ୍ଟିକ, ଚାଣୂର, ଶଳ, ତୋଷଳ ପ୍ରମୁଖ ନିଜର ଅମାତ୍ୟମାନଙ୍କୁ, କଂକ ପ୍ରମୁଖ ନିଜର ଭ୍ରାତୃବର୍ଗଙ୍କୁ ଓ ଅନ୍ୟାନ୍ୟ ଜ୍ଞାତିବନ୍ଧୁମାନଙ୍କୁ ଏବଂ ହସ୍ତୀ ରକ୍ଷକମାନଙ୍କୁ ଆହ୍ୱାନ କରି କଂସ କହିଲା, 'ହେ ବୀର ଚାଣୂର, ହେ ବୀର ମୁଷ୍ଟିକ, ହେ ଅମାତ୍ୟ ଓ ବନ୍ଧୁମାନେ,

ଏକ ବିଶେଷ ଗୁରୁତ୍ୱ କାର୍ଯ୍ୟ ନିମନ୍ତେ ମୁଁ ତୁମ୍ଭମାନଙ୍କୁ ଆହ୍ୱାନ କରିଅଛି । ମୁଁ ବିଶ୍ୱସ୍ତସୂତ୍ରରୁ ଅବଗତ ହେଉଅଛି ଯେ ଗୋପରେ ଗୋପନରେ ବାସ କରୁଥିବା କୃଷ୍ଣ ଓ ବଳରାମ ପ୍ରକୃତରେ ବସୁଦେବଙ୍କର ପୁତ୍ର । ସେମାନଙ୍କ ହସ୍ତରେ ମୋର ମୃତ୍ୟୁ ସଂଘଟିତ ହେବ ବୋଲି ମହର୍ଷି ନାରଦ ମୋତେ ସତର୍କ କରାଇଅଛନ୍ତି । ତେଣୁ, ତୁମ୍ଭେମାନେ କାଳବିଳମ୍ବ ନ କରି ମୋର ମୃତ୍ୟୁର କାରଣ ରୂପେ ବାସକରୁଥିବା କୃଷ୍ଣ ଓ ବଳରାମଙ୍କୁ ମଲ୍ଲ-ଯୁଦ୍ଧକୁ ଆହ୍ୱାନ କରି ସଂହାର କର । ଏହି କାର୍ଯ୍ୟ ଯଥାସମ୍ଭବ ଶୀଘ୍ର ସମ୍ପନ୍ନ ହେଲେ ମୁଁ ଆଶ୍ୱସ୍ତ ହେବି । ସାବଧାନ, ତୁମ୍ଭେମାନେ ଏପରି ଚତୁରତାର ସହିତ ଏହି କାର୍ଯ୍ୟ ସମ୍ପନ୍ନ କରିବ, ଯେପରି ଜନସାଧାରଣ ତୁମଙ୍କୁ ସନ୍ଦେହ କରିବେ ନାହିଁ, କି ତୁମ କାର୍ଯ୍ୟରେ ପରେ ଦୋଷ ଦେଖିବାର କୌଣସି କାରଣ ରହିବ ନାହିଁ । ହେ ହସ୍ତୀରକ୍ଷକ, ତୁମେ ରଙ୍ଗ ଦ୍ୱାରସମ୍ମୁଖରେ ମତ୍ତହସ୍ତୀ, ବିଶେଷକରି କୁବଳୟାପୀଡ଼ ନାମକ ବଳବନ୍ତ ହସ୍ତୀକୁ ନେଇ ଅବସ୍ଥାନ କର ଏବଂ କୃଷ୍ଣ ଓ ବଳରାମ ଏଠାକୁ ଆସିବା ମାତ୍ରେ ହସ୍ତୀ ସାହାଯ୍ୟରେ ସେ ଦୁହିଁଙ୍କୁ ତୁମେ ବିନାଶ କରିବ । ହେ ଅମାତ୍ୟଗଣ, କୃଷ୍ଣ ଓ ବଳରାମ ପ୍ରମୁଖ ଯେପରି ଏହି ମଥୁରାକୁ ଆସିବେ, ସେଥିନିମନ୍ତେ, ମୁଁ ଭାବୁଛି, ଏଠାରେ ଏକ ଧନୁ ଯଜ୍ଞ ଆଗାମୀ ଚତୁର୍ଦ୍ଦଶୀ ଦିନ ହେବାର ବ୍ୟବସ୍ଥା କର । ଏହି କାର୍ଯ୍ୟ ଯେପରି ଅଚିରେ ଓ ନିର୍ବିଘ୍ନରେ ସମ୍ପନ୍ନ ହେବ, ସେଥିପାଇଁ ମଥୁରାପାଳକ ଭୂତରାଜଙ୍କୁ ପଶୁବଳି ଆଦି ପ୍ରଦାନ କରି ପ୍ରସନ୍ନ କରାଅ । ସାବଧାନ ! ଏହି ସମସ୍ତ କାର୍ଯ୍ୟକୁ ଅତ୍ୟନ୍ତ ସତର୍କତା ଓ ଚତୁରତାର ସହିତ କରିବାକୁ ବିଶେଷ ଯତ୍ନ କରିବ ।'

ନିଜର ଅମାତ୍ୟ ଓ ଅନୁଚରମାନଙ୍କୁ ଏହିପରି ଭାବରେ ଆଦେଶ କରି ବିଦାୟ ଦେଲେ ଏବଂ ସେମାନଙ୍କର ପ୍ରସ୍ଥାନ ପରେ ନିଜ ପରିବାରବର୍ଗଙ୍କ ମଧ୍ୟରେ ଯଦୁକୁଳଶ୍ରେଷ୍ଠ ଅକ୍ରୂରଙ୍କୁ ଆହ୍ୱାନ କରି ଏବଂ ନିଜର ହସ୍ତରେ ଅକ୍ରୂରଙ୍କର ହସ୍ତ ଦ୍ୱୟକୁ ଧାରଣ କରି ବିନୀତ ଭାବରେ କଂସ କହିଲେ, 'ହେ ଦାନପ୍ରବର ଅକ୍ରୂର, ତୁମ ପରି ହିତାକାଂକ୍ଷୀ ମୋର ଆଉ କେହି ନାହିଁ । ମୋ ପାଇଁ ତୁମକୁ ଏକ ବିଶେଷ କାର୍ଯ୍ୟ କରିବାକୁ ଅନୁରୋଧ । ଦେବରାଜ ସ୍ୱୟଂ ସମସ୍ତ କାର୍ଯ୍ୟ ସମ୍ପନ୍ନ କରିବାକୁ ସମର୍ଥ ହେଲେ ମଧ୍ୟ ସେ ଯେପରି ବିଷ୍ଣୁଙ୍କୁ ଆଶ୍ରୟ କରି କାର୍ଯ୍ୟ ସମ୍ପାଦନ

କରିଥାନ୍ତି, ସେହିପରି ଏକ ଗୁରୁତର କାର୍ଯ୍ୟ ସମ୍ପନ୍ନ କରିବା ନିମନ୍ତେ ତୁମର ସାହାଯ୍ୟ ଓ ସହଯୋଗ ମୁଁ ଭିକ୍ଷା କରୁଅଛି । ତୁମେ ରଥ ନେଇ ନନ୍ଦରାଜାଙ୍କର ବ୍ରଜକୁ ଯାଅ ଏବଂ ନନ୍ଦଙ୍କର ପୁତ୍ର କୃଷ୍ଣ ଓ ବଳରାମଙ୍କୁ ନୂତନ ବେଶଭୂଷାରେ ଭୂଷିତ କରି ରଥରେ ବସାଇ ଅତିଶୀଘ୍ର ଏଠାକୁ ନେଇଆସ । କୃଷ୍ଣ ଓ ବଳରାମଙ୍କ ମଧ୍ୟରୁ ଜଣକ ହସ୍ତରେ ମୋର ମୃତ୍ୟୁ ହେବ ବୋଲି ଦେବତାମାନେ ନିର୍ଦ୍ଦିଷ୍ଟ କରିଅଛନ୍ତି । ତେଣୁ ଉପାୟନ ଦେବା ଛଳରେ ନନ୍ଦପ୍ରମୁଖ ଗୋପବାସୀଙ୍କ ସହିତ କୃଷ୍ଣ ଓ ବଳରାମଙ୍କୁ ଏଠାକୁ ନେଇଆସ । ସେମାନେ ମଥୁରାକୁ ଆସିଲେ ମତ୍ତହସ୍ତୀ ଦ୍ୱାରା ସେମାନଙ୍କୁ ମୁଁ ସଂହାର କରିବି । ଯଦି ହସ୍ତୀ କବଳରୁ ସେମାନେ କୌଣସି ଉପାୟରେ ଖସି ଯାଆନ୍ତି ତେବେ ବଜ୍ର-ହସ୍ତା ଚାଣୁର ପ୍ରମୁଖ ମଲ୍ଲମାନଙ୍କ ହସ୍ତରେ କୃଷ୍ଣ ଓ ବଳରାମଙ୍କର ମୃତ୍ୟୁ ଘଟାଇବି । କୃଷ୍ଣ ଓ ବଳରାମଙ୍କୁ ସଂହାର କରିବା ପରେ ବସୁଦେବ-ପ୍ରମୁଖ ତାଙ୍କ ପରିବାରବର୍ଗଙ୍କୁ ମୁଁ ସଂହାର କରିବି । ମୋର ରାଜ୍ୟଲୋଭୀ ପିତା ଉଗ୍ରସେନ, ତାଙ୍କର ଭ୍ରାତା ଦେବକ ଓ ମୋର ବିଦ୍ୱେଷକାରୀ ଅନ୍ୟମାନଙ୍କୁ ମଧ୍ୟ ସଂହାର କରିବି ଏବଂ ତଦ୍ୱାରା ମୋର ଏହି ପୃଥିବୀକୁ କଣ୍ଟକଶୂନ୍ୟ କରି ପରମଶାନ୍ତି ଓ ଆନନ୍ଦରେ ରାଜସମ୍ପଦ ଭୋଗ କରିବି । ଜରାସନ୍ଧ ମୋର ଶ୍ୱଶୁର ଏବଂ ହିତାକାଂକ୍ଷୀ । ଦ୍ୱିବିଧ ନାମକ ବାନର ମୋର ପରମବନ୍ଧୁ । ସମ୍ବର, ନରକ, ବାଣ ପ୍ରମୁଖ ମୋ ସହିତ ଘନିଷ୍ଠ ବନ୍ଧୁତାରେ ଆବଦ୍ଧ । ତେଣୁ ସେମାନଙ୍କ ସହ ଅବିଚ୍ଛିନ୍ନ ବନ୍ଧୁତ୍ୱ ରକ୍ଷା-କରି ପୃଥିବୀକୁ ନିଶ୍ଚିନ୍ତରେ ଉପଭୋଗ କରିବି । ମୋ ମନର ସମସ୍ତ କଥା ତୁମକୁ କହିଲି । ତୁମେ ଅଚିରେ ବ୍ରଜକୁ ଯାଇ କରି ଧନୁ-ଯଜ୍ଞ ଓ ମଥୁରାର ଶୋଭା ଦର୍ଶନ କରିବା ବାହାନାରେ କୃଷ୍ଣ ଓ ବଳରାମଙ୍କୁ ଅତିଶୀଘ୍ର ଏଠାକୁ ନେଇଆସ ।'

କଂସର କଥା ଶୁଣି ଅକ୍ରୂର କହିଲେ, 'ମହାରାଜ, ମୃତ୍ୟୁ କବଳରୁ ନିଜକୁ ମୁକ୍ତ କରିବା ନିମନ୍ତେ ଆପଣ ଯେଉଁ ଉପାୟମାନ ଚିନ୍ତା କରୁଅଛନ୍ତି, ତାହା ଅତ୍ୟନ୍ତ ସମୟୋପଯୋଗୀ ଓ ଯୁକ୍ତିସଙ୍ଗତ । ତେବେ ଫଳଲାଭ ନିମନ୍ତେ ବିଶେଷ ଉତ୍କଣ୍ଠିତ ନ ହୋଇ ଆପଣ ନିଜର କର୍ତ୍ତବ୍ୟ କରିଯାଆନ୍ତୁ । ଫଳଲାଭ କେବଳ ଭଗବାନଙ୍କ କୃପା ଉପରେ ସର୍ବଦା

ନିର୍ଭରଶୀଳ । ଦୈବ ବାମ ହେଲେ ମନୁଷ୍ୟର କଳ୍ପନା ଅନ୍ୟଥା ହୋଇଥାଏ । ଏସବୁ ଜାଣି ମଧ୍ୟ ମନୁଷ୍ୟ ଫଳଲାଭ ଉପରେ ବିଶେଷ ଆଶାୟୀ ହୋଇପଡ଼େ, ଏହା ବାସ୍ତବିକ ଦୁର୍ଭାଗ୍ୟଜନକ । ଯାହାହେଉ, ମୁଁ ଆପଣଙ୍କର ଆଜ୍ଞାକୁ ଯଥାଯଥ ପାଳନ କରିବି । ଆପଣ ଏ ବିଷୟରେ ନିଶ୍ଚିନ୍ତ ରହନ୍ତୁ ।'

ଏହା କହି କଂସଠାରୁ ଅନୁମତି ନେଇ ଅକ୍ରୂର ସ୍ୱଗୃହକୁ ବାହୁଡ଼ିଗଲେ ।

କଂସର ଆଦେଶକ୍ରମେ କେଶୀ ବ୍ରଜପୁରକୁ ଯାତ୍ରାକଲା । କେଶୀ ନିଜର ଆସୁରିକ ଶକ୍ତିଦ୍ୱାରା ନିଜକୁ ଏକ ଭୟଙ୍କରୋଦ୍ରେକକାରୀ ବିଶାଳକାୟ ଘୋଟକରେ ରୂପାନ୍ତରିତ କରି ଅତ୍ୟନ୍ତ କ୍ଷିପ୍ରତାର ସହିତ ବ୍ରଜଧାମରେ ଦୌଡ଼ିବାକୁ ଆରମ୍ଭ କଲା । କେଶୀର ସେହି ଅଶ୍ୱରୂପ ବାସ୍ତବିକ ଅତ୍ୟନ୍ତ ଭୟାନକ ଥିଲା । ତା'ର ଖୁରାଘାତର ବେଗ ଓ ଚାପରେ ସତେ ଯେପରି ସମଗ୍ର ବସୁଧା ବିଦୀର୍ଣ୍ଣ ଓ ପ୍ରକମ୍ପିତ ହେଉଥିଲା । ସେ ଦ୍ରୁତ ବେଗରେ ଦୌଡୁଥିବା ବେଳେ, ତା'ର ସ୍କନ୍ଧଦେଶର ଉଡୁଥିବା କେଶରେ ଆକାଶମଣ୍ଡଳ ଆଚ୍ଛନ୍ନ ହୋଇଯାଉଥିଲା । ତା'ର ବିଶାଳ ଆଖି, ବିକଟ ମୁଖ, ଦୀର୍ଘ ଗ୍ରୀବା, କୃଷ୍ଣ ମେଘ ସଦୃଶ ବର୍ଣ୍ଣ, ବିଶାଳ ଓ ବିକଟ ଆକୃତି ଏବଂ କ୍ଷିପ୍ରବେଗ ସହ ପୁଚ୍ଛଦ୍ୱାରା ଆକାଶର ଭାସମାନ ସମୂହ ମେଘମଣ୍ଡଳକୁ ବିଘୂର୍ଣ୍ଣିତ କରୁଥିବାର ଦୃଶ୍ୟ ଆଦି ଦେଖିଲେ ଯେ କୌଣସି ସାହସୀ ଲୋକ ମଧ୍ୟ ଭୟଭୀତ ହୋଇପଡ଼ିବ ।

କେଶୀ ବ୍ରଜମଣ୍ଡଳରେ କୃଷ୍ଣଙ୍କୁ ଅନ୍ୱେଷଣ କଲା । କୃଷ୍ଣ ସେତେବେଳେ ଗୋବର୍ଦ୍ଧନ ଗିରି ନିକଟରେ ସାଙ୍ଗସାଥୀମାନଙ୍କ ଗହଣରେ ଗୋଚାରଣ କାର୍ଯ୍ୟରେ ଲିପ୍ତ ଥାଆନ୍ତି । ଦୂରରୁ କୃଷ୍ଣଙ୍କୁ ଦେଖି କେଶୀ ବିକଟ ଗର୍ଜନ କରି ଦଣ୍ଡାୟମାନ ହେଲା । କେଶୀର ସେହି ଭୟାନକ ଅଦ୍ଭୁତ ରୂପ ଦେଖି କୃଷ୍ଣ ହସିଲେ ଏବଂ କେଶୀକୁ ପାଖକୁ ଆସିବା ନିମନ୍ତେ ହାତଠାରି ଡାକିଲେ । କୃଷ୍ଣଙ୍କ ପରି ଜଣେ ସାମାନ୍ୟ ବାଳକ ପରିହାସ କରି ତାକୁ ପାଖକୁ ଡାକୁଛି, ତାହା କେଶୀ ପକ୍ଷରେ ଅସହ୍ୟ ହେଲା । ସେ ଦ୍ରୁତ ବେଗରେ ଦୌଡ଼ିଆସି କୃଷ୍ଣଙ୍କୁ ନିଜ ଗୋଡ଼ରେ ଗୋଟାଏ ଖିପ୍ରଣ ନାତ ମାରିଲା । ସେହି ନାତ

ମାଡ଼ରେ କୃଷ୍ଣ ବିଚଳିତ ହେବା ଦୂରେ ଥାଉ, ଦୁଇ ହାତରେ କେଶୀର ଗୋଡ଼କୁ ଧରି ଖୁବ୍ ଜୋରରେ ତାକୁ ବୁଲାଇ ବୁଲାଇ ଅତି ଦୂରକୁ ଫିଙ୍ଗିଦେଲେ । ସେହି ଘୂର୍ଣ୍ଣନର ବେଗ ଓ ପତନର ଯନ୍ତ୍ରଣାକୁ ସହ୍ୟ କରିବାର ଶକ୍ତି କେଶୀର ନ ଥିଲା । ତେଣୁ ତଳେ ପଡ଼ିବା ମାତ୍ରେ ତା'ର ସଂଜ୍ଞାଲୋପ ପାଇଗଲା । କିଛି ସମୟ ପରେ ସଂଜ୍ଞା ଫେରିପାଇ କେଶୀ ଦେଖିଲା ଯେ, କୃଷ୍ଣ ପୂର୍ବପରି ଛିଡ଼ା ହୋଇଅଛନ୍ତି । କେଶୀ ନିଜର ମୁଖବ୍ୟାଦାନ କରି କୃଷ୍ଣଙ୍କୁ ଗ୍ରାସ କରିବା ନିମନ୍ତେ ପୁନର୍ବାର କୃଷ୍ଣଙ୍କ ଆଡ଼କୁ ଦୌଡ଼ି ଅସିଲା । ସର୍ପକୁ ବାମାଙ୍ଗୁଷ୍ଠି ଦେଖାଇ ବଣ କଲାପରି କୃଷ୍ଣ ନିଜର ବାମାଙ୍ଗୁଷ୍ଠିକୁ କେଶୀଆଡ଼କୁ ପ୍ରସାରିତ କଲେ । କେଶୀ ଦୌଡ଼ିଆସି କୃଷ୍ଣଙ୍କର ବାମାଙ୍ଗୁଷ୍ଠି ସହ ସମ୍ପୂର୍ଣ୍ଣ ବାମହସ୍ତକୁ ଗ୍ରାସକଲା ଏବଂ କୃଷ୍ଣ ସଙ୍ଗେ ସଙ୍ଗେ ନିଜର ମାୟାବଳରେ ବାମ ହସ୍ତକୁ ବର୍ଦ୍ଧିତ କରିବାକୁ ଲାଗିଲେ । କେଶୀ ପ୍ରଥମେ କୃଷ୍ଣଙ୍କର ହସ୍ତକୁ ପ୍ରବଳ କ୍ରୋଧରେ କାମୁଡ଼ିବାକୁ ଉଦ୍ୟମ କଲା; କିନ୍ତୁ ତାଙ୍କର ହାତ ବଜ୍ର ସଦୃଶ କଠିନ ଥିବାରୁ କାମୁଡ଼ିବାକୁ ଯାଇ କେଶୀର ଦାନ୍ତଗୁଡ଼ିକ ଭାଙ୍ଗିଗଲା । କେଶୀର ମୁଖ ମଧ୍ୟରେ କୃଷ୍ଣଙ୍କର ହସ୍ତ କ୍ରମେ କ୍ରମେ ବୃଦ୍ଧିଲାଭ କରୁଥିବାରୁ କେଶୀର ଶ୍ୱାସରୁଦ୍ଧ ହେବାକୁ ଲାଗିଲା ଏବଂ ସେ ରୁଦ୍ଧଶ୍ୱାସ ହୋଇ ଛଟପଟ ହେବାକୁ ଲାଗିଲା । ଯନ୍ତ୍ରଣାର ଆତିଶଯ୍ୟରେ ତା'ର ସମସ୍ତ ଶରୀର ଘର୍ମାକ୍ତ ହୋଇଗଲା ଓ ଆଖିର ଡୋଳା ଓଲଟି ପଡ଼ିଲା । ଏହିପରି ଭାବରେ କିଛି ସମୟ ଛଟପଟ ହେବାପରେ କେଶୀର ମୃତ୍ୟୁ ଘଟିଲା । କୃଷ୍ଣଙ୍କର ସେହି ଅଦ୍ଭୁତ କାର୍ଯ୍ୟ ଦର୍ଶନ କରି ଦେବତାମାନେ ଆକାଶରୁ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ ।

କଂସର ଅନୁଚର କେଶୀର ମୃତ୍ୟୁ ହେବାପରେ ଥରେ ଦେବର୍ଷି ନାରଦ ଏକାନ୍ତରେ କୃଷ୍ଣଙ୍କୁ ସାକ୍ଷାତ କରି ସମ୍ବର୍ଦ୍ଧନା ଜଣାଇ କହିଲେ, 'ହେ ଜଗଦୀଶ୍ୱର କୃଷ୍ଣ, ଯେଉଁ ଅଶ୍ୱରୂପୀ ଦୈତ୍ୟର ହ୍ରେଷାରବରେ ସ୍ୱର୍ଗର ଦେବତାମାନେ ଭୟଭୀତ ହୋଇ ସ୍ୱର୍ଗ ତ୍ୟାଗକରି ପଳାୟନ କରିଥାନ୍ତି, ସେହି ଭୟଙ୍କର ଅସୁରକୁ ଆପଣ ଅବଲୀଳାକ୍ରମେ ସଂହାର କରି ଅଖିଳ ଜଗତକୁ ଅତୁଳନୀୟ ସୌଭାଗ୍ୟରେ ମଣ୍ଡିତ କରିଅଛନ୍ତି । ସାଧୁମାନଙ୍କର ପାଳନ ଓ ଦୁଷ୍ଟମାନଙ୍କର ବିନାଶ ସାଧନ କରିବା ନିମନ୍ତେ ଆପଣ ଧରାପୃଷ୍ଠରେ ଏହି ଅବତାର ଗ୍ରହଣ କରିଅଛନ୍ତି । ଆପଣଙ୍କୁ

ନମସ୍କାର । ଆପଣ ବହୁ ଲୀଳା ପ୍ରକାଶ କରିଅଛନ୍ତି ଓ ବହୁଲୀଳା ମଧ୍ୟ ପ୍ରକାଶ କରିବେ । ବହୁ ଦୈତ୍ୟଙ୍କର ବିନାଶ ସାଧିତ ହେବାପରେ ଦୁଷ୍ଟ କଂସର ମୃତ୍ୟୁ ଦର୍ଶନ କରିବା ନିମନ୍ତେ ଆମ୍ଭେମାନେ ବିଶେଷ ଉତ୍କଣ୍ଠିତ ହୋଇଅଛୁ । ଆମର ସେହି ଇଚ୍ଛାକୁ ଆପଣ ଅଚିରେ ପୂରଣ କରନ୍ତୁ ।'

ଏହା କହି ଓ କୃଷ୍ଣଙ୍କୁ ବନ୍ଦନା କରି ଦେବର୍ଷି ନାରଦ ପ୍ରସ୍ଥାନ କଲାପରେ କୃଷ୍ଣ ନିଜର ସଖା ଗୋପବାଳକମାନଙ୍କ ସାଙ୍ଗରେ ପୁନର୍ବାର ଗୋଚାରଣ କାର୍ଯ୍ୟରେ ମନୋନିବେଶ କଲେ । ଗୋଚାରଣ ସମୟରେ ସାଙ୍ଗମାନେ ଲୁଚକାଳି ଖେଳ ଖେଳିବାରୁ କୃଷ୍ଣ ମଧ୍ୟ ଖେଳରେ ଯୋଗ ଦେଲେ । ଏହି ଅବସରରେ କଂସର ଅନ୍ୟ ଏକ ଅନୁଚର ବ୍ୟୋମାସୁର ସେଠାରେ ପହଞ୍ଚି ଗୋପବାଳକମାନଙ୍କ ସହିତ କୃଷ୍ଣଙ୍କର ଲୁଚକାଳି ଖେଳକୁ ପ୍ରଚ୍ଛନ୍ନଭାବରେ ଦୂରରୁ କିଛି ସମୟ ଧରି ଲକ୍ଷ୍ୟକଲା । ବ୍ୟୋମାସୁର ଥିଲା ମୟ ଦାନବର ପୁତ୍ର ଓ ଅତ୍ୟନ୍ତ ମାୟାବୀ । କୃଷ୍ଣଙ୍କୁ ସଂହାର କରିବା ନିମନ୍ତେ ଏକ ଉପାୟ ଚିନ୍ତାକରି ନିଜର ଆସୁରିକ ଶକ୍ତି ବଳରେ ବ୍ୟୋମ ସୁର ନିଜକୁ ଏକ ଗୋପବାଳକରେ ରୂପାନ୍ତରିତ କରି ଗୋପବାଳକମାନଙ୍କ ମେଳରେ ମିଶିଗଲା ଏବଂ କୃଷ୍ଣପ୍ରମୁଖଙ୍କ ସହ ଲୁଚକାଳି ଖେଳିଲା । ସେହି ଖେଳ ମାଧ୍ୟମରେ ସାଙ୍ଗମାନଙ୍କ ସହିତ ଲୁଚିବା ବାହାନାରେ ଗୋଟିଏ ଗୋଟିଏ ଗୋପବାଳକଙ୍କୁ ସଙ୍ଗରେ ନେଇ ସେମାନଙ୍କୁ ସଂହାର କରିବା ଉଦ୍ଦେଶ୍ୟରେ ସେ ପାହାଡ଼ ଗୁହାରେ ସେମାନଙ୍କୁ ଲୁଚାଇ ଗୁହାର ମୁହଁକୁ ପଥର ଦ୍ୱାରା ବନ୍ଦ କରୁଥାଏ । ଏଣେ ସାଙ୍ଗମାନଙ୍କୁ ନ ଦେଖି କୃଷ୍ଣ ବ୍ୟୋମାସୁରର ସ୍ୱରୂପ ଓ ଚକ୍ରାନ୍ତ ବୁଝି ପାରିଲେ ଏବଂ ପରମୁହୂର୍ତ୍ତରେ ଛଦ୍ମବେଶୀ ବ୍ୟୋମାସୁରକୁ ଆକ୍ରମଣ କରି ସଂହାର କଲେ । ପରେ ଗୋପବାଳକମାନଙ୍କୁ ରୁଦ୍ଧ ଗୁମ୍ଫା ମଧ୍ୟରୁ ଉଦ୍ଧାର କରି ଧେନୁବତ୍ସ ସହିତ ଗୃହକୁ ଫେରିଆସିଲେ ।

କଂସର ବିଭିନ୍ନ ଚକ୍ରାନ୍ତ ଏହିପରି ଭାବରେ ଗୋଟିଏ ପରେ ଗୋଟିଏ ପଣ୍ଡ ହେଲା ।

# ଗୋପପୁରରେ କଂସ ଦୂତ ଅକ୍ରୂର

କଂସ ଦ୍ୱାରା ଅନୁଜ୍ଞାତ ହୋଇ ଅକ୍ରୂର ତହିଁ ପରଦିନ ପ୍ରଭାତରେ ରଥରେ ଆରୋହଣ କରି ନନ୍ଦ ରାଜାଙ୍କର ଗୋପପୁରକୁ ଯାତ୍ରା କଲେ । ବାଟରେ ଗଲାବେଳେ ଅକ୍ରୂର ମନେ ମନେ ଭାବୁଥିଲେ, 'ମୁଁ ଏପରି କି ପୁଣ୍ୟ କାର୍ଯ୍ୟ କରିଥିଲି, କି ତପସ୍ୟା କରିଥିଲି ଏବଂ ଯୋଗ୍ୟବ୍ୟକ୍ତିଙ୍କୁ ଏପରି କି ଦାନ କରିଥିଲି ଯେ ତା'ର ପୁଣ୍ୟ ଫଳରୁ ଆଜି ଭଗବାନ କୃଷ୍ଣଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରିବାକୁ ଯାଉଅଛି ! ବର୍ଷ ବର୍ଷ ଧରି ଗୁଣ କୀର୍ତ୍ତନ କରି ମଧ୍ୟ ସାଧୁସନ୍ଥମାନେ ଯେଉଁ ଭଗବାନଙ୍କୁ ସ୍ୱଚକ୍ଷୁରେ ଦର୍ଶନ କରିବାର ସୌଭାଗ୍ୟ ଲାଭକରି ପାରିନାହାନ୍ତି, ମୋ ପରି ବିଷୟଭୋଗଲିପ୍ତ ବ୍ୟକ୍ତି ପକ୍ଷରେ ସେହି ଭଗବାନଙ୍କୁ ଦର୍ଶନ କରିବା, ଶୂଦ୍ର ପକ୍ଷରେ ବେଦାଧ୍ୟୟନର ସୁଯୋଗ ଲାଭ ପରି, କମ୍ ବଡ଼ ସୌଭାଗ୍ୟର କଥା ନୁହେଁ ! ଆଜି ମୋର ଜନ୍ମ ସାର୍ଥକରୂ ଲାଭ କରିବ, କାରଣ ଧ୍ୟାନମଗ୍ନ ଯୋଗୀମାନଙ୍କ ପକ୍ଷରେ ଯେଉଁ ଚରଣଯୁଗଳକୁ ଦର୍ଶନ କରିବା ସମ୍ଭବ ହୁଏ ନାହିଁ, ଆଜି ମୁଁ ସେହି ଚରଣପଙ୍କଜକୁ ଦର୍ଶନ ଓ ପ୍ରଣାମ କରିବାର ସୁଯୋଗ ଲାଭ କରିବି । କୃଷ୍ଣଙ୍କ ପ୍ରତି ହିଂସାଭାବ ପୋଷଣ କରି କଂସ ମୋତେ ଗୋପପୁରକୁ ପ୍ରେରଣ କରି ମୋର ବିଶେଷ ଉପକାର କରୁଅଛି; କାରଣ କଂସ ଦ୍ୱାରା ଏପରି ପ୍ରେରିତ ହୋଇନଥିଲେ ଯାହାଙ୍କର ନଖର କଣିକାଏ ସୌନ୍ଦର୍ଯ୍ୟକୁ ଧ୍ୟାନକରି ଯୋଗୀଋଷିମାନେ ନିଜ ନିଜର ଜୀବନର ସୁଦୀର୍ଘ ସମୟକୁ ଅତିବାହିତ କରିଥାନ୍ତି, ଭଗବାନ ବ୍ରହ୍ମା, ଶଙ୍କର, ଇନ୍ଦ୍ର ଆଦି ଦେବତାମାନେ ଯାହାଙ୍କର ଚରଣକମଳକୁ ସଦା ଧ୍ୟାନ କରିଥାନ୍ତି, ଜ୍ଞାନୀମାନେ ଯାହାଙ୍କର ଧ୍ୟାନ ଆରାଧନାରେ ସମସ୍ତ ସମୟ ଅତିବାହିତ କରିଥାନ୍ତି ଗୋପବାଳକମାନଙ୍କ ସହିତ ବନରେ ଗୋଚାରଣ କରୁଥିବା ସେହି ଭଗବାନ କୃଷ୍ଣଙ୍କୁ ମୁଁ ଦର୍ଶନ କରିବାର ସୁଯୋଗ ପାଇପାରି ନଥାନ୍ତି । ମୋର ଏହି ଯାତ୍ରାକାଳରେ ମୃଗମାନେ

ମୋର ଚତୁର୍ଦ୍ଦିଗରେ ବିଚରଣ କରୁଅଛନ୍ତି—ଏହା ଅତ୍ୟନ୍ତ ଶୁଭସୂଚକ । ତେଣୁ ମୁଁ ନିଶ୍ଚିତ ଭାବରେ ମୁକୁନ୍ଦଙ୍କର ସୁକପୋଳନାସିକା, ସ୍ମିତହାସ୍ୟ ସମନ୍ୱିତ ପଦ୍ମଲୋଚନ, କୁଞ୍ଚିତ କେଶ ଶୋଭିତ ମନୋହର ମୁଖମଣ୍ଡଳକୁ ଦର୍ଶନ କରିବି । ବସୁଧାର ଦୁଃଖ ଲାଘବ କରିବା ନିମନ୍ତେ ନିଜର ଇଚ୍ଛାନୁସାରେ ଭଗବାନ ଧରାପୃଷ୍ଠରେ ମନୁଷ୍ୟ ଶରୀର ଧାରଣ କରି ଆବିର୍ଭୂତ ହୋଇଅଛନ୍ତି; ଆଜି ସେହି ନରରୂପଧାରୀ କୃଷ୍ଣଙ୍କୁ ମୁଁ ଦର୍ଶନ କରିବି । ତଦ୍ଦ୍ୱାରା ମୋର ନୟନ ସାର୍ଥକ ହେବ । ଭଗବାନ କୃଷ୍ଣ ଓ ବଳରାମଙ୍କୁ ଦୂରରୁ ଦେଖିବା ମାତ୍ରେ ମୁଁ ରଥରୁ ଓହ୍ଲାଇ ପଡ଼ିବି ଓ ଯାଇ ତାଙ୍କର ଚରଣରେ ପ୍ରଣିପାତ ହେବି । ଯେଉଁ ପରମ ଭାଗ୍ୟବାନ୍ ଗୋପବାଳକ ତଥା ଗୋପବାସୀମାନେ ଭଗବାନ କୃଷ୍ଣଙ୍କ ସହିତ ନିତ୍ୟ ବାସ ଓ ବିଚରଣ କରିବାର ସୌଭାଗ୍ୟ ଅର୍ଜନ କରିଅଛନ୍ତି, ସେମାନଙ୍କୁ ମଧ୍ୟ ମୁଁ ପ୍ରଣାମ କରିବି । ମୁଁ ଚରଣ ପ୍ରାନ୍ତରେ ପ୍ରଣାମ କଲାବେଳେ, ଭଗବାନ କାଳରୂପକ ବିଷଧରରୁ ଶରଣାଗତଙ୍କୁ ରକ୍ଷା କରିବା ନିମନ୍ତେ ତାଙ୍କର ଅଭୟ ପ୍ରଦାନକାରୀ କରକମଳକୁ ନିଶ୍ଚୟ ମୋର ମସ୍ତକରେ ସ୍ଥାପନ କରିବେ ! ଦେବରାଜ ଇନ୍ଦ୍ର ଓ ଦାନବରାଜ ବଳିପ୍ରମୁଖ ଭଗବାନଙ୍କର ଯେଉଁ ଚରଣକମଳକୁ ଧ୍ୟାନ ଓ ପୂଜା କରି ତ୍ରିଭୁବନର ପ୍ରଭୁତ୍ୱ ଲାଭ କରିଥିଲେ ଏବଂ ରାସକ୍ରୀଡ଼ା ସମୟରେ ଯେଉଁ ଚରଣଯୁଗଳ ରତିଶ୍ରମକ୍ଳାନ୍ତା ଗୋପୀମାନଙ୍କର ଘର୍ମଜଳରେ ମାର୍ଜିତ ହୋଇଥିଲା, ଭଗବାନଙ୍କର ସେହି ପରମ ପବିତ୍ର ଚରଣଯୁଗଳକୁ ମୁଁ ଆଜି ସ୍ପର୍ଶ କରିବି ! ଆହା, ମୋର କି ସୌଭାଗ୍ୟ !! କିନ୍ତୁ କଂସର ଦୂତ ବୋଲି ଭଗବାନ କୃଷ୍ଣ ମୋତେ ଶତ୍ରୁ ବୋଲି ଭାବି ଉପେକ୍ଷା କରିବେ ନାହିଁ ତ ? ଭଗବାନ ନିର୍ବିକାର, ସମଦୃଷ୍ଟିସମ୍ପନ୍ନ, ଅଚ୍ୟୁତ, ବିଶ୍ୱସାକ୍ଷୀ, ସର୍ବଜ୍ଞ ଏବଂ ଅନ୍ତର୍ଯ୍ୟାମୀ । ସେ ନିଜର ଜ୍ଞାନଚକ୍ଷୁଦ୍ୱାରା ସମସ୍ତଙ୍କର ଅନ୍ତରର ଭାବ ବୁଝିପାରନ୍ତି । ତେଣୁ ସେ କ'ଣ ମୋ ଅନ୍ତରର ଭାବ ବୁଝିବେ ନାହିଁ ? ମୁଁ ଯେତେବେଳେ କୃତାଞ୍ଜଳିପୁଟରେ ଓ ଭକ୍ତିପ୍ଲୁତ ହୃଦୟରେ ତାଙ୍କୁ ପ୍ରଣାମ କରିବି, ଭଗବାନ କୃଷ୍ଣ ନିଶ୍ଚୟ ଅନୁଗ୍ରହ ପୂର୍ବକ ମୋତେ ଅବଲୋକନ କରିବେ ଓ ତାଙ୍କର ସେହି କୃପାଦୃଷ୍ଟି ମୋ ଉପରେ ପଡ଼ିବା ମାତ୍ରେ କଂସର ଦାସତ୍ୱ ଜନିତ ମୋର ସମସ୍ତ ପାପ ନିଶ୍ଚୟ ଅଚିରେ ବିନଷ୍ଟ ହେବ ଏବଂ ମୋର ମନରୁ ଜନ୍ମ ଜନ୍ମର ସମସ୍ତ ଶଙ୍କା ସଙ୍ଗେ ସଙ୍ଗେ ଦୂର ହେବ; ଫଳରେ

ମୁଁ ବିମଳ ଓ ନିତ୍ୟ ଆନନ୍ଦ ଲାଭ କରିବାର ଯୋଗ୍ୟ ହେବି । ଆହା, ମୋର କି ସୌଭାଗ୍ୟ ! ଭଗବାନ କୃଷ୍ଣଙ୍କ ସହ ଆଳାପ କରିବାର ଓ କୃଷ୍ଣଙ୍କ ଦ୍ୱାରା ସମ୍ବୋଧିତ ହେବାର ସୁଯୋଗ ମୁଁ ଆଜି ଲାଭ କରିବି ।'

ଏହିପରି ଭାବରେ ଅକ୍ରୂର ମନେ ମନେ କୃଷ୍ଣଙ୍କ କଥା ଚିନ୍ତା କରି ଗୋପପୁର ନିକଟରେ ଯାଇ ପହଞ୍ଚିଲେ । ଗୋପପୁରର ପ୍ରଶସ୍ତ ପଥରେ କିଛିଦୂର ଅତିକ୍ରମ କଲାପରେ ସୂର୍ଯ୍ୟ ଅସ୍ତମିତ ହେଲେ ଏବଂ ସେହି ସମୟରେ ଗୋପରାସ୍ତାରେ ପଦ୍ମ, ଅଙ୍କୁଶ, ଯବ ଆଦି ଚିହ୍ନ ଲାଞ୍ଛିତ କୃଷ୍ଣଙ୍କର ପଦଚିହ୍ନ ପଡ଼ିଥିବାର ଦେଖିବାକୁ ପାଇଲେ । ସଙ୍ଗେ ସଙ୍ଗେ ଅକ୍ରୂର ରଥରୁ ଅବତରଣ କରି ସେହି ପଦଚିହ୍ନକୁ ସ୍ପର୍ଶ କରି ପ୍ରଣାମ କଲେ ଏବଂ ପରମୁହୂର୍ତ୍ତରେ ଆନନ୍ଦବିହ୍ୱଳ ଚିତ୍ତରେ କାନ୍ଦିବାକୁ ଲାଗିଲେ, 'ଆହା, ମୋର କି ସୌଭାଗ୍ୟ ! ବ୍ରହ୍ମାଦି ଦେବଗଣଙ୍କ ନିମନ୍ତେ ଯାହା ଦୁର୍ଲଭ ଆଜି ଭଗବାନଙ୍କର ସେହି ପଦଚିହ୍ନକୁ ଦର୍ଶନ ଓ ସ୍ପର୍ଶ କରିବାର ସୌଭାଗ୍ୟ ମୋତେ ମିଳିଲା ।'

ତତ୍ପରେ ଅକ୍ରୂର ପୁନର୍ବାର ଗୋପଦାଣ୍ଡରେ ଗମନ କଲେ ଏବଂ କିଛିଦୂର ଯାଇଛନ୍ତି କି ନାହିଁ, ଅନତିଦୂରରେ ଗୋଦୋହନ ହେଉଥିବା ସ୍ଥାନରେ ଯଥାକ୍ରମେ ପୀତ ଓ ନୀଳବସନ ପରିହିତ ପଦ୍ମନେତ୍ର, ଶ୍ୟାମ ଓ ଶ୍ୱେତବର୍ଣ୍ଣଯୁକ୍ତ, ଦୀର୍ଘବାହୁ, ପ୍ରସନ୍ନ ମୁଖ ବାଳଗଜେନ୍ଦ୍ର ସୁଲଭ ବିକ୍ରମ-ବ୍ୟଞ୍ଜକ କଳେବରର ଅଧିକାରୀ ଭଗବାନ କୃଷ୍ଣ ଓ ବଳରାମଙ୍କୁ ଦେଖି-ବାକୁ ପାଇଲେ । ସେ ଦୁହେଁ ବିଭିନ୍ନ ମାଳ ଧାରଣ କରିଥିଲେ ଏବଂ ତାଙ୍କର ସର୍ବାଙ୍ଗ ଗନ୍ଧଚନ୍ଦନାଦି ଦ୍ୱାରା ସୁଶୋଭିତ ହୋଇଥିଲା । କୃଷ୍ଣ ଓ ବଳରାମଙ୍କ ଶରୀରରୁ ନିର୍ଗତ ହେଉଥିବା ଜ୍ୟୋତିରେ ଚତୁର୍ଦ୍ଦିଗ ଆଲୋକିତ ହୋଇଥିଲା । କୃଷ୍ଣ ଓ ବଳରାମ ଯେଉଁ ସ୍ଥାନରେ ଅବସ୍ଥାନ କରୁଥିଲେ ସେଠାକୁ ଅକ୍ରୂର ଯାଇ ତାଙ୍କ ଚରଣରେ ପ୍ରଣାମ ଜଣାଇଲେ । ଭଗବାନଙ୍କୁ ଦର୍ଶନ କରିଥିବାରୁ ଅକ୍ରୂର ଏପରି ଆନନ୍ଦବିହ୍ୱଳ ହୋଇ ପଡ଼ିଲେ ଯେ ନିଜର ପରିଚୟ ପର୍ଯ୍ୟନ୍ତ ଦେବାକୁ ତାଙ୍କ ମୁଖରୁ ବାକ୍ୟ ସ୍ଫୁରିଲା ନାହିଁ । କୃଷ୍ଣ ଓ ବଳରାମ ପରମ ସ୍ନେହରେ ଅକ୍ରୂରଙ୍କୁ ତକ୍ଷଣ ଉଠାଇନେଇ ଆଲିଙ୍ଗନ କଲେ ଏବଂ ଯଥାଯୋଗ୍ୟ ସମ୍ମାନ ପ୍ରଦାନ କରି ନିଜ ଗୃହକୁ ଅତିଥି ଭାବରେ ପାଛୋଟି ନେଲେ ।

ଅକ୍ରୂରଙ୍କର ଆଦର ଯତ୍ନ କରି ନନ୍ଦରାଜା ପଚାରିଲେ, 'ଅକ୍ରୂର, କଂସ ପରି ନିର୍ଦ୍ଦୟୀର ଅଧୀନରେ ରହି କିପରି ଜୀବନ ନିର୍ବାହ କରୁଅଛ ? ପଶୁଘାତୀ ନିକଟରେ ପଶୁର ଯାହା ଦଶା ହୁଏ, କଂସ ନିକଟରେ ତୁମର ଦଶା ସେପରି ହୋଇ ନାହିଁ ତ ? ଯେଉଁ ବ୍ୟକ୍ତି ନିଜର ଭଗ୍ନୀଙ୍କୁ ବନ୍ଦିନୀ କରି ରଖି ତା'ର ଗର୍ଭଜାତ ଶିଶୁମାନଙ୍କୁ ନିର୍ମମ ଭାବରେ ହତ୍ୟାକରି ପାରେ, ସେହି ପାପୀ ଅଧୀନରେ ତୁମ୍ଭେମାନେ ଯେ କିପରି କାଳାତିପାତ କରୁଥିବ, ତାହା ମୁଁ ବେଶ ବୁଝିପାରୁଛି । ତୁମ୍ଭେମାନେ ଯେ ଅଦ୍ୟାବଧି କିପରି ଜୀବନ ଧରି ବଞ୍ଚି ରହିଛ, ତାହା ହିଁ ଆଶ୍ଚର୍ଯ୍ୟର କଥା ।'

ନନ୍ଦଙ୍କର ସହାନୁଭୂତିପୂର୍ଣ୍ଣ ସେହି ମଧୁର କଥା ଅକ୍ରୂରଙ୍କୁ ପ୍ରୀତ କରିଥିଲା ।

ସେହି ଅବସରରେ ଅକ୍ରୂରଙ୍କୁ ସମ୍ବୋଧନ କରି ଭଗବାନ କୃଷ୍ଣ ପଚାରିଲେ, 'ପୂଜ୍ୟ ଦାଦା, ଆପଣ ନିଜର ପରିବାର ତଥା ବନ୍ଧୁମାନଙ୍କ ସହିତ ସୁଖରେ ଅଛନ୍ତି ତ ? ଏଠାକୁ ଆସିବା ସମୟରେ ଆପଣ କୌଣସି ଅସୁବିଧାର ସମ୍ମୁଖୀନ ହୋଇ ନାହାନ୍ତି ତ ? ନାମକୁ ମାତ୍ର କଂସ ଆମର ସିନା ମାମୁଁ, ହେଲେ ସେ ଆମ ବଂଶ ପାଇଁ ଏକ ବିରାଟ ବ୍ୟାଧି । ଯେତେଦିନ ପର୍ଯ୍ୟନ୍ତ ସେ ଜୀବିତ ରହିଅଛି, ସେତେଦିନ ପର୍ଯ୍ୟନ୍ତ ଆମର କୌଣସି ଜ୍ଞାତିବନ୍ଧୁଙ୍କର କୁଶଳ ଆଶା କରିବା ବା ସେ· ସମ୍ପର୍କରେ ପ୍ରଶ୍ନ କରିବା ନିଶ୍ଚୟ ବୃଥା । ଆମ ପାଇଁ ଆମର ନିରପରାଧ ପୂଜନୀୟ ପିତାମାତାଙ୍କୁ ବହୁକ୍ଳେଶ ଭୋଗ କରିବାକୁ ପଡ଼ୁଛି, ଆମର ଅଗ୍ରଜମାନଙ୍କୁ ମୃତ୍ୟୁ ବରଣ କରିବାକୁ ପଡ଼ିଛି ଏବଂ ପିତାମାତା ବନ୍ଦୀ ଭାବରେ ଜୀବନ ଅତିବାହିତ କରୁଅଛନ୍ତି । ଆପଣଙ୍କ ସହିତ ସାକ୍ଷାତ କରିବାର ଅଭିଳାଷ ଆମର ବହୁ ଦିନରୁ ଥିଲା, ଯାହାହେଉ ବିଳମ୍ବରେ ହେଲେ ମଧ୍ୟ ଆଜି ତାହା ପୂରଣ ହେଲା । ଆପଣଙ୍କୁ ଦର୍ଶନ କରି ଆମେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁ । କିନ୍ତୁ ହଠାତ୍ ଏପରି ଆକସ୍ମିକ ଭାବରେ ଆପଣଙ୍କର ଏଠାକୁ ଆସିବାର କାରଣ କ'ଣ, ବୁଝିପାରୁ ନାହୁଁ ।'

କୃଷ୍ଣଙ୍କର କଥା ଶୁଣି ଅକ୍ରୂର ଗୋପପୁରକୁ ଆସିବାର ଉଦ୍ଦେଶ୍ୟ ଓ କଂସର ଅଭିପ୍ରାୟ କଥା ଆମୂଳଚୂଳ ବର୍ଣ୍ଣନା କଲେ ଏବଂ କୌଣସି କଥା କୃଷ୍ଣ ଓ ବଳରାମଙ୍କଠାରୁ ଗୋପନ କଲେ ନାହିଁ । ଅକ୍ରୂରଙ୍କ

ମୁଖରୁ ସେହି କଥା ସବୁ ଶୁଣି କୃଷ୍ଣ ଓ ବଳରାମ ନ ହସି ରହି ପାରିଲେ ନାହିଁ ।

ନନ୍ଦ ଯେତେବେଳେ ଜାଣିବାକୁ ପାଇଲେ ଯେ କଂସ ନିଜର ଧନୁପୂଜା ଓ ଯଜ୍ଞ ନିମନ୍ତେ ଅକ୍ରୂରଙ୍କ ହସ୍ତରେ ଆମନ୍ତ୍ରଣ ପଠାଇଅଛନ୍ତି, ପ୍ରଚୁର ପରିମାଣର ଦୁଗ୍ଧ ଆଦି ସଂଗ୍ରହ କରିବାକୁ ସେ ସଙ୍ଗେ ସଙ୍ଗେ ଆଦେଶ ଦେଲେ । କଂସର ସେହି ଧନୁ-ଯଜ୍ଞ ଅତ୍ୟନ୍ତ ଆଡ଼ମ୍ବରପୂର୍ଣ୍ଣ ଭାବରେ ଅନୁଷ୍ଠିତ ହେଉଅଛି ଏବଂ ତାହା ଦର୍ଶନ କରିବା ନିମନ୍ତେ କଂସ ଅଧୀନସ୍ଥ ସମସ୍ତ ରାଜ୍ୟର ପ୍ରଜାମାନେ ମଥୁରାକୁ ଆସୁଅଛନ୍ତି ବୋଲି ଜାଣିବାକୁ ପାଇ ଗୋପବାସୀଙ୍କୁ ସଙ୍ଗରେ ନେଇ ନନ୍ଦ ମଧ୍ୟ ସେହି ଧନୁ-ଉତ୍ସବ ଦେଖିବାକୁ ମଥୁରା ଯିବାକୁ ସ୍ଥିର କଲେ । ସମଗ୍ର ଗୋପପୁରର ଗୋପମାନେ ଯେପରି ଧନୁ-ଉତ୍ସବକୁ ଯିବେ ସେଥି ନିମନ୍ତେ ସମଗ୍ର ଗୋପରେ କଂସର ଆମନ୍ତ୍ରଣ ଓ ନିଜର ଆଦେଶ ନନ୍ଦ ଘୋଷଣା କରିଦେଲେ ।

ଯେତେବେଳେ ଗୋପରମଣୀମାନେ ଜାଣିବାକୁ ପାଇଲେ ଯେ କୃଷ୍ଣ ଓ ବଳରାମଙ୍କୁ ମଥୁରାକୁ ନେଇଯିବା ନିମନ୍ତେ ଅକ୍ରୂରଙ୍କୁ ଦୂତ ରୂପରେ ଗୋପକୁ ଭୋଜପତି କଂସ ପ୍ରେରଣ କରିଅଛି, ସେମାନେ ହୃଦୟରେ ଅକଥନୀୟ ଆଘାତ ଲାଭକଲେ ଏବଂ ବ୍ୟାକୁଳ ହୋଇ ପଡ଼ିଲେ । ଆଘାତର ଆତିଶଯ୍ୟରେ ସେମାନଙ୍କର ନାସିକାରେ ଉଷ୍ଣ ନିଶ୍ୱାସ ପ୍ରବାହିତ ହେବାକୁ ଲାଗିଲା ଓ ମୁଖ ନିଷ୍ପ୍ରଭ ହୋଇଗଲା । କେତେକ ଗୋପାଙ୍ଗନା ଅକ୍ରୂରଙ୍କର ଆଗମନ ଜନିତ ଦାରୁଣ ସମ୍ବାଦ ଶୁଣି ଶୁଣୁ ମୂର୍ଚ୍ଛିତ ହୋଇଗଲେ ଓ ଅନ୍ୟ କେତେକ ଗୋପରମଣୀଙ୍କର ବସନଭୂଷଣ, କବରୀ ଆଦି ଶିଥିଳ ହୋଇଗଲା । କୃଷ୍ଣଙ୍କର ସ୍ୱରୂପକୁ ଚିନ୍ତାକରି କେତେକ ଗୋପୀ ଏକ ପ୍ରକାର ସମାଧିସ୍ଥ ହୋଇଗଲେ ଏବଂ ସେମାନଙ୍କର ନିଜ ନିଜର ଗୃହ ଓ ଶରୀର ସମ୍ପର୍କୀୟ ସମସ୍ତ ସାଂସାରିକ ଜ୍ଞାନ ଲୋପ ପାଇଗଲା । ଗୋପୀମାନଙ୍କର ସ୍ମୃତିପଟରେ କୃଷ୍ଣଙ୍କର ସୁନ୍ଦର ମୁଖଶ୍ରୀ, ବାଣୀ ଓ ସଙ୍ଗୀତ ଚିତ୍ରାର୍ପିତ ପ୍ରାୟ ଜୀବନ୍ତ ହୋଇଉଠିଲା । ସେମାନେ କୃଷ୍ଣଙ୍କ ଚିନ୍ତାରେ ମୋହିତ ହୋଇଗଲେ । କୃଷ୍ଣ ହିଁ ଥିଲେ ଗୋପୀମାନଙ୍କର ପ୍ରାଣ ସ୍ୱରୂପ । ସେମାନଙ୍କୁ ଓ

ଗୋପପୁରକୁ 'ଘୃଢ଼ କୃଷ୍ଣ କ'ଣ ମଥୁରାକୁ ଯାଇପାରିବେ, ସେମାନେ ତାହା ଭବ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରିଲେ ନାହିଁ । ସେମାନଙ୍କ ଚକ୍ଷୁ ଅସହ୍ୟ ଦୁଃଖରେ ଲୋତକାପ୍ଲୁତ ହୋଇଗଲା ଓ ସେମାନେ ବିଳାପ କରିବାକୁ ଲାଗିଲେ ।

'ହାୟରେ ବିଧାତା, ତୁ ଏଡ଼େ ନିର୍ଦ୍ଦୟ ! ପ୍ରଣୟ ଆକର୍ଷଣରେ କୃଷ୍ଣଙ୍କ ପ୍ରତି ଆମକୁ ଆକୃଷ୍ଟ କରାଇ ପୁନର୍ବାର ପ୍ରଣୟୀ ପ୍ରଣୟିନୀଙ୍କର ଆଶା ଆକାଂକ୍ଷା ପୂରଣ ହେବା ପୂର୍ବରୁ ସେମାନଙ୍କୁ ବିଚ୍ଛିନ୍ନ କରୁଅଛୁ ! ତୋର ଏ ସବୁ ବାଳକସୁଲଭ ଚପଳତା ! ଆମ ଦୃଷ୍ଟି ସମ୍ମୁଖକୁ କୃଷ୍ଣଙ୍କର ଶୋକପ ହୋଇ ସୁନ୍ଦର ମୁଖଟିକୁ ଟାଣିଆଣି ପୁଣି ତାକୁ ଦୃଶ୍ୟ-ଅନ୍ତରାଳକୁ ନେଇ ଯାଉଅଛୁ ! ଅକ୍ରୂରକୁ ଦୋଷ ଦେଉନାହୁଁ । ରେ ବିଧାତା, କୃଷ୍ଣଙ୍କର ଦର୍ଶନର ସୁଯୋଗ ଆମକୁ ଦେଇ ବର୍ତ୍ତମାନ ତୁ ଅକ୍ରୂର ରୂପରେ ସେହି ପ୍ରୀତିଦାୟକ ସୁଖକୁ ଆମ ଦୃଷ୍ଟି ସମ୍ମୁଖରୁ ହରଣ କରି ନେଉଅଛୁ ! ତୋପରି କ୍ରୂର ଆଉ କିଏ ଅଛି ? ବିଧାତା, ତୋତେ ବା ଦୋଷ ଦେବୁ କାହିଁକି ? ସବୁ ଆମର ଭାଗ୍ୟ ! ଆମେ ଗୃହ ପରିବାର ତ୍ୟାଗ କରି ଯେଉଁ ଶ୍ୟାମସୁନ୍ଦରଙ୍କର ଶ୍ରୀଚରଣରେ ଦାସୀତ୍ୱ ସ୍ୱୀକାର କରିଥିଲୁ, ଆଜି ସେହି ଚିତ୍ତଚୋର କୃଷ୍ଣ ମଥୁରାକୁ ଯିବାପାଇଁ ଏତେ ଉତ୍ସୁକ ଯେ ଆମ କଥା ଶୁଣିବା ପାଇଁ ତାଙ୍କର ତର ନାହିଁ । ହାୟ, ଆଗାମୀ ଅବସର ପ୍ରଭାତ ମଥୁରାର ରମଣୀମାନଙ୍କ ନିମନ୍ତେ ନିଶ୍ଚିତ ଭାବରେ ବହୁ ସୌଭାଗ୍ୟ ବହନକାରୀ-ସୁପ୍ରଭାତ ହେବ; କାରଣ ସେମାନେ ଆଗାମୀ ପ୍ରଭାତରେ ମଥୁରାର ରାଜରାସ୍ତାରେ ବ୍ରଜରାଜ ଶ୍ୟାମସୁନ୍ଦର କୃଷ୍ଣଙ୍କର ହାସ୍ୟମଧୁର କଟାକ୍ଷପାତ ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରି ଧନ୍ୟ ହେବେ । ହେ ସଖିଗଣ, କୃଷ୍ଣ କଂସବଧ ପାଇଁ ମଥୁରାକୁ ଯାଉଥିଲେ ମଧ୍ୟ ସେଠାରେ ଅବସ୍ଥାନ କଲାବେଳେ ମଥୁରାର ପୁରନାରୀଙ୍କର ସୁମଧୁର କଥା ଓ କଥା କହିବାର ଶୈଳୀରେ ଏବଂ ଲଜ୍ଜା ମିଶ୍ରିତ ମଧୁର ହାସ୍ୟବିଳାସରେ କୃଷ୍ଣ ନିଶ୍ଚୟ ମୁଗ୍ଧ ହୋଇଯିବେ; ଯା'ଫଳରେ ଆମ ପରି ଗ୍ରାମ୍ୟ ରମଣୀମାନଙ୍କ ପ୍ରତି ଆଉ ବା କାହିଁକି ସେ ଆକୃଷ୍ଟ ହେବେ ? ଆଉ ବା କାହିଁକି ସେ ଏହି ଗୋପପୁରକୁ ଫେରିବେ ? ଆମେ କୃଷ୍ଣ ଅଦର୍ଶନଜନିତ ଅସହ୍ୟ ବିରହ ଯନ୍ତ୍ରଣାରେ ପୀଡ଼ିତ ହେଲାବେଳେ ମଥୁରାବାସୀମାନେ

କୃଷ୍ଣଙ୍କୁ ଦର୍ଶନ କରି ପରମସୌଭାଗ୍ୟ ଓ ସୁଖ ଲାଭ କରିବେ ! ଲକ୍ଷ୍ମୀ-ରମଣ, ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟ-ସମନ୍ୱିତ କୃଷ୍ଣଙ୍କୁ ଦର୍ଶନ କରି ସେମାନେ ନିଜ ନିଜର ନୟନ ସାର୍ଥକ କରିବେ । ହାୟ, ଏହି କଂସଦୂତ ଅକ୍ରୂରକୁ 'ଅକ୍ରୂର' ନାମ କିଏ ଦେଇଥିଲା ? ଏହି ଅକ୍ରୂର ପରି ପରମ କ୍ରୂର ଓ ହୃଦୟହୀନ ଆଉ କିଏ ଅଛି ? ଆମ ହୃଦୟ କୃଷ୍ଣ ବିରହରେ ବ୍ୟଥିତ ହେଉଥିବା ବେଳେ ଆମ ନିକଟରୁ ଆମର ପ୍ରାଣପ୍ରିୟ ପ୍ରିୟତମ ପୁରୁଷ କୃଷ୍ଣଙ୍କୁ ସେ ଛଡ଼ାଇ ନେଉଛି ! ହାୟ, ହାୟ, ଆମର ପ୍ରାଣପ୍ରିୟ ଶ୍ୟାମସୁନ୍ଦର ମଧ୍ୟ କମ୍ ନିଷ୍ଠୁର ଓ ନିର୍ମମ ନୁହନ୍ତି । ଦେଖ, ଦେଖ, କୃଷ୍ଣ କିପରି ନିଦକ ଚିତ୍ତରେ ଏ ମଧ୍ୟରେ ରଥରେ ଯାଇ ବସିଗଲେଣି ! ଗୋପମାନେ ତାଙ୍କ ସହ ମଥୁରାକୁ ଯିବାକୁ ପ୍ରସ୍ତୁତ ହେଉଅଛନ୍ତି । ବୟସ୍କ ଲୋକମାନେ ମଧ୍ୟ କୃଷ୍ଣଙ୍କ ମଥୁରା ଯାତ୍ରାରେ ସହାୟକ ହେଉଅଛନ୍ତି । ହାୟ, ଆଜି ସମସ୍ତେ ଆମପ୍ରତି ପ୍ରତିକୂଳ ଆଚରଣ କରୁଅଛନ୍ତି ! କୃଷ୍ଣ ଆମର ପ୍ରାଣସ୍ୱରୂପ । କୃଷ୍ଣଙ୍କୁ ଆମେ ପ୍ରିୟତମ ଭାବରେ ବରଣ କରିଅଛୁଁ ଏବଂ ସେ ମଧ୍ୟ ଆମର ପ୍ରୀତିସମ୍ପର୍କକୁ ସ୍ୱୀକାର କରିଅଛନ୍ତି । ଏପରିସ୍ଥଳେ ତଥାପି କୃଷ୍ଣ ଆମକୁ ପରିତ୍ୟାଗ କରି ମଥୁରାକୁ ଯାଉଅଛନ୍ତି ? ସଖିଗଣ, ଚାଲ ଆମେ ସକଳ ଲଜ୍ଜା ପରିହରି କରି ସାହସର ସହିତ କୃଷ୍ଣଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ତାଙ୍କ ହାତ ଧରି ଏହି ମଥୁରା ଯାତ୍ରାରୁ ତାଙ୍କୁ ନିବର୍ତ୍ତାଇବା । କୃଷ୍ଣଙ୍କୁ ଛାଡ଼ି ଏକ ନିମିଷକାଳ ବାସ କରିବା ଆମ୍ଭମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ଆମେ ହତଭାଗିନୀ, ତା ନ ହୋଇଥିଲେ ଆମେ ଏପରି ଭାବରେ କୃଷ୍ଣ ବିରହରେ ବ୍ୟଥିତ ହେଉ ନ ଥାନ୍ତେ । ସଖି, ଯାହାଙ୍କର ମଧୁରହାସ୍ୟ, ଲଳିତଆଳାପ, ଲୀଳାକଟାକ୍ଷ ଓ ପ୍ରେମାଲିଙ୍ଗନ ମଧ୍ୟରେ ଏକ ସୁଦୀର୍ଘ ରାତ୍ରିକୁ ମୁହୂର୍ତ୍ତନ୍ୟାୟ ରାସକ୍ରୀଡ଼ା ମାଧ୍ୟମରେ ଆମେ ଅତିବାହିତ କରିଥିଲେ, ସେହି ପ୍ରାଣପ୍ରିୟ କୃଷ୍ଣଙ୍କୁ ହରାଇ ଏହି ଅସହ୍ୟ ବିରହକୁ ଆମେ କିପରି ଅତିକ୍ରମ କରିବା ? ଦିନେ ନୁହେଁ କାଳେ ନୁହେଁ, ପ୍ରତିଦିନ, ପ୍ରତିମୁହୂର୍ତ୍ତରେ କୃଷ୍ଣଙ୍କର ଗୋଚାରଣରୁ ପ୍ରତ୍ୟାବର୍ତ୍ତନର ଦୃଶ୍ୟ, ସୁକୁଞ୍ଚିତ କେଶପଂକ୍ତି, ଗଳାର ପୁଷ୍ପମାଲ୍ୟ, ଗୋଚାରଣକାଳୀନ ଧୂଳିରେ ଆଚ୍ଛାଦିତ ଶରୀର, ସ୍ମିତହାସ୍ୟୋଜ୍ଜ୍ୱଳ ମୁଖମଣ୍ଡଳ, ନୟନର ବଙ୍କ ଦୃଷ୍ଟି ଆମ ହୃଦୟକୁ ହରଣ

କରୁଅଛୁ । ଆଜ ସେହି କୃଷ୍ଣଙ୍କର ଅଦର୍ଶନକୁ ଆମେ ସହ୍ୟ କରିବୁ କପରି ? ସଖିଗଣ, ଆମର ନଶ୍ଚୟ ମୃତ୍ୟୁ ହେବ ।’

ଏହା କହି ଗୋପୀମାନେ ଉଚ୍ଚ ସ୍ୱରରେ ‘ହେ ଗୋବିନ୍ଦ, ହେ ଦାମୋଦର, ହେ ମାଧବ’ ଆଦି ସମ୍ବୋଧନ କରି କରି ରୋଦନ କରିବାକୁ ଲାଗିଲେ ।

ଏହିପରି ରୋଦନ ମଧ୍ୟରେ ସେହି ରାତିଟି ଅତିବାହିତ ହୋଇଗଲା ।



# ମଥୁରା ଅଭିମୁଖେ କୃଷ୍ଣ ଓ ବଳରାମ

ପରଦିନ……

ପୂର୍ବାକାଶରେ ସୂର୍ଯ୍ୟ ଉଦୟ ହେଲା ବେଳକୁ ଅକ୍ରୂର ନିତ୍ୟକର୍ମ ସମାପନ କରି ମଥୁରାକୁ ପ୍ରତ୍ୟାବର୍ତ୍ତନ କରିବା ନିମନ୍ତେ ରଥ ପ୍ରସ୍ତୁତ କରି ସାରିଲେଣି । ଯଥା ସମୟରେ କୃଷ୍ଣ ଓ ବଳରାମ ମଧ୍ୟ ଆସି ଅକ୍ରୂରଙ୍କର ସେହି ରଥରେ ଆରୋହଣ କଲେ ଏବଂ ଅକ୍ରୂର ମଥୁରା ଉଦ୍ଦେଶ୍ୟରେ ରଥ ଚଳାଇଲେ । କୃଷ୍ଣ ଓ ବଳରାମ ଆରୋହଣ କରି ଯାଉଥିବା ରଥର ପଛେ ପଛେ ନନ୍ଦ ରାଜା ଓ ଅନ୍ୟ ଗୋପମାନେ ଦୁଗ୍ଧ, ଦହି, ଲହୁଣି, ଘୃତ ଆଦି ସାମଗ୍ରୀମାନ ନେଇ ରଥରେ ବସି ଚାଲିଲେ । କୃଷ୍ଣଙ୍କୁ ବନ୍ଦନ କରି ରଥ ଚାଲିବା ମାତ୍ରେ ଗୋପାଙ୍ଗନାମାନେ ପ୍ରାଣପ୍ରିୟ କୃଷ୍ଣଙ୍କର ସେହି ସୁନ୍ଦର ମୁଖକୁ ଅପଲକ ନୟନରେ ଚାହିଁ ଚାହିଁ ରଥର ପଛେ ପଛେ ମଧ୍ୟ ଚାଲିଥାନ୍ତି । ଯଦୁଶିରୋମଣି ଭଗବାନ କୃଷ୍ଣ ବୁଝିପାରିଲେ ଯେ, ତାଙ୍କର ମଥୁରା ଯାତ୍ରା ଗୋପରମଣୀମାନଙ୍କ ହୃଦୟ ଓ ମନକୁ ଦାରୁଣ ଦୁଃଖରେ ଆଚ୍ଛାଦିତ କରିଅଛି ଓ ସେମାନେ କୃଷ୍ଣଙ୍କଠାରୁ ସାନ୍ତ୍ୱନା ଆଶା କରୁଅଛନ୍ତି; ତେଣୁ କୃଷ୍ଣ 'ଅତି ଶୀଘ୍ର ଫେରିଆସିବି' ବୋଲି ଗୋପୀଙ୍କୁ କହି ସାନ୍ତ୍ୱନା ଦେଲେ ଏବଂ ପରମୁହୂର୍ତ୍ତରେ ଅକ୍ରୂର ରଥର ବେଗ ବଢ଼ାଇଦେଲେ । ଗୋପଦାଣ୍ଡରେ କୃଷ୍ଣଙ୍କର ରଥ ଅତି ବେଗରେ ଯାଉଥିଲାବେଳେ ଗୋପୀମାନେ ଚିତ୍ରପ୍ରତିମା ପରି ଅପଲକ ଦୃଷ୍ଟିରେ କୃଷ୍ଣଙ୍କର ରଥ, ରଥର ଧ୍ୱଜା ଓ ରଥର ଦ୍ରୁତଗାମୀ ଚକଗୁଡ଼ିକ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ଚାହିଁରହିଥାନ୍ତି । ସେମାନଙ୍କର ମନ କୃଷ୍ଣଙ୍କ ରଥର ପଛେ ପଛେ ସତେ ଯେପରି ଅନୁଧାବନ କରୁଥିଲା । ସେମାନଙ୍କର ଧାରଣା ଥିଲା ଯେ, କୃଷ୍ଣ ଆଦୌ ମଥୁରାକୁ ଯିବେ ନାହିଁ ବା କିଛି ବାଟ ରଥରେ ଯାଇ ଗୋପକୁ ପୁଣି ଫେରିଆସିବେ; କିନ୍ତୁ ପ୍ରେମବିହ୍ୱଳା ଗୋପାଙ୍ଗନାମାନଙ୍କର ବିଷାଦଗ୍ରସ୍ତ ମୁଖଗୁଡ଼ିକୁ ଦେଖି ମଧ୍ୟ ସେ ଯେତେବେଳେ ମଥୁରା ଯାତ୍ରାରୁ ନିବୃତ୍ତ ହେଲେ ନାହିଁ । ସେତେବେଳେ ଗୋପୀମାନଙ୍କର ହୃଦୟ ଗଭୀର ନୈରାଶ୍ୟ ଓ ହରହରେ ଫାଟିଗଲା । ସେମାନେ ନିଜ ନିଜର

ଗୃହକୁ ଫେରି ଆସିଥିଲେ ମଧ୍ୟ ରାତି ଦିନ କୃଷ୍ଣଙ୍କୁ ସ୍ମରଣ କରି କରି, ତାଙ୍କର ସେହି ଅବିସ୍ମରଣୀୟ ଲୀଳାକୁ ସଙ୍ଗୀତାକାରରେ ଗାନ କରି କରି ଏବଂ କୃଷ୍ଣଙ୍କ ଫେରିବା ବାଟକୁ ଚାହିଁ ଚାହିଁ ନିଜ ହୃଦୟରେ ଜାତ ହୋଇ ଥିବା ବିରହ ଯନ୍ତ୍ରଣାର ଗୁରୁ ଭାରକୁ ଲଘବ କରୁଥିଲେ।

ରଥର ଗତି ଅତ୍ୟନ୍ତ ଦ୍ରୁତ ଥିବାରୁ କୃଷ୍ଣ ଓ ବଳରାମଙ୍କ ସହିତ ଅକ୍ରୂର ଅଳ୍ପ ସମୟ ମଧ୍ୟରେ ଯମୁନା ନଦୀ କୂଳରେ ଆସି ପହଞ୍ଚିଲେ। ସେଠାରେ ରଥକୁ ଅଟକାଇ କୃଷ୍ଣ ଓ ବଳରାମ ପାପନାଶିନୀ ପବିତ୍ର ଯମୁନାର ସ୍ୱଚ୍ଛ ଜଳ ପାନ କଲେ ଏବଂ କୃଷ୍ଣ ଓ ବଳରାମଙ୍କୁ ପୁନର୍ବାର ରଥରେ ବସାଇ କୃଷ୍ଣଙ୍କଠାରୁ ଅନୁମତି ନେଇ ଯମୁନାରେ ସ୍ନାନ କରିବା ନିମନ୍ତେ ଅକ୍ରୂର ଯମୁନା ଜଳରେ ପ୍ରବେଶ କଲେ। ଯମୁନାରେ ସ୍ନାନକରି ଅକ୍ରୂର ଗାୟତ୍ରୀ ଜପ କଲେ ଏବଂ ଯମୁନା ଜଳରେ ମୁଣ୍ଡ ବୁଡ଼ାଇ ସ୍ନାନକଲା ସମୟରେ ଅକ୍ରୂର ଜଳ ମଧ୍ୟରେ କୃଷ୍ଣ ଓ ବଳରାମଙ୍କୁ ଦର୍ଶନ କଲେ। ଅକ୍ରୂରଙ୍କ ମନରେ ହଠାତ୍ ସନ୍ଦେହ ଜାତହେଲା ଯେ, କୃଷ୍ଣ ଓ ବଳରାମଙ୍କୁ ତ ସେ ରଥରେ ବସାଇ ଦେଇ ଆସିଲେ, ଅଥଚ ସେମାନେ ଯମୁନାର ଜଳ ମଧ୍ୟକୁ ପୁଣି ଆସିଲେ କିପରି? ସେମାନେ କ'ଣ ରଥରେ ନଥିବେ ନାହାନ୍ତି? ଏହା ଭାବି ଜଳ ମଧ୍ୟରୁ ଉଠି ଅକ୍ରୂର କୂଳରେ ଠିଆ ହୋଇଥିବା ରଥକୁ ଚାହିଁଲେ ଏବଂ କୃଷ୍ଣ ଓ ବଳରାମଙ୍କୁ ପୂର୍ବପରି ରଥରେ ବସିଥିବାର ସେ ଦେଖିଲେ। ଭ୍ରମବଶତଃ ଯମୁନାର ଜଳ ମଧ୍ୟରେ କୃଷ୍ଣ ଓ ବଳରାମଙ୍କ ରୂପକୁ ସେ ଦେଖିଛନ୍ତି ବୋଲି ତାଙ୍କର ଧାରଣା ହେଲା। ତେଣୁ ସେ ନିଶ୍ଚିନ୍ତ ମନରେ ପୁନର୍ବାର ଯମୁନା ଜଳରେ ବୁଡ଼ିଲେ। ବଡ଼ ଆଶ୍ଚର୍ଯ୍ୟର କଥା, ଏଥର ଜଳ ମଧ୍ୟରେ ସହସ୍ରମୁଖ ବାସୁକୀ ନାଗ ଉପରେ ଶାୟିତ ପୀତବସନ ପରିହିତ, ଚତୁର୍ଭୁଜ, ଶାନ୍ତ, ପଦ୍ମନେତ୍ରଧାରୀ ଏକ ସୁନ୍ଦର ପୁରୁଷଙ୍କୁ ସିଦ୍ଧ, ଚାରଣ, ଗନ୍ଧର୍ବ ଏବଂ ଅସୁରମାନେ ସ୍ତୁତି କରୁଥିବା ଦୃଶ୍ୟ ଅକ୍ରୂର ଦେଖିଲେ; କିନ୍ତୁ କୃଷ୍ଣ ଓ ବଳରାମଙ୍କୁ ଆଉ ଜଳ ମଧ୍ୟରେ କେଉଁଠି ଦେଖିବାକୁ ପାଇଲେ ନାହିଁ। ସେହି ଦିବ୍ୟ ଦୃଶ୍ୟ ଅନ୍ତର୍ଗତ ସୁନ୍ଦର ପୁରୁଷଙ୍କର ଆଜାନୁଲମ୍ବିତ ବାହୁ, ପ୍ରଶସ୍ତ ବକ୍ଷ ଓ ବିଶାଳ ସ୍କନ୍ଧ, କମ୍ବୁକଣ୍ଠ, ସୁଗଭୀର ନିମ୍ନନାଭି, ଅଶ୍ୱତ୍ଥ

ଚନ୍ଦ୍ର ସଦୃଶ ତ୍ରିବଳିଯୁକ୍ତ ଉଦର, ସ୍ଥୂଳ କଟି, ନିତମ୍ବ, ହସ୍ତୀଶୁଣ୍ଡ ସଦୃଶ ସୁଗଠିତ ସୁନ୍ଦର ଜାନୁ ଓ ସୁନ୍ଦର ପଦ ଓ ନଖପଂକ୍ତି ଓ ତାଙ୍କର ଅଙ୍ଗ ମଣ୍ଡନ କରିଥିବା ବିଭିନ୍ନ ଅଳଙ୍କାର, ହସ୍ତରେ ଶୋଭାପାଉଥିବା ଶଙ୍ଖ, ଚକ୍ର, ଗଦା, ପଦ୍ମ ଆଦିକୁ ଦେଖିବା ସଙ୍ଗେ ସଙ୍ଗେ ସେହି ଦିବ୍ୟ ପୁରୁଷଙ୍କୁ ଦେବ, ଗନ୍ଧର୍ବ, ଭକ୍ତ, ଭାଗବତ ପାର୍ଷଦମାନଙ୍କ ଦ୍ୱାରା ଭିନ୍ନ ଭିନ୍ନ ଭାବରେ ସ୍ତୁତିମାନ ଓ ପୂଜିତ ଏବଂ ଲକ୍ଷ୍ମୀ, ସରସ୍ୱତୀ, ପୁଷ୍ଟି, କାନ୍ତି, କୀର୍ତ୍ତି, ତୁଷ୍ଟି, ଇଳା, ଉର୍ଜ୍ଜା, ବିଦ୍ୟା, ଅବିଦ୍ୟା, ଶକ୍ତି ଓ ମାୟାଙ୍କ ଦ୍ୱାରା ନିସେବିତ ହେଉଥିବାର ଦେଖି ଅକ୍ରୂର ବିହ୍ୱଳ ହୋଇ ପଡ଼ିଲେ । ସେ ଦିବ୍ୟପୁରୁଷ ଯେ ସ୍ୱୟଂ ଭଗବାନ ତାହା ବୁଝିବାରେ ଅକ୍ରୂରଙ୍କ ପକ୍ଷରେ କଷ୍ଟକର ହେଲା ନାହିଁ । ତାଙ୍କର ହୃଦୟରେ ଅପୂର୍ବ ଭକ୍ତିଭାବ ଉଦ୍ରେକ ହେଲା, ସର୍ବାଙ୍ଗରେ ପୁଲକ ସଞ୍ଚାର ଖେଳିଗଲା ଏବଂ ତାଙ୍କର ନେତ୍ର ପ୍ରେମାଶ୍ରୁରେ ଆର୍ଦ୍ର ହୋଇଗଲା ।

ଭଗବାନଙ୍କ ଉଦ୍ଦେଶ୍ୟରେ ଅକ୍ରୂର ବିନମ୍ର ପ୍ରଣାମ ଜ୍ଞାପନ କରି କୃତାଞ୍ଜଳିବଦ୍ଧ ହୋଇ ଧୀର ଗମ୍ଭୀର ସ୍ୱରରେ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ, 'ହେ ପ୍ରଭୁ, ଆପଣ ଏହି ଅଖିଳ ଜଗତ ସୃଷ୍ଟିର କାରଣ । ଆପଣ ଅବିନାଶୀ ସ୍ୱୟଂ ନାରାୟଣ । ଆପଣଙ୍କୁ ମୁଁ ନମସ୍କାର କରୁଅଛି । ଆପଣଙ୍କର ନାଭିକମଳରୁ ବ୍ରହ୍ମା ଆବିର୍ଭୂତ ହୋଇଥିଲେ ଏବଂ ଆପଣଙ୍କର ଇଚ୍ଛାନୁସାରେ ସେହି ବ୍ରହ୍ମାଙ୍କ ଦ୍ୱାରା ଏହି ଜଗତ ସୃଷ୍ଟି ହୋଇଅଛି । ଏହି ଚରାଚର ବିଶ୍ୱରେ ଯାହା ଆମର ଦୃଷ୍ଟିଗୋଚର ହେଉଅଛି, ସେହି ସବୁ ଜଳ, ସ୍ଥଳ, ଅଗ୍ନି, ଆକାଶ, ଅହଙ୍କାର, ମହତତ୍ତ୍ୱ, ପ୍ରକୃତି, ପୁରୁଷ, ମନ, ଇନ୍ଦ୍ରିୟ, ସକଳ ଦେବତା ପ୍ରମୁଖ ଆପଣଙ୍କର ଅଙ୍ଗସ୍ୱରୂପ । ଯୋଗୀ ଓ ଭକ୍ତମାନେ ଆପଣଙ୍କୁ ଭିନ୍ନ ଭିନ୍ନ ଭାବରେ ଭିନ୍ନ ଭିନ୍ନ ରୂପରେ ଧ୍ୟାନ ଓ ଆରାଧନା କରିଥାନ୍ତି । ଯେପରି ପର୍ବତ ଓ ମେଘ ଦ୍ୱାରା ପରିବର୍ଦ୍ଧିତ ନଦୀସକଳ ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ହୋଇ ଅବଶେଷରେ ସାଗରଲଗ୍ନା ହୋଇଥାନ୍ତି, ସେହିପରି ସକଳ ପୂଜା ଓ ଆରାଧନା ଆପଣ ପ୍ରାପ୍ତ ହୋଇଥାନ୍ତି । ଆପଣ ବହୁରୂପ ଧାରଣ କରି ଅଖିଳ ଜଗତରେ ବହୁ ଲୀଳା ପ୍ରକାଶ କରିଥାନ୍ତି । ଭକ୍ତମାନେ ଆପଣଙ୍କର ସେହି ଲୀଳାମୟ ରୂପ, ଗୁଣ ଓ ଯଶ ଆଦିକୁ ସର୍ବଦା ଜପ କରିଥାନ୍ତି ।

ଦେବ, ଋଷି ଓ ଔଷଧି ସକଳଙ୍କୁ ଉଦ୍ଧାର କରିବା ନିମନ୍ତେ ପ୍ରଳୟ ସମୁଦ୍ରରେ ମତ୍ସ୍ୟରୂପ ଧାରଣ କରି ଆପଣ ସ୍ୱଚ୍ଛନ୍ଦରେ ବିହାର କରିଥିଲେ । ଆପଣଙ୍କର ସେହି ମତ୍ସ୍ୟ ରୂପକୁ ଧ୍ୟାନକରି ମୁଁ ପ୍ରଣାମ କରୁଅଛି । ଆପଣ ବିଶାଳ କଚ୍ଛପ ରୂପ ଧାରଣ କରି ବୃହତ୍‌କାୟ ମନ୍ଦର ପର୍ବତକୁ ଉତ୍ତୋଳିତ କରି ସାଗରମନ୍ଥନ କାର୍ଯ୍ୟରେ ଅପୂର୍ବ ସହାୟତା ପ୍ରଦାନ କରିଥିଲେ; ଆପଣଙ୍କର ସେହି ଦିବ୍ୟ କଚ୍ଛପ ରୂପକୁ ଧ୍ୟାନକରି ମୁଁ ପ୍ରଣାମ କରୁଅଛି । ଆପଣ ଏହି ପୃଥିବୀକୁ ଉଦ୍ଧାର କରିବା ନିମନ୍ତେ ବରାହ ରୂପରେ ଆବିର୍ଭୂତ ହୋଇଥିଲେ । ଆପଣଙ୍କର ସେହି ବରାହ ମୂର୍ତ୍ତି ଉଦ୍ଦେଶ୍ୟରେ ମୁଁ ବାରମ୍ବାର ପ୍ରଣାମ ଜଣାଉଅଛି । ପ୍ରହ୍ଲାଦ ପ୍ରତି ପ୍ରସନ୍ନ ହୋଇ ଆପଣ ଯେଉଁ ଅଲୌକିକ ନୃସିଂହ ମୂର୍ତ୍ତି ଧାରଣ କରି ଆତ୍ମପ୍ରକାଶ କରିଥିଲେ ସେହି ନରସିଂହ ରୂପୀ ଆପଣଙ୍କୁ ମୁଁ ପ୍ରଣାମ କରୁଅଛି । ଆପଣ ବାମନାବତାର ଗ୍ରହଣ କରି ନିଜର ପାଦରେ ତ୍ରିପାଦ ପରିମିତ ଭୂମି ଦାନ ରୂପେ ଗ୍ରହଣ କରି ସମଗ୍ର ଜଗତକୁ ହରଣ କରିଥିଲେ । ଆପଣଙ୍କର ସେହି ବାମନ ରୂପକୁ ମୁଁ ଧ୍ୟାନକରି ପ୍ରଣାମ କରୁଅଛି । ଧର୍ମଲଂଘନକାରୀ ଉଚ୍ଛୃଙ୍ଖଳ କ୍ଷତ୍ରିୟମାନଙ୍କୁ ସଂହାର କରିବା ନିମନ୍ତେ ଆପଣ ପରଶୁରାମ ରୂପରେ ପ୍ରକଟିତ ହୋଇଥିଲେ । ଆପଣଙ୍କର ସେହି ପରଶୁରାମ ରୂପକୁ ମୁଁ ନମସ୍କାର କରୁଅଛି । ରାକ୍ଷସ ରାବଣକୁ ବିନାଶ କରିବା ନିମନ୍ତେ ଆପଣ ରଘୁବଂଶରେ ରାମ ରୂପରେ ଅବତୀର୍ଣ୍ଣ ହୋଇଥିଲେ । ସେହି ରାମରୂପୀ ଆପଣଙ୍କୁ ନମସ୍କାର । ବୈଷ୍ଣବ ତଥା ଯଦୁବଂଶୀୟ ବ୍ୟକ୍ତିମାନଙ୍କୁ ପାଳନ ପୋଷଣ କରିବା ନିମନ୍ତେ ଆପଣ ନିଜକୁ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ, ଏହିପରି ଚାରି ରୂପରେ ପ୍ରକାଶିତ କରିଅଛନ୍ତି । ଆପଣଙ୍କୁ ମୁଁ ନମସ୍କାର କରୁଛି । ଦୈତ୍ୟ ଓ ଦାନବଙ୍କୁ ମୋହିତ କରି ଅହିଂସାର ମାର୍ଗ ପ୍ରବର୍ତ୍ତନ କରିବା ନିମନ୍ତେ ଆପଣ ମଧ୍ୟ ବୁଦ୍ଧ ରୂପରେ ପ୍ରକଟିତ ହେବେ । ପୃଥିବୀରେ ମ୍ଳେଚ୍ଛମାନଙ୍କୁ ସଂହାର କରି ଭୂଭାର ହରଣ କରିବା ନିମନ୍ତେ ଆପଣ ମଧ୍ୟ କଳ୍‌କୀ ରୂପରେ ଅବତୀର୍ଣ୍ଣ ହେବେ । ଆପଣଙ୍କର ସେହି ଅନାଗତ ଆଗାମୀ ରୂପଗୁଡ଼ିକୁ ଧ୍ୟାନକରି ମୁଁ ବାରମ୍ବାର ପ୍ରଣାମ ଜଣାଉଅଛି । ପ୍ରଭୁ, ଆପଣଙ୍କର ମାୟାର ବଶବର୍ତ୍ତୀ ହୋଇ ଜୀବମାନେ ଆପଣଙ୍କର ସ୍ୱରୂପ ପ୍ରତି ସଚେତନ ନ ହୋଇ ଅନିତ୍ୟ ସଂସାରରେ ବିଶେଷ ଆଗ୍ରହଶୀଳ ହୋଇ

ପଡ଼ନ୍ତି । ଆପଣଙ୍କ ପ୍ରତି ଭକ୍ତିପରାୟଣ ହେବାକୁ ମୁଁ ପ୍ରବୃତ୍ତ ହୋଇ ହୋଇ ମଧ୍ୟ ଦୁଷ୍ଟଲୋକମାନଙ୍କର ସଙ୍ଗଦୋଷରେ ରହି ସଂସାର-ପ୍ରଲୁବ୍ଧ ଓ କର୍ତ୍ତବ୍ୟଚ୍ୟୁତ ହୋଇଅଛି । ଆପଣଙ୍କ ମାୟାରେ ଅଜ୍ଞ ହତ ହୋଇ ସଂସାର ପ୍ରତି ଜାତ ହୋଇଥିବା ଆସକ୍ତିକୁ ମୁଁ ପରିହାର କରିପାରୁ ନାହିଁ । ମୋ ପରି ମୂଢ଼ ଆଉ କେହି ନାହିଁ । କାରଣ ସ୍ୱପ୍ନ ପରି ଅନିତ୍ୟ ଏହି ସଂସାର, ଆତ୍ମଜ, ଗୃହ, ପରିବାର ପରିଜନ ଓ ଅର୍ଥ ଦ୍ୱାରେ ମୋର ସମସ୍ତ ସମୟ ଓ ବୁଦ୍ଧିକୁ ମୁଁ ନିୟୋଜିତ କରୁଅଛି । ମୁଁ ସଂସାର ପ୍ରଲୋଭନ ରୂପକ ମୋହାନ୍ଧକାର ମଧ୍ୟରେ ରହିଥିବାରୁ ଆପଣଙ୍କୁ ମୁଁ ସମ୍ପୂର୍ଣ୍ଣ ଭାବରେ ଭୁଲିଯାଇ ଅଛି । ପ୍ରକୃତ ଜଳକୁ ପରିହାର କରି ମରୀଚିକା ପଛରେ ମୁଁ ଧାଉଁଅଛି । ହାୟ ! ! ମୋର ମନ ବିଷୟ-ବାସନାରେ ମତ୍ତ ହୋଇଉଠିଛି ଏବଂ ମୋର ବିଷୟ-ସୁଖ-ପ୍ରଲୁବ୍ଧ ଇନ୍ଦ୍ରିୟଗଣ ମୋତେ ଇତସ୍ତତ ପରିଚାଳିତ କରି କର୍ତ୍ତବ୍ୟଚ୍ୟୁତ କରୁଅଛନ୍ତି ଏବଂ ସେଗୁଡ଼ିକୁ ମୁଁ ସଂଯତ କରିପାରୁ ନାହିଁ । ହେ ପ୍ରଭୁ, ଦୁଷ୍ଟଜନମାନଙ୍କ ନିମନ୍ତେ ପରମ ଦୁର୍ଲ୍ଲଭ ଯେଉଁ ଆପଣଙ୍କର ଶ୍ରୀଚରଣ, ତାକୁ ଦର୍ଶନ କରିବାର ସୁଯୋଗ ମୁଁ ଆଜି ଲାଭ କରିଛି ଏବଂ ଆପଣଙ୍କର ସେହି ଚରଣରେ ଶରଣ ନେଇଅଛି, ଆପଣ ମୋ ପ୍ରତି ସଦୟ ହୁଅନ୍ତୁ । ହେ ପଦ୍ମନାଭ, ଜୀବର ସଂସାରରୁ ମୁକ୍ତିଲାଭ କରିବାର ସମୟ ସମାଗତ ହେଲେ, ସତ୍ପଥ ଓ ସତ୍‌ବୃତ୍ତି ପ୍ରତି ଜୀବର ମନ ଆକୃଷ୍ଟ ହୋଇଥାଏ । ପ୍ରଭୁ, ଆପଣ ଅନନ୍ତ ଶକ୍ତିର ଅଧିକାରୀ । ଆପଣ ସ୍ୱୟଂ ପରମବ୍ରହ୍ମ । ଆପଣ ସର୍ବଭୂତ-ନିବାସ ବାସୁଦେବ ଓ ହୃଷୀକେଶ । ଆପଣଙ୍କ ଚରଣପଙ୍କଜରେ ମୁଁ ପ୍ରଣାମ କରୁଅଛି । ପ୍ରଭୁ, ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।'

ଏହିପରି ଭାବରେ ଅକ୍ରୂର ସ୍ତୁତିଗାନ କରୁଥିବା ସମୟରେ ଭଗବାନ କୃଷ୍ଣ ଜଳମଗ୍ନ ଅକ୍ରୂରଙ୍କର ଦୃଷ୍ଟି ସମ୍ମୁଖରୁ ପୂର୍ବର ସେହି ଦିବ୍ୟ ଦୃଶ୍ୟକୁ ଅଦୃଶ୍ୟ କରିଦେଲେ । ଦିବ୍ୟ ରୂପ ଦୃଷ୍ଟି ସମ୍ମୁଖରୁ ଅନ୍ତର୍ହିତ ହେବାରୁ ଅକ୍ରୂର ଜଳମଧ୍ୟରୁ ଉତ୍ଥିତ ହୋଇ ଅତିଶୀଘ୍ର ନିତ୍ୟକର୍ମ ଶେଷକରି ରଥ ନିକଟକୁ ଫେରି ଆସିଲେ ।

ରଥ ଉପରେ କୃଷ୍ଣ ଓ ବଳରାମ ପୂର୍ବପରି ବସି ରହିଥିଲେ ।

ଅକ୍ରୂରଙ୍କୁ ଅତ୍ୟନ୍ତ ବିସ୍ମୟବିହ୍ୱଳ ଥିବାର ଲକ୍ଷ୍ୟକରି କୃଷ୍ଣ ପଚାରିଲେ, 'ଦାଦା, ଆପଣ ବିଶେଷ ଚିନ୍ତିତ ଥିବାପରି ଦେଖାଯାଉ ଅଛନ୍ତି । କାରଣ କଣ ? ସ୍ନାନ କରୁଥିବା ସମୟରେ ଜଳ ମଧ୍ୟରେ କିଛି ଅଦ୍ଭୁତ ବସ୍ତୁ ଦେଖିଲେ କି ?'

କୃଷ୍ଣଙ୍କର କଥା ଶୁଣି ଅକ୍ରୂର କହିଲେ, 'ପ୍ରଭୁ, ଆପଣ ବିଶ୍ୱାତ୍ମକ, ପୃଥିବୀର ସକଳ ଆଶ୍ଚର୍ଯ୍ୟକର ବିଷୟର ତ ଆପଣ ହିଁ ସ୍ରଷ୍ଟା । ଆପଣ ସବୁ ଆଶ୍ଚର୍ଯ୍ୟକର ଘଟଣା ମଧ୍ୟରେ ପରମ ଆଶ୍ଚର୍ଯ୍ୟ । ଆପଣଙ୍କଠାରୁ ଅଧିକ ଆଶ୍ଚର୍ଯ୍ୟର କଥା ମୁଁ ଆଉ କ'ଣ ଦେଖିବି !'

ଏହା କହି ଓ କୃଷ୍ଣଙ୍କର ସହାସ୍ୟ ବଦନକୁ ଚାହିଁ ଅକ୍ରୂର ରଥରେ ବସିଲେ ଏବଂ କାଳବିଳମ୍ବ ନ କରି ପରମୁହୂର୍ତ୍ତରେ ମଥୁରା ଉଦ୍ଦେଶ୍ୟରେ ପୁନର୍ବାର ରଥ ଚାଳନା କଲେ ।



# ମଥୁରାରେ କୃଷ୍ଣ

ମଥୁରା ନଗରୀର ସୀମାରେ ଅକ୍ରୂରଙ୍କର ରଥ ପହଞ୍ଚିବା ମାତ୍ରେ ଅକ୍ରୂରଙ୍କୁ ସମ୍ବୋଧନ କରି କୃଷ୍ଣ କହିଲେ, 'ଦାଦା, ଏହିଠାରେ ଆମକୁ ଆପଣ ଓହ୍ଲାଇ ଦେଇ ଘରକୁ ଯାଆନ୍ତୁ । ଆମେ ଏଠାରେ ଅବତରଣ କରି ରାଜପଥରେ ଚାଲି ଚାଲି ମଥୁରା ନଗରୀର ଶୋଭା ସମ୍ପଦକୁ ଦର୍ଶନ କରି କରିଯିବୁ ।'

କୃଷ୍ଣ ଓ ବଳରାମଙ୍କୁ ଛାଡ଼ି ଏକାକୀ ଯିବାକୁ ପ୍ରଥମେ ଅକ୍ରୂର ରାଜି ହେଉ ନ ଥିଲେ; କିନ୍ତୁ ପରେ କୃଷ୍ଣଙ୍କର କଥାକୁ ଆଦେଶ ବୋଲି ମନେକରି ଦୁଃଖିତ ମନରେ ରଥ ନେଇ ଏକାକୀ ଚାଲିଗଲେ । ଯଥା ସମୟରେ କୃଷ୍ଣ ଓ ବଳରାମଙ୍କର ମଥୁରା ଆଗମନର ସମ୍ବାଦ କଂସକୁ ଜଣାଇ ଅକ୍ରୂର ସ୍ୱଗୃହକୁ ଗମନ କଲେ ।

ସହଯାତ୍ରୀ ଗୋପବାସୀମାନଙ୍କ ଗହଣରେ କୃଷ୍ଣ ଓ ବଳରାମ ମଥୁରାର ରାଜପଥରେ ଗମନ କରି ନଗରର ଶୋଭା ଦର୍ଶନ କରୁଥାନ୍ତି ।

ମଥୁରା ନଗରୀର ଶୋଭା ଅତ୍ୟନ୍ତ ରମଣୀୟ ଥିଲା । ସ୍ଫଟିକ ନିର୍ମିତ ସମୁଚ୍ଚ ଅଟ୍ଟାଳିକା ସମୂହ, ତହିଁରେ ସୁବର୍ଣ୍ଣ ନିର୍ମିତ କପାଟ ଓ ତୋରଣମାନ, ତାମ୍ର ଓ ପିତ୍ତଳରେ ନିର୍ମିତ ଶସ୍ୟାଗାର, ବିସ୍ତୀର୍ଣ୍ଣ ପରିଖା, ରମଣୀୟ ଉଦ୍ୟାନ ଓ ଉପବନ ଆଦି ମଥୁରାର ସୌନ୍ଦର୍ଯ୍ୟକୁ ସମଧିକ ଆକର୍ଷଣୀୟ କରିଥିଲା । ପ୍ରତ୍ୟେକ ଗୃହର ମୁଖ୍ୟ ପ୍ରବେଶ ଦ୍ୱାରରେ ଦଧି ଓ ଚନ୍ଦନସିକ୍ତ ପୁଷ୍ପ ଓ ଆମ୍ରପଲ୍ଲବ ଶୋଭିତ ପୂର୍ଣ୍ଣକୁମ୍ଭ, କଦଳୀ ଓ ଗୁଆଗଛମାନ ଶୋଭା ପାଉଥିଲା ।

ସମବୟସ୍କ ଗୋପବାଳକମାନଙ୍କ ଗହଣରେ ମଥୁରାର ରାଜପଥରେ ନଗରୀର ଶୋଭା ଦର୍ଶନ କରି କରି କୃଷ୍ଣ ଓ ବଳରାମ ଗଲାବେଳେ, ସେମାନଙ୍କୁ ଦର୍ଶନ କରିବା ନିମନ୍ତେ ମଥୁରାର ରାଜପଥରେ ଅପୂର୍ବ ଜନସମାଗମ ଓ କୋଳାହଳ ସୃଷ୍ଟି ହେଲା । ମଥୁରାର ରମଣୀ-ମାନେ ଯେତେବେଳେ ଶୁଣିବାକୁ ପାଇଲେ ଯେ ରାଜପଥରେ କୃଷ୍ଣ ଓ

ବଳରାମ ଯାଉଅଛନ୍ତି, କୃଷ୍ଣଙ୍କୁ ଦର୍ଶନ କରିବା ନିମନ୍ତେ ସେମାନେ ଅତ୍ୟନ୍ତ ବ୍ୟାକୁଳ ହୋଇପଡ଼ିଲେ । ସେତେବେଳେ ସେମାନଙ୍କ ମଧ୍ୟରୁ କେହି ବସ୍ତ୍ର ପରିଧାନ କରୁଥିଲେ ତ, କେହି କେହି ଅଳଙ୍କାର ପରିଧାନ କରୁଥିଲେ; କେହି କେହି କେଶପ୍ରସାଧନରେ ବ୍ୟସ୍ତ ଥିଲେ ତ, କେହି କେହି ନୟନରେ ଅଞ୍ଜନ ଲେପନ କରୁଥିଲେ । ଯିଏ ଯେଉଁ କାର୍ଯ୍ୟରେ ଲିପ୍ତ ଥିଲା, ସେହି କାର୍ଯ୍ୟକୁ ସେହିଠାରେ ପରିତ୍ୟାଗ କରି ମଥୁରାର ରମଣୀମାନେ କୃଷ୍ଣଙ୍କୁ ଦର୍ଶନ କରିବା ନିମନ୍ତେ ଅତ୍ୟନ୍ତ ବ୍ୟସ୍ତ ଓ ବ୍ୟାକୁଳ ହୋଇପଡ଼ିଲେ ଏବଂ ସେମାନଙ୍କ ମଧ୍ୟରୁ କେହି କେହି ରାଜପଥଧାରରେ, କେହି କେହି ପ୍ରାସାଦ ଉପରେ, କେହି କେହି ଗବାକ୍ଷ ପାର୍ଶ୍ୱରେ ଆସି ସମବେତ ହେଲେ । କମଳଲୋଚନ କୃଷ୍ଣ ମତ୍ତଗଜରାଜ ପରି ଡାଳ ଡାଳ ଗମନ କରୁଥିଲେ । ଲକ୍ଷ୍ମୀରମଣ କୃଷ୍ଣଙ୍କର ସୁନ୍ଦର ଗମନକାଳୀନ ଭଙ୍ଗୀ, ସ୍ମିତହାସ୍ୟ, ଲୀଳାକଟାକ୍ଷ ଓ ଅପୂର୍ବ ସୌନ୍ଦର୍ଯ୍ୟ ଦର୍ଶନ କରି ମଥୁରାର ରମଣୀମାନେ ସର୍ବାଙ୍ଗରେ ଅନିର୍ବଚନୀୟ ପୁଲକ ଅନୁଭବ କଲେ । କୃଷ୍ଣଙ୍କର ବିଭିନ୍ନ ଲୀଳା-ବୃତ୍ତାନ୍ତ ଶୁଣି ମଥୁରାର ରମଣୀମାନେ କୃଷ୍ଣଙ୍କୁ ପ୍ରତ୍ୟକ୍ଷରେ ଦର୍ଶନ କରିବାକୁ ମନେ ମନେ ଅତ୍ୟନ୍ତ ବ୍ୟାକୁଳ ହେଉଥିଲେ । ମଥୁରାରେ କୃଷ୍ଣଙ୍କୁ ଦର୍ଶନ କରି ସେମାନଙ୍କର ଚିତ୍ତ ଅପୂର୍ବ ପ୍ରେମାନୁଭୂତିରେ ବିହ୍ୱଳ ହୋଇଗଲା । ସେମାନେ ଏପରି ଭାବବିହ୍ୱଳ ହୋଇପଡ଼ିଲେ ଯେ, ନିଜ ନିଜର ନେତ୍ର ଦ୍ୱାରା କୃଷ୍ଣଙ୍କୁ ନିଜ ହୃଦୟ ମଧ୍ୟକୁ ନେଇ ଯାଇ ଭଗବାନଙ୍କର ନିତ୍ୟ ଆନନ୍ଦମୟ ସ୍ୱରୂପକୁ ଆଲିଙ୍ଗନ କଲେ ଏବଂ ସେମାନଙ୍କ ହୃଦୟରେ କୃଷ୍ଣ-ଦର୍ଶନ ନିମିତ୍ତ ଜାତ ହୋଇଥିବା ତୃଷା କିୟତ ପରିମାଣରେ ପ୍ରଶମିତ ହେଲା ।

ମଥୁରାର ରମଣୀମାନେ ପ୍ରାସାଦ ଉପରୁ କୃଷ୍ଣ ଓ ବଳରାମଙ୍କ ଉଦ୍ଦେଶ୍ୟରେ ପୁଷ୍ପମାନ ବୃଷ୍ଟି କରି ନିଜ ନିଜର ହାର୍ଦ୍ଦିକ ସ୍ୱାଗତ ସମ୍ବର୍ଦ୍ଧନା ସେମାନଙ୍କୁ ଜ୍ଞାପନ କଲେ । ବ୍ରାହ୍ମଣ, କ୍ଷତ୍ରିୟ, ଓ ବୈଶ୍ୟମାନେ କୃଷ୍ଣ ଓ ବଳରାମଙ୍କ ଉପରକୁ ଦଧି, ଅକ୍ଷତ, ପବିତ୍ର ଜଳ, ଚନ୍ଦନଆଦି ନିକ୍ଷେପ କରି ସେମାନଙ୍କୁ ବିଭିନ୍ନ ଉପହାର ଓ ପୁଷ୍ପମାଲ୍ୟାଦି ଅର୍ପଣ କରୁଥାନ୍ତି । କୃଷ୍ଣଙ୍କର ଦର୍ଶନରେ ମଥୁରାବାସୀମାନେ ଆନନ୍ଦବିହ୍ୱଳ ହୋଇ ଉଚ୍ଛ୍ୱସିତ ଭାବରେ କୃଷ୍ଣଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କଲେ ଏବଂ

ସେମାନେ କୃତାକୃତ୍ୟ ହୋଇଥାନ୍ତି 'ଧନ୍ୟ, ଧନ୍ୟ ଗୋପବାସୀମାନେ । ସେମାନେ ଏପରି କି ମହାନ ତପସ୍ୟା କରିଥିଲେ, ଯାହାର ପୁଣ୍ୟ ଫଳରୁ ପରମାନନ୍ଦପ୍ରଦାନକାରୀ ଏହି ପରମସୁନ୍ଦର କଶୋରିଦ୍ୱୟଙ୍କୁ ନିରନ୍ତର ଦର୍ଶନ କରିବାର ଅପୂର୍ବ ସୌଭାଗ୍ୟ ସେମାନେ ଅର୍ଜନ କଲେ ! ସେମାନଙ୍କର ସେହି ସୌଭାଗ୍ୟର କି ସ୍ତବକ ପଟାନ୍ତର ନାହିଁ ।'

ମଥୁରାର ରାଜପଥରେ କୃଷ୍ଣ ଯାଉଥିବା ବେଳେ, ଗୋଟିଏ ଧୋବାକୁ ବିଭିନ୍ନ ପରିଷ୍କୃତ ବସ୍ତ୍ର ନେଇ ଯାଉଥିବାର ଦେଖିଲେ ଏବଂ ତାଙ୍କୁ ଡାକି କୃଷ୍ଣ କହିଲେ, 'ରେ ରଜକ, ଉତ୍ତମ ବସ୍ତ୍ର ପରିଧାନ କରିବାକୁ ଆମେ ଦୁହେଁ ଇଚ୍ଛା କରୁଅଛୁ । ଆମ ଶରୀରର ଆକାର ଅନୁସାରେ ତୁମ ନିକଟରେ ଯଦି ଉତ୍ତମ ବସ୍ତ୍ରମାନ ଥାଏ, ତେବେ ଆମକୁ ତାହା ପ୍ରଦାନ କର । ଆମକୁ ପରିଧାନ କରିବା ନିମନ୍ତେ ବସ୍ତ୍ର ପ୍ରଦାନ କଲେ ତୁମର କୌଣସି କ୍ଷତି ହେବ ନାହିଁ ।'

ସେହି ରଜକଟି ଥିଲା କଂସର ଏକାନ୍ତ ଅନୁଗତ ସେବକ । କୃଷ୍ଣଙ୍କର ସେହି କଥା ଶୁଣି ରଜକ ବିରକ୍ତ ହୋଇ କହିଲା, 'ଆରେ ତୋର ଆସ୍ପର୍ଦ୍ଧା ତ କିଛି କମ୍ ନୁହେଁ । ପାହାଡ଼ ଓ ଜଙ୍ଗଲରେ ବାସ କରିବାର ଟୋକା ହୋଇ ତୁ ଏହିସବୁ ରାଜପରିବାର ଉପଯୋଗୀ ବସ୍ତ୍ର ପ୍ରତି ଆଶା କରୁଅଛୁ ? ଆରେ, ଜୀବନରେ କେବେ ଏପରି ବସ୍ତ୍ର ତୁ ପରିଧାନ କରିଛୁ ? ଯଦି ତୋର ନିଜ ଜୀବନ ପ୍ରତି ଲୋଭ ଥାଏ, ତେବେ ଏପରି ଲୋଭରୁ ନିଜକୁ ସଂଯତ କର; ନଚେତ୍ ତୋ ଭାଗ୍ୟରେ ଗୁରୁତର ରାଜଦଣ୍ଡ ଭୋଗକରିବା ଅନିବାର୍ଯ୍ୟ ହୋଇଉଠିବ । ସାବଧାନ ! ତୋ ପରି ଉଚ୍ଛୃଙ୍ଖଳଙ୍କୁ କଂସରାଜ କେବେ କ୍ଷମା କରିବେ ନାହିଁ ।'

ରଜକର ସେହି ଶାଳୀନତାବର୍ଜିତ କଟୁ କଥାରେ କ୍ରୋଧାନ୍ୱିତ ହୋଇ ରଜକକୁ କୃଷ୍ଣ ପ୍ରହାର କଲେ, ଫଳରେ ରଜକର ଶରୀରରୁ ତାର ମସ୍ତକ ବିଚ୍ଛିନ୍ନ ହୋଇ ଭୂଲୁଣ୍ଠିତ ହେଲା । ରଜକର ଏପରି ଦୁର୍ଦ୍ଦଶା ସ୍ୱଚକ୍ଷୁରେ ଦେଖି ସେହି ରଜକର ଅଧୀନରେ କାର୍ଯ୍ୟ କରୁଥିବା ବ୍ୟକ୍ତିମାନେ ନେଉଥିବା ଲୁଗାର ଗଣ୍ଠିଲିଗୁଡ଼ିକୁ ସେହି ରାଜପଥରେ ପରିତ୍ୟାଗ କରି ପ୍ରାଣଭୟରେ ଇତସ୍ତତଃ ପଳାୟନ କଲେ । ରଜକ-ମାନଙ୍କ ଦ୍ୱାରା ପରିତ୍ୟକ୍ତ ହୋଇଥିବା ଲୁଗା ଗଣ୍ଠିଲିରୁ ଆବଶ୍ୟକୀୟ

ଉତ୍ତମ ବସ୍ତମାନ ବାଛି ସାଙ୍ଗ ଗୋପବାଳକମାନଙ୍କ ସହିତ କୃଷ୍ଣ ଓ ବଳରାମ ପରିଧାନ କଲେ ଏବଂ ଅବଶିଷ୍ଟ ବସ୍ତ୍ରକୁ ସେହିଠାରେ ଛାଡ଼ି ଦେଇ ରାଜପଥରେ ପୂର୍ବ ପରି ଅଗ୍ରସର ହେଲେ । ରାଜପଥରେ ଏକ ତନ୍ତୁବାୟୀ କୃଷ୍ଣ ଓ ବଳରାମଙ୍କର ସୁନ୍ଦର ରୂପ ଓ ଠାଣିରେ ମୁଗ୍ଧ ହୋଇ ସେମାନଙ୍କୁ ସୁନ୍ଦର ଭାବରେ ବସ୍ତ୍ର ପରିଧାନ କରାଇଲା । କୃଷ୍ଣ ସେହି ତନ୍ତୁବାୟୀର କାର୍ଯ୍ୟ ଓ ସେବାରେ ସନ୍ତୁଷ୍ଟ ହୋଇ ତାକୁ ଆଶୀର୍ବାଦ କଲେ, ଯାହାଫଳରେ ସେହି ତନ୍ତୁବାୟୀଟି ଜୀବଦ୍ଦଶାରେ ପ୍ରଭୂତ ଧନସମ୍ପତ୍ତି, ଐଶ୍ୱର୍ଯ୍ୟ, ଇନ୍ଦ୍ରିୟଶକ୍ତି ଓ ମୃତ୍ୟୁ ପରେ ଭଗବାନଙ୍କର ସାରୂପ୍ୟ ମୋକ୍ଷପଦ ପ୍ରାପ୍ତିର ସୌଭାଗ୍ୟ ଲାଭ କରିଥିଲା ।

କୃଷ୍ଣ ବାଟରେ ଯାଉଁ ଯାଉଁ ସୁଦାମା ନାମକ ଏକ ମାଳୀ ନିକଟରେ ପହଞ୍ଚିଲେ । କୃଷ୍ଣ ଓ ବଳରାମଙ୍କୁ ଦେଖି ସୁଦାମା କୃତକୃତ୍ୟ ହୋଇ ପରମଭକ୍ତି ସହକାରେ ତାଙ୍କୁ ପ୍ରଣାମ କଲା ଏବଂ ସେମାନଙ୍କୁ ଉପଯୁକ୍ତ ପାଦ୍ୟଅର୍ଘ୍ୟ, ଆସନାଦିରେ ସମ୍ବର୍ଦ୍ଧିତ କରି ସେମାନଙ୍କୁ ବିଭିନ୍ନ ପୁଷ୍ପମାଳାରେ ସୁସଜ୍ଜିତ କଲା । କୃଷ୍ଣଙ୍କୁ ପୂଜା କରି ସୁଦାମା କହିଲା, 'ପ୍ରଭୁ, ଆପଣଙ୍କ ଆଗମନରେ ମୋର ଜନ୍ମ ସାର୍ଥକ ହୋଇଅଛି । ମୋର ବଂଶ ଆଜି ପବିତ୍ର ହେଲା । ମୁଁ ଆଜି ପିତୃଋଣ, ଋଷିଋଣ ଓ ଦେବଋଣରୁ ମୁକ୍ତ ହେଲି । ଆପଣ ଅଖିଳ ଜଗତର କାରଣ । ଆପଣ ସାଧୁମାନଙ୍କର କଲ୍ୟାଣ ସାଧନ କରିବା ନିମନ୍ତେ ଗୋପ ଓ ଯାଦବ-ମାନଙ୍କ ଗହଣରେ ଅବତୀର୍ଣ୍ଣ ହୋଇଅଛନ୍ତି । ଆପଣଙ୍କ ଦୃଷ୍ଟିରେ, ଉଚ୍ଚ ନୀଚ, ସମସ୍ତେ ସମାନ ଏବଂ ଆପଣ ସର୍ବଭୂତରେ ସମରୂପରେ ଅବସ୍ଥାନ କରୁଅଛନ୍ତି । ମୁଁ ଆପଣଙ୍କର ହୀନ ସେବକ ମାତ୍ର । ମୋତେ ଆଜ୍ଞା ପ୍ରଦାନ କରନ୍ତୁ ଯେପରି ମୁଁ ଆପଣଙ୍କର ଯୋଗ୍ୟ ସେବା କରିବାକୁ ସମର୍ଥ ହୁଏ ।'

ଏହା କହି କୃଷ୍ଣ ଓ ବଳରାମଙ୍କ ଗଳାରେ ସୁଗନ୍ଧିତ ପୁଷ୍ପରେ ପ୍ରସ୍ତୁତ ସୁନ୍ଦର ପୁଷ୍ପମାଳାମାନ ପିନ୍ଧାଇ ଦେଲା ଏବଂ କହିଲା, 'ପ୍ରଭୁ, ଆପଣ ସମସ୍ତ ପ୍ରାଣୀଙ୍କର ଆତ୍ମା । ଆପଣଙ୍କ ଶ୍ରୀଚରଣରେ ମୋର ଅଚଳା ଭକ୍ତି ରହୁ । ଭଗବଦ୍ ଭକ୍ତଙ୍କ ପ୍ରତି ମୋ ମନରେ ଚିର ସୌହାର୍ଦ୍ଦ୍ୟ ପ୍ରକାଶ ପାଉ ଏବଂ ସମସ୍ତ ପ୍ରାଣୀଙ୍କ ପ୍ରତି ମୋର ହୃଦୟରେ ସଦା ଦୟା

ଉଦ୍ରେକ ହେଉ; ଏହା ହିଁ ଆପଣଙ୍କ ଶ୍ରୀଚରଣରେ ମୋର ବିନୀତ ପ୍ରାର୍ଥନା ।’ ଏହା କହି କୃଷ୍ଣଙ୍କ ଚରଣରେ ସୁଦାମା ପ୍ରଣିପାତ ହେଲା ।

ସୁଦାମା ମାଳୀ ପ୍ରତି ପ୍ରସନ୍ନ ହୋଇ ଭଗବାନ କୃଷ୍ଣ ବର ପ୍ରଦାନ କଲେ ଯାହା ଫଳରେ ବଂଶପରମ୍ପରା କ୍ରମେ ସାଂସାରିକ ସମସ୍ତ ସୁଖ ଓ କୀର୍ତ୍ତି ତଥା କାନ୍ତିର ସେ ଅଧିକାରୀ ହେଲା ।

ସୁଦାମାଠାରୁ ବିଦାୟ ନେଇ ଗୋପବାଳକମାନଙ୍କ ସହିତ କୃଷ୍ଣ ଓ ବଳରାମ ପୁନର୍ବାର ରାଜପଥରେ ଅଗ୍ରସର ହେଲେ । କିଛି ଦୂର ଯିବା ପରେ ଏକ କୁବ୍‌ଜା ରମଣୀକୁ ହାତରେ ଚନ୍ଦନାଦି ଅଙ୍ଗଲେପନ ନେଇ ଯାଉଥିବାର କୃଷ୍ଣ ଦେଖିଲେ । ସେହି ରମଣୀର ଶରୀର କୁଜା ହୋଇ ଯାଇଥିବାରୁ ସେ ଅତ୍ୟନ୍ତ ବିକୃତ ଓ ଅସୁନ୍ଦର ଦେଖାଯାଉଥିଲା ।

କୃଷ୍ଣ ତାକୁ ପଚାରିଲେ, ‘ତୁମେ କିଏ ? ଏହି ଅଙ୍ଗରାଗ ସାମଗ୍ରୀ ନେଇ କେଉଁଆଡ଼େ ଯାଉଅଛ ? ଏହି ଚନ୍ଦନାଦି ଆମ୍ଭମାନଙ୍କର ବ୍ୟବହାରଯୋଗ୍ୟ ଅଟେ । ଏହାକୁ ଯଦି ତୁମେ ଆମକୁ ପ୍ରଦାନ କର ତେବେ ଚହିଁରେ ତୁମର ମଙ୍ଗଳ ହେବ ।’

କୃଷ୍ଣଙ୍କର କଥା ଶୁଣି ରମଣୀଟି କହିଲା, ‘ହେ ସୌମ୍ୟ, କଂସ ରାଜାଙ୍କର ମୁଁ ବିଶ୍ୱସ୍ତ ଦାସୀ । ଅଙ୍ଗରାଗ ଲେପନ କରିବା ମୋର କାର୍ଯ୍ୟ । ମୋର ଶରୀର ବକ୍ର ଓ ବିକୃତ ହୋଇଥିବାରୁ, ଲୋକମୁଖରେ ମୁଁ ତ୍ରିବକ୍ରା ନାମରେ ପରିଚିତା । ମୁଁ ରାଜାଙ୍କର ସେବାରେ ଥିବାରୁ, ରାଜାଙ୍କ ନିମନ୍ତେ ଏହି ଚନ୍ଦନାଦି ଲେପନ ନେଇ ଯାଉଅଛି । ରାଜା ଏସବୁକୁ ଅତି ଭଲ ପାଆନ୍ତି । ରାଜାଙ୍କର ଏହି ପ୍ରିୟ ଅନୁଲେପନକୁ ବ୍ୟବହାର କରିବା ନିମନ୍ତେ ତୁମ ଦୁହିଁଙ୍କୁ ଯୋଗ୍ୟ ବୋଲି ବିଚାରୁଛି ।’

କୃଷ୍ଣଙ୍କର ରୂପ, ସୌନ୍ଦର୍ଯ୍ୟ, ରସିକତା, ବାକ୍‌ଚାତୁରୀ ଓ କଟାକ୍ଷାଦି ଦେଖି ତ୍ରିବକ୍ରାର ହୃଦୟ ଆନନ୍ଦରେ ମୋହିତ ହୋଇଗଲା । ରାଜା କଂସଙ୍କ ବ୍ୟତୀତ ଅନ୍ୟ କାହାକୁ ସେହି ଅଙ୍ଗରାଗ ଦେବାର କଥା ନୁହେଁ, ଏହା ଜାଣି ସୁଦ୍ଧା ତ୍ରିବକ୍ରା ସେସବୁକୁ କୃଷ୍ଣ ଓ ବଳରାମଙ୍କୁ ପ୍ରଦାନ କଲା । ତ୍ରିବକ୍ରା ପ୍ରଦତ୍ତ ସେହି ଅଙ୍ଗରାଗରେ ଭୂଷିତ ହୋଇ କୃଷ୍ଣ

ଓ ବଳରାମ ଅତ୍ୟନ୍ତ ଶୋଭାଯୁକ୍ତ ଦେଖାଗଲେ । ତ୍ରିବକ୍ରାର ବ୍ୟବହାର କୃଷ୍ଣଙ୍କୁ ଅତ୍ୟନ୍ତ ପ୍ରୀତ କଲା । ଭଗବଦ୍ ଦର୍ଶନର ଅଲୌକିକ ପୁଣ୍ୟଫଳ ସମସ୍ତଙ୍କୁ ଦେଖାଇଦେବା ନିମନ୍ତେ ସର୍ବଫଳପ୍ରଦାନକାରୀ ଭଗବାନ କୃଷ୍ଣ ତ୍ରିବକ୍ରାର କୁବ୍ଜ ଶରୀରକୁ ସଳଖ ଓ ସୁନ୍ଦର କରିଦେବାକୁ ଇଚ୍ଛା ପୋଷଣ କରି ତା'ର ପାଦ ଦୁଇଟିକୁ ନିଜର ପାଦ ଦ୍ୱାରା ଚାପି ଧରି, ଦକ୍ଷିଣ ହସ୍ତରେ ତା'ର ଓଷ୍ଠକୁ ଏବଂ ବାମ ହସ୍ତରେ ତାର ପୃଷ୍ଠକୁ ଧରି ତା'ର ବକ୍ର ଶରୀରକୁ ଟାଣି ସିଧା କରିଦେଲେ । କୃଷ୍ଣଙ୍କର ସ୍ପର୍ଶ ଲାଭ କରି ତ୍ରିବକ୍ରାର ବକ୍ର ଓ ବିକୃତ ଅଙ୍ଗ ପ୍ରତ୍ୟଙ୍ଗ ସଳଖ ହୋଇଗଲା ଏବଂ ତହିଁ ସଙ୍ଗେ ସଙ୍ଗେ ତା'ର ନିତମ୍ବ ଓ ପୟୋଧର ସୁନ୍ଦର ଆକୃତି ଲାଭ କଲା; ଫଳରେ ସେ ଏକ ପରମା ସୁନ୍ଦରୀ ରମଣୀରେ ପରିଣତ ହେଲା । କୃଷ୍ଣଙ୍କ ସ୍ପର୍ଶ ତ୍ରିବକ୍ରାର ହୃଦୟରେ କୃଷ୍ଣଙ୍କ ପ୍ରତି ଅପୂର୍ବ ଅନୁରାଗ ଓ ଭକ୍ତି ସୃଷ୍ଟି କଲା ।

କୃଷ୍ଣଙ୍କର ଉତ୍ତରୀୟର ଅଗ୍ରଭାଗକୁ ଧରି ତ୍ରିବକ୍ରା କହିଲା, 'ହେ ବୀର, ମୋ ସହିତ ମୋର ବାସଗୃହକୁ ଚାଲ । ତୁମକୁ ଛାଡ଼ି ମୁଁ ଏକାକିନୀ ଘରକୁ ଯାଇ ପାରିବି ନାହିଁ । ହେ ପୁରୁଷର୍ଷଭ, ମୋ ପ୍ରତି ପ୍ରସନ୍ନ ହୁଅ ଏବଂ ମୋର ଏହି ପ୍ରାର୍ଥନାକୁ ସ୍ୱୀକାର କର ।'

କାମପୀଡ଼ିତା ତ୍ରିବକ୍ରାର ପ୍ରାର୍ଥନା ଶ୍ରବଣ କରି ବଳରାମ ଓ ସାଥୀ ଗୋପବାଳକମାନଙ୍କୁ ଚାହିଁ କୃଷ୍ଣ ସାମାନ୍ୟ ହସିଲେ ଏବଂ କହିଲେ, 'ହେ ସୁଭ୍ରୂ ସୁନ୍ଦରୀ, ଯେଉଁ କାର୍ଯ୍ୟ ଉଦ୍ଦେଶ୍ୟରେ ଆମେ ଘରୁ ଗୋଡ଼ କାଢ଼ିଆସିଛୁ, ତାହା ସମ୍ପନ୍ନ ହେଲେ ମୁଁ ତୁମ ଗୃହକୁ ଆସିବି । ଆମ ପରି ବାସଗୃହହୀନ ପଥୁକାଙ୍କର ତୁମେ ହିଁ ହେବ ଆଶ୍ରୟଦାତ୍ରୀ ।'

ମଧୁର ପ୍ରତିଶ୍ରୁତିରେ ତ୍ରିବକ୍ରାକୁ ବିଦାୟ ଦେଇ କୃଷ୍ଣ ସଦଳବଳ ପୂର୍ବପରି ରାଜମାର୍ଗରେ ଅଗ୍ରସର ହେଲେ । କୃଷ୍ଣଙ୍କୁ ଦର୍ଶନ କରିବା ନିମନ୍ତେ ମଥୁରାର ରମଣୀମାନଙ୍କ ମଧ୍ୟରେ ଅଭୂତପୂର୍ବ ବ୍ୟାକୁଳତା ପ୍ରକାଶ ପାଇଥିଲା । ବହୁଜନସମାଗମ ମଧ୍ୟରେ କୃଷ୍ଣଙ୍କୁ ଭଲ କରି ଦେଖିବା ନିମନ୍ତେ ସେମାନେ ଏପରି ବ୍ୟସ୍ତ ହୋଇ ପଡ଼ିଲେ ଯେ ସେମାନଙ୍କ ମଧ୍ୟରୁ କାହାର ପରିଧାନ ବସ୍ତ୍ର ତଳେ ଲୋଟି ଗଲାଣି ତ,

କାହାର କବରୀ ଫିଟି ଗଲାଣି, ଅଥଚ ସେଥିପ୍ରତି ସେମାନଙ୍କର ଜ୍ଞାନ ନାହିଁ ! ସେମାନେ ଚନ୍ଦ୍ରପ୍ରତିମା ପରି ନିର୍ବାକ ଓ ନିଶ୍ଚଳ ଭାବରେ ଅପଲକ ନୟନରେ କୃଷ୍ଣଙ୍କ ରୂପସୁଧାକୁ ପାନ କରିବାକୁ ଲାଗିଥାନ୍ତି । ରମଣୀମାନଙ୍କର ସେହି ମୁଗ୍ଧ ବିହ୍ୱଳ ଦୃଷ୍ଟିରେ ସମ୍ବର୍ଦ୍ଧିତ ହୋଇ କୃଷ୍ଣ ଧୀରେ ଧୀରେ ସାଥିମାନଙ୍କ ସହିତ ରାଜପଥରେ ଅଗ୍ରସର ହେଉଥାନ୍ତି । ମଥୁରାର ରାଜପଥରେ କୃଷ୍ଣଙ୍କର ସେହି ଗମନକାଳୀନ ଦୃଶ୍ୟର ବାସ୍ତବିକ ପଟାନ୍ତର ନ ଥିଲା ।



## ଧନୁଭଙ୍ଗ ଓ ରଙ୍ଗସଭା

ମଥୁରାର ରାଜପଥରେ ଯାଇ ବଳରାମ ଓ ସାଥି ଗୋପବାଳକଙ୍କ ଗହଣରେ କୃଷ୍ଣ ଯାଉଁ ଯାଉଁ ଅବଶେଷରେ ଧନୁ-ଯଜ୍ଞ ଅନୁଷ୍ଠିତ ହେଉଥିବାର ସ୍ଥାନରେ ପହଞ୍ଚିଲେ । ଯଜ୍ଞ ସ୍ଥାନରେ ଇନ୍ଦ୍ରଧନୁ ପରି ଏକ ବିଶାଳ ଧନୁ ମଣ୍ଡପ ଉପରେ ସ୍ଥାପନ କରି ବ୍ରାହ୍ମଣମାନେ ମନ୍ତ୍ରପାଠ କରି ପୂଜା କରୁଥିଲେ ଏବଂ ସେହି ସ୍ଥାନରେ ରାଜରକ୍ଷୀମାନେ ପ୍ରହରା ଦେଉଥିଲେ । ଯଜ୍ଞ ସ୍ଥାନରେ ସେହି ବିଶାଳ ଧନୁକୁ ଦେଖି ତାକୁ ଧରିବାକୁ ଗଲାବେଳେ ରାଜରକ୍ଷୀମାନେ କୃଷ୍ଣଙ୍କୁ ବାରଣ କଲେ; କିନ୍ତୁ ସେମାନଙ୍କର ବାରଣକୁ ଭ୍ରୂକ୍ଷେପ ନ କରି କୃଷ୍ଣ ଧନୁକୁ ଯାଇ ଉଠାଇଲେ ଏବଂ ତହିଁରେ ଗୁଣ ଆରୋପ କରିବାକୁ ଉଦ୍ୟମ କଲେ । ଧନୁଟି ଅତ୍ୟନ୍ତ ବିଶାଳ ଓ ଶକ୍ତିଶାଳୀ ହୋଇଥିଲେ ମଧ୍ୟ କୃଷ୍ଣଙ୍କର ପରାକ୍ରମକୁ ସହ୍ୟ କରିବାର ସାମର୍ଥ ତା'ର ନ ଥିଲା; ତେଣୁ ଗୁଣ ଆରୋପ କରିବା ନିମନ୍ତେ କୃଷ୍ଣ ଧନୁଟିକୁ ଟାଣିବା ମାତ୍ରେ ତାହା ଭୀଷଣ ଗର୍ଜନ କରି ମଝିରୁ ଭାଙ୍ଗି ଦୁଇଖଣ୍ଡ ହୋଇଗଲା । ସେହି ଧନୁଭଙ୍ଗରୁ ଶବ୍ଦ ଏପରି ବିରାଟ ଓ ବିକଟ ଥିଲା ଯେ, ସେହି ଶବ୍ଦରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହୋଇଗଲା । ଯଜ୍ଞର ପୂଜିତ ଧନୁ କୃଷ୍ଣଙ୍କ ଦ୍ୱାରା ଭଗ୍ନ ହୋଇଥିବାର ଦେଖି ଉପସ୍ଥିତ ରାଜକର୍ମଚାରୀମାନେ କୃଷ୍ଣ ତଥା ଗୋପବାଳକମାନଙ୍କୁ ବନ୍ଦୀ କରିବା ନିମନ୍ତେ ଚତୁର୍ଦ୍ଦିଗରୁ ଘେରିଗଲେ । ସଶସ୍ତ୍ର ରକ୍ଷୀମାନଙ୍କର ଆକ୍ରମଣକୁ ପ୍ରତିହତ କରିବା ନିମନ୍ତେ ନିକଟରେ ପଡ଼ିଥିବା ଭଗ୍ନଧନୁରୁ ଖଣ୍ଡେ ଖଣ୍ଡେ ଧରି କୃଷ୍ଣ ଓ ବଳରାମ ରକ୍ଷୀମାନଙ୍କୁ ପ୍ରହାର କରିବାକୁ ଲାଗିଲେ । କୃଷ୍ଣ ଓ ବଳରାମଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ରକ୍ଷୀ ତଥା ସମବେତ ବ୍ୟକ୍ତିମାନେ ଆର୍ତ୍ତଚିତ୍କାର କଲେ ଏବଂ ଯଜ୍ଞସ୍ଥାନ ସମରକାଳୀନ ଚିତ୍କାର ଓ କୋଳାହଳରେ କମ୍ପିଉଠିଲା ।

ଭୋଜରାଜ କଂସଙ୍କ ନିକଟରେ ସେହି ସମ୍ବାଦ ପହଞ୍ଚିବାରେ ବିଳମ୍ବ ହେଲା ନାହିଁ । ସେ ସଙ୍ଗେ ସଙ୍ଗେ କେତେକ ସୈନ୍ୟଙ୍କୁ

ଯଜ୍ଞ ସ୍ଥାନକୁ ପ୍ରେରଣ କଲେ; କିନ୍ତୁ ରକ୍ଷୀମାନଙ୍କ ସହିତ ସେହି ନବାଗତ ସୈନ୍ୟମାନଙ୍କୁ କୃଷ୍ଣ ଓ ବଳରାମ ସଂହାର କରି ପ୍ରଫୁଲ୍ଲ ଚିତ୍ତରେ ଯଜ୍ଞାଗାରରେ ବିଚରଣ କଲେ । ସମବେତ ଦର୍ଶକମାନେ କୃଷ୍ଣଙ୍କର ଧନୁଭଙ୍ଗ ଓ ସୈନ୍ୟସଂହାର ଆଦି କାର୍ଯ୍ୟ ଦେଖି ତେଜ, ବୀର୍ଯ୍ୟ ଓ ରୂପର ବିଚାରରେ କୃଷ୍ଣଙ୍କୁ ସର୍ବଶ୍ରେଷ୍ଠ ଦେବତା ବୋଲି ଭାବିଲେ ।

ସୂର୍ଯ୍ୟ ଅସ୍ତାଚଳଗାମୀ ହେବାରୁ କୃଷ୍ଣ ଓ ବଳରାମ ସାଥି ଗୋପବାଳକଙ୍କ ସହିତ ଯଜ୍ଞସ୍ଥାନ ତ୍ୟାଗକରି ବାହାରକୁ ଆସିଲେ । ସନ୍ଧ୍ୟା ଉପଗତ ହେଉଥିବାରୁ ନନ୍ଦରାଜପ୍ରମୁଖ ଗୋପମାନେ ଉପହାର ସାମଗ୍ରୀମାନ ସହିତ ଯେଉଁ ଉପବନରେ ରାତ୍ରି ଯାପନ କରିବାକୁ ବସିଥିଲେ, ସେହି ସ୍ଥାନକୁ କୃଷ୍ଣ ଓ ବଳରାମପ୍ରମୁଖ ଫେରି ଆସିଲେ । ରାତ୍ରି ସେହିଠାରେ ସେମାନେ ଅତିବାହିତ କଲେ । କଂସର ମନ୍ଦ ଅଭିପ୍ରାୟ ଓ ଦୁରଭିସନ୍ଧିର କଥା ଲୋକମୁଖରୁ କୃଷ୍ଣ ଓ ବଳରାମ ଶୁଣିବାକୁ ପାଇଥିଲେ ମଧ୍ୟ ତାହା ସେମାନଙ୍କର ସୁଖନିଦ୍ରାରେ କୌଣସି ବାଧା ସୃଷ୍ଟି କରି ନ ଥିଲା ।

କୃଷ୍ଣ ଓ ବଳରାମଙ୍କର ଅଦ୍ଭୁତ କାର୍ଯ୍ୟର ବୃତ୍ତାନ୍ତ ଚତୁର୍ଦ୍ଦିଗରେ ବିଦ୍ୟୁତ୍‌ବେଗରେ ବ୍ୟାପିଗଲା । କଂସ ସେହି ସମ୍ବାଦ ଶୁଣି ଭୟରେ ଅତ୍ୟନ୍ତ ବିଚଳିତ ହୋଇପଡ଼ିଲା । ରାତିରେ ତାକୁ ନିଦ ହେଲା ନାହିଁ । ସବୁ ସମୟରେ କୃଷ୍ଣଙ୍କର ଅଲୌକିକ କାର୍ଯ୍ୟ ଓ ପରାକ୍ରମର କଥା ସହିତ ତା'ର ନିଜ ମୃତ୍ୟୁର ଚିନ୍ତା ତା'ର ଭାବନାକୁ ଆବୋରି ବସିଲା । ଅଶୁଭ ଦୃଶ୍ୟମାନ ତା'ର ଦୃଷ୍ଟି ସମ୍ମୁଖରେ ପ୍ରକଟିତ ହେଲା । ଜଳରେ କଂସ ନିଜର ମସ୍ତକବିହୀନ ପ୍ରତିବିମ୍ବ ଏବଂ ନିଜର ତଥା ଚନ୍ଦ୍ରର ଏକ ସମୟରେ ଗୋଟିଏ ପାତ୍ରସ୍ଥ ଜଳରେ ଦୁଇ ଦୁଇଟି ପ୍ରତିବିମ୍ବ ସେ ଦେଖିବାକୁ ପାଇଲା । ଚତୁର୍ଦ୍ଦିଗ ନିସ୍ତବ୍ଧ ଥିଲେ ମଧ୍ୟ ନିଜ କର୍ଣ୍ଣରେ ସେ ଖିଷଣ ଶବ୍ଦମାନ ଶୁଣିବାକୁ ପାଇଲା । ଭୟରେ କର୍ଣ୍ଣ ବନ୍ଦକଲେ ମଧ୍ୟ ସେହି ଭୟାନକ ଶବ୍ଦ ଶ୍ରବଣରୁ ନିସ୍ତାର ପାଇଲା ନାହିଁ । ସ୍ୱପ୍ନରେ କଂସ ଦେଖିଲା ଯେ, ପ୍ରେତପୂରୁଷମାନେ ତାକୁ ଆସି ଆଲିଙ୍ଗନ କରୁଅଛନ୍ତି ଓ ସେ ଉଲଗ୍ନ ତୈଳାକ୍ତ କଳେବରରେ ଜବାପୁଷ୍ପର ମାଳ ପରିଧାନ କରି ଗଧ ଉପରେ ଆରୋହଣ କରି ବିଚରଣ କରୁଛି ଏବଂ

ବିଷ ଭକ୍ଷଣ କରୁଛୁ । ଏହିପରି ଅଶୁଭ ଦୃଶ୍ୟମାନ ଦର୍ଶନ ଓ ଶବ୍ଦ ଶ୍ରବଣ କରି କଂସ ନିଜର ମୃତ୍ୟୁଭୟରେ ଭୟଭୀତ ଓ ବିଚଳିତ ହୋଇପଡ଼ିଲା ।

ପରମ ଭୟ, ଅସ୍ଥିରତା ଓ ମାନସିକ ଦୁଶ୍ଚିନ୍ତା ମଧ୍ୟରେ କୌଣସି-ମତେ ରାତ୍ରି ଅବସାନ ହେବା ପର୍ଯ୍ୟନ୍ତ ଅପେକ୍ଷା କଲା ଏବଂ ପ୍ରଭାତ ହେବା ମାତ୍ରେ ନିଜର ମଲ୍ଲମାନଙ୍କୁ ମଲ୍ଲଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହୋଇ ରହିବାକୁ ଆଦେଶ ଦେଲା ।

କଂସର ଆଜ୍ଞାନୁସାରେ ମଲ୍ଲକ୍ରୀଡ଼ା ନିମନ୍ତେ ପୂର୍ବରୁ ନିର୍ଦ୍ଧାରିତ ହୋଇଥିବା ସ୍ଥାନଟି ତୋରଣ, କଳସ, ମାଲ୍ୟ, ପତାକା ଓ ବିଭିନ୍ନ ଚନ୍ଦ୍ରାତପରେ ସଙ୍ଗେ ସଙ୍ଗେ ସୁସଜ୍ଜିତ ହୋଇଗଲା । ବିଭିନ୍ନ ବାଦ୍ୟ-ଧ୍ୱନିରେ ସ୍ଥାନଟି ମୁଖରିତ ହୋଇଉଠିଲା । ବିଭିନ୍ନ ସ୍ଥାନରୁ ଆମନ୍ତ୍ରିତ ହୋଇ ଆସିଥିବା ବ୍ରାହ୍ମଣ, କ୍ଷତ୍ରିୟ, ରାଜା ତଥା ପୁରବାସୀମାନେ ମଲ୍ଲକ୍ରୀଡ଼ା ଦେଖିବା ନିମନ୍ତେ କ୍ରୀଡ଼ାଭୂମି ନିକଟସ୍ଥ ରାଜ୍ୟାଣୀମଣ୍ଡପରେ ଉପବେଶନ କଲେ । ପ୍ରସିଦ୍ଧ ମଲ୍ଲମାନଙ୍କ ଗହଣରେ ରହିଲେ ମନରୁ ଗତ ରାତ୍ରିର ସେହି ମାନସିକ ଦୁଶ୍ଚିନ୍ତାର ଅବସାନ ଘଟିବ ବୋଲି ଭାବି କଂସ ସେହି କ୍ରୀଡ଼ାଭୂମିରେ ମଧ୍ୟ ଅବସ୍ଥାନ କଲା ।

ଯଥାସମୟରେ ଚାଣୁର, ମୁଷ୍ଟିକ, କୂଟ, ଶଳ, ତୋଶଳ ପ୍ରମୁଖ ପ୍ରସିଦ୍ଧ ମଲ୍ଲମାନେ କ୍ରୀଡ଼ା ଉପଯୋଗୀ ବେଶଭୂଷାରେ ଭୂଷିତ ହୋଇ ମଲ୍ଲଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହୋଇ ସେଠାରେ ଆସି ପହଞ୍ଚିଲେ । ମଲ୍ଲକ୍ରୀଡ଼ା ଆରମ୍ଭ ହେବା ପୂର୍ବରୁ ନନ୍ଦରାଜାପ୍ରମୁଖ ଗୋପବାସୀମାନେ ସଙ୍ଗରେ ଆଣିଥିବା ବିଭିନ୍ନ ଉପହାର ଓ ଉପଢ଼ୌକନକୁ ଭୋଜରାଜ କଂସଙ୍କ ସମ୍ମୁଖରେ ନିବେଦନ କରି ସେହି କ୍ରୀଡ଼ାଭୂମିର ଏକ ପାର୍ଶ୍ୱରେ ଅବସ୍ଥାନ କଲେ ।

ମଲ୍ଲଯୁଦ୍ଧ ଅନୁଷ୍ଠିତ ହେବାକୁ ଯାଉଥିବା ସେହି ରଙ୍ଗସ୍ଥଳୀଟି ବିଭିନ୍ନ ପ୍ରକାରର ବାଦ୍ୟଧ୍ୱନିରେ ମୁଖରିତ ହେଉଥିଲା । ସେହି ବାଦ୍ୟଧ୍ୱନିରେ ଆକୃଷ୍ଟ ହୋଇ କୃଷ୍ଣ ଓ ବଳରାମପ୍ରମୁଖ ମଧ୍ୟ ମଲ୍ଲଯୁଦ୍ଧ ଦେଖିବା ନିମନ୍ତେ ସେହି ସ୍ଥାନର ମୁଖ୍ୟ ଦ୍ୱାରଦେଶରେ ଆସି ସେହି ସମୟରେ ପହଞ୍ଚିଲେ ।

ରଙ୍ଗସଭାରେ କୃଷ୍ଣ ଓ ବଳରାମ ପ୍ରବେଶ କରିବା ପୂର୍ବରୁ ସେମାନଙ୍କୁ ସଂହାର କରିବା ଉଦ୍ଦେଶ୍ୟରେ କଂସର ଆଦେଶକ୍ରମେ ଏକ ବିଶାଳକାୟ କୁବଳୟାପୀଡ଼ ନାମକ ଏକ ଶକ୍ତିଶାଳୀ ଗଜକୁ ରଙ୍ଗସଭାର ଦ୍ୱାରଦେଶରେ ରଖାଯାଇଥିଲା । ରଙ୍ଗସଭାର ପ୍ରବେଶଦ୍ୱାରକୁ ଅବରୁଦ୍ଧ କରି ଏକ ବିଶାଳକାୟ ମତ୍ତହସ୍ତୀକୁ ଦଣ୍ଡାୟମାନ ଥିବାର ଦେଖି ହସ୍ତୀର ମାହୁନ୍ତକୁ କୃଷ୍ଣ କହିଲେ, 'ହେ ମାହୁନ୍ତ, ରଙ୍ଗସଭାର ପ୍ରବେଶ ପଥରେ ଏପରି ପ୍ରତିବନ୍ଧକ ହୋଇ ଛିଡ଼ା ହେବାର କାରଣ କ'ଣ ? ଆମେ ରଙ୍ଗସଭା ଦେଖିବାକୁ ଯାଉଁଛୁ । ତେଣୁ ହସ୍ତୀ ସହିତ ନିଜର ଜୀବନକୁ ଯଦି ରକ୍ଷା କରିବାକୁ ଚାହୁଁଥାଅ ତେବେ ଭଲରେ ଭଲରେ ଦ୍ୱାରଦେଶରୁ ହାତୀଟିକୁ ଅପସାରିତ କରି ଆମ ପାଇଁ ପ୍ରବେଶ ପଥ ପରିଷ୍କାର କରି ଦେ ।'

କୃଷ୍ଣଙ୍କ କଥା ଶୁଣି ପ୍ରବେଶ ଦ୍ୱାରରୁ ହସ୍ତୀକୁ ଦୂରେଇ ନେବା ଦୂରେ ଥାଉ କୃଷ୍ଣଙ୍କୁ ଆକ୍ରମଣ କରିବା ନିମନ୍ତେ ମାହୁନ୍ତଟି ହସ୍ତୀକୁ ନିର୍ଦ୍ଦେଶ ଦେଲା । ସଙ୍ଗେ ସଙ୍ଗେ ମତ୍ତହସ୍ତୀଟି କୃଷ୍ଣଙ୍କ ଆଡ଼କୁ ମାଡ଼ିଆସି ଶୁଣ୍ଢଦ୍ୱାରା କୃଷ୍ଣଙ୍କୁ ଜାବୁଡ଼ି ଧରିଲା । କୃଷ୍ଣ ଏଥିପାଇଁ ପ୍ରସ୍ତୁତ ନ ଥିଲେ; ତେଣୁ କୌଶଳକ୍ରମେ ହସ୍ତୀର ଶୁଣ୍ଢରୁ ନିଜକୁ ମୁକ୍ତକରି ହସ୍ତୀର ପଛ ଗୋଡ଼ ପଛରେ ଅବସ୍ଥାନ କଲେ ଯେପରି ହସ୍ତୀ ତାଙ୍କୁ ଦେଖିପାରିବ ନାହିଁ । କୃଷ୍ଣଙ୍କୁ କେଉଁଠି ନ ଦେଖି ହସ୍ତୀଟି କ୍ରୋଧାନ୍ୱିତ ହେଲା ଏବଂ ନିଜର ଘ୍ରାଣଶକ୍ତି ଦ୍ୱାରା କୃଷ୍ଣଙ୍କର ଅବସ୍ଥିତିକୁ ଅନୁମାନ କରି ପୁନର୍ବାର ଶୁଣ୍ଢ ଦ୍ୱାରା ତାଙ୍କୁ ଜାବୁଡ଼ି ଧରିଲା । ଏଥର ମଧ୍ୟ କୃଷ୍ଣ ନିଜର ଶକ୍ତି ପ୍ରୟୋଗ କରି ହସ୍ତୀର ଶୁଣ୍ଢରୁ ନିଜକୁ ମୁକ୍ତ କରି ନେଲେ ଏବଂ ହସ୍ତୀର ପୁଚ୍ଛକୁ ଧରି ଓ ଟାଣି ଟାଣି ହସ୍ତୀକୁ ବହୁଦୂର ପର୍ଯ୍ୟନ୍ତ ଘୋଷାରି ନେଲେ । କୃଷ୍ଣଙ୍କ ଶକ୍ତିକୁ ପ୍ରତିହତ କରିବାର ସାମର୍ଥ୍ୟ କୃଷ୍ଣଙ୍କର ନ ଥିଲା । ବହୁଦୂର ପର୍ଯ୍ୟନ୍ତ ହାତୀକୁ ଘୋଷାରି ନେବା ପରେ କୃଷ୍ଣ ଜାଣି ଜାଣି ନିଜର ବଜ୍ରମୁଷ୍ଟିକୁ ସାମାନ୍ୟ କୋହଳ କରି ଦେଲେ, ଫଳରେ କ୍ରୋଧାନ୍ୱିତ ହସ୍ତୀଟି ମୁହଁ ବୁଲାଇ କୃଷ୍ଣଙ୍କୁ ଆକ୍ରମଣ କରିବାକୁ ଗଲା । ମାତ୍ର ହାତୀଟି ମୁହଁ ବୁଲାଇଲା ମାତ୍ରେ କୃଷ୍ଣ ହାତୀର ପଛକୁ ଚାଲି ଯାଉଥାନ୍ତି, ତେଣୁ ହାତୀ ଯେତେ ମୁହଁ ବୁଲାଇଲେ ମଧ୍ୟ କୃଷ୍ଣଙ୍କୁ ଧରିବା ତା' ପକ୍ଷରେ ଆଦୌ ସମ୍ଭବ ହେଲା ନାହିଁ । ବରଂ ବୁଲି ବୁଲି ହାତୀଟି

ହାଲିଆ ହୋଇଗଲା ଓ ଅବଶେଷରେ ତଳେ ପଡ଼ିଗଲା । କୃଷ୍ଣଙ୍କୁ ତଥାପି ଆକ୍ରମଣ କରିବାକୁ ମାହୁନ୍ତଟି ହାତୀକୁ ଇଙ୍ଗିତ ଦେବାରୁ, ହାତୀଟି ତଳୁ ଉଠି କୃଷ୍ଣଙ୍କ ଆଡ଼କୁ ଦ୍ରୁତବେଗରେ ଅଗ୍ରସର ହେଲା । ଏଥର କୃଷ୍ଣ ହସ୍ତୀର ସମ୍ମୁଖରେ ଦଣ୍ଡାୟମାନ ହୋଇ ହସ୍ତୀଟି ତାଙ୍କୁ ଆକ୍ରମଣ କରିବା ପୂର୍ବରୁ ନିଜର ଦୃଢହସ୍ତରେ ହସ୍ତୀର ଶୁଣ୍ଢକୁ ଧରି ଏପରି ମୋଡ଼ିଦେଲେ ଯେ, ହସ୍ତୀଟି ସେହି ଯନ୍ତ୍ରଣା ସହ୍ୟ କରି ନ ପାରି ତଳେ ପଡ଼ିଗଲା । ଏହି ଅବସରରେ କୃଷ୍ଣ ତା'ର ମସ୍ତକରେ ପଦାଘାତ କରି ତା'ର ବିଶାଳ ଦନ୍ତ ଦୁଇଟିକୁ ଉତ୍ପାଟିତ କଲେ ଏବଂ ସେହି ଦନ୍ତ ସାହାଯ୍ୟରେ ହସ୍ତୀ ଓ ତା'ର ମାହୁନ୍ତକୁ ଆଘାତ କରି ସେମାନଙ୍କୁ ସେହିଠାରେ କୃଷ୍ଣ ସଂହାର କଲେ ।

କୁବଳୟାପୀଡ଼ର ମୃତ୍ୟୁ ପରେ ରଙ୍ଗସଭାର ପ୍ରବେଶ ଦ୍ୱାରରେ କୌଣସି ପ୍ରତିବନ୍ଧକ ନ ଥିଲା । ତେଣୁ ସେହି ମୃତ ହସ୍ତୀର ସଦ୍ୟ ଉତ୍ପାଟିତ ଦନ୍ତକୁ ହସ୍ତରେ ଧାରଣ କରି କୃଷ୍ଣ ଓ ବଳରାମ ମଲ୍ଲକ୍ରୀଡ଼ା ନିମନ୍ତେ ସୁସଜ୍ଜିତ ହୋଇଥିବା ସେହି ରଙ୍ଗସଭା ମଧ୍ୟରେ ପ୍ରବେଶ କଲେ ।

ଅପୂର୍ବ ଜନସମାଗମ ଫଳରେ ରଙ୍ଗସଭାରେ ତିଳ ଧାରଣର ସ୍ଥାନ ନଥିଲା । କୃଷ୍ଣଙ୍କୁ ରଙ୍ଗସଭାରେ ପ୍ରବେଶ କରିବାର ଦେଖି ସମବେତ ଦର୍ଶକମଣ୍ଡଳୀଙ୍କ ମଧ୍ୟରେ ବିଭିନ୍ନ ପ୍ରତିକ୍ରିୟା ସୃଷ୍ଟି ହେଲା । ସେମାନଙ୍କ ଦୃଷ୍ଟିରେ କୃଷ୍ଣ ଭିନ୍ନ ଭିନ୍ନ ରୂପରେ ପ୍ରତୀୟମାନ ହେଲେ ।

ମଲ୍ଲ-ଯୁଦ୍ଧ ନିମନ୍ତେ ନିୟୋଜିତ ମଲ୍ଲମାନେ କୃଷ୍ଣଙ୍କୁ ଦେଖି ଭୟଭୀତ ହୋଇପଡ଼ିଲେ କାରଣ କୃଷ୍ଣଙ୍କର ସୁକୁମାର ଶରୀର ସେମାନଙ୍କୁ ବଜ୍ର ନିର୍ମିତ କଠିନ ଶରୀର ପରି ଦେଖାଗଲା । ସାଧାରଣ ବ୍ୟକ୍ତିଙ୍କୁ କୃଷ୍ଣ ପରମସୁନ୍ଦର ପୁରୁଷୋତ୍ତମ ରୂପରେ, ରମଣୀମାନଙ୍କୁ ମୂର୍ତ୍ତିମାନ କନ୍ଦର୍ପ ରୂପରେ, ଗୋପବାଳକମାନଙ୍କୁ ନିଜ ନିଜର ସମବୟସୀ କ୍ରୀଡ଼ାସାଥୀ ରୂପରେ, ପିତାମାତାଙ୍କୁ ନିଜର ନୟନ ଅଭିରାମ ପ୍ରାଣପ୍ରିୟ ପୁତ୍ର ରୂପରେ, ଅତ୍ୟାଚାରୀ ରାଜାମାନଙ୍କୁ ଦଣ୍ଡଦାତା ଶାସନକାରୀ ନରପତି ରୂପରେ, ଅଜ୍ଞାନୀମାନଙ୍କୁ ବିରାଟ ରୂପରେ, ଯୋଗୀଋଷିମାନଙ୍କୁ ପରମତତ୍ତ୍ୱ ପରମାତ୍ମା ରୂପରେ, ଭକ୍ତଶିରୋମଣି ଯଦୁବଂଶୀୟ ବ୍ୟକ୍ତିମାନଙ୍କୁ ପରମଦେବତା

ରୂପରେ ଏବଂ ଭୋଜରାଜ କଂସଙ୍କୁ ସାକ୍ଷାତ ମୃତ୍ୟୁ ରୂପରେ କୃଷ୍ଣ ପ୍ରତୀୟମାନ ହେଲେ ।

ଏହିପରି ଭାବରେ ଦର୍ଶକମାନଙ୍କର ମନୋଗତ ଭାବ ଅନୁସାରେ କୃଷ୍ଣ ସମବେତ ବିଭିନ୍ନ ବ୍ୟକ୍ତିଙ୍କୁ ରୌଦ୍ର, ଅଦ୍ଭୁତ, ଶୃଙ୍ଗାର, ହାସ୍ୟ, ବୀର, ବାତ୍ସଲ୍ୟ, ଭୟାନକ, ବୀଭତ୍ସ, ଶାନ୍ତ ଏବଂ ପ୍ରେମଭକ୍ତିରସ ପରିପ୍ଳୁତ ପୁରୁଷ ଭାବରେ ପ୍ରତିଭାତ ହେଲେ ।



# କଂସ-ଉଦ୍ଧାର

କୃଷ୍ଣ ଓ ବଳରାମଙ୍କୁ ହସ୍ତରେ କୁବଳୟାପୀଡ଼ର ଦନ୍ତ ଧରି ରଙ୍ଗସଭା ମଧ୍ୟରେ ନିର୍ବିଘ୍ନରେ ପ୍ରବେଶ କରିବାର ଦେଖି ଭୋଜରାଜ କଂସ ମନେ ମନେ ଉଦ୍ବିଗ୍ନ ହୋଇ ଚିନ୍ତାକଲା, କୃଷ୍ଣ ଓ ବଳରାମଙ୍କୁ ଜୟ କରିବା କ'ଣ ବାସ୍ତବିକ ଦୁଃସାଧ୍ୟ ? ସେମାନେ କ'ଣ ବାସ୍ତବିକ ଅପରାଜେୟ ? ସେମାନଙ୍କୁ ସଂହାର କରିବା ନିମନ୍ତେ ପ୍ରାୟ ମୋର ସମସ୍ତ ଉଦ୍ୟମ ଓ ଚକ୍ରାନ୍ତ ପଣ୍ଡ ହେଲା । ହାୟ !'

ରମଣୀୟ ବେଶ ପୋଷାକ ଓ ମାଲ୍ୟ ଆଭରଣରେ ଭୂଷିତ ହୋଇ ଦୀର୍ଘବାହୁ କୃଷ୍ଣ ଓ ବଳରାମଙ୍କୁ ରଙ୍ଗଭୂମିରେ ପ୍ରବେଶ କରିବାର ଦେଖି ସ୍ତ୍ରୀହାଣୀ ମଣ୍ଡପରେ ଉପବେଶନ କରିଥିବା ସମବେତ ମଥୁରାର ଅନ୍ୟ ନାଗରିକମାନଙ୍କର ନୟନ ଓ ମନ ଅପୂର୍ବ ଆନନ୍ଦରେ ପ୍ରଫୁଲ୍ଲିତ ହୋଇ ଉଠିଲା । ସେମାନେ ଅପଲକ ନୟନରେ କୃଷ୍ଣ ଓ ବଳରାମଙ୍କର ଅନୁପମ ରୂପ ଲାବଣ୍ୟ-ରସପାନ କରିବାକୁ ଲାଗିଲେ । ସେମାନେ କୃଷ୍ଣ ଓ ବଳରାମଙ୍କର ଅନୁପମ ରୂପ, ମାଧୁର୍ଯ୍ୟ ଓ ନିର୍ଭୀକତା ଦର୍ଶନ କରି ତାଙ୍କର ଅଲୌକିକ ବାଲ୍ୟଲୀଳାମାନ ସ୍ମରଣ କରି ପରସ୍ପରରେ କୁହାକୁହି ହେବାକୁ ଲାଗିଲେ, 'ଏହି ଦୁଇଜଣ ନିଶ୍ଚୟ ସାକ୍ଷାତ ନାରାୟଣଙ୍କର ଅବତାର ଏବଂ ନର ରୂପ ଧାରଣ କରି ମହାତ୍ମା ବସୁଦେବଙ୍କ ବଂଶରେ ଅବତୀର୍ଣ୍ଣ ହୋଇ ଅଛନ୍ତି । ଦେବକୀଙ୍କ ଗର୍ଭରେ କୃଷ୍ଣ ଜନ୍ମ ହେବାପରେ ତାଙ୍କୁ ଗୋପନରେ ନନ୍ଦଙ୍କ ଗୃହରେ ଛଡ଼ାଦିଆ ଯାଇଥିଲା । ସେହିଠାରେ ସେ ଆଜି ପର୍ଯ୍ୟନ୍ତ ପାଳିତ ହୋଇ ଆସିଅଛନ୍ତି । ଗୋପରେ ପୂତନା, ତୃଣାବର୍ତ୍ତ, ଶଙ୍ଖଚୂଡ଼, କେଶୀ, ଧେନୁକ, ଅଘା ପ୍ରମୁଖ ଅସୁରମାନଙ୍କୁ ସଂହାର, ଯାମଳାର୍ଜ୍ଜୁନ ବୃକ୍ଷକୁ ନିପାତ, କାଳୀୟନାଗକୁ ବଶୀଭୂତ, ଦେବରାଜ ଇନ୍ଦ୍ରଙ୍କର ଅହଙ୍କାରକୁ ଚୂର୍ଣ୍ଣ ଏବଂ ସପ୍ତାହକାଳ ଗୋଟିଏ ହାତରେ ବିଶାଳ ଗୋବର୍ଦ୍ଧନ ଗିରିକୁ ଧାରଣ କରି ବର୍ଷା ଓ ବାତ୍ୟାରୁ ଗୋକୁଳକୁ ରକ୍ଷା କରିବା ପରି ବହୁ

ଅଲୌକିକ କାର୍ଯ୍ୟ ଏହି କୃଷ୍ଣ ସମ୍ପନ୍ନ କରିଅଛନ୍ତି ଏବଂ ନିଜର ପ୍ରସନ୍ନତା, ହାସ୍ୟକଟାକ୍ଷ ଦ୍ୱାରା ଗୋପରମଣୀମାନଙ୍କର ଦୁଃଖ ଦୂର କରିଅଛନ୍ତି । ଏହି କୃଷ୍ଣଙ୍କ ଦ୍ୱାରା ପରିରକ୍ଷିତ ହୋଇ ଯଦୁବଂଶ ଶ୍ରୀ, କୀର୍ତ୍ତି ଏବଂ ମହତ୍ତ୍ୱ ଲାଭ କରିବ ବୋଲି ଶାସ୍ତ୍ରଜ୍ଞମାନେ ଯେଉଁ ଭବିଷ୍ୟତବାଣୀ ପ୍ରକାଶ କରି-ଅଛନ୍ତି ତାହା ଅମୂଳକ ନୁହେଁ । ପ୍ରଲମ୍ବ, ବତ୍ସ, ବକପ୍ରମୁଖଙ୍କୁ ଯେ ନିଜର ପରାକ୍ରମରେ ବିନାଶ କରି ଅଛନ୍ତି, ସେହି ବଳରାମ ମଧ୍ୟ ରଙ୍ଗ-ଭୂମିରେ ପ୍ରବେଶ କରୁଅଛନ୍ତି, ଦେଖ ।'

ସମବେତ ପୁରବାସୀମାନେ ଏହିପରି କୁହାକୁହି ହେଉଥିବା ବେଳେ ଚାଣୂର ନାମକ କଂସର ଏକ ଆଜ୍ଞାଧୀନ ମଲ୍ଲ କୃଷ୍ଣ ଓ ବଳରାମଙ୍କୁ ସମ୍ବୋଧନ କରି କହିଲା, 'ହେ କୃଷ୍ଣ ଓ ବଳରାମ, ତୁମ୍ଭମାନଙ୍କ ବୀରତ୍ୱର କଥା ଆମ୍ଭେମାନେ ଶୁଣିବାକୁ ପାଇଅଛୁ । ବୀରତ୍ୱ ଓ ବାହୁଯୁଦ୍ଧରେ ତୁମ୍ଭେମାନେ ବିଶେଷ କୁଶଳୀ । ରାଜା ମଧ୍ୟ ତୁମ୍ଭ ଦୁହିଁଙ୍କୁ ଏଠାକୁ ଆମନ୍ତ୍ରଣ କରିଆଣି ଅଛନ୍ତି । ତେଣୁ ଆସ । ଦ୍ୱନ୍ଦ୍ୱ-ଯୁଦ୍ଧରେ ପ୍ରବୃତ୍ତ ହୋଇ ମଲ୍ଲ-ଯୁଦ୍ଧ-ଦର୍ଶନେଚ୍ଛୁ ଭୋଜରାଜ କଂସଙ୍କୁ ପ୍ରୀତ କରିବା କାୟ, ମନ, ଓ ବାକ୍ୟରେ ରାଜାଙ୍କର ପ୍ରିୟ ଅନୁଷ୍ଠାନ କରିବାରେ ହିଁ ତ ପ୍ରଜାଙ୍କ ଜୀବନର ସାର୍ଥକତା ।'

କୃଷ୍ଣ ଉତ୍ତର ଦେଇ କହିଲେ, 'ଚାଣୂର, ରାଜାଙ୍କର ଆଜ୍ଞା ପାଳନ କରିବା ଏବଂ ରାଜାଙ୍କୁ ପ୍ରୀତ କରିବା ପ୍ରଜାର ଧର୍ମ । ତୁମ୍ଭମାନଙ୍କ ପରି ଆମେ ମଧ୍ୟ ଭୋଜରାଜାଙ୍କର ପ୍ରଜା । ମଲ୍ଲ-ଯୁଦ୍ଧ ପ୍ରଦର୍ଶନ କଲେ ଯଦି ରାଜା ପ୍ରସନ୍ନ ହେବେ, ତେବେ ତୁମ ପ୍ରସ୍ତାବରେ ଆମ୍ଭେ ପରମ ଆଗ୍ରହର ସହିତ ସମ୍ମତ ଅଛୁ । କିନ୍ତୁ ଆମ୍ଭେମାନେ ବାଳକ । ତୁମ୍ଭମାନଙ୍କ ପରି ପରିଣତ ବୟସ, ବିପୁଳ ଅଭିଜ୍ଞତା ଏବଂ ଅସୀମ ବୀରତ୍ୱ ଆମର ବା କାହିଁ ? ତେବେ ଆମ ସମାସ୍କନ୍ଧ ବାଳକଙ୍କ ସହିତ ମଲ୍ଲ-ଯୁଦ୍ଧରେ ପ୍ରବୃତ୍ତ ହେବାକୁ ଆମେ ପରାଙ୍ମୁଖ ନୋହୁଁ । ତୁମ୍ଭମାନଙ୍କ ପରି ବୟସ୍କଙ୍କ ସହିତ ଦ୍ୱନ୍ଦ୍ୱଯୁଦ୍ଧ କଲେ ନୀରବରେ ସମର୍ଥନ କରୁଥିବା ସମବେତ ଦର୍ଶକମାନଙ୍କଠାରେ ଅସମଚାର ଅନ୍ୟାୟ ଦୋଷର କଳଙ୍କ ଯାହା ଆରୋପିତ ହେବ ।'

କୃଷ୍ଣଙ୍କ କଥା ଶୁଣି ଚାଣୂର କହିଲା, 'ବୟସ ଦୃଷ୍ଟିରୁ ବିଚାର କଲେ ତୁମେ ନା ବାଳକ ନା କିଶୋର । ତେବେ ତୁମେ ସହସ୍ର ହସ୍ତୀର

ବଳରେ ବଳୀୟାନ କୁବଳୟାପୀଡ଼କୁ ଅବଲୀଳାକ୍ରମେ ବିନାଶ କରିଅଛ । ତେଣୁ ଆମ୍ଭମାନଙ୍କ ପରି ପ୍ରବୀଣ ମଲ୍ଲଙ୍କ ସହିତ ଯୁଦ୍ଧ କରିବାର ଯୋଗ୍ୟତା ତୁମେ ଅର୍ଜନ କରି ସାରିଛ । ଆମ ସହିତ ଦ୍ୱନ୍ଦ ଯୁଦ୍ଧ କଲେ କାହାରିକୁ ଲେଶମାତ୍ର ଅନ୍ୟାୟ ସ୍ପର୍ଶ କରିବ ନାହିଁ । ହେ କୃଷ୍ଣ, ତେଣୁ ଅଯଥାରେ ଆଉ କାଳବିଳମ୍ବ ନ କରି ଆସ, ମୋ ସହିତ ମଲ୍ଲ ଯୁଦ୍ଧରେ ପ୍ରବୃତ୍ତ ହୁଅ । ଏବଂ ମୁଷ୍ଟିକ ସହିତ ବଳରାମ ଯୁଦ୍ଧ କରନ୍ତୁ ।'

ଅଯଥାରେ ଆଉ କାଳବିଳମ୍ବ କରିବାକୁ କୃଷ୍ଣ ମଧ୍ୟ ଚାହିଁଲେ ନାହିଁ । ତାହା ହିଁ ହେଲା । ଚାଣୁରର ଆହ୍ୱାନକୁ କୃଷ୍ଣ ଓ ବଳରାମ ସ୍ୱୀକାର କରି ମଲ୍ଲ-କ୍ରୀଡ଼ା ନିମନ୍ତେ ନିର୍ଦ୍ଦିଷ୍ଟ ଥିବା ମଣ୍ଡପରେ ପ୍ରବେଶ କଲେ ।

ଚାଣୁର ଓ ମୁଷ୍ଟିକପ୍ରମୁଖ ଦୁର୍ଦ୍ଧର୍ଷ ମଲ୍ଲଙ୍କ ସହିତ କୃଷ୍ଣ ଓ ବଳରାମଙ୍କ ପରି ସୁକୁମାର ବାଳକ ଦ୍ୱନ୍ଦ-ଯୁଦ୍ଧ କରିବେ, ଏହା ଦେଖି ଏବଂ ଅନାଗତ ଅବଶ୍ୟମ୍ଭାବୀ ଭୟାବହ ପରିଣତିର ଆଶଙ୍କାରେ ଶଙ୍କିତ ହୋଇ ସେହି ନିର୍ମମ ଅସମତାକୁ ସମବେତ ଦର୍ଶକମଣ୍ଡଳୀ ଅନୁମୋଦନ କରିପାରିଲେ ନାହିଁ । ସେମାନେ ପ୍ରତିବାଦ ସ୍ୱରରେ କୁହାକୁହି ହେଲେ, 'ବଳବାନ, ବୟସ୍କ, ଅଭିଜ୍ଞ ଓ ବଜ୍ର ପରି କଠିନ ଶରୀରଧାରୀ ମଲ୍ଲଙ୍କ ସହିତ ଅପରିଣତ ବୟସର ଦୁଇଟି ସୁକୁମାର ବାଳକଙ୍କର ଦ୍ୱନ୍ଦ ଯୁଦ୍ଧ ହେବା ଯେପରି ଅନ୍ୟାୟ ତାକୁ ସମର୍ଥନ କରି ଏଠାରେ ଉପବେଶନ କରିବା ଆମ୍ଭମାନଙ୍କ ପକ୍ଷରେ ଅନୁରୂପ ଅଧର୍ମ । ଅନୁଷ୍ଠିତ ହେବାକୁ ଯାଉଥିବା ଏହି ଧର୍ମ-ବିରୁଦ୍ଧ ଦ୍ୱନ୍ଦଯୁଦ୍ଧ ଆଦୌ ସମର୍ଥନ ଯୋଗ୍ୟ ନୁହେଁ ।' କିନ୍ତୁ ଏପରି ମତବ୍ୟକ୍ତ କଲେ ମଧ୍ୟ ସେହି ଦ୍ୱନ୍ଦ-ଯୁଦ୍ଧକୁ ନିବାରଣ କରିବାର ଶକ୍ତି ବା ସାମର୍ଥ୍ୟ ସେମାନଙ୍କର ନ ଥିଲା କି ନ ଥିଲା ସେମାନଙ୍କର ସଭାସ୍ଥାନ ତ୍ୟାଗ କରି କଂସର କୋପାନଳର ଶରବ୍ୟ ହେବାର ସାହସ ତେଣୁ ବିଧାତାଙ୍କ ଉପରେ ଭବିତବ୍ୟକୁ ଛାଡ଼ିଦେଇ ନୀରବରେ ସେମାନେ ଅବସ୍ଥାନ କରି ରହିଲେ ।

ଏ ମଧ୍ୟରେ କୃଷ୍ଣ ଓ ବଳରାମ ଯଥାକ୍ରମେ ଚାଣୁର ଓ ମୁଷ୍ଟିକଙ୍କ ସହିତ ଦ୍ୱନ୍ଦ-ଯୁଦ୍ଧରେ ବ୍ୟାପୃତ ହୋଇ ଗଲେଣି । ପ୍ରତିଦ୍ୱନ୍ଦୀଙ୍କ ମଧ୍ୟରେ ବୟସ ଓ ଶାରୀରିକ ଆକୃତିରେ ଯଥେଷ୍ଟ ପାର୍ଥକ୍ୟ ଥିଲେ ମଧ୍ୟ ସେମାନଙ୍କ

ମଧ୍ୟରେ ସମକକ୍ଷ ଯୁଦ୍ଧ କିଛି ସମୟ ଧରି ଚାଲିଲା । ଏକ ସମୟରେ ଚାଣୁର କୃଷ୍ଣଙ୍କର ବକ୍ଷରେ ଖୁବ୍ ଜୋରରେ ମୁଷ୍ଟିରେ ଆଘାତ କରିବାରୁ, କୃଷ୍ଣ ତାହା ସହାସ୍ୟ ବଦନରେ ସହ୍ୟ କରିନେଲେ ଏବଂ ଚାଣୁରର ଦୁଇ ବାହୁକୁ ଧରି ପ୍ରବଳ ବେଗରେ ଘୂରାଇଲେ । ନିରବଚ୍ଛିନ୍ନ ଘୂର୍ଣ୍ଣନର ବେଗ ସହ୍ୟ କରି ନ ପାରି ଚାଣୁରର ମୃତ୍ୟୁ ଘଟିଲା ଏବଂ କୃଷ୍ଣ ତା'ର ମୃତଶରୀରକୁ ମାଟି ଉପରେ ଫିଙ୍ଗି ଦେଲେ । ଏଣେ ବଳରାମ ମଧ୍ୟ ମୁଷ୍ଟିକକୁ ସଂହାର କଲେ । ଚାଣୁର ଓ ମୁଷ୍ଟିକଙ୍କୁ ମୃତ୍ୟୁବରଣ କରିଥିବାର ଦେଖି କୂଟ, ଶଳ, ତୋଷଳ ପ୍ରମୁଖ ମଲ୍ଲମାନେ କ୍ରୋଧଜର୍ଜର ହୋଇ କୃଷ୍ଣ ଓ ବଳରାମଙ୍କୁ ଆକ୍ରମଣ କଲେ; କିନ୍ତୁ ସେହି କିଶୋର ବାଳକ ଦ୍ୱୟଙ୍କ ପରାକ୍ରମ ସହ୍ୟ କରିବାର ସାମର୍ଥ୍ୟ ସେମାନଙ୍କର ନ ଥିଲା । ତେଣୁ ଅଚିରେ ସେମାନେ କୃଷ୍ଣ ଓ ବଳରାମଙ୍କ ହସ୍ତରେ ମୃତ୍ୟୁବରଣ କଲେ । ବରିଷ୍ଠ ମଲ୍ଲମାନଙ୍କର ଏପରି ଶୋଚନୀୟ ଦୁର୍ଦ୍ଦଶା ଦେଖି କଂସର ଅବଶିଷ୍ଟ ମଲ୍ଲମାନେ ପ୍ରାଣଭୟରେ ରଙ୍ଗସଭା ତ୍ୟାଗ କରି ପଳାୟନ କଲେ ।

କୃଷ୍ଣ ଓ ବଳରାମଙ୍କର ବିଜୟ ଘଟିଛି ଏବଂ ସେମାନଙ୍କ ହସ୍ତରେ ଦୁଷ୍ଟ ଚାଣୁର, ମୁଷ୍ଟିକ, କୂଟ, ଶଳ ଓ ତୋଷଳ ପ୍ରମୁଖଙ୍କର ଶୋଚନୀୟ ଭାବରେ ମୃତ୍ୟୁ ଘଟିଛି; ତାହା ସ୍ୱଚକ୍ଷୁରେ ଦେଖି କଂସ ଭିନ୍ନ ଓ ତା'ର ଉପସ୍ଥିତି ସତ୍ତ୍ୱେ, ସମବେତ ସଭାସଦମାନେ ଆନନ୍ଦରେ ଫାଟି ପଡ଼ିଲେ । କୃଷ୍ଣ ଓ ବଳରାମଙ୍କର ଅପୂର୍ବ ଶକ୍ତିର ପ୍ରଶଂସା କରି ସେମାନେ ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ । ସମଗ୍ର ରଙ୍ଗ-ସଭା ଅପୂର୍ବ ଆନନ୍ଦ କୋଳାହଳରେ ପ୍ରକମ୍ପିତ ହେବାକୁ ଲାଗିଲା ।

ନିଜର ଅତ୍ୟନ୍ତ ବିଶ୍ୱସ୍ତ ମଲ୍ଲ ବୀରମାନଙ୍କର ଏପରି ଦୁର୍ଦ୍ଦଶା ଏବଂ କୃଷ୍ଣ ଓ ବଳରାମଙ୍କ ବିଜୟରେ ସମବେତ ସଭାସଦମାନଙ୍କର ଏପରି ଆନନ୍ଦୋଚ୍ଛ୍ୱାସ କଂସ ପକ୍ଷରେ ସମ୍ପୂର୍ଣ୍ଣ କଳ୍ପନାତୀତ ଥିଲା । ସେ ଅସହ୍ୟ କ୍ରୋଧରେ ରକ୍ତଚକ୍ଷୁ ହୋଇ ସଭାର ସମସ୍ତ କୋଳାହଳକୁ ସ୍ତବ୍ଧ କରି ନିଜର ଅନୁଗତମାନଙ୍କ ମନରେ ନୂତନ ସାହସ ସୃଷ୍ଟି କରିବା ନିମନ୍ତେ ତର୍ଜ୍ଜନନାଦ କରି ଉଚ୍ଚସ୍ୱରରେ ଆଦେଶ ଘୋଷଣା କରି କହିଲା, 'କିଏ ଅଛ ? ବସୁଦେବର ଏହି ଦୁଷ୍ଟ ପୁତ୍ର ଦ୍ୱୟଙ୍କୁ ଏହି ରଙ୍ଗଭୂମିରୁ ଅତି ଶୀଘ୍ର ବହିଷ୍କାର କରିଦିଅ ଓ ଗୋପବାସୀମାନଙ୍କର ସମସ୍ତ

ଧନସମ୍ପତ୍ତିକୁ ହରଣ କରନିଅ ଏବଂ ଏହି ଦୁରାତ୍ମା ନନ୍ଦକୁ ମଧ୍ୟ ଅବିଳମ୍ବେ ହତ୍ୟା କର । ମୋର ପିତା ହୋଇ ମଧ୍ୟ ଏହି ଉଗ୍ରସେନ ମୋର ଶତ୍ରୁମାନଙ୍କର ପକ୍ଷ ସମର୍ଥନ କରୁଥିବାରୁ ତାକୁ ତା'ର ଅନୁଗାମୀମାନଙ୍କ ସହିତ ହତ୍ୟା କର ।'

ଭାଗ୍ୟର କି ନିଷ୍ଠୁର ବିଦ୍ରୂପ ! କଂସର ସେହି କ୍ରୁଦ୍ଧ ଆଦେଶକୁ ପାଳନ କରିବା ନିମନ୍ତେ ରଙ୍ଗଭୂମିରେ ସେପରି ଅନୁଗତ କେହି ନ ଥିଲେ । ଯେଉଁମାନଙ୍କ ଉଦ୍ଦେଶ୍ୟରେ କଂସ ସେହି ଆଦେଶ ଘୋଷଣା କରୁଥିଲା, ସେମାନେ ସମସ୍ତେ ଆଦେଶ ପ୍ରକାଶ ପାଇବାର ବହୁ ପୂର୍ବରୁ କୃଷ୍ଣ ଓ ବଳରାମଙ୍କ ଭୟରେ ରଙ୍ଗସଭା ପରିତ୍ୟାଗ କରି ପ୍ରାଣଭୟରେ ଯେ ଯେଉଁଆଡ଼େ ପାରିଲେ ପଳାୟନ କରିସାରିଥିଲେ !!

କ୍ରୋଧଜର୍ଜର କଂସ ନାଗସର୍ପ ପରି ଘନ ଘନ ଉଷ୍ଣ ନିଃଶ୍ୱାସ ତ୍ୟାଗ କରୁଥାଏ । ତା'ର କ୍ରୋଧକମ୍ପିତ ଶରୀର, ରକ୍ତଚକ୍ଷୁ ଓ ଘର୍ମାକ୍ତ ମୁଖ ପରିବେଶକୁ ଅଧିକ ଭୟାନକ କରିଦେଇଥିଲା ।

କଂସକୁ ସେପରି କ୍ରୋଧପୂର୍ଣ୍ଣ ବାକ୍ୟ ପ୍ରୟୋଗ କରିବାର ଲକ୍ଷ୍ୟ କରି କୃଷ୍ଣ କ୍ରୋଧାନ୍ୱିତ ହେଲେ । କଂସ ଗୃହାଣୀ-ମଞ୍ଚର ସମୁଚ୍ଚ ଆସନରେ ଆସୀନ ଥିଲା । କୃଷ୍ଣ ଦ୍ରୁତବେଗରେ ଗୃହାଣୀ-ମଞ୍ଚର ସୋପାନ ପରେ ସୋପାନମାନ ଅତିକ୍ରମ କରି କଂସ ନିକଟକୁ ଅଗ୍ରସର ହେଲେ । କୃଷ୍ଣଙ୍କୁ ଆଗେଇ ଆସୁଥିବାରୁ ଦେଖି କଂସ ଅତ୍ୟନ୍ତ ଭୟ-ବିହ୍ୱଳ ହୋଇପଡ଼ିଲା । ତା'ର ମନେହେଲା ସତେ ଯେପରି ସାକ୍ଷାତ୍ ମୃତ୍ୟୁ କୃଷ୍ଣ ରୂପରେ ତା' ଆଡ଼କୁ ମାଡ଼ି ଆସୁଅଛି । କଂସ ଆତ୍ମରକ୍ଷା କରିବା ନିମନ୍ତେ ସହସା ନିଜର ଆସନରୁ ଉତ୍‌ଥିତହୋଇ ଢାଲ ଓ ତରବାରି ଧରି ଆସନ୍ନ ଆକ୍ରମଣର ମୁକାବିଲା କରିବା ନିମନ୍ତେ ପ୍ରସ୍ତୁତ ହୋଇଗଲା । କୃଷ୍ଣ କାଳବିଳମ୍ବ ନ କରି କଂସକୁ ଆକ୍ରମଣ କରିବ ରୁ କଂସର ଭୟତ୍ରସ୍ତକମ୍ପିତ ଶରୀରରୁ ସ୍ୱର୍ଣ୍ଣମୁକୁଟ ଖସି ପଡ଼ିଲା । କଂସର ମସ୍ତକର କେଶକୁ କୃଷ୍ଣ ଆକର୍ଷଣ କଲେ ଓ ମଞ୍ଚଉପରୁ ତାକୁ ତଳକୁ ଫିଙ୍ଗିଦେଇ ନିଜେ ପତନୋନ୍ମୁଖୀ କଂସ ଉପରକୁ ମଞ୍ଚ ଉପରୁ ଲମ୍ଫ ପ୍ରଦାନ କଲେ । ସିଂହ ଯେପରି ହସ୍ତୀକୁ ଆକ୍ରମଣ କରେ ସେହିପରି ଭଗବାନ କୃଷ୍ଣ କଂସକୁ ଆକ୍ରମଣ କରି ମଲ୍ଲ ଯୁଦ୍ଧ ନିମନ୍ତେ କଂସ ଦ୍ୱାରା

ସୁସଜ୍ଜିତ ସେହି ରଙ୍ଗ-ଭୂମିରେ କଂସକୁ ସଂହାର କଲେ । ଯାହାଙ୍କ ହସ୍ତରେ ମୃତ୍ୟୁବରଣ କରିବ ବୋଲି ଆଶଙ୍କା କରି ଉଦ୍‌ବିଗ୍ନଚିତ୍ତ କଂସ ଶୟନ, ସ୍ୱପନ, ଜାଗରଣ, ଆଦି ସକଳ ସମୟ ଓ ଅବସ୍ଥାରେ ଯେଉଁ ଚକ୍ରାୟୁଧ-ଧାରୀ ଭଗବାନଙ୍କୁ ଦେଖିବାକୁ ପାଉଥିଲା, ସେହି ଭଗବାନ କୃଷ୍ଣଙ୍କ ହସ୍ତରେ ଅବଶେଷରେ ତା'ର ମୃତ୍ୟୁ ଘଟିଲା ଏବଂ ସେହି ପୁଣ୍ୟଫଳରୁ, ଯେତେ ଦ୍ୱେଷଭାବମୂଳକ ହେଉ ନା କାହିଁକି, ସର୍ବଦା କୃଷ୍ଣ ଚିନ୍ତାରେ ତା'ର ସମସ୍ତ ଜୀବନକାଳ ଅତିବାହିତ ହୋଇଥିବାରୁ ମୃତ୍ୟୁ ପରେ ଯୋଗୀଜନ ଦୁର୍ଲ୍ଲଭ ସାରୂପ୍ୟ ମୁକ୍ତିଲାଭ କରିବାକୁ କଂସ ସମର୍ଥ ହେଲା ।

କୃଷ୍ଣଙ୍କ ହସ୍ତରେ ଭ୍ରାତା କଂସକୁ ନିହତ ହୋଇଥିବାର ଦେଖି କଂସର କଙ୍କ, ନାଗ୍ରୋଧ ପ୍ରମୁଖ ଅଷ୍ଟ ଅନୁଜ ମିଳିତ ହୋଇ କୃଷ୍ଣଙ୍କୁ ଆକ୍ରମଣ କରିଥିଲେ ମଧ୍ୟ କିଛି ଫଳ ହେଲା ନାହିଁ; ବଳରାମଙ୍କ ହସ୍ତରେ ସେମାନଙ୍କୁ ଅନ୍ତରେ ମୃତ୍ୟୁବରଣ କରିବାକୁ ପଡ଼ିଥିଲା ।

କଂସ ଓ ତା'ର ଅନୁଜମାନଙ୍କ ମୃତ୍ୟୁରେ ଦେବତାମାନେ ବିଶେଷ ଆଶ୍ୱସ୍ତ ଓ ଆନନ୍ଦିତ ହୋଇଥିଲେ । ଆକାଶରୁ ଦେବଦୁନ୍ଦୁଭି ବାଜିଉଠିଥିଲା ଓ ପୁଷ୍ପବୃଷ୍ଟି ହେବାକୁ ଲାଗିଲା । ଅପ୍‌ସରାମାନେ ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ ।

କଂସ ପ୍ରମୁଖଙ୍କର ମୃତ୍ୟୁସମ୍ବାଦ ପାଇ ତାଙ୍କର ବିଧବା ପତ୍ନୀମାନେ ରଙ୍ଗ-ସଭାରେ ସମାଗତ ହୋଇ ମୃତ ପତିମାନଙ୍କୁ ଆଲିଙ୍ଗନ କରି ଉଚ୍ଚ ସ୍ୱରରେ ରୋଦନ କଲେ । ଲୋକପାବନ କୃଷ୍ଣ ଓ ବଳରାମ ସେମାନଙ୍କୁ ଯଥାବିଧି ପ୍ରବୋଧନା ପ୍ରଦାନ କରି ଶାସ୍ତ୍ରୋକ୍ତ ବିଧିଅନୁସାରେ ମୃତ କଂସପ୍ରମୁଖଙ୍କର ଶବସତ୍କାରାଦି ଅନୁଷ୍ଠାନ କଲେ ଏବଂ ବନ୍ଦୀଶାଳାକୁ ଯାଇ ନିଜର ପିତାମାତା ବସୁଦେବ ଓ ଦେବକୀଙ୍କୁ ମୁକ୍ତକଲେ ଏବଂ ତାଙ୍କର ଚରଣ ବନ୍ଦନା କଲେ ।

ସେମାନଙ୍କର ସେହି ପୁତ୍ରଦ୍ୱୟ ଯେ ସ୍ୱୟଂ ଭଗବାନ ତାହା ବୁଝିବାକୁ ଦେବକୀ ଓ ବସୁଦେବଙ୍କ ପକ୍ଷରେ କଷ୍ଟକର ହେଲା ନାହିଁ । ପୁଣି ହେଲେ ମଧ୍ୟ ସେମାନେ ଯେ ଜଗଦୀଶ୍ୱର ଭଗବାନ, ଏହା ଭାବି ପ୍ରଣତ ପୁତ୍ରଦ୍ୱୟଙ୍କୁ ସ୍ନେହରେ କୋଳକୁ ଟାଣିନେବାକୁ ଦେବକୀ ଓ ବସୁଦେବ

ସାହସ କରିପାରିଲେ ନାହିଁ । କୃଷ୍ଣ ତାହା ଅବଗତ ହୋଇ ନିଜର ମାୟାଶକ୍ତି ବଳରେ ପିତାମାତାଙ୍କ ମନରୁ ସେମାନଙ୍କ ସମ୍ପର୍କିତ ସେହି ଜଗଦୀଶ୍ୱରଭାବକୁ ବିସ୍ମୃତ କରାଇ ଦେଲେ; ଫଳରେ ଦେବକୀ ଓ ବସୁଦେବ ପରମୁହୂର୍ତ୍ତରେ କୃଷ୍ଣ ଓ ବଳରାମଙ୍କୁ ନିଜର ସାଧାରଣ ପୁତ୍ର ବୋଲି ମନେକରି ସ୍ୱାଭାବିକ ଭାବରେ ସ୍ନେହରେ କୋଳକୁ ଟାଣି ନେଲେ ।

ପିତାମାତାଙ୍କୁ ସମ୍ବୋଧନ କରି କୃଷ୍ଣ କହିଲେ, 'ଆପଣଙ୍କର ଆମେ ପୁତ୍ର । ଆମ୍ଭମାନଙ୍କର ନିରାପତ୍ତା ପାଇଁ ଆପଣମାନଙ୍କ ମନରେ ଉତ୍କଣ୍ଠାର ସୀମା ନାହିଁ; କିନ୍ତୁ ଆପଣମାନଙ୍କ ଅବର୍ତ୍ତମାନରେ ଆମର ବାଲ୍ୟ, ପୌଗଣ୍ଡ ଓ କୈଶୋର କାଳ ଅନ୍ୟତ୍ର ଅତିବାହିତ ହୋଇଅଛି ଏବଂ ସେହି ସମୟର ଅପତ୍ୟସ୍ନେହ-ସୁଖ ଲାଭରୁ ଆପଣମାନେ ବଞ୍ଚିତ ହୋଇଅଛନ୍ତି । ଦୁର୍ଭାଗ୍ୟବଶତଃ, ଆପଣମାନଙ୍କ ପାଖରେ ରହିବାର ସୌଭାଗ୍ୟ ଆମେ ପାଇ ପାରିନାହୁଁ, ଫଳରେ ପିତାମାତାଙ୍କ ଠାରୁ ଲାଳିତ ପାଳିତ ହେବାର ଯେଉଁ ସୁଖାନୁଭୂତି ଆମର ଲାଭ କରିବାର କଥା ଆମ ଭାଗ୍ୟରେ ତାହା ଘଟି ନାହିଁ । ମନୁଷ୍ୟ ଜୀବନର ମୂଳ ହେଲା ଶରୀର, ତାକୁ ପିତାମାତା ହିଁ ସମ୍ପୂର୍ଣ୍ଣ କରିଥାନ୍ତି । ମନୁଷ୍ୟ ଶତବର୍ଷ ପରମାୟୁ ଲାଭକରି ଯଦି ନିରବଚ୍ଛିନ୍ନ ଭାବରେ ଆବାଲ୍ୟ ପିତାମାତାଙ୍କର ସେବାକରେ, ତଥାପି ମଧ୍ୟ ପିତାମାତାଙ୍କର ସେହି ଋଣରୁ ସେ ମୁକ୍ତ ହୋଇପାରେ ନାହିଁ, ପିତାମାତାଙ୍କର ଋଣ କିଏ ବା ପରିଶୋଧ କରିପାରିବ ? ଯେଉଁ ପୁତ୍ର ସମର୍ଥ ହୋଇ ମଧ୍ୟ ନିଜର ଶରୀର ତଥା ଧନ ଦ୍ୱାରା ପିତାମାତାଙ୍କର ସେବା ଓ ଜୀବିକା ସଂସ୍ଥାନ ନ କରେ ସେ ପୁତ୍ରର ଜୀବନ ବୃଥା ଏବଂ ମୃତ୍ୟୁ ପରେ ଯମଦୂତମାନେ ସେହି କୁଳଙ୍ଗାରର ମାଂସକୁ ଭକ୍ଷଣ କରିଥାନ୍ତି । ଯେଉଁ ପୁତ୍ର ସମର୍ଥ ହୋଇ ମଧ୍ୟ ପିତାମାତା, ବୃଦ୍ଧ, ସାଧ୍ୱୀ, ପତ୍ନୀ, ପୁତ୍ର, ଶିଶୁ, ଗୁରୁ, ବ୍ରାହ୍ମଣ ଓ ଶରଣାଗତ-ମାନଙ୍କର ଭରଣପୋଷଣ ପ୍ରତି ଧ୍ୟାନ ଦିଏ ନାହିଁ, ତା'ର ଜୀବନ ନିଷ୍ଫଳ ଏବଂ ଜୀବିତ ଥାଉଁ ଥାଉଁ ସେ ମୃତ । ହେ ପୂଜ୍ୟ ପିତା, ହେ ପୂଜନୀୟା ମାତା, କଂସର ଭୟରେ ଆମେ ସର୍ବଦା ଭୀତ ଓ ଉଦ୍‌ବିଗ୍ନ ରହି ଓ ଅନ୍ୟତ୍ର ଗୋପନରେ ବାସକରି କଂସଦ୍ୱାରା ଆପଣମାନଙ୍କ ପ୍ରତି

ଅଶେଷ ଅତ୍ୟାଚାର ଓ ନିର୍ଯ୍ୟାତନା କରାଯାଉଥିଲେ ମଧ୍ୟ, ଆପଣମାନଙ୍କ ପ୍ରତି ପୁତ୍ରର କର୍ତ୍ତବ୍ୟ ସମ୍ପାଦନ କରିବା ଆମ୍ଭମାନଙ୍କ ପକ୍ଷରେ ସମ୍ଭବପର ହୋଇପାରି ନାହିଁ । ସେଥିଯୋଗୁ ଆମର ଜୀବନ ବ୍ୟର୍ଥ ହୋଇଅଛି । ଆମର ସେହି ଅବହେଳାକୁ ମାର୍ଜନା କରି ଆମ ପରି ଅପରାଧୀଙ୍କୁ ଆପଣ-ମାନେ ଦୟାପୂର୍ବକ କ୍ଷମା କରନ୍ତୁ ।'

ନିଷ୍ପାପ ସୁକୁମାର ପୁତ୍ର ମୁଖରୁ ସେପରି କଥାଶୁଣି ଦେବକୀ ଓ ବସୁଦେବଙ୍କର ସ୍ନେହବିଗଳିତ ପ୍ରାଣ ଆନନ୍ଦ ଓ ଶୋକରେ ଫାଟିପଡ଼ିଲା । ସେମାନେ ପୁତ୍ର ଦ୍ୱୟଙ୍କୁ ଆଲିଙ୍ଗନ କଲେ ଏବଂ ଅବିରାମ ଗତିରେ ସେମାନଙ୍କ ନୟନରୁ ବହିର୍ଗତ ହେଉଥିବା ଲୋତକରେ ପୁତ୍ରଦ୍ୱୟଙ୍କୁ ସିକ୍ତ କରି ଦେଲେ । ଆନନ୍ଦ ଓ ଶୋକର ମିଶ୍ରିତ ଆତିଶଯ୍ୟରେ ସେମାନଙ୍କର କଣ୍ଠ ବାଷ୍ପାରୁଦ୍ଧ ହୋଇଯାଇଥିଲା । ସେମାନେ କିଛି କହିପାରିଲେ ନାହିଁ ।

ପିତାମାତାଙ୍କ ସହିତ ପୁତ୍ରଦ୍ୱୟଙ୍କର ସେହି ମିଳନକାଳୀନ ଦୃଶ୍ୟ ଯେ ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇଥିଲା, ଏହା କହିବା ନିଷ୍ପ୍ରୟୋଜନ ।

●

# ଗୋପପୁରରେ କୃଷ୍ଣ-ଦୂତ ଉଦ୍ଧବ

ନିଜର ପିତା ଉଗ୍ରସେନଙ୍କୁ ରାଜସିଂହାସନରୁ ବହିଷ୍କୃତ କରି କଂସ ମଥୁରାର ରାଜପଦ ଅଧିକାର କରିଥିଲା । କଂସର ମୃତ୍ୟୁପରେ ରାଜ-ସିଂହାସନ ଶୂନ୍ୟ ପଡ଼ିବାରୁ କଂସର ବୃଦ୍ଧ ପିତା ଉଗ୍ରସେନଙ୍କୁ ରାଜପଦରେ ପୁନର୍ବାର କୃଷ୍ଣ ଅଭିଷିକ୍ତ କଲେ । କଂସର ଅତ୍ୟାଚାରରେ ନିର୍ଯାତିତ ହୋଇ ଯେଉଁମାନେ ଘରଦ୍ୱାର ପରିତ୍ୟାଗ କରି ପ୍ରାଣଭୟରେ ଅନ୍ୟତ୍ର ପଳାୟନ କରିଥିଲେ, ସେହି ଯଦୁ, ବୃଷ୍ଣି, ଅନ୍ଧକ, ମଧୁ, ଦାଶାର୍ହ ଓ କୁକୁରାଦି ବଂଶୀୟ ବ୍ୟକ୍ତି ତଥା ସେମାନଙ୍କର ଜ୍ଞାତିମାନଙ୍କୁ କୃଷ୍ଣ ମଥୁରାକୁ ଫେରାଇ ଆଣି ବାସୋପଯୋଗୀ ଗୃହ, ଉପକରଣ ଓ ବୃତ୍ତିମାନ ସେମାନଙ୍କୁ ପ୍ରଦାନ କଲେ । କଂସଦ୍ୱାରା ଏକଦା ପ୍ରପୀଡ଼ିତ ମଥୁରା କୃଷ୍ଣଙ୍କ ଉଦ୍ୟମ ଓ ଉପସ୍ଥିତିରେ ନବଜୀବନ ଲାଭକରି ହସି ଉଠିଲା ।

ଗୋପପୁରରୁ ନନ୍ଦରାଜା ପ୍ରମୁଖଙ୍କର ମଥୁରାକୁ ଆସିବା ବହୁଦିନ ହୋଇଗଲାଣି ଏବଂ ଆଉ ଅଧିକ ବିଳମ୍ବ ନ କରି ସେମାନେ ଗୋପକୁ ଫେରିଯିବା ଉଚିତ ବୋଲି କୃଷ୍ଣ ମନେ କରି, ଦିନେ ନନ୍ଦରାଜାଙ୍କ ନିକଟକୁ ଯାଇ କହିଲେ, 'ପିତା, ଆପଣ ସ୍ୱଭାବତ ଅତ୍ୟନ୍ତ ସ୍ନେହପରାୟଣ; ତା'ଛଡ଼ା ଆମକୁ ନିଜ ଜୀବନଠାରୁ ଅଧିକ କରି ପରମ ସ୍ନେହ ଓ ଯତ୍ନରେ ଆଜିପର୍ଯ୍ୟନ୍ତ ଲାଳନପାଳନ କରିଆସି ଅଛନ୍ତି । ପୋଷଣ ଓ ରକ୍ଷଣ ଅସମର୍ଥ ବ୍ୟକ୍ତିଙ୍କ ଦ୍ୱାରା ପରିତ୍ୟକ୍ତ ସନ୍ତାନମାନଙ୍କୁ ଯେଉଁ ବ୍ୟକ୍ତି ନିଜର ପୁତ୍ର ସଦୃଶ ସ୍ନେହରେ ପାଳନ କରେ, ସେମାନେ ହିଁ ପ୍ରକୃତରେ ପିତା ଓ ମାତା । ଆମେ ଏକପ୍ରକାର ଅରକ୍ଷିତ ଓ ପରିତ୍ୟକ୍ତ ଅବସ୍ଥାରେ ଥିଲାବେଳେ ଆମକୁ ପରମ ସ୍ନେହରେ ଲାଳନ ପାଳନ କରି ଆପଣ ଆମକୁ ଚିର ଅନୁଗୃହୀତ କରିଅଛନ୍ତି । ବାପା, ଆପଣ ଏଠାରେ ଅଧିକ କାଳ ଆଉ ଅତିବାହିତ ନ କରି ବ୍ରଜକୁ ଗୋପବାସୀମାନଙ୍କ ସହିତ ପ୍ରତ୍ୟାବର୍ତ୍ତନ କରନ୍ତୁ । ମୁଁ ଏବଂ ଭାଇ ବଳରାମ ଏଠାରେ ଆଉ କିଛି

ବିନ ଅବସ୍ଥାନ କରି ଏଠାରେ ବାସ କରୁଥିବା ଜ୍ଞାତିବନ୍ଧୁଙ୍କର ସୁଖ ସୁବିଧା କରି ପୁନର୍ବାର ଯାଇ ଆପଣଙ୍କୁ ଦର୍ଶନ କରିବୁ ।'

ଏହା କହି ପିତା ନନ୍ଦ ଓ ଗୋପବାସୀଙ୍କୁ ବିଭିନ୍ନ ସାନ୍ତ୍ୱନା ବାକ୍ୟରେ ଆଶ୍ୱାସିତ କରି ବହୁ ବସ୍ତ୍ର ଓ ଅଳଙ୍କାର ଆଦି କୃଷ୍ଣ ସେମାନଙ୍କୁ ପ୍ରଦାନ କରି ସତ୍କାର କଲେ । କୃଷ୍ଣ ଓ ବଳରାମଙ୍କୁ ମଥୁରାରେ ଛାଡ଼ି ଗୋପକୁ ଫେରିବାକୁ ନନ୍ଦପ୍ରମୁଖଙ୍କର ଆଦୌ ଇଚ୍ଛା ନ ଥିଲା; ତଥାପି କୃଷ୍ଣଙ୍କ କଥାନୁସାରେ ସ୍ନେହବିହ୍ୱଳ ନନ୍ଦ ପୁତ୍ରଦ୍ୱୟଙ୍କୁ ଆଲିଙ୍ଗନ କଲେ ଏବଂ ଅଶ୍ରୁପୂର୍ଣ୍ଣ ନେତ୍ର ଓ ଶୋକଭାରାକ୍ରାନ୍ତ ହୃଦୟରେ ଗୋପବାସୀଙ୍କ ସହିତ ଶତ ଅନିଚ୍ଛା ସତ୍ତ୍ୱେ ବ୍ରଜକୁ ପ୍ରତ୍ୟାବର୍ତ୍ତନ କଲେ ।

ବସୁଦେବ ପୁତ୍ରଦ୍ୱୟଙ୍କର ଯଥାବିଧି ଜାତକର୍ମ ସମ୍ପାଦନ କରିବା ନିମନ୍ତେ ନିଜର କୁଳପୁରୋହିତ ଗର୍ଗାଚାର୍ଯ୍ୟଙ୍କୁ ଅହ୍ୱାନ ଓ ବ୍ରାହ୍ମଣମାନଙ୍କୁ ପ୍ରଚୁର ଦାନଦକ୍ଷିଣା ପ୍ରଦାନ କଲେ । କୃଷ୍ଣ ଓ ବଳରାମଙ୍କର ଶିକ୍ଷା ନିମନ୍ତେ ବସୁଦେବ ପୁତ୍ରଦ୍ୱୟଙ୍କୁ ଅବନ୍ତୀପୁର ନିବାସୀ କାଶ୍ୟପ ଗୋତ୍ରଜ ସାନ୍ଦିପନି ନାମକ ଋଷିଙ୍କ ନିକଟକୁ ପ୍ରେରଣ କଲେ । କୃଷ୍ଣ ଓ ବଳରାମ ଗୁରୁଗୃହରେ ବାସକରି ପରମ ଭକ୍ତି ଓ ଶ୍ରଦ୍ଧାରେ ଗୁରୁଙ୍କର ସେବା କଲେ ଓ ଶିକ୍ଷାର୍ଜନ କରିବାକୁ ଲାଗିଲେ । ଋଷି ସାନ୍ଦିପନି ଶିଷ୍ୟ ଦୁହିଁଙ୍କୁ ବେଦ, ଉପନିଷଦ, ଧନୁର୍ବେଦ, ଧର୍ମଶାସ୍ତ୍ର, ନ୍ୟାୟ, ମୀମାଂସା, ତର୍କବିଦ୍ୟା, ଆତ୍ମବିଦ୍ୟା, ଷଡ଼ବିଧ ରାଜନୀତି, ଚୌଷଠି କଳା ଆଦି ବିଭିନ୍ନ ଶିକ୍ଷା ପ୍ରଦାନ କଲେ । କୃଷ୍ଣ ଓ ବଳରାମଙ୍କର ସ୍ମୃତିଶକ୍ତି ଏପରି ପ୍ରଖର ଥିଲା ଯେ ଥରେ ମାତ୍ର ଗୁରୁଙ୍କ ମୁଖରୁ କୌଣସି ପାଠ ଉଚ୍ଚାରିତ ହେବାମାତ୍ରେ ସେମାନେ ତାହା ମନେ ରଖୁଥିଲେ । ତେଣୁ ଅଳ୍ପଦିନ ମଧ୍ୟରେ ସେମାନେ ସକଳ ବିଦ୍ୟାରେ ପାରଙ୍ଗମ ହୋଇ ପଡ଼ିଲେ । ଶିଷ୍ୟ-ଦ୍ୱୟଙ୍କର ସେହି ଅସାମାନ୍ୟ ସାଫଲ୍ୟ ଦର୍ଶନ କରି ଗୁରୁ ସାନ୍ଦିପନି ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ଓ ଆନନ୍ଦିତ ହେଲେ । ଶିଷ୍ୟଙ୍କଠାରୁ କୌଣସି ଦକ୍ଷିଣା ଗ୍ରହଣ କରିବାକୁ ସାନ୍ଦିପନି ଇଚ୍ଛୁକ ନଥିଲେ; କିନ୍ତୁ କୃଷ୍ଣ ଓ ବଳରାମ ଅତ୍ୟନ୍ତ ବାଧ୍ୟ କରିବାରୁ ନିଜର ବୁଦ୍ଧିମତୀ ପତ୍ନୀଙ୍କ ସହିତ ପରାମର୍ଶ କରି ସାନ୍ଦିପନି ଏକ ସ୍ଥିରତାରେ ଉପନୀତ ହେଲେ ଯେ ସେହି ଶିଷ୍ୟ ଦ୍ୱୟ ନିଶ୍ଚୟ ମହାପୁରୁଷ, ତା' ନ ହୋଇଥିଲେ ଏତେ ସ୍ୱଳ୍ପ ସମୟ ମଧ୍ୟରେ

ଏପରି ବିପୁଳ ଶିକ୍ଷା ଅର୍ଜନ କରିବା ସେମାନଙ୍କ ପକ୍ଷରେ ଆଦୌ ସମ୍ଭବପର ହୋଇ ନ ଥାନ୍ତା । ତେଣୁ ସାନ୍ଦୀପନି କହିଲେ, ଗୁରୁଦକ୍ଷିଣା ପ୍ରଦାନ କରିବା ପାଇଁ ତୁମେ ଦୁହେଁ ଯେତେବେଳେ ଏତେ ଆଗ୍ରହୀ, ତେବେ ପ୍ରଭାସ-କ୍ଷେତ୍ରରେ ସାଗର-ସ୍ନାନ କରୁଥିବା ବେଳେ ମୋର ପୁତ୍ର ମୃତ୍ୟୁ ବରଣ କରିଅଛି । ତାକୁ ତୁମେ ଜୀବନ୍ତ ଫେରାଇ ଆଣି ମୋତେ ପ୍ରଦାନ କର ।'

ଏପରି କାର୍ଯ୍ୟ ସାଧାରଣ ମନୁଷ୍ୟ ପକ୍ଷରେ ଅତ୍ୟନ୍ତ ଅସମ୍ଭବ ହୋଇଥିଲେ ମଧ୍ୟ, ଗୁରୁଙ୍କ କଥା ଶୁଣି କୃଷ୍ଣ ଓ ବଳରାମ ସଙ୍ଗେ ସଙ୍ଗେ ପ୍ରଭାସକ୍ଷେତ୍ରକୁ ଯାଇ ସମୁଦ୍ରକୁ କହିଲେ, 'ତୁମେ ତରଙ୍ଗ ଦ୍ୱାରା ଗୁରୁପୁତ୍ରଙ୍କୁ ଜଳନିମଜ୍ଜିତ କରିଅଛ । ତେଣୁ ଅତିଶୀଘ୍ର ସେହି ଗୁରୁପୁତ୍ରଙ୍କୁ ଅବିକୃତ ଶରୀରରେ ଆମକୁ ପ୍ରଦାନ କର ।'

ସମୁଦ୍ର କହିଲା, 'ପ୍ରଭୁ, ବ୍ରାହ୍ମଣ ପୁତ୍ରଙ୍କୁ ମୁଁ ହରଣ କରିନାହିଁ । ପଞ୍ଚଜନ୍ୟ ନାମକ ଏକ ଦୈତ୍ୟ ସେହି ବ୍ରାହ୍ମଣ ପୁତ୍ରଙ୍କୁ ଅପହରଣ କରି ଶଙ୍ଖରୂପ ଧାରଣ କରି ଜଳ ମଧ୍ୟରେ ବିଚରଣ କରୁଅଛି । ତେଣୁ ମୋର କିଛି ଦୋଷ ନାହିଁ ।'

ସମୁଦ୍ରଠାରୁ ସେପରି ସୂଚନା ପାଇ କୃଷ୍ଣ ସଙ୍ଗେ ସଙ୍ଗେ ଜଳ ମଧ୍ୟରେ ପ୍ରବେଶ କରି ପଞ୍ଚଜନ୍ୟ ନାମକ ସେହି ଶଙ୍ଖରୂପୀ ଅସୁରକୁ ସଂହାର କଲେ ଓ ତା'ର ଉଦରକୁ ବିଦାର୍ଣ୍ଣ କଲେ; କିନ୍ତୁ ଗୁରୁପୁତ୍ରଙ୍କର କୌଣସି ସନ୍ଧାନ ପାଇଲେ ନାହିଁ । ତେଣୁ ସେହି ପଞ୍ଚଜନ୍ୟ ଶଙ୍ଖକୁ ଧରି କୃଷ୍ଣ ଓ ବଳରାମ ମୃତ୍ୟୁଦେବତା ଯମଙ୍କର ପ୍ରିୟ ସ୍ଥାନ ସଂଯମନୀପୁରକୁ ଯାତ୍ରା କଲେ ଏବଂ ଯମଙ୍କ ବାସଭବନର ଦ୍ୱାର ଦେଶରେ ଦଣ୍ଡାୟମାନ ହୋଇ ସଦ୍ୟ ଅର୍ଜିତ ପଞ୍ଚଜନ୍ୟ ଶଙ୍ଖକୁ ମୁହୁର୍ମୁହୁ ଧ୍ୱନିତ କରିବାକୁ ଲାଗିଲେ । ଶଙ୍ଖଧ୍ୱନିରେ ଆକୃଷ୍ଟ ହୋଇ ଯମ ସ୍ୱୟଂ ଭବନ ବାହାରକୁ ଆସି ଅଖିଳ ଜଗତର ପ୍ରଭୁ କୃଷ୍ଣ ଓ ବଳରାମଙ୍କୁ ଦ୍ୱାରଦେଶରେ ଦଣ୍ଡାୟମାନ ହୋଇଥିବାର ଦେଖି ପରମ ଭକ୍ତି ଓ ଆଦରର ସହିତ ଭବନ ମଧ୍ୟକୁ ପାଛୋଟି ନେଇ ପୂଜାର୍ଚ୍ଚନା କଲେ ।

କୃଷ୍ଣ ଓ ବଳରାମଙ୍କୁ ପ୍ରଣାମ କରି ଯମ ବିନୀତ ଭାବରେ କହିଲେ, 'ପ୍ରଭୁ କ'ଣ କଲେ ଆପଣ ଦୁହେଁ ପ୍ରସନ୍ନ ହେବେ, ଦୟାକରି ପ୍ରକାଶ କରନ୍ତୁ ।'

କୃଷ୍ଣ କହିଲେ, 'ପଞ୍ଚଜନ୍ୟ ଦ୍ୱାରା ଅପହୃତ ହୋଇଥିବା ଗୁରୁ-ପୁତ୍ରଙ୍କୁ ଜୀବିତାବସ୍ଥାରେ ଆମକୁ ପ୍ରଦାନ କର ।'

ଯମ ତଦନୁସାରେ ସାନ୍ଦିପନିଙ୍କ ପୁତ୍ରଙ୍କୁ ଜୀବିତାବସ୍ଥାରେ ଆଣି କୃଷ୍ଣଙ୍କ ହସ୍ତରେ ଅର୍ପଣ କଲେ । କୃଷ୍ଣ ଓ ବଳରାମ ଯମାଳୟରୁ ପ୍ରତ୍ୟାବର୍ତ୍ତନ କରି ଗୁରୁଙ୍କ ନିକଟରେ ତାଙ୍କର ପୁତ୍ରଙ୍କୁ ନିବେଦନ କରି ଗୁରୁଙ୍କର ସନ୍ତୋଷ ବିଧାନ କଲେ ।

ଶିଷ୍ୟ ଦ୍ୱୟଙ୍କର ସେହି ଅଲୌକିକ କାର୍ଯ୍ୟ ଦର୍ଶନ କରି ଗୁରୁ ସାନ୍ଦିପନି ଆନନ୍ଦବିହ୍ୱଳ ଚିତ୍ତରେ ସେମାନଙ୍କୁ ଆଶୀର୍ବାଦ କରି କହିଲେ, 'ବାବା, ବହୁ ଭାଗ୍ୟବଳରେ ତୁମପରି ଶିଷ୍ୟ ଯେତେବେଳେ ପାଇଛି, ଜାଣୁଛି, ମୋର କୌଣସି ଆଶା ଅପୂର୍ଣ୍ଣ ରହିବ ନାହିଁ । ତୁମ୍ଭମାନଙ୍କ ପ୍ରଦତ୍ତ ଏହି ଅଲୌକିକ ଗୁରୁଦକ୍ଷିଣା ପ୍ରାପ୍ତ ହେଲି । ହେ ଯଶସ୍ୱୀ ବୀର ଦ୍ୱୟ, ତୁମ୍ଭମାନଙ୍କର ବିଦ୍ୟାଶିକ୍ଷା ସମାପ୍ତ ହୋଇଅଛି; ତେଣୁ ବର୍ତ୍ତମାନ ଗୃହକୁ ପ୍ରତ୍ୟାବର୍ତ୍ତନ କର । ତୁମ୍ଭମାନଙ୍କର ଯଶ ଓ କୀର୍ତ୍ତି ସର୍ବଲୋକ-ପାବନୀ ହେଉ ଓ ତୁମର ଅଧୀଗତ ବିଦ୍ୟା ଜନ୍ମେ ଜନ୍ମେ ତୁମଠାରେ ଅବିସ୍ମୃତ ଛନ୍ଦରେ ହୃଦ୍ୟ ସ୍ଫୁରିତ ହେଉଥାଉ ।'

କୃଷ୍ଣ ଓ ବଳରାମ ଗୁରୁଙ୍କ ଅନୁଜ୍ଞା ଲାଭକରି ମଥୁରାକୁ ପ୍ରତ୍ୟା-ଗମନ କଲେ । କୃଷ୍ଣ ଓ ବଳରାମଙ୍କୁ ପାଇ ମଥୁରା ପୁନର୍ବାର ହସି ଉଠିଲା ।

ମଥୁରାରୁ ନନ୍ଦପ୍ରମୁଖ ଗୋପବାସୀଙ୍କର ବିଦାୟ ନେବାର କିଛିଦିନ ପରେ ବୃଷ୍ଣିବଂଶର ଉଦ୍ଧବ ନାମକ ଏକ ବ୍ୟକ୍ତିଙ୍କୁ କୃଷ୍ଣ ନିର୍ଜନକୁ ଡାକିନେଲେ । ଉଦ୍ଧବ ଥିଲେ ବୃଷ୍ଣିମାନଙ୍କର ବୁଦ୍ଧିମାନ ମନ୍ତ୍ରୀ ଓ କୃଷ୍ଣଙ୍କର ପ୍ରିୟସଖା ଓ ଭକ୍ତ ।

କୃଷ୍ଣ କହିଲେ, 'ହେ ସୌମ୍ୟ ଉଦ୍ଧବ । ଗୋପପୁର ଛାଡ଼ି ମୋର ଏଠାକୁ ଆସିବା ବହୁଦିନ ହୋଇଗଲାଣି । ପିତା ନନ୍ଦରାଜା ମଧ୍ୟ ବହୁଦିନ ହେବ ମଥୁରାରୁ ଗୋପକୁ ଫେରିଗଲେଣି । ମୋ କଥା ଭାବି ଭାବି ପିତା ନନ୍ଦରାଜା ଓ ମାତା ଯଶୋଦା ଅତ୍ୟନ୍ତ ଦୁଃଖରେ କାଳାତିପାତ କରୁଥିବେ । ତେଣୁ ତୁମେ ବ୍ରଜକୁ ଯାଅ ଏବଂ ମୋର କୁଶଳବାର୍ତ୍ତା ଜଣାଇ ସେମାନଙ୍କୁ ଅଭିନନ୍ଦିତ, ଆଶ୍ୱାସିତ ଓ ଆନନ୍ଦିତ

କର । ପ୍ରିୟ ଉଦ୍ଧବ, ଗୋପରମଣୀମାନଙ୍କ ପକ୍ଷରେ ମୋର ଅନୁପସ୍ଥିତି ଜନିତ ବିରହ ଅତ୍ୟନ୍ତ ଅସହ୍ୟ ହୋଇପଡ଼ିଥିବ । ତୁମେ ସେମାନଙ୍କୁ ମୋ ପ୍ରଦତ୍ତ ସନ୍ଦେଶ ଶୁଣାଇ ଆଶ୍ୱସ୍ତ କରିଆସ । ଗୋପୀମାନଙ୍କର ମନ ସର୍ବଦା ମୋଠାରେ ଲାଗିରହିଥାଏ । ସେମାନେ ମୋତେ ନିଜ ଜୀବନଠାରୁ ଅଧିକ ଭଲ ପାଆନ୍ତି । ମୋତେ ସେମାନେ ସେମାନଙ୍କର ମନ, ପ୍ରାଣ, ଜୀବନ ବୋଲି ମନେ କରୁଥିଲେ । ମୋ ପାଇଁ ସେମାନେ ନିଜ ନିଜର ପତି, ପୁତ୍ର, ପରିବାର ପର୍ଯ୍ୟନ୍ତ ପରିତ୍ୟାଗ କରି ମୋତେ ପ୍ରାର୍ଥନା କରୁଥିଲେ । ମୋତେ ସେମାନେ କେବଳ ପ୍ରିୟ ବା ପ୍ରିୟତମ ରୂପରେ ଦେଖୁ ନ ଥିଲେ; ମୋତେ ସେମାନେ ନିଜର ଆତ୍ମା ସଦୃଶ ଜ୍ଞାନ କରୁଥିଲେ । ଉଦ୍ଧବ, ଯେଉଁମାନେ ମୋ ପାଇଁ ଲୌକିକ ଓ ପାରଲୌକିକ କର୍ମପ୍ରତି ଭ୍ରୂକ୍ଷେପ ନ କରି ମୋ ନିକଟରେ ଆସି ଉପସ୍ଥିତ ହୋଇଥିଲେ । ସେହି ଗୋପରମଣୀମାନଙ୍କର କଥା ମୋତେ ବିଚଳିତ କରିବା ସ୍ୱାଭାବିକ । ମୋର ଏହି ମଥୁରା ଆଗମନ ସେମାନଙ୍କ ମନରେ ଦାରୁଣ ଦୁଃଖ ସୃଷ୍ଟି କରିଅଛି । ମୋ କଥା ସ୍ମରଣ କରି କରି ସେମାନେ ମୋହିତ ଓ ମୂର୍ଚ୍ଛିତ ହୋଇପଡ଼ିଥାନ୍ତି । ମୋର ସାମୟିକ ଅନୁପସ୍ଥିତିରେ ସେମାନେ ବିରହକାତର ହୋଇ ପ୍ରତି ମୁହୂର୍ତ୍ତରେ ମୋର ଆଗମନକୁ ପରମ ଉତ୍କଣ୍ଠାର ସହିତ ଅପେକ୍ଷା କରିଥାନ୍ତି । 'ମୁଁ ଶୀଘ୍ର ଫେରିଆସିବି' ବୋଲି ସେମାନଙ୍କୁ କହି ବହୁଦିନ ଏଠାରେ ଅବସ୍ଥାନ କଲିଣି । ମୋର ସେହି ପ୍ରତିଶ୍ରୁତିରେ ବିଶ୍ୱାସ କରି ସେମାନେ ଯେ ଅତ୍ୟନ୍ତ କଷ୍ଟରେ କୌଣସିମତେ ଜୀବନ ଧାରଣ କରି ରହିଅଛନ୍ତି, ମୁଁ ତାହା ଉତ୍ତମରୂପେ ଉପଲବ୍ଧି କରୁଅଛି । ପ୍ରିୟ ଉଦ୍ଧବ ! ମୁଁ ସେମାନଙ୍କ ଜୀବନର ଆଧାର ସ୍ୱରୂପ । ତୁମେ ଗୋପକୁ ଯାଇ ବିରହକ୍ଲିଷ୍ଟା ଗୋପୀମାନଙ୍କୁ ମୋର କୁଶଳସମ୍ବାଦ ଓ ସନ୍ଦେଶ ଶୁଣାଇ ଆଶ୍ୱସ୍ତ କରିଆସ ।'

କୃଷ୍ଣଙ୍କ ନିର୍ଦ୍ଦେଶକ୍ରମେ ଉଦ୍ଧବ ଆଗ୍ରହର ସହିତ ଗୋପକୁ ଯାତ୍ରା କଲେ । ଉଦ୍ଧବ ଗୋପରେ ପହଞ୍ଚିଲାବେଳକୁ ସନ୍ଧ୍ୟା ପ୍ରାୟ ହୋଇ-ଗଲାଣି । ଗୋଚରଣରୁ ଧେନୁବତ୍ସ ଦଳ ଗୃହକୁ ଫେରୁଥାନ୍ତି ଏବଂ ସେମାନଙ୍କର ପଦକ୍ଷେପର ଗୋଧୂଳିରେ ଗୋପଦାଣ୍ଡର ଚତୁର୍ଦ୍ଦିଗ ଆଚ୍ଛାଦିତ ହୋଇଥାଏ । ଗୋପ ଓ ଗୋପୀମାନେ ଧେନୁମାନଙ୍କର

ସେବା ଯତ୍ନରେ ଲିପ୍ତଥାଇ କୃଷ୍ଣ ଓ ବଳରାମଙ୍କର କଲ୍ୟାଣପ୍ରଦ ଲୀଳାଚରିତ୍ରମାନ ସୁନ୍ଦର କଣ୍ଠରେ ଗାନ କରୁଥାନ୍ତି । ଗୋପପୁରର ଘରେ ଘରେ ଅଗ୍ନି, ସୂର୍ଯ୍ୟ, ଅତିଥି, ଗୋ, ବ୍ରାହ୍ମଣ, ଦେବତା ଓ ପିତୃପୁରୁଷମାନଙ୍କର ଯଥାବିଧି ପୂଜା ହେବାର ଚାଲିଥାଏ ଏବଂ ଧୂପର ସୁଗନ୍ଧରେ ସମଗ୍ର ବ୍ରଜର ବାୟୁମଣ୍ଡଳ ମହକ ଉଠୁଥାଏ । ପକ୍ଷୀମାନଙ୍କର କୂଜନରେ ଚତୁର୍ଦ୍ଦିଗ ମୁଖରିତ ହେଉଥାଏ । ଫଳପୁଷ୍ପରେ ଅତ୍ୟନ୍ତ ସମୃଦ୍ଧ ବୃକ୍ଷଲତା ଗୋପପୁର ଅପୂର୍ବ ଶୋଭା ଧାରଣ କରିଥାଏ । ଏହିପରି ଆସନ୍ନ ସନ୍ଧ୍ୟାର ରମଣୀୟ ମୁହୂର୍ତ୍ତରେ କୃଷ୍ଣଭକ୍ତ ଉଦ୍ଧବ ଗୋପରେ ଯାଇଁ ପହଞ୍ଚିଲେ ।

ଉଦ୍ଧବଙ୍କୁ ଦେଖି ନନ୍ଦରାଜା କୋଟିନିଧି ପାଇଲା ପରି ଅନୁଭବ କଲେ ଏବଂ ବହୁ ଆଦରରେ ତାଙ୍କୁ ଘରକୁ ପାଛୋଟି ନେଇ ସତ୍କାର କଲେ । ଆହାରାଦି ଗ୍ରହଣ କରି ଉଦ୍ଧବ ସୁଖରେ ବିଶ୍ରାମ କରୁଥିବା ସମୟରେ ନନ୍ଦରାଜା ତାଙ୍କ ପାଖରେ ବସି କହିଲେ; 'ହେ ଭାଗ୍ୟବାନ ଉଦ୍ଧବ ! ମୋର ପରମ ବନ୍ଧୁ ବସୁଦେବ ବନ୍ଦୀ ଜୀବନରୁ ମୁକ୍ତ ହୋଇ ସପରିବାର କୁଶଳରେ ଅଛନ୍ତି ତ ? ସାଧୁସ୍ୱଭାବସମ୍ପନ୍ନ ଯଦୁବଂଶୀୟ-ମାନଙ୍କର ଦୁର୍ଦ୍ଦାନ୍ତ ଶତ୍ରୁ, ପାପିଷ୍ଠ କଂସ ନିଜର ସ୍ୱକୃତ ପାପ ଫଳରେ ଅନୁଜମାନଙ୍କ ସହିତ ବିନଷ୍ଟ ହୋଇଥିବାରୁ, ଆମ୍ଭେମାନେ ବିଶେଷ ଆନନ୍ଦିତ । ଉଦ୍ଧବ, ଆମ୍ଭମାନଙ୍କର କଥା, ବିଶେଷକରି ତା'ର ମାତା ଯଶୋଦାଙ୍କ କଥା, ସାଙ୍ଗସାଥି ତଥା ଅନ୍ୟ ଗୋପବାସୀଙ୍କ କଥା, ଗୋପର ଧେନୁପଲ ଓ ଗୋବର୍ଦ୍ଧନ ଗିରି କଥା କୃଷ୍ଣର ମନେ ପଡ଼େ ନା ? ଆମ ପରି ସ୍ୱଜନମାନଙ୍କୁ ଥରେ ଆସି ଦେଖିଯିବାକୁ କୃଷ୍ଣର କ'ଣ କେବେ ମନେ ହୁଏ ନା ? ସେ କ'ଣ ଏଠାକୁ ଆଉ ଆସିବ ନାହିଁ ? ହାୟ, ସୁନ୍ଦର ନାସିକାଯୁକ୍ତ କୃଷ୍ଣର ସେହି ସୌମ୍ୟବଦନ ଆଉ କ'ଣ ଦର୍ଶନ କରିବାର ଭାଗ୍ୟ ଆମର ସତେ ହେବ ! କେତେ କେତେ ବଡ଼ ବିପଦରୁ ଓ ନିଶ୍ଚିତ ମୃତ୍ୟୁରୁ କୃଷ୍ଣ ଆମକୁ ରକ୍ଷା ନ କରିଛି ! ! କୃଷ୍ଣର ସେହି କାର୍ଯ୍ୟସବୁ ଆଜି ଗୋଟି ଗୋଟି ହୋଇ ମନେ ପଡ଼ୁଛି; ତା'ର ସୁନ୍ଦର ସ୍ମିତମୁଖ ଆମ ଦୃଷ୍ଟି ସମ୍ମୁଖରେ ନାଚି ଉଠୁଛି ! କୃଷ୍ଣର ସେହି ସ୍ମୃତି ଆମର ସକଳ କାର୍ଯ୍ୟକୁ ଆଜି ଶିଥିଳ କରି ଦେଇଛି । ଆମ କଥା

ଦୂରେ ଥାଉ, କୃଷ୍ଣର ସେହି ସୁନ୍ଦର ଚରଣର ଚିହ୍ନ ଅଳଙ୍କୃତ ଏହି ଯମୁନାକୂଳ ଓ ତା'ର ନିତ୍ୟ ଗୋଚ୍ଚାରଣ ଓ କ୍ରୀଡ଼ାଭୂମି ଦର୍ଶନ କରି ଇତର ପ୍ରାଣୀମାନେ ମଧ୍ୟ କୃଷ୍ଣର ଅଦର୍ଶନ ଜନିତ ବେଦନାରେ ଆହାର ନିଦ୍ରା ପର୍ଯ୍ୟନ୍ତ ଭୁଲିଗଲେଣି । ଗର୍ଗାଚାର୍ଯ୍ୟ ଯାହା କହିଥିଲେ, ତାହା ନିଶ୍ଚିତ ଭାବରେ ସତ୍ୟ । ନିଶ୍ଚୟ କୌଣସି ବିଶିଷ୍ଟ ଦେବତା ଦେବକାର୍ଯ୍ୟ ସମ୍ପନ୍ନ କରିବା ନିମନ୍ତେ ବହୁଭାଗ୍ୟବଶତ ବସୁଦେବ ତଥା ମୋ ଗୃହରେ ପୁତ୍ର ରୂପରେ ଆବିର୍ଭୂତ ହୋଇଅଛନ୍ତି; ତା' ନ ହେଇଥିଲେ, ସିଂହ ଯେପରି ପଶୁମାନଙ୍କୁ ଅବଲୀଳାକ୍ରମେ ସଂହାର କରେ ଅନୁରୂପ ଭାବରେ ସହସ୍ର ମତ୍ତଗଜତୁଲ୍ୟ ବିକ୍ରମଶାଳୀ ରାଜା କଂସ ଏବଂ ତା'ର ଚାଣୁର ଓ ମୁଷ୍ଟିକ ପରି ପ୍ରସିଦ୍ଧ ମଲ୍ଲଙ୍କୁ ବାଳକ କୃଷ୍ଣ ଓ ବଳରାମ ବିନାଶ କରିବାକୁ ସମର୍ଥ ହୁଅନ୍ତେ ବା କିପରି ? ଇକ୍ଷୁଦଣ୍ଡକୁ ଭାଙ୍ଗିଲା ପରି କୃଷ୍ଣ ଅନାୟାସରେ ସେହି ବିଶାଳ ଧନୁକୁ ଭାଙ୍ଗି ପକାଇଲା । ସପ୍ତାହକାଳ ବାମହସ୍ତରେ ବିଶାଳ ଗୋବର୍ଦ୍ଧନ ଗିରିକୁ ସେ ଉତ୍ତୋଳିତ କରି ରଖିଲା ଓ ବହୁ ଦୈତ୍ୟଙ୍କୁ ସେ ବିନାଶ କଲା । ଏସବୁ କାର୍ଯ୍ୟ କ'ଣ କୌଣସି ସାଧାରଣ ବାଳକ ପକ୍ଷରେ କେବେ ସମ୍ଭବ ? ଗର୍ଗାଚାର୍ଯ୍ୟ ଯଥାର୍ଥରେ କହିଥିଲେ, 'ଏମାନେ ନିଶ୍ଚୟ ଭଗବାନ । ମନୁଷ୍ୟ ରୂପରେ ମାତ୍ର ଜାତ ହୋଇ ଅଛନ୍ତି । କୃଷ୍ଣର ମୁଖ ଦର୍ଶନ କରିବୁ, ସେ ସୌଭାଗ୍ୟ କ'ଣ ଆମର ଆଉ ହେବ ? ହାୟ !'

ପୁତ୍ରାନୁରକ୍ତଚିତ୍ତ ନନ୍ଦ କୃଷ୍ଣଙ୍କର ଗୁଣଗାନ କରୁ କରୁ ଭାବ-ବିହ୍ୱଳତାରେ ତାଙ୍କର କଣ୍ଠ ବାଷ୍ପରୁଦ୍ଧ ହୋଇଗଲା । ସେ ଆଉ କିଛି କହିପାରିଲେ ନାହିଁ । ନନ୍ଦଙ୍କ ନିକଟରେ ଯଶୋଦା ମଧ୍ୟ ଉପବେଶନ କରିଥିଲେ । ସ୍ୱାମୀଙ୍କ ମୁଖରୁ କୃଷ୍ଣ ସମ୍ପର୍କିତ ସେହି ମର୍ମସ୍ପର୍ଶୀ କଥାମାନ ଶ୍ରବଣ କରିବା ଫଳରେ ତାଙ୍କର ପୟୋଧରରୁ ସ୍ୱତଃ ଦୁଗ୍ଧ କ୍ଷରିତ ହେବାକୁ ଲାଗିଲା ଓ ତାଙ୍କର ନୟନଯୁଗଳ ପ୍ରେମାଶ୍ରୁରେ ଆର୍ଦ୍ର ହୋଇ ଉଠିଲା ।

ନନ୍ଦ ଓ ଯଶୋଦାଙ୍କ ବ୍ୟବହାରରେ କୃଷ୍ଣଙ୍କ ସମ୍ପର୍କରେ ସେହି ସର୍ବୋତ୍ତମ ଅନୁରାଗ ଲକ୍ଷ୍ୟକରି ଉଦ୍ଧବ ଆନନ୍ଦବିହ୍ୱଳ ହୋଇପଡ଼ିଲେ । ନନ୍ଦ ଓ ଯଶୋଦାଙ୍କୁ ପ୍ରବୋଧନା ଦେବା ନିମନ୍ତେ ଉଦ୍ଧବ କହିଲେ,

'ହେ ମାନବ, ଅଖିଳ ଜଗତର ଗୁରୁ ଭଗବାନ ନାରାୟଣଙ୍କଠାରେ ମନପ୍ରାଣ ସମର୍ପଣ କରିଦେଇ ଥିବାରୁ ଆପଣ ବାସ୍ତବକ ପ୍ରଶଂସାର୍ହ । ଆପଣଙ୍କ ପରି ଭାଗ୍ୟବାନ ବ୍ୟକ୍ତି ସମଗ୍ର ପୃଥିବୀରେ ଏକାନ୍ତ ବିରଳ । ଆପଣଙ୍କର ଅନୁମାନ ସତ୍ୟ; କୃଷ୍ଣ ଓ ବଳରାମ ଏହି ଅଖିଳ ଜଗତର ସୃଷ୍ଟିର କାରଣ ଓ ସେମାନେ ପୁରାଣପୁରୁଷ । ପ୍ରାଣୀମାନଙ୍କ ମଧ୍ୟରେ ସେମାନେ ଅନ୍ତର୍ଯାମୀ ରୂପରେ ଅବସ୍ଥାନ କରୁଅଛନ୍ତି । ଯେଉଁ ବ୍ୟକ୍ତି ମୃତ୍ୟୁ ସମୟରେ ନିଜ ମନରେ ଶୁଦ୍ଧଭାବ ପୋଷଣ କରି ସେମାନଙ୍କୁ କ୍ଷଣକ ପାଇଁ ଚିନ୍ତାକରେ, ସେ ସମସ୍ତ କାମନାର ସନ୍ଧିରୁ ମୁକ୍ତ ହେବା ସଙ୍ଗେ ସଙ୍ଗେ ସୂର୍ଯ୍ୟଙ୍କ ପରି ତେଜସ୍ୱୀ ରୂପ ଧାରଣ କରି ବ୍ରହ୍ମଗତି ପ୍ରାପ୍ତ ହୁଏ । ଭକ୍ତମାନଙ୍କର ସକଳ କାମନା ପୂର୍ଣ୍ଣ କରିବା ସହିତ ପୃଥିବୀର ଭାର ଲାଘବ କରିବା ନିମନ୍ତେ ଭଗବାନ ନରଶରୀର ଧାରଣ କରିଅଛନ୍ତି ଏବଂ ତାଙ୍କ ପ୍ରତି ଆପଣ ଦୁହିଁଙ୍କ ହୃଦୟରେ ଯେଉଁ ପ୍ରଗାଢ଼ ବାତ୍ସଲ୍ୟ ମମତା ରହିଛି ବାସ୍ତବିକ ତା'ର ପଟାନ୍ତର ନାହିଁ । ଆପଣଙ୍କୁ ଦେଇଥିବା ପ୍ରତିଶ୍ରୁତିକୁ ରକ୍ଷାକରି ଆପଣମାନଙ୍କର ଆନନ୍ଦବର୍ଦ୍ଧନ କରିବା ନିମନ୍ତେ ଭକ୍ତବତ୍ସଳ ଭଗବାନ କୃଷ୍ଣ ଖୁବ୍ ନିକଟରେ ବ୍ରଜଧାମକୁ ଆସିବେ । କୃଷ୍ଣ ସର୍ବବ୍ୟାପକ ଓ ସମସ୍ତଙ୍କ ମଧ୍ୟରେ ନିତ୍ୟ ବିରାଜିତ । ତାଙ୍କର ପ୍ରିୟ ଅପ୍ରିୟ କିଛି ନାହିଁ । ତାଙ୍କର ଜନ୍ମ ନାହିଁ କି ନାହିଁ କୌଣସି ନିର୍ଦ୍ଦିଷ୍ଟ ଶରୀର । ସାଧୁମାନଙ୍କୁ ପରିତ୍ରାଣ କରିବା ନିମନ୍ତେ ବିଭିନ୍ନ ରୂପରେ ସେ ଆବିର୍ଭୂତ ହୋଇଥାନ୍ତି । କୃଷ୍ଣ ଅଜନ୍ମା ଓ ଗୁଣରହିତ । କିନ୍ତୁ ଗୁଣାତୀତ ହୋଇ ମଧ୍ୟ ଜଗତରେ ଲୀଳା କରିବା ନିମନ୍ତେ ସତ୍ତ୍ୱ, ରଜ, ତମ ଗୁଣକୁ ଆଶ୍ରୟ କରି ଅଖିଳ ଜଗତକୁ ସୃଷ୍ଟି, ସଂରକ୍ଷଣ ଓ ସଂହାର କରିଥାନ୍ତି । ଭଗବାନ କୃଷ୍ଣ କେବଳ ଆପଣଙ୍କର ପୁତ୍ର ନୁହଁନ୍ତି, ସେ ସମଗ୍ର ଜଗତର ସୃଷ୍ଟିକର୍ତ୍ତା, ପରମାତ୍ମା ଓ ଈଶ୍ୱର । ସମସ୍ତ ଜଗତ ହିଁ କୃଷ୍ଣମୟ ।'

ନନ୍ଦ ଓ ଯଶୋଦାଙ୍କ ସହିତ ଉଦ୍ଧବ କଥାବାର୍ତ୍ତା କରୁ କରୁ ରାତି ଅତିବାହିତ ହୋଇଗଲା । ଅତି ପ୍ରତ୍ୟୁଷରୁ ଗୋପରମଣୀମାନେ ଶଯ୍ୟାତ୍ୟାଗ କରି ଦୀପ ପ୍ରଜ୍ୱଳିତ କଲେ ଏବଂ ଗନ୍ଧପୁଷ୍ପ ଦ୍ୱାରା ଦେହଳୀ ପ୍ରଭୃତିର ଅର୍ଚ୍ଚନା କରି ଦଧିମନ୍ଥନ ଆରମ୍ଭ କଲେ ଓ ସେଥି ସଙ୍ଗେ ସଙ୍ଗେ କୃଷ୍ଣଙ୍କ ଗୁଣାବଳୀକୁ ସୁମଧୁର ସ୍ୱରରେ ଗାନ କରିବାକୁ ଲାଗିଲେ ।

ଦଧି ମନ୍ଥନକାଳୀନ ଶବ୍ଦର ତାଳେ ତାଳେ ସେମାନଙ୍କର ସୁମଧୁର କୃଷ୍ଣ-ଗୀତ ସ୍ୱର୍ଗଲୋକ ପର୍ଯ୍ୟନ୍ତ ଶ୍ରୁତ ହେଲା ଏବଂ ସେହି ସଙ୍ଗୀତର ସ୍ୱର-ଲହରୀ ସହିତ ଯେପରି ସର୍ବତ୍ର ବ୍ୟାପ୍ତ ହୋଇ ସମସ୍ତ ଅମଙ୍ଗଳକୁ ବିନାଶ କରି ସମଗ୍ର ସଂସାରକୁ ମଙ୍ଗଳମୟ କରିଦେଲା । ସର୍ବତ୍ର ଅପୂର୍ବ ପ୍ରଶାନ୍ତିର ବାତାବରଣ ଅନୁଭୂତ ହେଲା ।

ପ୍ରଭାତରେ ସୂର୍ଯ୍ୟୋଦୟ ହେବାପରେ ଗୋପରମଣୀମାନେ ଗୃହ ବାହାରକୁ ଆସି ନନ୍ଦରାଜାଙ୍କ ପ୍ରାସାଦର ପ୍ରବେଶଦ୍ୱାର ସମ୍ମୁଖରେ ଗୋଟିଏ ସ୍ୱର୍ଣ୍ଣନିର୍ମିତ ରଥ ରହିଥିବାର ଦେଖିବାକୁ ପାଇଲେ । 'ରଥଟି ପୁଣି କାହାର ? ରଥରେ କିଏ ଆସିଛି ?' ଆଦି ବିଷୟ ଜାଣିବାକୁ ସେମାନଙ୍କ ମନରେ ସ୍ୱାଭାବିକ କୌତୂହଳ ଜାତ ହେଲା । ଗୋପୀମାନେ ପରସ୍ପର କୁହାକୁହି ହେଲେ, 'ଏ ରଥ କାହାର ହୋଇଥିବ ? କ'ଣ ଅକ୍ରୂର ପୁଣି ଆସିଛି କି ? ଅକ୍ରୂରର, ଆସିବାର ଆଉ ବା କ'ଣ ଆବଶ୍ୟକତା ଅଛି ? ତେବେ ଏ ରଥ କାହାର ?'

ଗୋପୀମାନେ ଏହିପରି ଭାବୁଛନ୍ତି, ସେହି ସମୟରେ ସ୍ନାନାଦି କାର୍ଯ୍ୟ ଶେଷକରି ଉଦ୍ଧବ ଯମୁନାରୁ ଫେରୁଥିଲେ । ଉଦ୍ଧବଙ୍କର ଆଜାନୁଲମ୍ବିତ ବାହୁଯୁଗଳ, ନବକମଳଦଳ ସମ କୋମଳ ନେତ୍ରଦ୍ୱୟ, ଶରୀରରେ ପୀତାମ୍ବର, ଗଳାରେ ପଦ୍ମମାଳ, କର୍ଣ୍ଣରେ ମଣିଖଚିତ ସ୍ୱର୍ଣ୍ଣ-କୁଣ୍ଡଳ, ପ୍ରଫୁଲ୍ଲବଦନ ସମନ୍ୱିତ ଉଦ୍ଧବଙ୍କର ଶରୀର ଅବିକଳ କୃଷ୍ଣ-ରୂପର ସାଦୃଶ୍ୟ ବହନ କରିଥିଲା । କୃଷ୍ଣଙ୍କ ପରି ବେଶଭୂଷା ପରିହିତ ଉଦ୍ଧବଙ୍କୁ ଦେଖି ଗୋପୀମାନେ ବିସ୍ମିତ ହୋଇଗଲେ ଏବଂ ଭାବିଲେ, 'ଏ ପୁରୁଷଟି କିଏ ? କେଉଁଠୁ ଏ ଆସିଛନ୍ତି ? ଏ କ'ଣ କାହାର ଦୂତ !! ଏହିପରି ଭାବି, ପରିଚୟ ଜାଣିବା ନିମନ୍ତେ ଉଦ୍ଧବଙ୍କ ନିକଟକୁ ଆସି ତାଙ୍କୁ ଚତୁର୍ଦ୍ଦିଗରୁ ଘେରିଗଲେ । ଉଦ୍ଧବଙ୍କର ହାବଭାବରୁ କୃଷ୍ଣଙ୍କ ଦ୍ୱାରା ପ୍ରେରିତ ଦୂତ ବୋଲି ତାଙ୍କୁ ଜାଣିବାକୁ ପାଇ ଗୋପୀମାନେ ବିନୟ-ଦୃଷ୍ଟି, ମନ୍ଦ ମନ୍ଦ ଲଜ୍ଜାସ୍ନିଗ୍ଧ ହାସ୍ୟ, ମଧୁର ବାକ୍ୟ ଓ ଅର୍ଘ୍ୟାଦି ଦ୍ୱାରା ଉଦ୍ଧବଙ୍କର ସତ୍କାର କଲେ ଏବଂ ପଚାରିଲେ, 'ଯଦୁନାଥ କୃଷ୍ଣଙ୍କର ତୁମେ ଅନୁଚର ବୋଲି ଆମେ ଜାଣିବାକୁ ପାଉଛୁ ଓ ତାଙ୍କର ପିତା-ମାତାଙ୍କୁ ପ୍ରସନ୍ନ କରିବା ନିମନ୍ତେ ସେ ତୁମକୁ ଦୂତ ରୂପରେ ଏଠାକୁ

ପ୍ରେରଣ କରିଅଛନ୍ତି; ତଦନୁସାରେ ତୁମେ ତାଙ୍କର ସନ୍ଦେଶ ବହନ କରି ଏଠାକୁ ଆସିଛ । ସଂସାରତ୍ୟାଗୀ ଯୋଗୀଋଷିମାନେ ମଧ୍ୟ ପିତା-ମାତାଙ୍କର ଦୁସ୍ତ୍ୟଜ୍ୟ ସ୍ନେହ ସମ୍ପର୍କକୁ ତ୍ୟାଗ କରିପାରନ୍ତି ନାହିଁ ଏବଂ ପିତାମାତାଙ୍କ ଛଡ଼ା କୃଷ୍ଣଙ୍କର ସ୍ମରଣଯୋଗ୍ୟ ଏପରି ଚିତ୍ତାସ୍ଥ ବ୍ୟକ୍ତି ଏ ବ୍ରଜରେ ଆଉ ବା କିଏ ଅଛି ? ଜଣକ ସହିତ ଜଣକର ଯେଉଁ ମୈତ୍ରୀବନ୍ଧନ ପ୍ରତିଷ୍ଠିତ ହୁଏ, ତାହା କିଛି ନା କିଛି ସ୍ୱାର୍ଥକୁ କେନ୍ଦ୍ରକରି ଗଢ଼ିଉଠିଥାଏ ଏବଂ ସେହି ସ୍ୱାର୍ଥସିଦ୍ଧି ହେଲା ପରେ ମୈତ୍ରୀ-ବନ୍ଧନ ମଧ୍ୟ ଏକତରଫା ଭାବରେ ଶିଥିଳ ହୋଇପଡେ । ଦେଖନା, ପୁଷ୍ପ ପ୍ରତି ଭ୍ରମରର କି ଘନିଷ୍ଠ ମିତ୍ରତା; ଅଥଚ ରସାସ୍ୱାଦନ କରିସାରିବା ପରେ ସେହି ଘନିଷ୍ଠତାର ତ ପୁଣି ସମାପ୍ତି ଘଟେ ! ସ୍ତ୍ରୀ ପୁରୁଷମାନଙ୍କର ପ୍ରୀତି-ସମ୍ପର୍କ ତ ଏହିପରି ସ୍ୱାର୍ଥସର୍ବସ୍ୱ ଓ କ୍ଷଣସ୍ଥାୟୀ । ବାରବନିତା ଧନହୀନ ନାଗରକୁ, ଶାସନ ଅସମର୍ଥ ରାଜାକୁ ପ୍ରଜାମାନେ, ଶିକ୍ଷାସମାପ୍ତ ହେବାପରେ ଶିଷ୍ୟମାନେ ଗୁରୁଙ୍କୁ, ଯଜ୍ଞ-ଦକ୍ଷିଣା ମିଳିବା ପରେ ଋତ୍ୱିକମାନେ ସେମାନଙ୍କର ଯଜମାନଙ୍କୁ, ଫଳ ଶେଷ ହେବାପରେ ପକ୍ଷୀମାନେ ବୃକ୍ଷକୁ, ଭୋଜନ ପରେ ଅତିଥିମାନେ ଗୃହସ୍ୱାମୀଙ୍କୁ, ଦଗ୍‌ଧୀଭୂତ ବନକୁ ମୃଗମାନେ ଏବଂ ସମ୍ଭୋଗ ପରେ ଏକଦା କଣ୍ଠଲଗ୍ନା ରମଣୀଙ୍କୁ ଜାର-ପୁରୁଷମାନେ ଯେପରି ଆଦର କରନ୍ତି ନାହିଁ, ସେହିପରି ସଚରାଚର ପରିଦୃଷ୍ଟ ନସୂତର ଏହି ନମରୁ କୃଷ୍ଣ ବା ବ୍ୟତିକ୍ରମ ହୁଅନ୍ତେ କପରି ?'

କୃଷ୍ଣଙ୍କଠାରେ କାୟ-ମନ-ବାକ୍ୟ-ସମର୍ପିତା ଅଭିମାନିନୀ ଗୋପରମଣୀମାନେ ଏହିପରି ଭାବରେ କୃଷ୍ଣଚିନ୍ତାରେ ଅତ୍ୟନ୍ତ ବିହ୍ୱଳ ହୋଇପଡ଼ିଲେ । ସେମାନଙ୍କର ସ୍ଥାନ-କାଳ-ପାତ୍ରର ସକଳ ଜ୍ଞାନ ଲୋପ ପାଇଗଲା ଏବଂ ଲୋକଲଜ୍ଜା ପରିତ୍ୟାଗ କରି କୃଷ୍ଣଙ୍କର ବାଲ୍ୟ ଗୋପ-ଲୀଳାକୁ ସ୍ମରଣ କରି ରୋଦନ କଲେ ।

ଭାବବିହ୍ୱଳା ଗୋପୀମାନଙ୍କ ମଧ୍ୟରୁ ଜଣେ ନିକଟରେ ପୁଷ୍ପ-ପରାଗରଞ୍ଜିତ ଏକ ଭ୍ରମରକୁ ମୃଦୁଗୁଞ୍ଜନ କରି ଉଡୁଥିବାର ଦେଖି ଏବଂ ପ୍ରେମୋନ୍ମାଦନାରେ ସେହି ଭ୍ରମରକୁ କୃଷ୍ଣଙ୍କ ପ୍ରେରିତ ଦୂତ ବୋଲି ଭାବି ଅଭିମାନର ବଶବର୍ତ୍ତିନୀ ହୋଇ ଭ୍ରମରକୁ ଲକ୍ଷ୍ୟକରି କହିଲା, 'ରେ କପଟିଆ ମଧୁପ, ତୁ ଯେପରି ତୋର ପ୍ରେରଣକାରୀ ବନ୍ଧୁ ମଧ୍ୟ ସେହିପରି

କପଟିଆ । ଯା, ମୋତେ ଛୁଁଇ ନା । ମୋ ପାଖରେ ଆଉ ଅନୁନୟ ବିନୟ କରିବାର ଅବଶ୍ୟକତା ନାହିଁ । ମୋ ସପତ୍ନୀର କୁଚବିମର୍ଦ୍ଦିତ ପୁଷ୍ପମାଳର କେଶରରେ ତୋର ସର୍ବାଙ୍ଗ ଅନୁରଞ୍ଜିତ ହୋଇଅଛି । ତୋର ବନ୍ଧୁ ଯେପରି ତୁ ମଧ୍ୟ ସେହିପରି ଏକ ପୁଷ୍ପରୁ ମଧୁ ଚାଖିସାରି ଅନ୍ୟ ପୁଷ୍ପ ଉଦ୍ଦେଶ୍ୟରେ ଯାଇଯାଉ । କୃଷ୍ଣ ତେଣେ ମଥୁରାର ମାନିନୀ ରମଣୀମାନଙ୍କର ମନ ହରଣ କରୁଥାନ୍ତୁ ଓ ସେହି ସଖିମେଳରେ ତାଙ୍କର ଚରିତ ଉପହାସର ପାତ୍ର ହେଉ । ଏଠାକୁ ତୋତେ ଦୂତ କରି ପ୍ରେରଣ କରିବାର ଆଉ କି ଆବଶ୍ୟକତା ଥିଲା ? ଯାଃ, ଯା'ତୁ ଯାଃ । ତୋ ପରି ତୋର ବନ୍ଧୁ ଯେ ଗୋଟିଏ ପୁଷ୍ପରୁ ମଧୁ ଆସ୍ୱାଦନ କରିବା ପରେ ତାକୁ ପରିତ୍ୟାଗ କରି ଅନ୍ୟ ପୁଷ୍ପ ନିକଟକୁ ଉଡ଼ିଯାଆନ୍ତି ଏବଂ ସେପରି ଚପଳଙ୍କୁ ସୁକୁମାରୀ ଲକ୍ଷ୍ମୀ ଯେ କାହିଁକି ଏତେ ସେବା ଓ ଭକ୍ତି କରିଥାନ୍ତି, ମୁଁ ବୁଝିପାରୁ ନାହିଁ । ମନେହୁଏ, ନଟନାଗର ନିଶ୍ଚୟ ମନଭୁଲା ବାକ୍ୟଚାତୁରୀରେ ତାଙ୍କର ଚିତ୍ତ ହରଣ କରିଅଛନ୍ତି । ହେ ଷଟ୍‌ପଦ, ଆମେ ବନବାସିନୀ ନିରାଶ୍ରା ରମଣୀ । ଆମର ନା ଅଛି ଘର, ନା ଅଛି ସମ୍ବଳ । ଆମ ପାଖରେ ଗୁଣୁ ଗୁଣୁ ସ୍ୱରରେ କୃଷ୍ଣ-ଗୀତ ଗାଇ ଆମକୁ ଆଉ ଭୁଲାଇବାକୁ ଚେଷ୍ଟା କର ନା, ବରଂ ଯା, ମଥୁରା-ପୁରୀର ନବୀନା ମାନିନୀମାନଙ୍କ ନିକଟରେ କୃଷ୍ଣ-ଗୀତ ଗାନ କରିବୁ ଯେ ସେମାନେ ତୋ ଉପରେ ଖୁସି ହୋଇ ତୋତେ ପୁରସ୍କୃତ କରି ତୋର ମନସ୍କାମନା ପୂର୍ଣ୍ଣ କରିବେ ।'

ସେହି ଭ୍ରମରଟି ଉଡ଼ୁ ଉଡ଼ୁ ଗୋପୀର ଚରଣପ୍ରାନ୍ତରେ ପଡ଼ିଯାଇ ତଥାପି ମୃଦୁଗୁଞ୍ଜନ କରିବାରୁ, ଭ୍ରମର ପାଦ ଧରି କ୍ଷମା ଭିକ୍ଷା କରୁଅଛି ବୋଲି ମନେକରି ଗୋପୀ ପୁନର୍ବାର କହିଲା, 'ମୋ ପାଦରେ ଯେତେ ମୁଣ୍ଡ ପିଟିଲେ ମଧ୍ୟ ତୋର କିଛି ଲାଭ ହେବ ନାହିଁ । କୃଷ୍ଣଙ୍କ ପାଖରୁ ଅନୁନୟ ପ୍ରକାଶଭଙ୍ଗୀ ଓ ଚାଟୁ କଥା ବେଶ ଶିଖି ଆସିଛୁ । ଯାଃ, ସେସବୁ ଚାଲାକି ଆମକୁ ବେଶ ଜଣାଅଛି । କୃଷ୍ଣଙ୍କ ପରି ଅକୃତଜ୍ଞ ଓ ନିର୍ଦ୍ଦୟ ଆଉ କିଏ ଅଛି ? ଯାହାଙ୍କ ପାଇଁ ଆମେ ପିତା, ମାତା, ପତି, ପୁତ୍ର ଓ ଜ୍ଞାତି କୁଟୁମ୍ବଙ୍କୁ ପରିତ୍ୟାଗ କରିଥିଲୁ, ସେ ଆମକୁ ପରିତ୍ୟାଗ କରି ଚାଲିଯିବାକୁ ସାମାନ୍ୟତମ କୁଣ୍ଠା କଲେ ନାହିଁ ? ତାଙ୍କ ପରି ପାଷାଣହୃଦୟବ୍ୟକ୍ତି

ଲୋକ ପ୍ରକୃତ ପୁଣି ଆଉ ସମ୍ବନ୍ଧ କ'ଣ ? କୃଷ୍ଣଙ୍କର ନିର୍ଦ୍ଦୟତାକୁ ଆମର ବୁଝିବାକୁ ଆଉ ବାକି ନାହିଁ । ସେ ଯେତେବେଳେ ରାମ ରୂପରେ ଅବତୀର୍ଣ୍ଣ ହୋଇଥିଲେ, ସେତେବେଳେ ଲୁଚିଛପି, ନିର୍ମମଭାବରେ ବାଳୀଙ୍କୁ ସଂହାର କରିଥିଲେ ଓ ବିଚରା ସୂର୍ପଣଖା କାମପରବଶ ହୋଇ ତାଙ୍କ ନିକଟକୁ ଆସିଥିଲା ଯେ ସେ ନିଜ ସ୍ତ୍ରୀ ବଶରେ ରହି ସୂର୍ପଣଖାର ନାସା-କର୍ଣ୍ଣକୁ ଛେଦନ କରି ତାକୁ କୁରୂପା କରିଥିଲେ । ବ୍ରାହ୍ମଣ ବଂଶରେ ବାମନ ରୂପରେ ଜାତ ହୋଇ ସେ ତ ପୁଣି ତାଙ୍କୁ ପୂଜା ଅର୍ଚ୍ଚନା କରିଥିବା ବଳୀକୁ ବରୁଣପାଶରେ ଆବଦ୍ଧ କରି ପାତାଳକୁ ଠେଲିଦେଇ ଥିଲେ । ତେଣୁ ତାଙ୍କ ନିର୍ମମତା ଆମକୁ ଆଉ ଅଛପା ନାହିଁ । କୃଷ୍ଣ ତ କୃଷ୍ଣ, କୌଣସି କୃଷ୍ଣକାୟ ଜୀବ ବା ବସ୍ତୁ ସହିତ ମିତ୍ରତା ଆଉ କରିବୁ ନାହିଁ ବୋଲି ଆମେ ସ୍ଥିର କରିଛୁ । କିନ୍ତୁ ନିଜକୁ ଯେତେ ସଂଯତ କଲେ ମଧ୍ୟ ଏ ମନ କିଛି ବୁଝୁ ନାହିଁ । କୃଷ୍ଣ କଥା ଆମେ ଭୁଲିପାରୁ ନାହୁଁ । ଯେ ଥରେମାତ୍ର କୃଷ୍ଣସୁଧାରସ ଆସ୍ୱାଦନ କରିଛି, ସେ କେବେ ତାହା ଭୁଲି ପାରିବ ନାହିଁ । ନିର୍ଦ୍ଦୟ ବ୍ୟାଧର ସଙ୍ଗୀତ ମୂର୍ଚ୍ଛନାରେ ଆକୃଷ୍ଟ ହୋଇ ତା ଦ୍ୱାରା ଶରବ୍ୟ ହୋଇ ଅସହ୍ୟ ପୀଡ଼ାଲାଭ କଲାପରି କପଟିଆ କୃଷ୍ଣଙ୍କର ଛଳନାପୂର୍ଣ୍ଣ କଥାରେ ବିଶ୍ୱାସ କରି ଓ ତାଙ୍କୁ ସ୍ପର୍ଶକରି ଆମେ ଆଜି ଅସହ୍ୟ କାମପୀଡ଼ା ଭୋଗ କରୁଅଛୁ । ତେଣୁ ହେ ଭ୍ରମର, ସେହି କୃଷ୍ଣ କଥା ଆମକୁ ଆଉ ଶୁଣା ନା'

କୃଷ୍ଣ-ପ୍ରେମ-ବିହ୍ୱଳା ଗୋପୀମାନେ ହଠାତ୍ ପ୍ରକୃତିସ୍ଥା ହୋଇ ସ୍ଥାନ-କାଳ-ପାତ୍ର ଭୁଲି ଏସବୁ କ'ଣ କରୁଛୁଁ ବୋଲି ଭାବି ପରମୁହୂର୍ତ୍ତରେ ନିଜକୁ ସଂଶୋଧନ କରିନେଇ ଉଦ୍ଧବଙ୍କ ଉଦ୍ଦେଶ୍ୟରେ ବିନମ୍ର ସହିତ କହିଲେ, 'ହେ ସୌମ୍ୟ, ଆର୍ଯ୍ୟପୁତ୍ର କୃଷ୍ଣ ତାଙ୍କର ଶିକ୍ଷା ସମାପ୍ତ କରି ଗୁରୁଙ୍କର ଆଶ୍ରମରୁ ପ୍ରତ୍ୟାଗମନ କଲେଣି ତ ? ବର୍ତ୍ତମାନ କ'ଣ ସେ ମଥୁରାରେ ଅଛନ୍ତି ? ତାଙ୍କର ସବୁ କୁଶଳ ତ ? ପିତା ନନ୍ଦ, ମାତା ଯଶୋଦା, ଗୋପରେ ବାସକରୁଥିବା ଜ୍ଞାତିବର୍ଗ ତଥା ସାଙ୍ଗସାଥି-ମାନଙ୍କର କଥା ତାଙ୍କର ମନେ ପଡ଼େ ନା ? ଆମପରି ଭାଗ୍ୟହୀନା ନିତ୍ୟାଦାସୀମାନଙ୍କର କଥା ତାଙ୍କର କ'ଣ କେବେ ମନେପଡ଼େ ? ଆଉ କ'ଣ କେବେ ତାଙ୍କର ଅଗରୁଗନ୍ଧଯୁକ୍ତ ହସ୍ତ ଆମର ଏହି ମସ୍ତକ ଉପରେ ସତେ ସଞ୍ଚାଳିତ ହେବ ?'

କୃଷ୍ଣଗତପ୍ରାଣା ଓ ପ୍ରିୟଦର୍ଶନ ଅଭିଳାଷିଣୀ ସେହି ବିରହବିହ୍ୱଳା ଗୋପାଙ୍ଗନାମାନଙ୍କର ପ୍ରେମବିକାରମୂଳକ ବଚନ ଶ୍ରୀମାନ ଶ୍ରବଣ କରି ସେମାନଙ୍କୁ ସାନ୍ତ୍ୱନା ପ୍ରଦାନ କରିବା ନିମନ୍ତେ କୃଷ୍ଣ ଦୂତ ଉଦ୍ଧବ କହିଲେ, 'ହେ ଦେବୀଗଣ, ତୁମ୍ଭମାନଙ୍କର ଜୀବନ ବାସ୍ତବିକ୍ ସାର୍ଥକ । ତୁମ୍ଭେମାନେ ଧନ୍ୟ । ଭଗବାନ କୃଷ୍ଣଙ୍କଠାରେ ତୁମ୍ଭେମାନେ ଯେପରି ନିଜର ହୃଦୟ ଓ ସର୍ବସ୍ୱ ସମର୍ପଣ କରିଛ, ତା' ଫଳରେ ସମସ୍ତ ଜଗତରେ ତୁମ୍ଭେମାନେ ସର୍ବଜନପୂଜ୍ୟା ହେବାର ସୌଭାଗ୍ୟ ଅର୍ଜନ କରିଅଛ । ବହୁ ଦାନ, ବ୍ରତ, ତପସ୍ୟା, ହୋମ, ଯଜ୍ଞ, ଜପ, ବେଦାଧ୍ୟୟନ, ଧ୍ୟାନ, ଧାରଣା, ସମାଧି ତଥା ବିବିଧ ସାଧନା ଦ୍ୱାରା ଭଗବତ୍ ଅନୁଗ୍ରହ ଲାଭ କରିବା ନିମନ୍ତେ ବହୁ ପ୍ରଯତ୍ନ କରାଯାଇଥାଏ; କିନ୍ତୁ ପରମ ସୌଭାଗ୍ୟର କଥା, ତୁମ୍ଭେମାନେ କୃଷ୍ଣଙ୍କଠାରେ ସର୍ବସ୍ୱ ଅର୍ପଣ କରି ସମଗ୍ର ଜଗତ ପାଇଁ ଭଗବତ୍ ପ୍ରେମ ଓ ଭକ୍ତିର ଅତୁଳନୀୟ ଶାଶ୍ୱତ ଆଦର୍ଶ କାଳକାଳକୁ ରଖିଦେଇଛ, ଯାହା କି ଯୋଗୀ ଋଷିମାନଙ୍କ ପକ୍ଷରେ ସମ୍ଭବ ହୋଇ ନାହିଁ । ଅତ୍ୟନ୍ତ ସୌଭାଗ୍ୟର କଥା, ତୁମ୍ଭେମାନେ ପତିପରିବାରଙ୍କୁ ପରିତ୍ୟାଗ କରି ଜଗତ୍ପତି ପୁରୁଷୋତ୍ତମ ଭଗବାନ କୃଷ୍ଣଙ୍କୁ ନିଜ ଜୀବନର ସର୍ବକାଳୀନ ପ୍ରଭୁ ରୂପରେ ବରଣ କରି ନେଇଅଛ, ତୁମ୍ଭେମାନେ ବାସ୍ତବିକ୍ ପରମ ସୌଭାଗ୍ୟବତୀ । ତୁମ୍ଭମାନଙ୍କର କୃଷ୍ଣବିରହ ଦୁର୍ଦ୍ଦଶାକୁ ସ୍ୱଚକ୍ଷୁରେ ଦେଖିବାର ସୁଯୋଗ ମୋତେ ଦେଇ ମୋ ପ୍ରତି କରୁଣା ପ୍ରକାଶ କରିଅଛ । ତୁମ୍ଭମାନଙ୍କର ପ୍ରାଣପ୍ରିୟ ଭଗବାନ କୃଷ୍ଣ ତୁମ୍ଭମାନଙ୍କର ବିରହ ଦୁଃଖ ଅପନୋଦନ କରିବା ନିମନ୍ତେ ମୋ ହସ୍ତରେ ବାର୍ତ୍ତା ଦେଇ ଦୂତ ରୂପରେ ମୋତେ ତୁମ୍ଭମାନଙ୍କ ନିକଟକୁ ପ୍ରେରଣ କରିଅଛନ୍ତି । ଭଗବାନ କୃଷ୍ଣଙ୍କର ସେହି ମଙ୍ଗଳମୟୀ ବାର୍ତ୍ତା, ମୁଁ ପ୍ରକାଶ କରୁଛି, ତାହା ଶ୍ରବଣ କର ।

କୃଷ୍ଣ କହିଛନ୍ତି, 'ତୁମ୍ଭମାନଙ୍କଠାରୁ ମୁଁ ଦୂରେଇ ଯାଇଅଛି— ଏପରି ଭାବନା ମନକୁ କେବେ ଆଣ ନାହିଁ । ଏହି ଚରାଚର ଜଗତ ଓ ତାଗତିକ ସକଳ ବସ୍ତୁକୁ ମୁଁ ମୋ ଉପାଦାନରେ ସୃଷ୍ଟି କରିଅଛି ଏବଂ ସବୁ ସ୍ଥାନରେ, ସବୁ ପଦାର୍ଥରେ ଓ ସକଳ ପ୍ରାଣୀରେ ମୁଁ ନିତ୍ୟ

ବିଦ୍ୟମାନ ଅଛି । ମୁଁ ସର୍ବଦା ତୁମର ମନ, ପ୍ରାଣ, ଇନ୍ଦ୍ରିୟସକଳ ଓ ଗୁଣକୁ ଆଶ୍ରୟ କରି ତୁମ୍ଭମାନଙ୍କ ମଧ୍ୟରେ ରହିଅଛି । ଯେପରି ସମସ୍ତ ନଦୀ ବୁଲି ବୁଲି ଶେଷରେ ସାଗରରେ ମିଳିତ ହୁଅନ୍ତି, ସେହିପରି ବ୍ୟକ୍ତିମାନଙ୍କର ବେଦାଭ୍ୟାସ, ଯୋଗସାଧନା, ତ୍ୟାଗ, ତପସ୍ୟା, ଇନ୍ଦ୍ରିୟ-ସଂଯମ ଓ ସତ୍ୟାଚରଣ ଆଦି ମୋତେ ଲାଭ କରିବାରେ ହିଁ ମୋଠାରେ ମିଳିତ ହୋଇଥାଏ । ମୋତେ ଲାଭ କରିବା ହିଁ ସବୁ କର୍ମର ସାର୍ଥକତା । ଗୋପୀଗଣ, ମୁଁ ଯେ ତୁମ୍ଭମାନଙ୍କର ନୟନର ମଧ୍ୟମଣି ଓ ଜୀବନର ସର୍ବସ୍ୱ, ଏଥିରେ ସନ୍ଦେହ ନାହିଁ । ତଥାପି ତୁମ୍ଭମାନଙ୍କଠାରୁ ଆସି ମୁଁ ଏଠାରେ ରହୁଛି, କାରଣ ତୁମ୍ଭେମାନେ ସବୁ ସମୟରେ ସ୍ମରଣ ଓ ଧ୍ୟାନକରି, ଶରୀର ସ୍ପର୍ଶଠାରୁ ମୁଁ ଦୂରରେ ରହିଥିଲେ ମଧ୍ୟ ନିଜ ନିଜର ମନ ମଧ୍ୟରେ ମୋର ସାନ୍ନିଧ୍ୟ ତୁମେ ସବୁବେଳେ ଅନୁଭବ କର ଏବଂ ମୋ ମନ ସହିତ ତୁମ ମନର ନିତ୍ୟ ମିଳନ ଘଟୁ, ଏହାହିଁ ମୋର ଅଭିପ୍ରାୟ । ପ୍ରିୟତମ ଦୂର ଦେଶରେ ରହିଲେ ରମଣୀର ମନ ଯେପରି ପ୍ରିୟଠାରେ ଅଧିକ ମୋହାବିଷ୍ଟ ହୋଇଥାଏ, ପ୍ରିୟତମ ଦୃଷ୍ଟି ସମ୍ମୁଖରେ ରହିଲେ ପ୍ରିୟତମାର ମନ ସେପରି ଭାବ ପୋଷଣ କରିପାରେ ନାହିଁ । ପ୍ରବାସୀ ପ୍ରିୟ ପ୍ରତି ଅଧିକ ପ୍ରୀତି ପ୍ରକାଶିତ ହୋଇଥାଏ । ସବୁ ତ୍ୟାଗ କରି ଯଦି ମୋଠାରେ ଏକାନ୍ତ ଲକ୍ଷ୍ୟ ରଖି ମନେ ମନେ ମୋର ଅନୁସରଣ କର, ତେବେ ଅତିଶୀଘ୍ର ମୋତେ ଲାଭ କରିବାକୁ ସମର୍ଥ ହେବ । ହେ କଲ୍ୟାଣୀୟା ଗୋପୀଗଣ, ବୃନ୍ଦାବନର ସେହି ପୂର୍ଣ୍ଣିମା ରଜନୀରେ ମୋ ସହିତ ରାସକ୍ରୀଡ଼ା କରି ନ ପାରିଥିବା ଗୋପାଙ୍ଗନା-ମାନେ ମୋର ରାସକ୍ରୀଡ଼ାକାଳୀନ ଲୀଳାକୁ ଧ୍ୟାନକରି ମୋତେ ଅଦୃଶ୍ୟ ଭାବେ ପ୍ରାପ୍ତ ହୋଇଅଛନ୍ତି । ତୁମ୍ଭମାନଙ୍କ ସହିତ ମୋର ପୁନର୍ମିଳନ ଅବଶ୍ୟମ୍ଭାବୀ । ତେଣୁ ନିରାଶ ହୁଅ ନାହିଁ । କୃଷ୍ଣ-ପ୍ରାପ୍ତି ପାଇଁ କେବଳ ବ୍ୟସ୍ତ ନ ହୋଇ, ନିଜର କର୍ତ୍ତବ୍ୟ କରିଯାଅ; ଯଥାସମୟରେ ମୋତେ ତୁମ୍ଭେମାନେ ଅବଶ୍ୟ ଲାଭ କରିବ ।'

ଉଦ୍ଧବଙ୍କ ମୁଖରୁ ପ୍ରିୟତମ କୃଷ୍ଣଙ୍କର ସେହି ସୁଖପ୍ରଦ ସନ୍ଦେଶ ଶ୍ରବଣ କରି ବିରହକ୍ଲିଷ୍ଟା ଗୋପୀମାନଙ୍କର ମନ ଅପୂର୍ବ ଆନନ୍ଦରେ ପୁଲକିତ ହୋଇଗଲା । ସେମାନଙ୍କ ମାନସପଟରେ କୃଷ୍ଣଙ୍କ ଆଚରିତ

ବିଭିନ୍ନ ଲୀଳା ଗୋଟି ଗୋଟି ହୋଇ ଉଦ୍‌ଭାସିତ ହେଲା । ସେମାନେ ପରମ ଭାବତନ୍ମୟତାରେ ଉଦ୍ଧବଙ୍କୁ କହିଲେ, 'ଉଦ୍ଧବ, ଯଦୁବଂଶର ପରମଶତ୍ରୁ ଅତ୍ୟାଚାରୀ କଂସ ଯେ ତାର ଅନୁଚରବର୍ଗଙ୍କ ସହିତ ନିହତ ହୋଇଅଛି, ଏହା ପରମ ସୌଭାଗ୍ୟ । କୃଷ୍ଣଙ୍କର ଇଚ୍ଛା ପୂର୍ଣ୍ଣ ହୋଇଅଛି ଏବଂ ବନ୍ଧୁବାନ୍ଧବଙ୍କ ସହିତ କୃଷ୍ଣ ସପରିବାର ସୁଖରେ ଅଛନ୍ତି, ଏହା ଆନନ୍ଦର କଥା । ଦେବରାଜ ଇନ୍ଦ୍ର ଯେପରି ମେଘ ବୃଷ୍ଟି କରି ଗ୍ରୀଷ୍ମସନ୍ତାପିତ ଅରଣ୍ୟକୁ ସଞ୍ଜୀବିତ କରନ୍ତି, ସେହିପରି କୃଷ୍ଣ ତାଙ୍କର ବିରହ ଶୋକସନ୍ତପ୍ତା ଏବଂ ମୃତପ୍ରାୟ ଗୋପୀମାନଙ୍କୁ ତାଙ୍କର କରସ୍ପର୍ଶ ଦ୍ୱାରା ଅଚିରେ ଆଶ୍ୱାସିତ କରନ୍ତୁ, ସର୍ବାନ୍ତଃକରଣରେ ଏହି କାମନା ପୋଷଣ କରି ଆମେ ତାଙ୍କର ଆଗମନର ପ୍ରତୀକ୍ଷା କରି ରହିବୁ । ସେ ମଥୁରାର ପୁରବାସିମାଙ୍କ ଦ୍ୱାରା ଆକୃଷ୍ଟ ହୋଇଥାନ୍ତୁ ବା ଆମକୁ ଭୁଲିଯାଇ ଥାଆନ୍ତୁ, ସେ ଯେ ଏଠାକୁ ଫେରିଆସିବେ, ଏହି ପ୍ରତିଶ୍ରୁତିରେ ବିଶ୍ୱାସ କରି ଆମେ ତାଙ୍କର ପ୍ରତୀକ୍ଷା କରିବୁ । ସେହି ପ୍ରତୀକ୍ଷାରେ ଆମର ଆନନ୍ଦ ।'

ଉଦ୍ଧବଙ୍କ ସହିତ ଏହିପରି କଥାବାର୍ତ୍ତା କରୁ କରୁ ହଠାତ୍ ଗୋପୀମାନେ ପାଗଳିନୀଙ୍କ ପରି ବସିଥିବା ସ୍ଥାନରୁ ଉଠିଯାଇ ମଥୁରା ଆଡ଼କୁ ଦୌଡ଼ିଲେ । ସେମାନେ ଅସହ୍ୟ ବିରହ ଦୁଃଖର ବଶବର୍ତ୍ତିନୀ ହୋଇଥିଲେ ଏବଂ ଉଚ୍ଚ ସ୍ୱରରେ ବିଳାପ କରି କହିଲେ, 'ହେ କୃଷ୍ଣ, ହେ ରମାନାଥ, ହେ ବ୍ରଜନାଥ, ହେ ଆର୍ତ୍ତିନାଶନ, ହେ ଗୋବିନ୍ଦ, ତୁମର ଏଠାରୁ ଚାଲିଯିବା ଫଳରେ ଗୋକୁଳ ଅସହ୍ୟ ଦୁଃଖରେ ଏକାବେଳକେ ଭାଙ୍ଗିପଡ଼ିଛି । ତୁମର ଏକଦା ପ୍ରିୟ ଗୋକୁଳକୁ ଆସି ଅଚିରେ ଉଦ୍ଧାର କର ।'

ପ୍ରେମପାଗଳିନୀ କୃଷ୍ଣ-ବିରହକ୍ଳିଷ୍ଟା ଗୋପୀମାନଙ୍କର ଶାରୀରିକ ଓ ମାନସିକ ଦୁର୍ଦ୍ଦଶା ଲକ୍ଷ୍ୟକରି ସେମାନଙ୍କୁ ସାନ୍ତ୍ୱନା ପ୍ରଦାନ କରିବା ନିମନ୍ତେ କୃଷ୍ଣଭକ୍ତ ଉଦ୍ଧବ ବ୍ରଜପୁରରେ କେତେ ମାସ ଅବସ୍ଥାନ କରିଥିଲେ ଏବଂ ମଥୁରା ତଥା ଗୋକୁଳରେ ଘଟିଥିବା କୃଷ୍ଣଙ୍କର ବିଭିନ୍ନ ଲୀଳାକୁ ବର୍ଣ୍ଣନା କରି ଗୋପପୁରବାସୀଙ୍କୁ ସୁଖୀ କରିଥିଲେ । ଉଦ୍ଧବଙ୍କ ସମ୍ପର୍କରେ ଆସି ଓ ଉଦ୍ଧବଙ୍କ ମୁଖରୁ କୃଷ୍ଣଲୀଳାମାନ ଶ୍ରବଣ କରି

ଗୋପବାସୀମାନେ ପୂର୍ବ ଦୁଃଖ ଭୁଲିଯାଇ ସ୍ୱାଭାବିକ ଶାନ୍ତିରେ କାଳାତିପାତ କରୁଥିଲେ । ବ୍ରଜରେ କେତେ ମାସ ଅତିବାହିତ କରି ପରିଶେଷରେ ଉଦ୍ଧବ ନନ୍ଦବ୍ରଜ ଓ ଗୋପବାସୀଙ୍କଠାରୁ ବିଦାୟ ନେଇ ମଥୁରାକୁ ପ୍ରତ୍ୟାଗମନ କରିଥିଲେ ।

ଉଦ୍ଧବଙ୍କ ମୁଖରୁ ଗୋପବାସୀଙ୍କ କଥା ଅବଗତ ହୋଇ କୃଷ୍ଣ ଆନନ୍ଦିତ ହୋଇଥିଲେ ।



## ଜରାସନ୍ଧର ମଥୁରା ଆକ୍ରମଣ

ମଗଧର ରାଜା ଜରାସନ୍ଧଙ୍କର ଅସ୍ତି ଓ ପ୍ରାପ୍ତି ନାମକ ଦୁଇ କନ୍ୟାଙ୍କୁ ଭୋଜରାଜ କଂସ ବିବାହ କରିଥିଲେ । ଜାମାତା କଂସର ଶୋଚନୀୟ ମୃତ୍ୟୁସମ୍ବାଦ ପାଇ ଜରାସନ୍ଧ କ୍ରୋଧରେ ଫାଟିପଡ଼ିଲେ । କଂସହନ୍ତା କୃଷ୍ଣଙ୍କୁ ଅଚିରେ ସଂହାର କରି ସମଗ୍ର ଧରଣୀକୁ ଯାଦବଶୂନ୍ୟ କରିବାକୁ ଜରାସନ୍ଧ ସ୍ଥିରକଲେ ଏବଂ ସେଥିପାଇଁ ତେଇଶି ଅକ୍ଷୌହିଣୀ ସୈନ୍ୟ-ସମ୍ବଳିତ ଏକ ବିଶାଳ ବାହିନୀ ଧରି କୃଷ୍ଣ ଅବସ୍ଥାନ କରୁଥିବା ଯଦୁବଂଶର ରାଜଧାନୀ ମଥୁରାକୁ ଚତୁର୍ଦ୍ଦିଗରୁ ଆକ୍ରମଣ କଲେ । ଉଦ୍‌ବେଳିତ ସମୁଦ୍ରର ଉତ୍ତୁଙ୍ଗତରଙ୍ଗ ପରି ମଥୁରା ଆଡ଼କୁ ପ୍ରବଳ ବେଗରେ ମାଡ଼ି ଆସୁଥିବା ଜରାସନ୍ଧର ଅଗଣିତ ସୈନ୍ୟଙ୍କୁ ଦେଖି ମଥୁରାବାସୀ ତଥା ଯଦୁବଂଶର ବୀରମାନେ ଭୟଭୀତ ହୋଇପଡ଼ିଲେ ।

ପୃଥିବୀର ଭାର ଲାଘବ କରିବା ଉଦ୍ଦେଶ୍ୟରେ ଧରାପୃଷ୍ଠରେ ମନୁଷ୍ୟ ରୂପରେ ଅବତୀର୍ଣ୍ଣ ହୋଇଥିବା ଭଗବାନ କୃଷ୍ଣ ନିଜର ଅବତାର ଗ୍ରହଣର ଆବଶ୍ୟକତା କଥା ଚିନ୍ତାକଲେ । ସେ ମନେ ମନେ ଭାବିଲେ ଯେ ବିପୁଳ ସୈନ୍ୟସାମନ୍ତ ସଙ୍ଗରେ ନେଇ ଜରାସନ୍ଧର ସେହି ମଥୁରା ଆକ୍ରମଣ ପୃଥିବୀର ଭାର ଲାଘବ କରିବା ଦିଗରେ ବିଶେଷ ସହାୟକ ହେବ । ତେଣୁ ମଗଧରାଜ ଜରାସନ୍ଧଙ୍କୁ ହଠାତ୍ ସଂହାର ନ କରି ତାର ସେହି ବିପୁଳ ସୈନ୍ୟବାହିନୀକୁ ପ୍ରଥମେ ବିନାଶ କଲେ, ସେ ପରାଜୟ ଜନିତ ଅପମାନର ପ୍ରତିଶୋଧ ନେବା ନିମନ୍ତେ ନିଶ୍ଚୟ ଅଧିକ ସଂଖ୍ୟକ ଅସୁର ସୈନ୍ୟ ସଂଗ୍ରହ କରି ପୁନର୍ବାର ମଥୁରାକୁ ଆକ୍ରମଣ କରିବ; ପୁନର୍ବାର ସେହି ସୈନ୍ୟମାନଙ୍କୁ ସଂହାର କଲେ ପୃଥିବୀର ଭାର ବିଶେଷ ଲାଘବ ହେବ । ସାଧୁମାନଙ୍କୁ ରକ୍ଷା କରିବା ଓ ଦୁଷ୍ଟମାନଙ୍କୁ ଦଳନ କରି ପୃଥିବୀରେ ଧର୍ମ ସଂସ୍ଥାପନ କରିବା ହିଁ ଅବତାର ଗ୍ରହଣର ମୁଖ୍ୟ ଉଦ୍ଦେଶ୍ୟ । ସେଥିପାଇଁ ବିଭିନ୍ନ ସମୟରେ କ୍ରମବର୍ଦ୍ଧନଶୀଳ ଅଧର୍ମ, ଅତ୍ୟାଚାର ଓ ଅନ୍ୟାୟକୁ ଦମନ କରିବା ନିମନ୍ତେ ଭଗବାନଙ୍କୁ ବିଭିନ୍ନ ରୂପରେ ଆବିର୍ଭୂତ ହେବାକୁ ପଡ଼ିଥାଏ ।

ଭଗବାନ କୃଷ୍ଣ ଏହିପରି ଭାବୁଥିବା ସମୟରେ ହଠାତ୍ ଆକାଶମଣ୍ଡଳରୁ ଦୁଇ ଗୋଟି ତେଜସ୍ୱୀ ରଥ ଆସି କୃଷ୍ଣଙ୍କ ସମ୍ମୁଖରେ ଆବିର୍ଭୂତ ହେଲା । ସମସ୍ତ ପ୍ରୟୋଜନୀୟ ଯୁଦ୍ଧସାମଗ୍ରୀରେ ରଥ ଦୁଇଟି ସୁସମୃଦ୍ଧ ଥିଲା ଏବଂ ଦୁଇଜଣ ଦିବ୍ୟ ପୁରୁଷ ସେହି ରଥ ଦୁଇଟିର ସାରଥି ଆସନରେ ନିୟୋଜିତ ଥିଲେ ।

ରଥ ଦୁଇଟିକୁ ଦେଖି ଅଗ୍ରଜ ବଳରାମଙ୍କୁ ଆହ୍ୱାନ କରି କୃଷ୍ଣ କହିଲେ, 'ହେ ପ୍ରଭୁ ଆର୍ଯ୍ୟ, ଆପଣଙ୍କର ଆଶ୍ରିତ ଏହି ଯଦୁବଂଶ ଓ ମଥୁରାବାସୀମାନେ କି ଦାରୁଣ ବିପଦର ସମ୍ମୁଖୀନ ହୋଇଅଛନ୍ତି, ତାହା ତ ଆପଣଙ୍କୁ ଅଜଣା ନାହିଁ । ଏହି ସୁସଜ୍ଜୋ'ଜିତ ରଥ ଆପଣଙ୍କ ସମ୍ମୁଖରେ ରହିଛି ଏବଂ ତହିଁରେ ଆପଣଙ୍କର ପ୍ରୟୋଜନୀୟ ସମସ୍ତ ଅସ୍ତ୍ରଶସ୍ତ୍ରମାନ ରକ୍ଷିତ ରହିଅଛି । ଆପଣ ରଥରେ ଆରୋହଣ କରି ଏହି ବିପୁଳ ଶତ୍ରୁସୈନ୍ୟଙ୍କୁ ସଂହାର କରି ମଥୁରାକୁ ବିପଦମୁକ୍ତ କରନ୍ତୁ । ଆପଣ ଅତୁଳନୀୟ ପରାକ୍ରମର ଅଧିକାରୀ । ଦୁଷ୍ଟମାନଙ୍କୁ ସଂହାର କରିବା ଓ ସାଧୁମାନଙ୍କୁ ସୁରକ୍ଷା ପ୍ରଦାନ କରିବା ନିମନ୍ତେ ଆମେ ଏହି ମନୁଷ୍ୟ ଜନ୍ମ ସ୍ୱୀକାର କରିଅଛେଁ । ତେଣୁ ଜରାସନ୍ଧ ଦ୍ୱାରା ଆନୀତ ଏହି ତ୍ରୟୋବିଂଶତି ଅକ୍ଷୌହିଣୀ ସେନାକୁ ସଂହାର କରି ବସୁଧାର ଭାର ଆସନ୍ତୁ ଲାଘବ କରିବା ।'

କୃଷ୍ଣ ଓ ବଳରାମ ସେହି ଦିବ୍ୟ ରଥ ଦୁଇଟିରେ ଆରୋହଣ କଲେ ଏବଂ ଅତି ଅଳ୍ପ ସଂଖ୍ୟକ ସୈନ୍ୟ ସଙ୍ଗରେ ନେଇ ଜରାସନ୍ଧର ସମ୍ମୁଖୀନ ହେବାକୁ ଅଗ୍ରସର ହେଲେ । ମଥୁରାରୁ ବହିର୍ଗତ ହେବା ମାତ୍ରେ କୃଷ୍ଣ ନିଜର ପାଞ୍ଚଜନ୍ୟ ଶଙ୍ଖକୁ ପ୍ରଚଣ୍ଡ ରାବରେ ଧ୍ୱନିତ କରି ଆକ୍ରମଣକାରୀ ଜରାସନ୍ଧଙ୍କ ସୈନ୍ୟଙ୍କ ମଧ୍ୟରେ ଭୀତି ସଞ୍ଚାର କଲେ ।

କୃଷ୍ଣ ଓ ବଳରାମଙ୍କୁ ଯୁଦ୍ଧୋଦ୍ୟତ ଦେଖି ମଗଧରାଜ ଜରାସନ୍ଧ କହିଲେ, 'ରେ ପୁରୁଷାଧମ କୃଷ୍ଣ, ଆମ ସହିତ ଯୁଦ୍ଧାର୍ଥୀ ହୋଇ ଏଠାକୁ ଆଗମନ କରିଅଛୁ ସତ, ମାତ୍ର ତୋ ପରି ଏକ ଅପରିଣତ ବୟସ୍କ ଅସହାୟ ବାଳକ ସହିତ ଯୁଦ୍ଧ କରିବାକୁ ମୋ ପରି ବୀରକୁ ଲଜ୍ଜା ଲାଗୁଛି । ରେ ମୂଢ଼ ! ତୋ ପରି ଅଳ୍ପବୟସ୍କ ବାଳକ ପକ୍ଷରେ ଯୁଦ୍ଧ ଶୋଭା ପାଏ ନାହିଁ, କାରଣ ଯୁଦ୍ଧ କରିବା ଅପେକ୍ଷା ଅନ୍ୟର ସାହାଯ୍ୟ

ଲେଉଡ଼ିବା ତୋ ପକ୍ଷରେ ଅଧିକ ପ୍ରୟୋଜନ ବୋଲି ମନେହୁଏ । ତୁ ଏବେ ତ ଅପରିପକ୍ୱ ବାଳକ, ବିଶେଷରେ ନିଜର ମାତୁଳ କଂସକୁ ବିନାଶ କରି ମହାପାପଭାଗୀ ହୋଇଅଛୁ । ତୋ ସହ ଯୁଦ୍ଧ କରି ମୁଁ ମୋର ବହୁପ୍ରଶଂସିତ ବୀରତ୍ୱକୁ କଳଙ୍କିତ କରିବ ନାହିଁ । ରେ ବଳରାମ, ତୁ ଯଦି ଯୁଦ୍ଧ କରିବାକୁ ଇଚ୍ଛୁକ ଥାଉ ତେବେ ଅଗ୍ରସର ହୋଇ, ଯୁଦ୍ଧକ୍ଷେତ୍ରରୁ ପଳାୟନ ନ କରିପାରୁ ତ ଦୃଢ଼ତାର ସହିତ ଯୁଦ୍ଧ କର ! ଯୁଦ୍ଧକ୍ଷେତ୍ରରେ ବୀର ପରି ପ୍ରାଣତ୍ୟାଗ କଲେ ସ୍ୱର୍ଗଲାଭ ସୁନିଶ୍ଚିତ; ତେଣୁ ମୃତ୍ୟୁ ପାଇଁ ଭୟ କର ନାହିଁ ।

ଜରାସନ୍ଧର କଥା ଶୁଣି କୃଷ୍ଣ କହିଲେ, 'ହେ ରାଜା, ଭୁଲିଯାଅ ନାହିଁ ଯେ, ପ୍ରକୃତ ବୀରର ପରିଚୟ ମିଳେ ପୌରୁଷ ପ୍ରକାଶରେ, ଅଯଥା ଆସ୍ଫାଳନରେ ନୁହେଁ । ତୁମର ମୃତ୍ୟୁ ଅତ୍ୟନ୍ତ ନିକଟବର୍ତ୍ତୀ ହୋଇଅଛି । ତା' ନ ହୋଇଥିଲେ ଏପରି ଅଯଥା ସ୍ପର୍ଦ୍ଧା ତୁମ ମୁଖରୁ ପ୍ରକାଶ ପାଉ ନ ଥାନ୍ତା । ଯଦି ନିଜକୁ ପ୍ରକୃତ ବୀର ବୋଲି ଭାବୁଥାଅ ତେବେ ଧୈର୍ଯ୍ୟଧରି ଯୁଦ୍ଧ କର ଏବଂ ସ୍ୱଚକ୍ଷୁରେ ଥରେ ଦେଖିନିଅ ଏହି ଯୁଦ୍ଧ-କ୍ଷେତ୍ରରୁ କିଏ ପୃଷ୍ଠଭଙ୍ଗ ଦେଉଛି ।

ଏହିପରି କଥା କଟାକଟି ମଧ୍ୟରେ ଉଭୟ ପକ୍ଷଙ୍କ ମଧ୍ୟରେ ତୁମୁଳ ସଂଗ୍ରାମ ଅନୁଷ୍ଠିତ ହେଲା । ଜରାସନ୍ଧ ନିଜର ବିପୁଳ ସେନାକୁ ଚତୁର୍ଦ୍ଦିଗରେ ସଞ୍ଚାଳିତ କରି କୃଷ୍ଣ ଓ ବଳରାମଙ୍କୁ ଅବରୁଦ୍ଧ କରିବାକୁ ଉଦ୍ୟମ କଲା; କିନ୍ତୁ ବାୟୁ ଯେପରି ମେଘପଟଳ ବା ଧୂଳିକୁ ଉଡ଼ାଇ ନେଇଥାଏ ଓ ସୂର୍ଯ୍ୟକୁ ଆଚ୍ଛନ୍ନ କରିବା ପାଇଁ ପ୍ରଚଣ୍ଡ ହୁତାଶନ ଯେପରି ବୃଥା ପ୍ରୟାସ କରିଥାଏ, ସେହିପରି କୃଷ୍ଣ ଓ ବଳରାମଙ୍କ ବିପକ୍ଷରେ ଜରାସନ୍ଧର ସମସ୍ତ ଉଦ୍ୟମ ବ୍ୟର୍ଥ ହେଲା । କୃଷ୍ଣ ଓ ବଳରାମ ସର୍ବତ୍ର ବ୍ୟାପ୍ତ ଶତ୍ରୁସୈନ୍ୟଙ୍କ ଉପରକୁ ନିରବଚ୍ଛିନ୍ନ ଭାବରେ ଶରବର୍ଷଣ କରି ଶତ୍ରୁ ପକ୍ଷଙ୍କର ଆକ୍ରମଣକୁ ଛିନ୍ନଭିନ୍ନ କରିପକାଇଲେ । ଅଳ୍ପ ସମୟ ମଧ୍ୟରେ କୃଷ୍ଣ ଓ ବଳରାମଙ୍କ ଶରରେ ସୈନ୍ୟମାନଙ୍କୁ ମୃତ୍ୟୁ ବରଣ କରିବାକୁ ପଡ଼ିଲା । ନିହତ ସୈନ୍ୟଙ୍କ ଶରୀର କ୍ଷତ ରକ୍ତରେ ଶତ ଶତ ରକ୍ତନଦୀ ଯୁଦ୍ଧକ୍ଷେତ୍ରରୁ ପ୍ରବାହିତ ହେବାକୁ ଲାଗିଲା ଏବଂ ସେହି ପ୍ରଚଣ୍ଡ ରକ୍ତ-ପ୍ରବାହ ମଧ୍ୟରେ ଶତ୍ରୁସୈନ୍ୟଙ୍କ ଛିନ୍ନ ଅଙ୍ଗପ୍ରତ୍ୟଙ୍ଗ ଓ ମୃତ ଶରୀରମାନ

ଙ୍କୀପର ଭ୍ରମ ସୃଷ୍ଟି କଲା । ସିଂହ ଯେପରି ଅନ୍ୟ ସିଂହକୁ ବଳପୂର୍ବକ ଆକ୍ରମଣ କରେ ବଳରାମ ଏକ ସମୟରେ ମଗଧରାଜ ଜରାସନ୍ଧକୁ ଆକ୍ରମଣ କରି ସଂହାର କରିବାକୁ ଉଦ୍ୟତ ହେଲେ; କିନ୍ତୁ ସେତେବେଳେ ଜରାସନ୍ଧକୁ ହତ୍ୟା ନ କରି ଛାଡ଼ି ଦେବାକୁ କୃଷ୍ଣ ଅନୁରୋଧ କଲେ । ମହାବୀର ଜରାସନ୍ଧ ଦୁଇ ଜଣ ଅଳ୍ପବୟସ୍କ ବାଳକଙ୍କ ଦ୍ୱାରା ସମରରେ ପରାଜିତ ଏବଂ ପରିତ୍ୟକ୍ତ ହୋଇ ନିଜକୁ ବିଶେଷ ଅପମାନିତ ମନେକଲା ଏବଂ ଲଜ୍ଜାରେ ରାଜପଦ ତ୍ୟାଗକରି ବାନପ୍ରସ୍ଥ ଆଚରଣ କରିବାକୁ ସ୍ଥିର କଲା । କିନ୍ତୁ ଶିଶୁପାଳପ୍ରମୁଖ ତା'ର କେତେଜଣ ବନ୍ଧୁ ରାଜା ତାକୁ ସାନ୍ତ୍ୱନା ଦେଇ କହିଲେ, 'ମହାରାଜ, ସମକକ୍ଷ ବୀରଙ୍କଠାରୁ ପରାଜିତ ହେଲେ ଲଜ୍ଜା ଲାଗିବା ସ୍ୱାଭାବିକ, ମାତ୍ର ଦୁଇଜଣ ବାଳକଙ୍କ ହସ୍ତରେ ପରାଜିତ ହେବାଟା ପ୍ରକୃତ ପରାଜୟ ନୁହେଁ । ଏହା ଆପଣଙ୍କ ପୂର୍ବଜନ୍ମର ପାପର ଫଳ । ଏହି ଦୁଇ ବାଳକଙ୍କୁ ଜୟ କରିଥିଲେ ତାହା ଆପଣଙ୍କ ପରି ବୀରଙ୍କ ପକ୍ଷରେ ଯେପରି ଗୌରବର କଥା ହୋଇ ନ ଥାନ୍ତା— ସେହିପରି ସେମାନଙ୍କ ହସ୍ତରେ ପରାଜୟ ଲାଭ କରିବା ଆଦୌ ଲଜ୍ଜାର ବିଷୟ ନୁହେଁ । ସାମାନ୍ୟ ଯାଦବଙ୍କ ଅପେକ୍ଷା ଆପଣ ଦୁର୍ବଳ, ଏପରି ଚିନ୍ତା ଆପଣ ମନକୁ ଆଣୁଛନ୍ତି କାହିଁକି ? ଆପଣ ମହାବୀର, ଏବଂ କ୍ଷତ୍ରିୟଙ୍କ ପକ୍ଷରେ ଜୟ ବା ପରାଜୟ ବଡ଼ କଥା ନୁହେଁ ।'

ପରାଜିତ ଜରାସନ୍ଧର ପ୍ରାଣରେ ପ୍ରତିଶୋଧର ତୃଷ୍ଣା ପ୍ରବଳ ହୋଇଉଠିଲା । ସେ ତ୍ରୟୋଦଶବଂଶତି ସଂଖ୍ୟକ ସୈନ୍ୟ ସଂଗ୍ରହ କରି ପୁନର୍ବାର ମଥୁରାକୁ ଆକ୍ରମଣ କଲା । ଏଥର ମଧ୍ୟ କୃଷ୍ଣଙ୍କ ହସ୍ତରେ ଜରାସନ୍ଧ ପରାଜିତ ହେଲା ଏବଂ ତା'ର ସମସ୍ତ ସୈନ୍ୟ ସମରରେ ନିହତ ହେଲେ । ଜରାସନ୍ଧ ସତର ଥର ମଥୁରାକୁ ଆକ୍ରମଣ କରିଥିଲେ ମଧ୍ୟ ସବୁଥର ତାକୁ ପରାଜୟ ସ୍ୱୀକାର କରିବାକୁ ପଡ଼ିଥିଲା ।

ଥରେ କାଳଯବନ ନାମକ ଏକ ବୀର ବହୁସଂଖ୍ୟକ ସୈନ୍ୟ ନେଇ ମଥୁରାକୁ ଆକ୍ରମଣ କଲା । ବହିଃଶତ୍ରୁମାନଙ୍କଦ୍ୱାରା ମଥୁରା ଆକ୍ରମଣ ଏକ ନିତ୍ୟନୈମିତ୍ତିକ ଘଟଣାରେ ପରିଣତ ହୋଇଯାଇଥିଲା; କିନ୍ତୁ କାଳ-ଯବନର ଆକ୍ରମଣର ମୁକାବିଲା କରୁଥିବା ବେଳେ ଜରାସନ୍ଧ ଯଦି ମଥୁରା ଆକ୍ରମଣ କରେ ତେବେ ମଥୁରାର ବିଶେଷ କ୍ଷତି ହେବ ବୋଲି ଭାବି

କୃଷ୍ଣ ଓ ବଳରାମ ମଥୁରାବାସୀଙ୍କର ସୁରକ୍ଷା ନିମନ୍ତେ ସମୁଦ୍ର ମଧ୍ୟରେ ଦ୍ୱାଦଶ ଯୋଜନ ବିସ୍ତୃତ ଏକ ସୁବିଶାଳ ମନୋରମ ନଗର ନିର୍ମାଣ କରାଇଲେ । ସେହି ନଗରକୁ ଦେବଶିଳ୍ପୀ ନିର୍ମାଣ କରିଥିଲେ । ସେହି ନଗର ଦ୍ୱାରକା ନାମରେ ପରିଚିତ । ନଗର ନିର୍ମିତ ହେବା ପରେ କୃଷ୍ଣ ନିଜର ଅଚିନ୍ତ୍ୟ ମାୟା ବଳରେ ମଥୁରାବାସୀଙ୍କୁ ସେମାନଙ୍କ ଅଜ୍ଞାତ-ସାରରେ ସେହି ନବନିର୍ମିତ ନଗରକୁ ନେଇଗଲେ ।

କାଳଯବନର ଆକ୍ରମଣର ମୁକାବିଲା କରିବା ନିମନ୍ତେ ଶୂନ୍ୟ ମଥୁରା ନଗରରୁ କୃଷ୍ଣ ଅସ୍ତ୍ରବିହୀନ ହୋଇ ବାହାରିଲେ । କୃଷ୍ଣଙ୍କୁ ନିରସ୍ତ୍ର ଥିବାର ଦେଖି କାଳଯବନ ମଧ୍ୟ ଅସ୍ତ୍ରଶସ୍ତ୍ର ତ୍ୟାଗ କରି କୃଷ୍ଣଙ୍କୁ ଆକ୍ରମଣ କଲା । କାଳଯବନ ଦ୍ୱାରା ଆକ୍ରାନ୍ତ ହୋଇ ଦୂରବର୍ତ୍ତୀ ଏକ ଗିରିଗୁହା ଆଡ଼କୁ କୃଷ୍ଣ ଦ୍ରୁତଗତିରେ ଦୌଡ଼ିଲେ । କୃଷ୍ଣଙ୍କୁ କାପୁରୁଷ ପରି ଯୁଦ୍ଧକ୍ଷେତ୍ରରୁ ଭୟରେ ପଳାୟନ କରୁଥିବା ଦେଖି କାଳଯବନ ତାଙ୍କୁ ଉପହାସ ଓ ତିରସ୍କାର କରି କରି ପଛରୁ ଗୋଡ଼ାଇଲା । କୃଷ୍ଣ ହଠାତ୍ ଏକ ଗୁହା ମଧ୍ୟରେ ପ୍ରବେଶ କରିବାରୁ କାଳଯବନ ମଧ୍ୟ ତାଙ୍କୁ ଅନୁଧାବନ କରି ସେହି ଗୁହା ମଧ୍ୟରେ ପ୍ରବେଶ କଲା । ଗୁହା ମଧ୍ୟରେ ପ୍ରବେଶ କରି କାଳ-ଯବନ ଦେଖିଲା ଯେ ଗୁହା ମଧ୍ୟରେ କୃଷ୍ଣ ନାହାନ୍ତି, ଅଥଚ ଏକ ମହାପୁରୁଷ ଶୟନ କରିଅଛନ୍ତି । କାଳଯବନ ତାହା ଦେଖି ଭାବିଲା, ଯେ, 'ମୋତେ ପ୍ରତାରିତ କରିବା ନିମନ୍ତେ କୃଷ୍ଣ ନିଶ୍ଚୟ ଏହି ମହାପୁରୁଷ ରୂପ ଧରି ଶୟନ କରିଅଛନ୍ତି ।' ତେଣୁ ସେହି ଶାୟିତ ମହାପୁରୁଷଙ୍କୁ କୃଷ୍ଣ ବୋଲି ଭାବି କାଳଯବନ କ୍ରୋଧରେ ତାଙ୍କୁ ପଦାଘାତ କଲା; ଫଳରେ ମହା-ପୁରୁଷଙ୍କର ନିଦ୍ରାଭଙ୍ଗ ହେଲା ଏବଂ ସେ ନିଦ୍ରାଭଙ୍ଗକାରୀକୁ ବିରକ୍ତ ହୋଇ ଚାହିଁବା ମାତ୍ରେ ନିକଟରେ ଦଣ୍ଡାୟମାନ ଥିବା କାଳଯବନ ସଙ୍ଗେ ସଙ୍ଗେ ଭସ୍ମୀଭୂତ ହୋଇଗଲା ।

ଏହି କାଳଯବନର ବିନାଶକାରୀ ମହାପୁରୁଷଙ୍କର ନାମ ମୁଚୁକୁନ୍ଦ । ସେ ପ୍ରସିଦ୍ଧ ଇକ୍ଷ୍ୱାକୁ ବଂଶରେ ମହାତ୍ମା ମାନ୍ଧାତାଙ୍କ ଔରସରେ ଜାତ ହୋଇଥିଲେ ଏବଂ ନିଜର ଶାରୀରିକ ଓ ଆତ୍ମିକ ମହତ୍ତ୍ୱ ବଳରେ ବହୁକାଳ ଧରି ଦେବତାମାନଙ୍କର ରକ୍ଷାକର୍ତ୍ତା ହୋଇ ଦେବତାମାନଙ୍କୁ ଅସୁରଙ୍କ ଆକ୍ରମଣରୁ ରକ୍ଷା କରିଥିଲେ । ପରେ ଦେବତାମାନେ

ସେମାନଙ୍କର ସୁରକ୍ଷା ସାଧନ ନିମନ୍ତେ କାର୍ତ୍ତିକେୟଙ୍କୁ ପ୍ରାପ୍ତ ହେବା ପରେ ମୁଚୁକୁନ୍ଦଙ୍କୁ ତାଙ୍କ ଦାୟିତ୍ୱରୁ ସସମ୍ମାନେ ଅବ୍ୟାହତି ଦେଇଥିଲେ । ଯୁଦ୍ଧକ୍ଲାନ୍ତ ମୁଚୁକୁନ୍ଦଙ୍କର ପ୍ରାର୍ଥନା ଅନୁସାରେ ସେ ଯେପରି ଦୀର୍ଘକାଳଧରି ନିଦ୍ରାରେ ଶୟନ କରି ପାରିବେ ଏବଂ ସେ ସମୟରେ କେହି ଯଦି ତାଙ୍କର ନିଦ୍ରାଭଙ୍ଗ କରେ, ତେବେ ସେ ଚାହିଁବା ମାତ୍ରେ ସେହି ବ୍ୟକ୍ତିର ଯେପରି ମୃତ୍ୟୁ ହେବ ଦେବତାମାନେ ସେପରି ବର ତାଙ୍କୁ ପ୍ରଦାନ କରିଥିଲେ । ସେହି ବର ପ୍ରଭାବରେ କାଳଯବନର ମୃତ୍ୟୁ ଘଟିଲା ।

କାଳଯବନକୁ ଧ୍ୱଂସ କରି ମୁଚୁକୁନ୍ଦ ଦୂରରେ କୃଷ୍ଣଙ୍କୁ ବିଚରଣ କରୁଥିବାର ଦର୍ଶନ କଲେ ।

ସମ୍ମୁଖରେ ନବୀନ ନୀରଦ ସମ ଶ୍ୟାମଳ ବର୍ଣ୍ଣ ବିଶିଷ୍ଟ, ପୀତ କୌଶେୟ ବସନଧାରୀ, ବକ୍ଷସ୍ଥଳରେ ଶ୍ରୀବତ୍ସ ଚିହ୍ନ, ଗଳାରେ କୌସ୍ତୁଭ ମଣି ଓ ବିଭିନ୍ନ ପୁଷ୍ପର ମାଳା ଶୋଭିତ, ପ୍ରଶାନ୍ତ ବଦନର ଅଧିକାରୀ, ଚତୁର୍ଭୁଜଧାରୀ ଉଜ୍ଜ୍ୱଳକାନ୍ତି ବିଶିଷ୍ଟ ଏକ ସୌମ୍ୟଦର୍ଶନ ଯୁବକଙ୍କୁ ଦର୍ଶନ କରି ମୁଚୁକୁନ୍ଦ ପ୍ରଥମେ ଶଙ୍କିତ ଓ ପରେ ଆନନ୍ଦ ବିହ୍ୱଳ ହୋଇ ପଚାରିଲେ, 'ହେ ପୁରୁଷଶ୍ରେଷ୍ଠ, ଏହି କଣ୍ଟକସମାକୀର୍ଣ୍ଣ ଦୁର୍ଗମଗିରି ଗୁହାରେ ପଦ୍ମପଳାଶ ସଦୃଶ ସୁକୋମଳ ପଦ ଯୁଗଳରେ ଆପଣଙ୍କୁ ବିଚରଣ କରୁଥିବାର ଦେଖି ଆପଣଙ୍କ ପରିଚୟ ସମ୍ପର୍କରେ ମୁଁ ବିଶେଷ କୌତୂହଳୀ ହୋଇପଡ଼ିଛି । ଆପଣଙ୍କର ଏହି ଅପୂର୍ବ ତେଜସ୍ୱିତା ଦର୍ଶନ କରି ମୁଁ ଭାବୁଛି ସତେ କଣ ସ୍ୱୟଂ ହୁତାଶନ, ନା ସ୍ୱୟଂ ଚନ୍ଦ୍ର, ନା ଦେବରାଜ ସ୍ୱୟଂ ମୋର ଦୃଷ୍ଟି ସମ୍ମୁଖରେ ମୂର୍ତ୍ତିମାନ ହୋଇଅଛନ୍ତି ? ଦେବତାମାନଙ୍କର ପ୍ରଭୁ ହିସାବରେ ଖ୍ୟାତ ଭଗବାନ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ମଧ୍ୟରୁ ଆପଣ କ'ଣ ସ୍ୱୟଂ ବିଷ୍ଣୁ ? ଆପଣଙ୍କର ଅଙ୍ଗକାନ୍ତିର ଦୀପ୍ତିରେ ଏହି ଅନ୍ଧକାରଚ୍ଛନ୍ନ ଗିରିଗହ୍ୱର ଉଦ୍‌ଭାସିତ ହୋଇଉଠିଛି । ଦୟାକରି ଆପଣଙ୍କର ପରିଚୟ ପ୍ରଦାନ କରନ୍ତୁ । ତା' ପୂର୍ବରୁ ମୁଁ ମୋର ପରିଚୟ ପ୍ରଦାନ କରୁଛି । ମହାନ୍ ଇକ୍ଷ୍ୱାକୁବଂଶ ସମ୍ଭୂତ କ୍ଷତ୍ରିୟ ଶ୍ରେଷ୍ଠ ମାନ୍ଧାତାଙ୍କର ମୁଁ ପୁତ୍ର । ମୋର ନାମ ମୁଚୁକୁନ୍ଦ । ଦେବତା-ମାନଙ୍କର ଅନୁରୋଧକ୍ରମେ ମୁଁ ଏହି ନିର୍ଜନ ସ୍ଥାନରେ ଶୟନ କରୁଥିବା ସମୟରେ ମୋର ନିଦ୍ରାଭଙ୍ଗ କରିବାର ଅପରାଧରେ ଏହି ପାପିଷ୍ଠର

ମୃତ୍ୟୁ ଘଟିଛି । ଏହି ଘଟଣା ପରେ, ଆପଣଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଲାଭ କରିଥିଲେ ମଧ୍ୟ ଆପଣଙ୍କ ରୂପର ତେଜକୁ ସହ୍ୟ କରିବାର ଶକ୍ତି ମୋର ନାହିଁ । ମୋ ପରି ଅଧମ ମନୁଷ୍ୟମାନଙ୍କର ଆପଣ ଯେ ମାନନୀୟ ଓ ଭଜନୀୟ, ଏଥିରେ ସନ୍ଦେହ ନାହିଁ ।'

ମୁଚୁକୁନ୍ଦଙ୍କର କଥା ଶୁଣି କୃଷ୍ଣ କହିଲେ, 'ପ୍ରିୟ ମୁଚୁକୁନ୍ଦ, ମୋର ପରିଚୟ ଏପରି ଅସୀମ ଯେ, ଅନ୍ୟମାନଙ୍କର କଥା ଦୂରେ ଥାଉ ମୁଁ ଅନନ୍ତ ଶକ୍ତିର ଅଧିକାରୀ ହୋଇ ମଧ୍ୟ ମୋର ପରିଚୟକୁ ନିଜେ ପ୍ରକାଶ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ନାରଦପ୍ରମୁଖ ତ୍ରିକାଳଦର୍ଶୀ ମହର୍ଷିମାନେ ନିରବଚ୍ଛିନ୍ନ ଭାବରେ ମୋର ଗୁଣକୀର୍ତ୍ତନ କରୁଥିଲେ ମଧ୍ୟ ମୋ ପରିଚୟର ସାମାନ୍ୟତମ ଅଂଶମାତ୍ର ପ୍ରକାଶ କରିବାକୁ ଅଦ୍ୟାବଧି ସେମାନେ ସମର୍ଥ ହୋଇପାରି ନାହାନ୍ତି । ବହୁ ବର୍ଷ ଚେଷ୍ଟାକଲେ ହୁଏତ ଧୂଳିକଣା ସମୂହକୁ ଗଣନା କରାଯାଇପାରେ; କିନ୍ତୁ ମୋର ଅସୀମ ପରିଚୟକୁ ପୂର୍ଣ୍ଣ କଳନା କରିବା ସମ୍ଭବ ନୁହେଁ । ହେ ମୁଚୁକୁନ୍ଦ, ତୁମେ ମୋର ପ୍ରିୟପାତ୍ର । ମୋର ସାମାନ୍ୟ ପରିଚୟ ଶ୍ରବଣ କର । ଅତ୍ୟାଚାରୀ ଅସୁରମାନଙ୍କୁ ବିନାଶ କରି ଧରଣୀର ଭାର ଲାଘବ କରିବା ସଙ୍ଗେ ସଙ୍ଗେ ଧର୍ମସଂସ୍ଥାପନ କରିବା ନିମନ୍ତେ କମଳଯୋନି ବ୍ରହ୍ମା ମୋତେ ଅନୁରୋଧ କରିବାରୁ, ତାଙ୍କର ଅନୁରୋଧ ରକ୍ଷାକରି ମୁଁ ବର୍ତ୍ତମାନ ଯାଦବ ବଂଶରେ ବସୁଦେବଙ୍କର ପୁତ୍ର ରୂପରେ ଅବତୀର୍ଣ୍ଣ ହୋଇଅଛି, ସେଥିପାଇଁ ମୁଁ ବାସୁଦେବ ନାମରେ ପରିଚିତ । କାଳନେମୀ ମୃତ୍ୟୁ ପରେ କଂସ ରୂପରେ ଜାତହୋଇ ନାନାବିଧ ଅତ୍ୟାଚାର କରୁଥିବାରୁ ମୁଁ ତାକୁ ସଂହାର କରିଅଛି ଏବଂ ତା'ର ଅନୁଚରବର୍ଗଙ୍କୁ ମଧ୍ୟ ବିନାଶ କରିଅଛି । ହେ ମୁଚୁକୁନ୍ଦ, ତୁମର କ୍ରୋଧୋଦୀପ୍ତ ଦୃଷ୍ଟି ସହଯୋଗରେ ଏହି କାଳଯବନକୁ ମଧ୍ୟ ସଂହାର କଲି । ତୁମେ ପୂର୍ବ ଜନ୍ମରେ ମୋର ବହୁ ଆରାଧନା କରି ମୋତେ ପ୍ରୀତ କରିଥିବାରୁ, ମୋତେ ଦର୍ଶନ କରିବାର ସୁଯୋଗ ତୁମକୁ ପ୍ରଦାନ କଲି । ହେ ରାଜର୍ଷି, ମୋର ଶରଣାଗତ ମାନଙ୍କର ସକଳ ଦୁଃଖ ମୁଁ ନିରାକରଣ କରିଥାଏ; ତେଣୁ ତୁମେ ଇଚ୍ଛାନୁସାରେ ମୋଠାରୁ ବର ପ୍ରାର୍ଥନା କର; ମୁଁ ତାହା ଅଚିରେ ପ୍ରଦାନ କରିବି ।'

କୃଷ୍ଣଙ୍କ କଥା ଶୁଣିବା ମାତ୍ରେ ମୁଚୁକୁନ୍ଦଙ୍କର ସ୍ମୃତିପଥରେ ଗର୍ଗାଚାର୍ଯ୍ୟଙ୍କର ଭବିଷ୍ୟତ ବାଣୀ ଜାଗରୂକ ହେଲା । ବସୁଦେବଙ୍କ ଗୃହରେ ସ୍ୱୟଂ ଭଗବାନ ଜାତ ହେବେ ବୋଲି ଗର୍ଗାଚାର୍ଯ୍ୟ ପୂର୍ବେ କହିଥିଲେ; ତେଣୁ କୃଷ୍ଣଙ୍କୁ ସ୍ୱୟଂ ଭଗବାନ ବୋଲି ଭାବି ଓ ତାଙ୍କୁ ସଭକ୍ତି ପ୍ରଣାମ କରି ମୁଚୁକୁନ୍ଦ ପୁନର୍ବାର କହିଲେ, 'ହେ ପ୍ରଭୁ, ଆପଣଙ୍କର ମାୟାରେ ଅଭିଭୂତ ହୋଇ ଅଖିଳ ଜଗତର ସକଳ ପ୍ରାଣୀ ଆପଣଙ୍କର ଚିନ୍ତା ଓ ଭଜନ ପ୍ରତି ବିମୁଖ ହୋଇ ସାଂସାରିକ ସୁଖଦୁଃଖରେ ନିମଜ୍ଜିତ ହୋଇ ଅଛନ୍ତି । ଏହି ପୃଥିବୀ କର୍ମଭୂମି; ସେଥିପାଇଁ ଏହା ଅତ୍ୟନ୍ତ ପବିତ୍ର । ଏଠାରେ ମନୁଷ୍ୟ ଜନ୍ମ ଲାଭକରିବା ଯେପରି ଦୁର୍ଲଭ ସେହିପରି ସୌଭାଗ୍ୟର କଥା । କିନ୍ତୁ ମନୁଷ୍ୟ ସାଂସାରିକ ଜୀବନକୁ ଭଗବତ୍ ଚିନ୍ତା ଅପେକ୍ଷା ବଡ଼ ସ୍ଥାନ ଦେବା ଦୁର୍ଭାଗ୍ୟଜନକ । ତୁଚ୍ଛ ତୃଣ ଲୋଭରେ ଆସକ୍ତ ହୋଇ ପଶୁମାନେ ଅରଣ୍ୟର ଅନ୍ଧକୂପରେ ପତିତ ହେବାପରି ବିଷୟ-ଭୋଗ-ପ୍ରଲୁବ୍ଧ ମନୁଷ୍ୟମାନେ ସାଂସାରିକ ମୋହାନ୍ଧକାରରେ ପତିତ ହୋଇଅଛନ୍ତି । ହେ ଅଜିତ, ଅନ୍ୟମାନଙ୍କର କଥା କ'ଣ କହିବି, ମୁଁ ନିଜେ ଅତୁଳ ରାଜଐଶ୍ୱର୍ଯ୍ୟର ଅଧିକାରୀ ହୋଇ ମଧ୍ୟ, ଏହି ଦୁର୍ଲଭ ମାନବ ଜୀବନକୁ ବିଷୟସୁଖଭୋଗ ମଧ୍ୟରେ ଅଯଥାରେ ଅତିବାହିତ କରିଅଛି । ଏହି ନିତ୍ୟ ପରିବର୍ତ୍ତନଶୀଳ ଷଡ୍ରିପୁଷ୍ଟ ଦେହକୁ ଅବିନାଶୀ ଆତ୍ମା ବୋଲି ଭ୍ରମ କରି ଏବଂ ଦେହରୁ ଜାତ ହୋଇଥିବା ପୁତ୍ରକନ୍ୟାଙ୍କ ଚିନ୍ତାରେ ବିହ୍ୱଳ ହୋଇ ଜୀବନର ପ୍ରକୃତ କର୍ତ୍ତବ୍ୟରୁ ବିଚ୍ୟୁତ ହୋଇଅଛି । ମୃତ୍ତିକା ନିର୍ମିତ ପାତ୍ର ପରି ଅତି ତୁଚ୍ଛ ଓ କ୍ଷଣସ୍ଥାୟୀ ପଞ୍ଚଭୂତମୟ ମଳପୂର୍ଣ୍ଣ ଶରୀରକୁ ଲାଭକରି ଅଭିମାନ ଓ ଗର୍ବର ବଶବର୍ତ୍ତୀ ହୋଇ କ୍ଷଣସ୍ଥାୟୀ ଜୀବନର ମୂଲ୍ୟବାନ୍ ସମୟକୁ ବୃଥାରେ ଅତିବାହିତ କରିଅଛି । ଏହି ଦେହ ଅବଶେଷରେ କାଳରୂପୀ ଆପଣଙ୍କ ଦ୍ୱାରା କବଳିତ ହୋଇ ବିଷ୍ଠା, କୃମି ଓ ଭସ୍ମରେ ପରିଣତ ହେବ—ଏକଥା ବୁଝି ମଧ୍ୟ ମନୁଷ୍ୟ ବୁଝେ ନାହିଁ । ବହୁ ଧନ ଓ ଐଶ୍ୱର୍ଯ୍ୟର ଅଧିକାରୀ ହୋଇ ମଧ୍ୟ ମନୁଷ୍ୟର ମନରୁ ଧନଲିପ୍ସାର ଅବସାନ ଘଟେ ନାହିଁ, ବରଂ ଉତ୍ତରୋତ୍ତର ଅଭିବୃଦ୍ଧି ଘଟେ । ହେ ଅଚ୍ୟୁତ, ସଂସାରଚକ୍ରରେ ଆବର୍ତ୍ତିତ ଜୀବମାନଙ୍କର ଭବବନ୍ଧନରୁ ମୁକ୍ତ ହେବାର ସମୟ ଉପସ୍ଥିତ ହେଲେ ସେମାନଙ୍କ

ମନରେ ସତ୍‌ଚିନ୍ତା ଓ ସଦ୍‌ଭାବ ଉଦୟ ହୁଏ ଏବଂ ଆପଣଙ୍କ ପ୍ରତି ଭକ୍ତିଭାବ ଜାତ ହୁଏ । ପ୍ରଭୁ, ଆପଣଙ୍କର ଅନୁଗ୍ରହ ଫଳରେ ବିଷୟ-ବାସନା ପ୍ରତି ସମସ୍ତ ଆସକ୍ତି ମୋ ମନରୁ ଲୋପ ପାଇଅଛି ଏବଂ ମୋର ମନରେ ବୈରାଗ୍ୟଭାବ ଉଦୟ ହୋଇଅଛି । ହେ ପ୍ରଭୁ ଅନ୍ତର୍ଯ୍ୟାମି, ମୋ ମନର କଥା ଆପଣଙ୍କୁ ଅଛପା ନାହିଁ । ଆପଣଙ୍କ ଚରଣସେବା କରିବାର ସୌଭାଗ୍ୟ ଯେପରି ମୁଁ ପାଏ ମୋତେ ସେହି ବର ପ୍ରଦାନ କରନ୍ତୁ । ମୋତେ ଏହି ଭବସାଗରରୁ ଉଦ୍ଧାର କରନ୍ତୁ । ଏହାଛଡ଼ା ଅନ୍ୟ ବରରେ ମୋର କୌଣସି ଆବଶ୍ୟକତା ନାହିଁ ।'

ମୁଚୁକୁନ୍ଦଙ୍କର କଥା ଶୁଣି କୃଷ୍ଣ କହିଲେ, "ମହାରାଜ, ତୁମର ବୁଦ୍ଧି ଅତ୍ୟନ୍ତ ନିର୍ମଳ ଓ ପରମାର୍ଥ ଲାଭ କରିବା ନିମନ୍ତେ ତୁମେ ଉପଯୁକ୍ତ । ବର ପ୍ରାର୍ଥନା କରିବା ନିମନ୍ତେ ମୁଁ ତୁମକୁ ପ୍ରଲୋଭିତ କରିଥିଲେ ମଧ୍ୟ ତୁମେ ନିଜର ମନକୁ ଭୋଗ ଓ ବୈଭବସମ୍ପର୍କୀୟ ସକଳ ତୃଷ୍ଣାର ଊର୍ଦ୍ଧ୍ୱରେ ରଖିଥିବା ବାସ୍ତବିକ ଆନନ୍ଦର କଥା । ମୁଁ ତୁମକୁ ପରୀକ୍ଷା କରୁଥିଲି । ତୁମେ ହିଁ ପ୍ରକୃତ ଭକ୍ତ । ପ୍ରକୃତ ଭକ୍ତର ମନ କେବେ ହେଲେ ବିଷୟଭୋଗବାସନାରେ ଆସକ୍ତ ହୁଏ ନାହିଁ । ମୋ ପ୍ରତି ତୁମର ଅଚଳା ଭକ୍ତି ଦେଖି ମୁଁ ପ୍ରୀତ ହୋଇଅଛି । ରାଜ୍ୟପାଳନ ଓ ମୃଗୟାଦି କ୍ଷତ୍ରିୟର ଧର୍ମ; ତେଣୁ ତୁମେ ଅତୀତରେ ସେସବୁ କାର୍ଯ୍ୟ କରିବାକୁ ଯାଇ ବହୁ ପ୍ରାଣୀବଧ କରିଅଛ । ତେଣୁ ଭଗବତ ସ୍ୱରୂପରେ ଧ୍ୟାନ ରଖି ଇନ୍ଦ୍ରିୟାସକ୍ତିରୁ ନିଜକୁ ସଂଯତ କରି ତପ ଅନୁଷ୍ଠାନ କର; ତଦ୍ୱାରା ସେହି ଜୀବହତ୍ୟାଜନିତ ପାପରୁ ମୁକ୍ତ ହେବ ଏବଂ ମୃତ୍ୟୁପରେ ବ୍ରାହ୍ମଣ ଜନ୍ମଲାଭ କରି ଏବଂ ସେହି ଜନ୍ମରେ ସର୍ବ ପ୍ରାଣୀହିତୈଷୀ ଭାବରେ ଜୀବନଯାପନ କରି ମୋତେ ଅନ୍ତରେ ପ୍ରାପ୍ତ ହେବ ।" .

କୃଷ୍ଣଙ୍କ ମୁଖରୁ ସେହି କଥା ଶୁଣି ମୁଚୁକୁନ୍ଦ ପରମଭକ୍ତି ଓ ଆନନ୍ଦରେ କୃଷ୍ଣଙ୍କୁ ପ୍ରଦକ୍ଷିଣ ଓ ପ୍ରଣାମ କରି ତପସ୍ୟା କରିବା ନିମନ୍ତେ ନର-ନାରାୟଣଙ୍କ ନିତ୍ୟ ନିବାସସ୍ଥାନ ବଦରିକାଶ୍ରମକୁ ଯାତ୍ରାକଲେ ।

ଏଣେ, କାଳଯବନର ସୈନ୍ୟମାନେ ମଥୁରାକୁ ଘେରି ରହିଥାନ୍ତି । କୃଷ୍ଣ ସେମାନଙ୍କୁ ସଂହାର କରି ସେମାନଙ୍କଠାରୁ ସମସ୍ତ ଧନରତ୍ନ ନେଇ ଦ୍ୱାରକାକୁ ଫେରିଗଲେ ।

କାଳଯବନର ଆକ୍ରମଣ କଥା ଶୁଣି ଜରାସନ୍ଧ ପୁନର୍ବାର ମଥୁରା ଆକ୍ରମଣ କଲା । ଏଥର ମଧ୍ୟ ଜରାସନ୍ଧର ଆକ୍ରମଣର ମୁକାବିଲା କରିବାକୁ କୃଷ୍ଣ ଓ ବଳରାମ ଆସିଲେ ଏବଂ ଯୁଦ୍ଧ କରୁ କରୁ ହଠାତ୍ ସେ ଦୁହେଁ ଯୁଦ୍ଧକ୍ଷେତ୍ରରୁ ପଳାୟନ କରି ନିକଟସ୍ଥ ଏକ ପର୍ବତ ଉପରେ ଯାଇ ଆତ୍ମ-ଗୋପନ କଲେ ଜରାସନ୍ଧ ବହୁ ଅନ୍ୱେଷଣ କରି ମଧ୍ୟ କୃଷ୍ଣ ଓ ବଳରାମଙ୍କର କୌଣସି ସନ୍ଧାନ ନ ପାଇ ପର୍ବତରେ ନିଆଁ ଲଗାଇଦେଲା । କୃଷ୍ଣ ଓ ବଳରାମ ଯେତେବେଳେ ଦେଖିଲେ ଯେ ସମଗ୍ର ପର୍ବତ ନିଆଁରେ ଜଳୁଛି ଓ ପାହାଡ଼ର ଚତୁର୍ଦ୍ଦିଗରେ ଜରାସନ୍ଧର ସୈନ୍ୟମାନେ ଘେରି ରହିଛନ୍ତି, ସେ ଦୁହେଁ ଜରାସନ୍ଧର ଅଲକ୍ଷ୍ୟରେ ସମୁଚ୍ଚ ପର୍ବତରୁ ଲମ୍ଫ ପ୍ରଦାନ କରି ନିରାପଦରେ ଦ୍ୱାରକାକୁ ଫେରିଆସିଲେ । ଦୁଇ ଭାଇ ପର୍ବତର ଅଗ୍ନିରେ ପୋଡ଼ି ହୋଇ ମରିଛନ୍ତି ବୋଲି ଅନୁମାନ କରି ଜରାସନ୍ଧ ପରମ ଆନନ୍ଦରେ ମଗଧକୁ ଫେରିଗଲା ।



# କୃଷ୍ଣଙ୍କର ବିବାହ

ବିଦର୍ଭ ଦେଶର ରାଜାଙ୍କର ନାମ ଭୀଷ୍ମକ । ତାଙ୍କର ଯଥାକ୍ରମେ ରୁକ୍ମୀ, ରୁକ୍ମରଥ, ରୁକ୍ମବାହୁ, ରୁକ୍ମକେଶ ଓ ରୁକ୍ମମାଳୀ ନାମରେ ପାଞ୍ଚଟି ପୁତ୍ର ଏବଂ ରୁକ୍ମିଣୀ ନାମରେ ଗୋଟିଏ କନ୍ୟା ଥିଲା । ରୁକ୍ମିଣୀ ଯେପରି ଅଲୋକସାମାନ୍ୟା ସୁନ୍ଦରୀ ସେହିପରି ସର୍ବଗୁଣସମ୍ପନ୍ନା ଥିଲେ । ରାଜପୁରୀକୁ ଆଗତ ବିଭିନ୍ନ ବ୍ୟକ୍ତିଙ୍କ ମୁଖରୁ କୃଷ୍ଣଙ୍କର ରୂପ, ଗୁଣ, କୀର୍ତ୍ତି, ଐଶ୍ୱର୍ଯ୍ୟ ଏବଂ ପରାକ୍ରମ ସମ୍ପର୍କରେ ବହୁ ପ୍ରଶଂସା ଶ୍ରବଣ କରି ରୁକ୍ମିଣୀ ମନେ ମନେ କୃଷ୍ଣଙ୍କୁ ନିଜର ପତିରୂପରେ ବରଣ କରିଥିଲେ । କୃଷ୍ଣ ମଧ୍ୟ ରୁକ୍ମିଣୀଙ୍କର ସୌନ୍ଦର୍ଯ୍ୟ, ସୁଲକ୍ଷଣ ଓ ସ୍ୱଭାବ ସମ୍ପର୍କରେ ଲୋକମୁଖରୁ ଶ୍ରବଣ କରି ତାଙ୍କୁ ବିବାହ କରିବାକୁ ସ୍ଥିର କରିଥିଲେ ।

ରୁକ୍ମିଣୀଙ୍କ ମନର କଥା ତାଙ୍କର ପିତା ଭୀଷ୍ମକ ଏବଂ ଭ୍ରାତାମାନଙ୍କୁ ଅଗୋଚର ନ ଥିଲା । କିନ୍ତୁ ରୁକ୍ମିଣୀଙ୍କର ଜ୍ୟେଷ୍ଠ ଭ୍ରାତା ରୁକ୍ମୀ କୃଷ୍ଣ-ବିଦ୍ୱେଷୀ ଥିବାରୁ, କୃଷ୍ଣଙ୍କ ହସ୍ତରେ ରୁକ୍ମିଣୀଙ୍କୁ ପ୍ରଦାନ କରିବାକୁ ପସନ୍ଦ କରୁ ନ ଥିଲେ; ଫଳରେ ରୁକ୍ମୀଙ୍କ ପ୍ରସ୍ତାବ ଅନୁସାରେ ଚେଦି ଦେଶର ରାଜା ଶିଶୁପାଳଙ୍କ ସହିତ ରୁକ୍ମିଣୀଙ୍କ ବିବାହ ସ୍ଥିର କରାଗଲା ଏବଂ ବିବାହ ନିମନ୍ତେ ଆବଶ୍ୟକୀୟ ଆୟୋଜନମାନ କରାଗଲା ।

ରୁକ୍ମିଣୀ ଏସବୁ ଜାଣିପାରି ବିଶେଷ ଚିନ୍ତିତ ହୋଇପଡ଼ିଲେ ଏବଂ କିପରି କୃଷ୍ଣଙ୍କୁ ପତିରୂପରେ ଲାଭ କରିବେ ସେଥିପାଇଁ କାତର ହୃଦୟରେ ଉପାୟ ଚିନ୍ତା କରିବାକୁ ଲାଗିଲେ । ପରିଶେଷରେ ଜଣିକ ବିଶ୍ୱସ୍ତ ବ୍ରାହ୍ମଣଙ୍କୁ ଗୋପନରେ ଆହ୍ୱାନ କରି ରୁକ୍ମିଣୀ ତାଙ୍କ ହସ୍ତରେ କୃଷ୍ଣଙ୍କ ନିକଟକୁ ସବୁକଥା ଜଣାଇ ଏକ ବାର୍ତ୍ତା ପ୍ରେରଣ କଲେ ।

ରୁକ୍ମିଣୀଙ୍କ ପ୍ରେରିତ ବ୍ରାହ୍ମଣ ଅତି ସତ୍ୱର କୃଷ୍ଣଙ୍କ ନିକଟକୁ ଯାଇ ସମସ୍ତ କଥା କହି ରୁକ୍ମିଣୀଙ୍କ ପ୍ରଦତ୍ତ ଗୋପନ ବାର୍ତ୍ତା କୃଷ୍ଣଙ୍କଠାରେ ନିବେଦନ କଲା । କୃଷ୍ଣଙ୍କ ନିକଟକୁ ପ୍ରେରିତ ବାର୍ତ୍ତାରେ ରୁକ୍ମିଣୀ କହିଥିଲେ; 'ହେ ତ୍ରିଭୁବନସୁନ୍ଦର ପ୍ରିୟ ଅଚ୍ୟୁତ । ଆପଣଙ୍କ ଅଲୋକସାମାନ୍ୟ ରୂପ ଓ ଗୁଣର ଉଚ୍ଛ୍ୱସିତ ପ୍ରଶଂସା ସମସ୍ତଙ୍କଠାରୁ ଶୁଣିବାକୁ

ପାଇ ସମସ୍ତ ଲଜ୍ଜା ଓ ଭୟକୁ ପରିହାର କରି ମନେ ମନେ ଆପଣଙ୍କୁ ମୁଁ ସ୍ୱାମୀ ରୂପରେ ବରଣ କରିଅଛି । ଆପଣଙ୍କୁ ପତିରୂପରେ ଲାଭ କରିବା ଯେ କୌଣସି କୁଳବତୀ କାମିନୀ ପକ୍ଷରେ ପରମସୌଭାଗ୍ୟର ବିଷୟ । ଆପଣଙ୍କ ଶ୍ରୀଚରଣରେ ମୋର କାୟ ଓ ମନକୁ ମୁଁ ସମର୍ପଣ କରିଅଛି । ଆପଣ ଅତି ସତ୍ୱର ଏଠାକୁ ଆସି ମୋତେ ପତ୍ନୀ ରୂପରେ ଗ୍ରହଣ କରନ୍ତୁ । ସିଂହର ଆହାରକୁ ସ୍ପର୍ଶ କରିବା ଯେପରି ଶୃଗାଳ ପକ୍ଷରେ ନିଶ୍ଚିତ ଧୃଷ୍ଟତା ଅନୁରୂପ ଭାବରେ ଆପଣଙ୍କ ଶ୍ରୀଚରଣରେ ସମର୍ପିତ ମୋର ଏହି ଶରୀରକୁ ଯେପରି ଘୃଣ୍ୟ ଚେଦିରାଜ ଶିଶୁପାଳ ସ୍ପର୍ଶ କରି ନ ପାରେ ସେଥିପ୍ରତି ଦୟାକରି ଦୃଷ୍ଟି ଦେବେ । ଚେଦିରାଜ ଶିଶୁପାଳ ସହିତ ମୋର ବିବାହ ଅନୁଷ୍ଠିତ ହେବ ବୋଲି ଦିନ ଧାର୍ଯ୍ୟ ହୋଇ ସାରିଛି । ତେଣୁ ସେହି ଧାର୍ଯ୍ୟ ଦିବସର ଗୋଟିଏ ଦିନ ପୂର୍ବରୁ ଆପଣ ଏଠାକୁ ଆସି, ଶିଶୁପାଳ ଓ ତା'ର ବନ୍ଧୁ ଜରାସନ୍ଧପ୍ରମୁଖ ବୀରମାନଙ୍କୁ ଯୁଦ୍ଧରେ ପରାସ୍ତ କରି ମୋତେ ଉଦ୍ଧାର କରନ୍ତୁ । ଏହା ହିଁ ଆପଣଙ୍କଠାରେ ମୋର ବିନମ୍ର ଆକୁଳ ନିବେଦନ । ମୁଁ ଅନ୍ତଃପୁରଚାରିଣୀ ଏବଂ ମୁଁ ବାସ କରୁଥିବା ରାଜଅନ୍ତଃପୁରର ଅନ୍ତେବାସୀ-ମାନଙ୍କୁ ସଂହାର ନ କଲେ ମୋତେ ଲାଭ କରିବା ସମ୍ଭବ ନୁହେଁ ବୋଲି ଆପଣ ଭାବିପାରନ୍ତି; ସେଥିପାଇଁ ଆପଣଙ୍କ ଗୋଚରାର୍ଥେ ଜଣାଉଛି ଯେ ବିବାହର ପୂର୍ବ ଦିବସରେ କନ୍ୟାକୁ ଇଷ୍ଟଦେବଦେବୀଙ୍କର ଦର୍ଶନ କରାଇ ଆଣିବାର ବିଧି ଆମର ରହିଛି ଏବଂ ତଦନୁସାରେ ରାଜଅନ୍ତଃପୁରର ବାହାରେ ଅବସ୍ଥିତ ଦେବୀ ପାର୍ବତୀଙ୍କ ମନ୍ଦିରକୁ ଦେବୀ ଦର୍ଶନ କରାଇବା ନିମନ୍ତେ ମୋତେ ନିଆଯିବ, ମୁଁ ସୂଚନା ମାତ୍ର ଦେଲି, କିନ୍ତୁ ଆପଣ ଯେପରି ଉପଯୁକ୍ତ ଭାବିବେ, ତଦନୁସାରେ ବ୍ୟବସ୍ଥା କରିବେ । ହେ କମଳଲୋଚନ, ଆପଣଙ୍କୁ ଲାଭ କରିବାର ପୁଣ୍ୟ ମୋର ଅଛି କି ନାହିଁ, ଜାଣେନା । ଯଦି ଆପଣଙ୍କୁ ଲାଭ କରିବାରୁ ମୁଁ ବଞ୍ଚିତ ହୁଏ, ତେବେ ଆପଣଙ୍କୁ ଲାଭ କରିବା ନିମନ୍ତେ ଶତ ଶତ ଜନ୍ମ ଧରି ସାଧନା କରିବି; ହେଲେ ପତି ରୂପରେ ଆପଣଙ୍କୁ ଲାଭ କରିବାର ଆଶାରୁ ନିଜକୁ ବଞ୍ଚିତ କରିପାରିବି ନାହିଁ, ଆପଣଙ୍କ ପଦଧୂଳିର ଅପେକ୍ଷାରେ ରହିଲି ।'

ବ୍ରାହ୍ମଣଙ୍କ ମୁଖରୁ ସମସ୍ତ କଥା ଅବଗତ ହୋଇ କୃଷ୍ଣ ନିଜର କର୍ତ୍ତବ୍ୟ ସ୍ଥିର କଲେ ଏବଂ ବ୍ରାହ୍ମଣଙ୍କୁ କହିଲେ, 'ହେ ଦ୍ୱିଜବର, ତୁମ

ରାଜକନ୍ୟାଙ୍କ ପରି ମୋ ମନ ମଧ୍ୟ ତାଙ୍କୁ ଲାଭ କରିବା ନିମନ୍ତେ ବିଶେଷ ଉତ୍କଣ୍ଠିତ ଏବଂ ଏହି ଚିନ୍ତା ମୋତେ ବହୁ ରାତି ଅନିଦ୍ର କରି ରଖିଛି । ନିତବେ ରୁକ୍ମ ଯେ ମୋତେ ଭଲ ଆଖିରେ ଦେଖେ ନାହିଁ, ସେ କଥା ମୋତେ ଅଛପା ନାହିଁ । ଆମର ଏହି ମିଳନରେ ରୁକ୍ମ ହିଁ ପ୍ରବଳ ପ୍ରତିବନ୍ଧକ ଭାବରେ ଛିଡ଼ା ହୋଇଅଛି । ଯାହାହେଉ, ସମସ୍ତ ପ୍ରତିବନ୍ଧକକୁ ପ୍ରତିହତ କରି ମୋ ପ୍ରତି ଅନୁରକ୍ତା ସର୍ବାଙ୍ଗସୁନ୍ଦରୀ ରୁକ୍ମିଣୀଙ୍କୁ ମୁଁ ନିଶ୍ଚୟ ଉଦ୍ଧାର କରିବି । ତେଣୁ ରାଜକୁମାରୀଙ୍କୁ ତୁମେ ନିଶ୍ଚିନ୍ତ କରାଇ ଦେବ ।'

ଯେଉଁଦିନ ସେହି ବ୍ରାହ୍ମଣ କୃଷ୍ଣଙ୍କୁ ରାଜକନ୍ୟାଙ୍କର ସମ୍ବାଦ ପ୍ରଦାନ କଲେ, ତହିଁ ପରଦିନ ରାତିରେ ରୁକ୍ମିଣୀଙ୍କର ସେହି ନିର୍ଦ୍ଧାରିତ ବିବାହ ଅନୁଷ୍ଠିତ ହେବାର କଥା; ତେଣୁ କୃଷ୍ଣ କାଳବିଳମ୍ବ ନ କରି ନିଜର ରଥ ପ୍ରସ୍ତୁତ କରି ବ୍ରାହ୍ମଣଙ୍କୁ ରଥରେ ବସାଇ ବିଦର୍ଭ ଅଭିମୁଖେ ଯାତ୍ରା କଲେ । କୃଷ୍ଣ ବିଦର୍ଭରେ ପହଞ୍ଚିଲା ବେଳକୁ ବିବାହର ଆୟୋଜନ ଅତ୍ୟନ୍ତ ଆଡ଼ମ୍ବରର ସହିତ ଚାଲିଥାଏ । ଯଥାସମୟରେ ଚେଦିରାଜ ଶିଶୁପାଳ ଏକ ଆଡ଼ମ୍ବରପୂର୍ଣ୍ଣ ଶୋଭାଯାତ୍ରାରେ ଆସି ବିଦର୍ଭରେ ପ୍ରବେଶ କଲେ ଏବଂ ରାଜା ଭୀଷ୍ମକ ସପରିବାର ଯଥାବିଧି ଓ ସମ୍ମାନପୂର୍ବକ ଭାବୀ ଜାମାତା ଶିଶୁପାଳ ଓ ବରଯାତ୍ରୀ ଭାବରେ ଆସିଥିବା ଶାଲ୍ୱ, ଜରାସନ୍ଧ, ଦନ୍ତବକ୍ର ଓ ବିଦୂରଥ ପ୍ରମୁଖ ରାଜାମାନଙ୍କୁ ଅଭ୍ୟର୍ଥନା ଜଣାଇ ପାଛୋଟି ନେଲେ ।

ଏଣେ ସମୟ ଯେତେ ଅତିବାହିତ ହେଉଥାଏ ରାଜନନ୍ଦିନୀ ରୁକ୍ମିଣୀଙ୍କର ମନ କୃଷ୍ଣଙ୍କ ଶୁଭାଗମନର ପ୍ରତୀକ୍ଷାରେ ସେତେ ଉଦ୍‌ବିଗ୍ନ ହେଉଥାଏ । ଦିନ ଯାଇ ରାତି ହେଲା, ଅଥଚ ବାର୍ତ୍ତାବହ ବ୍ରାହ୍ମଣ ସେ ପର୍ଯ୍ୟନ୍ତ ନ ଫେରିବାରୁ ରୁକ୍ମିଣୀ ବିଶେଷ ଚିନ୍ତିତ ହୋଇ ମନେ ମନେ ଭାବିଲେ, 'ହାୟ, ଏହି ରାତି ପାହିଲେ ମୋର ବିବାହ ହେବ; କିନ୍ତୁ ଏ ପର୍ଯ୍ୟନ୍ତ ମୋର ଜୀବନର ସର୍ବସ୍ୱ କମଳନୟନ ଭଗବାନ କୃଷ୍ଣଙ୍କର ଏ ଅବଧି ଦେଖା ନାହିଁ ! ବ୍ରାହ୍ମଣ ମଧ୍ୟ ଏ ପର୍ଯ୍ୟନ୍ତ ଫେରିଲେ ନାହିଁ !! ବାଟରେ କ'ଣ କିଛି ଅଘଟନ ଘଟିଲା ? ମୋଠାରେ କିଛି ନା କିଛି ଦୋଷ ଦେଖି ହୁଏତ ସର୍ବଗୁଣସମ୍ପନ୍ନ ନିର୍ମଳଚିତ୍ତ କୃଷ୍ଣ ମୋତେ ଗ୍ରହଣ କରିବାକୁ ଅସମ୍ମତ ହେଲେ, ସେଥିପାଇଁ ବ୍ରାହ୍ମଣଙ୍କର ଫେରିବାରେ

ବିଳମ୍ବ ଘଟୁଛି ! ଏଥିରେ କୃଷ୍ଣଙ୍କର ଦୋଷ ବା କ'ଣ ? ଏହା ନିଶ୍ଚୟ ମୋର ମନ୍ଦଭାଗ୍ୟ ! ହାୟ, ଭଗବାନ ବ୍ରହ୍ମା, ଶଙ୍କର, ଏପରି କି ଦେବୀ ପାର୍ବତୀ କ'ଣ ମୋ ପ୍ରତି ଶେଷରେ ଅପ୍ରସନ୍ନ ହେଲେ ? ?

ଏହିପରି ଭାବ ପ୍ରତି ମୁହୂର୍ତ୍ତରେ ପ୍ରାଣପ୍ରିୟ କୃଷ୍ଣଙ୍କର ଆବିର୍ଭାବକୁ ପ୍ରତୀକ୍ଷା କରୁଥାନ୍ତି, ଏହି ସମୟରେ ରୁକ୍ମଣୀଙ୍କର ବାମ ଊରୁ, ବାମ ହସ୍ତ, ଓ ବାମ ନେତ୍ର ସ୍ପନ୍ଦିତ ହେଲା ଏବଂ ସେହି ସୁଲକ୍ଷଣକୁ ଶୁଭସୂଚନା ବୋଲି ରୁକ୍ମଣୀ ଭାବିଲେ । ତା'ର କିଛି ସମୟ ପରେ ବ୍ରାହ୍ମଣ ଆସି ରୁକ୍ମଣୀଙ୍କୁ ସାକ୍ଷାତ କଲେ । ବ୍ରାହ୍ମଣଙ୍କର ପ୍ରସନ୍ନ ବଦନ ଦର୍ଶନ କରି ରୁକ୍ମଣୀ ସତେ ଯେପରି ନବଜୀବନ ଲାଭ କଲେ । ବ୍ରାହ୍ମଣଙ୍କଠାରୁ କୃଷ୍ଣଙ୍କର ଆଗମନର ସମ୍ବାଦ ଶୁଣି ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେହି ପରମ ପ୍ରୀତିଦାୟକ ଶୁଭ ସମ୍ବାଦ ପ୍ରଦାନକାରୀ ବ୍ରାହ୍ମଣଙ୍କୁ ରୁକ୍ମଣୀ ପ୍ରଣାମ କରି ନିଜ ହୃଦୟର ଅସୀମ କୃତଜ୍ଞତା ଜ୍ଞାପନ କଲେ ।

ବିଦର୍ଭ ରାଜକନ୍ୟାଙ୍କୁ ହରଣ କରିବାକୁ କୃଷ୍ଣ ଏକାକୀ ବିଦର୍ଭ ଯାତ୍ରା କରିଥିବା କଥା ପରେ ବଳରାମ ଜାଣିବାକୁ ପାଇ, କାଳେ କ'ଣ ବିପଦ ଘଟିପାରେ ବୋଲି ଆଶଙ୍କା କରି ବଳରାମ ସୈନ୍ୟସାମନ୍ତ ଧରି ବିଦର୍ଭ ଅଭିମୁଖେ ଯାତ୍ରା କଲେ । କୃଷ୍ଣ ଓ ବଳରାମଙ୍କର ଆଗମନ ବିଦର୍ଭରେ ଅଛପା ରହିଲା ନାହିଁ । ରାଜକନ୍ୟାଙ୍କ ବିବାହ ଦର୍ଶନ କରିବା ନିମନ୍ତେ କୃଷ୍ଣ ଓ ବଳରାମ ଆଗମନ କରିଅଛନ୍ତି ବୋଲି ଜାଣିବାକୁ ପାଇବା ମାତ୍ରେ ରାଜା ଭୀଷ୍ମକ ସେମାନଙ୍କୁ ଯଥାବିଧି ମର୍ଯ୍ୟାଦା ଓ ଆଦର ସତ୍କାରେ ଅତିଥି ରୂପେ ପାଛୋଟି ନେଲେ । କୃଷ୍ଣଙ୍କର ଆଗମନ ସମ୍ବାଦ ବିଦର୍ଭରାଜ୍ୟରେ ପ୍ରଚାରିତ ହେବାମାତ୍ରେ କୃଷ୍ଣଙ୍କୁ ଦର୍ଶନ କରିବା ନିମନ୍ତେ ରାଜ୍ୟବାସୀମାନଙ୍କ ମନରେ ଅଭୂତପୂର୍ବ ଉତ୍କଣ୍ଠା ପ୍ରକାଶିତ ହେଲା ଏବଂ ସେମାନେ ବହୁସଂଖ୍ୟାରେ ରାଜପ୍ରାସାଦରେ ଆସି ରୁଣ୍ଡ ହେଲେ । ପୁରବାସୀମାନେ କୃଷ୍ଣଙ୍କର ନୟନାଭିରାମ ରୂପ ଦର୍ଶନ କରି କୁହାକୁହି ହେଲେ, 'କୃଷ୍ଣଙ୍କ ସହିତ ରାଜଜେମା ରୁକ୍ମଣୀଙ୍କର ବିବାହ ଅନୁଷ୍ଠିତ ହେଲେ, ଖୁବ୍ ଭଲ ହୁଅନ୍ତା । ପରସ୍ପର ପରସ୍ପରଙ୍କର ଅତ୍ୟନ୍ତ ଯୋଗ୍ୟ । ଆମର ଯଦି ପୂର୍ବ ଜନ୍ମର ସଞ୍ଚିତ କିଛି ପୁଣ୍ୟ ଥାଏ, ସେହି ପୁଣ୍ୟ ବଳରେ ପ୍ରାର୍ଥନା କରୁଛୁ, ଭଗବାନ ନାରାୟଣ ଆମ ପ୍ରତି ପ୍ରସନ୍ନ ହୋଇ

ଆମ ପ୍ରତି ଏହି ଅନୁଗ୍ରହ କରନ୍ତୁ, ଯେପରି କୃଷ୍ଣଙ୍କ ସହିତ ରୁକ୍ମିଣୀଙ୍କର ବିବାହ ଅଚିରେ ଅନୁଷ୍ଠିତ ହୁଏ ।'

ନିର୍ଦ୍ଧାରିତ ସମୟରେ ରାଜଜେମାଙ୍କର ଦେବୀଦର୍ଶନ ନିମନ୍ତେ ରୁକ୍ମିଣୀଙ୍କୁ ନେଇ ଦାସୀ, ସଖୀ, ପରିଚାରିକା, ବ୍ରାହ୍ମଣପତ୍ନୀ, ଗୁଣକୀର୍ତ୍ତନ-କାରୀ ସୂତ, ମାଗଧ, ବନ୍ଦୀ ଓ ବାରାଙ୍ଗନା ପ୍ରମୁଖଙ୍କର ଏକ ଆଡ଼ମ୍ବର-ପୂର୍ଣ୍ଣ ଶୋଭାଯାତ୍ରା ରାଜପ୍ରାସାଦରୁ ବାହାରି ଦେବୀ ପାର୍ବତୀଙ୍କ ମନ୍ଦିର ଅଭିମୁଖେ ଯାତ୍ରାକଲା । ଦେବୀଦର୍ଶନ ଉଦ୍ଦେଶ୍ୟରେ ରୁକ୍ମିଣୀ ଯାଉଥିଲେ ମଧ୍ୟ ତାଙ୍କ ମନ କୃଷ୍ଣଙ୍କ ଚରଣଯୁଗଳରେ ଲାଗିରହିଥିଲା ।

ଦେବୀଙ୍କ ମନ୍ଦିରରେ ଆବଶ୍ୟକୀୟ ପୂଜାପାଠ କରାଗଲା ଏବଂ ରୁକ୍ମିଣୀ ଦେବୀଙ୍କୁ ସଭକ୍ତି ପ୍ରଣାମ କରି କୃଷ୍ଣଙ୍କୁ ନିଜର ପତିରୂପରେ ଲାଭ କରିବାକୁ ନିଜର ଆକୁଳ ପ୍ରାର୍ଥନା ଜଣାଇଲେ । ଦେବୀଦର୍ଶନ ଓ ପୂଜା କାର୍ଯ୍ୟ ଶେଷ ହେବା ପରେ ଶୋଭାଯାତ୍ରା ମଧ୍ୟରେ ରୁକ୍ମିଣୀ ମନ୍ଦିରରୁ ପ୍ରତ୍ୟାଗମନ କଲେ । ଅତ୍ୟୁଜ୍ଜ୍ୱଳକାନ୍ତିବିଶିଷ୍ଟା କୃଶାଙ୍ଗୀ ରୁକ୍ମିଣୀଙ୍କର ରୂପ ଅତ୍ୟନ୍ତ ମନୋହର ଥିଲା । ତାଙ୍କର ନୟନମନଲୋଭା କମନୀୟ ରୂପକୁ ନବଯୌବନର ସ୍ପର୍ଶ ଅତ୍ୟନ୍ତ ରମଣୀୟ କରିଥିଲା । ରୁକ୍ମିଣୀ ଶୋଭାଯାତ୍ରା ମଧ୍ୟରେ ଯେତେବେଳେ ଆସି ରାଜପ୍ରାସାଦ ନିକଟରେ ପହଞ୍ଚିଲେ, ତାଙ୍କର ବକ୍ଷର ଉନ୍ନତ ସ୍ତନଯୁଗଳ, ସ୍ୱର୍ଣ୍ଣମେଖଳାଶୋଭିତ ଦୋଳାୟ-ମାନ ଗୁରୁନିତମ୍ବ, ସ୍ମିତ ହାସ୍ୟ, ବିମ୍ବଫଳ ସଦୃଶ ଈଷତ୍ ଉଜ୍ଜ୍ୱଳ ରକ୍ତାଭ ଓଷ୍ଠାଧର, କୁନ୍ଦକଳିକା ସଦୃଶ ସୁନ୍ଦର ଦନ୍ତପଂକ୍ତି, ସର୍ବୋପରି ମରାଳଗତି ଛନ୍ଦରେ ଧୀରେ ଧୀରେ ଗମନ କରିବାର ଅପୂର୍ବ ଦୃଶ୍ୟ ଦର୍ଶନ କରି ସମବେତ ରାଜନ୍ୟବର୍ଗ, ପୁରବାସୀ, ସମବେତ ସୈନ୍ୟମାନେ ଅପୂର୍ବ କାମବାଣରେ ଅଭିଭୂତ ହୋଇପଡ଼ିଲେ । ସେହି କାମସମ୍ମୋହନ ମଧ୍ୟରେ ସୈନ୍ୟମାନେ ଯେ ଯେଉଁଠି ଥିଲେ ସେହିଠାରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଗଲେ ଏବଂ ସେମାନଙ୍କର ହସ୍ତରୁ ଅସ୍ତ୍ରଶସ୍ତ୍ରାଦି ମନକୁମନ ଖସିପଡ଼ିଲା । ରାଜସଭାରେ କୃଷ୍ଣ ପ୍ରକୃତ ଅଛନ୍ତି କି ନାହିଁ ଜାଣିବା ନିମନ୍ତେ ରୁକ୍ମିଣୀ ନିଜର ବାମକରର ଅଙ୍ଗୁଳି ଅଗ୍ରରେ କପାଳ ଉପରକୁ ଲମ୍ବିଆସିଥିବା ଦୋଳାୟମାନ ଚୂର୍ଣ୍ଣକୁନ୍ତଳକୁ ଅପସାରିତ କରିବାର ଛଳନା କରି ତାହା ମାଧ୍ୟମରେ ସମବେତ ରାଜନ୍ୟବର୍ଗଙ୍କ ଉପରେ ଦୃଷ୍ଟି ବୁଲାଇ

ଆଣିଲେ ଏବଂ ସେହି ସମୟରେ କୃଷ୍ଣଙ୍କ ସହିତ ତାଙ୍କର ଦୃଷ୍ଟିବିନିମୟ ଘଟିଲା । ରୁକ୍ମିଣୀ ସଙ୍ଗେ ସଙ୍ଗେ ନିଜ ଦୃଷ୍ଟିର ଇଙ୍ଗିତରେ 'ମୋତେ ଶୀଘ୍ର ରଥରେ ନେଇ ପଳାୟନ କରନ୍ତୁ' ବୋଲି କୃଷ୍ଣଙ୍କୁ ସୂଚାଇ ଦେଲେ । କୃଷ୍ଣ ତାହା ଜାଣିପାରି କାଳବିଳମ୍ବ ନ କରି ରୁକ୍ମିଣୀଙ୍କୁ ହାତରେ ନେଇ ନିକଟରେ ଥିବା ରଥରେ ବସାଇ ପ୍ରସ୍ଥାନ କଲେ । ବଳରାମ ମଧ୍ୟ କୃଷ୍ଣ ଓ ରୁକ୍ମିଣୀଙ୍କର ନିରାପତ୍ତା ନିମନ୍ତେ ନିଜର ସୈନ୍ୟସାମନ୍ତଙ୍କ ସହିତ କୃଷ୍ଣଙ୍କର ଅନୁଗମନ କଲେ ।

ବୃଦ୍ଧ ବୃଦ୍ଧ ବିବାହ ନିର୍ଦ୍ଦିଷ୍ଟା ରାଜକନ୍ୟାଙ୍କୁ କୃଷ୍ଣଙ୍କର ସେପରି ଅପହରଣ ସମବେତ ଜରାସନ୍ଧପ୍ରମୁଖ ରାଜନ୍ୟବର୍ଗଙ୍କ ପକ୍ଷରେ ଅସହ୍ୟ ହେଲା । ସେମାନଙ୍କ ମଧ୍ୟରୁ କେତେକ ରାଜା କ୍ରୋଧରେ ଗର୍ଜନ କରି କହିଲେ, 'ଆମ ପରି ପ୍ରସିଦ୍ଧ ବୀରଙ୍କ ସମ୍ମୁଖରେ ରାଜଜେମାଙ୍କୁ କୃଷ୍ଣ ହରଣ କରିନେଲା ? ପଶୁରାଜ ସିଂହ ସମ୍ମୁଖରେ ତାହାର ଆହାରକୁ ମୃଗ ହରଣ କରିବା ସିଂହ ପକ୍ଷରେ ଯେପରି ନିନ୍ଦାର ବିଷୟ ସେହିପରି ଆମ୍ଭମାନଙ୍କ ପରି ପ୍ରବଳପ୍ରତାପୀ ତେଜସ୍ୱୀ ବୀର ଓ ରାଜାମାନଙ୍କ ଦୃଷ୍ଟି ସମ୍ମୁଖରେ ଗୋଟାଏ ସାମାନ୍ୟ ଗୋପାଳ ବଦର୍ଭ ରାଜଜେମାଙ୍କୁ ହରଣ କରିନେବା ସେହିପରି ଆମ୍ଭମାନଙ୍କ ପକ୍ଷରେ ଅପମାନଜନକ । ଏହାର ଉପଯୁକ୍ତ ପ୍ରତିବିଧାନ ନ କଲେ ସମଗ୍ର ଜଗତ ଆମର ବୀରତ୍ୱକୁ ଧିକ୍କାର କରିବ । ତେଣୁ କାଳବିଳମ୍ବ ନ କରି କୃଷ୍ଣଙ୍କୁ ଆକ୍ରମଣ କରି ରାଜକନ୍ୟାଙ୍କୁ ଉଦ୍ଧାର କରି ଆଣିବା ହିଁ ଆମ୍ଭମାନଙ୍କର ପ୍ରଧାନ କର୍ତ୍ତବ୍ୟ । ତେଣୁ ଅଯଥାରେ ଆଉ ସମୟ ନଷ୍ଟ କରିବା ଆମ୍ଭମାନଙ୍କ ପକ୍ଷରେ ଉଚିତ୍ ହେବ ନାହିଁ ।

ଏହିପରି କ୍ରୁଦ୍ଧାକ୍ରୁଦ୍ଧ ହୋଇ ସମବେତ ବୀରମାନେ ଜରାସନ୍ଧ-ପ୍ରମୁଖଙ୍କ ନେତୃତ୍ୱରେ ପଳାୟନରତ କୃଷ୍ଣଙ୍କର ଅନୁଧାବନ କଲେ । କୃଷ୍ଣଙ୍କ ସହିତ ସେମାନଙ୍କର ପ୍ରବଳ ଯୁଦ୍ଧ ଅନୁଷ୍ଠିତ ହେଲା । ଆକ୍ରମଣର ତୀବ୍ରତା ଅବଲୋକନ କରି କୋମଳହୃଦୟା ରାଜନନ୍ଦିନୀ ରୁକ୍ମିଣୀ ଭୟ ଓ ହତାଶାରେ ଭାଙ୍ଗିପଡ଼ିଲେ ଏବଂ ଭୟବିହ୍ୱଳ ଚିତ୍ତରେ ପ୍ରାଣବଲ୍ଲଭ କୃଷ୍ଣଙ୍କ ମୁହଁକୁ ଚାହିଁଲେ । ରୁକ୍ମିଣୀଙ୍କୁ ସାନ୍ତ୍ୱନା ଦେବାକୁ ଯାଇ କୃଷ୍ଣ ସହାସ୍ୟ ବଦନରେ କହିଲେ, 'ସୁଲୋଚନେ, ଭୟର କୌଣସି କାରଣ ନାହିଁ । ଆମର ଏହି ଯାଦବ ସୈନ୍ୟମାନଙ୍କର ପରାକ୍ରମ ସମ୍ମୁଖରେ ଆକ୍ରମଣକାରୀ-

ମାନେ ଅତ୍ୟନ୍ତ ତୁଚ୍ଛ । ଯାଦବ ବୀରମାନେ କିପରି ଶତ୍ରୁପକ୍ଷଙ୍କୁ ପରାସ୍ତ କରୁଛନ୍ତି, ତାହା ଦେଖ ! ଭୟ କରନାହିଁ ।'

ରୁକ୍ମିଣୀଙ୍କର ବିସ୍ମୟବିସ୍ଫାରିତ ଦୃଷ୍ଟି ସମ୍ମୁଖରେ ଜରାସନ୍ଧ-ପ୍ରମୁଖ ବୀରମାନେ ଯାଦବ ସୈନ୍ୟଙ୍କ ହସ୍ତରେ ଶୋଚନୀୟ ଭାବରେ ପରାସ୍ତ ହୋଇଗଲେ ଏବଂ ପ୍ରାଣଭୟରେ ଯୁଦ୍ଧକ୍ଷେତ୍ରରୁ ସେମାନେ ପଳାୟନ କଲେ ।

ବରବେଶରେ ଉପବିଷ୍ଟ ହତାଶାଗ୍ରସ୍ତ ବିଷଣ୍ଣ ଶିଶୁପାଳଙ୍କୁ ସମ୍ବୋଧନ କରି ଜରାସନ୍ଧ କହିଲେ, 'ହେ ପୁରୁଷସିଂହ, ଏପରି ବିଷଣ୍ଣ ବଦନରେ ବସିଅଛ କାହିଁକି ? ସବୁ ଈଶ୍ୱରଙ୍କର ଇଚ୍ଛା ! ସୂତ୍ରଧାରୀ ଯାଦୁକରର ଇଙ୍ଗିତରେ କାଷ୍ଠପୁତ୍ତଳିକା ନୃତ୍ୟ କଲାପରି ଈଶ୍ୱରଙ୍କର ଇଚ୍ଛାନୁସାରେ ହିଁ ସମଗ୍ର ଜୀବଜଗତ ପରିଚାଳିତ ହେଉଅଛି ଏବଂ ସେହି ଈଶ୍ୱରଙ୍କ ଇଚ୍ଛାରେ ହିଁ ଜୀବ ସୁଖ ବା ଦୁଃଖ ଲାଭ କରିଥାଏ । ତେଣୁ ସୁଖ ବା ଦୁଃଖରେ ଏପରି ବିହ୍ୱଳ ହୋଇପଡ଼ିବା ଆଦୌ ଉଚିତ ନୁହେଁ । ଏହି ବିବାହ କାର୍ଯ୍ୟରେ ଆମ୍ଭେମାନେ ପରାଜିତ ବୋଲି ତୁମେ ନିଜକୁ ଅପମାନିତ ମନେ କରୁଅଛ କି ? ତ୍ରୟୋବିଂଶତି ଅକ୍ଷୌହିଣୀ ପରିମିତ ସେନାଦ୍ୱାରା ସୁରକ୍ଷିତ ହୋଇ ମଧ୍ୟ ସତର ଥର କୃଷ୍ଣଙ୍କ ହସ୍ତରେ ମୁଁ ପରାଜିତ ହୋଇଅଛି ଏବଂ ତଥାପି କେବେ ଅପମାନରେ ଭାଙ୍ଗିପଡ଼ି ନାହିଁ ! କାରଣ ସବୁ ହିଁ ଭଗବାନଙ୍କର ଇଚ୍ଛା, ମନୁଷ୍ୟ ବା କ'ଣ କରିପାରେ ? ଆଜି ଆମେ ପରାଜିତ ହୋଇଛେଁ ସତ, ମାତ୍ର କାଲି ଭଗବାନ ଆମର ଅନୁକୂଳ ହେଲେ ଆମେ ଶତ୍ରୁକୁ ପରାଜିତ କରି ପ୍ରତିଶୋଧ ନେଇ ପାରିବୁ । ତେଣୁ ପରାଜୟର ଗ୍ଲାନିରେ ଭାଙ୍ଗି ନ ପଡ଼ି, ଧୈର୍ଯ୍ୟଧରି ଅନୁକୂଳ ସମୟର ଅପେକ୍ଷା କର ।'

ଜରାସନ୍ଧପ୍ରମୁଖଙ୍କ ସାନ୍ତ୍ୱନାରେ କିନ୍ତୁ କୃଷ୍ଣ-ବିଦ୍ୱେଷୀ ରୁକ୍ମି ସନ୍ତୁଷ୍ଟ ହେଲେ ନାହିଁ । ଯୁଦ୍ଧରେ କୃଷ୍ଣଙ୍କୁ ପରାସ୍ତ କରି ଭଗିନୀ ରୁକ୍ମିଣୀଙ୍କୁ ଉଦ୍ଧାର କରିବାକୁ ସେ ସ୍ଥିରକଲେ । ସଙ୍ଗେ ସଙ୍ଗେ ସୈନ୍ୟମାନଙ୍କୁ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ କରି ବୀରମାନଙ୍କ ସମ୍ମୁଖରେ ପ୍ରତିଜ୍ଞା କଲେ, 'ହେ ବୀର-ମାନେ, ମୁଁ ବର୍ତ୍ତମାନ କୃଷ୍ଣ ବିରୁଦ୍ଧରେ ଯୁଦ୍ଧ କରିବାକୁ ଯାଉଛି । ତୁମ୍ଭ-

'ମାନଙ୍କ ସମ୍ମୁଖରେ ମୁଁ ପ୍ରତିଜ୍ଞା କରୁଛି, କୃଷ୍ଣଙ୍କୁ ବିନାଶ ଓ ରୁକ୍ମିଣୀଙ୍କୁ ଉଦ୍ଧାର ନ କରି ମୁଁ ଏହି କୁଣ୍ଡିନପୁରୀକୁ ଫେରିବି ନାହିଁ ।'

ରୁକ୍ମୀଙ୍କର କୃଷ୍ଣଙ୍କ ସହିତ ପଥମଧ୍ୟରେ ତୁମୂଳ ସଂଗ୍ରାମ ଅନୁଷ୍ଠିତ ହେଲା । କିନ୍ତୁ ଯୁଦ୍ଧରେ ରୁକ୍ମୀଙ୍କର ସମସ୍ତ ସୈନ୍ୟଙ୍କୁ କୃଷ୍ଣ ବିନାଶ କରି ରୁକ୍ମୀଙ୍କୁ ସଂହାର କରିବାକୁ ଗଲାବେଳେ ରୁକ୍ମିଣୀ ଭ୍ରାତାର ପ୍ରାଣରକ୍ଷା ନିମନ୍ତେ କାତର ଅନୁରୋଧ କରିବାରୁ ରୁକ୍ମୀ ହତ୍ୟାରୁ କୃଷ୍ଣ ନିଜକୁ ନିବୃତ୍ତ କରିଥିଲେ; ତେବେ ରୁକ୍ମୀଙ୍କୁ ସମ୍ପୂର୍ଣ୍ଣ ନିଣ୍ଡା ଓ ତାଙ୍କର ହସ୍ତପଦକୁ ବନ୍ଧନ କରି ସେହି ଯୁଦ୍ଧଭୂମିରେ ତାଙ୍କୁ ପରିତ୍ୟାଗ କରି ରୁକ୍ମିଣୀଙ୍କ ସହିତ କୃଷ୍ଣ ଦ୍ୱାରିକାକୁ ଫେରିଆସିଲେ ।

ନିଜର ପ୍ରତିଜ୍ଞାନୁସାରେ ରୁକ୍ମୀଙ୍କ ପକ୍ଷରେ ରାଜଧାନୀ କୁଣ୍ଡିନପୁରକୁ ଫେରିବା ସମ୍ମାନଜନକ ନ ହେବାରୁ, ସେହି ଯୁଦ୍ଧକ୍ଷେତ୍ରରେ ଏକ ବାସଭବନ ନିର୍ମାଣ କରି ରୁକ୍ମୀ ବାସ କରିବାକୁ ଲାଗିଲେ ।

ଯଥାସମୟରେ ଦ୍ୱାରିକାରେ କୃଷ୍ଣଙ୍କ ସହିତ ରୁକ୍ମିଣୀଙ୍କର ବିବାହ ଅତ୍ୟନ୍ତ ଆଡ଼ମ୍ବରପୂର୍ଣ୍ଣ ପରିବେଶ ମଧ୍ୟରେ ଅନୁଷ୍ଠିତ ହୋଇଥିଲା ।

ରୁକ୍ମିଣୀଙ୍କ ଛଡ଼ା ସତ୍ରାଜିତଙ୍କର କନ୍ୟା ସତ୍ୟଭାମା, ଜାମ୍ବବାନଙ୍କର କନ୍ୟା ଜାମ୍ବବତୀ, ଦିବାକରଙ୍କର କନ୍ୟା କାଳିନ୍ଦୀ, ଅବନ୍ତୀର ରାଜନନ୍ଦିନୀ ମିତ୍ରବିନ୍ଦା, କୋଶଳରାଜ ନଗ୍ନଜିତଙ୍କ କନ୍ୟା ସତ୍ୟା, ଶ୍ରୁତକୀର୍ତ୍ତିଙ୍କ କନ୍ୟା ଭଦ୍ରା, ମଦ୍ରରାଜାଙ୍କର କନ୍ୟା ଲକ୍ଷଣା ଏବଂ ନରକାସୁର ଦ୍ୱାରା ଅପହୃତ ଓ ଅବରୁଦ୍ଧ ଷୋଳ ହଜାର ଏକଶହ କନ୍ୟାଙ୍କୁ ମଧ୍ୟ କୃଷ୍ଣ ବିବାହ କରିଥିଲେ ।

ଦ୍ୱାରିକାରେ ଅଖିଳ ଜଗତର ସମସ୍ତ ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟ ପରିଦୃଷ୍ଟ ହେଉଥିଲା । କୃଷ୍ଣଙ୍କୁ ପତିରୂପରେ ଲାଭକରି ଓ ତାଙ୍କର ସଙ୍ଗସୁଖ ମଧ୍ୟରେ ସେହି ପରମାସୁନ୍ଦରୀ ନବଯୁବତୀମାନେ ପରମ ଆନନ୍ଦରେ କାଳାତିପାତ କରୁଥିଲେ । ସେମାନଙ୍କର ସେହି ପରମ ସୌଭାଗ୍ୟପୂର୍ଣ୍ଣ ମୁହୂର୍ତ୍ତ ଗୁଡ଼ିକର ବାସ୍ତବିକ ଦୃଷ୍ଟାନ୍ତର ନ ଥିଲା ।

ଦେବର୍ଷି ନାରଦ ଯେତେବେଳେ ଶୁଣିବାକୁ ପାଇଲେ ଯେ ନରକାସୁରକୁ ସଂହାର କରି ସେହି ଅସୁର ଦ୍ୱାରା ଅପହୃତା ଷୋଳ ହଜାର ଏକଶହ କନ୍ୟାଙ୍କୁ କୃଷ୍ଣ ଉଦ୍ଧାର କରିସାରିବା ପରେ ସେହି କନ୍ୟାମାନେ କୃଷ୍ଣଙ୍କୁ ପତି ରୂପରେ ବରଣ କରିବାକୁ ପ୍ରାର୍ଥନା କରିବାରୁ କୃଷ୍ଣ ମଧ୍ୟ ସେମାନଙ୍କୁ ବିବାହ କରି ଷୋଳ ହଜାର ଏକଶହ ଆଠଜଣ ପତ୍ନୀଙ୍କ ଗହଣରେ ଦାମ୍ପତ୍ୟ ଜୀବନ ଅତିବାହିତ କରୁଅଛନ୍ତି, ସେତେବେଳେ ତାଙ୍କର କୌତୂହଳର ସୀମା ରହିଲା ନାହିଁ । ଗୋଟିଏ ବ୍ୟକ୍ତିଙ୍କ ପକ୍ଷରେ ଏକାବେଳକେ ଏପରି ବିପୁଳ ସଂଖ୍ୟକ ରମଣୀଙ୍କ ସହିତ କିପରି ଦାମ୍ପତ୍ୟ ଜୀବନ ଯାପନ କରୁଅଛନ୍ତି, ତାହା ସ୍ୱଚକ୍ଷୁରେ ଦେଖିବା ନିମନ୍ତେ ଦିନେ ଦେବର୍ଷି ନାରଦ ଦ୍ୱାରକାକୁ ଆଗମନ କଲେ ।

ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ଦ୍ୱାରକା ଅତୁଳନୀୟ ଶୋଭାର ଅଧିକାରିଣୀ ଥିଲା । କୃଷ୍ଣଙ୍କ ପ୍ରତ୍ୟେକ ପତ୍ନୀଙ୍କ ନିମନ୍ତେ ଦ୍ୱାରକାରେ ସ୍ୱତନ୍ତ୍ର ବାସଭବନମାନ ନିର୍ମିତ ହୋଇଥିଲା । ଦେବର୍ଷି ନାରଦ ଦ୍ୱାରକାରେ ପହଞ୍ଚି ନଗରର ଶୋଭା ଦର୍ଶନ କରୁ କରୁ ରୁକ୍ମିଣୀଙ୍କ ଭବନରେ ଯାଇ ପଦାର୍ପଣ କଲେ । ସେତେବେଳେ କୃଷ୍ଣ ରୁକ୍ମିଣୀଙ୍କ ଭବନରେ ଅବସ୍ଥାନ କରୁଥିଲେ । ନାରଦଙ୍କୁ ଦେଖିବା ମାତ୍ରେ ବସିଥିବା ପଲଙ୍କରୁ ଉଠିଆସି ନାରଦଙ୍କ ଚରଣରେ ପ୍ରଣାମ ଜଣାଇ ଭବନ ମଧ୍ୟକୁ ସ୍ୱାଗତ କରିନେଲେ । ଅଖିଳ ଜଗତର ସର୍ବଶ୍ରେଷ୍ଠ ପୂଜ୍ୟ ଓ ଭକ୍ତମାନଙ୍କର ଏକମାତ୍ର ଗତି, ଯାହାଙ୍କର ଚରଣରୁ ପବିତ୍ର ଗଙ୍ଗା ନଦୀ ବିନିର୍ଗତା, ସେହି ଭଗବାନ କୃଷ୍ଣ ଦେବର୍ଷି ନାରଦଙ୍କ ଚରଣକୁ ଧୌତ କରି ସେହି ଚରଣୋଦକକୁ ନିଜର ମସ୍ତକରେ ଧାରଣ କରି ଶାସ୍ତ୍ରୋକ୍ତ ବିଧି ଅନୁସାରେ ନାରଦଙ୍କୁ ପ୍ରଣାମ କରି କହିଲେ, 'ପ୍ରଭୁ, ଆପଣଙ୍କ ସନ୍ତୋଷ ବିଧାନ ନିମନ୍ତେ ମୋର ବର୍ତ୍ତମାନ କରଣୀୟ କ'ଣ, ଦୟାକରି ପ୍ରକାଶ କରନ୍ତୁ ।'

କୃଷ୍ଣଙ୍କ କଥା ଶୁଣି ଦେବର୍ଷି ନାରଦ ବିସ୍ମିତ ହୋଇ କହିଲେ, 'ପ୍ରଭୁ, ଆପଣ ଅଖିଳ ଜଗତର ଅଧିପତି । ଭକ୍ତମାନଙ୍କୁ ପାଳନ କରିବା ଓ ଦୁଷ୍ଟମାନଙ୍କୁ ଦଳନ କରିବା ଆପଣଙ୍କର କାର୍ଯ୍ୟ । ଜଗତର କଲ୍ୟାଣ ସାଧନ ନିମନ୍ତେ ଆପଣ ଇଚ୍ଛାକରି ଏହି ଧରାପୃଷ୍ଠରେ ଅବତୀର୍ଣ୍ଣ

ହୋଇଅଛନ୍ତି । ମୋର ପରମ ସୌଭାଗ୍ୟ ଯେ ଆପଣଙ୍କ ଚରଣକମଳକୁ ଆଜି ଦର୍ଶନ କଲି । ଭବସାଗରରୁ ଉଦ୍ଧାର ଲାଭ କରିବା ନିମନ୍ତେ ଆପଣଙ୍କର ଏହି ଚରଣଯୁଗଳ ହିଁ ଜୀବଜଗତର ସର୍ବଶ୍ରେଷ୍ଠ ଅବଲମ୍ବନ । ମୋ ପ୍ରତି ଆପଣ ଏହି ଅନୁଗ୍ରହ ପ୍ରକାଶ କରନ୍ତୁ ଯେପରି କି ଆପଣଙ୍କର ଏହି ପବିତ୍ର ଚରଣଯୁଗଳକୁ ନିରନ୍ତର ଧ୍ୟାନ କରିବାକୁ ମୁଁ ସମର୍ଥ ହୁଏ ।'

ଏହା କହି କୃଷ୍ଣଙ୍କଠାରୁ ଦେବର୍ଷି ନାରଦ ବିଦାୟ ନେଇ କୃଷ୍ଣଙ୍କର ଅନ୍ୟତମା ପତ୍ନୀ ସତ୍ୟଭାମାଙ୍କ ଭବନକୁ ଗଲେ । ସତ୍ୟଭାମାଙ୍କ ଭବନ ମଧ୍ୟରେ ପ୍ରବେଶ କରିବା ମାତ୍ରେ ଦେବର୍ଷି ଦେଖିଲେ ଯେ ପତ୍ନୀଙ୍କ ସହିତ କୃଷ୍ଣ ବସି ଅକ୍ଷକ୍ରୀଡ଼ା କରୁଅଛନ୍ତି । ନାରଦଙ୍କୁ ଦେଖିବା ମାତ୍ରେ କୃଷ୍ଣ ଖେଳରୁ ଉଠିଆସି ଦେବର୍ଷିଙ୍କୁ ଯଥାବିଧି ସ୍ୱାଗତ ଜଣାଇଲେ ଏବଂ ନାରଦଙ୍କୁ ସମ୍ବୋଧନ କରି କହିଲେ, 'ଦେବର୍ଷି, ଆପଣ ଏଠାକୁ କେତେବେଳେ ଆଗମନ କଲେ ? ଆଗମନର ଉଦ୍ଦେଶ୍ୟ ଦୟାକରି ପ୍ରକାଶ କରନ୍ତୁ । ଆପଣ ମହାମନା, ଆପଣଙ୍କର ତୃପ୍ତି ବିଧାନ ନିମନ୍ତେ, ମୁଁ କି ସେବା ବା କରିପାରିବି । ତଥାପି ଆପଣଙ୍କର ଆଗମନର ଅଭିପ୍ରାୟ ପ୍ରକାଶ କରି ମୋତେ ଅନୁଗୃହୀତ କରନ୍ତୁ ।'

କୃଷ୍ଣଙ୍କୁ ସେଠାରେ ଦେଖି ଓ ତାଙ୍କ ମୁଖରୁ ଏପରି କଥା ଶୁଣି ନାରଦଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେହି ଅଦ୍‌ଭୁତ ଘଟଣା ତାଙ୍କୁ ନିର୍ବାକ୍ କରିଦେଲା । ସେ କିଛି ନ କହି ନୀରବରେ କୃଷ୍ଣଙ୍କ ଅନ୍ୟ ପତ୍ନୀଙ୍କ ଗୃହକୁ ଯାତ୍ରାକଲେ । ପରମ ଆଶ୍ଚର୍ଯ୍ୟର କଥା, ସେଠାରେ କୃଷ୍ଣଙ୍କୁ ଶିଶୁମାନଙ୍କ ସହିତ କ୍ରୀଡ଼ା କରୁଥିବାର ନାରଦ ଦେଖିଲେ । ସେଠାରୁ ଅନ୍ୟ ପତ୍ନୀଙ୍କ ଭବନକୁ ଯାଇ ସେଠାରେ କୃଷ୍ଣଙ୍କୁ ସ୍ନାନ କରିବାକୁ ଯାଉଥିବାର ଦେଖିଲେ । ଏହିପରି ଭାବରେ ପ୍ରତ୍ୟେକ କୃଷ୍ଣ-ପତ୍ନୀଙ୍କ ଭବନରେ କୃଷ୍ଣଙ୍କୁ ଅବସ୍ଥାନ କରୁଥିବାର ଦେଖିଲେ । କେଉଁଠି କୃଷ୍ଣ ଭୋଜନ କରୁଥାନ୍ତି ତ କେଉଁଠାରେ ହୋମାଦି ପୂଜା ସମ୍ପାଦନ କରୁଥାନ୍ତି, କେଉଁଠାରେ ବ୍ରାହ୍ମଣମାନଙ୍କୁ ଭୋଜନ କରାଉ-ଥାନ୍ତି ତ କେଉଁଠାରେ ପତ୍ନୀଙ୍କ ସହିତ ହାସ୍ୟକୌତୁକରେ ବ୍ୟସ୍ତ ଥାଆନ୍ତି । କୃଷ୍ଣଙ୍କୁ ଏକ ସମୟରେ ବହୁ ଶରୀର ଧାରଣ କରି ଏକାଦିକ୍ରମେ

ବିବିଧ କାର୍ଯ୍ୟ ସମ୍ପାଦନ କରୁଥିବାର ଦର୍ଶନ କରି ଦେବର୍ଷି ନାରଦଙ୍କର ଆଶ୍ଚର୍ଯ୍ୟ ଓ ଆନନ୍ଦର ସୀମା ରହିଲା ନାହିଁ ।

ମାନବଲୀଳା ପ୍ରକାଶ କରିବା ନିମନ୍ତେ ଧରାପୃଷ୍ଠରେ ଅବତୀର୍ଣ୍ଣ ଭଗବାନ କୃଷ୍ଣଙ୍କର ଯୋଗମାୟାଶ୍ରିତ ଅଚିନ୍ତ୍ୟ ଶକ୍ତିର ଅନିର୍ବଚନୀୟ ପରିପ୍ରକାଶ ଦର୍ଶନ କରି ପୁଲକିତ ଚିତ୍ତରେ ନାରଦ କୃଷ୍ଣଙ୍କୁ ସମ୍ବୋଧନ କରି କହିଲେ, 'ହେ ଯୋଗେଶ୍ୱର, ବ୍ରହ୍ମାଦି ଦେବତା ଓ ଯୋଗୀମାନଙ୍କ ପକ୍ଷରେ ଯାହାଙ୍କୁ ଦର୍ଶନ କରିବା ସମ୍ଭବ ହୁଏ ନାହିଁ, ଆଜି ଆପଣଙ୍କର ଅନୁଗ୍ରହରୁ ଆପଣଙ୍କର ସେହି ଯୋଗ-ଐଶ୍ୱର୍ଯ୍ୟସମ୍ପନ୍ନ ଅଚିନ୍ତ୍ୟନୀୟ ସ୍ୱରୂପକୁ ସନ୍ଦର୍ଶନ କରିବାର ସୌଭାଗ୍ୟ ଲାଭକଲି, ଏହା ମୋ ପକ୍ଷରେ ପରମ ସ୍ମରଣୀୟ ବିଷୟ । ହେ ଦେବଦେବ, ଆପଣଙ୍କର ପବିତ୍ର ଲୀଳାଗାନ କରି କରି ମୁଁ ଅଖିଳ ବ୍ରହ୍ମାଣ୍ଡରେ ସଦା ବିଚରଣ କରେ, ମୋ ପ୍ରତି ଏହି ଅନୁଗ୍ରହ ପ୍ରକାଶ କରନ୍ତୁ ।'

ଦେବର୍ଷିଙ୍କ କଥା ଶ୍ରବଣ କରି କୃଷ୍ଣ କହିଲେ, 'ଦେବର୍ଷି, ମୁଁ ଧର୍ମର ଉପଦେଷ୍ଟା, ପାଳନକର୍ତ୍ତା ତଥା ଧର୍ମକାର୍ଯ୍ୟର ଅନୁମୋଦନକାରୀ । ସଂସାରରେ ଧର୍ମ ଓ ଧର୍ମାନୁଷ୍ଠାନ ସମ୍ପର୍କରେ ଉପଯୁକ୍ତ ଶିକ୍ଷା ପ୍ରଦାନ କରିବା ଉଦ୍ଦେଶ୍ୟରେ ମୁଁ ଏପରି ଲୀଳା ପ୍ରକାଶ କରିଅଛି । ବାବା ନାରଦ, ତେଣୁ ମୋର ଯୋଗଶକ୍ତିର ଏହି ପ୍ରଭାବ ଦର୍ଶନ କରି ବିସ୍ମିତ ବା ମୋହିତ ହୋଇଯାଅ ନାହିଁ ।'

ଭଗବାନ କୃଷ୍ଣ ଅନନ୍ତ ଶକ୍ତିର ଅଧିକାରୀ । ଭଗବାନଙ୍କର ସେହି ଅପ୍ରମେୟ ଶକ୍ତିର ଅନିର୍ବଚନୀୟ ରୂପକୁ ବାରମ୍ବାର ଦେଖି ଦେବର୍ଷି ନାରଦ ବାସ୍ତବିକ ଅଭିଭୂତ ହୋଇପଡ଼ିଥିଲେ । ଜଗତର କଲ୍ୟାଣ ସାଧନ ନିମନ୍ତେ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ରୂପରେ ଅବତାର ଗ୍ରହଣ କରୁଥିବା ପରାତ୍ପର ଭଗବାନ ନାରାୟଣଙ୍କୁ କୃଷ୍ଣ ନାମ ଧରି ମନୁଷ୍ୟ ରୂପରେ ଆବିର୍ଭୂତ ହୋଇ ଏହିପରି ଅନିର୍ବଚନୀୟ ଲୀଳା ପ୍ରକାଶ କରୁଥିବା ଦର୍ଶନକରି ପରମପ୍ରୀତ ମନରେ ଦେବର୍ଷି ନାରଦ କୃଷ୍ଣଙ୍କୁ ସ୍ମରଣ କରି କରି ଦ୍ୱାରକାରୁ ବିଦାୟ ନେଇଥିଲେ ।

## ଜରାସନ୍ଧ ଓ ଶିଶୁପାଳ ଉଦ୍ଧାର

ଯେଉଁ ଲକ୍ଷ୍ୟ ସାଧନ ନିମନ୍ତେ ବଳରାମଙ୍କ ସହିତ କୃଷ୍ଣ ଧରା-ଧାମରେ ଅବତାର ଗ୍ରହଣ କରିଥିଲେ, ତା' ମଧ୍ୟରେ ଦୁଷ୍ଟମାନଙ୍କୁ ଶାସନ ଓ ସଂହାର କରିବା ଥିଲା ଅନ୍ୟତମ । କଂସ ଓ ତାର ଦୁଷ୍ଟ ଅନୁଚରମାନଙ୍କୁ ସଂହାର କରିବା ଦ୍ୱାରା ସେହି ଗୁରୁଦାୟିତ୍ୱ ପାଳନର ଆରମ୍ଭ ହୋଇଥିଲା ମାତ୍ର । ପରେ କୃଷ୍ଣ ଓ ବଳରାମ ଲୋକମାନଙ୍କ ଉପରେ ଅଯଥାରେ ଅତ୍ୟାଚାର କରୁଥିବା ଯେଉଁ ଅଧର୍ମନିରତ, ବଳଦର୍ପୀ ରାଜା ଓ ବୀରଙ୍କୁ ସଂହାର କରିଥିଲେ; ସେମାନଙ୍କ ମଧ୍ୟରେ ଶତଧନ୍ୱା ରୁକ୍ମୀ, ପୌଣ୍ଡ୍ରକ, କାଶିରାଜା, ଦ୍ୱିବିଦ, ଶାଲ୍ୱ, ଦନ୍ତବକ୍ର, ବିଦୁରଥ, ବଲ୍ୱଳ ପ୍ରମୁଖ ଅନ୍ୟତମ । କୃଷ୍ଣବିଦ୍ୱେଷୀ ଭାବରେ ଶିଶୁପାଳ ଓ ଜରାସନ୍ଧ ବେଶ୍ ପରିଚିତ ଥିଲେ, ରୁକ୍ମିଣୀଙ୍କୁ ବିବାହ କରିବାକୁ ଯାଇ କୃଷ୍ଣଙ୍କ ଚକ୍ରାନ୍ତରେ ବ୍ୟର୍ଥମନୋରଥ ହେବାରୁ କୃଷ୍ଣଙ୍କ ପ୍ରତି ଶିଶୁପାଳ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ରହିଥିଲା । ଶିଶୁପାଳର ବନ୍ଧୁ ଜରାସନ୍ଧ ନିଜର ଜାମାତା କଂସର ଅକାଳ ମୃତ୍ୟୁର ପ୍ରତିଶୋଧ ନେବା ନିମନ୍ତେ ବହୁବାର ମଥୁରା ଆକ୍ରମଣ କରିଥିଲା; ହେଲେ କୃଷ୍ଣଙ୍କୁ ପରାଭୂତ କରି-ପାରି ନ ଥିଲା । କୃଷ୍ଣ ଚାହିଁଥିଲେ ବହୁ ପୂର୍ବରୁ ଜରାସନ୍ଧକୁ ସଂହାର କରି ପାରିଥାନ୍ତେ; କିନ୍ତୁ ପୃଥିବୀର ଭାର ଲାଘବ କରିବା ନିମନ୍ତେ ବାରମ୍ବାର ଆକ୍ରମଣେ ଦ୍ୟତ ଜରାସନ୍ଧକୁ ସେ ଛାଡ଼ି ଦେଇଥିଲେ । ପରେ ଯେତେବେଳେ କୃଷ୍ଣ ଜାଣିବାକୁ ପାଇଲେ ଯେ ଜରାସନ୍ଧ ବଳପୂର୍ବକ ଦୁଇ ଅୟୁତ ସଂଖ୍ୟକ ରାଜାଙ୍କୁ ନିଜର ଗିରିବ୍ରଜ ନାମକ ଏକ ଦୁର୍ଗରେ ବନ୍ଦୀ କରି ରଖିଛି ଏବଂ ଏକ ଯଜ୍ଞ ଅନୁଷ୍ଠାନ କରି ସେହି ଯଜ୍ଞରେ ସେମାନଙ୍କୁ ସେ ବଳିଦେବ, ସେତେବେଳେ ଜରାସନ୍ଧକୁ ସଂହାର କରିବା ନିମନ୍ତେ କୃଷ୍ଣ ମନେ ମନେ ସ୍ଥିରକଲେ । ଏହି ସମୟରେ ପାଣ୍ଡୁପୁତ୍ର ଯୁଧିଷ୍ଠିର ରାଜସୂୟ ଯଜ୍ଞ ଅନୁଷ୍ଠାନ କରିବା ନିମନ୍ତେ ଇଚ୍ଛା କରି କୃଷ୍ଣଙ୍କର ପରାମର୍ଶ ଲୋଡ଼ିବାରୁ, ଯଜ୍ଞ ଅନୁଷ୍ଠାନ କରିବା ପୂର୍ବରୁ ପ୍ରଥମେ ଯୁଧିଷ୍ଠିରଙ୍କର ବଶ୍ୟତା ସ୍ୱୀକାର କରୁ

ନଥିବା ରାଜାମାନଙ୍କୁ ସଂହାର ବା ପରାସ୍ତ କରିବା ଉଚିତ ବୋଲି କୃଷ୍ଣ ପରାମର୍ଶ ଦେଲେ । କୃଷ୍ଣଙ୍କ ପରାମର୍ଶ ଅନୁସାରେ ପାଣ୍ଡବମାନେ ଦିଗ୍‌ବିଜୟରେ ବାହାରି ଜରାସନ୍ଧ ବ୍ୟତୀତ ପ୍ରାୟ ସମସ୍ତ ରାଜାଙ୍କୁ ପରାସ୍ତ, ଅଧୀନସ୍ଥ ବା ନିହତ କଲେ । ଦୁର୍ଦ୍ଧାନ୍ତ ଜରାସନ୍ଧକୁ କିପରି ମୁକାବିଲା କରିବାକୁ ହେବ ସେ ସମ୍ପର୍କରେ ପାଣ୍ଡବମାନେ ପୁନର୍ବାର କୃଷ୍ଣଙ୍କର ପରାମର୍ଶ ଲୋଡ଼ିବାରୁ କୃଷ୍ଣ ଏକ ଉପାୟ ପାଞ୍ଚିଲେ ଏବଂ ତଦନୁସାରେ କୃଷ୍ଣ, ଭୀମ ଓ ଅର୍ଜୁନ ବ୍ରାହ୍ମଣର ଛଦ୍ମବେଶରେ ଜରାସନ୍ଧ ନିକଟକୁ ଯିବାକୁ ସ୍ଥିରକଲେ ।

ମଗଧରାଜ ଜରାସନ୍ଧଙ୍କର ରାଜଧାନୀ ଗିରିବ୍ରଜରେ ପ୍ରତିଷ୍ଠିତ ଥିଲା । ଜରାସନ୍ଧ ଅତ୍ୟନ୍ତ ବ୍ରାହ୍ମଣଭକ୍ତ ଥିଲେ ଏବଂ ଗୃହସ୍ଥଧର୍ମକୁ ନିଷ୍ଠାର ସହିତ ପାଳନ କରୁଥିଲେ । ବ୍ରାହ୍ମଣସୁଲଭ ଛଦ୍ମବେଶ ଧାରଣ କରି କୃଷ୍ଣପ୍ରମୁଖ ତିନିଜଣ କ୍ଷତ୍ରିୟ ଜରାସନ୍ଧଙ୍କ ଗୃହରେ ଅତିଥି ହେବାରୁ, ଜରାସନ୍ଧ ସେମାନଙ୍କର ଭବ୍ୟ ସତ୍କାର କରି ପାଦ୍ୟାର୍ଘ୍ୟ ନେବା ନିମନ୍ତେ ଆଗେଇ ଆସିଲେ ।

ଜରାସନ୍ଧଙ୍କୁ ଦେଖି କୃଷ୍ଣ କହିଲେ, 'ରାଜା, ଆପଣଙ୍କର ମଙ୍ଗଳ ହେଉ । ଆମେ ତିନିଜଣ ଆପଣଙ୍କର ଅତିଥି ଏବଂ ବହୁ ଦୂରରୁ ଆମେ ଏକ ବିଶେଷ କାର୍ଯ୍ୟ ସାଧନ ନିମନ୍ତେ ଏଠାକୁ ଆସିଛୁ । ଅତିଥିଙ୍କର ଅଭୀଷ୍ଟ ପୂର୍ତ୍ତି କଲେ ଗୃହସ୍ଥର ଧର୍ମ ସାର୍ଥକ ହୁଏ ଏବଂ ସେ ଅଶେଷ ଯଶର ଅଧିକାରୀ ହୁଏ; ଆପଣ ଆମକୁ ନିରାଶ କରିବେ ନାହିଁ ବୋଲି ଆମର ବିଶ୍ୱାସ ।

ଜରାସନ୍ଧ ଅତ୍ୟନ୍ତ ବିଚକ୍ଷଣ ଥିଲେ । କୃଷ୍ଣ ପ୍ରମୁଖଙ୍କର କଥା, ଚାଲିଚଳନ ଏବଂ ଶରୀରର ଆକୃତି, ବିଶେଷ କରି ସେମାନଙ୍କର ଶରୀରରେ ସ୍ପଷ୍ଟ ବାରି ହୋଇପଡୁଥିବା ଶସ୍ତ୍ରାଘାତର ଚିହ୍ନମାନରୁ ସେମାନଙ୍କୁ କ୍ଷତ୍ରିୟ ବୋଲି ଜରାସନ୍ଧ ଜାଣିପାରିଲେ । ଜରାସନ୍ଧ ମନେ ମନେ ଭାବିଲେ, 'ଏମାନଙ୍କୁ ମୁଁ ପୂର୍ବେ କୌଣସିଠାରେ ଦେଖିଛି ପରି ଜଣାପଡ଼ୁଛି । ଏମାନେ କ'ଣ ମୋତେ ଭୟ କରି କ୍ଷତ୍ରିୟ ହୋଇ ମଧ୍ୟ ଏପରି ବ୍ରାହ୍ମଣ ବେଶ ଧାରଣ କରିଅଛନ୍ତି । ଯେତେବେଳେ ଏମାନଙ୍କୁ ମୁଁ ଅତିଥି ଭାବରେ ଗ୍ରହଣ କରିସାରିଛି, ସେମାନଙ୍କର ଇଚ୍ଛା ମୁଁ ଅକୁଣ୍ଠିତ

ଚିତ୍ତରେ ଅବଶ୍ୟ ପୂରଣ କରିବି । ଭଗବାନ ବିଷ୍ଣୁ ଏହି ବ୍ରାହ୍ମଣ ବେଶ ଧାରଣ କରି ରାଜା ବଳିଙ୍କର ରାଜ୍ୟ ଐଶ୍ୱର୍ଯ୍ୟ ସବୁ ହରଣ କରି ନେଇଥିଲେ; କିନ୍ତୁ ସେହି ଦାନ ପ୍ରଦାନ କରି ବଳି ରାଜାର ଯଶ ଆଜି ସର୍ବଜନବିଦିତ ଓ ସ୍ମରଣୀୟ ହୋଇ ରହିଛି । ତେଣୁ ଛଦ୍ମବେଶୀଙ୍କୁ ମୁଁ ଭୟ କରିବି କାହିଁକି ? ମୋର ଏହି ଶରୀର ତ ଦିନେ ନା ଦିନେ କ୍ଷୟ-ପ୍ରାପ୍ତ ହେବ; ତେଣୁ ବିନାଶଶୀଳ ଏହି ଶରୀରରେ ଯଦି ଚିରସ୍ଥାୟୀ ଯଶ ଲାଭ କରିବାର ସମ୍ଭାବନା ଥାଏ ତେବେ ସେଥିପ୍ରତି ଆଶାୟୀ ହେବି ନାହିଁ କାହିଁକି ?' ଏହିପରି ଭାବରେ ଜରାସନ୍ଧ ବହୁକଥା ଭାବିଲେ ।

ସେହି ଛଦ୍ମବେଶୀ ଅତିଥିମାନଙ୍କୁ ସମ୍ବୋଧନ କରି ଜରାସନ୍ଧ କହିଲେ, 'ହେ ବ୍ରାହ୍ମଣମାନେ, ଆପଣଙ୍କର ଆଗମନର ଅଭିପ୍ରାୟ ଦୟା କରି ପ୍ରକାଶ କରନ୍ତୁ । ମୁଁ ତାହା ଅନ୍ତରରେ ପୂରଣ କରିବି । ଏପରିକି ପ୍ରୟୋଜନ ପଡ଼ିଲେ ମୋର ପ୍ରାଣର ବିନିମୟରେ ମଧ୍ୟ ମୁଁ ଆପଣ-ମାନଙ୍କର ସନ୍ତୋଷ ବିଧାନ କରିବାକୁ ପ୍ରସ୍ତୁତ ।' ତେଣୁ ଆପଣଙ୍କ ଇଚ୍ଛାନୁଯାୟୀ ବସ୍ତୁ ମୋତେ ମାଗନ୍ତୁ ।'

ଜରାସନ୍ଧଙ୍କର ସେହି ଉଦାରତାପୂର୍ଣ୍ଣ ବାକ୍ୟ ଶ୍ରବଣ କରି କୃଷ୍ଣ କହିଲେ, 'ହେ ରାଜା, ଆମ୍ଭେମାନେ ଅନ୍ନପ୍ରାର୍ଥୀ ବ୍ରାହ୍ମଣ ନୋହୁଁ ଯେ ତୁମ ନିକଟରୁ ଭିକ୍ଷା ଗ୍ରହଣ କରିବୁ । ଆମ୍ଭେମାନେ କ୍ଷତ୍ରିୟ । ତୁମ ସହିତ ଯୁଦ୍ଧ କରିବା ନିମନ୍ତେ ଆମ୍ଭେମାନେ ଆସିଅଛୁ । ଭଲଭାବରେ ଦେଖିନିଅ, ଏ ହେଉଛନ୍ତି ପାଣ୍ଡୁପୁତ୍ର ଭୀମସେନ ଏବଂ ସେ ତାଙ୍କର ଭାଇ ଅର୍ଜୁନ । ମୁଁ ହେଉଛି ଏ ଦୁହିଁଙ୍କର ମାମୁଁପୁଅ ଭାଇ ଓ ତୁମର ପୁରାତନ ଶତ୍ରୁ, କୃଷ୍ଣ । ଯଦି ଇଚ୍ଛା ଥାଏ, ତେବେ ଆମ ମଧ୍ୟରୁ ଯେ କୌଣସି ବ୍ୟକ୍ତି ସହିତ ଦ୍ୱନ୍ଦ ଯୁଦ୍ଧରେ ପ୍ରବୃତ୍ତ ହୁଅ ।'

କୃଷ୍ଣଙ୍କ ମୁଖରୁ ଆଗନ୍ତୁକମାନଙ୍କର ପ୍ରକୃତ ପରିଚୟ ପାଇ ଜରାସନ୍ଧ ଅଟ୍ଟହାସ୍ୟ କରି ଉଚ୍ଚସ୍ୱରରେ କହିଲେ, 'ରେ ମୂର୍ଖ, ଯଦି ତୁମ୍ଭେମାନେ ମୋ ସହ ଦ୍ୱନ୍ଦ ଯୁଦ୍ଧ କରିବାକୁ ଚାହୁଁଥାଅ, ତେବେ ଏ ଆହ୍ୱାନକୁ ମୁଁ ଗ୍ରହଣ କରୁଛି । କିନ୍ତୁ କୃଷ୍ଣ, ତୁ ତ ଗୋଟାଏ ଯୁଦ୍ଧଭୀରୁ-କାପୁରୁଷ । ଯୁଦ୍ଧକୁ ତୋର ଏତେ ଭୟ ଯେ ଯୁଦ୍ଧକ୍ଷେତ୍ରରୁ ପଳାୟନ କରିବା ତୁ କେବଳ ଶିଖି ନାହୁଁ, ନିଜର ବସବାସ ରାଜ୍ୟ ମଥୁରାକୁ

ତ୍ୟାଗ କରି ସମୁଦ୍ର ମଧ୍ୟକୁ ଶରଣ ପଶିବା ପାଇଁ ପଳାଇ ଯାଇପାରୁ ।
ତୋ ପରି ଯୁଦ୍ଧଖୋରୁ ସହିତ ଯୁଦ୍ଧ କରିବାକୁ ମୁଁ ଚାହେଁନା । ଆଉ ଏ
ଅର୍ଜୁନ, ଏ ତ ବୟସ ଓ ଶକ୍ତିରେ ଅତ୍ୟନ୍ତ ଅପରିପକ୍ୱ; ତେଣୁ ତା ସହିତ
ମଧ୍ୟ ମୁଁ ଯୁଦ୍ଧ କରିବି ନାହିଁ । ଏହି ଭୀମସେନ ହେଲେ ହୁଏତ ମୋର
ସମାସ୍କନ୍ଧ ହୋଇପାରେ । ତେଣୁ ତା ସହିତ ମୁଁ ଦ୍ୱନ୍ଦ୍ୱଯୁଦ୍ଧରେ ପ୍ରବୃତ୍ତ
ହେବ ।'

ଜରାସନ୍ଧ ଏହା କହି ଦ୍ୱନ୍ଦ୍ୱଯୁଦ୍ଧ ନିମନ୍ତେ ନିରସ୍ତ୍ର ଭୀମସେନଙ୍କୁ
ଏକ ଗଦା ଦେଇ ନିଜେ ଏକ ଗଦା ଉତ୍ତୋଳନ କଲା । ସଙ୍ଗେ ସଙ୍ଗେ
ଉଭୟଙ୍କ ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ଉଭୟଙ୍କ ଶରୀର ବଜ୍ର
ପରି ଶକ୍ତ ଥିଲା ଏବଂ ପରସ୍ପର ପରସ୍ପରକୁ ଗଦାରେ ପ୍ରହାର କରିବାକୁ
ଲାଗିଲେ । ଉଭୟ ଉଭୟଙ୍କର ସମକକ୍ଷ ଥିଲେ ଏବଂ ସେମାନଙ୍କର
ଦ୍ୱନ୍ଦ୍ୱଯୁଦ୍ଧ ରଙ୍ଗମଞ୍ଚ ପରିବେଷିତ ଅଭିନୟର ଭ୍ରମ ସୃଷ୍ଟି କରୁଥାଏ ।
ପରସ୍ପରଙ୍କ ଗଦା ପ୍ରହାରରେ ଗୋଟାଏ ପରେ ଗୋଟାଏ ଗଦା ଭାଙ୍ଗି
ଚୂରମାର ହୋଇ ଯାଉଥାଏ, ହେଲେ କାହାର ଶରୀରର କୌଣସି
କ୍ଷତି ଘଟୁ ନଥାଏ । ଏକ ସମୟରେ ସେମାନେ ଗଦା ଯୁଦ୍ଧ ପରିହାର କରି
ବାହୁଯୁଦ୍ଧରେ ପ୍ରବୃତ୍ତ ହେଲେ । ପରସ୍ପର ପରସ୍ପରକୁ ଭୂଷା ଓ ବିଧା
ମାରୁଥାନ୍ତି, ଗଡ଼ାଗଡ଼ି ହେଉଥାନ୍ତି । ଦୀର୍ଘ ସତେଇଶ ଦିନଧରି ସେମାନଙ୍କର
ସେହି ଯୁଦ୍ଧ ଚାଲିଥିଲେ ମଧ୍ୟ କେହି କାହାରିକୁ ପରାସ୍ତ କରିପାରିଲେ
ନାହିଁ । ଯୁଦ୍ଧ ଅଠେଇଶ ଦିନରେ ପଦାର୍ପଣ କରିବାରୁ ଭୀମସେନ କୃଷ୍ଣଙ୍କୁ
ସମ୍ବୋଧନ କରି କହିଲେ, 'କୃଷ୍ଣ, ଏତେ ଦିନ ଧରି ଯୁଦ୍ଧ କରି ମଧ୍ୟ ଏହି
ଜରାସନ୍ଧକୁ ମୁଁ ଜିତିପାରୁ ନାହିଁ ।' କୃଷ୍ଣଙ୍କୁ ଜରାସନ୍ଧର ମୃତ୍ୟୁରହସ୍ୟ
ଜଣାଥିଲା । ଜରା ନାମକ ଏକ ରାକ୍ଷସୀ ଦୁଇ ଫାଳ ହୋଇ ଜନ୍ମ
ହୋଇଥିବା ଜରାସନ୍ଧକୁ ଯୋଡ଼ି ଜୀବନ ଦାନ କରିଥିଲା । ତେଣୁ
କୃଷ୍ଣ ନିଜର ଶକ୍ତିକୁ ଭୀମସେନଙ୍କ ମଧ୍ୟରେ ସଞ୍ଚାରିତ କରି ଭୀମଙ୍କୁ
ଅଧିକ ଉତ୍ସାହିତ କଲେ ଏବଂ ଭୀମସେନଙ୍କ ଦୃଷ୍ଟି ସମ୍ମୁଖରେ
ବୃକ୍ଷର ଏକ ଡାଳ୍‌କଳକୁ ହାତରେ ଧରି ଦୁଇଫାଡ଼ି କରିଦେଲେ ଏବଂ
ସେହି ଇଙ୍ଗିତରେ ଜରାସନ୍ଧର ଶରୀରକୁ ଦୁଇଫାଳ କରିଦେଲେ
ତା'ର ମୃତ୍ୟୁ ହେବ ବୋଲି ଭୀମସେନଙ୍କୁ ସୂଚାଇଦେଲେ । ଭୀମସେନ

ତଦନୁସାରେ ଦ୍ୱନ୍ଦ୍ୱଯୁଦ୍ଧ କରୁ କରୁ ହଠାତ୍ ଜରାସନ୍ଧର ଦୁଇ ଗୋଡ଼କୁ ଧରି ତା'ର ଶରୀରକୁ ଫାଡ଼ିଦେଲେ, ଫଳରେ ଜରାସନ୍ଧର ଶରୀର ଦୁଇ ଫାଳ ହୋଇଗଲା ଓ ତା'ର ମୃତ୍ୟୁ ଘଟିଲା ।

ଜରାସନ୍ଧର ମୃତ୍ୟୁ ପରେ ତା' ଦ୍ୱାରା କାରାରୁଦ୍ଧ ହୋଇଥିବା ରାଜାମାନଙ୍କୁ କୃଷ୍ଣ ମୁକ୍ତ କରିଦେଲେ ଏବଂ ମଗଧର ଶୂନ୍ୟ ରାଜ-ସିଂହାସନରେ ଜରାସନ୍ଧର ପୁତ୍ରକୁ ଅଭିଷିକ୍ତ କଲେ ।

ଜରାସନ୍ଧଙ୍କ ମୃତ୍ୟୁରେ ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞର ପଥ ସୁଗମ ହୋଇଗଲା ଏବଂ ବହୁ ଆଡ଼ମ୍ବର ସହକାରେ ଇନ୍ଦ୍ରପ୍ରସ୍ଥରେ ଯୁଧିଷ୍ଠିର ଯଜ୍ଞ ଅନୁଷ୍ଠାନ କଲେ । ଅନ୍ୟମାନଙ୍କ ମଧ୍ୟରେ କୃଷ୍ଣପ୍ରମୁଖ ଯାଦବମାନେ ଏବଂ ଚେଦିରାଜ ଶିଶୁପାଳ ମଧ୍ୟ ନିମନ୍ତ୍ରିତ ହୋଇ ସେହି ଯଜ୍ଞରେ ଯୋଗ ଦେଇଥିଲେ । ଆଗନ୍ତୁକ ନିମନ୍ତ୍ରିତମାନଙ୍କ ମଧ୍ୟରୁ ସର୍ବଶ୍ରେଷ୍ଠ ବ୍ୟକ୍ତିଙ୍କୁ ସର୍ବାଗ୍ରେ ସ୍ୱାଗତ ପୂଜା କରିବାର ପ୍ରଥା ପ୍ରଚଳିତ ଥିଲା । ତେଣୁ ସମବେତ ଆମନ୍ତ୍ରିତ ଅତିଥିମାନଙ୍କ ମଧ୍ୟରେ କୃଷ୍ଣଙ୍କୁ ସର୍ବଶ୍ରେଷ୍ଠ ପୁରୁଷ ବୋଲି ଗ୍ରହଣ କରି ମହାରାଜ ଯୁଧିଷ୍ଠିର କୃଷ୍ଣଙ୍କର ଗୁଣଗାନ କରି ପ୍ରଥମେ ତାଙ୍କୁ ସ୍ୱାଗତ ଓ ପୂଜା କରିବାରୁ, ଯଜ୍ଞ-ସ୍ଥଳରେ ଉପସ୍ଥିତ ଥିବା ଚେଦିରାଜ ଶିଶୁପାଳ ନିଜର କୃଷ୍ଣ-ବିଦ୍ୱେଷ ଭାବ ଯୋଗୁ ତା'ର ତୀବ୍ର ପ୍ରତିବାଦ କରିବା ସଙ୍ଗେ ସଙ୍ଗେ କୃଷ୍ଣଙ୍କୁ ଅତ୍ୟନ୍ତ କୁତ୍ସିତଭାଷାରେ ଗାଳି ଦେବାକୁ ଲାଗିଲେ । ଶିଶୁପାଳର ବ୍ୟବହାରରେ କୃଷ୍ଣ କ୍ରୋଧାନ୍ୱିତ ହୋଇ ଶିଶୁପାଳକୁ ସୁଦର୍ଶନ ଚକ୍ରରେ ହତ୍ୟାକଲେ ଏବଂ ନିହତ ଶିଶୁପାଳର ଶରୀରରୁ ଏକ ଜ୍ୟୋତି ବହିର୍ଗତ ହୋଇ କୃଷ୍ଣଙ୍କ ମଧ୍ୟରେ ଲୀନ ହୋଇଗଲା । ଶିଶୁପାଳ ନିଜର ପୂର୍ବବର୍ତ୍ତୀ ତିନି ଜନ୍ମଧରି ନିରବଚ୍ଛିନ୍ନ ଭାବରେ ଭଗବାନଙ୍କ ପ୍ରତି ଶତ୍ରୁଭାବ ପୋଷଣ କରିଥିବାରୁ, କୃଷ୍ଣଙ୍କ ହସ୍ତରେ ମୃତ୍ୟୁବରଣ କରି ମୁକ୍ତିଲାଭ କଲା ଏବଂ ମୃତ୍ୟୁ ପରେ ଭଗବାନର ଏକ ପାର୍ଷଦରେ ପରିଣତ ହୋଇଗଲା ।

●

# କୃଷ୍ଣଙ୍କର ଉପଦେଶ

ପରଶୁରାମ ସମସ୍ତ ପୃଥିବୀକୁ କ୍ଷତ୍ରିୟଶୂନ୍ୟ କରି ନିହତ କ୍ଷତ୍ରିୟ-ବୀରମାନଙ୍କର ରୁଧିରରେ କୁରୁକ୍ଷେତ୍ରର ଯେଉଁ ସ୍ଥାନରେ ବଡ଼ ବଡ଼ ପାଞ୍ଚ ଗୋଟି କୁଣ୍ଡକୁ ପୂର୍ଣ୍ଣ କରିଥିଲେ, ସେହି ସ୍ଥାନ ସମନ୍ତପଞ୍ଚକ ନାମରେ ପରିଚିତ ଏବଂ ତୀର୍ଥମାନଙ୍କ ମଧ୍ୟରେ ସମନ୍ତପଞ୍ଚକ ପବିତ୍ରତମ ସ୍ଥାନ ବୋଲି ବିବେଚିତ ହୋଇଥାଏ ।

କୃଷ୍ଣ ଓ ବଳରାମ ଦ୍ୱାରକାରେ ଅବସ୍ଥାନ କରୁଥିବା ସମୟରେ ଥରେ ପୂର୍ଣ୍ଣ ସୂର୍ଯ୍ୟପରାଗ ପଡ଼ିଲା । ସେହି ପରାଗ ଦିନ କୁରୁକ୍ଷେତ୍ରର ପ୍ରସିଦ୍ଧ ସମନ୍ତପଞ୍ଚକ ତୀର୍ଥରେ ସ୍ନାନାଦି କରିବା ନିମନ୍ତେ ବିଭିନ୍ନ ସ୍ଥାନରୁ ଲୋକମାନେ ସପରିବାର ସେଠାକୁ ଯାତ୍ରା କରୁଥାନ୍ତି । ଦ୍ୱାରକାରୁ ବସୁଦେବ ଓ ଉଗ୍ରସେନପ୍ରମୁଖଙ୍କ ଗହଣରେ କୃଷ୍ଣ ଓ ବଳରାମ ମଧ୍ୟ ସେହି ଅବସରରେ ଯାଦବ-ବନ୍ଧୁମାନଙ୍କ ସହ ସପରିବାର କୁରୁକ୍ଷେତ୍ରକୁ ଯାତ୍ରାକଲେ । କୁରୁକ୍ଷେତ୍ରରେ ଅବସ୍ଥାନ କରି ସେମାନେ ପରମ ଭକ୍ତି ସହକାରେ ଉପବାସବ୍ରତାଦି ପାଳନ କଲେ ଏବଂ ପରାଗରସ୍ତ ସୂର୍ଯ୍ୟ ମୋକ୍ଷଲାଭ କରିବା ପରେ ସମନ୍ତପଞ୍ଚକର ସେହି ପବିତ୍ର ପରଶୁରାମ କୁଣ୍ଡରେ ସ୍ନାନାଦି ସମାପନ ପରେ ବ୍ରାହ୍ମଣମାନଙ୍କୁ ଗୋ ଦାନ ଓ ଭୋଜନ ଆଦି ପ୍ରଦାନ କରି ସେମାନଙ୍କୁ ସନ୍ତୁଷ୍ଟ କଲେ ।

ସମନ୍ତପଞ୍ଚକ ତୀର୍ଥକୁ କୃଷ୍ଣପ୍ରମୁଖ ସପରିବାର ଆସୁଅଛନ୍ତି ବୋଲି ଶୁଣିବାକୁ ପାଇ ବହୁଦିନପରେ କୃଷ୍ଣଙ୍କୁ ଦର୍ଶନ କରିବାର ସୁଯୋଗ ମିଳିବ ଭାବି ଗୋପରୁ ନନ୍ଦ ଓ ଯଶୋଦାପ୍ରମୁଖ ଗୋପବାସୀମାନେ ମଧ୍ୟ ସେଠାକୁ ଆସିଲେ ।

ନନ୍ଦ ଓ ଯଶୋଦାପ୍ରମୁଖ ଗୋପବାସୀଙ୍କୁ ଦେଖି ବସୁଦେବ-ପ୍ରମୁଖ ବିଶେଷ ଆନନ୍ଦିତ ହେଲେ । ଦୀର୍ଘଦିନର ବ୍ୟବଧାନ ପରେ କୃଷ୍ଣ ଓ ବଳରାମଙ୍କୁ ଦର୍ଶନ କରି ଗୋପବାସୀମାନେ ସତେ ଯେପରି

ନବଜୀବନ ଲାଭକଲେ । ସେମାନଙ୍କ ଦୃଷ୍ଟି ସମ୍ମୁଖରେ ଅତୀତର ସମସ୍ତ କଥା ଗୋଟି ଗୋଟି ହୋଇ ଉଜ୍ଜ୍ୱଳ ହୋଇଉଠିଲା । ମାତା ଯଶୋଦା ଓ ପିତା ନନ୍ଦଙ୍କୁ ଦେଖି କୃଷ୍ଣ ଓ ବଳରାମ ସଭକ୍ତି ପ୍ରଣାମ କଲେ ଏବଂ ନବଦମ୍ପତି ଦୁଇ ପୁତ୍ରଙ୍କୁ କୋଳକୁ ନେଇ ଗାଢ଼ ଆଲିଙ୍ଗନପାଶରେ ଆବଦ୍ଧ କଲେ । ବହୁଦିନପରେ ପିତାମାତାଙ୍କୁ ଦେଖି ଆନନ୍ଦ ଓ ଭକ୍ତିର ଆତିଶଯ୍ୟରେ କୃଷ୍ଣ ଓ ବଳରାମଙ୍କର ବାକ୍‌ଶକ୍ତି ଏକପ୍ରକାର ରୁଦ୍ଧ ହୋଇଗଲା । ସେମାନେ କିଛି କହିପାରିଲେ ନାହିଁ । ପୁତ୍ର ଦୁହିଁଙ୍କୁ ଆଲିଙ୍ଗନ ବଦ୍ଧ କରି ନନ୍ଦ ଓ ଯଶୋଦା ଦୀର୍ଘ ଦିନର ସେହି ପୁତ୍ରବିଚ୍ଛେଦ-ଜନିତ ଅସହ୍ୟ ଦୁଃଖକୁ ସେମାନେ ଭୁଲିଗଲେ । ଦେବକୀ ଓ ରୋହିଣୀ ବ୍ରଜରାଣୀ ଯଶୋଦାଙ୍କୁ ଦେଖି ପରମଆଦରରେ ତାଙ୍କୁ ଆଲିଙ୍ଗନ କଲେ ଏବଂ ଆନନ୍ଦ ଓ କୃତଜ୍ଞତାର ଆତିଶଯ୍ୟରେ ସେମାନଙ୍କର ଚକ୍ଷୁ ଲୋତକାପ୍ଲୁତ ହୋଇଗଲା ।

ଦେବକୀ ଓ ରୋହିଣୀ ସମ୍ବୋଧନ କରି ଯଶୋଦାଙ୍କୁ କହିଲେ, 'ଦେବି, ଆପଣ ଏବଂ ନନ୍ଦରାଜା ଆମର ଯେଉଁ ପ୍ରଭୂତ ଉପକାର କରିଅଛନ୍ତି ତାହା ଆପଣମାନଙ୍କ ନିକଟରେ ଆମ୍ଭମାନଙ୍କୁ ଚିରଋଣୀ କରି ରଖିଅଛି । ଆପଣଙ୍କ ସହିତ ଆମ୍ଭେମାନେ ବନ୍ଧୁତାର ସେହି ଅଚ୍ଛେଦ୍ୟ ବନ୍ଧନରେ କାଳକାଳକୁ ଆବଦ୍ଧ ହୋଇ ରହିଅଛୁ । ଏହି କୃଷ୍ଣ ଓ ବଳରାମ ଯେତେବେଳେ ସେମାନଙ୍କର ବାପମାଙ୍କୁ ଚିହ୍ନି ନ ଥିଲେ ସେତେବେଳେ ଆପଣ ଦୁହେଁ ସେମାନଙ୍କୁ ନିଜର ପୁଅ ପରି ମନେକରି ଯେଉଁ ପ୍ରଗାଢ଼ ସ୍ନେହ ଓ ଯତ୍ନରେ ଲାଳନପାଳନ କରି ସେମାନଙ୍କୁ ସେହି ଦୁର୍ଦ୍ଦିନରୁ ରକ୍ଷା କରିଥିଲେ, ତା'ର ପଟାନ୍ତର ନାହିଁ । ପ୍ରକୃତରେ ଆପଣମାନେ ହିଁ ସେ ଦୁହିଁଙ୍କର ଯଥାର୍ଥରେ ପିତାମାତା । ଚକ୍ଷୁର ଆବରଣରେ ଚକ୍ଷୁ ଯେପରି ସୁରକ୍ଷିତ ହୋଇଥାଏ, ଆପଣମାନଙ୍କର ସସ୍ନେହ ଯତ୍ନରେ ସେମାନେ ନିର୍ଭୟରେ ବାସକରୁଥିଲେ । ଆପଣମାନଙ୍କର ସେହି ମହନୀୟ କାର୍ଯ୍ୟର ବାସ୍ତବିକ ତୁଳନା ନାହିଁ । ଆପଣମାନେ ଆତ୍ମପରଜ୍ଞାନର ବହୁ ଊର୍ଦ୍ଧ୍ୱରେ । ଆପଣମାନଙ୍କର ଅକପଟ ସ୍ନେହ-ମମତାରୁ ଆମକୁ ଦୂରେଇ ନେବ କିଏ ?'

କୃଷ୍ଣ ହିଁ ଥିଲେ ଗୋପୀମାନଙ୍କ ଜୀବନର ସର୍ବସ୍ୱ । ବହୁଦିନ ପରେ ଚିରପ୍ରାର୍ଥିତ ପ୍ରିୟ କୃଷ୍ଣଙ୍କୁ ସ୍ୱଚକ୍ଷୁରେ ପୁନର୍ବାର ଦର୍ଶନ କରିବାର ସୌଭାଗ୍ୟ ଲାଭକରି ଗୋପୀମାନେ ଅପଲକ ନୟନରେ ସେମାନେ କୃଷ୍ଣଙ୍କୁ ଚାହିଁରହିଥିଲେ ଏବଂ ନିଜ ନିଜର ଦୃଷ୍ଟି ମାଧ୍ୟମରେ କୃଷ୍ଣଙ୍କୁ ନିଜ ନିଜର ହୃଦୟ ମଧ୍ୟକୁ ଟାଣିନେଇ ମନେ ମନେ ସେମାନେ ଆଲିଙ୍ଗନର ଅନିର୍ବଚନୀୟ ସୁଖ ଅନୁଭବ କରୁଥିଲେ । କୃଷ୍ଣ ଦର୍ଶନ ଓ ଚିନ୍ତାରେ ଗୋପୀମାନଙ୍କର ମନ ପୁଲକସ୍ପନ୍ଦିତ ଓ ତନ୍ମୟ ହୋଇପଡ଼ୁଥିଲା ।

ପିତାମାତାଙ୍କ ଗହଣରେ କୃଷ୍ଣ ସେତେବେଳେ ଅବସ୍ଥାନ କରୁଥିଲେ ମଧ୍ୟ ଗୋପୀମାନଙ୍କର ହୃଦୟର କଥା ତାଙ୍କ ନିକଟରେ ଅଛପା ରହିଲା ନାହିଁ । ପରେ କୃଷ୍ଣ ନିରୋଳାରେ ଗୋପୀମାନଙ୍କ ସହିତ ସାକ୍ଷାତ କରି ସେମାନଙ୍କୁ ଆଲିଙ୍ଗନାବଦ୍ଧ କଲେ ଏବଂ କୁଶଳ ପ୍ରଶ୍ନ ପଚାରି କହିଲେ, 'ସଖିଗଣ, ବହୁଦିନ ପରେ ତୁମ୍ଭମାନଙ୍କ ସହିତ ମୋର ଆଜି ସାକ୍ଷାତ ହେଲା । ତୁମ୍ଭେମାନେ ମୋତେ ଏବେ ମନେ ପକାଅ କି ନାହିଁ, ଜାଣେନା । କିନ୍ତୁ ମୁଁ ବା କ'ଣ କରିବି ? ପାରିବାରିକ କାର୍ଯ୍ୟର ପ୍ରୟୋଜନୀୟତାରେ ବ୍ରଜରୁ ମୁଁ ଆସିଲି, ଏ ମଧ୍ୟରେ ମୁହୂର୍ତ୍ତେ ସମୟ ମଧ୍ୟ ମୁଁ ପାଇନାହିଁ । ଶତ୍ରୁଚିନ୍ତାରେ ସମସ୍ତ ସମୟ ମୋର ଅତିବାହିତ ହୋଇଯାଇଅଛି । ମୁଁ ବ୍ରଜକୁ ନ ଫେରିବାରୁ ତୁମ୍ଭେମାନେ ନିଶ୍ଚୟ ଦୁଃଖ କରୁଥିବ, ଏପରି କି ମୋତେ ଅକୃତଜ୍ଞ ବୋଲି ଭାବି କେତେ ଗାଳି ଦେଉଁଥିବ; ହେଲେ ଏଥିରେ ମୋର ଦୋଷ ନାହିଁ । ସବୁ ବିଧିର ବିଧାନ । ପ୍ରାଣୀମାନଙ୍କର ବିରହ ମିଳନ ସବୁ ଭଗବାନଙ୍କ ଇଚ୍ଛାରେ ନିୟନ୍ତ୍ରିତ ହୋଇଥାଏ; ଆମେ ନିମିତ୍ତ ମାତ୍ର । ବାୟୁ ଯେପରି ମେଘ ସହିତ ତୃଣ, ତୁଳା ବା ଧୂଳିକଣାକୁ ଏକତ୍ରିତ କରି ପୁଣି ବିଚ୍ଛିନ୍ନ କରିଥାଏ ସେହିପରି ଅଖିଳ ଜଗତର ସ୍ରଷ୍ଟା ଭଗବାନ କେତେବେଳେ କାହା ସହିତ କାହାକୁ ମିଳିତ, ପୁଣି ବିଚ୍ଛିନ୍ନ କରିଥାନ୍ତି, ତାହା ଜାଣିବା ଆମ୍ଭମାନଙ୍କ ପକ୍ଷରେ ଦୁଷ୍କର । ସଖିଗଣ, ମୁଁ ତୁମ୍ଭମାନଙ୍କର ଦୂରରେ ଥାଏ ବା ନିକଟରେ ଥାଏ, ସେଥିରେ ତୁମ୍ଭେମାନେ ଆଦୌ ବିଚଳିତ ହୁଅ ନାହିଁ । ମୋ ପ୍ରତି ପ୍ରକୃତ ଭକ୍ତି ସ୍ଥାପନ କରିପାରିଲେ, ଜୀବ ପରମାନନ୍ଦ ପ୍ରାପ୍ତ ହୋଇଥାଏ । ମୋ ପ୍ରତି ତୁମ୍ଭମାନଙ୍କ ମନରେ

ଅନ୍ତରିକ ପ୍ରେମ ଜାତ ହୋଇଅଛୁ, ଏହା ବହୁ ସୌଭାଗ୍ୟର କଥା ଏବଂ ଏହାର ପଟାନ୍ତର ନାହିଁ । ହେ ଅଙ୍ଗନାଗଣ, ମୁଁ ସର୍ବବ୍ୟାପୀ । ଏହି ଜଗତରେ ଯାହାକଛି ଭୌତିକ ପଦାର୍ଥମାନ ଦେଖୁଅଛ ମୁଁ ସେ ସବୁର କାରଣ ଏବଂ ସେ ସବୁର କାହାରେ, ଭିତରେ ଓ ଆଦ୍ୟଅନ୍ତ ମଧ୍ୟରେ ମୁଁ ଅବସ୍ଥାନ କରୁଅଛି । ପଞ୍ଚଭୂତ ନିର୍ମିତ ସକଳ ଶରୀରରେ ଆତ୍ମାହୋକ୍ତା ରୂପରେ ବା ଜୀବ ରୂପରେ ଅବସ୍ଥାନ କରିଅଛି । ଜଡ଼ଭାବ ଓ ଚେତନ ଭାବ ଉଭୟ ମୋଠାରୁ ସମୁତ୍ପନ୍ନ ହୋଇଅଛି; ମୁଁ ତହିଁରେ ନିତ୍ୟ ବିରାଜ କରୁଅଛି । ମୁଁ କିନ୍ତୁ ଅକ୍ଷୟ ଓ ଅବ୍ୟୟ ରୂପରେ ସର୍ବଦା ନିତ୍ୟ ବର୍ତ୍ତମାନ ଅଛି ।'

ଏହିପରି କହି ଗୋପୀମାନଙ୍କୁ କୃଷ୍ଣ ପରମ ଅଧ୍ୟାତ୍ମଜ୍ଞାନରେ ସୁଶିକ୍ଷିତ କଲେ ଏବଂ ସେହି ଉପଦେଶର ମର୍ମକୁ ବାରମ୍ବାର ସ୍ମରଣ କରି ଗୋପୀମାନଙ୍କର ଲିଙ୍ଗଶରୀର ନଷ୍ଟ ହୋଇଗଲା ଏବଂ ସେମାନେ ଭଗବାନଙ୍କ ସହିତ ଏକାତ୍ମତତ୍ତ୍ୱ ହୋଇଗଲେ ।

କୃଷ୍ଣଙ୍କୁ ସମ୍ବୋଧନ କରି ଗୋପୀମାନେ କହିଲେ, 'ହେ ନଳିନନାଭ, ଅଗାଧଜ୍ଞାନସମ୍ପନ୍ନ ଯୋଗେଶ୍ୱର ଆପଣଙ୍କର ଯେଉଁ ଚରଣ-କମଳକୁ ନିଜ ନିଜ ହୃଦୟରେ ସର୍ବଦା ଧ୍ୟାନ କରିଥାନ୍ତି, ସଂସାରରୂପକ କୂପ ମଧ୍ୟରେ ପତିତ ପ୍ରାଣୀମାନଙ୍କର ଉଦ୍ଧାର ନିମନ୍ତେ ଆପଣଙ୍କର ସେହି ଚରଣକମଳ ହିଁ ସେମାନଙ୍କର ଏକମାତ୍ର ଅବଲମ୍ବନ । ହେ ପତିତପାବନ, ଆମ୍ଭେମାନେ ସଂସାରଚକ୍ର ମଧ୍ୟରେ ଆବର୍ତ୍ତିତ ହେଉଅଛୁ, ତେଣୁ ଗୃହସ୍ଥାଶ୍ରମରେ ବାସ କଲାବେଳେ ଆପଣଙ୍କର ଏହି ଚରଣାରବିନ୍ଦର ଚିନ୍ତା ଯେପରି ଆମ୍ଭମାନଙ୍କ ମନରେ ଅବିସ୍ମରଣୀୟ ରୂପରେ ସଦାସର୍ବଦା ଜାଗରୂକ ହୋଇ ରହେ, ଏହି କଲ୍ୟାଣ ଆମ୍ଭମାନଙ୍କୁ କରନ୍ତୁ ।'

ଗୋପୀପ୍ରାଣବଲ୍ଲଭ କୃଷ୍ଣ ଅସାଧାରଣଭାବସମ୍ପନ୍ନା ଗୋପୀମାନଙ୍କୁ ସେମାନଙ୍କର ଅନ୍ତରର ସେହି କାମନାକୁ ଅନୁମୋଦନ କରି ଆଶୀର୍ବାଦ କରିଥିଲେ ।

କୃଷ୍ଣ ଓ ବଳରାମଙ୍କ ଦର୍ଶନ କରିବା ନିମନ୍ତେ କୁରୁକ୍ଷେତ୍ରର ସେହି ସମନ୍ତପଞ୍ଚକ ତୀର୍ଥକୁ ବ୍ୟାସଦେବ, ନାରଦ, ଚ୍ୟବନ, ଦେବଳ, ଅସିତ,

ବିଶ୍ୱାମିତ୍ର, ଶତାନନ୍ଦ, ଭରଦ୍ୱାଜ, ଗୌତମ, ପରଶୁରାମ, ବଶିଷ୍ଠ, ଗାଲବ, ଭୃଗୁ, ପୁଲସ୍ତ୍ୟ, କଶ୍ୟପ, ଅତ୍ରି, ମାର୍କଣ୍ଡେୟ, ବୃହସ୍ପତି, ଅଙ୍ଗିରା, ଅଗସ୍ତ୍ୟ, ଯାଜ୍ଞବଲ୍କ୍ୟ ଏବଂ ବାମଦେବପ୍ରମୁଖ ବହୁ ମହର୍ଷି ଓ ଦେବର୍ଷି ଆଗମନ କରିଥିଲେ । ସେମାନଙ୍କୁ ଦର୍ଶନ କରିବା ମାତ୍ରେ ପ୍ରଣାମ କରି କୃଷ୍ଣ ଓ ବଳରାମ ପାଦ୍ୟଅର୍ଘ୍ୟାଦି ଦ୍ୱାରା ସେମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ ।

ଋଷିମାନଙ୍କୁ ସମ୍ବୋଧନ କରି କୃଷ୍ଣ କହିଲେ, 'ଆମ ପକ୍ଷରେ ଏହି ମନୁଷ୍ୟ ଜୀବନଧାରଣ କରିବା ଆଜି ବାସ୍ତବିକ ସାର୍ଥକ ହେଲା । ଯେଉଁ ମହାପୁରୁଷମାନଙ୍କୁ ଦର୍ଶନ କରିବା ଦେବତାମାନଙ୍କ ପକ୍ଷରେ ମଧ୍ୟ ସମ୍ଭବ ହୁଏ ନାହିଁ, ଆଜି ସେହି ଯୋଗେଶ୍ୱର ମନୀଷୀମାନଙ୍କର ବିରଳ ଦର୍ଶନ ଲାଭ କରିବାର ପୁଣ୍ୟ ସୌଭାଗ୍ୟ ଆମ୍ଭେମାନେ ଅର୍ଜନ କରିଅଛୁ । ଯେଉଁ ବ୍ୟକ୍ତିମାନେ ଭଗବାନଙ୍କର ଅସ୍ତିତ୍ୱକୁ ସକଳ ପ୍ରାଣୀଙ୍କ ହୃଦୟ ମଧ୍ୟରେ ନିତ୍ୟ ବିରାଜିତ ଥିବାର ଅନୁଭବ ନ କରି ମନୁଷ୍ୟନିର୍ମିତ ମୂର୍ତ୍ତିମାନଙ୍କ ମଧ୍ୟରେ କେବଳ ଭଗବାନଙ୍କ ଉପସ୍ଥିତିକୁ ଉପଲବ୍ଧି କରିଥାନ୍ତି, ସେହିପରି ବ୍ୟକ୍ତିମାନଙ୍କ ପକ୍ଷରେ ଆପଣମାନଙ୍କ ପରି ଯୋଗେଶ୍ୱରମାନଙ୍କର ଦର୍ଶନ, ଚରଣସ୍ପର୍ଶ ଓ ପଦପୂଜନ କରିବାର ସୁଯୋଗ ଲାଭ କରିବା ଯେ ବହୁ ସୌଭାଗ୍ୟର ବିଷୟ, ଏଥିରେ ସନ୍ଦେହ ନାହିଁ । ସାଧୁସନ୍ଥମାନଙ୍କୁ ଉପେକ୍ଷା କରି କେବଳ କୌଣସି ସ୍ଥାନକୁ ତୀର୍ଥସ୍ଥାନ ବୋଲି ଭାବିବା ଅଥବା ମୃତ୍ତିକା ବା ପ୍ରସ୍ତର ନିର୍ମିତ କୌଣସି ମୂର୍ତ୍ତିକୁ ଦେବତା ବୋଲି ଜ୍ଞାନ କରିବା ମୂର୍ଖତାର ବିଷୟ । ସାଧୁସନ୍ଥ-ମାନେ ହିଁ ପ୍ରକୃତରେ ଜୀବନ୍ତ ତୀର୍ଥ ଓ ଜାଗ୍ରତ ଦେବତା । ଦେବତାମାନଙ୍କୁ ବହୁପୂଜା କଲେ ମଧ୍ୟ ଉପାସକ ଯେଉଁ ପବିତ୍ରତା ଲାଭ କରି ନ ଥାଏ, ସାଧୁସନ୍ଥମାନଙ୍କୁ ସ୍ୱଳ୍ପ ସମୟ ମାତ୍ର ଦର୍ଶନ କଲେ ଓ ସେମାନଙ୍କ ପ୍ରଦତ୍ତ ଉପଦେଶାଦି ଶ୍ରବଣ କଲେ ମନୁଷ୍ୟ ତତୋଧିକ ପବିତ୍ରତା ଲାଭ କରିବାକୁ ସମର୍ଥ ହୋଇଥାଏ; ଏପରି କି ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହନକ୍ଷତ୍ର, ଦେବତା ତଥା ପୃଥିବୀ, ଜଳ, ଆକାଶ, ବାୟୁ, ବାକ୍ୟ ଓ ମନ ପ୍ରଭୃତିର ଅଧିଷ୍ଠାତା ଦେବତାମାନଙ୍କୁ ଦୀର୍ଘକାଳ ଧରି ଭକ୍ତି ଓ ଯତ୍ନର ସହିତ ପୂଜା ଉପାସନା କଲେ ମଧ୍ୟ ମନୁଷ୍ୟ ମନରୁ ଆତ୍ମ ଓ ପର ଆଦି ଭେଦବୁଦ୍ଧିର ବିନାଶ ଘଟେ ନାହିଁ, କିନ୍ତୁ ମୋହମାୟାର ଊର୍ଦ୍ଧ୍ୱରେ ଅବସ୍ଥାନ କରୁଥିବା

ଆପଣଙ୍କ ପରି ଗୁଣୀ, ଜ୍ଞାନୀ ଓ ସିଦ୍ଧପୁରୁଷମାନଙ୍କ ସହିତ ମୁହୂର୍ତ୍ତକାଳ ଅତିବାହିତ କଲେ ମନୁଷ୍ୟଙ୍କ ମନରୁ ସମସ୍ତ ପ୍ରକାରର ଆବିଳତା, ଅଜ୍ଞାନତା ଓ ଭେଦବୁଦ୍ଧି ନିର୍ମୂଳ ହୋଇଥାଏ । ସାଧୁମାନଙ୍କ ପ୍ରତି ଭକ୍ତି ଓ ଶ୍ରଦ୍ଧା ପୋଷଣ ନ କରି ଯେଉଁମାନେ ବାତ, ପିତ୍ତ, କଫ ଆଦି ଧାତୁତ୍ରୟର ସମନ୍ୱୟରେ ନିର୍ମିତ ଏହି ଶବତୁଲ୍ୟ ଜଡ଼ ଶରୀରକୁ ପ୍ରେମାସ୍ପଦ ବୋଲି ଜ୍ଞାନ କରିଥାନ୍ତି, ପୁତ୍ର ଓ ପତ୍ନୀଙ୍କୁ ନିଜର ବୋଲି ଜ୍ଞାନ କରି ମତ୍ତ ରହିଥାନ୍ତି, ଯେଉଁମାନେ ମାଟି, ପଥର ବା କାଠରେ ତିଆରି ହୋଇଥିବା ମୂର୍ତ୍ତିକୁ କେବଳ ଦେବତା ବୋଲି ଜ୍ଞାନ କରିଥାନ୍ତି ବା କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ବା ଜଳକୁ କେବଳ ତୀର୍ଥ ବୋଲି ବିଶ୍ୱାସ କରିଥାନ୍ତି ସେପରି ବ୍ୟକ୍ତିମାନେ ମନୁଷ୍ୟ ଜନ୍ମଲାଭ କରିଥିଲେ ମଧ୍ୟ ପ୍ରକୃତରେ ସେମାନେ ତୃଣବାହୀ ଗଧ । ସେମାନଙ୍କର ଜୀବନ ବୃଥା ।'

ଅସୀମ ଜ୍ଞାନର ଅଧିକାରୀ ଭଗବାନ କୃଷ୍ଣଙ୍କ ମୁଖରୁ ଏପରି ବିନମ୍ରପୂର୍ଣ୍ଣ ଗୂଢ଼ କଥା ଶ୍ରବଣ କରି ସମବେତ ଋଷିମାନେ ପ୍ରଥମେ ସମ୍ମୋହିତ ହୋଇଗଲେ । ଭଗବାନ ସର୍ବେଶ୍ୱର ହୋଇ ମଧ୍ୟ ଲୋକଶିକ୍ଷା ନିମନ୍ତେ କର୍ମସର୍ବସ୍ୱ ସାଧାରଣ ମନୁଷ୍ୟଙ୍କ ପରି ସେମାନଙ୍କ ସହିତ ଏପରି ବ୍ୟବହାର କରୁଅଛନ୍ତି ବୋଲି, ସେମାନେ ତାହା ବୁଝିପାରିଲେ ଏବଂ ଜଗଦଗୁରୁ କୃଷ୍ଣଙ୍କୁ ସମ୍ବୋଧନ କରି ସେମାନେ କହିଲେ, 'ଆପଣଙ୍କର ମାୟାରେ ଆମ୍ଭେମାନେ ସମ୍ପୂର୍ଣ୍ଣଭାବରେ ଅଭିଭୂତ ହୋଇପଡ଼ିଛୁ । ଆପଣ ସ୍ୱୟଂ ଈଶ୍ୱର ହୋଇ ମଧ୍ୟ ନିଜର ଶକ୍ତିକୁ ଯେପରି ପ୍ରଚ୍ଛନ୍ନରଖି ସାଧାରଣ ମନୁଷ୍ୟଙ୍କ ପରି ଆଚରଣ କରୁଅଛନ୍ତି, ତାହା ବାସ୍ତବିକ ଅତ୍ୟନ୍ତ ବିଚିତ୍ର । ବୃକ୍ଷ, ଘଟ, ପ୍ରସ୍ତରରେ ରୂପାନ୍ତରିତ ହୋଇ ପୃଥିବୀ ବିଭିନ୍ନ ରୂପ ଓ ନାମରେ ପରିଚିତ ହେଲାପରି ଆପଣ ନିଜେ ଏକ ଓ ଚେଷ୍ଟାରହିତ ହୋଇ ମଧ୍ୟ ଚରାଚର ବିଶ୍ୱର ସୃଜନ, ପାଳନ ଓ ସଂହାର କରିଥାନ୍ତି ଓ ତହିଁରେ ବିଭିନ୍ନ ରୂପ ଧାରଣ କରି ବିଭିନ୍ନ ନାମରେ ପରିଚିତ ହୋଇଥାନ୍ତି, ଅଥଚ ସବୁ କାର୍ଯ୍ୟ କରି ମଧ୍ୟ ଆପଣ କୌଣସି କାର୍ଯ୍ୟରେ ଲିପ୍ତ ହୁଅନ୍ତି ନାହିଁ । ଆପଣ ପ୍ରକୃତିର ଅତୀତ ପରମ ପୁରୁଷ । ସେଥିପାଇଁ ସ୍ୱକର୍ମଜନିତ ଜନ୍ମାନ୍ତର ଆପଣଙ୍କର ନାହିଁ । ସାଧୁ ଓ ଭକ୍ତମାନଙ୍କୁ ପରିତ୍ରାଣ କରିବା ଏବଂ ଖଳସ୍ୱଭାବର ବ୍ୟକ୍ତିମାନଙ୍କୁ ନିଗ୍ରହ

କରିବା ଉଦ୍ଦେଶ୍ୟରେ ଆପଣ ବିଶୁଦ୍ଧ ସତ୍ତ୍ୱମୟ ଶରୀର ଗ୍ରହଣ କରି ବର୍ଣ୍ଣାଶ୍ରମ ଆଦି ବିଭିନ୍ନ ବିଧି ପାଳନ କରି ସନାତନ ବେଦବିହିତ ମାର୍ଗର ପ୍ରବର୍ତ୍ତନ କରିଥାନ୍ତି । ବେଦ ହିଁ ଆପଣଙ୍କର ବିଶୁଦ୍ଧ ହୃଦୟ । ତପସ୍ୟା, ସ୍ୱାଧ୍ୟାୟ, ଧ୍ୟାନଧାରଣା, ସମାଧି ତଥା ଇନ୍ଦ୍ରିୟ ନିଗ୍ରହ ରୂପକ ସଂଯମତା ଦ୍ୱାରା ସାକାର ଓ ନିରାକାର ରୂପ ତଥା ଉଭୟ ରୂପର ଅଧିଷ୍ଠାନ ରୂପକ ଆପଣଙ୍କର ବିଶୁଦ୍ଧ ପରମ ବ୍ରହ୍ମସ୍ୱରୂପର ଦର୍ଶନ ମିଳିଥାଏ । ଏହିସବୁ ସାଧନାବୃତ୍ତି ନିତ୍ୟ ପାଳନ କରୁଥିବା ବ୍ୟକ୍ତିମାନେ ଆପଣଙ୍କର ଏକାନ୍ତ ଅନ୍ତରଙ୍ଗ । ବେଦ ଓ ଶାସ୍ତ୍ର ଆପଣଙ୍କର ସ୍ୱରୂପ ପ୍ରକାଶ କରୁଥିବାରୁ ଆପଣ ଶାସ୍ତ୍ରଯୋନି ନାମରେ ଅଭିହିତ ହୋଇଥାନ୍ତି । ବେଦ ଅଧ୍ୟୟନକାରୀ ବ୍ରାହ୍ମଣମାନେ ଆପଣଙ୍କର ସ୍ୱରୂପକୁ ଉପଲବ୍ଧି କରିପାରିଥାନ୍ତି । ସର୍ବବିଧ କଲ୍ୟାଣ ସାଧନର ଆପଣ ହିଁ ଚରମ ସୀମା ଓ ସାଧୁସନ୍ଥମାନଙ୍କର ଏକମାତ୍ର ଗତି । ଆପଣଙ୍କୁ ଦର୍ଶନ କରି ଆମର ଜନ୍ମ, ଅଧ୍ୟୟନ, ତପସ୍ୟା ଜ୍ଞାନ ଓ ସାଧନା ସଫଳ ହେଲା । ଆପଣ ସ୍ୱୟଂ ସଚ୍ଚିଦାନନ୍ଦ ସ୍ୱରୂପ ପରମବ୍ରହ୍ମ ପରମାତ୍ମା । ଆପଣ ଯୋଗମାୟାଙ୍କୁ ଅବଲମ୍ବନ କରି ନିଜର ଅଚିନ୍ତ୍ୟ ଶକ୍ତିକୁ ଲୁଚାଇ ରଖି ଏହି ମନୁଷ୍ୟ ରୂପରେ ନିଜକୁ ପ୍ରକଟିତ କରିଅଛନ୍ତି । ଆପଣଙ୍କୁ ଆମ୍ଭେମାନେ ନମସ୍କାର କରୁଅଛୁ । ଏଠାରେ ସମବେତ ହୋଇଥିବା ଉଚ୍ଚବଂଶୀୟ ବ୍ୟକ୍ତିମାନଙ୍କ କଥା ଦୂରେ ଥାଉ, ଯେଉଁମାନେ ଆପଣଙ୍କ ସଙ୍ଗରେ ଶୟନ, ଭୋଜନ, ବିଚରଣ ଓ ଜୀବନ ଯାପନ କରୁଅଛନ୍ତି ସେହି ବୃଷ୍ଣିବଂଶୀୟମାନେ ମଧ୍ୟ ଆପଣଙ୍କର ସ୍ୱରୂପ ଉପଲବ୍ଧି କରିପାରି ନାହାନ୍ତି । ଆପଣଙ୍କର ଏହି ଚରଣକମଳ ଯାହାକି ପବିତ୍ର ଗଙ୍ଗାଙ୍କର ଆଶ୍ରୟସ୍ଥଳ, ତାହା ଯୋଗୀଋଷିମାନଙ୍କର ଅତ୍ୟନ୍ତ ପ୍ରିୟ ଓ ଚିନ୍ତଣୀୟ ଏବଂ ସେମାନେ ସବୁ ସମୟରେ ନିଜ ହୃଦୟରେ ଆପଣଙ୍କ ପଦାରବିନ୍ଦକୁ ଧ୍ୟାନ କରିଥାନ୍ତି । ଆଜି ଆମ୍ଭମାନଙ୍କର ପରମ ସୌଭାଗ୍ୟ ଯେ ଆପଣଙ୍କର ସେହି ପଦକମଳଦ୍ୱୟକୁ ଆଜି ଦର୍ଶନ କରିବାର ସୁଯୋଗ ଲଭିକଲୁ । ଆପଣଙ୍କର କଲ୍ୟାଣରୁ ଆମ୍ଭେମାନେ ଯେପରି କେବେ ବଞ୍ଚିତ ନ ହେଉ, ତାହା ହିଁ ପ୍ରାର୍ଥନା ।'

କୃଷ୍ଣ ଓ ବଳରାମଙ୍କୁ ଦର୍ଶନ କରି ମୁନିଋଷିମାନେ ବିଦାୟ ନେବାକୁ ଉପକ୍ରମ କରିବାରୁ ସେମାନଙ୍କର ଚରଣବନ୍ଦନା କରି

ବସୁଦେବ କହିଲେ, 'ହେ ଋଷିଗଣ, ଆପଣମାନେ ସର୍ବଦେବ ସ୍ୱରୂପ । ଆପଣମାନଙ୍କୁ ମୋର ଭକ୍ତିପୂର୍ଣ୍ଣ ପ୍ରଣାମ ଜ୍ଞାପନ କରି ପ୍ରାର୍ଥନା କରୁଛି ଯେ ଯେଉଁ କର୍ମ କଲେ ଜୀବ କର୍ମବନ୍ଧନରୁ ମୁକ୍ତି ଲାଭ କରିପାରେ, ଦୟାକରି ସେହି ଉପଦେଶ ମୋତେ ପ୍ରଦାନ କରନ୍ତୁ ।'

ବସୁଦେବଙ୍କର କଥା ଶୁଣି ଦେବର୍ଷି ନାରଦ ଋଷିମାନଙ୍କୁ କହିଲେ, 'ହେ ବିପ୍ରଗଣ, ଭଗବାନ କୃଷ୍ଣଙ୍କୁ ନିଜର ପୁତ୍ର ଓ ବାଳକ ବୋଲି ଭାବି ବସୁଦେବ ଆମ୍ଭମାନଙ୍କ ନିକଟରୁ ତତ୍ତ୍ୱ ଉପଦେଶ ଶ୍ରବଣ କରିବାକୁ ଯେ ଆଗ୍ରହୀ ହୋଇଅଛନ୍ତି, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଗଙ୍ଗା-କୂଳର ଅଧିବାସୀମାନେ ଗଙ୍ଗାଙ୍କୁ ହତାଦର କରି ଅନ୍ୟ ତୀର୍ଥକୁ ଗମନ କଲା ପରି, ଭଗବାନ ମରଣଶୀଳ ମନୁଷ୍ୟମାନଙ୍କ ମଧ୍ୟରେ ମନୁଷ୍ୟ ରୂପରେ ଆବିର୍ଭୂତ ହେଉଥିବାରୁ ସେମାନେ ତାଙ୍କୁ ସାଧାରଣ ମନୁଷ୍ୟ ବୋଲି ଭାବୁଛନ୍ତି ଓ ତେଣୁ ତାଙ୍କ ପ୍ରତି ଏପରି ଅନାଦର ପ୍ରକାଶିତ ହେଉଅଛି ।'

ଋଷିମାନେ ବସୁଦେବଙ୍କୁ କହିଲେ, 'ମହାଶୟ, ଯଜ୍ଞାଦି ଅନୁଷ୍ଠାନ କରି ଭକ୍ତିର ସହିତ ଭଗବାନ ବିଷ୍ଣୁଙ୍କର ଆରାଧନା କଲେ ମନୁଷ୍ୟ କର୍ମ-ବନ୍ଧନରୁ ନିଷ୍କୃତି ଲାଭ କରିଥାଏ । ଯଜ୍ଞାନୁଷ୍ଠାନ ଓ ଦାନଦ୍ୱାରା ଧନ ସମ୍ପର୍କୀୟ ସକଳ ତୃଷ୍ଣା, ଗୃହସ୍ଥୋଚିତ କର୍ମଦ୍ୱାରା ପୁତ୍ର, ପତ୍ନୀ, ପରିବାର-ଜନିତ ସକଳ କାମନା ଏବଂ ମୃତ୍ୟୁ ପରେ ସ୍ୱର୍ଗାଦି ଭୋଗ କରିବାର ଇଚ୍ଛା ମଧ୍ୟ ନଷ୍ଟ ହୋଇଥାଏ । ଗ୍ରାମରେ ବାସକରୁଥିବା ଲୋକମାନେ ଗ୍ରାମ୍ୟଜୀବନରେ ବିରକ୍ତ ହୋଇ ତପୋବନକୁ ଯାତ୍ରା କଲାପରି ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟମାନେ ଯଜ୍ଞାନୁଷ୍ଠାନ ଦ୍ୱାରା ଦେବଋଣ, ସନ୍ତାନୋତ୍ପତ୍ତି ଦ୍ୱାରା ପିତୃଋଣ ଏବଂ ବେଦାଧ୍ୟୟନ ଦ୍ୱାରା ଋଷିଋଣରୁ ମୁକ୍ତ ହୋଇ ଗୃହସ୍ଥାଶ୍ରମକୁ ତ୍ୟାଗ କରିବା ଉଚିତ । ଆପଣ ଋଷିଋଣ ଓ ପିତୃଋଣରୁ ମୁକ୍ତ ହୋଇଅଛନ୍ତି; ବର୍ତ୍ତମାନ ଯଜ୍ଞାନୁଷ୍ଠାନ କରି ଦେବଋଣରୁ ଅଚିରେ ମୁକ୍ତ ହୁଅନ୍ତୁ ଏବଂ ତତ୍ପରେ ଗୃହସ୍ଥାଶ୍ରମ ତ୍ୟାଗ କରି ବାନପ୍ରସ୍ଥ ଆଚରଣ କରିବେ । ଭଗବାନ ଅଖିଳଜଗତର ପତି ପରାତ୍ପର ପରମେ-ଶ୍ୱର ଆପଣଙ୍କର ପୁତ୍ରତ୍ୱ ସ୍ୱୀକାର କରିଥିବାରୁ ଆପଣ ପରମଭକ୍ତ

ସନ୍ତକାରେ ଯେ ଭଗବାନ ବିଷ୍ଣୁଙ୍କୁ ସେବା ଆରାଧନା କରିଥାନ୍ତି, ଏଥିରେ ସନ୍ଦେହ ନାହିଁ ।'

ଋଷିମାନଙ୍କର ପରାମର୍ଶକ୍ରମେ ବସୁଦେବ ସେହି କୁରୁକ୍ଷେତ୍ରରେ ସେହି ଋଷିମାନଙ୍କ ସହଯୋଗରେ ଏକ ମହାନ ଯଜ୍ଞ ଆୟୋଜନ କଲେ ଏବଂ ସେହି ଯଜ୍ଞାନୁଷ୍ଠାନ ଦ୍ୱାରା ସେ ଭଗବାନ ବିଷ୍ଣୁଙ୍କୁ ବିଶେଷ ଭାବରେ ପୂଜାର୍ଚ୍ଚନା କଲେ ।

ଯଜ୍ଞ ସମାପ୍ତ ହେବା ପରେ କୃଷ୍ଣ ଓ ବଳରାମ ପିତାଙ୍କୁ ପ୍ରଣାମ କରିବା ନିମନ୍ତେ ବସୁଦେବଙ୍କ ନିକଟକୁ ଗଲାବେଳେ, ଋଷିମାନଙ୍କର କଥା ବସୁଦେବଙ୍କର ମନେ ପଡ଼ିଗଲା । ସେ ମନେ ମନେ ଭାବିଲେ ଯେ କୃଷ୍ଣ ଓ ବଳରାମ ସାଧାରଣ ମନୁଷ୍ୟ ନୁହନ୍ତି; ସେମାନେ ନିଶ୍ଚୟ ସ୍ୱୟଂ ଭଗବାନ । ତେଣୁ କୃଷ୍ଣ ଓ ବଳରାମଙ୍କୁ ସମ୍ବୋଧନ କରି ବସୁଦେବ କହିଲେ, 'ହେ ସଚ୍ଚିଦାନନ୍ଦସ୍ୱରୂପ ଶ୍ରୀକୃଷ୍ଣ ! ହେ ମହାଯୋଗୀଶ୍ୱର ସଂକର୍ଷଣ ! ତୁମେ ଦୁହେଁ ସନାତନ ପରମେଶ୍ୱର ଓ ଅଖିଳ ଜଗତର ସର୍ବକାରଣ । ତୁମେ ଯେ କେବଳ ଜଗତର ସୃଷ୍ଟିକର୍ତ୍ତା, ତାହା ନୁହେଁ, ଜଗତରେ ଯାହା କିଛି ପରିଦୃଷ୍ଟ ହେଉଅଛି, ସେସବୁ ତୁମର ପ୍ରକାଶ ମାତ୍ର । ତୁମେ ନିଜର ଈଶ୍ୱରତ୍ୱ ମୋ ନିକଟରେ ପୂର୍ବେ ପ୍ରକାଶ କରିଥିଲେ ମଧ୍ୟ ଏବଂ ତୁମେ ପରମବ୍ରହ୍ମ, ତଥାପି ମୁଁ ମାୟାଦ୍ୱାରା ମୋହିତ ହୋଇ ତୁମକୁ ମୁଁ ମୋର ପୁତ୍ର ବୋଲି ଭ୍ରମ କରିଅଛି; ଏହାଠାରୁ ଦୁର୍ଭାଗ୍ୟର କଥା ଆଉ କ'ଣ ଥାଇପାରେ । ହେ ଶରଣାଗତବତ୍ସଳ, ମୁଁ ତୁମର ଚରଣକମଳରେ ଶରଣ ନେଉଅଛି । ମୋତେ ଏହି ସାଂସାରିକ ଅଚ୍ଛେଦ୍ୟ ମୋହବନ୍ଧନରୁ ଅଚିରେ ମୁକ୍ତ କର ।'

ପିତା ବସୁଦେବଙ୍କର କଥା ଶୁଣି କୃଷ୍ଣ କହିଲେ, 'ବାପା, ଆମେ ଦୁହେଁ ଆପଣଙ୍କର ପୁତ୍ର, ତଥାପି ଆମ ସମ୍ପର୍କରେ ଆପଣ ଯାହା କହିଲେ ତାହା ମଧ୍ୟ ସତ୍ୟ । ସଂସାରରେ ଆପଣ ଯାହା କିଛି ଦେଖୁଛନ୍ତି, ଶୁଣୁଛନ୍ତି ବା ଜାଣୁଛନ୍ତି ସେ ସବୁଠାରେ ପରମେଶ୍ୱର ବିଦ୍ୟମାନ । କ୍ଷିତି, ଅପ୍, ତେଜ୍ ମରୁତ୍ ଓ ବ୍ୟୋମ—ଏହି ପଞ୍ଚଭୂତରୁ ଉତ୍ପନ୍ନ ଯାବତୀୟ ବିଷୟବସ୍ତୁରେ ଏହି ପଞ୍ଚଭୂତର ଅବସ୍ଥିତି କେତେବେଳେ

ପ୍ରକାଶିତ ଓ କେତେବେଳେ ଅପ୍ରକାଶ୍ୟ ଭାବରେ ରହିଥାଏ; ସେହିପରି ଏକ ପରମାତ୍ମା ଆତ୍ମସୃଷ୍ଟ ଗୁଣସମନ୍ୱୟର ପରିଣାମ ଅନୁସାରେ ବିଭିନ୍ନ ଜୀବ ଓ ବିଷୟରେ ଅବସ୍ଥାନ କରି ଭିନ୍ନ ଭିନ୍ନ ରୂପରେ ପ୍ରତୀତ ହୋଇଥାନ୍ତି । ତେଣୁ ସବୁ ବସ୍ତୁରେ ଭଗବାନଙ୍କ ଅସ୍ତିତ୍ୱ ଦର୍ଶନ କରିବା ଓ ଆମକୁ ଭଗବାନ ବୋଲି କହିବା ଏକା କଥା, ତେଣୁ ଯୁକ୍ତିଯୁକ୍ତ ।'

କୃଷ୍ଣଙ୍କର ଉପଦେଶ ଶ୍ରବଣ କରିବା ପରେ ବସୁଦେବଙ୍କ ମନରୁ ନାନାତ୍ୱ ବୁଦ୍ଧି ଦୂର ହେଲା । ସେ ସବୁଠାରେ ପରମ ବ୍ରହ୍ମଙ୍କର ଅସ୍ତିତ୍ୱ ଅନୁଭବ କଲେ । ଦେବକୀ ସେଠାରେ ଉପସ୍ଥିତ ଥିଲେ । ଗୁରୁ ଗୃହରେ ଶିକ୍ଷାଲାଭ କରୁଥିବା ବେଳେ ଯେଉଁ କୃଷ୍ଣ ଓ ବଳରାମ ଯମପୁରରୁ ଗୁରୁଙ୍କର ମୃତ ପୁତ୍ରକୁ ଜୀବନ୍ତ ଅବସ୍ଥାରେ ଫେରାଇ ଆଣିଥିଲେ, ସେହି ପୁତ୍ରଦ୍ୱୟ କେବେହେଁ ସାଧାରଣ ମନୁଷ୍ୟ ନୁହଁନ୍ତି, ସେମାନେ ନିଶ୍ଚୟ ଭଗବାନ । ଏହି କଥା ଭାବୁ ଭାବୁ କଂସ ଦ୍ୱାରା ନିହତ ହୋଇଥିବା ନିଜର ସେହି ଛ' ପୁତ୍ରଙ୍କ କଥା ଦେବକୀଙ୍କର ସଙ୍ଗେ ସଙ୍ଗେ ମନେ ପଡ଼ିଗଲା ଏବଂ ସେ ଅସହ୍ୟ ଦୁଃଖରେ କାତର ହୋଇଗଲେ ।

ପୁତ୍ରଦ୍ୱୟଙ୍କୁ ସମ୍ବୋଧନ କରି ଦେବକୀ କହିଲେ, 'ହେ ଅବାଙ୍ଗ-ମାନସ ଗୋଚର ରାମ ଓ କୃଷ୍ଣ ! ତୁମେ ଦୁହେଁ ଯେ ଜଗତ୍‌ସ୍ରଷ୍ଟା, ଅନାଦି ପୁରୁଷ, ସ୍ୱୟଂ ନାରାୟଣ ତାହା ମୋତେ ଅବିଦିତ ନୁହେଁ । ଅଧର୍ମପରାୟଣ ଦୁଷ୍ଟ ସ୍ୱେଚ୍ଛାଚାରୀ ରାଜାମାନଙ୍କୁ ସଂହାର କରି ଭୂଭାର ଲାଘବ କରିବା ନିମନ୍ତେ ତୁମେ ମୋ ଗର୍ଭରୁ ଆବିର୍ଭୂତ ହୋଇଅଛ । ତୁମ ଅଂଶରୁ ଜାତ ମାୟାରୁ ଗୁଣସମୂହର ଉତ୍ପତ୍ତି ଘଟେ, ଗୁଣର ସମନ୍ୱୟ ଓ ନ୍ୟୂନତାରେ ଜଗତର ସୃଷ୍ଟି, ସ୍ଥିତି ଓ ପ୍ରଳୟ ସଂଘଟିତ ହୁଏ । ତୁମେ ବିଶ୍ୱାତ୍ମା । ମୁଁ ତୁମଠାରେ ଶରଣ ନେଉଅଛି । ମୁଁ ଶୁଣିଛି ଯେ, ତୁମେ ଦୁହେଁ ଗୁରୁ ସାନ୍ଦିପନଙ୍କର ମୃତ ପୁତ୍ରକୁ ଯମପୁରରୁ ଫେରାଇ ଆଣିଥିଲ । ତୁମେ ଦୁହେଁ ପରମ ଈଶ୍ୱର । ତେଣୁ ମୋର ମନୋବାଞ୍ଛା ପୂରଣ କରି ଦୁରାଚାରୀ କଂସ ଦ୍ୱାରା ନିହତ ହୋଇଥିବା ମୋର ମୃତ ପୁତ୍ରମାନଙ୍କୁ ତୁମେ ଲେଉଟାଇ ଆଣ ।'

ମାତାଙ୍କ ଆଦେଶାନୁସାରେ କୃଷ୍ଣ ଓ ବଳରାମ ସଙ୍ଗେ ସଙ୍ଗେ ଯୋଗମାୟାଙ୍କୁ ଆଶ୍ରୟ କରି ଦୈତ୍ୟରାଜ ବଳି ଅବସ୍ଥାନ କରୁଥିବା

ସୁତଳକୁ ଯାତ୍ରାକଲେ । ଭଗବାନଙ୍କୁ ଦର୍ଶନ କରି ବଳି ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ସପରିବାରେ କୃଷ୍ଣ ଓ ବଳରାମଙ୍କୁ ପୂଜାର୍ଚ୍ଚନା କଲେ ।

ବଳି କହିଲେ, 'ପ୍ରଭୁ, ଆପଣଙ୍କର ଏହି ଆଗମନର ଅଭିପ୍ରାୟ ଓ ଆବଶ୍ୟକୀୟ ଆଦେଶ ପ୍ରଦାନ କରି ଏ ଅଧୀନକୁ କୃତାର୍ଥ କରନ୍ତୁ । ଚରାଚର ଜଗତର ଯେ ଈଶ୍ୱର, ତାଙ୍କର ଆଦେଶ ପାଳନ କରିବା ମୋ ପକ୍ଷରେ ପରମ ସୌଭାଗ୍ୟର ବିଷୟ ହେବ ।'

କୃଷ୍ଣ କହିଲେ, 'ଦୈତ୍ୟରାଜ, ସ୍ୱାୟମ୍ଭୁବ ମନ୍ୱନ୍ତରରେ ପ୍ରଜାପତି ମରୀଚିଙ୍କ ପତ୍ନୀ ଊର୍ଣ୍ଣାଙ୍କ ଗର୍ଭରୁ ଛ' ଗୋଟି ପୁତ୍ର ଉତ୍ପନ୍ନ ହୋଇଥିଲେ; ସେମାନେ ସମସ୍ତେ ଥିଲେ ଦେବତା । ବ୍ରହ୍ମାଙ୍କର କୌଣସି କାର୍ଯ୍ୟକୁ ସେମାନେ ପରିହାସ କରୁଥିବାରୁ ବ୍ରହ୍ମା କୋପାନ୍ୱିତ ହୋଇ ସେମାନଙ୍କୁ ଅସୁର ଯୋନିରେ ଜନ୍ମଲାଭ କରିବାକୁ ଅଭିଶାପ ଦେଇଥିଲେ; ଫଳରେ ସେମାନେ ହିରଣ୍ୟକଶିପୁଙ୍କର ପତ୍ନୀଙ୍କ ଗର୍ଭରେ ଆବିର୍ଭୂତ ହୋଇଥିଲେ; କିନ୍ତୁ ମହାମାୟାଙ୍କ ପ୍ରଭାବରେ ସେମାନଙ୍କୁ ସ୍ଥାନାନ୍ତରିତ କରି ମାତା ଦେବକୀଙ୍କ ଗର୍ଭରେ ସଂସ୍ଥାପିତ କରିବାରୁ ସେମାନେ ଦେବକୀଙ୍କ ଗର୍ଭରୁ ଜନ୍ମ ହୋଇଥିଲେ; ପରେ କଂସ ସେମାନଙ୍କୁ ହତ୍ୟା କରିଥିଲା । ବର୍ତ୍ତମାନ ମାତା ସେହି ନିହତ ସନ୍ତାନଙ୍କ ପାଇଁ ଶୋକ କରୁଅଛନ୍ତି । ସେହି ମୃତ ପୁତ୍ରମାନେ ବର୍ତ୍ତମାନ ତୁମର ଏହି ସୁତଳରେ ବାସକରୁ ଅଛନ୍ତି । ମାତାଙ୍କର ଶୋକର ଅପନୋଦନ ନିମନ୍ତେ ସେମାନଙ୍କୁ ଏଠାରୁ ନେବା ପାଇଁ ଆମ୍ଭେମାନେ ଆସିଅଛୁ । ସେମାନେ ଯଥାସମୟରେ ମୋର ଅନୁଗ୍ରହ ବଳରେ ଶାପମୁକ୍ତ ହୋଇ ଦେବଲୋକକୁ ଯାତ୍ରା କରିବେ ।'

ଦୈତ୍ୟରାଜ ବଳି ସଙ୍ଗେ ସଙ୍ଗେ କୃଷ୍ଣଙ୍କର ଆଦେଶାନୁସାରେ ସେହି ଛ' ଜଣ ପୁତ୍ରଙ୍କୁ ଆଣି କୃଷ୍ଣଙ୍କୁ ଅର୍ପଣ କରିବାରୁ, ଅଗ୍ରଜମାନଙ୍କୁ ସଙ୍ଗରେ ନେଇ କୃଷ୍ଣ ଓ ବଳରାମ ମାତା ଦେବକୀଙ୍କ ହସ୍ତରେ ସେମାନଙ୍କୁ ସମର୍ପଣ କଲେ । ପୁତ୍ରମାନଙ୍କୁ ଦର୍ଶନ କରିବା ମାତ୍ରେ ଦେବକୀଙ୍କ ସ୍ତନରୁ ସ୍ୱତଃ ଦୁଗ୍ଧ କ୍ଷରିତ ହେବାକୁ ଲାଗିଲା ଏବଂ ପୁତ୍ରମାନଙ୍କୁ କୋଳକୁ ନେଇ ସେ ଆଦର କରିବାକୁ ଲାଗିଲେ । କୃଷ୍ଣ ପାନ କରୁଥିବା ଦେବକୀଙ୍କ

ସ୍ତନ୍ୟକୁ ସେହି ମସ୍ଥିତ ପୁତ୍ରମାନେ ପାନ କରିବା ମାତ୍ରେ ଦେବ ଅଭିଶାପରୁ ସେମାନେ ମୁକ୍ତି ଲାଭ କରିଥିଲେ ଏବଂ ପିତା ମାତା ତଥା କୃଷ୍ଣ ଓ ବଳରାମଙ୍କୁ ପ୍ରଣାମ କରି ସ୍ୱଦେହରେ ଆକାଶପଥରେ ସେମାନେ ଦେବଲୋକକୁ ଯାତ୍ରା କରିଥିଲେ ।

ଭଗବାନ କୃଷ୍ଣଙ୍କ ଦ୍ୱାରା ଅନୁଷ୍ଠିତ ମୃତବ୍ୟକ୍ତିଙ୍କ ପୁନରାଗମନ ପରି ସେହି ଅଲୌକିକ କାର୍ଯ୍ୟ ଦର୍ଶନ କରି ଦେବକୀ ପ୍ରମୁଖ ବିସ୍ମିତ ଓ ଭଗବାନଙ୍କର ଅପୂର୍ବ ମାୟାଶକ୍ତିରେ ଏକାବେଳେ ଅଭିଭୂତ ହୋଇ ପଡ଼ିଲେ ।



## ୧ ଯଦୁ-ବଂଶ ପ୍ରତି ବ୍ରହ୍ମ ଅଭିଶାପ

ଭଗବାନ କୃଷ୍ଣ ଓ ବଳରାମ ବହୁ ଦୁଷ୍ଟ ଓ ସ୍ୱେଚ୍ଛାଚାରୀମାନଙ୍କୁ ସଂହାର କରି ଧରଣୀର ଭାର ବହୁ ପରିମାଣରେ ଲାଘବ କଲେ । କୌରବମାନେ ଦ୍ୟୂତକ୍ରୀଡ଼ାରେ କପଟତାର ଆଶ୍ରୟ ନେଇ ଧର୍ମପ୍ରାଣ ପାଣ୍ଡବମାନଙ୍କୁ ଅଯଥା ପୀଡ଼ିତ ଓ ଦ୍ରୌପଦୀଙ୍କୁ ଅପମାନିତ କରିଥିବାରୁ କୌରବମାନଙ୍କ ପ୍ରତି ପାଣ୍ଡବମାନେ ବିଶେଷ କ୍ରୋଧାନ୍ୱିତ ଥିଲେ; ପାଣ୍ଡବମାନେ ନିମିତ୍ତମାତ୍ର କରି ଭଗବାନ କୃଷ୍ଣ କୁରୁକ୍ଷେତ୍ରରେ ଉଭୟ ପକ୍ଷଙ୍କର ବହୁ ରାଜା ଓ ବୀରଙ୍କୁ ସଂହାର କଲେ ।

ତେବେ, କୃଷ୍ଣ ଚିନ୍ତା କଲେ, 'ମୋ ବାହୁବଳରେ ସୁରକ୍ଷିତ ଏହି ଯାଦବମାନେ ବିନାଶପ୍ରାପ୍ତ ନ ହେବା ପର୍ଯ୍ୟନ୍ତ ପୃଥିବୀର ଭାର ସମ୍ପୂର୍ଣ୍ଣ ରୂପେ ଲାଘବ ହୋଇପାରିବ ନାହିଁ । ଯାଦବମାନେ ମୋର ଆଶ୍ରିତ ହୋଇ ମଧ୍ୟ ଧନ, ଜନ, ଐଶ୍ୱର୍ଯ୍ୟ ସମ୍ପର୍କରେ ଆସି ଦିନକୁ ଦିନ ଅଧିକ ଉଚ୍ଛୃଙ୍ଖଳ ହୋଇ ପଡ଼ୁଛନ୍ତି । ଏମାନେ ପରାକ୍ରମଶାଳୀ ହୋଇଥିବାରୁ ଅନ୍ୟ ହସ୍ତରେ ଏମାନଙ୍କର ପରାଭବ ମଧ୍ୟ ସମ୍ଭବ ନୁହେଁ । ଅରଣ୍ୟରେ ବାଉଁଶ ସହିତ ବାଉଁଶର ସଂଘର୍ଷରେ ଉତ୍ପନ୍ନ ହେଉଥିବା ଅଗ୍ନିରେ ସମସ୍ତ ଅରଣ୍ୟ ବିନାଶପ୍ରାପ୍ତ ହେବା ପରି ପରସ୍ପର କଳହ ମଧ୍ୟରେ ଏହି ବିଶାଳ ଯଦୁବଂଶର ଅବସାନ ଘଟାଇ ମୁଁ ଇହଲୀଳା ସାଙ୍ଗ କରି ସ୍ୱଧାମକୁ ଯାତ୍ରା କରିବି ।'

ଏହିପରି ଚିନ୍ତା ଓ ପରିକଳ୍ପନା କରି ଭଗବାନ କୃଷ୍ଣ ଯାଦବମାନଙ୍କୁ ବିନାଶ କରିବା ନିମନ୍ତେ ଦ୍ୱାରକାପୁରରେ କାଳ ରୂପରେ ଅବସ୍ଥାନ କଲେ ।

ନାରଦ, ବିଶ୍ୱାମିତ୍ର, ଅସିତ, ଦୁର୍ବାସା, କଣ୍ୱ, ଭୃଗୁ, ବଶିଷ୍ଠ, ଅଙ୍ଗିରା, ଅତ୍ରି, ବାମଦେବ ଓ କଶ୍ୟପ ପ୍ରମୁଖ ବ୍ରହ୍ମର୍ଷି ଓ ଦେବର୍ଷି ତଥା ମହର୍ଷିମାନେ ଭଗବାନ କୃଷ୍ଣ ଅବସ୍ଥାନ କରୁଥିବା ଦ୍ୱାରକା ନିକଟବର୍ତ୍ତୀ

ପିଣ୍ଡାରକ କ୍ଷେତ୍ରରେ ସମବେତ ହୋଇଥାନ୍ତି, ସେହି ସମୟରେ ଯଦୁବଂଶର କେତେ ଜଣ ଉଚ୍ଛୃଙ୍ଖଳ ବାଳକ ପଥଘାଟରେ ଖେଳୁ ଖେଳୁ କୃଷ୍ଣଙ୍କର ପୁତ୍ର ଶାମ୍ବଙ୍କୁ ଏକ ଗର୍ଭବତୀ ନାରୀ ପରି ବେଶଯତ୍ନ କରି ସେହି ମହର୍ଷି-ମାନଙ୍କ ନିକଟକୁ ଗଲେ ଏବଂ ସେମାନଙ୍କର ଉଦ୍ଧତ ସ୍ୱଭାବକୁ ଗୋପନ କରି ଅତ୍ୟନ୍ତ ବିନୟପୂର୍ଣ୍ଣ ଭାବରେ ଋଷିମାନଙ୍କ ଚରଣରେ ପ୍ରଣିପାତ ହୋଇ ଛଳନାପୂର୍ଣ୍ଣ ଭାବରେ କହିଲେ, 'ହେ ତ୍ରିକାଳଦର୍ଶୀ ବ୍ରାହ୍ମଣମାନେ, ଆମ ସଙ୍ଗରେ ଆସିଥିବା ଏହି ଲଜ୍ଜନମ୍ରା ସୁନ୍ଦରୀ ନାରୀଟି ଆସନ୍ନପ୍ରସବା । ପୁତ୍ର ସନ୍ତାନଟିଏ ଲାଭ କରିବାକୁ ସେ ବହୁ ଆଶା ପୋଷଣ କରିଅଛି ଅଥଚ ସେ ଲଜ୍ଜାପରବଶ ହୋଇ ଆପଣମାନଙ୍କୁ ମୁହଁ ଖୋଲି କିଛି କହିପାରୁନାହିଁ । ତେଣୁ ତା'ର ଇଚ୍ଛାନୁସାରେ ଆମ୍ଭେମାନେ ଆପଣମାନଙ୍କୁ ପଚାରୁଛୁ, ତା' ଗର୍ଭରୁ ପୁତ୍ର ନା କନ୍ୟା, କ'ଣ ଜାତ ହେବ ଦୟାକରି କହନ୍ତୁ ।'

ସେହି ତ୍ରିକାଳଦର୍ଶୀ ତପଃସିଦ୍ଧ ମହର୍ଷିମାନେ ଐଶ୍ୱର୍ଯ୍ୟମଦମତ୍ତ ଯାଦବ କୁମାରମାନଙ୍କର ସେପରି ଉଚ୍ଛୃଙ୍ଖଳ ବ୍ୟବହାରକୁ ଅତ୍ୟନ୍ତ ଅପମାନିତ ବୋଧକଲେ; ଫଳରେ ସେମାନେ କ୍ରୋଧାନ୍ୱିତ ହୋଇ କହିଲେ, 'ରେ ମୂର୍ଖଗଣ, ସେ ଏକ ଲୌହମୂଷଳ ପ୍ରସବ କରିବ ଯାହା ଦ୍ୱାରା କି ତୁମର ଏହି ବିଶାଳ ବଂଶ ସମୂଳେ ବିନାଶପ୍ରାପ୍ତ ହେବ ।'

କ୍ରୋଧାନ୍ୱିତ ଋଷିମାନଙ୍କ ମୁଖରୁ ସେପରି ଅପ୍ରତ୍ୟାଶିତ ଅଭିଶାପ ଶ୍ରବଣ କରି ଦୁଷ୍ଟସ୍ୱଭାବସମ୍ପନ୍ନ ହେଲେ ମଧ୍ୟ ସେହି ଯାଦବବାଳକମାନେ ଅତ୍ୟନ୍ତ ଭୟଭୀତ ହୋଇପଡ଼ିଲେ । ନାରୀ ବେଶରେ ସଜ୍ଜିତ ହୋଇଥିବା ଶାମ୍ବର ଦେହରୁ ବେଶପଟା ଖୋଲୁ ଖୋଲୁ, ତା'ର ଉଦର ଉପରେ ଗୁଡ଼ାଯାଇଥିବା ଲୁଗାନେଞ୍ଚା ମଧ୍ୟରୁ ଏକ ଲୌହମୂଷଳ ବାହାରିବାର ସେମାନେ ଦେଖିଲେ । ସେହି ଦୃଶ୍ୟରେ ସେମାନଙ୍କର ବିସ୍ମୟ ଓ ଭୟର ସୀମା ରହିଲା ନାହିଁ ।

ସେମାନେ ପରସ୍ପରରେ କୁହାକୁହି ହେଲେ, 'ହାୟ; ଆମ୍ଭେମାନେ କି ହତଭାଗା ସତେ ! ଦେବତୁଲ୍ୟ ଋଷିମାନଙ୍କ ସହିତ ଏପରି ଅଯଥା ଥଟ୍ଟା ପରିହାସ କରିବାକୁ ଯାଇ ଆମେ କି ସର୍ବନାଶକୁ ଡାକି

ଆଣିଲେ ! ଆମକୁ ଲୋକେ କ'ଣ କହିବେ ? ଆମେ ସେମାନଙ୍କ ଆଗରେ କିପରି ମୁହଁ ଦେଖାଇବା ? ହାୟ୍...ହାୟ୍ !

ଏହିପରି ବିଳାପ କରିକରି ପରମ ଦୁଃଖକାତର ସେହି ଯାଦବ କୁମାରମାନେ ଶାମ୍ବର ଉଦରରୁ ବାହାରିଥିବା ସେହି ଲୌହମୂଷଳକୁ ନେଇ ଘରକୁ ଫେରିଲେ ଏବଂ ପରେ ରାଜା ଉଗ୍ରସେନଙ୍କର ରାଜ ଦରବାରକୁ ଯାଇ ଲୌହମୁଷଳକୁ ଦେଖାଇ ଆମୂଳଚୂଳ ସମସ୍ତ କଥା ବର୍ଣ୍ଣନା କଲେ । ସେହି ବ୍ରହ୍ମଅଭିଶାପରୁ ନିଜର ବଂଶକୁ ରକ୍ଷା କରିବା ଉଦ୍ଦେଶ୍ୟରେ ଯଦୁରାଜ ଉଗ୍ରସେନ ଏକ ଉପାୟ ସ୍ଥିର କରି ତଦନୁସ ରେ ସେହି ଲୌହ-ମୂଷଳକୁ ଘୋର ଘୋର ଚୂର୍ଣ୍ଣବିଚୂର୍ଣ୍ଣ କରିଦେଲେ ଏବଂ ବିଶାଳ ଲୌହ-ମୁଷଳରୁ ଏକ ସାମାନ୍ୟ ଅଂଶ ମାତ୍ର ଅବଶେଷ ରହିଲା । ଲୌହମୂଷଳର ସେହି ଚୂର୍ଣ୍ଣ ଓ ଅବଶିଷ୍ଟ ଅଂଶକୁ ନେଇ ଉଗ୍ରସେନ ସମୁଦ୍ର ମଧ୍ୟରେ ଫିଙ୍ଗିଦେଲେ । ମୁଷଳଟି ସମ୍ପୂର୍ଣ୍ଣ ଲୋପ ପାଇଛି ଭାବି ଉଗ୍ରସେନ ନିଶ୍ଚିନ୍ତ ହେଲେ ।

ଏଣେ, ସମୁଦ୍ରର ତରଙ୍ଗରେ ଜଳମଧ୍ୟରେ ନିକ୍ଷିପ୍ତ ହୋଇଥିବା ସେହି ଚୂର୍ଣ୍ଣଗୁଡ଼ିକ ପ୍ରବାହିତ ହୋଇ କୂଳରେ ଆସି ଲାଗିଲା ଏବଂ ସେହି ଚୂର୍ଣ୍ଣ ଲାଗିଥିବା ସ୍ଥାନରେ କାଳକ୍ରମେ ଏରକା ନାମକ ଏକ ଜାତୀୟ ବନ୍ୟ ତୃଣ ଜାତ ହେଲା । ମୂଷଳର ଅବଶିଷ୍ଟ ଲୌହଖଣ୍ଡିକୁ ସମୁଦ୍ରରେ ପକାଇ ଦେବାମାତ୍ରେ ତାକୁ ଖାଦ୍ୟ ବୋଲି ଭାବି ଜଳରେ ଥିବା ଏକ ମାଛ ତାକୁ ଗିଳିପକାଇଲା । ପରେ ମତ୍ସ୍ୟଜୀବୀମାନଙ୍କର ଜାଲରେ ସେହି ମାଛଟି ଧରାପଡ଼ି କଟାଯିବାରୁ ତା'ର ଉଦର ମଧ୍ୟରୁ ସେହି ଲୌହଖଣ୍ଡଟି ଅକ୍ଷତ ଅବସ୍ଥାରେ ବାହାରିଲା । ଗୋଟିଏ ଶବର ସେହି ଲୌହଖଣ୍ଡଟିକୁ ଉତ୍କୃଷ୍ଟ ଲୁହା ବୋଲି ଜାଣିପାରି ଶିକାର କାର୍ଯ୍ୟରେ ବ୍ୟବହୃତ ହେଉଥିବା ଶରର ଅଗ୍ରଭାଗରେ ତାକୁ ନେଇ ଲଗାଇଲା ।

କ୍ରୀଡ଼ାରତ ଉଚ୍ଛୃଙ୍ଖଳ ଯାଦବକୁମାରମାନଙ୍କ ପ୍ରତି ଋଷିମାନେ କ୍ରୁଦ୍ଧ ହୋଇ ବ୍ରହ୍ମଅଭିଶାପ ପ୍ରଦାନ କରିଥିବା କଥା ଭଗବାନ କୃଷ୍ଣ ଯଥା-ସମୟରେ ଜାଣିବାକୁ ପାଇଲେ । ବ୍ରହ୍ମଶାପକୁ ଅନ୍ୟଥା କରି ପାରିବାର

ସମସ୍ତ ଶକ୍ତି ତାଙ୍କର ଥିଲେ ମଧ୍ୟ ଯାଦବକୁଳର ସମୂଳ ବିନାଶ ତାଙ୍କର ଲକ୍ଷ୍ୟ ହୋଇଥିବାରୁ ସେହି ବ୍ରହ୍ମ ଅଭିଶାପକୁ ନିଜର ଲକ୍ଷ୍ୟ ସାଧନ ନିମନ୍ତେ ଯଥାର୍ଥ ଉପଯୋଗ ବୋଲି ମନେକରି ଭଗବାନ କୃଷ୍ଣ ଅଭିଶାପର କୌଣସି ପ୍ରତିବିଧାନ ବ୍ୟବସ୍ଥା ନ କରି ବରଂ ତାକୁ ପ୍ରକାରାନ୍ତରେ ଅନୁମୋଦନ କଲେ ।

ଦିନପରେ ଦିନ, ବର୍ଷ ପରେ ବର୍ଷ ଗଡ଼ିଚାଲିଥାଏ ।



# ଭାଗବତ-ଧର୍ମ ଓ ନବ ଯୋଗେନ୍ଦ୍ର ସମ୍ବାଦ

ଭଗବାନ କୃଷ୍ଣଙ୍କୁ ଦର୍ଶନ କରିବା ନିମନ୍ତେ ଦେବର୍ଷି ନାରଦ ଅଧିକାଂଶ ସମୟରେ କୃଷ୍ଣ ଅବସ୍ଥାନ କରୁଥିବା ଦ୍ୱାରକାରେ ବାସ କରୁଥିଲେ । ବସୁଦେବଙ୍କ ଗୃହକୁ ଦିନେ ଦେବର୍ଷି ନାରଦ ଆସିଥିବା ସମୟରେ ପାଦ୍ୟଅର୍ଘ୍ୟାଦି ଦ୍ୱାରା ଦେବର୍ଷିଙ୍କୁ ଯଥୋଚିତ ସମ୍ମାନିତ କରି ବସୁଦେବ କହିଲେ, 'ଦେବର୍ଷି, ପିତାମାତାଙ୍କର ଶୁଭାଗମନ ଯେପରି ପୁତ୍ର କନ୍ୟାଙ୍କ ପ୍ରତି ସର୍ବଦା କଲ୍ୟାଣପ୍ରଦ ସେହିପରି ଆପଣଙ୍କ ପରି ଉତ୍ତମଶ୍ଳୋକ, ଭଗବଦ୍ପ୍ରାଣ ସାଧୁଙ୍କର ଆବିର୍ଭାବ ସଂସାରତାପକ୍ଲିଷ୍ଟ ସକଳ ଜୀବଙ୍କ ପାଇଁ ସବୁବେଳେ ମଙ୍ଗଳମୟ ହୋଇଥାଏ । ସାଧୁ-ସନ୍ଥମାନେ ସର୍ବଦା ପରମ ମଙ୍ଗଳ କାମନା କରିଥାନ୍ତି କାରଣ ସେମାନଙ୍କର ଚିତ୍ତ ସବୁବେଳେ ନିଃସ୍ୱାର୍ଥପର । ଆପଣଙ୍କର ଏହି କୃପାଦୃଷ୍ଟି ଶୁଭାଗମନରେ ମୁଁ ଅତ୍ୟନ୍ତ କୃତାର୍ଥ ହୋଇଅଛି । ଆପଣ ବ୍ରହ୍ମବିତ୍ । ଯେଉଁ ଧର୍ମ ପାଳନ କଲେ ମର୍ତ୍ତ୍ୟରେ ଜନ୍ମ ଗ୍ରହଣ କରିଥିବା ମୃତ୍ୟୁଭୟଗ୍ରସ୍ତ ମନୁଷ୍ୟମାନେ ଭବଭୟରୁ ନିଷ୍କୃତି ଲାଭ କରିବାକୁ ସମର୍ଥ ହୋଇଥାନ୍ତି, ଦୟାକରି ସେହି ଭାଗବତ ଧର୍ମ ସମ୍ପର୍କରେ ମୋତେ ଉପଦେଶ ପ୍ରଦାନ କରନ୍ତୁ । ମୁଁ ପୂର୍ବଜନ୍ମରେ ଦେବମାୟାରେ ମୋହିତ ହୋଇ ମୋକ୍ଷପ୍ରାପ୍ତି ପାଇଁ ଅଭିଳାଷୀ ନ ହୋଇ ପୁତ୍ରବାନ୍ ହେବା ନିମନ୍ତେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିଥିଲି । ସେଥିପାଇଁ ମୋର ଦୁଃଖର ସୀମା ନାହିଁ । ଭବସାଗରରୁ ମୁଁ ଯେପରି ଅନାୟାସରେ ମୁକ୍ତି ଲାଭ କରିପାରିବି ସେଥିନିମନ୍ତେ ଭାଗବତ ଧର୍ମ ମୋ ନିକଟରେ ଦୟାକରି ପ୍ରକାଶ କରନ୍ତୁ ।'

ବସୁଦେବଙ୍କର ସେହି କଥା ଶୁଣି ଦେବର୍ଷି ନାରଦ କହିଲେ, 'ହେ ଭକ୍ତାଗ୍ରଗଣ୍ୟ, ସର୍ବପାପକ୍ଷୟକାରୀ ଭାଗବତ-ଧର୍ମ ସମ୍ପର୍କରେ ଆପଣଙ୍କ ମୁଖରୁ ଏପରି କଲ୍ୟାଣକର ପ୍ରଶ୍ନ ଉଚ୍ଚାରିତ ହେବା ଏକାନ୍ତ

ଯୁକ୍ତିଯୁକ୍ତ । ଏହି ଭାଗବତ-ଧର୍ମକୁ ଶ୍ରବଣ, ପଠନ, ଚିନ୍ତନ ବା ଆଦର କଲେ ମନୁଷ୍ୟ ପବିତ୍ର ଓ ପୁଣ୍ୟଭାଗୀ ହୋଇଥାଏ । ଆପଣଙ୍କ ନିକଟରେ ଭାଗବତ-ଧର୍ମ ସମ୍ପର୍କରେ ବର୍ଣ୍ଣନା କରିବାକୁ ଯିବା ମୋ ପକ୍ଷରେ ପରମସୌଭାଗ୍ୟର ବିଷୟ ଏବଂ ଭାଗବତ-ଧର୍ମ କଥା ଚିନ୍ତା କଲାବେଳେ ମୋ ଦୃଷ୍ଟି ସମ୍ମୁଖରେ ପରମାନନ୍ଦ ସ୍ୱରୂପ ଭଗବାନ ନାରାୟଣଙ୍କର ଚିତ୍ତଜୟୀ ରୂପ ଓ ଅମୃତଲୀଳା ପ୍ରତିବିମ୍ବିତ ହୋଇଅଛି । ମହାରାଜ ନିମି ଅତୀତରେ ନ'ଜଣ ଋଷଭନନ୍ଦନଙ୍କୁ ଏହି ଭାଗବତ ଧର୍ମ ସମ୍ପର୍କରେ ପ୍ରଶ୍ନ କରିଥିଲେ । ସେହି ପୁରାତନ ଇତିହାସ ମୁଁ ଆପଣଙ୍କ ନିକଟରେ କୀର୍ତ୍ତନ କରୁଅଛି, ସମାହିତ ଚିତ୍ତରେ ଆପଣ ତାହା ଶ୍ରବଣ କରନ୍ତୁ ।'

'ପୂର୍ବକାଳର କଥା । ସ୍ୱାୟମ୍ଭୁବ ମନୁଙ୍କର ପ୍ରିୟବ୍ରତ ନାମରେ ଏକ ପୁତ୍ର ଥିଲେ । ସେହି ପ୍ରିୟବ୍ରତଙ୍କର ପୁତ୍ରଙ୍କର ନାମ ଆଗ୍ନୀଧ୍ର । ଆଗ୍ନୀଧ୍ରଙ୍କ ପୁତ୍ର ନାଭି । ସେହି ନାଭି ଔରସରୁ ଋଷଭ, ନାମରେ ଏକ ପୁତ୍ର ଜାତ ହୋଇଥିଲେ । ମୋକ୍ଷଧର୍ମ ପ୍ରବର୍ତ୍ତନ କରିବା ନିମନ୍ତେ ଭଗବାନ ବାସୁଦେବଙ୍କ ଅଂଶରେ ଋଷଭ ଜନ୍ମ ହୋଇଥିଲେ ବୋଲି କଥିତ ଅଛି । ସେହି ଋଷଭଙ୍କ ଔରସରୁ ଜନ୍ମ ହୋଇଥିବା ଏକଶତ ପୁତ୍ରଙ୍କ ମଧ୍ୟରୁ ନ'ଜଣ ଆତ୍ମବିଦ୍ୟାରେ ବିଶେଷ ସିଦ୍ଧି ଅର୍ଜନ କରିଥିଲେ । ସେମାନଙ୍କର ନାମ ଥିଲା—କବି, ହରି, ଅନ୍ତରୀକ୍ଷ, ପ୍ରବୁଦ୍ଧ, ପିପ୍ପଳାୟନ, ଅବିର୍ହୋତ୍ର, ଦ୍ରାବିଡ଼, ଚମସ ଏବଂ କରଭାଜନ । ସାଂସାରିକ ଜୀବନ ପ୍ରତି ସଦା ଅନାସକ୍ତଚିତ୍ତ ସେହି ଋଷଭନନ୍ଦନଗଣ ଏହି ଚରାଚର ଜଗତକୁ ସର୍ବଦା ଭଗବାନଙ୍କର ସ୍ୱରୂପ ବୋଲି ଜ୍ଞାନକରି ଦିଗମ୍ବର ବେଶରେ ପରମାନନ୍ଦରେ ପୃଥିବୀ ପର୍ଯ୍ୟଟନ କରୁଥିଲେ । ରାଜା ନିମି ଏକ ଯଜ୍ଞାନୁଷ୍ଠାନ କରୁଥିବା ସମୟରେ ସୂର୍ଯ୍ୟସମ ତେଜସ୍ୱୀ, ଆତ୍ମବିଦ୍ୟାନିପୁଣ, ଭଗବାନ୍ ଭକ୍ତ ସେହି ନ'ଜଣ ଋଷଭ-ପୁତ୍ର ଯଜ୍ଞ ସ୍ଥାନରେ ଉପସ୍ଥିତ ହେବାରୁ, ରାଜା ନିମିଙ୍କ ସମେତ ସମବେତ ବ୍ୟକ୍ତିମାନେ ସେମାନଙ୍କ ଉଦ୍ଦେଶ୍ୟରେ ଯଥୋଚିତ ଭବ୍ୟ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କଲେ ଏବଂ ଋଷଭପୁତ୍ରମାନେ ସୁଖରେ ଅବସ୍ଥାନ କଲାପରେ ରାଜା ନିମି ବିନୀତ ଭାବରେ କହିଲେ, 'ହେ ଋଷିଗଣ, ଆପଣମାନଙ୍କୁ ଦର୍ଶନ କରି ମୋର

ମନେ ହେଉଅଛି ଯେ ଆପଣମାନେ ନିଶ୍ଚୟ ମଧୁକୈଟଭ ସଂହାରକାରୀ ଦେବଦେବ ଭଗବାନ ବିଷ୍ଣୁଙ୍କର ପ୍ରିୟ ପାର୍ଷଦ ଏବଂ ଜଗତର କଲ୍ୟାଣ ସାଧନ କରିବା ନିମନ୍ତେ ଆପଣମାନେ ବିଭିନ୍ନ ସ୍ଥାନରେ ଏପରି ବିଚରଣ କରୁଅଛନ୍ତି । ଜୀବମାନଙ୍କ ମଧ୍ୟରେ ମନୁଷ୍ୟ ଶରୀର ଅତ୍ୟନ୍ତ ଦୁର୍ଲଭ ଏବଂ ସେହି କ୍ଷଣଭଙ୍ଗୁର ଦୁର୍ଲଭ ଶରୀରରେ ଭଗବାନଙ୍କ ପ୍ରିୟ ଭକ୍ତ-ମାନଙ୍କର ଦର୍ଶନ ଲାଭ କରିବା ଯେ ପରମ ଦୁର୍ଲଭ ଏଥିରେ ସନ୍ଦେହ ନାହିଁ । ଆପଣମାନଙ୍କ ପରି ଦୁର୍ଲଭ ସାଧୁମାନଙ୍କ ସହିତ ଏପରି ବିରଳ ସାକ୍ଷାତ ଯୋଗ ଲାଭକରିବା ଯେ ମୋ ପରି ଜନ୍ମ-ଜରା ମୃତ୍ୟୁସମନ୍ବିତ, ସଂସାରଚକ୍ରରେ ନିତ୍ୟ ଆବର୍ତ୍ତିତ ହେଉଥିବା କ୍ଷୀଣାୟୁ ବ୍ୟକ୍ତି ପକ୍ଷରେ ପରମ କଲ୍ୟାଣପ୍ରଦ, ଏଥିରେ ସନ୍ଦେହ ନାହିଁ । ହେ ପୁଣ୍ୟାତ୍ମାଗଣ, ଆପଣମାନଙ୍କ ଦର୍ଶନ କଲାପରେ ମୋ ମନରେ ଏକ ପ୍ରଶ୍ନ ଉଦ୍ରେକ ହେଉଅଛି ଯେ, ଯେଉଁ ଧର୍ମର ଅନୁଶୀଳନ କଲେ ଜନ୍ମାଦି ବିକାର-ରହିତ ଜଗଜ୍ଜନ୍ମଯନ୍ତା ଭଗବାନ ସନ୍ତୁଷ୍ଟ ହୁଅନ୍ତି ଏବଂ ନିଜର ସେହି ଭକ୍ତମାନଙ୍କୁ ଆତ୍ମ ସ୍ୱରୂପ ପ୍ରଦାନ କରିଥାନ୍ତି, ସେହି ଭାଗବତ-ଧର୍ମର କଥା, ମୁଁ ଯଦି ତାହା ଶୁଣିବାକୁ ଯୋଗ୍ୟ ହୋଇଥାଏ, ଦୟାକରି ଆପଣମାନେ ମୋ ନିକଟରେ ତାହା କୀର୍ତ୍ତନ କରନ୍ତୁ ।'

ରାଜା ନିମିଙ୍କର ବିନୟପୂର୍ଣ୍ଣ ପ୍ରଶ୍ନ ଶ୍ରବଣ କରି ସେହି ଋଷଭ-ପୁତ୍ରମାନେ ପ୍ରୀତି ଲାଭ କରିଥିଲେ । ସେହି ନ'ଜଣ ଋଷଭପୁତ୍ରଙ୍କ ମଧ୍ୟରୁ କବି ନାମକ ଋଷି ଉତ୍ତର ପ୍ରଦାନ କରିବାକୁ ଯାଇ ପ୍ରଥମେ କହିଲେ, 'ମହାରାଜ, ସଂସାରଚକ୍ରରେ ନିତ୍ୟ ଆବର୍ତ୍ତିତ ହେଉଥିବା ଅଜ୍ଞାନୀ ଜୀବମାନଙ୍କର ଆତ୍ମତତ୍ତ୍ୱ ଉପଲବ୍ଧି କରିବା ନିମନ୍ତେ ଭଗବାନଙ୍କ ମୁଖ-ନିଃସୃତ ସୁଗମ ଉପାୟ ହିଁ ଭାଗବତ-ଧର୍ମ । ଏହି ଧର୍ମକୁ ଅବଲମ୍ବନ କରି ମନୁଷ୍ୟମାନେ ଜୀବନ ଧାରଣ କଲେ, କୌଣସି ବିପଦରେ ପଡ଼ିବାର ସମ୍ଭାବନା ସେମାନଙ୍କର ନ ଥାଏ । ସଂସାରରେ ପରିଦୃଷ୍ଟ ହେଉଥିବା ଧନ, ଜନ, ଆଦି ବିଷୟସକଳ ଅନିତ୍ୟ ଏବଂ ସେସବୁ ପ୍ରତି ମମତା ସ୍ଥାପନ କରିବା ଫଳରେ ଜୀବ ସଦା ଭୟ ଓ ଅଶାନ୍ତି ମଧ୍ୟରେ କାଳାତିପାତ କରିଥାଏ । ସାଂସାରିକ ସକଳ ଭୟ ଓ ଅଶାନ୍ତିରୁ ମୁକ୍ତ ହେବାକୁ ଇଚ୍ଛୁଥିବା ବ୍ୟକ୍ତିମାନେ ଭଗବାନଙ୍କର ଚରଣାରବିନ୍ଦକୁ ନିତ୍ୟ-

ନିରନ୍ତର ଉପାସନା କରିବା ଉଚିତ । ଭଗବତ୍ ଧ୍ୟାନ ଓ ଉପାସନା ଦ୍ୱାରା ସବୁବିଧ ଅସୁବିଧା ଅଚିରେ ଦୂର ହୋଇଥାଏ । ନିଜର ଶରୀର, ବାକ୍ୟ, ମନ, ଇନ୍ଦ୍ରିୟ, ବୁଦ୍ଧି, ଚିତ୍ତ, ଏପରି କି ସଂସ୍କାର ବା ସ୍ୱଭାବ ଅନୁସାରେ ମନୁଷ୍ୟ ଯେଉଁସବୁ କାର୍ଯ୍ୟ ସମ୍ପାଦନ କରେ, ସେ ସମସ୍ତ କାର୍ଯ୍ୟକୁ ପରମେଶ୍ୱର ନାରାୟଣଙ୍କଠାରେ ସମର୍ପଣ କରିଦେବା ଉଚିତ୍ ଏବଂ ପରମେଶ୍ୱରଙ୍କୁ ନିଜର ଗୁରୁ, ଇଷ୍ଟଦେବ ଓ ପରମ ପ୍ରେମାସ୍ପଦ ବୋଲି ଭାବି ଭକ୍ତିର ସହିତ ତାଙ୍କୁ ଧ୍ୟାନ ଓ ଭଜନ କରିବା ବିଧେୟ । ଈଶ୍ୱରବିମୁଖ ବ୍ୟକ୍ତିମାନେ ଭଗବାନଙ୍କ ମାୟାରେ ମୋହିତ ହୋଇ ନିଜକୁ ବଡ଼ ବୋଲି ଭାବନ୍ତି ଓ ସଂସାରରେ ପରିଦୃଷ୍ଟ ହେଉଥିବା ଅନିତ୍ୟ ବସ୍ତୁରେ ଅତ୍ୟଧିକ ମମତା ସ୍ଥାପନ କରି ରୋଗ, ବାର୍ଦ୍ଧକ୍ୟ ଓ ମୃତ୍ୟୁ ଆଦି ଭୟରେ ସତତ ବିଚଳିତ ହୋଇପଡ଼ନ୍ତି । ସ୍ୱପ୍ନ-ଦ୍ରଷ୍ଟାର ନିକଟରେ ସ୍ୱପ୍ନଦୃଶ୍ୟ ସତ୍ୟ ବୋଲି ପ୍ରତୀତ ହେଲାପରି ଏହି ସଂସାର ସ୍ୱପ୍ନପରି ଅନିତ୍ୟ ହୋଇଥିଲେ ମଧ୍ୟ ବିଷୟାସକ୍ତ ବ୍ୟକ୍ତି ଦୃଷ୍ଟିରେ ସଦା ନିତ୍ୟ ବୋଲି ପ୍ରତୀୟମାନ ହୋଇଥାଏ । ନିଜର ମନ ହିଁ ଏପରି ଭ୍ରମ-ଧାରଣା ସୃଷ୍ଟିର ମୂଳ; ତେଣୁ ପ୍ରଥମେ ମନକୁ ସଂଯତ କରିବା ଉଚିତ । ସମସ୍ତ ଲଜ୍ଜା ଓ ସଂକୋଚ ପରିତ୍ୟାଗ କରି ଭଗବାନଙ୍କର ଗୁଣ, ଲୀଳା ଏବଂ ନାମକୁ ନିୟମିତ କୀର୍ତ୍ତନ କରିବା ଉଚିତ । ଯେ ପ୍ରକୃତ ଭକ୍ତ, ସେ ଆକାଶ, ବାୟୁ, ଅନଳ, ଜଳ, ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର, ବୃକ୍ଷଲତା, ପ୍ରାଣୀ, ସ୍ଥାବର ଜଙ୍ଗମ ଏପରି ସକଳ ପଦାର୍ଥରେ ଭଗବାନଙ୍କ ସ୍ୱରୂପକୁ ଦର୍ଶନ କରି ବିଭୋର ହୋଇଥାଏ । ଭଗବାନଙ୍କର ଚରଣରେ ଶରଣାପନ୍ନ ହେଲେ, ତାଙ୍କର ଲୀଳା କୀର୍ତ୍ତନ କଲେ ମନୁଷ୍ୟର ମନରେ ଭଗବାନଙ୍କ ପ୍ରତି ଅଚଳ ଭକ୍ତି ଜାତ ହୋଇଥାଏ ଏବଂ ତାଙ୍କର ସ୍ୱରୂପକୁ ଅନୁଭବ କରିବା ସଙ୍ଗେ ସଙ୍ଗେ ସାଂସାରିକ ବସ୍ତୁ ଓ ଭୋଗ ପ୍ରତି ବୈରାଗ୍ୟଭାବ ପ୍ରାପ୍ତ ହୋଇଥାଏ । ଭଗବାନଙ୍କ ପ୍ରତି ଭକ୍ତି, ତାଙ୍କ ସମ୍ପର୍କରେ ଅନୁଭୂତି ଓ ସଂସାରପ୍ରତି ବୈରାଗ୍ୟଭାବ ଉଦ୍ରେକ ହେଲେ ମନୁଷ୍ୟ ପରମ ଶାନ୍ତି ଅନୁଭବ କରିବା ସଙ୍ଗେ ସଙ୍ଗେ ଭାଗବତତତ୍ତ୍ୱ ପ୍ରାପ୍ତ ହୋଇଯାଏ ।'

ଭାଗବତ ଭକ୍ତଙ୍କର ଲକ୍ଷଣମାନ ବର୍ଣ୍ଣନା କରିବାକୁ ଯାଇ ଦ୍ୱିତୀୟ ଋଷଭନନ୍ଦନ ହରି କହିଲେ, 'ମହାରାଜ, ବିଶ୍ୱନିୟନ୍ତା ଭଗବାନଙ୍କର ସତ୍ତାକୁ ସକଳ ବସ୍ତୁ ଓ ପ୍ରାଣୀଙ୍କ ମଧ୍ୟରେ ଯେଉଁମାନେ

ସମଭାବରେ ଦର୍ଶନ କରନ୍ତି ସେହି ଭକ୍ତମାନେ ଭଗବାନଙ୍କର ପରମ ପ୍ରିୟ ଓ ଉତ୍ତମ ଭାଗବତ ପଦର ଅଧିକାରୀ । ଯେଉଁମାନେ ଭଗବାନଙ୍କୁ ଭକ୍ତି କରିବା, ଭଗବାନ ଭକ୍ତମାନଙ୍କ ସହିତ ମିତ୍ରତା କରିବା, ଦୁଃଖୀ ଓ ଅଜ୍ଞାନୀମାନଙ୍କଠାରେ କରୁଣା କରିବା ଏବଂ ଭଗବତ୍‌ବିଦ୍ୱେଷୀମାନଙ୍କୁ ଘୃଣା କରିବା ଅବସ୍ଥାରୁ ନିଜର ଚିନ୍ତା ଓ କାର୍ଯ୍ୟକୁ ଉପରକୁ ଉଠାଇ ପାରି ନାହାନ୍ତି, ସେମାନେ ମଧ୍ୟମଶ୍ରେଣୀର ଭକ୍ତ । ଯେଉଁମାନେ ଭଗବାନ ସର୍ବବ୍ୟାପୀ ଓ ଅନନ୍ତ ହୋଇଥିଲେ ମଧ୍ୟ ତାହା ହୃଦୟଙ୍ଗମ କରି ନ ପାରି, ଭଗବାନଙ୍କ ବିଗ୍ରହକୁ ଶ୍ରଦ୍ଧାର ସହିତ ପୂଜା ଆରାଧନା ମାତ୍ର କରନ୍ତି, ସେମାନେ ସାଧାରଣ ଶ୍ରେଣୀର ଭକ୍ତ । ମହାରାଜ, ଯେଉଁମାନେ ଅନୁକୂଳ ଅବସ୍ଥାରେ ଆନନ୍ଦିତ ଓ ପ୍ରତିକୂଳ ପରିସ୍ଥିତିରେ ଦୁଃଖିତ କିମ୍ବା ବ୍ୟଗ୍ର ହୁଅନ୍ତି ନାହିଁ ଏବଂ ସାଂସାରିକ ବିଷୟସକଳକୁ ଭଗବାନଙ୍କର ମାୟା ବୋଲି ବୁଝିପାରନ୍ତି, ସେମାନେ ଉତ୍ତମ ଭାଗବତ । ଜନ୍ମ ମୃତ୍ୟୁ, କ୍ଷୁଧା ତୃଷ୍ଣା, କାର୍ଯ୍ୟ ଓ କଷ୍ଟ, ଭୟ ଓ ତୃଷ୍ଣା ଆଦି ମନୁଷ୍ୟର ଶରୀର, ପ୍ରାଣ, ଇନ୍ଦ୍ରିୟ, ମନ ଓ ବୁଦ୍ଧିକୁ ଆଶ୍ରୟ କରିଥାନ୍ତି । ଯେଉଁମାନେ ଭଗବତ୍ ସ୍ମୃତିରେ ତନ୍ମୟ ହୋଇ ରହନ୍ତି ସେମାନଙ୍କୁ କ୍ଷୁଧ ତୃଷ୍ଣା, ଶାରୀରିକ ପୀଡ଼ା ଓ କାମନାଦି ସ୍ପର୍ଶ କଲେ ମଧ୍ୟ ସେମାନେ ତାହା ଜାଣିପାରନ୍ତି ନାହିଁ । ସେମାନଙ୍କ ମନରେ ବିଷୟଭୋଗର ତୃଷ୍ଣା; କର୍ମପ୍ରବୃତ୍ତି ଓ ବାସନ ବଂଶ ଓ ସମ୍ପତ୍ତିର ଅହଙ୍କାର କେବେ ଉଦୟ ହୁଏ ନାହିଁ; ସେମାନଙ୍କର ମନ ପ୍ରଶାନ୍ତ ରହିବା ସଙ୍ଗେ ସଙ୍ଗେ ସର୍ବଦା ଭଗବତ୍ ଚିନ୍ତାରେ ନିବାସ କରୁଥାଏ; ସେଥିପାଇଁ ଭକ୍ତମାନଙ୍କ ମଧ୍ୟରେ ଉତ୍ତମ ଭାଗବତ ପଦର ଅଧିକାରୀ । ମହାରାଜ, ଯେଉଁମାନେ ଭଗବତ୍ ଚିନ୍ତାରୁ ମୁହୂର୍ତ୍ତିକ ପାଇଁ ମଧ୍ୟ ନିଜ ମନକୁ ବିଚ୍ୟୁତ କରନ୍ତି ନାହିଁ, ଭଗବତ୍ ଚିନ୍ତାରେ ସେମାନେ ଏପରି ଅଭ୍ୟସ୍ତ ହୋଇଥାନ୍ତି ଯେ ଅବଶଭାବରେ ଥରେମାତ୍ର ଭଗବାନଙ୍କୁ ସ୍ମରଣ କଲେ ମଧ୍ୟ ସର୍ବପାପବିନାଶକାରୀ ଭଗବାନ ଆଦିଷ୍ଟଚରଣ ବ୍ୟକ୍ତି ପରି ଭକ୍ତର ହୃଦୟକୁ ଛାଡ଼ିପାରି ପାରନ୍ତି ନାହିଁ, ସେହି ବ୍ୟକ୍ତିମାନେ ଭକ୍ତମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଏବଂ ସର୍ବଶ୍ରେଷ୍ଠ ଭାଗବତ ।’

ଅଖିଳ ଜଗତକୁ ସର୍ବଦା ମୋହିତ କରି ରଖିଥିବା ସର୍ବ-ଶକ୍ତିମୟୀ ଭଗବତ୍ ମାୟାର ସ୍ୱରୂପ କ’ଣ ବୋଲି ଜାଣିବାକୁ ରାଜା

ଏହି ଶୁଣିବାରୁ ଶୁକଦେବ ଋଷଭନନ୍ଦନଙ୍କ ଅନୁସରଣ କହିଲେ, 'ମହାରାଜ, ଅସୀମ ଶକ୍ତିର ଅଧିକାରୀ ଭଗବାନ ଯେପରି ଅନାଦି ସେହିପରି ଅନନ୍ତ । ସେ ସ୍ୱୟଂ ଜୀବ ଦେହରେ ପ୍ରବେଶ କରି ଜୀବ ନାମରେ ପରିଚିତ ହୋଇଥାନ୍ତି ଏବଂ ପଞ୍ଚମହାଭୂତ ଦ୍ୱାରା ଦେବତା, ମନୁଷ୍ୟ ଓ ଅନ୍ୟାନ୍ୟ ପ୍ରାଣୀ ପ୍ରଭୃତି ଉତ୍କୃଷ୍ଟ ଓ ନିକୃଷ୍ଟ ଜୀବ ଶରୀର ସୃଷ୍ଟି କରିଥାଆନ୍ତି ଏବଂ ସେହି ଶରୀର ମଧ୍ୟରେ ଅବସ୍ଥାନ କରି ଅନ୍ତଃକରଣର ଅଧିଷ୍ଠାତା ରୂପରେ ଓ ପଞ୍ଚ କର୍ମେନ୍ଦ୍ରିୟ ତଥା ପଞ୍ଚଜ୍ଞାନେନ୍ଦ୍ରିୟର ଅଧିଷ୍ଠାତା ରୂପରେ ନିଜକୁ ଏହିପରି ଏକାଦଶ ଭାଗରେ ବିଭକ୍ତ କରି ଜୀବକୁ ସକ୍ରିୟ କରାଇ-ଥାଆନ୍ତି । ଜୀବ ବିଷୟ ଭୋଗ କରୁ କରୁ ନିଜର ଶରୀରକୁ ଆତ୍ମା ବୋଲି ଭ୍ରମ କରି ବିଷୟଭୋଗରେ ଆସକ୍ତ ଓ ତନ୍ମୟ ହୋଇଯାଏ ଏବଂ ନିଜର ଶୁଭ ଓ ଅଶୁଭ କର୍ମଦ୍ୱାରା ପାପପୁଣ୍ୟାଦି କର୍ମଫଳ ଭୋଗକରି ସଂସାର-ଚକ୍ରରେ ଆବର୍ତ୍ତିତ ହୋଇ ପ୍ରଳୟକାଳ ପର୍ଯ୍ୟନ୍ତ ଜନ୍ମ-ମରଣ-ସ୍ରୋତରେ ଭାସମାନ ହେଉଥାଏ । ପ୍ରଳୟ ସମୟ ସନ୍ନିକଟ ହେଲେ ପଞ୍ଚ ମହାଭୂତର ବିନାଶ ଘଟିବାର ଉପକ୍ରମ ହୁଏ ଏବଂ ସେତେବେଳେ କାଳ ଦ୍ରବ୍ୟଗୁଣ ସ୍ୱରୂପ ସ୍ଥୂଳ ଓ ସୂକ୍ଷ୍ମ ରୂପରେ ବ୍ୟକ୍ତ ପ୍ରପଞ୍ଚକୁ ଅବ୍ୟକ୍ତ ପ୍ରକୃତିରେ ରୂପାନ୍ତରିତ କରିବାକୁ ଆକର୍ଷଣ କରେ । ସେହି ସମୟରେ ବ୍ରହ୍ମାଣ୍ଡରେ ଶତ ବର୍ଷ ବ୍ୟାପୀ ଭୟଙ୍କର ଅନାବୃଷ୍ଟି ଘଟେ ଓ ସୂର୍ଯ୍ୟଙ୍କର ପ୍ରଚଣ୍ଡ କିରଣ ତ୍ରିଭୁବନକୁ ସନ୍ତପ୍ତ କରେ ଏବଂ ଶେଷନାଗଙ୍କ ମୁଖ ନିଃସୃତ ପ୍ରଳୟାନଳ ପ୍ରଳୟକାଳୀନ ପ୍ରବଳ ପବନ ପ୍ରବାହରେ ପ୍ରଜ୍ୱଳିତ ହୋଇ ଚତୁର୍ଦ୍ଦିଗକୁ ଦଗ୍ଧ କରେ । ଏହିପରି ଏକଶତ ବର୍ଷ ଅତିବାହିତ ହେବା ପରେ ସମ୍ବର୍ତ୍ତକ ନାମକ ପ୍ରଳୟକାଳୀନ ଜଳଦଗଣ ଶତବର୍ଷ କାଳ ଧରି ପ୍ରବଳଧାରାରେ ବର୍ଷା କରନ୍ତି; ଫଳରେ ଅଖିଳ ବିଶ୍ୱ ସେହି ବର୍ଷାଜଳରେ ମଗ୍ନ ହୋଇଯାଏ । ପ୍ରଳୟାନଳ ପ୍ରଶମିତ ହୁଏ । ଜଳବିହୀନା ବସୁଧାର ଗନ୍ଧକୁ ବାୟୁ ହରଣ କରେ । ଜଳ ରସଗୁଣ ପରିତ୍ୟାଗ କରି ଜ୍ୟୋତିରେ ପରିଣତ ହୁଏ, ଜ୍ୟୋତି ବାୟୁରେ, ବାୟୁ ଆକାଶରେ, ଆକାଶ ତାମସ ଅହଙ୍କାରରେ, ଇନ୍ଦ୍ରିୟ ଓ ବୁଦ୍ଧି ରାଜସ ଅହଙ୍କାରରେ ମନ ଓ ଦେବତାଗଣ ସାତ୍ତ୍ୱିକ ଅହଙ୍କାରରେ ଓ ଏହି ତ୍ରିବିଧ ଅହଙ୍କାର ମହତ୍ତତ୍ତ୍ୱରେ ଏବଂ ପରିଶେଷରେ ମହତ୍ତତ୍ତ୍ୱ ମୂଳ ପ୍ରକୃତିରେ ଓ ପ୍ରକୃତି ବ୍ରହ୍ମରେ ବିଲୀନ ହୁଅନ୍ତି । ପୁନର୍ବାର ବିପରୀତ

ସମଚରେ ସୃଷ୍ଟି ଘଟିଥାଏ । ଏହା ହିଁ ସୃଷ୍ଟି, ସ୍ଥିତି ଓ ସଂହାରକର୍ତ୍ତା ଭଗବାନଙ୍କର ତ୍ରିଗୁଣମୟୀ ମାୟା ।'

ଏହି ଦୁସ୍ତର ମାୟାକୁ ସ୍ଥୂଳବୁଦ୍ଧିସମ୍ପନ୍ନ ମନୁଷ୍ୟମାନେ କପରି ଅନାୟାସରେ ଅତିକ୍ରମ କରିପାରିବେ ସେ ସମ୍ପର୍କରେ ରାଜା ନମି ପ୍ରଶ୍ନ କରିବାରୁ ଚତୁର୍ଥ ଋଷଭନନ୍ଦନ ପ୍ରବୁଦ୍ଧ କହିଲେ, 'ମହାରାଜ, ସାଂସାରିକ ବନ୍ଧନରେ ଆବଦ୍ଧ ଥିବା ମନୁଷ୍ୟ ସୁଖପ୍ରାପ୍ତି ତଥା ଦୁଃଖନିବୃତ୍ତି ନିମନ୍ତେ ବହୁ ଚେଷ୍ଟା କଲେ ମଧ୍ୟ ତହିଁରେ ସଫଳକାମ ହୋଇପାରେ ନାହିଁ । ପ୍ରକୃତ ସୁଖ ଲାଭ କରିବା ଦୂରର କଥା, ଦୁଃଖର ମାତ୍ରା ହିଁ ବୃଦ୍ଧି ପାଇଥାଏ । ତା'ର କାରଣ ବହୁ ଚେଷ୍ଟା ଓ ଯତ୍ନ କରି ମନୁଷ୍ୟ ଯାହାକୁ ପାର୍ଥିବ ବିଷୟ ଅର୍ଜନ କରେ ସେସବୁ ଅନିତ୍ୟ ଓ କ୍ଷୟଶୀଳ ଏବଂ ଦୁଃଖସଙ୍କୁଳ । ତେଣୁ ସେସବୁ ଦ୍ୱାରା ସୁଖ ପୁଣି ଚିରସ୍ଥାୟୀ ସୁଖ ଲାଭକରିବା ଧୃଷ୍ଟତା ମାତ୍ର । ଏହି ଅନୁଭୂତିରୁ ପ୍ରତ୍ୟେକ ମନୁଷ୍ୟ ହୃଦୟଙ୍ଗମ କରିବା ଉଚିତ ଯେ ଇହଲୋକ ପରି ପରଲୋକ ମଧ୍ୟ କ୍ଷଣସ୍ଥାୟୀ । ତେଣୁ ଭଗବତ୍ ମାୟାରୁ ନିସ୍ତାର ଲାଭ କରିବାକୁ ଚାହୁଁଥିବା ବ୍ୟକ୍ତିମାନେ ବେଦଜ୍ଞ, ବ୍ରହ୍ମଜ୍ଞାନୀ, ଶାନ୍ତଚିତ୍ତ ଏବଂ ଗୁରୁଙ୍କର ଶରଣାଗତ ହେବା ସର୍ବତୋଭାବେ କରଣୀୟ । ଅତଏବ ଭକ୍ତିର ସହିତ ଗୁରୁଙ୍କୁ ପରମଦେବତା ବୋଲି ଜ୍ଞାନ କରି ତାଙ୍କୁ ନିଷ୍ଠାପୂର୍ଣ୍ଣ ଭାବରେ ସେବା କରିବା ଉଚିତ ଏବଂ ତାଙ୍କଠାରୁ ଭାଗବତ-ଧର୍ମ ଶିକ୍ଷା ଲାଭ କରିବାକୁ ଯତ୍ନ କରିବା ଉଚିତ । ଏହିପରିଭାବରେ ଭାଗବତ-ଧର୍ମ ଅନୁଶୀଳନ କଲେ ସର୍ବ ଦୁଃଖହର୍ତ୍ତା ସର୍ବାତ୍ମା ଭଗବାନ ହରି ଭକ୍ତର ମନୋବାଞ୍ଛା ପୂର୍ଣ୍ଣ କରିବା ସଙ୍ଗେ ସଙ୍ଗେ ଭକ୍ତ ପ୍ରତି ପ୍ରସନ୍ନ ହୋଇଥାନ୍ତି । ଭଗବତ-ଧର୍ମ ଶିକ୍ଷାଲାଭ କଲାବେଳେ ପ୍ରଥମେ ନିଜର ଶରୀର ତଥା ପୁତ୍ରପରିବାରଙ୍କ ପ୍ରତି ଅନାସକ୍ତି ଓ ଭଗବତ୍ ଭକ୍ତ ତଥା ସାଧୁମାନଙ୍କ ପ୍ରତି ଗଭୀର ଆସକ୍ତି ପୋଷଣ କରିବା ଉଚିତ । ପ୍ରାଣୀମାନଙ୍କ ପ୍ରତି ଦୟା, ମୈତ୍ରୀ, ବିନୟ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଶୌଚ, ତପସ୍ୟା, କ୍ଷମା, ମୌନ, ସ୍ୱାଧ୍ୟାୟ, ସାରଲ୍ୟ, ବ୍ରହ୍ମଚର୍ଯ୍ୟ ଅହିଂସା ଏବଂ ସମତ୍ୱ ଭାବ ପୋଷଣ କରିବାକୁ ଶିକ୍ଷା କରିବା ବିଧେୟ । ସ୍ଥାବର ଜଙ୍ଗମ ଇତ୍ୟାଦି ଯାବତୀୟ ଦୃଶ୍ୟବସ୍ତୁରେ ଭଗବତ୍ ସ୍ୱରୂପ

ପ୍ରତ୍ୟକ୍ଷ କରିବା ଭଗବତ-ଧର୍ମର ପ୍ରଧାନ ଅଙ୍ଗ । ନିର୍ଜନବାସ, ଅଭିମାନତ୍ୟାଗ, ପଞ୍ଚବସ୍ତ୍ରପରିଧାନ ଏବଂ ଅନାୟାସଲବ୍ଧ ବସ୍ତୁ-ଭୋଗରେ ସନ୍ତୋଷ ଲାଭ କରିବାରେ ଅଭ୍ୟସ୍ତ ହେବା ବିଧେୟ । ଭଗବତ୍ ପ୍ରତିପାଦକ ସତ୍ ଗ୍ରନ୍ଥରେ ଶ୍ରଦ୍ଧାଭାବ ପୋଷଣ, ସତ୍ୟ ଭାଷଣ, ମନ ଓ ଇନ୍ଦ୍ରିୟର ସଂଯମ ସାଧନ, ତଥା ଭଗବତ୍ ଲୀଳା ଶ୍ରବଣ, କୀର୍ତ୍ତନ ଓ ମନନ କରିବା ସହିତ ଏହି ଶରୀର ଓ ଜୀବନ କେବଳ ଭଗବାନଙ୍କ ଆରାଧନା ନିମନ୍ତେ ଉଦ୍ଦିଷ୍ଟ ବୋଲି ଜ୍ଞାନ କରିବା ସର୍ବାଦୌ କର୍ତ୍ତବ୍ୟ । ଯଜ୍ଞ, ଦାନ, ତପସ୍ୟା, ସଦାଚାର ଆଦି ପାଳନ, ପତ୍ନୀ, ପୁତ୍ର, ଗୃହ, ସମ୍ପତ୍ତି ଆଦି ସକଳ ପ୍ରିୟବସ୍ତୁକୁ ଭଗବାନଙ୍କ ଆରାଧନା ନିମନ୍ତେ ସମର୍ପଣ କରିବା, ସର୍ବଦା ଭଗବାନଙ୍କ ନାମ ଓ ଲୀଳା ଶ୍ରବଣ କରିବା ବିଧେୟ । ଭଗବତ୍ ଭକ୍ତି ମନରେ ଜାତ ହେଲେ ଅପୂର୍ବ ପୁଲକରେ ଭକ୍ତର ସର୍ବାଙ୍ଗ ରୋମାଞ୍ଚିତ ହୋଇଉଠେ ଏବଂ ସେହିପରି ରୋମାଞ୍ଚ ଉଦ୍ରେକକାରୀ ଭଗବତ ଭକ୍ତି ମନରେ ଜାତ ହେଲେ ଭକ୍ତ ପାଖରେ ନାରାୟଣ ପରାୟଣ ହେବା ସଙ୍ଗେ ସଙ୍ଗେ ଦୁସ୍ତର ମାୟାକୁ ଅତିକ୍ରମ କରିବା ସମ୍ଭବ ହୋଇଥାଏ ।'

'ନାରାୟଣ' ନାମରେ ପରିଚିତ ପରମବ୍ରହ୍ମ ପରମାତ୍ମାଙ୍କ ସ୍ୱରୂପ କ'ଣ ବୋଲି ରାଜା ନିମି ଜାଣିବାକୁ ଆଗ୍ରହୀ ହେବାରୁ ପଞ୍ଚମ ଋଷଭପୁତ୍ର ମହର୍ଷି ପିପ୍‌ପଳାୟନ କହିଲେ, 'ମହାରାଜ, ଏହି ଅଖିଳ ଜଗତର ସୃଷ୍ଟି, ସ୍ଥିତି, ଲୟର ଯେ କାରଣ ଅଥଚ ନିଜ ସୃଷ୍ଟି ସମ୍ପର୍କରେ ସ୍ୱୟଂ କାରଣ-ରହିତ, ସ୍ୱପ୍ନ, ଜାଗରଣ ଓ ସୁସୁପ୍ତି ସମୟରେ ସାକ୍ଷୀ ରୂପରେ ସେ ସର୍ବଦା ଅବସ୍ଥାନ କରିଥାନ୍ତି, ଯାହାଙ୍କ ସତ୍ତାର ସଂସ୍ପର୍ଶରେ ଆସି ଶରୀର, ଇନ୍ଦ୍ରିୟ, ପ୍ରାଣ, ମନ ଆଦି ସଜୀବ ଓ ସକ୍ରିୟ ହୋଇଥାନ୍ତି, ସେହି ପରମ ସତ୍ୟ ହିଁ ପରମବ୍ରହ୍ମ ନାରାୟଣ । ଏହି ପରମ ତତ୍ତ୍ୱ ମନ, ବାକ୍ୟ, ଚକ୍ଷୁ ବା ଇନ୍ଦ୍ରିୟ ଦ୍ୱାରା ଅବଲୋକିତ ବା ଅନୁଭୂତ ହୋଇପାରନ୍ତି ନାହିଁ । ଅଖିଳ ଜଗତର ସୃଷ୍ଟିବିଧାନ ପୂର୍ବରୁ କେବଳ ସେ ଏକା ବିଦ୍ୟମାନ ଥିଲେ ଏବଂ ସୃଷ୍ଟି କରିବା ନିମନ୍ତେ ସେ ତ୍ରିଗୁଣ ମୟୀ ହୋଇଥାନ୍ତି । ଯାହା ଆମେ ଦେଖୁଛୁ, ଶୁଣୁଛୁ ବା ଅନୁଭବ କରୁଛୁ, ସେସବୁ ସେହି ବ୍ରହ୍ମର ରୂପାନ୍ତର ମାତ୍ର । ପରମବ୍ରହ୍ମଙ୍କର ଜନ୍ମ ନାହିଁ କି ମୃତ୍ୟୁ ନାହିଁ । ସେ ସର୍ବବ୍ୟାପକ

ଅଥଚ ତାଙ୍କର ବୃଦ୍ଧି ନାହିଁ କି କ୍ଷୟ ନାହିଁ । ସେ ସକଳ କାଳ ଓ ଅବସ୍ଥାରେ ଏକମାତ୍ର ସାକ୍ଷୀ ରୂପରେ ସେ ନିତ୍ୟ ବିଦ୍ୟମାନ । ସେ ସମସ୍ତ ବସ୍ତୁରେ ଅବିଚ୍ଛିନ୍ନ ସୂତ୍ରରେ ଅବିନାଶୀ ଭାବରେ ନିତ୍ୟ ଅବସ୍ଥାନ କରିଅଛନ୍ତି । ଅଣ୍ଡ, ଜରାୟୁ, ଉଦ୍‌ଭିଦ ଓ ସ୍ୱେଦାଦିରୁ ଜାତ ବିଭିନ୍ନ ଜୀବର ଅଙ୍ଗ-ପ୍ରତ୍ୟଙ୍ଗରେ ଯେପରି ପ୍ରାଣବାୟୁ ପ୍ରଚଳିତ ହୁଏ, ସେହିପରି ପରମାତ୍ମା ସର୍ବତ୍ର ଅନ୍ତର୍ଯ୍ୟାମୀ ରୂପରେ ଗମନ କରିଥାନ୍ତି । ସୁଷୁପ୍ତି ଅବସ୍ଥାରେ ଇନ୍ଦ୍ରିୟମାନେ ନିଶ୍ଚେଷ୍ଟ ହୋଇଗଲା ବେଳେ, ଲିଙ୍ଗଶରୀର ମଧ୍ୟ ନିଦ୍ରାଭିଭୂତ ହୋଇପଡ଼େ; ସେହି ସମୟରେ କୂଟସ୍ଥ ଆତ୍ମା ସାକ୍ଷୀ ରୂପରେ ଶରୀରରେ ଜାଗ୍ରତ ରହିଥିବାରୁ ଆତ୍ମାର ଏହି ଅବସ୍ଥାନ ପରେ ସ୍ମୃତି ଦ୍ୱାରା ପରିଜ୍ଞାତ ହୋଇଥାଏ । ସର୍ବକାରଣ କାରଣ ଭଗବାନ ପଦ୍ମନାଭଙ୍କର ଚରଣ ଦର୍ଶନ କରିବା ନିମନ୍ତେ ଆନ୍ତରିକ ଇଚ୍ଛା ଜାତ ହେଲେ ମନରେ ଅପୂର୍ବ ଭଗବତ୍ ଭକ୍ତି ଜାତହୁଏ । ସେପରି ଭକ୍ତି ଜାତ ହେଲେ ଚିତ୍ତର ସକଳ ମଳିନତା ସ୍ୱତଃ ଅପନୋଦିତ ହୋଇଥାଏ ଏବଂ ଚିତ୍ତାକାଶ ଦର୍ପଣ ପରି ସ୍ୱଚ୍ଛ ହୋଇଉଠେ । ଚକ୍ଷୁଷ୍ମାନ ବ୍ୟକ୍ତିମାନେ ଚକ୍ଷୁ ବନ୍ଦକରି ମଧ୍ୟ ଯେପରି ସୂର୍ଯ୍ୟଙ୍କର ଉପସ୍ଥିତି ଅନୁଭବ କରିପାରନ୍ତି, ସେହିପରି ନିର୍ମଳଚିତ୍ତର ବ୍ୟକ୍ତିମାନେ ଜଗଜ୍ଜୀବନ ପରମାତ୍ମା ଓ ତାଙ୍କର ପରମ ତତ୍ତ୍ୱକୁ ଉପଲବ୍‌ଧି କରିପାରନ୍ତି ।'

କେଉଁ କର୍ମ ଫଳରେ ମନୁଷ୍ୟ ପରମାତ୍ମାଙ୍କ ସ୍ୱରୂପ ଅବଗତ ହୋଇ ମୋକ୍ଷ ଲାଭ କରିବାକୁ ସମର୍ଥ ହୋଇଥାଏ ବୋଲି ରାଜା ନିମି ପ୍ରଶ୍ନ କରିବାରୁ, ତା'ର ଉତ୍ତରରେ ଷଷ୍ଠ ଋଷଭନନ୍ଦନ ମହର୍ଷି ଆବିର୍ହୋତ୍ର କହିଲେ, 'ମହାରାଜ, ବେଦ ଅପୌରୁଷେୟ ଏବଂ ତା'ର ତତ୍ତ୍ୱ ଅତ୍ୟନ୍ତ ନିଗୂଢ଼ । ହିତାକାଙ୍‌କ୍ଷୀ ପିତାମାତା ରୋଗଗ୍ରସ୍ତ ସନ୍ତାନକୁ ମିଷ୍ଟାନ୍ନ ଆଦି ଦେବାର ପ୍ରଲୋଭନ ଦେଖାଇ କଟୁ, ତିକ୍ତ-କଷାୟରସ ସମ୍ବଳିତ ଔଷଧ ସେବନ କରାଇ ପ୍ରାଣନାଶକ ରୋଗରୁ ସନ୍ତାନକୁ ଉଦ୍ଧାର କଲାପରି ଜନନୀସ୍ଥାନୀୟା ଶ୍ରୁତି ସଂସାର ରୋଗଗ୍ରସ୍ତ ଜୀବକୁ ରୋଗମୁକ୍ତ କରିବା ଅଭିପ୍ରାୟରେ ଆପାତତଃ ମନୋରମ ସ୍ୱର୍ଗାଦିପ୍ରାପ୍ତ ଆଦି ସୁଖପ୍ରଦ କର୍ମସମୂହର ବିଧାନ ପ୍ରଦାନ କରିଅଛନ୍ତି । ଆତ୍ମଜ୍ଞାନ ଅନଭିଜ୍ଞ ଇନ୍ଦ୍ରିୟପରତନ୍ତ୍ର ମନୁଷ୍ୟ ବେଦବିହିତ କର୍ମପ୍ରତି ଶ୍ରଦ୍ଧାବାନ ନ ହେଲେ

ନିଷିଦ୍ଧ କର୍ମରେ ଆସକ୍ତ ହୋଇ ସର୍ବଦା ମହାପାପରେ ଲିପ୍ତ ହେବାର ସମ୍ଭାବନା ରହିଛି । ଅନାସକ୍ତ ଭାବରେ ବେଦୋକ୍ତ କର୍ମସମୂହକୁ ପାଳନ କରି ସମସ୍ତ କର୍ମଫଳକୁ ଈଶ୍ୱରଙ୍କୁ ସମର୍ପଣ କଲେ, ଜୀବ ନିଗମସ୍ଥ ବ୍ରହ୍ମପ୍ରଦଶା ଲାଭ କରିବାକୁ ସମର୍ଥ ହୁଏ । ଅତି ଅଳ୍ପ ସମୟ ମଧ୍ୟରେ ଯେଉଁମାନେ ଅହଂକାର ବୃତ୍ତିକୁ ଛେଦନ କରିବାକୁ ଇଚ୍ଛା ପୋଷଣ କରନ୍ତି ସେମାନେ ବେଦୋକ୍ତ ପଦ୍ଧତି ସହ ତାନ୍ତ୍ରିକ ପଦ୍ଧତିରେ ଭଗବାନ ବିଷ୍ଣୁଙ୍କର ପୂଜାରାଧନା କରିବା ବିଧେୟ । ପ୍ରଥମେ ଗୁରୁଙ୍କର ପ୍ରସନ୍ନତା ଉଦ୍ରେକ କରି ତାଙ୍କ ପ୍ରଦର୍ଶିତ ଉପଦେଶାନୁସାରେ ନିଜର ଉପଯୋଗୀ ଅଭିପ୍ରେତ ମୂର୍ତ୍ତି ଚିନ୍ତାକରି ମହାପୁରୁଷ ଭଗବାନଙ୍କର ପୂଜାର୍ଚ୍ଚନା କରିବା ବିଧେୟ । ଦେବାର୍ଚ୍ଚନା ସମୟରେ ବିଷ୍ଣୁପ୍ରତିମା ସମ୍ମୁଖରେ ଉପବେଶନ କରି ପ୍ରାଣାୟାମ ଓ ଭୂତଶୁଦ୍ଧି ଦ୍ୱାରା ରକ୍ଷା ବିଧାନ କରି ଭଗବାନଙ୍କର ପୂଜା କରିବା ବିଧିସଙ୍ଗତ । ପୂଜାର ସ୍ଥାନ ସମ୍ମାର୍ଜିତ, ପ୍ରତିମା ଜଳାଦି ଦ୍ୱାରା ପରିଷ୍କୃତ, ପୁଷ୍ପ ଫଳ ଆଦିକୁ ଧୌତାଦି କରି ଏବଂ ନିଜର ଚିତ୍ତକୁ ସଂଯତ କରି ଜଳ ପ୍ରୋକ୍ଷଣ ଦ୍ୱାରା ଆସନ ଶୁଦ୍ଧି କରି, ନ୍ୟାସ ମନ୍ତ୍ରାଦି ଦ୍ୱାରା ହୃଦୟ, ଶିର, ଶିଖା, କବଚ, ନେତ୍ର ଓ କରତଳ ଆଦି ଅଙ୍ଗପ୍ରତ୍ୟଙ୍ଗକୁ ଶୁଦ୍ଧ କରି, ମାଲ୍ୟ, ଧୂପ, ଦୀପ, ପାଦ୍ୟ ଅର୍ଘ୍ୟ, ବସ୍ତ୍ରାଦି ଉପଚାର ଦ୍ୱାରା ଅର୍ଚ୍ଚନା କରି ସମାହିତ ଚିତ୍ତରେ ଭଗବାନଙ୍କର ଧ୍ୟାନାଦି କରିବା ବିଧେୟ । ପୂଜା ସମୟରେ ନିଜର ଅସ୍ତିତ୍ୱକୁ ସମ୍ପୂର୍ଣ୍ଣ ରୂପେ ଭୁଲିଯାଇ ପୂଜ୍ୟ ପୂଜକ ଏକାତ୍ମା ବୋଲି ଅନୁଭବ କରି ଓ ଆତ୍ମା ସ୍ୱରୂପ ଚିନ୍ତାକରି ନିଜର ଦେହ ରୂପକ ମନ୍ଦିରରେ ଭଗବାନଙ୍କର ପୂଜା କରୁଅଛି ବୋଲି ମନରେ ଧାରଣା ଜାତ କରିବା ଉଚିତ । ଯେଉଁ ବ୍ୟକ୍ତି ଏହିପରି ବିଧାନାନୁସାରେ କର୍ମଯୋଗ ଆଚରଣ କରି ଭଗବାନଙ୍କର ଅର୍ଚ୍ଚନା କରେ, ସେ ଅଚିରେ ମୁକ୍ତି ଲାଭ କରିଥାଏ ।’

ଭଗବାନଙ୍କର ଅବତାର ଓ ଲୀଳା ସମ୍ପର୍କରେ ରାଜା ନିମି ପ୍ରଶ୍ନ କରିବାରୁ ସପ୍ତମ ଋଷଭନନ୍ଦନ ମହର୍ଷି ଦ୍ରୁମିଳ କହିଲେ, ‘ମହାରାଜ, ଗୁଣ ଓ ଲୀଳା ଅନନ୍ତ ଏବଂ ସେହି ଅନନ୍ତ ଲୀଳାକୁ ଆନୁପୂର୍ବିକ ବର୍ଣ୍ଣନା କରିବାକୁ ଚେଷ୍ଟା କରିବା ଆମ୍ଭମାନଙ୍କ ପକ୍ଷରେ ଧୃଷ୍ଟତା ହେବ । ବହୁକାଳ ଧରି ଯୋଗବଳରେ ପୃଥିବୀର ଅନନ୍ତ ଧୂଳିକଣାକୁ ଗଣନା

କରିବା ହୁଏତ ସମ୍ଭବ ହୋଇପାରେ; ମାତ୍ର ଅଚିନ୍ତ୍ୟ ଓ ଅନନ୍ତ ଶକ୍ତିର ଅଧିକାରୀ ଭଗବାନ ନାରାୟଣଙ୍କର ଗୁଣସକଳ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଭଗବାନ ନାରାୟଣ ନିଜ ସୃଷ୍ଟ ପଞ୍ଚମହାଭୂତ ଦ୍ୱାରା ବ୍ରହ୍ମାଣ୍ଡ ସୃଷ୍ଟିକରି ତା' ମଧ୍ୟରେ ଅନ୍ତର୍ଯ୍ୟାମୀ ରୂପରେ ପ୍ରବେଶ କରନ୍ତି । ସେଥିପାଇଁ ତାଙ୍କୁ ପୁରୁଷ ନାମରେ ଅଭିହିତ କରାଯାଏ । ତାହା ହିଁ ଭଗବାନଙ୍କର ଆଦି ଅବତାର । ଏହି ଜଗତକୁ ସୃଷ୍ଟି, ପାଳନ ଓ ସଂହାର କରିବା ନିମନ୍ତେ ଭଗବାନ ସତ୍ତ୍ୱ, ରଜ ଓ ତମ ଗୁଣକୁ ଯଥାକ୍ରମେ ଆଶ୍ରୟ କରି ନିଜକୁ ବିଷ୍ଣୁ, ବ୍ରହ୍ମା ଓ ମହେଶ୍ୱର ରୂପରେ ପ୍ରକଟିତ କରିଥାନ୍ତି । ଦକ୍ଷ ପତ୍ନୀଙ୍କ ଗର୍ଭରୁ ନର ଓ ନାରାୟଣ ରୂପରେ ଆବିର୍ଭୂତ ହୋଇ ବହୁ ତପସ୍ୟାଚରଣ କରିଥିଲେ ଓ ଦେବର୍ଷି ନାରଦପ୍ରମୁଖଙ୍କୁ ଆତ୍ମତତ୍ତ୍ୱ ସମ୍ପର୍କରେ ଉପଦେଶ ପ୍ରଦାନ କରିଥିଲେ । ନର ଓ ନାରାୟଣଙ୍କର ସୁଦୀର୍ଘ କଠୋର ତପସ୍ୟାରେ ଇନ୍ଦ୍ର ଭୟଭୀତ ହୋଇ ଭାବିଲେ ସେହି ତପସ୍ୟା ଦ୍ୱାରା ସେମାନେ ଇନ୍ଦ୍ର ପଦବୀ ଜୟ କରିବେ ବୋଲି ଆଶଙ୍କା କରି ସେମାନଙ୍କର ତପସ୍ୟାରେ ବିଘ୍ନ ସୃଷ୍ଟି କରିବା ନିମନ୍ତେ ଅନୁଚର-ବର୍ଗଙ୍କ ସହିତ କନ୍ଦର୍ପଙ୍କୁ ନର ଓ ନାରାୟଣଙ୍କର ସେହି ତପସ୍ୟା ସ୍ଥାନ ବଦରିକାଶ୍ରମକୁ ପ୍ରେରଣ କରିଥିଲେ । କନ୍ଦର୍ପ ସଙ୍ଗରେ ଚିତ୍ତ ଉଲ୍ଲାସକର ବସନ୍ତ କାଳ, ଗନ୍ଧବହ ମନ୍ଦ ମଳୟ ଓ ସୁନ୍ଦରୀ ଅପ୍ସରାମାନଙ୍କୁ ନେଇ ବଦରିକାଶ୍ରମରେ ପ୍ରବେଶ କରି ନର ଓ ନାରାୟଣଙ୍କର ତପସ୍ୟା ଭଙ୍ଗ କରିବାକୁ କନ୍ଦର୍ପ କାମୋଦ୍ଦୀପକ ପରିବେଶ ସୃଷ୍ଟିକରି ବହୁ ଚେଷ୍ଟା କରିଥିଲେ ମଧ୍ୟ, ସଫଳ ହୋଇ ପାରିଲେ ନାହିଁ । ତପସ୍ୱୀଦ୍ୱୟଙ୍କ ଦ୍ୱାରା ଅଭିଶପ୍ତ ହେବାର ଭୟରେ ଶଙ୍କିତ ହୋଇ କନ୍ଦର୍ପପ୍ରମୁଖ ଆଶ୍ରମରୁ ପଳାୟନ କରିବାକୁ ଚେଷ୍ଟା କରିବାରୁ ସମସ୍ତ ବିଷୟ ଅବଗତ ହୋଇ ସେହି ବ୍ୟର୍ଥକାମ ପଳାୟନରତ କନ୍ଦର୍ପଙ୍କୁ ସହାସ୍ୟ ବଦନରେ ନର ଓ ନାରାୟଣ କହିଥିଲେ, 'ହେ ମଦନ, ହେ ବସନ୍ତ, ହେ ଦେବାଙ୍ଗନାମାନେ ଭୟ କରି ଏହି ଆଶ୍ରମରୁ ଏପରି ପଳାୟନ କର ନାହିଁ । ତୁମ୍ଭେମାନେ ଏଠାରେ ଆମର ଅତିଥି । ତେଣୁ ଆମକୁ ଆତିଥ୍ୟ ସତ୍କାର କରିବାର କୌଣସି ସୁଯୋଗ ନ ଦେଇ ଆମର ଏହି ଆଶ୍ରମକୁ ଏପରି ଶୂନ୍ୟକରି ଯାଅ ନାହିଁ ।' ସେହି ଋଷି ଦ୍ୱୟଙ୍କର କଥା ଶୁଣି କନ୍ଦର୍ପପ୍ରମୁଖଙ୍କର ଲଜ୍ଜାର ସୀମା ରହିଲା ନାହିଁ । ସେମାନେ ମଥାନତ କରି ଭଗବାନଙ୍କର

ସ୍ତୁତିଗାନ କରିଥିଲେ । ନର ଓ ନାରାୟଣରୂପୀ ସର୍ବଶକ୍ତିମାନ୍ ଭଗବାନ ସେମାନଙ୍କର ସ୍ତୁତିରେ ସନ୍ତୁଷ୍ଟ ହୋଇ ସେମାନଙ୍କର ଗର୍ବ-ଖଣ୍ଡନ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ନିଜର ଅପୂର୍ବ ଅଦ୍ଭୁତ ପ୍ରଦର୍ଶନ କରାଇବା ନିମନ୍ତେ କନ୍ଦର୍ପ ଓ ଅପ୍‌ସରାମାନଙ୍କ ସମ୍ମୁଖରେ ଭଗବାନଙ୍କ ସେବାରେ ନିଯୁକ୍ତ ଥିବା ଲକ୍ଷ୍ମୀସଦୃଶା ରୂପବତୀ ଲାବଣ୍ୟମୟୀ ରମଣୀ-ମାନଙ୍କୁ ସୃଷ୍ଟିକଲେ । ସେହି ସୁନ୍ଦରୀମାନଙ୍କର ରୂପ ଲାବଣ୍ୟ ଦର୍ଶନ କରି ଅପ୍‌ସରାମାନଙ୍କର ମୁହଁ ଆତୁର ମଳିନ ପଡ଼ିଗଲା । ନିଜର ରୂପଯୌବନ ଦ୍ୱାରା ଯାହାଙ୍କର ହୃଦୟରେ ବିଶୃଙ୍ଖଳା ସୃଷ୍ଟି କରିବାକୁ ଆସିଥିଲେ, ତାଙ୍କ ଦ୍ୱାରା ସଦ୍ୟ ସୃଷ୍ଟି ହୋଇଥିବା ପରମା ସୁନ୍ଦରୀମାନଙ୍କୁ ଦର୍ଶନ କରି ସେମାନେ ଯେତିକି ଲଜ୍ଜିତା, ସେତିକି ଅଭିଭୂତା ହୋଇଗଲେ । ସେମାନଙ୍କର ସେହି ଦୁରବସ୍ଥା ଦର୍ଶନ କରି ନର ଓ ନାରାୟଣରୂପୀ ଭଗବାନ କହିଲେ, 'ତୁମ ଦେବରାଜଙ୍କର ସ୍ୱର୍ଗଲୋକକୁ ରମଣୀୟ ଓ ଅଳଂକୃତ କରିବା ନିମନ୍ତେ ଏହି ରମଣୀମାନଙ୍କ ମଧ୍ୟରୁ ଅନ୍ତତଃ ଜଣକୁ ସଙ୍ଗରେ ନେଇଯାଅ । ଭଗବାନଙ୍କର ଆଦେଶାନୁସାରେ ଦେବରାଜ ଇନ୍ଦ୍ରଙ୍କର ସେହି ଅନୁଚରମାନେ ସେହି ରମଣୀମାନଙ୍କ ମଧ୍ୟରୁ ଯେ ଅଧିକ ସୁନ୍ଦରୀ ତାଙ୍କୁ ସଙ୍ଗରେ ନେଇ ସ୍ୱର୍ଗଲୋକକୁ ପ୍ରତ୍ୟାଗମନ କଲେ । ସାଙ୍ଗରେ ନେଇଥିବା ସେହି ପରମା ସୁନ୍ଦରୀଙ୍କ ନାମ ଉର୍ବଶୀ । ଅନୁଚରମାନଙ୍କଠାରୁ ସମସ୍ତ କଥା ଶୁଣି ଓ ଉର୍ବଶୀଙ୍କୁ ସ୍ୱଚକ୍ଷୁରେ ଦେଖି ଇନ୍ଦ୍ର ନିଜର ଭ୍ରମ ବୁଝିପାରିଲେ ଏବଂ ନର ଓ ନାରାୟଣଙ୍କର ଅନନ୍ତ ଶକ୍ତି ଓ ପ୍ରଭାବର କଥା ସେ ଉତ୍ତମ ରୂପେ ଉପଲବ୍‌ଧି କଲେ । ଭଗବାନ ନିଜର ଅନନ୍ତ ଶକ୍ତି ବଳରେ ବିଭିନ୍ନ ସମୟରେ ବହୁ ଅବତାର ଗ୍ରହଣ କରିଅଛନ୍ତି ଏବଂ ସେହିସବୁ ଅବତାର ମଧ୍ୟରେ ହଂସ, ଦତ୍ତାତ୍ରେୟ, ସନତ୍‌କୁମାର ଓ ଆମ୍ଭମାନଙ୍କର ପୂଜ୍ୟ ପିତା ଋଷଭଙ୍କ ରୂପରେ ଅବତୀର୍ଣ୍ଣ ହୋଇ ନିଗୂଢ଼ ଆତ୍ମଯୋଗର ସାଧନପଦ୍ଧତି ପ୍ରକାଶ କରି ଯାଇଅଛନ୍ତି । ଭଗବାନ ହୟଗ୍ରୀବ ରୂପ ଧାରଣ କରି ମଧୁ ଓ କୈଟଭ ନାମକ ଦୈତ୍ୟଦ୍ୱୟଙ୍କୁ ସଂହାର କରି ବେଦକୁ ଉଦ୍ଧାର କରିଥିଲେ । ପ୍ରଳୟ ସମୟରେ ମତ୍ସ୍ୟ ରୂପରେ ଆତ୍ମପ୍ରକାଶ କରି ମନୁ, ଔଷଧି ତଥା ବୀଜସକଳକୁ ରକ୍ଷା କରିଥିଲେ । ବରାହ ଅବତାରରେ ଜଳ ମଧ୍ୟରୁ ପୃଥିବୀକୁ ଉଦ୍ଧାର କରିଥିଲେ । କଚ୍ଛପ ଅବତାରରେ

ସମୁଦ୍ର-ମନ୍ଥନକାଳୀନ ମନ୍ଦର ପର୍ବତ ରୂପକ ମନ୍ଥନଦଣ୍ଡକୁ ନିଜ ପୃଷ୍ଠଦେଶରେ ଧାରଣ କରିଥିଲେ । ଭଗବାନ ମଧ୍ୟ କୁମ୍ଭୀର ଦ୍ୱାରା ଆକ୍ରାନ୍ତ ଏକ ଶରଣାଗତ ଗଜକୁ ଉଦ୍ଧାର କରିଥିଲେ । ବାଲଖିଲ୍ୟ ମହର୍ଷିଙ୍କୁ ଗୋଷ୍ପଦ ଜଳରୁ, ଦେବରାଜ ଇନ୍ଦ୍ରଙ୍କୁ ବୃତ୍ରାସୁର ହତ୍ୟାଜନିତ ବ୍ରହ୍ମହତ୍ୟା ପାତକରୁ ଦେବକନ୍ୟାମାନଙ୍କୁ ଅସୁରମାନଙ୍କ କାରାଗାରରୁ ଭଗବାନ ଉଦ୍ଧାର କରିଥିଲେ । ଭଗବାନ ନରସିଂହ ଅବତାର ଗ୍ରହଣ କରି ହିରଣ୍ୟ-କଶିପୁକୁ ସଂହାର କରି ସାଧୁସନ୍ଥମାନଙ୍କୁ ଅଭୟ ପ୍ରଦାନ କରିଥିଲେ । ଦେବକାର୍ଯ୍ୟ ସାଧନ ନିମନ୍ତେ ଭଗବାନ ଯୁଗେ ଯୁଗେ ଅବତାର ଗ୍ରହଣ କରି ଅସୁରମାନଙ୍କୁ ସଂହାର ଓ ଜଗତକୁ ପାଳନ କରିଥାନ୍ତି । ବାମନ ଅବତାରରେ ଭିକ୍ଷା ଗ୍ରହଣ ଛଳରେ ଦୈତ୍ୟରାଜ ବଳିଙ୍କ ନିକଟରୁ ସମସ୍ତ ପୃଥିବୀକୁ ହରଣ କରି ଦେବତାମାନଙ୍କୁ ପ୍ରଦାନ କରିଥିଲେ । ତପସ୍ୱୀ ପରଶୁରାମ ରୂପରେ ଅବତୀର୍ଣ୍ଣ ହୋଇ ପୃଥିବୀକୁ ଏକବିଂଶତିବାର ନିକ୍ଷତ୍ରିୟ କରିଥିଲେ । ରାମ ଅବତାରରେ ଭଗବାନ ସମୁଦ୍ର ବକ୍ଷରେ ସେତୁ ସ୍ଥାପନ କରି ଲଙ୍କାପତି ରାବଣଙ୍କୁ ସଂହାର କରିଥିଲେ । ପୃଥିବୀର ଭାର ଲାଘବ କରିବା ଉଦ୍ଦେଶ୍ୟରେ ଭଗବାନ ଯଦୁବଂଶରେ ଜନ୍ମ ହୋଇ ବହୁ ଅସାଧ୍ୟ ସାଧନ କରିବେ । ତା' ଛଡ଼ା ବୁଦ୍ଧ ରୂପରେ ଜନ୍ମ ହୋଇ ସେ ଯଜ୍ଞକାରୀମାନଙ୍କୁ ତର୍କରେ ମୋହିତ କରିବେ ଏବଂ ପରିଶେଷରେ କଳିଯୁଗର ଅନ୍ତିମକାଳରେ ଆବିର୍ଭୂତ ହୋଇ ରାଜତ୍ୱ କରୁଥିବା ଶୂଦ୍ରମାନଙ୍କୁ ସଂହାର କରିବେ । ଭଗବାନଙ୍କର କୀର୍ତ୍ତି ଅନନ୍ତ । ସେ ବହୁ ଅବତାର ଗ୍ରହଣ କରି ଧରାଧାମରେ ବହୁ କାର୍ଯ୍ୟ ସମ୍ପାଦନ କରି ବହୁ ଯଶର ଅଧିକାରୀ ହୋଇଅଛନ୍ତି । ସଂକ୍ଷେପରେ ସେସବୁର ସୂଚନା ମୁଁ ଆପଣଙ୍କ ନିକଟରେ ପ୍ରକାଶ କଲି ମାତ୍ର ।'

ଯେଉଁମାନଙ୍କର କାମନା ଶାନ୍ତ ହୋଇନାହିଁ ଏବଂ ଭଗବାନଙ୍କ ପ୍ରତି ଯେଉଁମାନଙ୍କର ଭକ୍ତି ନାହିଁ ଓ ପୂଜାର୍ଚ୍ଚନା ପ୍ରତି ମନ ଆକୃଷ୍ଟ ହେଉନାହିଁ, ସେମାନଙ୍କର ଗତି କ'ଣ ହେବ ବୋଲି ରାଜା ନିମି ପ୍ରଶ୍ନ କରିବାରୁ, ଋଷଭଦେବଙ୍କର ଅଷ୍ଟମ ପୁତ୍ର ମହର୍ଷି ଚମସ କହିଲେ, 'ମହାରାଜ, ଯେଉଁମାନେ ଭଗବାନଙ୍କ ପ୍ରତି ଭକ୍ତିଭାବ ପୋଷଣ କରନ୍ତି ନାହିଁ, ସେମାନେ ନିଜ ନିଜର ଅବସ୍ଥା, ବର୍ଣ୍ଣ, ଆଶ୍ରମ ଓ ମନୁଷ୍ୟ

ଜନ୍ମରୁ ବଞ୍ଚିତ ହୋଇ ଅଧଃପତିତ ହୋଇଥାନ୍ତି । ଅଧଃପତନ ହିଁ ସେମାନଙ୍କ ଜୀବନର ଚରମ ପରିଣାମ । ବେଦ ଆଦି ସଦ୍‌ଗ୍ରନ୍ଥମାନଙ୍କରେ ଭଗବାନଙ୍କର କଥା ଉଲ୍ଲେଖ ଥିଲେ ମଧ୍ୟ ଲୋକମାନେ ସେସବୁକୁ ଅଧ୍ୟୟନ କରନ୍ତି ନାହିଁ କି ଅଧ୍ୟୟନ କଲେ ମଧ୍ୟ ଗ୍ରନ୍ଥ ବର୍ଣ୍ଣିତ ବିଷୟର ପ୍ରକୃତ ତତ୍ତ୍ୱକୁ ଉପଲବ୍ଧି କରିବାକୁ ପ୍ରୟାସ ନ କରି ତା'ର ବାହ୍ୟାଡ଼ମ୍ବରରେ ମୋହିତ ହୋଇଥାନ୍ତି; ବିଭିନ୍ନ କର୍ମରେ ନିଜକୁ ଲିପ୍ତ ରଖିବା ସଙ୍ଗେ ସଙ୍ଗେ ଲୋଭ, ମୋହ, ଦମ୍ଭ ଓ ଅଭିମାନର ବଶବର୍ତ୍ତୀ ହୋଇ ସେମାନେ ହରିଭକ୍ତ ସାଧୁମାନଙ୍କୁ ଉପହାସ କରିଥାନ୍ତି ଓ ସେମାନେ ବ୍ରାହ୍ମଣ, ବୃଦ୍ଧ ଓ ଗୁରୁମାନଙ୍କର ସେବା ନ କରି ମୈଥୁନ ସୁଖକୁ ସର୍ବଶ୍ରେଷ୍ଠ ସୁଖ ବୋଲି ବିଚାରି ସ୍ତ୍ରୀମାନଙ୍କ ପ୍ରତି ଅତ୍ୟଧିକ ଅନୁରକ୍ତ ହୋଇଥାନ୍ତି । ଗୃହସ୍ଥ ହୋଇ ମଧ୍ୟ ଅତିଥି ସତ୍କାର କରନ୍ତି ନାହିଁ, ଯଜ୍ଞ କରନ୍ତି ନାହିଁ କିମ୍ବା ଯଜ୍ଞାଦି କଲେ ଅନ୍ନଦାନ ବା ଦକ୍ଷିଣା ପ୍ରଦାନ କରନ୍ତି ନାହିଁ । ସେମାନେ ନିଜର ଆନନ୍ଦ ନିମନ୍ତେ ଜୀବହିଂସାରେ ପ୍ରମତ୍ତ ରହିଥାନ୍ତି; ନିଜର ଅର୍ଥ, ଐଶ୍ୱର୍ଯ୍ୟ, ଜ୍ଞାନ, ରୂପ ଓ ବଂଶ ଆଦିକୁ ନେଇ ଅଯଥା ଗର୍ବ ବୋଧ କରନ୍ତି ଓ ଭକ୍ତ ସାଧୁ ଓ ଈଶ୍ୱରଙ୍କୁ ଅବଜ୍ଞା କରନ୍ତି । ମଦ୍ୟ, ମାଂସ ଓ ମୈଥୁନ ପ୍ରତି ମନୁଷ୍ୟମାନଙ୍କର ଦୁର୍ବଳତା ସୁବିଦିତ ଏବଂ ଏହିସବୁକୁ କେନ୍ଦ୍ର କରି ଉଚ୍ଛୃଙ୍ଖଳ ହେବା ସ୍ୱାଭାବିକ; କିନ୍ତୁ ମନୁଷ୍ୟର ସେହି ସ୍ୱାଭାବିକ ଉଚ୍ଛୃଙ୍ଖଳ ପ୍ରବୃତ୍ତିକୁ ସୁନିୟନ୍ତ୍ରିତ କରିବା ନିମନ୍ତେ ଶାସ୍ତ୍ରରେ ଏସବୁ ଗ୍ରହଣର ବିଧାନ ଲିପିବଦ୍ଧ ହୋଇଅଛି । ଶାସ୍ତ୍ରୋକ୍ତ ସେହି ନିର୍ଦ୍ଦେଶକୁ ଲଙ୍ଘନ କରି ଏସବୁ ପ୍ରତି ଅତ୍ୟନ୍ତ ଆସକ୍ତ ହେବା ଆଦୌ ସମୀଚୀନ ନୁହେଁ । ଧର୍ମ କାର୍ଯ୍ୟରେ ବିନିଯୋଗ କରିବାରେ ହିଁ ଅର୍ଥ ଅର୍ଜନର ଚରମ ସାର୍ଥକତା, ଅଥଚ ମନୁଷ୍ୟମାନେ ଧର୍ମକାର୍ଯ୍ୟରେ ଧନ ବ୍ୟୟ ନ କରି ମୃତ୍ୟୁକବଳିତ ଶରୀରର ପାର୍ଥିବ କାମନାର ତୃପ୍ତି ବିଧାନରେ ସମସ୍ତ ଧନ ବ୍ୟୟ କରିଥାନ୍ତି, ଏହାଠାରୁ ଦୁର୍ଭାଗ୍ୟର କଥା ଆଉ କ'ଣ ଥାଇପାରେ ? ଜୀବହିଂସା କରୁଥିବା ବ୍ୟକ୍ତିମାନେ ଭୁଲିଯିବା ଉଚିତ ନୁହେଁ ଯେ, ନିଜର ଆନନ୍ଦବିଧାନ ନିମନ୍ତେ ଯେଉଁ ଜୀବକୁ ସେମାନେ ହତ୍ୟା କରୁଅଛନ୍ତି, ସେମାନଙ୍କର ମୃତ୍ୟୁପରେ ସେହି ନିହତ ଜୀବହିଁ ସେମାନଙ୍କୁ ହତ୍ୟା କରି ସେମାନଙ୍କର ମାଂସକୁ ଭକ୍ଷଣ କରିବ । ଯେଉଁମାନେ

ଭଗବାନଙ୍କ ପ୍ରତି ବିମୁଖ ହୋଇ ସର୍ବଦା ନିଜର ଗୃହ, ପୁତ୍ର, ପରିବାର, ଧନ ସମ୍ପତ୍ତି ମଧ୍ୟରେ ବ୍ୟସ୍ତ ରହିଥାନ୍ତି, ଅନନ୍ତ ନରକରେ ପତିତ ହେବା ହିଁ ସେମାନଙ୍କ ଜୀବନର ଚରମ ପରିଣାମ' ।

କେଉଁ ଯୁଗରେ ଭଗବାନ କି ରୂପ ଓ ବର୍ଣ୍ଣ ଧାରଣ କରିଥାନ୍ତି ଏବଂ ମନୁଷ୍ୟମାନେ ତାଙ୍କୁ କେଉଁ ନାମରେ ଓ ବିଧିରେ ପୂଜାର୍ଚ୍ଚନା କରିଥାନ୍ତି ତାହା ଜାଣିବା ନିମନ୍ତେ ରାଜା ନିମି ପ୍ରଶ୍ନ କରିବାରୁ ଋଷଭଙ୍କର ନବମ ପୁତ୍ର ମହର୍ଷି କରଭାଜନ କହିଲେ; 'ମହାରାଜ, ସତ୍ୟ, ତ୍ରେତା, ଦ୍ୱାପର ଏବଂ କଳି—ଏହି ନାମରେ ଚାରିଗୋଟି ଯୁଗ ରହିଛି । ଏହି ଯୁଗ ଚତୁଷ୍ଟୟରେ ଭଗବାନ ବିଭିନ୍ନ ନାମ, ରୂପ ଓ ବର୍ଣ୍ଣରେ ପରିଚିତ ହୋଇଥାନ୍ତି ଏବଂ ବିଭିନ୍ନ ପଦ୍ଧତିରେ ତାଙ୍କର ପୂଜାର୍ଚ୍ଚନା ଅନୁଷ୍ଠିତ ହୋଇଥାଏ । ଭଗବାନ ସତ୍ୟଯୁଗରେ ଶୁକ୍ଳବର୍ଣ୍ଣ, ଚତୁର୍ଭୁଜ, ଜଟାଧାରୀ, ବଲ୍କଳ ପରିହିତ, କୃଷ୍ଣମୃଗ ଚର୍ମ, ଯଜ୍ଞୋପବୀତ, ରୁଦ୍ରାକ୍ଷମାଳା ଓ ଦଣ୍ଡକମଣ୍ଡଳୁଧାରୀ ରୂପରେ ଦର୍ଶନ ଦେଇଥାନ୍ତି । ସତ୍ୟଯୁଗରେ ଲୋକମାନେ ଶାନ୍ତଶିଷ୍ଟ, ଶତ୍ରୁହୀନ, ସୁହୃଦସମ୍ପନ୍ନ ଏବଂ ସମସ୍ତ ପ୍ରାଣୀଙ୍କ ପ୍ରତି ସମଭାବ ପୋଷଣ କରିଥାନ୍ତି । ସେହି ସତ୍ୟ-ଯୁଗରେ ମନ ଓ ଇନ୍ଦ୍ରିୟକୁ ସଂଯତ କରି ତପସ୍ୟା ଦ୍ୱାରା ଭଗବାନଙ୍କୁ ଲୋକମାନେ ଉପାସନା କରିଥାନ୍ତି । ସେହି ଯୁଗରେ ଲୋକମାନେ ହଂସ ସୁପର୍ଣ୍ଣ, ବୈକୁଣ୍ଠ, ଧର୍ମ, ଯୋଗେଶ୍ୱର, ଅମଳ, ଈଶ୍ୱର, ପୁରୁଷ, ଅବ୍ୟକ୍ତ ଏବଂ ପରମାତ୍ମା ଆଦି ନାମରେ ଭଗବାନଙ୍କର ଗୁଣଗାନ କରିଥାନ୍ତି । ତ୍ରେତାଯୁଗରେ ଭଗବାନ ରକ୍ତବର୍ଣ୍ଣ, ଚତୁର୍ଭୁଜ, କଟିରେ ତ୍ରିମେଖଳା, ମସ୍ତକରେ ସୁବର୍ଣ୍ଣ ରଙ୍ଗର କେଶ ଓ ହସ୍ତରେ ସ୍ରୁକ୍ ଓ ସ୍ରୁବ ଆଦି ଯଜ୍ଞପାତ୍ର ଧାରଣ କରି ବେଦ ପ୍ରତିପାଦିତ ମୂର୍ତ୍ତିରେ ପ୍ରକଟିତ ହୋଇଥାନ୍ତି । ଏହିଯୁଗର ଲୋକମାନେ ବେଦରେ ଅତ୍ୟନ୍ତ ପ୍ରବୀଣ ହୋଇ ଋକ, ସାମ ଓ ଯଜୁର୍ବେଦ ବିହିତ ପଦ୍ଧତିଦ୍ୱାରା ସର୍ବଦେବମୟ ହରିଙ୍କର ପୂଜା କରିଥାନ୍ତି । ଏହି ତ୍ରେତାଯୁଗରେ ବିଷ୍ଣୁ, ଯଜ୍ଞ, ପୃଶ୍ନିଗର୍ଭ, ସର୍ବଦେବ, ଉରୁକ୍ରମ, ବୃଷା, କପି, ଜୟନ୍ତ ଏବଂ ଉରୁଗାୟ ଆଦି ନାମରେ ମନୁଷ୍ୟମାନେ ଭଗବାନଙ୍କର ଯଶୋଗାନ କରିଥାନ୍ତି । ଦ୍ୱାପର ଯୁଗରେ ଭଗବାନ ଶ୍ୟାମବର୍ଣ୍ଣ, ପୀତାମ୍ବର, ଶଙ୍ଖ, ଚକ୍ର,

ଗଦା ଆଦି ଆୟୁଧ ସହ ବକ୍ଷସ୍ଥଳରେ ଶ୍ରୀବତ୍ସ ଚିହ୍ନ ଆଦି ଲକ୍ଷଣରେ ପ୍ରକଟିତ ହୋଇଥାନ୍ତି । ଦ୍ୱାପର ଯୁଗରେ ମନୁଷ୍ୟମାନେ ରାଜଲକ୍ଷଣଯୁକ୍ତ ପରମପୁରୁଷ ଭଗବାନଙ୍କୁ ବୈଦିକ ତଥା ତାନ୍ତ୍ରିକ ପଦ୍ଧତିରେ ଆରାଧନା କରିଥାନ୍ତି । ବାସୁଦେବ, ସଂକର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ନାରାୟଣ, ବିଶ୍ୱେଶ୍ୱର, ବିଶ୍ୱରୂପ, ସର୍ବଭୂତାତ୍ମା ଆଦି ନାମ ଉଚ୍ଚାରଣ କରି ଏହି ଯୁଗରେ ଲୋକମାନେ ଭଗବାନଙ୍କୁ ପ୍ରାର୍ଥନା କରିଥାନ୍ତି । କଳିଯୁଗରେ ଭଗବାନଙ୍କର ବର୍ଣ୍ଣ କୃଷ୍ଣ, ଇନ୍ଦ୍ରନୀଳମଣି ପରି ତାଙ୍କର ଅଙ୍ଗକାନ୍ତି ଉଜ୍ଜ୍ୱଳ, ହୃଦୟ ଆଦି ଅଙ୍ଗ, କୌସ୍ତୁଭ ଆଦି ଉପାଙ୍ଗ, ସୁଦର୍ଶନ ଅସ୍ତ୍ର ଓ ସୁନନ୍ଦପ୍ରମୁଖ ପାର୍ଷଦ ସଂଯୁକ୍ତ ହୋଇ ସେ ପ୍ରକଟିତ ହୋଇଥାନ୍ତି । କଳିଯୁଗର ଉତ୍ତମ ବୁଦ୍ଧିସମ୍ପନ୍ନ ବ୍ୟକ୍ତିମାନେ ଯଜ୍ଞ ଓ ସଂକୀର୍ତ୍ତନ ଆଦି ଦ୍ୱାରା ଭଗବାନଙ୍କର ପୂଜା ଓ ସ୍ତୁତି କରିଥାନ୍ତି । ଏହି ଯୁଗରେ କେବଳ ଭଗବାନଙ୍କର ନାମ ସଂକୀର୍ତ୍ତନ ଦ୍ୱାରା ଲୋକମାନେ ସମସ୍ତ ସ୍ୱାର୍ଥ ଓ ପରମାର୍ଥ ପ୍ରାପ୍ତ ହୋଇଥାନ୍ତି । ସେଥିପାଇଁ ଗୁଣୀଜନମାନେ ଅନ୍ୟଯୁଗ ଅପେକ୍ଷା ଏହି କଳିଯୁଗକୁ ଅଧିକ ପ୍ରଶଂସା କରିଥାନ୍ତି । ଦେହାଭିମାନୀ ଜୀବମାନେ ଏହି ସଂସାର ରୂପକ ଚକ୍ରରେ ବାରମ୍ବାର ଭ୍ରମଣ କରୁଥିବାରୁ, ଭଗବାନଙ୍କର ନାମ, ଗୁଣ ଓ ଲୀଳା କୀର୍ତ୍ତନ କରିବା ଦ୍ୱାରା ସେମାନେ ସଂସାରବନ୍ଧନରୁ ନିଷ୍କୃତି ଲାଭ କରିବା ସହ ପରମ ଲାଭ ଅର୍ଜନ କରିଥାନ୍ତି । ସେଥିପାଇଁ ସତ୍ୟ, ତ୍ରେତା ଓ ଦ୍ୱାପର ଯୁଗରେ ଜନ୍ମ ଗ୍ରହଣ କରିଥିବା ବ୍ୟକ୍ତିମାନେ କଳିଯୁଗରେ ଜନ୍ମଲାଭ କରିବାକୁ ପ୍ରବଳ ଇଚ୍ଛା ପୋଷଣ କରିଥାନ୍ତି । ଯେଉଁମାନେ ଭେଦବୁଦ୍ଧି ପରିତ୍ୟାଗ କରି ପରମଭକ୍ତି ସହକାରେ ଭଗବାନ ମୁକୁନ୍ଦଙ୍କର ଚରଣାରବିନ୍ଦରେ ଶରଣ ନେଇ ପାରନ୍ତି ସେମାନେ ଅଚିରେ ଦେବଋଣ, ପିତୃଋଣ ଓ ଋଷି ଋଣରୁ ମୁକ୍ତ ହୋଇଥାନ୍ତି ଏବଂ ଯଦି କୌଣସି ଭକ୍ତ କୌଣସି ନିନ୍ଦିତ କର୍ମ ବା ଅଧର୍ମ କରିବସେ, ତେବେ ସେହି ନିନ୍ଦିତ କର୍ମର ଦୋଷ ଭକ୍ତକୁ ସ୍ପର୍ଶ କରେ ନାହିଁ; କାରଣ ଭକ୍ତବତ୍ସଳ ଭଗବାନ ଭକ୍ତର ହୃଦୟରେ ଅବସ୍ଥାନ କରି ସେହି ପାପରୁ ତାକୁ ଅଚିରେ ମୁକ୍ତ କରିଥାନ୍ତି ।'

ଦେବର୍ଷି ନାରଦ କହୁଥାନ୍ତି, 'ହେ ମହାଭାଗ୍ୟବାନ ବସୁଦେବ, ସେହି ନ'ଜଣ ଯୋଗେଶ୍ୱରଙ୍କଠାରୁ ଭଗବତ-ଧର୍ମ ଶ୍ରବଣ କରି ରାଜା

ନମି ଅତ୍ୟନ୍ତ ପ୍ରୀତ ହୋଇଥିଲେ । ସେହି ମହର୍ଷିମାନଙ୍କୁ ରାଜା ଯଥାବିଧି ପୂଜାର୍ଚ୍ଚନା କରିଥିଲେ ଏବଂ ପୂଜାର ପରେ ପରେ ସେହି ଋଷିମାନେ ଯଜ୍ଞସ୍ଥାନରୁ ଅନ୍ତର୍ହିତ ହୋଇଯାଇଥିଲେ । ସେହି ଯୋଗେଶ୍ୱରମାନଙ୍କ କଥିତ ଭାଗବତ-ଧର୍ମକୁ ନିଷ୍ଠାର ସହିତ ପାଳନ କରି ରାଜା ନିମି ପରମ ଗତି ପ୍ରାପ୍ତ ହୋଇଥିଲେ । ଏହି ଯେଉଁ ଭଗବତ-ଧର୍ମର କଥା ମୁଁ ବର୍ଣ୍ଣନା କଲି, ଶ୍ରଦ୍ଧାର ସହିତ ତଦନୁସାରେ ଆଚରଣ କଲେ, ଆପଣ ଭଗବାନଙ୍କର ପରମ ପଦ ଅଚିରେ ଲାଭ କରିବେ । ଆପଣଙ୍କର ତଥା ଆପଣଙ୍କ ପତ୍ନୀଙ୍କର ଯଶ ସମଗ୍ର ଜଗତକୁ ପରିପ୍ଲୁତ କରି ରଖିଛି ଏବଂ ସେଥିପାଇଁ ସର୍ବଶକ୍ତିମାନ ଭଗବାନ କୃଷ୍ଣ ଆପଣଙ୍କର ପୁତ୍ର ରୂପରେ ଜାତ ହୋଇଅଛନ୍ତି । କୃଷ୍ଣଙ୍କୁ ପୁତ୍ର ରୂପରେ ପାଇ ଓ ତାଙ୍କୁ ଦର୍ଶନ, ଆଲିଙ୍ଗନ, ତାଙ୍କ ସହିତ ଆଳାପ, ଶୟନ, ଭୋଜନ ଓ କ୍ରୀଡ଼ାଦି ବାତ୍ସଲ୍ୟ ସ୍ନେହାଚରଣ ଦ୍ୱାରା ନିଜର ହୃଦୟକୁ ଆପଣ ସମ୍ପୂର୍ଣ୍ଣ ଶୁଦ୍ଧ ଓ ପବିତ୍ର କରିଅଛନ୍ତି । ଶିଶୁପାଳ, ପୌଣ୍ଡ୍ରକ, ଶାଲ୍ୱପ୍ରମୁଖ ନୃପତିମାନେ କୃଷ୍ଣଙ୍କ ପ୍ରତି ସର୍ବଦା ବୈରଭାବ ପୋଷଣ କରି ଯେତେବେଳେ କୃଷ୍ଣଙ୍କ କୃପା-ଲାଭର ଯୋଗ୍ୟ ହେବା ସଙ୍ଗେ ସଙ୍ଗେ ସାରୂପ୍ୟ ମୁକ୍ତି ଲାଭକଲେ ସେତେବେଳେ କୃଷ୍ଣଙ୍କ ପ୍ରତି ଯେଉଁମାନେ ଆନ୍ତରିକ ସ୍ନେହଭାବ ପୋଷଣ କରିଅଛନ୍ତି ସେମାନେ ଯେ ଅଶେଷ ପୁଣ୍ୟର ଅଧିକାରୀ, ଏଥିରେ ସନ୍ଦେହ ନାହିଁ । ଆପଣ କୃଷ୍ଣଙ୍କୁ ନିଜର ପୁତ୍ର ବୋଲି ଭାବୁଛନ୍ତି; କିନ୍ତୁ ସେ ଯେ ସର୍ବାତ୍ମା, ସର୍ବେଶ୍ୱର, କାରଣାତୀତ ଏବଂ ନିଜର ମାନବ-ଲୀଳା ପ୍ରକଟିତ କରିବା ନିମନ୍ତେ ନିଜର ସକଳ ଐଶ୍ୱର୍ଯ୍ୟକୁ ପ୍ରଚ୍ଛନ୍ନ ରଖିଅଛନ୍ତି । ରାଜ-ବେଶଧାରୀ ଦୁଷ୍ଟ ଓ ଅସୁରମାନଙ୍କ କବଳରୁ ପୃଥିବୀ ତଥା ସାଧୁସନ୍ଥ-ମାନଙ୍କୁ ରକ୍ଷା କରିବା ନିମନ୍ତେ ସେ ମନୁଷ୍ୟ ରୂପରେ ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଅଛନ୍ତି ଏବଂ ସଂସାରର କଲ୍ୟାଣ ନିମନ୍ତେ ତାଙ୍କର ଯଶ ସମସ୍ତ ଜଗତରେ ପରିବ୍ୟାପ୍ତ ହୋଇଅଛି ।’

ଦେବର୍ଷି ନାରଦଙ୍କ ମୁଖରୁ ଭାଗବତ-ଧର୍ମ ସମ୍ପର୍କରେ ଉପଦେଶ ଶ୍ରବଣ କରି ବସୁଦେବ ନିଜକୁ ଧନ୍ୟ ମନେକଲେ ।



## ଯଦୁ-ଅବଧୂତ ସମ୍ବାଦ

କୃଷ୍ଣଙ୍କୁ ଦର୍ଶନ କରିବା ନିମନ୍ତେ ଭଗବାନ ବ୍ରହ୍ମା ଓ ଶିବ ସଙ୍ଗରେ ଦେବତା, ପ୍ରଜାପତି, ଆଦିତ୍ୟ, ବସୁ, ଗନ୍ଧର୍ବ, ଅପ୍‌ସରା, ନାଗ, ସିଦ୍ଧ, ଚାରଣ, ଋଷି, ବିଦ୍ୟାଧର ଏବଂ କିନ୍ନରମାନଙ୍କୁ ନେଇ ଦ୍ୱାରକାରେ ଆସି ଉପସ୍ଥିତ ହେଲେ । ଐଶ୍ୱର୍ଯ୍ୟପରିପୂର୍ଣ୍ଣ ଦ୍ୱାରକାରେ କୃଷ୍ଣଙ୍କର ନୟନାଭିରାମ ରୂପ ଦର୍ଶନ କରି ସେମାନେ ଅଭିଭୂତ ହୋଇଗଲେ ଏବଂ ସଙ୍ଗରେ ଆଣିଥିବା ସ୍ୱର୍ଗୀୟ କୁସୁମ, ଚନ୍ଦନ ଓ ସୁଗନ୍ଧି ଆଦି ଯଦୁକୁଳତିଳକ କୃଷ୍ଣଙ୍କ ମସ୍ତକରେ ବର୍ଷଣ କରି କୃଷ୍ଣଙ୍କୁ ସଭକ୍ତି ପ୍ରଣାମ କଲେ ଓ ତାଙ୍କର ସ୍ତୁତି ଗାନ କଲେ ।

ତଦନନ୍ତର ଭଗବାନ ବ୍ରହ୍ମା କହିଲେ, 'ହେ ପରମେଶ୍ୱର, ଧରଣୀର ଅସହ୍ୟ ଦୁଃଖ ଲାଘବ କରିବା ନିମନ୍ତେ ଆମ୍ଭେମାନେ ଆପଣଙ୍କ ନିକଟରେ ପୂର୍ବେ ପ୍ରାର୍ଥନା କରିଥିଲୁ । ଆପଣ ଆମ୍ଭମାନଙ୍କର ପ୍ରାର୍ଥନା ରକ୍ଷାକରି ତଦନୁସାରେ ସକଳ କାର୍ଯ୍ୟ ସମ୍ପାଦନ କରିଅଛନ୍ତି । ପରମ ରମଣୀୟ ମାନବରୂପ ଧାରଣ କରି ଯଦୁବଂଶରେ ଆବିର୍ଭୂତ ହୋଇ ଅଖିଳ ଜଗତର ହିତସାଧନ ନିମନ୍ତେ ଆପଣ ବହୁ ଲୀଳା ପ୍ରକାଶ କରିଅଛନ୍ତି । କଳିଯୁଗରେ ଯେଉଁମାନେ ଆପଣଙ୍କର ଆଚରିତ ଲୀଳାକୁ ଶ୍ରବଣ ଓ କୀର୍ତ୍ତନ କରିବେ, ସେମାନେ ଅଜ୍ଞାନତା ରୂପକ ଅପାର ସଂସାରସାଗରରୁ ଅଚିରେ ମୁକ୍ତିଲାଭ କରିବେ । ହେ ପୁରୁଷୋତ୍ତମ, ଯଦୁବଂଶରେ ଅବତୀର୍ଣ୍ଣ ହୋଇ ଆପଣ ଏକଶହ ପଚିଶ ବର୍ଷ ଅତିବାହିତ କରିସାରିଲେଣି । ହେ ଅଖିଳାଧାର, ଯେଉଁସବୁ କାର୍ଯ୍ୟ ସାଧନ ନିମନ୍ତେ ଆମ୍ଭେମାନେ ଆପଣଙ୍କୁ ପ୍ରାର୍ଥନା କରିଥିଲୁ, ସେସବୁ ଦେବକାର୍ଯ୍ୟ ଆପଣଙ୍କ ଦ୍ୱାରା ସମ୍ପନ୍ନ ହୋଇଅଛି, ତା'ଛଡ଼ା ବିପ୍ରଶାପରେ ଏହି ଯଦୁକୁଳ ମଧ୍ୟ ସମୂଳେ ନଷ୍ଟ ହେବାକୁ ବସିଛି । ହେ ବୈକୁଣ୍ଠନାଥ, ଆମ୍ଭେମାନେ ଆପଣଙ୍କୁ କ'ଣ କହିବୁ ? ଆମ୍ଭେମାନେ ଆପଣଙ୍କର

ସଦା ରକ୍ଷଣୀୟ କଙ୍କର । ଯଦି ଆପଣ ଇଚ୍ଛା କରୁଥାନ୍ତି, ତେବେ ସ୍ୱଧାମ ବୈକୁଣ୍ଠକୁ ପ୍ରତ୍ୟାବର୍ତ୍ତନ କରି ଆମ୍ଭମାନଙ୍କୁ ତଥା ଅଖିଳ ଜଗତକୁ ପାଳନ କରନ୍ତୁ ।'

ଦେବତାମାନଙ୍କର ସ୍ତୁତି ଓ ବ୍ରହ୍ମାଙ୍କର ସେହିକଥା ଶୁଣି ଭଗବାନ କୃଷ୍ଣ କହିଲେ, 'ହେ ବିବୁଧେଶ୍ୱର, ତୁମ୍ଭେମାନେ ଯେଉଁ କଥା ଉଲ୍ଲେଖ କଲ ସେ ସମ୍ପର୍କରେ ମୁଁ ସମ୍ପୂର୍ଣ୍ଣ ଅବଗତ ଅଛି । ତୁମ୍ଭମାନଙ୍କର ପ୍ରାର୍ଥିତ କାର୍ଯ୍ୟ ସମାହିତ ହେବା ସଙ୍ଗେ ସଙ୍ଗେ ବସୁଧାର ଭାର ମଧ୍ୟ ଅପନୋଦିତ ହୋଇଅଛି । କେବଳ ଗୋଟିଏ କାର୍ଯ୍ୟ ବାକି ଅଛି; ତା' ହେଉଅଛି ଯଦୁବଂଶର ବିନାଶ । ଧନ, ଐଶ୍ୱର୍ଯ୍ୟ, ବଳ ଓ ବିକ୍ରମରେ ବଳୀୟାନ ହୋଇ ଯଦୁବଂଶର ବ୍ୟକ୍ତିମାନେ ଔଦ୍ଧତ୍ୟର ଚରମ ସୀମାରେ ପହଞ୍ଚିଅଛନ୍ତି ଏବଂ ତ୍ରିଭୁବନକୁ ଗ୍ରାସ କରିବାକୁ ସେମାନେ ଇଚ୍ଛା ପୋଷଣ କରିଅଛନ୍ତି । କିନ୍ତୁ ବେଳାଭୂମି ସମୁଦ୍ରକୁ ସୀମାବଦ୍ଧ କରି ରଖିଲା ପରି ମୁଁ ଏମାନଙ୍କୁ ମର୍ଯ୍ୟାଦା ଅତିକ୍ରମ କରିବାର ସୁଯୋଗ ଦେଇ ନାହିଁ । ଏହି ବଳଦର୍ପୀ ଉଚ୍ଛୃଙ୍ଖଳ ଯଦୁବଂଶର ବିନାଶ ନ ଘଟାଇ ଯଦି ମୁଁ ଲୋକାନ୍ତରକୁ ଯାତ୍ରାକରେ ଏମାନେ ଲୋକମାନଙ୍କର ଦାରୁଣ କ୍ଷତି ଘଟାଇବେ । ତେଣୁ ହେ ଅନଘ, ବିପ୍ରଶାପ ଫଳରେ ଏମାନଙ୍କର ବିନାଶ କାର୍ଯ୍ୟ ଆରମ୍ଭ ହୋଇସାରିଛି । ଯଦୁବଂଶର ବିନାଶ ଘଟାଇବା ପରେ ପରେ ମୁଁ ବୈକୁଣ୍ଠକୁ ଯାତ୍ରାକରି ତୁମ୍ଭମାନଙ୍କର ଇଚ୍ଛା ପୂର୍ଣ୍ଣ କରିବି; ତେଣୁ ତୁମ୍ଭେମାନେ ନିଶ୍ଚିନ୍ତ ରୁହ ।'

ଭଗବାନ କୃଷ୍ଣଙ୍କ ମୁଖରୁ ବୈକୁଣ୍ଠକୁ ପ୍ରତ୍ୟାବର୍ତ୍ତନ କରିବାର ପ୍ରତିଶ୍ରୁତି ଲାଭକରି ଦେବତାମାନେ ଆନନ୍ଦିତ ହେଲେ ଏବଂ କୃଷ୍ଣଙ୍କୁ ସଭକ୍ତି ପ୍ରଣାମ କରି ସ୍ୱଧାମକୁ ପ୍ରସ୍ଥାନ କଲେ ।

ଦ୍ୱାରକାରେ ଧୀରେ ଧୀରେ ବହୁ ଉତ୍ପାତ ଓ ଅଶୁଭ ଘଟଣା ପରିଦୃଷ୍ଟ ହେଲା ଏବଂ ସେସବୁକୁ ଦେଖି ଯଦୁବଂଶର ବୟସ୍କ ବ୍ୟକ୍ତିମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ ଏବଂ ତା'ର ପ୍ରତିକାର ନିମନ୍ତେ ଆବଶ୍ୟକୀୟ ପରାମର୍ଶ ଗ୍ରହଣ କରିବା ଉଦ୍ଦେଶ୍ୟରେ କୃଷ୍ଣଙ୍କ ନିକଟକୁ ସେମାନେ ଆସିଲେ ।

କୃଷ୍ଣ କହିଲେ, 'ଦ୍ୱାରକାର ସର୍ବତ୍ର ଯେଉଁ ଅଶୁଭ ଘଟଣାମାନ ପରିଲକ୍ଷିତ ହେଉଅଛି, ସମ୍ଭବତ ଆମପ୍ରତି ହୋଇଥିବା ବ୍ରହ୍ମଶାପର ସେ ସବୁ ପରିଣତି । ଏ ପରିସ୍ଥିତିରେ, ଏଠାରେ ରହିବା ନିରାପଦ ନୁହେଁ । ବରଂ ଚାଲ, ପ୍ରଭାସ ତୀର୍ଥକୁ ସମସ୍ତେ ଯିବା । ପରମ ପବିତ୍ର ପ୍ରଭାସ ତୀର୍ଥରେ ସ୍ନାନ କରି ଦେବତା ତଥା ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ତର୍ପଣାଦି ପ୍ରଦାନକରି ଶ୍ରଦ୍ଧାର ସହିତ ବ୍ରାହ୍ମଣମାନଙ୍କୁ ଉତ୍ତମ ଭୋଜନ ଓ ଦାନ ଦକ୍ଷିଣା ପ୍ରଦାନ କରି ଏହି ବ୍ରହ୍ମଶାପ ରୂପକ ଦୁସ୍ତର ସାଗରରୁ ଉଦ୍ଧାର ପାଇବାକୁ ପ୍ରଯତ୍ନ କରିବା' ।

କୃଷ୍ଣଙ୍କର ସେହି ପରାମର୍ଶ ଅନୁସାରେ ସଙ୍ଗେ ସଙ୍ଗେ ଦ୍ୱାରକା-ବାସୀ ଯଦୁବଂଶୀୟ ବ୍ୟକ୍ତିମାନେ ପ୍ରଭାସ କ୍ଷେତ୍ର ଉଦ୍ଦେଶ୍ୟରେ ସପରିବାର ଯାତ୍ରା କରିବା ନିମନ୍ତେ ସମସ୍ତ ଆୟୋଜନ କଲେ ।

ଯଦୁବଂଶୀୟ ବ୍ୟକ୍ତିମାନଙ୍କୁ ସପରିବାର ପ୍ରଭାସ ତୀର୍ଥକୁ ଯାତ୍ରା କରୁଥିବାର ଲକ୍ଷ୍ୟକରି ସେହି ଅବସରରେ କୃଷ୍ଣ-ଭକ୍ତ ଉଦ୍ଧବ ଏକାନ୍ତରେ କୃଷ୍ଣଙ୍କ ଚରଣରେ ସଭକ୍ତି ପ୍ରଣିପାତ ହୋଇ କୃତାଞ୍ଜଳି ପୁଟରେ ନିବେଦନ କଲେ, 'ହେ ଦେବଦେବେଶ, ହେ ପୁଣ୍ୟଶ୍ରବଣ ! ଆପଣ ସର୍ବଶକ୍ତିମାନ୍ । ଆପଣଙ୍କ ପକ୍ଷରେ ବ୍ରହ୍ମ ଅଭିଶାପକୁ ଖଣ୍ଡନ କରିବା ବଡ଼କଥା ନୁହେଁ, ତଥାପି ତା'ର ନିରାକରଣ ନିମନ୍ତେ ଆପଣ ଯେତେବେଳେ କରୁ ନାହାନ୍ତି, ତହିଁରୁ ବୁଝୁଛି, ଆପଣ ଯଦୁବଂଶକୁ ସଂହାର କରି ଇହଲୋକକୁ ତ୍ୟାଗ କରିବାକୁ ମନେ ମନେ ସ୍ଥିର କରିଅଛନ୍ତି । ହେ କେଶବ, ଆପଣଙ୍କ ଚରଣକମଳକୁ ତ୍ୟାଗକରି ଏଠାରେ କ୍ଷଣକ ପାଇଁ ରହିବା ମୋ ପକ୍ଷରେ ସମ୍ଭବ ନୁହେଁ । ତେଣୁ ହେ ଅଖିଳଜଗତର ସ୍ରଷ୍ଟା, ପ୍ରଭୁ, ମୋତେ ମଧ୍ୟ ଆପଣଙ୍କ ସଙ୍ଗରେ ଦୟାକରି ସ୍ୱଧାମକୁ ନେଇ ଯାଆନ୍ତୁ । ପ୍ରିୟ କୃଷ୍ଣ, ଆପଣଙ୍କର ଗୋଟିଏ ଗୋଟିଏ ଲୀଳା ମନୁଷ୍ୟମାନଙ୍କ ପକ୍ଷରେ ଯେପରି ପରମ କଲ୍ୟାଣକର ସେହିପରି ଅମୃତୋପମ । ଯେ ଥରେ ଆପଣଙ୍କର ଏହି ଅନୁପମ ଲୀଳାର ରସ ଆସ୍ୱାଦନ କରିବାର ସୁଯୋଗ ପାଇଛି, ସାଂସାରିକ ଅନ୍ୟ କୌଣସି ସ୍ପୃହା ତା' ମନରେ ଉଦ୍ରେକ ହେବ ନାହିଁ । ପ୍ରଭୁ, ମୁଁ ଆପଣଙ୍କ ସହିତ କେବଳ ଏକତ୍ର ବାସକରି ଆସିଅଛି, ତାହା ନୁହେଁ,

ମୁଁ ଆପଣଙ୍କ ସଙ୍ଗରେ ଏକତ୍ର ଶୟନ, ଉପବେଶନ, ବିଚରଣ, ସ୍ନାନ, କ୍ରୀଡ଼ା ଓ ଭୋଜନ ମଧ୍ୟ କରି ଆସିଅଛି । ଆପଣ ମୋର ପ୍ରିୟତମ ସଖା ଏବଂ ଆତ୍ମା ସ୍ୱରୂପ । ଆପଣଙ୍କୁ କ୍ଷଣକ ପାଇଁ ତ୍ୟାଗକରି ମୁଁ ବଞ୍ଚିପାରିବି ନାହିଁ । ଆପଣଙ୍କର ବିରହ ମୋ ପକ୍ଷରେ ଅତ୍ୟନ୍ତ ଅସହ୍ୟ ହେବ । ଆପଣ ମୋ ପରି ଅକିଞ୍ଚନ ସେବକ ପ୍ରତି ଅନୁଗ୍ରହ ପ୍ରକାଶ କରି ଏହି ଦୁସ୍ତର ମାୟାସଂସାରରୁ ମୋତେ ଉଦ୍ଧାର କରନ୍ତୁ ।'

ଭକ୍ତ ଉଦ୍ଧବଙ୍କର କଥା ଶୁଣି କୃଷ୍ଣ କହିଲେ, 'ହେ ମହାଭାଗ୍ୟବାନ୍ ଉଦ୍ଧବ, ତୁମର ଅନୁମାନ ସତ୍ୟ । ବ୍ରହ୍ମା, ଶିବ ଓ ଇନ୍ଦ୍ର-ପ୍ରମୁଖ ଲୋକପାଳମାନେ ମୋର ସ୍ୱଧାମ ପ୍ରତ୍ୟାବର୍ତ୍ତନକୁ ଅପେକ୍ଷା କରି ରହିଅଛନ୍ତି । ଯେଉଁସବୁ କାର୍ଯ୍ୟ ସମ୍ପାଦନ କରିବା ନିମନ୍ତେ ଦେବତାମାନେ ମୋ ର ସହଯୋଗ କାମନା କରିଥିଲେ, ଧରାପୃଷ୍ଠରେ ଭାଇ ବଳରାମଙ୍କ ସହିତ ମୁଁ ଅବତୀର୍ଣ୍ଣ ହୋଇ ସେହିସବୁ ଦେବକାର୍ଯ୍ୟ ସମ୍ପନ୍ନ କରିଅଛି । ତା'ଛଡ଼ା ବ୍ରହ୍ମଶାପରେ ଏହି ଯଦୁବଂଶ ଦଗ୍ଧପ୍ରାୟ ହୋଇଅଛି ଏବଂ ଖୁବ୍ ଶୀଘ୍ର ପାରସ୍ପରିକ କଳହ ମଧ୍ୟରେ ଏହି ବଂଶ ନଷ୍ଟ ହୋଇଯିବ । ଆଜିଠାରୁ ସାତଦିନ ମଧ୍ୟରେ ସମୁଦ୍ରର ପ୍ଲାବନରେ ଏହି ଦ୍ୱାରକାପୁରୀ ମଧ୍ୟ ଜଳମଗ୍ନ ହୋଇଯିବ । ହେ ସାଧୁ, ଯେଉଁଦିନ ମୁଁ ଏହି ମର୍ତ୍ତ୍ୟଲୋକ ତ୍ୟାଗ କରିବି ସେହିଦିନ ଏହି ଦ୍ୱାରକାପୁରୀର ସମସ୍ତ ସୌଭାଗ୍ୟ ସମ୍ପୂର୍ଣ୍ଣରୂପେ ଅସ୍ତମିତ ହୋଇଯିବ ଏବଂ ସମଗ୍ର ପୃଥିବୀରେ କଳିଯୁଗ ଅନୁପ୍ରବେଶ କରିବ । କଳିଯୁଗରେ ଅଧିକାଂଶ ଲୋକମାନଙ୍କର ରୁଚି ଓ କାର୍ଯ୍ୟ ଅତ୍ୟନ୍ତ ଧର୍ମଗର୍ହିତ ହେବ । ତେଣୁ ମୁଁ ମର୍ତ୍ତ୍ୟଲୋକ ତ୍ୟାଗ କଲାପରେ ତୁମେ ଏଠାରେ ଆଉ ବାସ ନ କରି ପ୍ରିୟ ପରିଜନଙ୍କର ସ୍ନେହମମତାରୁ ନିଜକୁ ମୁକ୍ତକରି ମୋଠାରେ ସମ୍ପୂର୍ଣ୍ଣରୂପେ ମନୋନିବେଶ କରି ସମଦର୍ଶୀ ହୁଅ ଏବଂ ସମଗ୍ର ପୃଥିବୀ ପର୍ଯ୍ୟଟନ କର । ଏହି ସଂସାରରେ ଯାହାକିଛି ଦେଖୁଛ; ଶୁଣୁଛ, ଅନୁଭବ କରୁଛ, ସେସବୁ ନଶ୍ୱର; ସେଥିରେ ଆସକ୍ତ ନ ହୋଇ, ଇନ୍ଦ୍ରିୟ ସଂଯମତା ପାଳନ କରି ଏକାଗ୍ରଚିତ୍ତରେ ନିଜର ଆତ୍ମାକୁ ଭଗବାନଙ୍କଠାରେ ସଂଯୁକ୍ତ କର । ସମସ୍ତ ଜଗତକୁ ଭଗବାନଙ୍କର ନିଜର ସ୍ୱରୂପ ବୋଲି ଅନୁଭବ କର । ଏହି ସଂସାରରେ ଏକପଦ;

ଦ୍ୱିପଦ, ତ୍ରିପଦ, ଚତୁଷ୍ପଦ ତଥା ବହୁପଦବିଶିଷ୍ଟ ଅଗଣିତ ଜୀବ ମୋ ଦ୍ୱାରା ସୃଷ୍ଟହୋଇ ଆତଯାତ ହେଉଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ମନୁଷ୍ୟ ଶରୀର ମୋର ଅତ୍ୟନ୍ତ ପ୍ରିୟ । ତେଣୁ ମନୁଷ୍ୟମାନେ ଏକାଗ୍ରଚିତ୍ତରେ ଓ ତୀକ୍ଷ୍ଣ ବୁଦ୍ଧିଦ୍ୱାରା ବିଭିନ୍ନ ବିଷୟ ଓ ପରିସ୍ଥିତିକୁ ଉତ୍ତମରୂପେ ପର୍ଯ୍ୟାଲୋଚନା କରି ସତ୍‌ଶିକ୍ଷା ଆହରଣ କରିଥାନ୍ତି । ଏହି ପ୍ରସଙ୍ଗରେ ଯଦୁରାଜା ଓ ଅମିତତେଜସ୍ୱୀ ଅବଧୂତ ସମ୍ପର୍କିତ ଏକ ପ୍ରାଚୀନ ଇତିହାସ ମୁଁ ଉଲ୍ଲେଖ କରୁଅଛି, ଶ୍ରବଣ କର ।

ଥରେ ଜନୈକ ତ୍ରିକାଳଦର୍ଶୀ ତରୁଣ ଅବଧୂତଙ୍କୁ ପ୍ରସନ୍ନମନ ଓ ନିର୍ଭୟଚିତ୍ତରେ ବିଚରଣ କରୁଥିବାର ଦେଖି ତାଙ୍କର ଅନୁପମ ବୁଦ୍ଧି ଓ ଅପୂର୍ବ ତତ୍ତ୍ୱଜ୍ଞାନ ଥିବାର ମନେ କରି ଧର୍ମଜ୍ଞ ରାଜା ଯଦୁ ତାଙ୍କ ପ୍ରତି ବିଶେଷ ଆକୃଷ୍ଟ ହୋଇପଡ଼ିଲେ ଏବଂ ତାଙ୍କର ଏପରି ପ୍ରସନ୍ନତା ଓ ନିର୍ଭୀକତାର କାରଣ କ'ଣ ବୋଲି ପ୍ରଶ୍ନ କଲେ ।

ରାଜାଙ୍କର ପ୍ରଶ୍ନ ଶୁଣି ବ୍ରାହ୍ମଣ ଅବଧୂତ କହିଲେ, 'ରାଜା, ମୁଁ ନିଜର ବୁଦ୍ଧି ଓ ବିଚାରଶକ୍ତିକୁ ଆଶ୍ରୟ କରି ପୃଥିବୀ, ବାୟୁ, ଆକାଶ, ଜଳ, ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ, କପୋତ ଓ ଅଜଗର ସର୍ପ ଆଦି ବିଭିନ୍ନ ଚବିଶ ଗୁରୁଙ୍କଠାରୁ ବହୁକଥା ଶିକ୍ଷାକରିଛି ଏବଂ ସେମାନଙ୍କୁ ନିଜର ଗୁରୁଭାବରେ ଗ୍ରହଣ କରିଅଛି । ସେହି ଗୁରୁଙ୍କଠାରୁ ଲାଭ କରିଥିବା ଜ୍ଞାନ ବଳରେ ମୁଁ ମୁକ୍ତଭାବ ପ୍ରାପ୍ତ ହୋଇଥିବାରୁ ପ୍ରସନ୍ନ ଚିତ୍ତରେ ସ୍ୱଚ୍ଛନ୍ଦରେ ଏପରି ଭ୍ରମଣ କରୁଅଛି । ଯେଉଁ କଥା ମୁଁ ଯେଉଁମାନଙ୍କଠାରୁ ଶିକ୍ଷା କରିଅଛି, ତାହା ମୁଁ ଆପଣଙ୍କ ନିକଟରେ ପ୍ରକାଶ କରୁଅଛି, ଶ୍ରବଣ କରନ୍ତୁ ।',

'ମହାରାଜ, ପୃଥିବୀ ମୋର ପ୍ରଥମ ଗୁରୁ ଏବଂ ପୃଥିବୀଠାରୁ ମୁଁ ଧୈର୍ଯ୍ୟଭାବ ଶିକ୍ଷା କରିଅଛି । ପୃଥିବୀ ଉପରେ ଆମେ ଯେତେ ଉତ୍ପାତ କଲେ ମଧ୍ୟ ସେ କେବେ ସେସବୁରେ ପ୍ରତିବାଦ କରେନାହିଁ କି ପ୍ରତିଶୋଧ ନିଏ ନାହିଁ । ପୃଥିବୀଠାରେ ପରିଲକ୍ଷିତ ହେଉଥିବା ଏହି ଧୈର୍ଯ୍ୟଶକ୍ତିର କୌଣସି ତୁଳନା ନାହିଁ । ପ୍ରତ୍ୟେକ ବାଧାବିଘ୍ନକୁ ଦୈବର ଦାନ ବୋଲି ବିଚାର କରି ପୃଥିବୀ ପରି ଅକ୍ଷୋଭିତ ଚିତ୍ତରେ ଧୈର୍ଯ୍ୟର ସହିତ ଆମ୍ଭମାନଙ୍କର ସହ୍ୟ କରିଯିବା ଉଚିତ । ପୃଥିବୀରେ ଜାତ ହୋଇଥିବା

ପର୍ବତ ଓ ବୃକ୍ଷସକଳ କିପରି ନିଃସ୍ୱାର୍ଥପର ଭାବରେ ପରର ଉପକାର ସାଧନରେ ନିଜ ନିଜକୁ ନିୟୋଜିତ କରିଅଛନ୍ତି, ତାହା ବାସ୍ତବିକ ଶିକ୍ଷଣୀୟ ।

ବାୟୁ ମୋର ଦ୍ୱିତୀୟ ଗୁରୁ । ପ୍ରାଣବାୟୁ ହେଉ ଅଥବା ବହିର୍ବାୟୁ ହେଉ, ସେ ଭିତରେ ଓ ବାହାରେ ସର୍ବଦା ନିତ୍ୟ ପ୍ରବାହିତ ହୋଇ ସନ୍ତୁଷ୍ଟ ଚିତ୍ତରେ ନିଜର କର୍ତ୍ତବ୍ୟ କରିଯାଏ, ଅଥଚ କୌଣସି ବସ୍ତୁ ସହିତ ଆସକ୍ତ ହୁଏନାହିଁ, ମୁଁ ତେଣୁ ବାୟୁଠାରୁ କର୍ତ୍ତବ୍ୟ-ସଚେତନତା, ସନ୍ତୋଷ, ଅନାସକ୍ତି ତଥା ଉଦାସଭାବ ଶିକ୍ଷା କରିଅଛି ।

ଆକାଶ ମୋର ତୃତୀୟ ଗୁରୁ । ଭିନ୍ନ ଭିନ୍ନ ସ୍ଥାନ ଓ ପରି-ବେଶରେ ଆକାଶର ଆକୃତି ଓ ରୂପ ଭିନ୍ନ ଭିନ୍ନ ବୋଲି ପ୍ରତୀତ ହେଲେ ମଧ୍ୟ ବାସ୍ତବିକ ଆକାଶ ଏକ ସର୍ବବ୍ୟାପକ ଓ ଅବିଚ୍ଛିନ୍ନ, ସେହିପରି ବିଭିନ୍ନ ସ୍ଥୂଳ ଓ ସୂକ୍ଷ୍ମ ଶରୀରରେ ଆତ୍ମାର ସ୍ୱତନ୍ତ୍ର ଅବସ୍ଥିତି ପ୍ରତୀତ ହେଲେ ମଧ୍ୟ ବସ୍ତୁତଃ ତାହା ଏକ ବ୍ରହ୍ମର ଭିନ୍ନ ଭିନ୍ନ ରୂପ ମାତ୍ର । ଆକାଶଠାରୁ ବ୍ରହ୍ମର ସର୍ବବ୍ୟାପକତା ଓ ଅଭିନ୍ନତା ମୁଁ ଶିକ୍ଷା କରିଅଛି । ମେଘବସ୍ତ୍ରାବୃତ ହୋଇ ଆକାଶକୁ ଆଚ୍ଛନ୍ନ କରି ରଖିଲେ ମଧ୍ୟ ଆକାଶର ନିର୍ମଳତା ଯେପରି ତହିଁରେ ନଷ୍ଟ ହୁଏନାହିଁ, ସେହିପରି ବିଭିନ୍ନ ଗୁଣରେ ଜୀବମାନେ ଜନ୍ମ ହୋଇ କାଳଚକ୍ରର ଘୂର୍ଣ୍ଣନରେ ମରଣ ଭୋଗୁଥିଲେ ମଧ୍ୟ ସେସବୁ କାର୍ଯ୍ୟ ଶରୀରସ୍ଥିତ ଆତ୍ମାକୁ ପ୍ରଭାବିତ କରିପାରନ୍ତି ନାହିଁ । କାରଣ ଆକାଶ ପରି ଆତ୍ମା ମଧ୍ୟ ସର୍ବବ୍ୟାପକ, ଅଭିନ୍ନ, ଚିରଶୁଦ୍ଧ ଓ ପ୍ରଭାବରହିତ ।

ଜଳ ମୋର ଚତୁର୍ଥ ଗୁରୁ । ଜଳ ସ୍ୱଭାବତଃ ସ୍ୱଚ୍ଛ, ସ୍ନିଗ୍ଧ, ନିର୍ମଳ ଓ ମଧୁର । ଜଳକୁ କେନ୍ଦ୍ରକରି ସୃଷ୍ଟ ହୋଇଥିବା ତୀର୍ଥକୁ ସ୍ପର୍ଶ ବା ତା'ର ନାମୋଚ୍ଚାରଣ କରିବା ମାତ୍ରେ ମନୁଷ୍ୟମାନେ ପବିତ୍ର ହୋଇଥାନ୍ତି । ସେହିପରି ସାଧୁଜନମାନଙ୍କର ସ୍ୱଭାବ ଜଳର ଅନୁରୂପ ହେବା ଉଚିତ । ସେମାନଙ୍କର ସ୍ୱଭାବ, ଚରିତ୍ର ନିର୍ମଳ, ବ୍ୟବହାର ମଧୁର ହେବା ଉଚିତ ଯେପରି ସେମାନଙ୍କର ଦର୍ଶନ, ସ୍ପର୍ଶନ ଓ ନାମୋଚ୍ଚାରଣ ଜନସମାଜକୁ ପବିତ୍ର କରିପାରିବ ।

ଅଗ୍ନି ମୋର ପଞ୍ଚମ ଗୁରୁ । ଅଗ୍ନିର ରୂପ ତେଜସ୍ୱୀ ଓ ଜ୍ୟୋତିର୍ମୟ ଏବଂ ଅଗ୍ନି ସବୁ ଭକ୍ଷଣ କଲେ ମଧ୍ୟ ସେହି ବସ୍ତୁର ଦୋଷରେ ସେ କେବେ ଦୂଷିତ ହୁଏ ନାହିଁ । ଅନୁରୂପ ଭାବରେ ଲୋକମାନେ ସାଂସାରିକ ସୁଖ ଭୋଗରେ ଜୀବନ ଯାପନ କଲେ ମଧ୍ୟ ନିଜର ଇନ୍ଦ୍ରିୟକୁ ସଂଯତ କରି ସେହିକୁ ଭୋଗଜନିତ ଦୋଷରୁ ନିଜକୁ ଊର୍ଦ୍ଧ୍ୱରେ ରଖିବା ଉଚିତ ।

ଚନ୍ଦ୍ର ମୋର ଷଷ୍ଠ ଗୁରୁ । ତଥି ଅନୁସାରେ ଚନ୍ଦ୍ରକଳାରେ ହ୍ରାସବୃଦ୍ଧି ଓ କ୍ଷୟ ପରିଲକ୍ଷିତ ହୁଏ ଅଥଚ ଚନ୍ଦ୍ରରେ ପ୍ରକୃତପକ୍ଷେ କୌଣସି ବୃଦ୍ଧି ବା କ୍ଷୟ ସଂଘଟିତ ହୁଏ ନାହିଁ । ସେହିପରି ବୟସକ୍ରମରେ ଜୀବର ଶରୀର ବୃଦ୍ଧି ଲାଭ କଲେ ମଧ୍ୟ ଶରୀରସ୍ଥିତ ଆତ୍ମାରେ କୌଣସି ପରିବର୍ତ୍ତନ ବା ପରିବର୍ଦ୍ଧନ ଘଟେ ନାହିଁ ।

ସପ୍ତମ ଗୁରୁ ଭାବରେ ମୁଁ ସୂର୍ଯ୍ୟଙ୍କୁ ଗ୍ରହଣ କରିଅଛି । ସୂର୍ଯ୍ୟ ଯେପରି ନିଜର କିରଣ ଦ୍ୱାରା ପୃଥିବୀରୁ ଜଳ ଶୋଷଣ କରି ପରେ ବର୍ଷା ରୂପରେ ସେହି ଶୋଷିତ ଜଳକୁ ପୃଥିବୀପୃଷ୍ଠରେ ବର୍ଷଣ କରି ଜୀବ-ଜଗତର କଲ୍ୟାଣ ସାଧନ କରିଥାନ୍ତି, ସେହିପରି ଯୋଗୀପୁରୁଷମାନେ ନିଜର ଇନ୍ଦ୍ରିୟ ଦ୍ୱାରା ଗ୍ରହଣ କରିଥିବା ବିଷୟର କୁଫଳ ଓ ସୁଫଳ ସମ୍ପର୍କିତ ନିଜର ଅଭିଜ୍ଞତା ପ୍ରକାଶ କରି ଜନସମାଜର କଲ୍ୟାଣ ସାଧନ କରିବା ଉଚିତ । ବିଭିନ୍ନ ସ୍ଥାନରେ ସୂର୍ଯ୍ୟ ପ୍ରତିବିମ୍ବିତ ହୋଇ ଏକ ସମୟରେ ଏକାଧିକ ସୂର୍ଯ୍ୟର ପ୍ରଭାବ ସୃଷ୍ଟି କଲେ ମଧ୍ୟ ପ୍ରକୃତରେ ସମସ୍ତ ପ୍ରତିବିମ୍ବିତ ସୂର୍ଯ୍ୟ ଯେପରି ଏକ ଓ ଅଦ୍ୱିତୀୟ, ସେହିପରି ପ୍ରତ୍ୟେକ ଶରୀରରେ ଆତ୍ମା ଅବସ୍ଥାନ କରୁଥିଲେ ମଧ୍ୟ ଶରୀର ଭେଦରେ ଆତ୍ମା ଭିନ୍ନ ଓ ଏକାଧିକ ନୁହେଁ; ତାହା ବସ୍ତୁତଃ ଏକ ଓ ଏକ ଆତ୍ମାର ରୂପାନ୍ତର ମାତ୍ର ।

କପୋତ ପକ୍ଷୀ ମୋର ଅଷ୍ଟମ ଗୁରୁ ହେଲେ, ସେହିକଥା ମୁଁ ବର୍ଣ୍ଣନା କରୁଛି । ଗୋଟିଏ କପୋତ ଦମ୍ପତି ଅରଣ୍ୟର ଏକ ବୃକ୍ଷରେ ବସାବାନ୍ଧି ଆନନ୍ଦରେ ବାସ କରୁଥିଲେ । ଗର୍ଭବତୀ କପୋତୀଟି କେତେଗୋଟି ଡିମ୍ବ ପ୍ରସବ କଲା ଓ ଯଥାସମୟରେ ଡିମ୍ବ ମଧ୍ୟରୁ

ଶିଶୁଶାବକ ଜନ୍ମ ହେଲେ । ନବଜାତ ଶିଶୁପକ୍ଷୀମାନଙ୍କୁ ଆନନ୍ଦ ମମତାରେ କପୋତଦମ୍ପତି ଲାଳନପାଳନ କରିବାକୁ ଲାଗିଲେ । ଥରେ କପୋତ କପୋତୀ ଦୁହେଁ ଶିଶୁମାନଙ୍କ ନିମନ୍ତେ ଆହାର ସଂଗ୍ରହ କରିବାକୁ ଯାଇଥିବା ସମୟରେ ଗୋଟିଏ ବ୍ୟାଧ ତା'ର ଜାଲ ସାହାଯ୍ୟରେ ଶିଶୁପକ୍ଷୀଗୁଡ଼ିକୁ ଧରିନେଲା । ସନ୍ତାନମାନଙ୍କ ପାଇଁ ଥଣ୍ଟରେ ଆହାର ଧରି ଫେରିବା ପରେ ସେମାନଙ୍କୁ ବ୍ୟାଧର ଜାଲରେ ପଡ଼ି ଛଟପଟ ହେଉଥିବାର ଦେଖି କପୋତ ଦମ୍ପତିମାନଙ୍କର ଶୋକର ସୀମା ରହିଲା ନାହିଁ । ସନ୍ତାନମାନଙ୍କ ଦୁଃଖରେ ଅଭିଭୂତ ହୋଇ ସେମାନେ ଗୋଟିଏ ପରେ ଗୋଟିଏ ବ୍ୟାଧର ଜାଲକୁ ଲମ୍ଫପ୍ରଦାନ କରିଥିଲେ । ଯେଉଁମାନେ ସଂସାର ମଧ୍ୟରେ ଜନ୍ମ ହୋଇ ପାରିବାରିକ ସ୍ନେହ ମମତାରେ ଛନ୍ଦି ହୋଇପଡ଼ନ୍ତି, ସେମାନେ ସଂସାରବନ୍ଧନରୁ ମୁକ୍ତିଲାଭ କରିବା ପରିବର୍ତ୍ତେ ପରମ ଦୁଃଖ ଲାଭ କରିଥାନ୍ତି, କପୋତପକ୍ଷୀ ତା'ର ଏକ ସୁନ୍ଦର ଦୃଷ୍ଟାନ୍ତ । ମନୁଷ୍ୟର ଶରୀର ମୋକ୍ଷ ଲାଭ କରିବାର ମାଧ୍ୟମ ରୂପେ ଉଦ୍ଦିଷ୍ଟ; ତେଣୁ ମୋକ୍ଷଲାଭ ପାଇଁ ଶରୀର ଦ୍ୱାରା ଚେଷ୍ଟା ନ କରି ସଂସାର ବନ୍ଧନରେ ଜଡ଼ିତ ହେବା ମନୁଷ୍ୟଙ୍କ ପକ୍ଷରେ ଆଦୌ ଉଚିତ ନୁହେଁ ।

ଅଜଗର ସର୍ପ ମୋର ନବମ ଗୁରୁ । ଯଥେଷ୍ଟ ଶାରୀରିକ ସାମର୍ଥ୍ୟ ଥିଲେ ମଧ୍ୟ ଅଜଗର ସର୍ପ, ଅଳ୍ପ ହେଉ ବା ବେଶି ହେଉ, ସ୍ୱାଦୁ ହେଉ ବା ନ ହେଉ, ଦୈବଯୋଗରେ ଯାହା ମିଳେ ତାକୁ ଆହାର କରି ସନ୍ତୁଷ୍ଟ ରହିଥାଏ; ସେହିପରି ଦୈବଯୋଗରେ ଯାହା କିଛି ମିଳୁଛି, ତହିଁରେ ସନ୍ତୁଷ୍ଟ ରହିବା ମନୁଷ୍ୟର କର୍ତ୍ତବ୍ୟ । ଆହାର ସଂଗ୍ରହ ବିଷୟରେ ବ୍ୟାକୁଳ ହେବା କିମ୍ବା ସମୟ ନଷ୍ଟ କରିବା, ବିଶେଷକରି ଇନ୍ଦ୍ରିୟ ଅଛି ବୋଲି ଇନ୍ଦ୍ରିୟ ସୁଖ ପାଇଁ ଲାଳାୟିତ ହେବା ମନୁଷ୍ୟ ପକ୍ଷରେ ଆଦୌ ଉଚିତ ନୁହେଁ । ଅଜଗର ସର୍ପର ଆଚରଣରୁ ମୁଁ ଏହା ଶିକ୍ଷାଲାଭ କରିଅଛି ।

ସମୁଦ୍ର ମୋର ଦଶମ ଗୁରୁ । ସ୍ୱଭାବତଃ ସମୁଦ୍ର ପ୍ରଶାନ୍ତ, ଗମ୍ଭୀର, ଅନତିକ୍ରମଣୀୟ ଓ ବୃଦ୍ଧିରହିତ । ବର୍ଷାଋତୁରେ ନଦନଦୀ ବନ୍ୟାପ୍ଲାବିତ ହୋଇ ସମୁଦ୍ରରେ ମିଳିତ ହେଲେ ମଧ୍ୟ ସମୁଦ୍ର ବଢ଼େ

ନାହିଁ କି ଗ୍ରୀଷ୍ମଋତୁରେ ନଦୀଗୁଡ଼ିକ ଶୁଷ୍କ ହୋଇପଡ଼ିଲେ ଜଳ ଅଭାବରେ ସମୁଦ୍ର ଶୁଖିଯାଏ ନାହିଁ । ସବୁବେଳେ ସମୁଦ୍ରର ସେହି ଏକ ଅବସ୍ଥା । ବୃଦ୍ଧି ନାହିଁ କି କ୍ଷୟ ନାହିଁ । ସେହିପରି ମନୁଷ୍ୟମାନେ ପାର୍ଥିବବସ୍ତୁର ପ୍ରାପ୍ତିରେ ଅଧିକ ଆନନ୍ଦିତ ଓ ତାହାର ଅଭାବରେ ଦୁଃଖିତ ହେବା ଉଚିତ ନୁହେଁ । ସାଂସାରିକ ସୁଖ ଦୁଃଖରେ ସମୁଦ୍ରପରି ସଦା ସ୍ଥିର ଓ ଉଦାସୀନ ରହିବା ହିଁ ମନୁଷ୍ୟର ପରମ କର୍ତ୍ତବ୍ୟ ।

ଅଗ୍ନି ମୋର ଏକାଦଶ ଗୁରୁ । ଅଗ୍ନିର ଔଜ୍ଜ୍ୱଲ୍ୟରେ ଆକୃଷ୍ଟ ହୋଇ ପତଙ୍ଗମାନେ ତହିଁରେ ଜୀବନ ଝାସ ଦେଲା ପରି ଇନ୍ଦ୍ରିୟ ଅସଂଯମୀ ବ୍ୟକ୍ତିମାନେ ଦେବମାୟାରୂପିଣୀ ସ୍ତ୍ରୀଲୋକମାନଙ୍କୁ ଦେଖି ସେମାନଙ୍କର ନୟନମନଲୋଭା ରୂପ, ଯୌବନ ଓ ବ୍ୟବହାରରେ ଆକୃଷ୍ଟ ହୋଇ ପତଙ୍ଗ ପରି ନିଜର ସର୍ବନାଶ ଘଟାଇଥାନ୍ତି । ତେଣୁ ସେପରି ଅପରିଣାମଦର୍ଶୀ ଆଚରଣରୁ ପ୍ରତ୍ୟେକ ବ୍ୟକ୍ତି କ୍ଷାନ୍ତ ହେବା ଉଚିତ୍ ।

ଭ୍ରମର ମୋର ଦ୍ୱାଦଶ ଗୁରୁ । ଭ୍ରମର ବିଭିନ୍ନ ପୁଷ୍ପରୁ ମଧୁଭକ୍ଷଣ କରି ନିଜର କ୍ଷୁଧା ନିବାରଣ କରିଥାଏ । ସେହିପରି ସଂସାରତ୍ୟାଗୀ ସନ୍ନ୍ୟାସୀମାନେ ଗୋଟିଏ ଗୃହସ୍ଥଙ୍କ ଘରୁ ସମସ୍ତ ଆହାର ସଂଗ୍ରହ କରିବାର ପ୍ରଲୋଭନକୁ ତ୍ୟାଗ କରି ନିଜର ପ୍ରୟୋଜନୀୟତାନୁସାରେ ଆହାର ବିଭିନ୍ନ ଗୃହସ୍ଥଙ୍କଠାରୁ ଭିକ୍ଷା ସୂତ୍ରରେ ସଂଗ୍ରହ କରିବା ଉଚିତ; ନଚେତ୍ ଆକଣ୍ଠ ମଧୁ ପାନ କରିବାର ପ୍ରଲୋଭନର ବଶବର୍ତ୍ତୀ ହୋଇ ପଦ୍ମପୁଷ୍ପ ମଧ୍ୟରେ ସମଗ୍ର ରାତି ଭ୍ରମର ଆବଦ୍ଧ ହୋଇ ରହିଗଲା ପରି ସନ୍ନ୍ୟାସୀ-ମାନେ ଗୃହସ୍ଥ ଜୀବନର ମାୟାବନ୍ଧନରେ ଜଡ଼ିତ ହୋଇଯିବା ବିଚିତ୍ର ନୁହେଁ । ମହୁମାଛି ବିଭିନ୍ନ ପୁଷ୍ପରୁ ମଧୁ ସଂଗ୍ରହ କରିଥାଏ, ସେହିପରି କୁଶଳୀ ବ୍ୟକ୍ତିମାନେ ବିଭିନ୍ନ ଶାସ୍ତ୍ରରୁ ସାରକଥାମାନ ସଂଗ୍ରହ କରିବା ଉଚିତ । ସନ୍ନ୍ୟାସୀମାନେ ସନ୍ଧ୍ୟା ପାଇଁ କିମ୍ବା ଆଗାମୀ ଦିବସ ପାଇଁ ଆହାର ସଞ୍ଚୟ କରିବା ଉଚିତ ନୁହେଁ, କାରଣ ସେପରି କଲେ ମହୁମାଛି ଦ୍ୱାରା ସଂଗୃହୀତ ମଧୁ ସହିତ ମହୁମାଛିର ଜୀବନ ସଙ୍କଟାପନ୍ନ ହେଲାପରି ସଞ୍ଚୟପ୍ରୟାସୀ ସନ୍ନ୍ୟାସୀମାନଙ୍କର ଜୀବନ ଓ ବ୍ରତ ମଧ୍ୟ ନଷ୍ଟ ହୋଇଥାଏ ।

ହସ୍ତୀ ମଧ୍ୟ ମୋର ଏକ ଗୁରୁ । ସନ୍ନ୍ୟାସୀ ଓ ବନ୍ଧବ୍ୟକ୍ତିମାନେ ସ୍ତ୍ରୀଲୋକଙ୍କଠାରୁ ଦୂରରେ ରହିବା ଉଚିତ; ଏପରି କି ସେମାନଙ୍କର ଅଙ୍ଗ ସ୍ପର୍ଶ କରିବା ଦୂରର କଥା, ସେମାନଙ୍କର ନିର୍ଜୀବ ଚିତ୍ର ବା ମୂର୍ତ୍ତିକୁ ମଧ୍ୟ ସ୍ପର୍ଶ କରିବା ସନ୍ନ୍ୟାସୀମାନଙ୍କ ପକ୍ଷରେ ସମୀଚୀନ ନୁହେଁ । ଖେଦାରେ ଥିବା ହସ୍ତିନୀର ନିର୍ଜୀବ ମୂର୍ତ୍ତି ଦେଖି ହସ୍ତିନୀ ସହିତ ମିଳିତ ହେବାର ପ୍ରଲୋଭନରେ ମୋହିତ ହୋଇ ହସ୍ତୀକୁ ଅବଶେଷରେ ଖେଦାର ଶରବ୍ୟ ହେବାକୁ ପଡ଼ିଥାଏ । ନାରୀଙ୍କୁ ମୂର୍ତ୍ତିମନ୍ତ ମୃତ୍ୟୁ ବୋଲି କଳ୍ପନା କରି ସନ୍ନ୍ୟାସୀ ତଥା ବନ୍ଧ ବ୍ୟକ୍ତିମାନେ ନାରୀ ଚନ୍ତାରୁ ନିଜକୁ ଦୂରେଇ ନେବା ବିଧେୟ; ନଚେତ୍ ନାରୀଚିନ୍ତା ସନ୍ନ୍ୟାସୀକୁ ଫସାଇ ବନ୍ଧନରେ ଆବଦ୍ଧ କରିଦେବା ଯେପରି ବିଚିତ୍ର ନୁହେଁ ସେହିପରି ହସ୍ତିନୀକୁ କେନ୍ଦ୍ର କରି ହସ୍ତୀ ହସ୍ତୀଙ୍କ ମଧ୍ୟରେ ଅଯଥା କଳହ ସୂତ୍ରପାତ ହୋଇ ତାହା ପରେ ସେମାନଙ୍କର ମୃତ୍ୟୁର କାରଣ ହେଲାପରି ନାରୀ ଚନ୍ତାରେ ଜଡ଼ିତ ହୋଇ ଲୋକମାନେ ସେମାନଙ୍କର ମୃତ୍ୟୁକୁ ଡାକିଆଣିବା ଅସମ୍ଭବ ନୁହେଁ ।

ମଧୁ ସଂଗ୍ରହକାରୀ ମୋର ଅନ୍ୟତମ ଗୁରୁ । କୃପଣ ଲୋକମାନଙ୍କର ସ୍ୱଭାବ ଏପରି ଯେ ସେମାନେ ନିଜ ପେଟକୁ ନ ଖାଇ କି ଅନ୍ୟକୁ ଦାନ ନ କରି, ବହୁକଷ୍ଟ ସ୍ୱୀକାର କରି ଅର୍ଜିତ ଧନକୁ ସଞ୍ଚୟ କରିଥାନ୍ତି । ମହୁମାଛିମାନଙ୍କ ଦ୍ୱାରା ସଞ୍ଚିତ ମଧୁକୁ ମଧୁ ସଂଗ୍ରହକାରୀମାନେ ଅପହରଣ କରିନେଲା ପରି କୃପଣର ସଞ୍ଚିତ ଧନକୁ ଅବଶେଷରେ ଅନ୍ୟମାନେ ହିଁ ଭୋଗ କରିଥାନ୍ତି । ପ୍ରତ୍ୟେକ ଗୃହସ୍ଥ ନିଜର ଅର୍ଜିତ ଧନକୁ ସ୍ୱଇଚ୍ଛାରେ ସାଧୁସନ୍ନ୍ୟାସୀପ୍ରମୁଖଙ୍କ ସେବାରେ ବିନିଯୋଗ କରିବା ଉଚିତ; ନଚେତ ତା'ର ସଞ୍ଚିତ ସମ୍ପତ୍ତି ଚୋର ଡକାୟତଙ୍କର ଭୋଗ୍ୟ ହୋଇଥାଏ ।

ମୃଗଠାରୁ ମଧ୍ୟ ମୁଁ ଶିକ୍ଷାଲାଭ କରିଅଛି । ବ୍ୟାଧର ସଙ୍ଗୀତରେ ଆକୃଷ୍ଟ ହୋଇ ମୃଗମାନେ ବ୍ୟାଧର ଫାଶରେ ଆବଦ୍ଧ ହେଲାପରି ବନବାସୀ ସନ୍ନ୍ୟାସୀମାନେ କେବେ ଗ୍ରାମ୍ୟ ସଙ୍ଗୀତରେ ଆକୃଷ୍ଟ ହେବା ଉଚିତ ନୁହେଁ; କାରଣ ଗ୍ରାମ୍ୟ ସଙ୍ଗୀତ ପ୍ରତି ଦୁର୍ବଳତା ପ୍ରକାଶ କଲେ ସନ୍ନ୍ୟାସୀମାନେ ନିଜର ସ୍ୱାତନ୍ତ୍ର୍ୟ ଓ ସନ୍ନ୍ୟାସ ଧର୍ମ ପଥରେ ହରାଇ ବସିଥାନ୍ତି ।

ମୀନକୁ ମଧ୍ୟ ମୁଁ ଗୁରୁଭାବରେ ସ୍ୱୀକାର କରିଅଛି । ବନଶୀ ଆଗରେ ଲଗାହୋଇଥିବା ସାମାନ୍ୟ ଖାଦ୍ୟର ଲୋଭରେ ପଡ଼ି ଶେଷରେ ମୀନକୁ ବନଶୀ କଣ୍ଟାକୁ ନିଜ ପ୍ରାଣ ହରାଇବାକୁ ପଡ଼ିଥାଏ । ରସାସ୍ୱାଦନ ସମ୍ପର୍କରେ ଅତ୍ୟନ୍ତ ସତର୍କତା ଓ ସଂଯମତା ଅବଲମ୍ବନ କରିବା ଉଚିତ । ରସନେନ୍ଦ୍ରିୟକୁ ଜୟ କରିବା ସମସ୍ତଙ୍କର ଧ୍ୟେୟ ହେବା ଉଚିତ କାରଣ, ଜିହ୍ୱାକୁ ଜୟ କରିପାରିଲେ ଅନ୍ୟାନ୍ୟ ଇନ୍ଦ୍ରିୟକୁ ସଂଯତ କରିବା ସହଜ ଓ ସମ୍ଭବ ହୋଇଥାଏ ।

ପିଙ୍ଗଳା ବେଶ୍ୟା ମଧ୍ୟ ମୋର ଏକ ଗୁରୁ । ପିଙ୍ଗଳା ବେଶ୍ୟାର ଘର ବିଦେହ ରାଜ୍ୟରେ । ଦିନେ ସେ ନିଜକୁ ସୁନ୍ଦର ବେଶଭୂଷାରେ; ସୁସଜ୍ଜିତ କରି ଜନୈକ ଧନୀ ଅତିଥିର ଆଗମନକୁ ପ୍ରତୀକ୍ଷା କରୁଥାଏ; କିନ୍ତୁ ଶେଷ ପର୍ଯ୍ୟନ୍ତ ସେ ଅତିଥି ନ ଆସିବାରୁ ପିଙ୍ଗଳ ବ୍ୟର୍ଥ-ମନୋରଥା ହୋଇ ନିଜକୁ ଧିକ୍କାର କରି ଚିନ୍ତାକଲା, 'ମୋ ପରି ମନ୍ଦବୁଦ୍ଧି ଆଉ କାହାର ହେବ ? ଭଗବାନ ମୋର ଏହି ଶରୀରରେ ନିତ୍ୟ ଅବସ୍ଥାନ କରୁଅଛନ୍ତି ଏବଂ ପ୍ରକୃତ ପ୍ରେମ ଓ ସୁଖ ପ୍ରଦାନ କରିବାକୁ ସେ ହିଁ କେବଳ ସମର୍ଥ; ଅଥଚ ମୁଁ ସେହି ଭଗବାନଙ୍କ ପ୍ରତି ବିମୁଖ ହୋଇ ଜଣେ ମଳମୂତ୍ର ତଥା ବ୍ୟାଧି ପରିପୂର୍ଣ୍ଣ ଏକ ମରଣଶୀଳ କୁତ୍ସିତ ବ୍ୟକ୍ତିଠାରୁ କାମ୍ୟବସ୍ତୁ ଲାଭ କରିବାକୁ ମୁଁ ଯାହା ଆଶାୟୀ ହୋଇଅଛି ? ମୋତେ ଧିକ୍ !! ମୋ ହୃଦୟରେ ବିରାଜିତ ଥିବା ଭଗବାନ ମୋର ହିତୈଷୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ, ପରମ ପ୍ରିୟତମ ପ୍ରଭୁ ଏବଂ ଆତ୍ମା ସ୍ୱରୂପ । ମୁଁ ନିଜକୁ ତାଙ୍କ ଶ୍ରୀଚରଣରେ ସମର୍ପଣ କରି ଲକ୍ଷ୍ମୀଙ୍କ ପରି ତାଙ୍କର ସେବା କରିବି । ମୋପରି ହତଭାଗିନୀ ପ୍ରତି ଭଗବାନଙ୍କର ତଥାପି କରୁଣା ରହିଛି, ତା ନ ହୋଇଥିଲେ, ମୋ ମନରେ ଆଜି ଏପରି ବୈରାଗ୍ୟ ଜାତହୋଇ ନ ଥାନ୍ତା । ଆଜିଠାରୁ ପାର୍ଥିବ ସୁଖପ୍ରତି ଲାଳସୀ ନ ହୋଇ ଶ୍ରଦ୍ଧା ଓ ଭକ୍ତିର ସହିତ ଆତ୍ମ ସ୍ୱରୂପ ଭଗବାନଙ୍କର ସେବା ଓ ଚିନ୍ତାରେ ହିଁ ନିଜକୁ ଉତ୍ସର୍ଗ କରିବି । ଏହି ସଂସାରକୂପରେ ପତିତ ହୋଇଥିବା ଜୀବକୁ କାଳରୂପୀ ସର୍ପର କବଳରୁ ରକ୍ଷା କରିବାକୁ ଭଗବାନଙ୍କ ବ୍ୟତୀତ ଅନ୍ୟ କେହି ସମର୍ଥ ନୁହଁନ୍ତି । ତେଣୁ ସେହି ଭଗବାନଙ୍କୁ ମୁଁ କାୟ-ମନୋ-ବାକ୍ୟରେ କାମନା

କରିବ ।’ ପିଙ୍ଗଳାର ସେହି ଅପୂର୍ବ ଅନୁଭୂତିରୁ ଆଶା ଯେ ଅଶେଷ ଦୁଃଖର କାରଣ ଓ କାମନାଶୂନ୍ୟତା ଯେ ପରମ ସୁଖ ପ୍ରଦାନକାରୀ, ଏହି ସତଶିକ୍ଷା ମୁଁ ଲାଭ କରିଅଛି ।

କୁରର ପକ୍ଷୀ ମୋର ଅନ୍ୟତମ ଗୁରୁ । କୁରରର ମାଂସ ଅତି ପ୍ରିୟଖାଦ୍ୟ । ଥରେ ଗୋଟିଏ କୁରର ଖଣ୍ଡିଏ ମାଂସ ଧରି ଆକାଶରେ ଯାଉଥିବାବେଳେ ଅନ୍ୟ ଗୋଟିଏ କୁରରର ଲୋଲୁପ ଦୃଷ୍ଟି ସେହି ମାଂସ ଉପରେ ପଡ଼ିଲା ଏବଂ ମାଂସଖଣ୍ଡିକ ଛଡ଼ାଇ ନେବାପାଇଁ ସେ ପ୍ରଥମ କୁରର ସହିତ ଯୁଦ୍ଧ କଲା । ସେହି ଯୁଦ୍ଧରେ ପ୍ରଥମ କୁରର ପକ୍ଷୀର ମୃତ୍ୟୁ ହୋଇଗଲା । ମାଂସଖଣ୍ଡିକୁ ପ୍ରତି ଆସକ୍ତ ନ ହୋଇଥିଲେ ତାର ପ୍ରାଣହାନି ଘଟି ନଥାନ୍ତା । ଆସକ୍ତିରୁ ଦୁଃଖ ଏବଂ ଆସକ୍ତିର ନିବୃତ୍ତିରୁ ସୁଖ ଲାଭ ହୋଇଥାଏ, ଏହି ଶିକ୍ଷା ମୁଁ କୁରରର ଜୀବନରୁ ଲାଭ କରିଅଛି ।

ଶିଶୁମାନେ ମାନ ଅପମାନ ପ୍ରତି ଭ୍ରୂକ୍ଷେପ ନ କରି ନିଶ୍ଚିନ୍ତ ମନରେ ବିଚରଣ କରିବା ସଙ୍ଗେ ସଙ୍ଗେ ନିଜ ସହିତ ନିଜେ ପରମ ସନ୍ତୋଷରେ କ୍ରୀଡ଼ା କରିଥାନ୍ତି । ଶିଶୁମାନଙ୍କ କାର୍ଯ୍ୟକଳାପରୁ ଶିକ୍ଷାଲାଭ କରି ମୁଁ ମାନଅପମାନ ପ୍ରତି କୌଣସି ଧ୍ୟାନ ନ ଦେଇ ନିଜ ମଧ୍ୟରେ ନିଜକୁ ମୁଁ ମଜ୍ଜିତ କରି ରଖିଅଛି । ତାହା ହିଁ ଆତ୍ମରମଣ ଏବଂ ତାହା ହିଁ ମୋର ଏ ସନ୍ତୋଷର କାରଣ ।

ବହୁ ଶଙ୍ଖା ପରିଧାନ କରିଥିବା ଏକ କୁମାରୀ ଗୃହକାର୍ଯ୍ୟ କରୁଥିବାବେଳେ ହାତରେ ଥିବା ଶଙ୍ଖା ସହିତ ଶଙ୍ଖାର ସଂଘର୍ଷରେ ଶବ୍ଦ ହୁଏ ଏବଂ ସେହି ମାଇକିଆ ଭଙ୍ଗକାରୀ ଶବ୍ଦରେ ସେ ଲଜ୍ଜିତା ହୋଇ ହାତରେ ମାତ୍ର ପଟେ ପଟେ ଶଙ୍ଖା ରଖି ଅନ୍ୟସବୁ ଶଙ୍ଖା ସେ ବାହାର କରିଦିଏ; ଫଳରେ ଶଙ୍ଖାଜନିତ ଶବ୍ଦ ଆଉ ହୁଏ ନାହିଁ । ସେହିପରି ବହୁଲୋକ ଗୋଟିଏ ସ୍ଥାନରେ ଏକତ୍ର ବାସକଲେ ପାରସ୍ପରିକ କଳହ ସୃଷ୍ଟି ହେବା ସ୍ୱାଭାବିକ । କୁମାରୀଠାରୁ ଏହି ଶିକ୍ଷା ଲାଭକରି ମୁଁ ତା’ର ହସ୍ତର କଙ୍କଣ ପରି ମୁଁ ଏକାକୀ ମୋର ସମସ୍ତ ଅତିବାହିତ କରୁଅଛି । ‘ତେଣୁ ସେହି କୁମାରୀ ମଧ୍ୟ ମୋର ଏକ ଗୁରୁ ।’

ଶିକାରୀ ବାଣ ସନ୍ଧାନ କଲାବେଳେ ସେ ଏପରି ଏକାଗ୍ରଚିତ୍ତ ସହିତ ଶିକାରକୁ ଲକ୍ଷ୍ୟ କରୁଥାଏ ଯେ ବାହାରର ଶବ୍ଦଦ୍ୱାରା ସେ ଆଦୌ ବିଚଳିତ ହୁଏନାହିଁ, କାରଣ ସମସ୍ତ ଧ୍ୟାନ ଶିକାର ଉପରେ ନିବଦ୍ଧ ଥାଏ; ସେହିପରି ଯୋଗୀମାନେ ନିଜର ଆତ୍ମାରେ ନିଜର ମନକୁ ସ୍ଥିର ରଖିଲେ ବାହାର ତଥା ଭିତରର ସୁଖ ଦୁଃଖାଦି ଦ୍ୱାରା ସେ ଆଦୌ ବିଚଳିତ ହେବନାହିଁ; କାରଣ ସେ ଯେ ଆତ୍ମ ଚିନ୍ତାରେ ଅବରୁଦ୍ଧଚିତ୍ତ । ତେଣୁ ଶିକାରୀକୁ ମୁଁ ଗୁରୁଭାବରେ ଗ୍ରହଣ କରି ନେଇଅଛି ।

ସର୍ପ ମଧ୍ୟ ମୋର ଏକ ଗୁରୁ । ସର୍ପ ଯେପରି ଜନମାନଙ୍କଠାରୁ ଦୂରରେ ରହି ନିଜର କୌଣସି ବାସସ୍ଥାନ ନିର୍ମାଣ ନ କରି ଯେଉଁଠି ଯେଉଁ ଗର୍ତ୍ତ ପାଏ ସେଠାରେ ବାସକରେ, ସେହିପରି ଯୋଗୀମାନେ ଗୃହ ଓ ପରିବାରଠାରୁ ଦୂରରେ ରହି ପାହାଡ଼ ପର୍ବତର ନିର୍ଜନ ଗୁମ୍ଫାରେ ବାସ କରିବା ଉଚିତ ।

ବୁଢ଼ିଆଣୀ ନିଜର ଉଦର ମଧ୍ୟରୁ ସୂତା ବାହାର କରି ତଦ୍ଦ୍ୱାରା ଜାଲ ବୁଣି ତହିଁରେ ବିଚରଣ କରେ ଏବଂ ପରେ ତାକୁ ଗ୍ରାସକରେ । ସେହିପରି ଭଗବାନ ନିଜର ଶରୀର ମଧ୍ୟରୁ ଏହି ଜଗତକୁ ସୃଷ୍ଟିକରି ନିଜେ ଏହାକୁ ପାଳନକରି ପରେ ଏହାକୁ ସଂହାର କରିଥାନ୍ତି । ଏହି ତତ୍ତ୍ୱ ମୁଁ ଊର୍ଣ୍ଣନାଭି ବା ବୁଢ଼ିଆଣୀଠାରୁ ଶିକ୍ଷା କରିଅଛି ।

ମାଟିଭଅଁର ବିଭିନ୍ନ କୀଟଙ୍କୁ ଧରିନେଇ ନିଜର ବସା ମଧ୍ୟରେ ସେମାନଙ୍କୁ ପୂରାଇ ଦିଏ । ସେହି କୀଟମାନେ ମୃତ୍ୟୁଭୟରେ ମାଟିଭଅଁରର ରୂପ କେବଳ ଚିନ୍ତାକରି କରି ସେମାନେ ଏପରି ଅବସ୍ଥା ପ୍ରାପ୍ତ ହୁଅନ୍ତି ଯେ ଯାହା ଫଳରେ ସେମାନଙ୍କର ପୂର୍ବ ଶରୀର ପରିବର୍ତ୍ତେ ପ୍ରତ୍ୟେକ ଗୋଟିଏ ଗୋଟିଏ ମାଟିଭଅଁରରେ ପରିଣତ ହୋଇଯାଆନ୍ତି । ସେହିପରି ଜୀବମାନେ ଅତ୍ୟାଧିକ ଭୟରେ ହେଉ ବା ସ୍ନେହରେ ହେଉ ଅଥବା ଦ୍ୱେଷରେ ହେଉ, ଯାହାକଥା ଗଭୀର ଭାବରେ ଚିନ୍ତା କରୁଥାନ୍ତି, ପରଜନ୍ମରେ ସେମାନେ ସେହି ରୂପରେ ଜନ୍ମଲାଭ କରନ୍ତି । ସେଥିପାଇଁ ଜୀବଗଣ ଅନ୍ୟ କାହାରି କଥା ଚିନ୍ତା ନ କରି ସବୁବେଳେ ଗଭୀର ଆନ୍ତରିକତାର ସହିତ କେବଳ ପରମାତ୍ମାଙ୍କର କଥା ଚିନ୍ତା କରିବା ଉଚିତ । ତା' ହେଲେ ଭବବନ୍ଧନରୁ ସେ ଅକ୍ଳେଶରେ ମୁକ୍ତିଲାଭ କରିପାରିବ ।

ଏହି ଚବିଶ ଗୁରୁଙ୍କ ଛଡ଼ା ମୁଁ ମୋର ଏହି ଶରୀରଠାରୁ ମଧ୍ୟ ମୁଁ ବହୁକଥା ଶିକ୍ଷାଲାଭ କରିଅଛି, ସେଥିଯୋଗୁଁ ଶରୀର ମଧ୍ୟ ମୋର ଏକ ଗୁରୁ । ମୋର ଏହି ଶରୀର ମୋତେ ବିବେକ-ଜ୍ଞାନ ଓ ବୈରାଗ୍ୟଭାବ ପ୍ରଦାନ କରିଅଛି । ଏହି ଶରୀର ଦିନେ ନା ଦିନେ ଶ୍ୱାନ ଶୃଗାଳମାନଙ୍କର ଆହାର ହେବ, ସେଥିପାଇଁ ଏହି ଶରୀର ପ୍ରତି ସମାନ୍ୟତମ ଯତ୍ନ ନ ନେଇ ମୁଁ ବିଭିନ୍ନ ସ୍ଥାନରେ ଭ୍ରମଣ କରୁଅଛି । ଯେପରି ବହୁପତ୍ନୀ ଗୋଟିଏ ସ୍ୱାମୀର ଶରୀରକୁ ଭୋଗ କରିବା ନିମନ୍ତେ ଭିଡ଼ାଓଟରା କରି ଶେଷରେ ଜୀର୍ଣ୍ଣଶୀର୍ଣ୍ଣ କରିଦିଅନ୍ତି ସେହିପରି ବିଭିନ୍ନ ଇନ୍ଦ୍ରିୟ ଏହି ଶରୀରକୁ ବିଭିନ୍ନ ଆଡ଼କୁ ଟାଣିନେଇ ପୀଡ଼ିତ କରିଥାନ୍ତି । ଭଗବାନ ଜଗତ ସୃଷ୍ଟି କଲା-ବେଳେ ପ୍ରଥମେ ବୃକ୍ଷଲତା, ସରୀସୃପ, ପଶୁପକ୍ଷୀ ଆଦି ବହୁପ୍ରାଣୀ ସୃଷ୍ଟିକରି ତଥାପି ସନ୍ତୁଷ୍ଟ ନ ହେବାରୁ ବୁଦ୍ଧି ଓ ଦିବ୍ୟଜ୍ଞାନ ଦେଇ ମନୁଷ୍ୟ ଶରୀର ଭଗବାନ ସୃଷ୍ଟିକଲେ । ତେଣୁ ଏହି ଦୁର୍ଲଭ ମନୁଷ୍ୟ ଜନ୍ମଲାଭ କରି ନିଜର ବିବେକ ବୁଦ୍ଧିଦ୍ୱାରା ମୋକ୍ଷଲାଭ କରିବା ନିମନ୍ତେ ସତତ ପ୍ରଯତ୍ନ କରିବା ପ୍ରତ୍ୟେକ ମନୁଷ୍ୟର ପରମ କର୍ତ୍ତବ୍ୟ, ନଚେତ ମନୁଷ୍ୟର ଜନ୍ମ ଓ ଜୀବନ ବୃଥା । ଏହିସବୁ କଥା ଚିନ୍ତା କରି ବିଷୟ ଭୋଗପ୍ରତି ମୁଁ ବୀତଶ୍ରଦ୍ଧ ହୋଇ ବୈରାଗ୍ୟଭାବ ପୋଷଣକରି ଏକାଗ୍ରଚିତ୍ତରେ ଆତ୍ମ-ଚିନ୍ତାର ବଶବର୍ତ୍ତୀ ହୋଇ ସମଗ୍ର ପୃଥିବୀ ଭ୍ରମଣ କରୁଅଛି । ଗୋଟିଏ ଗୁରୁଙ୍କଠାରୁ ସବୁପ୍ରକାରର ଜ୍ଞାନ ଶିକ୍ଷା ମିଳେନାହିଁ, ତା'ଛଡ଼ା ଭିନ୍ନ ଭିନ୍ନ ଗୁରୁ ଭିନ୍ନ ଭିନ୍ନ ମତ ମଧ୍ୟ ବ୍ୟକ୍ତ କରିଥାନ୍ତି । ତେଣୁ ନିଜର ବୁଦ୍ଧି ଓ ବିବେକ ଦ୍ୱାରା ଆବଶ୍ୟକୀୟ ଶିକ୍ଷା ଗ୍ରହଣ କରି ନିଜର ଜୀବନକୁ ସେହି ଅନୁସାରେ ନିୟନ୍ତ୍ରିତ କରିବାକୁ ହୋଇଥାଏ । ମୁଁ ଏହିପରି ଭାବରେ ବିଭିନ୍ନ ଗୁରୁଙ୍କଠାରୁ ଶିକ୍ଷାଲାଭ କରିଥିବା ଜ୍ଞାନଦ୍ୱାରା ନିଜକୁ ନିୟନ୍ତ୍ରିତ କରି ପରମ ସନ୍ତୋଷରେ ଓ ପ୍ରସନ୍ନ ଚିତ୍ତରେ ପୃଥିବୀ ପରିକ୍ରମା କରୁଅଛି ।'

'ଅବଧୂତଙ୍କଠାରୁ ସେହିସବୁ କଥା ଶ୍ରବଣକରି ଯଦୁରାଜା ନିଜକୁ ଅତ୍ୟନ୍ତ କୃତାର୍ଥ ମନେ କରିଥିଲେ ଏବଂ ଅବଧୂତଙ୍କୁ ପରମ ଶ୍ରଦ୍ଧାର ସହିତ ସମ୍ମାନିତ କରିଥିଲେ । ଅବଧୂତଙ୍କ କଥିତ ଶିକ୍ଷାର ପ୍ରଭାବ ଯଦୁରାଜାଙ୍କ ଉପରେ ବିଶେଷ ଭାବରେ ପଡ଼ିଥିଲା ଏବଂ ସେହିଶିକ୍ଷା ଅନୁସାରେ ନିଜର ଜୀବନକୁ ପରିଚାଳିତ କରି ଯଦୁରାଜା ଅବଶେଷରେ ବାନପ୍ରସ୍ଥ ଆଚରଣ କରିଥିଲେ ।'

# ଉଦ୍ଧବଙ୍କୁ ଭଗବାନ କୃଷ୍ଣଙ୍କର ଅନ୍ତିମ ଉପଦେଶ

ଭଗବାନ କୃଷ୍ଣଙ୍କ ମୁଖାରବିନ୍ଦରୁ ବହୁବିଧ ଉପଦେଶ ଶ୍ରବଣ କରୁ କରୁ ଉଦ୍ଧବ କହିଲେ, 'ପ୍ରଭୁ, ସକଳ ଦେବତା, ସମସ୍ତ ଲୋକ ତଥା ଅଖିଳଜଗତର ଆପଣ ସ୍ୱାମୀ । ଆପଣ ପ୍ରକୃତିର ଅତୀତ ପୁରୁଷୋତ୍ତମ ଓ ଚିଦାକାଶ ସ୍ୱରୂପ ବ୍ରହ୍ମ । ନିଜର ଦିବ୍ୟ ଅମୃତମୟୀ ଲୀଳାକୁ ପ୍ରକାଶ କରିବା ଉଦ୍ଦେଶ୍ୟରେ ଆପଣ ଇଚ୍ଛାକରି ଯେ ଏପରି ଶରୀର ଧାରଣ କରି ଅବତାର ଗ୍ରହଣ କରିଅଛନ୍ତି, ଏଥିରେ ମୋର ସନ୍ଦେହ ନାହିଁ । ପ୍ରଭୁ, ମୋ ମନରେ କେତୋଟି ପ୍ରଶ୍ନ ଉଦ୍ରେକ ହେଉଅଛି, ଆପଣଙ୍କ ନିକଟରେ ସେସବୁକୁ ପ୍ରକାଶ ନ କରି ମୁଁ ରହିପାରୁ ନାହିଁ । ଆପଣଙ୍କର ପ୍ରକୃତ ଭକ୍ତ ପଦବାଚ୍ୟ କିଏ ଓ ତାଙ୍କର ଲକ୍ଷଣ କ'ଣ, ଆପଣଙ୍କ ପ୍ରତି କିପରି ଭକ୍ତି କରିବା ଉଚିତ୍, ସେ ସମ୍ପର୍କରେ ମୋତେ ଦୟାକରି ଉପଦେଶ ପ୍ରଦାନ କରନ୍ତୁ । ମୋ ମନର ଏହି କୌତୂହଳକୁ ଅପନୋଦନ କରିବା ନିମନ୍ତେ ଆପଣ ହିଁ ଯୋଗ୍ୟତମ ବ୍ୟକ୍ତି ।'

ଉଦ୍ଧବଙ୍କର ସେହି କଥା ଶୁଣି ଭଗବାନ କୃଷ୍ଣ କହିଲେ, 'ପ୍ରିୟ ଉଦ୍ଧବ, ମୋର ପ୍ରକୃତ ଭକ୍ତ ସର୍ବଦା ଦୟାର୍ଦ୍ର ଚିତ୍ତ, ବୈରଭାବଶୂନ୍ୟ, ସତ୍ୟନିଷ୍ଠ, ଦୁଶ୍ଚିନ୍ତାରହିତ, ସମଦର୍ଶୀ, ପରୋପକାରୀ ଏବଂ ତା'ର ଜୀବନରେ ଦେଖାଦେଉଥିବା ସକଳ ବିପଦକୁ ସେ ପ୍ରସନ୍ନତାର ସହିତ ସମ୍ମୁଖୀନ ହୋଇଥାଏ । ତା'ର ମନ ଓ ବୁଦ୍ଧି କାମବାସନାରେ କେବେହେ କଳୁଷିତ ହୁଏ ନାହିଁ । ପରର ଧନ ହରଣ କରିବା ତ ଦୂରର କଥା, କୌଣସି ବସ୍ତୁ ଲାଭ କରିବା ପାଇଁ ସେ କେବେ କୌଣସି ଆଗ୍ରହ ପୋଷଣ କରେ ନାହିଁ । ସେ ସଂଯମୀ, ମଧୁରସ୍ୱଭାବସମ୍ପନ୍ନ, ପବିତ୍ର, ପରିମିତାହାରୀ, ଶାନ୍ତ, ଗମ୍ଭୀର, ଧୈର୍ଯ୍ୟଶୀଳ, ସ୍ଥିରବୁଦ୍ଧି । ମୋଠାରେ ସମ୍ପୂର୍ଣ୍ଣ ଭରସା ରଖି ମୋ ସମ୍ପର୍କୀୟ ଚିନ୍ତାରେ ସେ ସଦା ମଗ୍ନ ଥାଏ । ଶୋକଶୋଷ, ସୁଖଦୁଃଖ, ଜନ୍ମମୃତ୍ୟୁ ଆଦି ଅବସ୍ଥା ବା ଚିନ୍ତା ତାକୁ ଅସ୍ଥିର କରେ ନାହିଁ । ସେ ସମସ୍ତଙ୍କୁ ସମ୍ମାନ ଦିଏ କିନ୍ତୁ କେବେ ନିଜ ପାଇଁ ସମ୍ମାନ ପ୍ରତ୍ୟାଶା କରେ ନାହିଁ । ସମସ୍ତଙ୍କ ସହିତ ସେ ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର

କରେ । ମୁଁ ବେଦ ଓ ଶାସ୍ତ୍ର ରୂପରେ ମାନବସମାଜ ସମ୍ମୁଖରେ ଯେଉଁ ଉପଦେଶମାନ ରଖିଅଛି, ସେ ସବୁକୁ ଯଥାବିଧି ପାଳନ କଲେ ଆତ୍ମଶୁଦ୍ଧି ତଥା ବିଭିନ୍ନ ଗୁଣ ଲାଭ ହୁଏ ଏବଂ ତା'ର ବିରୁଦ୍ଧାଚରଣ କଲେ ବ୍ୟକ୍ତିକୁ ନରକଗାମୀ ହେବାକୁ ପଡ଼ିଥାଏ । ଶାସ୍ତ୍ରୋକ୍ତ ବିଧିନିଷେଧର ପାଳନକୁ ମୋ ପ୍ରତି ପୋଷଣ କରୁଥିବା ଭକ୍ତିର ପ୍ରତିବନ୍ଧକ ଭାବି ଯେଉଁ ଭକ୍ତ ଅନନ୍ୟଭାବରେ ତନ୍ମୟ ହୋଇ ମୋର ଭଜନରେ ନିଜକୁ ସମ୍ପୂର୍ଣ୍ଣ ରୂପେ ନିୟୋଜିତ କରୁଥାଏ, ସେ ମୋର ପରମ ଭକ୍ତ । ସେ ପରମ ସନ୍ଥପଦବାଚ୍ୟ !'

'ପ୍ରିୟ ଉଦ୍ଧବ; ମୋର ମୂର୍ତ୍ତି ଓ ମୋର ଭକ୍ତମାନଙ୍କର ଦର୍ଶନ, ସ୍ପର୍ଶ ଲାଭ କରିବା, ମୋର ଭକ୍ତମାନଙ୍କର ପୂଜନ, ସେବା ଶୁଶ୍ରୂଷା, ସ୍ତୁତି ଆଦି କରିବା ସଙ୍ଗେ ସଙ୍ଗେ ପ୍ରଣାମ କରିବା ମୋର କୀର୍ତ୍ତି ଓ ଗୁଣାବଳୀକୁ ସର୍ବଦା କୀର୍ତ୍ତନ କରିବା ସହିତ ମୋର କଥା ଶ୍ରବଣ କରିବା ପ୍ରତି ଯେ ଶ୍ରଦ୍ଧାଭାବ ପୋଷଣ କରେ, ସବୁବେଳେ ମୋତେ ହିଁ ଧ୍ୟାନ କରୁଥାଏ, ଯାହାକିଛି ପାଏ ସେସବୁକୁ ମୋତେ ସମର୍ପଣ କରି ଦାସ୍ୟ ଭାବରେ ମୋଠାରେ ଆତ୍ମନିବେଦନ କରେ, ସବୁବେଳେ ମୋର ଜନ୍ମ ଓ କର୍ମକୁ ଚର୍ଚ୍ଚାକରେ, ମୋର ବିଭିନ୍ନ ପର୍ବମାନଙ୍କରେ ଉତ୍ସାହର ସହିତ ନୃତ୍ୟଗୀତାଦି ଅନୁଷ୍ଠାନ କରି ସେସବୁ ପାଳନ କରି ନିଜର ଗୃହକୁ ପୂଜାମନ୍ଦିରରେ ପରିଣତ କରେ, ମୋର ସାମ୍ବତ୍ସରିକ ପର୍ବ ଦିବସରେ ମୋର ଉତ୍ସବାଦି ପାଳନ କରିବା ନିମନ୍ତେ ପୂଜାସ୍ଥାନମାନଙ୍କୁ ଯାତ୍ରାକରେ, ବିଭିନ୍ନ ବଳି ଓ ଉପହାର ପ୍ରଦାନ ଦ୍ୱାରା ମୋର ପୂଜାର୍ଚ୍ଚନା କରେ ଓ ବ୍ରତ ପାଳନ କରେ, ଶ୍ରଦ୍ଧାର ସହିତ ମନ୍ଦିର ନିର୍ମାଣ କରି ତହିଁରେ ମୋର ମୂର୍ତ୍ତି ସ୍ଥାପନ କରେ ଏବଂ ନିଜେ ସେହି ମନ୍ଦିରରେ ସେ ସେବାକରେ, ଅଥଚ ଏଥିପାଇଁ ସେ କେବେ କୌଣସି ଅଭିମାନ କି ଦମ୍ଭ ପୋଷଣ କରେ ନାହିଁ, ସେ ହିଁ ମୋର ପରମ ଭକ୍ତ ।'

'ଉଦ୍ଧବ, ଯାହାର ଯାହା ପ୍ରିୟବସ୍ତୁ ସେସବୁକୁ ମୋତେ ସମର୍ପଣ କଲେ, ତାହା ଅନନ୍ତ ଫଳ ଲାଭ କରିଥାଏ । ସୂର୍ଯ୍ୟ, ଅଗ୍ନି, ବ୍ରାହ୍ମଣ, ଗାଭୀ, ବୈଷ୍ଣବ, ଆକାଶ, ବାୟୁ, ଜଳ, ପୃଥିବୀ, ଆତ୍ମା ଏବଂ ସର୍ବଭୂତରେ ମୁଁ ଅବସ୍ଥାନ କରୁଅଛି ବୋଲି ଅବଗତ ହୋଇ ସେସବୁକୁ

ଭକ୍ତର ସଦ୍ଭାବ ସେବା ଓ ପୂଜା କରିବ, ବୈଦିକ ମନ୍ତ୍ରଦ୍ୱାରା ସୂର୍ଯ୍ୟଙ୍କର, ଘୃତଦ୍ୱାରା ଅଗ୍ନିଙ୍କର, ଆତିଥ୍ୟ ପ୍ରଦାନ ଦ୍ୱାରା ବ୍ରାହ୍ମଣଙ୍କର, କୋମଳ ତୃଣାଦି ଦ୍ୱାରା ଗାଭୀମାନଙ୍କ ମାଧ୍ୟମରେ ମୋର ପୂଜା କରିବ, ନିଜର ବନ୍ଧୁ ଭାବରେ ବୈଷ୍ଣବଙ୍କୁ, ଧ୍ୟାନ ଦ୍ୱାରା ଆତ୍ମାଙ୍କୁ, ପ୍ରାଣାୟାମ ଦ୍ୱାରା ବାୟୁ ଓ ତର୍ପଣ ଦ୍ୱାରା ଜଳ ଆଦି ମାଧ୍ୟମରେ ମୋର ପୂଜାର୍ଚ୍ଚନା କରିବ । ମୋତେ ପୂଜା କରିବା ସମୟରେ ସମାଧି ଯୋଗ ଦ୍ୱାରା ଶଙ୍ଖ-ଚକ୍ର-ଗଦା-ପଦ୍ମ ଯୁକ୍ତ ଚତୁର୍ଭୁଜ ସମ୍ବଳିତ ମୋର ଶାନ୍ତ ରୂପକୁ ଧ୍ୟାନ କରିବ ଏବଂ ପୂଜା ପରେ ମଧ୍ୟ ମୋର ସେହି ରୂପକୁ ଚିନ୍ତା କରିବ । ଶୁଦ୍ଧ ଚିତ୍ତରେ ଯେଉଁମାନେ ମୋତେ ପୂଜାରାଧନା କରିଥାନ୍ତି, ସେମାନେ ମୋର ନିଗୂଢ଼ ତତ୍ତ୍ୱକୁ ଉତ୍ତମରୂପେ ଉପଲବ୍ଧି କରିପାରନ୍ତି । ମୋତେ ଲାଭ କରିବା ନିମନ୍ତେ ପ୍ରତ୍ୟେକ ଜୀବର ସାଧୁସଙ୍ଗ କରିବା ଉଚିତ । ଏହି ଦୁସ୍ତର ସଂସାରସାଗରରୁ ରକ୍ଷା ପାଇବା ନିମନ୍ତେ ସାଧୁମାନେ ମୋତେ ସର୍ବଦା ଆଶ୍ରୟ କରିଥାନ୍ତି ଏବଂ ସେହି ସାଧୁମାନଙ୍କର ସଙ୍ଗସାହଚର୍ଯ୍ୟ ଲାଭ କଲେ ମୋ ପ୍ରତି ସେମାନଙ୍କ ମନରେ ଗଭୀର ଭକ୍ତି ଜନ୍ମେ । ସତ୍ସଙ୍ଗ ଦ୍ୱାରା ମୁଁ ଯେପରି ଭାବରେ ବଶୀଭୂତ ହୋଇଥାଏ, ଯୋଗ, ଜ୍ଞାନ, ଧର୍ମ, ବେଦାଧ୍ୟୟନ, ତପସ୍ୟା, ବ୍ରତପାଳନ ଆଦି ଦ୍ୱାରା ସେପରି ହୁଏ ନାହିଁ । ମନୁଷ୍ୟମାନଙ୍କ କଥା ଦୂରେ ଥାଉ, ଦୈତ୍ୟଦାନବ, ଗନ୍ଧର୍ବ, ଅପସରା, ନାଗ, ସିଦ୍ଧ, ଚାରଣ ତଥା ପଶୁପକ୍ଷୀମାନେ ସାଧୁସଙ୍ଗ ଲାଭକରି ସେମାନଙ୍କ ମନରେ ମତ୍ ସମ୍ପର୍କୀୟ ଅଚଳା ଭକ୍ତି ଲାଭ କରିଥାନ୍ତି । ପୃଥିବୀପୃଷ୍ଠରେ ରଜ ଓ ତମ ଗୁଣ ଲାଭକରି ଜନ୍ମିଥିବା ବୈଶ୍ୟ, ଶୂଦ୍ର, ଅନ୍ତ୍ୟଜ ନାରୀ ଚଣ୍ଡାଳମାନେ, ବିଶେଷ କରି ବୃତ୍ର, ପ୍ରହ୍ଲାଦ ବୃଷପର୍ବା, ବଳି, ବାଣ, ମୟ, ବିଭୀଷଣପ୍ରମୁଖ ଏବଂ ସୁଗ୍ରୀବ, ହନୁମାନ, ଜାମ୍ବବାନ, ଗଜ, ଜଟାୟୁ, କୁବୁଜା ଏବଂ ବ୍ରଜକାମିନୀଗଣ ତଥା ଯଜ୍ଞକାର୍ଯ୍ୟ କରୁଥିବା ବିପ୍ରପତ୍ନୀମାନେ ଏହି ସତ୍ସଙ୍ଗ କରିବାର ପୁଣ୍ୟ ଫଳରୁ ମୋର ଚରଣରେ ପରମ ଗତି ପ୍ରାପ୍ତ ହୋଇଅଛନ୍ତି । ଏମାନଙ୍କ ମଧ୍ୟରୁ କେହି ବେଦଶାସ୍ତ୍ର ଅଧ୍ୟୟନ କରି ନାହାନ୍ତି କି କଠିନ ତପସ୍ୟାବା ବ୍ରତାଚରଣ କରି ନାହାନ୍ତି । ଗୋପପୁରର ରମଣୀମାନେ ତଥା ଗୋପାଳ ଧେନୁ ଆଦି ପଶୁମାନେ, ଯାମଳାର୍ଜ୍ଜୁନ, କାଳୀୟ ନାଗପ୍ରମୁଖ କେବଳ ମୋ ପ୍ରତି ଅଚଳା ଭକ୍ତି ପ୍ରକାଶ କରି ମୋତେ ପ୍ରାପ୍ତ ହୋଇଅଛନ୍ତି ।

ଗୋପାଙ୍ଗନାମାନେ ସାଧୁସଙ୍ଗ କରିବା ଫଳରେ ସାଂସାରିକ ମାୟାଜାଲରୁ ଉଦ୍ଧାର ଲାଭ କରିଅଛନ୍ତି । ଅକ୍ରୂର ଯେତେବେଳେ ଭାଇ ବଳରାମଙ୍କ ସହିତ ମୋତେ, ରଥରେ ବସାଇ ମଥୁରାକୁ ନେଇ ଯାଉଥିଲେ, ସେତେବେଳେ ଗୋପରମଣୀମାନେ ମୋ ସହିତ ସୁଦୃଢ଼ ଅନୁରାଗ ସୂତ୍ରରେ ଆବଦ୍ଧ ଥିବାରୁ ମୋର ବିରହଜନିତ ଅସହ୍ୟ ଦୁଃଖର ତୀବ୍ରତାରେ ସେମାନେ ପୀଡ଼ିତ ହୋଇଥିଲେ ଏବଂ ମୋ ବ୍ୟତୀତ ଅନ୍ୟ କୌଣସି ବସ୍ତୁ ସେମାନଙ୍କର ସୁଖକାରକ ହୋଇ ନ ଥିଲା । ଗୋପୀମାନେ ମୋତେ ଆନ୍ତରିକ କେତେ ଭଲ ପାଉଥିଲେ, ତାହା ତୁମକୁ ଅଜଣା ନାହିଁ । ଯେତେବେଳେ ମୁଁ ବୃନ୍ଦାବନରେ ଥିଲି, ସେତେବେଳେ ଗୋପୀମାନେ ମୋ ସହିତ ରାସ ନୃତ୍ୟ କରି ବହୁରାତି ଅତିବାହିତ କରିଅଛନ୍ତି । ସେହି ସୁଖପୂର୍ଣ୍ଣ ରାତି ସେମାନଙ୍କୁ ସେତେବେଳେ ମୁହୂର୍ତ୍ତକ ପରି ବୋଧ ହୋଇଥିଲା, ମାତ୍ର ପରେ ମୋର ବିରହରେ ଗୋଟିଏ ଗୋଟିଏ ରାତି ସେମାନଙ୍କ ନିକଟରେ ସୁଦୀର୍ଘ ଦୁଃସହ ଯୁଗପରି ପ୍ରତୀତ ହେଲା । ଯୋଗୀମାନେ ସମାଧିସ୍ଥ ହେବା ପରେ ଯେପରି ନାମ ଓ ଶରୀରର ଅସ୍ତିତ୍ୱକୁ ପାସୋରି ପକାନ୍ତି, ସେହିପରି ଗୋପାଙ୍ଗନାମାନେ ମୋ ପ୍ରେମରେ ବିହ୍ୱଳା ହୋଇ ସେମାନଙ୍କର ଦେହ, ମନ ଓ ପ୍ରାଣକୁ ମୋ ଠାରେ ଏପରି ସର୍ବାନ୍ତଃକରଣରେ ସମର୍ପଣ କରି ଦେଇଥିଲେ ଯେ ମୋ ବିନା ତାକୁ କିଛି ଲାଗୁନଥିଲା ଓ ନିଜର ସ୍ୱଜନ ପରିବାର ଓ ପରିବେଶକୁ, ଏପରିକି, ନିଜର ଅସ୍ତିତ୍ୱକୁ ମଧ୍ୟ ସେମାନେ ଭୁଲି ଯାଉଥିଲେ । ନଦୀ-ଗୁଡ଼ିକ ଏକାଭିମୁଖୀ ହୋଇ ସୁଦୂରବର୍ତ୍ତୀ ସାଗରରେ ମିଳିତ ହେଲାପରି ଗୋପାଙ୍ଗନାମାନେ ମୋଠାରେ ତାଙ୍କର ଚିତ୍ତକୁ ସମର୍ପଣ କରିଦେଇ-ଥିବାରୁ, ସେମାନେ ଜନ୍ମମରଣାଦି ସକଳ ସାଂସାରିକ ଯାତନାରୁ ନିସ୍ତାର ଲାଭ କରିଥିଲେ । ସେମାନେ ଅବଳା ହୋଇଥିବାରୁ ମୋର ପ୍ରକୃତ ପରିଚୟ ଓ ତତ୍ତ୍ୱକୁ ହୃଦୟଙ୍ଗମ କରି ନ ପାରି କେବଳ ମୋ ସହିତ ରମଣ କରିବା ଇଚ୍ଛାରେ ମୋତେ ସେମାନଙ୍କର ଉପପତି ରୂପରେ ଚିନ୍ତା କରି ମୋ ସହିତ ମିଳିତ ହୋଇଥିଲେ । ମୋ ସହିତ ସେମାନଙ୍କର ସେହି ସାମୟିକ ମିଳନ ହିଁ ଅଗଣିତ ଗୋପରମଣୀମାନଙ୍କ ପକ୍ଷରେ ପରମ ବ୍ରହ୍ମ ସ୍ୱରୂପର ପ୍ରାପ୍ତିକୁ ସୁଲଭ କରିଥିଲା । ତେଣୁ ଶାସ୍ତ୍ରୋକ୍ତ ବିଭିନ୍ନ ବିଧିନିଷେଧକୁ କେବଳ ପାଳନ କରିବାଟା ବଡ଼ କଥା ନୁହେଁ; ଯଦି

କୌଣସି ବ୍ୟକ୍ତି ସମ୍ପୂର୍ଣ୍ଣରୂପରେ ମୋଠାରେ ଶରଣ ନିଏ, ତେବେ ସେ ମୋଠାରୁ ସମସ୍ତ ପ୍ରକାରର ଅଭୟ ଲାଭ କରିଥାଏ ।'

କୃଷ୍ଣ କହୁଥାନ୍ତି, 'ସୂତ୍ରବିନା ବସ୍ତ୍ରର ସୃଷ୍ଟି ସମ୍ଭବ ନୁହେଁ; କିନ୍ତୁ ବସ୍ତ୍ରବିନା ସୂତ୍ରର ଅସ୍ତିତ୍ୱ ସମ୍ଭବ, ଅନୁରୂପ ଭାବରେ ନିଜର ଶକ୍ତି ବିସ୍ତାରକରି ଯେ ଏହି ଅନନ୍ତ ବିଶ୍ୱକୁ ସୃଷ୍ଟି କରିଅଛନ୍ତି, ସେହି ଈଶ୍ୱର ବିନା ଜଗତର ଅସ୍ତିତ୍ୱ ସମ୍ଭବ ନୁହେଁ, କିନ୍ତୁ ଜଗତ ବିନା ଯେ ଈଶ୍ୱରଙ୍କର ଅସ୍ତିତ୍ୱ, ଏହା ଭୁଲିଯିବା ଉଚିତ ନୁହେଁ । ସଂସାରରୂପକ ବୃକ୍ଷ ଅତ୍ୟନ୍ତ ପ୍ରାଚୀନ ଏବଂ କର୍ମ ଅନୁସାରେ ତହିଁରେ ପୁଷ୍ପ ଓ ଫଳ ପ୍ରକାଶ ପାଇଥାଏ । ସେହି ସଂସାରବୃକ୍ଷର ମଞ୍ଜି ଦୁଇଟି, ତାହା ହେଲା ପାପ ଓ ପୁଣ୍ୟ । ଅନନ୍ତ ବାସନା ଏହାର ମୂଳ, ସତ୍ତ୍ୱ, ରଜ ଓ ତମ ଏହାର ଗଣ୍ଡି, ବାତ, ପିତ୍ତ ଓ କଫ ଏହାର ବକଳକଳ, ପଞ୍ଚ ମହାଭୂତ ଏହି ବୃକ୍ଷର ସ୍କନ୍ଧ, ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ—ଏହି ପାଞ୍ଚଟି ଏହାର ରସ ଏବଂ ଏଗାର ଇନ୍ଦ୍ରିୟ ଏହାର ଶାଖା, ଜୀବାତ୍ମା ଓ ପରମାତ୍ମା—ଏପରି ଦୁଇଟି ପକ୍ଷୀ ଏହି ଗଛରେ ବସା ବାନ୍ଧି ବାସ କରୁଅଛନ୍ତି । ଏହି ବୃକ୍ଷରେ ଦୁଇଟି ମାତ୍ର ଫଳ ଫଳିଥାଏ, ତାହା ହେଉଅଛୁ—ସୁଖ ଓ ଦୁଃଖ । ଏହି ବୃକ୍ଷର ବିଶାଳତା ସୂର୍ଯ୍ୟମଣ୍ଡଳ ପର୍ଯ୍ୟନ୍ତ ପରିବ୍ୟାପ୍ତ । ବିଷୟବାସନାଲିପ୍ତ ଗୃହସ୍ଥମାନେ ସଂସାରର ମାୟାବନ୍ଧନରେ ଆବଦ୍ଧ ରହି, ଏହି ବୃକ୍ଷର ଦୁଃଖରୂପକ ଫଳଟିକୁ ମାତ୍ର ଭକ୍ଷଣ କରିଥାନ୍ତି, କିନ୍ତୁ ଯେଉଁମାନେ ପାର୍ଥିବ ଭୋଗବାସନାପ୍ରତି ବୀତସ୍ପୃହ ହୋଇ ଗୃହାଦି ତ୍ୟାଗକରି ଅରଣ୍ୟବାସୀ ହୋଇଅଛନ୍ତି, ସେହି ଯୋଗୀଋଷିମାନେ ଏହି ସଂସାରବୃକ୍ଷର ସୁଖରୂପକ ଆନନ୍ଦପ୍ରଦ ଫଳଟିକୁ ଭକ୍ଷଣ କରିଥାନ୍ତି ।'

'ପ୍ରିୟ ଉଦ୍ଧବ, ମୁଁ ବିଭିନ୍ନ ରୂପରେ ଏହି ସଂସାରରେ ପ୍ରକଟିତ ହୋଇଥିଲେ ମଧ୍ୟ ବାସ୍ତବରେ ମୁଁ ଏକ ଏବଂ ମୋର ଏହି ପ୍ରକାଶିତ ବହୁବିଧରୂପ କେବଳ ମାୟାପ୍ରସୂତ । ଗୁରୁଙ୍କର ସହାୟତାରେ ଏହି ସତ୍ୟକୁ ଯେ ବାସ୍ତବିକ ହୃଦୟଙ୍ଗମ କରିପାରେ, ସେ କେବଳ ବେଦର ପ୍ରକୃତ ରହସ୍ୟ ଉପଲବ୍ଧି କରିଅଛୁ ।

'ସମୟକ୍ରମେ ପ୍ରଳୟ ସଂଘଟିତ ହେବାରୁ ବେଦୋକ୍ତ ବାଣୀ ସକଳ ସମ୍ପୂର୍ଣ୍ଣରୂପେ ବିଲୁପ୍ତ ହୋଇଯାଇଥିଲା । ପରେ ଯେତେବେଳେ ଜଗତ

ସୃଷ୍ଟିର ସମୟ ଆସିଲା, ସେତେବେଳେ ମୁଁ ସେହି ବେଦନିହିତ ସତ୍ୟ ସମ୍ପର୍କରେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ ଉପଦେଶ ଦେଇଥିଲି । ବ୍ରହ୍ମା ମଧ୍ୟ ନିଜର ଜ୍ୟେଷ୍ଠ ପୁତ୍ର ସ୍ୱାୟମ୍ଭୁବ ମନୁଙ୍କୁ ସେହି ଉପଦେଶ ପ୍ରଦାନ କରିଥିଲେ । ମନୁଙ୍କଠାରୁ ସେହି ଉପଦେଶ ଲାଭର ସୁଯୋଗ ଭୃଗୁ, ମରୀଚି, ପୁଲହ, ପୁଲସ୍ତ୍ୟ, ଅତ୍ରି, ଅଙ୍ଗିରା ଏବଂ କ୍ରତୁପ୍ରମୁଖ ସପ୍ତ ପ୍ରଜାପତିଙ୍କୁ ମିଳିଥିଲା । ଏହି ମହର୍ଷିମାନଙ୍କର ସନ୍ତାନଗଣ ଦେବତା, ଦାନବ, ଗୁହ୍ୟକ, ମନୁଷ୍ୟ, ସିଦ୍ଧ, ଗନ୍ଧର୍ବ, ବିଦ୍ୟାଧର, ଚାରଣ, କିନ୍ନର, ନାଗ, ରାକ୍ଷସ ଏବଂ କିମ୍ପୁରୁଷ ପ୍ରମୁଖ ନିଜ ନିଜର ପିତାଙ୍କଠାରୁ ସେହିସବୁ ଉପଦେଶକୁ ପରମ୍ପରାକ୍ରମେ ଲାଭ କରିଥିଲେ, କିନ୍ତୁ ସେମାନଙ୍କର ଜାତି ଓ ସ୍ୱଭାବ ଭିନ୍ନ ଭିନ୍ନ ଥିବାରୁ ଏବଂ ସେମାନଙ୍କର କାମନା ବାସନା ସତ୍ତ୍ୱ, ରଜ ଓ ତମ ଗୁଣଦ୍ୱାରା ପରିବେଶ ବିଭେଦରେ ଭିନ୍ନ ଭିନ୍ନ ଥିବାରୁ ସେମାନଙ୍କର ଜୀବନଯାତ୍ରା, ରୁଚିବୋଧ ଓ ବୁଦ୍ଧି ମଧ୍ୟ ପରସ୍ପରଠାରୁ ଭିନ୍ନ ଥିଲା । ଅଧିକନ୍ତୁ ମୋର ମାୟାଦ୍ୱାରା ପରିଚାଳିତ ହେଉଥିବାରୁ ସେମାନେ ନିଜର ରୁଚି ଓ ପ୍ରକୃତି ଅନୁସାରେ ସେହିସବୁ ବୈଦିକ ସତ୍ୟ ସମ୍ବଳିତ ଉପଦେଶକୁ ଭିନ୍ନ ଭିନ୍ନ ଅର୍ଥରେ ଗ୍ରହଣ କରିଥିଲେ, ଫଳରେ ସେମାନଙ୍କ ମଧ୍ୟରୁ କେତେକଙ୍କର ମତ ସ୍ଥଳବିଶେଷରେ ବେଦର ଅନୁକୂଳ ହେବାବେଳେ ଅନ୍ୟ କେତେକଙ୍କର ମତ ବେଦର ପରିପନ୍ଥୀ ହେଲା । କେତେକ ଧର୍ମକୁ, କେତେକ ଯଶକୁ, କେହି କେହି କାମକୁ, କେହି କେହି ସତ୍ୟ, ଶମ, ଦମକୁ ଅଥବା ଐଶ୍ୱର୍ଯ୍ୟ ଓ ତ୍ୟାଗକୁ, କେତେକ ଭୋଗକୁ କେହି କେହି ଅବା ଯଜ୍ଞ, ତପ, ଦାନ, ସେବା, ବ୍ରତ ଆଦିକୁ ପରମଧର୍ମ ବା ପୁରୁଷାର୍ଥ ବୋଲି ସୂଚିତ କରିଅଛନ୍ତି । ତେବେ ଏହିସବୁ କର୍ମଦ୍ୱାରା ଯାହାକିଛି ଲାଭହୁଏ, ତାହା ସାମାନ୍ୟ, କ୍ଷଣିକ ଏବଂ ବିନାଶଶୀଳ । ସେହିସବୁ କର୍ମର ଫଳ ଶେଷ ହେଲେ ପୁନର୍ବାର ଜୀବକୁ ଦୁଃଖର ସମ୍ମୁଖୀନ ହେବାକୁ ପଡ଼ିଥାଏ ଏବଂ ତାହା ଅସୂୟା ତଥା ବିଭିନ୍ନ ଦୋଷ ଆଦିର ସୃଷ୍ଟିର କାରଣ ହୋଇଥାଏ; କିନ୍ତୁ ଯେଉଁ ବ୍ୟକ୍ତି ବିଷୟସୁଖରେ ନିଜର ଜୀବନକୁ ଅତିବାହିତ ନ କରି ସର୍ବଦା କାୟମନୋବାକ୍ୟରେ ମୋ ଠାରେ ଆତ୍ମସମର୍ପଣ କରିଥାଏ, ମୁଁ ତା' ଜୀବନରେ ପରମାନନ୍ଦ ସ୍ୱରୂପରେ ସ୍ଫୁରିତ ହୁଏ; ତା' ଫଳରେ ସେ ଯେଉଁ ସୁଖାନୁଭୂତି ଲାଭ

କରେ ସେହି ସୁଖ ବିଷୟଭୋଗଲୋଲୁପ କୌଣସି ବ୍ୟକ୍ତିର ଜୀବନରେ ଘଟି ନ ଥାଏ । ଯେଉଁ ବ୍ୟକ୍ତି ସମସ୍ତ ପ୍ରକାରର ଭୋଗବାସନାରୁ ନିଜକୁ ଦୂରେଇ ରଖେ ଓ ନିଜର ଇନ୍ଦ୍ରିୟଙ୍କୁ ସଂଯତ କରିଥାଏ ସେହି ସମଦର୍ଶୀ ବ୍ୟକ୍ତି ମୋର ସାନ୍ନିଧ୍ୟସୁଖ ସହିତ ପରମ ସନ୍ତୋଷ ଲାଭକରେ ଏବଂ ଚତୁର୍ଦ୍ଦିଗର ସବୁକିଛି ତା ସମ୍ମୁଖରେ ଆନନ୍ଦମୟ ରୂପରେ ପ୍ରକଟିତ ହୋଇଥାଏ । ଯେଉଁ ବ୍ୟକ୍ତି ବ୍ରହ୍ମପଦ, ସାର୍ବଭୌମତ୍ୱ, ରସାତଳାଧିପତ୍ୟ ସିଦ୍ଧିଲାଭ ତଥା ମୋକ୍ଷପଦ ପ୍ରତି ମଧ୍ୟ ଅଭିଳାଷୀ ନ ହୋଇ ମୋଠାରେ ନିଜକୁ ସର୍ବାନ୍ତଃକରଣରେ ସମର୍ପଣକରି ଦେଇଥାଏ, ସେହି ବ୍ୟକ୍ତି ମୋର ସବୁଠାରୁ ବଡ଼ ପ୍ରିୟ । ଏପରିକି ବ୍ରହ୍ମା, ଶଙ୍କର, ଭାଇ ବଳରାମ ତଥା ସ୍ୱୟଂ ଲକ୍ଷ୍ମୀ ମଧ୍ୟ ମୋର ସେପରି ପ୍ରିୟ ନୁହଁନ୍ତି । ଯେଉଁ ଭକ୍ତ କୌଣସି ବିଷୟ ପ୍ରତି ଅପେକ୍ଷା କରେ ନାହିଁ, ନିରନ୍ତର ମୋତେ ହିଁ ମନ ମଧ୍ୟରେ ଚିନ୍ତା କରୁଥାଏ, ସେହି ଚିନ୍ତାରେ ନିଜେ ସଦା ତନ୍ମୟ ରହେ ଏବଂ ରାଗ, ଦ୍ୱେଷ ଭୁଲି ସମସ୍ତଙ୍କ ପ୍ରତି ସମାନ ଭାବ ପୋଷଣ କରେ ସେହି ଶତ୍ରୁଶୂନ୍ୟ, ମହାତ୍ମା ଓ ପରମଭକ୍ତଙ୍କ ପଛେ ପଛେ ମୁଁ ସବୁବେଳେ ବୁଲି ବୁଲୁଥାଏ; କେବଳ ଏହି ଆଶାରେ ଯେ ସେହି ଭକ୍ତଙ୍କ ଚରଣର ଧୂଳିକଣା ଉଡ଼ିଆସି ମୋ ଉପରେ ପଡ଼ିଯାଇ ଏବଂ ସେହି ପଦରଜର ସ୍ପର୍ଶରେ ମୁଁ ପବିତ୍ର ହୋଇଯାଏ । ବୃହତ୍ କାଷ୍ଠଖଣ୍ଡକୁ ଅଗ୍ନି ନିମିଷକ ମଧ୍ୟରେ ଭସ୍ମୀଭୂତ କରିଦେବା ପରି ମୋ ପ୍ରତି ପ୍ରକାଶ କରିଥିବା ଭକ୍ତିର ଶକ୍ତି ଏତେ ପ୍ରବଳ ଯେ ଭକ୍ତର ସମସ୍ତ ପାପକୁ ସମ୍ପୂର୍ଣ୍ଣ ରୂପରେ ନଷ୍ଟ କରି ତା'ର ଚିତ୍ତକୁ ପବିତ୍ର କରିଥାଏ । ଯୋଗ, ଜ୍ଞାନ, ଧର୍ମାନୁଷ୍ଠାନ, ଜପତପ, ତ୍ୟାଗ ଆଦି ସାଧନା ଦ୍ୱାରା ମଧ୍ୟ ଯାହା ଲାଭ କରି ହୁଏ ନାହିଁ, ଅନାବିଳ ଭକ୍ତି ଦ୍ୱାରା ତାହା ସହଜରେ ମିଳିଥାଏ । ମୁଁ ସାଧୁସନ୍ଥଙ୍କର ପ୍ରିୟତମ ଆତ୍ମା; ଶ୍ରଦ୍ଧା ଓ ଭକ୍ତି ଦ୍ୱାରା ମୁଁ ବଶୀଭୂତ ହୋଇଥାଏ । ଭକ୍ତି ସମ୍ପର୍କରେ ମୁଁ ଉଚ୍ଚ ନୀଚ ଜାତି ଆଦିର ବିଚାର କରେ ନାହିଁ । ମୋ ଲୀଳା କଥାର ଶ୍ରବଣ ଭଜନରେ ଯାହାର ଶରୀର ରୋମାଞ୍ଚିତ ହୁଏ ନାହିଁ କି ଚିତ୍ତ ପୁଲକିତ ହୁଏ ନାହିଁ କିମ୍ବା ନୟନ ଆନନ୍ଦାଶ୍ରୁରେ ଛଳ ଛଳ ହୁଏ ନାହିଁ, ତା'ର ଜୀବନରେ ପ୍ରକୃତ ଭକ୍ତି ଉଦ୍ରେକ ହୋଇ ନାହିଁ । ଯାହାଙ୍କ ଠାରେ ମୋ ସମ୍ପର୍କରେ

ଏକନିଷ୍ଠ ଭକ୍ତ ନିଜେ, ତାଙ୍କର ଚିତ୍ତ ସେହି ଭକ୍ତି ଭାବରେ ଏପରି ଦ୍ରବୀଭୂତ ହୋଇଥାଏ ଯେ, ସେ ମୋର ପ୍ରେମଲୀଳାରେ ଭାବବିହ୍ୱଳ ହୋଇ ମୋ କଥା ଚିନ୍ତା କରନ୍ତି, ମୋର ଦୁଃଖ କଥା କଳ୍ପନା କରି ସେ ବାଳୁଳଙ୍କ ପରି କ୍ରନ୍ଦନ କରନ୍ତି । ମୋର ଅଦ୍ଭୁତଲୀଳା କଥା ସ୍ମରଣ କରି ସେ ପାଗଳଙ୍କ ପରି ଅଟ୍ଟହାସ୍ୟ କରନ୍ତି ଏବଂ ଏସବୁ ଭାବପ୍ରତିକ୍ରିୟା ପ୍ରକାଶ କଲାବେଳେ ସାମାଜିକ ଲଜ୍ଜା, ଘୃଣା, ଲୋକାଗ୍ରହ ତଥା ସାଂସାରିକ ନିୟମ ଓ ସଂଭ୍ରମ ପ୍ରତି ତାଙ୍କର କୌଣସି ଭ୍ରୂକ୍ଷେପ ନ ଥାଏ ବରଂ ମୋର ଲୀଳା ଚରିତକୁ ସେ ଉଚ୍ଚ କଣ୍ଠରେ ଗାନ କରନ୍ତି ଏବଂ ତାଙ୍କର ସେହି ଆଚରଣ ଦ୍ୱାରା କେବଳ ନିଜକୁ ନୁହେଁ ସମଗ୍ର ଜଗତକୁ ପବିତ୍ର କରିଥାନ୍ତି । ଅଗ୍ନିର ସ୍ପର୍ଶରେ ସୁବର୍ଣ୍ଣ ଯେପରି ଶୁଦ୍ଧ ହୋଇଯାଏ, ସେହିପରି ଭକ୍ତି ଦ୍ୱାରା ଆତ୍ମା କର୍ମବାସନାରୁ ମୁକ୍ତ ହୋଇ ନିଜର ପ୍ରକୃତ ସ୍ୱରୂପକୁ ବିକଶିତ କରିଥାଏ । ଅଞ୍ଜନ ଲେପନ ଦ୍ୱାରା ନେତ୍ରର ଦୋଷ ଦୂର ହେବା ସଙ୍ଗେ ସଙ୍ଗେ ନେତ୍ରର ଦୃଷ୍ଟିଶକ୍ତି ଅଧିକ ପ୍ରଖର ହୋଇଥାଏ ଅନୁରୂପ ଭାବରେ ମୋର ଲୀଳା କଥାକୁ ବାରମ୍ବାର ଶ୍ରବଣ ଓ କୀର୍ତ୍ତନ କରିବା ଦ୍ୱାରା ପ୍ରତ୍ୟେକ ବ୍ୟକ୍ତିର ଚିତ୍ତରୁ ସମସ୍ତ ପାପ ଚିନ୍ତା ଓ କଳୁଷ ବିଦୂରିତ ହେବା ସଙ୍ଗେ ସଙ୍ଗେ ନିଗୂଢ଼ ତତ୍ତ୍ୱକୁ ହୃଦୟଙ୍ଗମ କରିବାକୁ ସେହି ବ୍ୟକ୍ତି ସମର୍ଥ ହୋଇଥାଏ ତେଣୁ ଉଦ୍ଧବ, ତୁମେ ଅନ୍ୟ ସାଧନାର ଚିନ୍ତା ପରିହାର କରି ମୋର ଲୀଳା କଥା ଚିନ୍ତା କରି ନିଜର ଚରିତ୍ରକୁ ଶୁଦ୍ଧପୂତ କରିନିଅ ଏବଂ ଏକାଗ୍ରତାର ସହିତ ନିଜର ମନକୁ ମୋ ସହିତ ସଂପୃକ୍ତ କରିଦିଅ; ତାହା ହେଲେ ତୁମର ଜନ୍ମ ଓ ଜୀବନ ଯଥାର୍ଥରେ ସାର୍ଥକ ହେବ ।'

କୃଷ୍ଣଙ୍କ ମୁଖରୁ ଉପଦେଶମାନ ଶୁଣି ଶୁଣି ଉଦ୍ଧବ କହିଲେ, 'ପ୍ରଭୁ, ମୋ ମନରେ କେତେକ ବିଷୟ ଜାଣିବା ନିମନ୍ତେ କୌତୂହଳ ଦେଖା ଦେଇଛି, ଦୟାକରି ଆପଣ ସେସବୁ ମୋତେ ବୁଝାଇ ଦିଅନ୍ତୁ । ହେ ଶତ୍ରୁନିସୂଦନ, ସଂଯମ କ'ଣ ଏବଂ ତାହା କେତେ ପ୍ରକାରର ?'

କୃଷ୍ଣ କହିଲେ, 'ଉଦ୍ଧବ ! ନିଜର ସ୍ୱଭାବଚରିତ୍ରକୁ ସୁନିୟନ୍ତ୍ରିତ କରିବା ନିମନ୍ତେ କରାଯାଉଥିବା ବିଭିନ୍ନ କର୍ମାଭ୍ୟାସକୁ ସଂଯମ କୁହାଯାଏ । ସଂଯମ ବାର ପ୍ରକାରର । ସେସବୁ ମଧ୍ୟରେ ଅହିଂସା, ସତ୍ୟ, ଅସ୍ତେୟ (ଚୌର୍ଯ୍ୟବୃତ୍ତି ନ କରିବା), ସତ୍‌ସଙ୍ଗ, ଲଜ୍ଜା, ଅସଞ୍ଚୟ

(ଆବଶ୍ୟକତାଠାରୁ ଅଧିକ ସଞ୍ଚୟ ନ କରିବା), ଆସ୍ତିକତା, ବ୍ରହ୍ମଚର୍ଯ୍ୟ, ମୌନତା, ସ୍ଥୈର୍ଯ୍ୟ, କ୍ଷମା ଓ ଅଭୟ ଆଦି ବାରଗୋଟି କର୍ମଭ୍ୟାସ ଅନ୍ତର୍ଭୁକ୍ତ ।'

ଉଦ୍ଧବ ପଚାରିଲେ, 'ନିୟମ କ'ଣ ? ତାହା ପୁଣି କେତେ ପ୍ରକାରର ?'

କୃଷ୍ଣ କହିଲେ, 'ଶୌଚ (ବାହ୍ୟ ଓ ଅନ୍ତର ଶୌଚ), ଜପ, ତପସ୍ୟା, ହୋମ, ଶ୍ରଦ୍ଧା, ଧର୍ମ, ଅତିଥିସେବା, ମୋର ପୂଜା, ତୀର୍ଥାଟନ, ପରୋପକାର, ସନ୍ତୋଷ ଏବଂ ଗୁରୁସେବା ଆଦି କାର୍ଯ୍ୟକୁ ନିୟମ କୁହାଯାଏ । ସକାମ ଓ ନିଷ୍କାମ—ଉଭୟ ଶ୍ରେଣୀର ଲୋକଙ୍କ ପ୍ରତି ଏହି ନିୟମମାନ ପ୍ରଶସ୍ତ ।'

'ଶମ କ'ଣ ? ଦମ କାହାକୁ କୁହାଯାଏ ?'

'ନିଜର ମନ ଓ ବୁଦ୍ଧିକୁ ମୋ ସହିତ ସଂଶ୍ଳିଷ୍ଟ କରିବାକୁ ଶମ ଏବଂ ନିଜର ଇନ୍ଦ୍ରିୟମାନଙ୍କୁ ଦମନ କରିବାକୁ ଦମ କୁହାଯାଏ ।'

'ତିତିକ୍ଷା ଓ ଧୈର୍ଯ୍ୟ କାହାକୁ କହନ୍ତି ?'

'ନ୍ୟାୟ ଦ୍ୱାରା ପ୍ରାପ୍ତ ଦୁଃଖକୁ ସହ୍ୟ କରିବାକୁ ତିତିକ୍ଷା ଏବଂ ଜିହ୍ୱା ଓ ଲିଙ୍ଗ ଆଦିକୁ ସଂଯତ କରିବାକୁ ଧୈର୍ଯ୍ୟ କୁହାଯାଏ ।'

'ଦାନ, ତପ, ଶୌର୍ଯ୍ୟ ଏବଂ ସତ୍ୟ କାହାକୁ କହନ୍ତି ?'

'କାହାରି ପ୍ରତିଦ୍ରୋହ ନ କରି ଅଭୟ ପ୍ରଦାନ କରିବାକୁ ଦାନ; କାମନାକୁ ଦମନ କରିବାକୁ ତପ; ସ୍ୱଭାବକୁ ତ୍ୟାଗ କରିବାକୁ ଶୌର୍ଯ୍ୟ ଏବଂ ସର୍ବତ୍ର ପରମେଶ୍ୱର ଅବସ୍ଥାନ କରୁଅଛନ୍ତି ଏହା ହୃଦୟଙ୍ଗମ କରି ସମସ୍ତଙ୍କ ପ୍ରତି ସମଭାବ ପୋଷଣ କରିବାକୁ ସତ୍ୟ କୁହାଯାଏ ।'

ଉଦ୍ଧବ ପଚାରିଲେ, 'ପ୍ରକୃତ, ଋତ, ଶୌଚ ଓ ସନ୍ନ୍ୟାସ କ'ଣ ?'

କୃଷ୍ଣ କହିଲେ, 'ସତ୍ୟ ଅଥଚ ମଧୁର କଥାକୁ ଋତ, କୌଣସି କାର୍ଯ୍ୟରେ ଆସକ୍ତ ନ ହେବାକୁ ଶୌଚ ଏବଂ କାମନା ତ୍ୟାଗକୁ ପ୍ରକୃତ ସନ୍ନ୍ୟାସ କୁହାଯାଏ ।'

'ଇଷ୍ଟଧନ, ଯଜ୍ଞ, ଦକ୍ଷିଣା ଏବଂ ବଳ କାହାକୁ କୁହାଯାଏ ?'

'ଧର୍ମ ପାଳନ ଦ୍ୱାରା ଯେଉଁ ପୁଣ୍ୟ ଲାଭ ହୁଏ, ତାହା ହିଁ ଇଷ୍ଟଧନ । ମୁଁ ପରମେଶ୍ୱର ଏବଂ ମୋତେ ଯଜ୍ଞ କୁହାଯାଏ । ଜ୍ଞାନ ଉପଦେଶ ଦେବାକୁ ଦକ୍ଷିଣା କୁହାଯାଏ । ପ୍ରାଣାୟାମ ହିଁ ପରମ ବଳ ।'

ଉଦ୍ଧବ ପଚାରିଲେ, 'ଭଗ, ଲାଭ, ବିଦ୍ୟା ଏବଂ ଲଜ୍ଜା କାହାକୁ କହନ୍ତି ?'

କୃଷ୍ଣ କହିଲେ, 'ମୋର ଐଶ୍ୱର୍ଯ୍ୟ ହିଁ ଭଗ ନାମରେ ପରିଚିତ । ମୋ ପ୍ରତି ପ୍ରଦର୍ଶିତ ଉତ୍ତମ ଭକ୍ତିକୁ ଲାଭ କୁହାଯାଏ । ବ୍ରହ୍ମ ଓ ଆତ୍ମାର ଭେଦାଭେଦର ସମାଧାନ ଦ୍ୱାରା ଯେଉଁ ଶିକ୍ଷା ଲାଭ ହୁଏ, ତାକୁ ବିଦ୍ୟା କୁହାଯାଏ ଏବଂ ପାପ କାର୍ଯ୍ୟ କରିବାକୁ ଘୃଣାବୋଧ କରିବା ହିଁ ଲଜ୍ଜା ନାମରେ ପରିଚିତ ।'

'ଶ୍ରୀ, ସୁଖ, ଦୁଃଖ କ'ଣ ଏବଂ ପଣ୍ଡିତ ଓ ମୂର୍ଖ କିଏ ?

'ନିରପେକ୍ଷତାଦି ଗୁଣ ହିଁ ପ୍ରକୃତ ଶ୍ରୀ ବା ସୌନ୍ଦର୍ଯ୍ୟ । ସୁଖାବସ୍ଥା ଓ ଦୁଃଖାବସ୍ଥାକୁ ସମାନ ଜ୍ଞାନ କରିବାକୁ ସୁଖ ଏବଂ ସବୁବେଳେ କାମନାରେ ଜଡ଼ିତ ରହିବାକୁ ଦୁଃଖ କୁହାଯାଏ । ଜୀବର ମୋକ୍ଷ ଓ ବନ୍ଧନର ସକଳ ତତ୍ତ୍ୱକୁ ଯେ ଉତ୍ତମ ରୂପେ ଜାଣିଅଛନ୍ତି, ସେ ହିଁ ପ୍ରକୃତ ପଣ୍ଡିତ । ନିଜର ଶରୀର ଓ ସମ୍ପତ୍ତି ସମ୍ପର୍କରେ ଯାହା ମନରେ ଅହଙ୍କାର ଭାବ ଥାଏ ତାକୁ ମୂର୍ଖ କୁହାଯାଏ ।

ଉଦ୍ଧବ ପଚାରିଲେ, 'ପଥ କ'ଣ ଏବଂ ସ୍ୱର୍ଗ, ନରକ, ବନ୍ଧୁ, ଗୃହ, ଧନୀ ଓ ଦରିଦ୍ର କାହାକୁ କୁହାଯାଏ ?'

କୃଷ୍ଣ ଉତ୍ତର ଦେଲେ, 'ଉଦ୍ଧବ, ସାଂସାରିକ କାର୍ଯ୍ୟରୁ ନିଜକୁ ନିବୃତ୍ତ କରି ମୋତେ ଲାଭ କରିବାକୁ ଯେଉଁ ସବୁ ଉପାୟ ନିର୍ଦ୍ଦେଶ କରାଯାଇଅଛି, ସେସବୁ କୁ ପଥ କୁହାଯାଏ । ସତ୍ତ୍ୱ ଗୁଣର ଅଭିବୃଦ୍ଧିକୁ ସ୍ୱର୍ଗ ତମୋ ଗୁଣର ବୃଦ୍ଧିକୁ ନରକ, ଉପଦେଶଦାତା ଗୁରୁଙ୍କୁ ପ୍ରକୃତ ବନ୍ଧୁ, ନିଜର ଶରୀର ହିଁ ନିଜ ପାଇଁ ଗୃହ ଏବଂ ଯେ ସଦ୍‌ଗୁଣସମ୍ପନ୍ନ ତାଙ୍କୁ ପ୍ରକୃତ ଧନୀ କୁହାଯାଏ । ଯେ ସବୁବେଳେ ଅସନ୍ତୁଷ୍ଟ ସେ ହିଁ ପ୍ରକୃତରେ ଦରିଦ୍ର ।'

'କୃପଣ, ଈଶ୍ୱର ଓ ସନ୍ଥ କାହାକୁ କହନ୍ତି ?'

କୃଷ୍ଣ କହିଲେ, 'ଯେଉଁ ବ୍ୟକ୍ତି ନିଜର ଇନ୍ଦ୍ରିୟକୁ ସଂଯତ କରିପାରି ନାହିଁ ସେ କୃପଣ । ଯାହାଙ୍କର ଚିତ୍ତବୃତ୍ତି ବିଷୟାସକ୍ତ ନୁହେଁ, ତାଙ୍କୁ ହିଁ ଈଶ୍ୱର ବୋଲି ଜାଣିବ । ଯେଉଁ ବ୍ୟକ୍ତି ପକ୍ଷପାତ କରନ୍ତି ନାହିଁ, ସଦା ଉଦାସୀନ ଥାଏ, ସର୍ବଦା ମୋଠାରେ ନିଜର ମନକୁ ନିବିଷ୍ଟ କରିଥାଏ, କୌଣସି ମମତାରେ ଆବଦ୍ଧ ନୁହେଁ ଏବଂ ସଦା ପ୍ରଶାନ୍ତ, ସମଦର୍ଶୀ, ଅହଙ୍କାରଶୂନ୍ୟ, ଦ୍ୱନ୍ଦ୍ୱରହିତ ଏବଂ ପରିଗ୍ରହଶୂନ୍ୟ—ଏପରି ଚରିତ୍ରବାନ ବ୍ୟକ୍ତି ହିଁ କେବଳ ସନ୍ଥ ପଦବାଚ୍ୟ । ସନ୍ଥମାନେ ସବୁବେଳେ ମଙ୍ଗଳମୟ ଚରିତ ଆଲୋଚନାରେ ନିଜର ସମୟ ଅତିବାହିତ କରିଥାନ୍ତି । ଉଦ୍ଧବ, ଯେଉଁମାନେ ଶ୍ରଦ୍ଧାର ସହିତ ମୋର ଲୀଳା ଚରିତକୁ ଶ୍ରବଣ, କୀର୍ତ୍ତନ ଓ ଅନୁମୋଦନ କରିଥାନ୍ତି, ସେମାନଙ୍କର ମନ ଭଗବତ୍ ପରାୟଣ ହୋଇଥାଏ ଏବଂ ସେମାନେ ମୋର ପ୍ରେମମୟୀ ଭକ୍ତି ଲାଭ କରିଥାନ୍ତି । ମୁଁ ଅନନ୍ତ ଗୁଣର ଆଧାର । ମୋର ସ୍ୱରୂପ ଯେପରି ଆନନ୍ଦମୟୀ ସେହିପରି ଅନୁଭବ ସାପେକ୍ଷ । ଯେଉଁମାନେ ମୋର ସ୍ୱରୂପ ଉପଲବ୍ଧି କରି ମୋଠାରେ ଅଚଳା ଭକ୍ତି ପ୍ରକାଶ କରିଅଛନ୍ତି, ସେମାନଙ୍କର ସମସ୍ତ ଅଭାବ ଅସୁବିଧା ଅଚିରେ ସମାହିତ ହୋଇଥାଏ । ଜଳରେ ବୁଡ଼ି ଯାଉଥିବା ବ୍ୟକ୍ତିକୁ ଯେପରି ନୌକା ରକ୍ଷା କରେ, ସେହିପରି ଏହି ଘୋର ଭବସାଗରରେ ନିମଜ୍ଜମାନ ବ୍ୟକ୍ତିମାନଙ୍କ ପାଇଁ ସେହି ବ୍ରହ୍ମଜ୍ଞ ସନ୍ଥମାନେ ରକ୍ଷାକାରୀ ନୌକାର କାର୍ଯ୍ୟ କରିଥାନ୍ତି । ସାଧୁସନ୍ଥମାନେ ହିଁ ମୋର ପ୍ରାଣ ସ୍ୱରୂପ ।"

'ପ୍ରିୟ ଉଦ୍ଧବ, ମୋର ରୂପକୁ ପଥର, ଲୌହ, ମୃତ୍ତିକା, ବାଲୁକା, ମଣି ବା ଚନ୍ଦନାଦି ଦ୍ୱାରା ବା ଚିତ୍ରଦ୍ୱାରା ନିର୍ମାଣ କରି, ଏପରି କି ମନ ମଧ୍ୟରେ କଳ୍ପନା ମଧ୍ୟ କରି ଶାସ୍ତ୍ରୋକ୍ତ ବୈଦିକ, ତାନ୍ତ୍ରିକ ଅଥବା ମିଶ୍ରିତ ବିଧିବିଧାନାନୁସାରେ ମୋର ପୂଜା ଆରାଧନା କରିବା ଉଚିତ୍ । ମୋର ପୂଜାର୍ଚ୍ଚନା ଦ୍ୱାରା ଜନ୍ମଜନ୍ମାନ୍ତରର କର୍ମାର୍ଜିତ ପାପର ବିନାଶ ଘଟିଥାଏ ଏବଂ ଇହଲୋକ ଓ ପରଲୋକରେ ସକଳ ଅଭୀଷ୍ଟ ଓ ଆନନ୍ଦ ସୁଲଭ ହୋଇଥାଏ । ଶକ୍ତି ଅନୁସାରେ ବ୍ୟକ୍ତିମାନେ ମୋର ପୂଜାର୍ଚ୍ଚନା ନିମନ୍ତେ ସୁନ୍ଦର ଓ ସୁଦୃଢ଼ ମନ୍ଦିର ପ୍ରତିଷ୍ଠା କରି ମୋର ମୂର୍ତ୍ତିକୁ ତହିଁରେ ସ୍ଥାପନା କରିବା ଉଚିତ ଏବଂ ନିଷ୍ଠାର ସହିତ ତହିଁରେ ମୋର ନିୟମିତ ପୂଜାର

ଆବଶ୍ୟକୀୟ ବ୍ୟବସ୍ଥାମାନ କରିବା ଉଚିତ୍। ଯେଉଁମାନେ ମୋର ପୂଜା ଉପଲକ୍ଷେ ଭୂମି ଆଦି ଦାନ କରନ୍ତି, ସେମାନେ ପରଲୋକରେ ସକଳ ଐଶ୍ୱର୍ଯ୍ୟ ଓ ସୁଖଲାଭ କରିଥାନ୍ତି । ଯେଉଁମାନେ ମୋର ମୂର୍ତ୍ତି ପ୍ରତିଷ୍ଠା କରନ୍ତି, ସେମାନେ ପରଜନ୍ମରେ ଚକ୍ରବର୍ତ୍ତୀ ପଦ ଓ ତ୍ରିଲୋକର ସକଳ ଐଶ୍ୱର୍ଯ୍ୟ ଲାଭ କରିଥାନ୍ତି । ଯେଉଁମାନେ ଶ୍ରଦ୍ଧାର ସହିତ ପ୍ରତ୍ୟହ ମୋର ମୂର୍ତ୍ତିକୁ ପୂଜା କରନ୍ତି ସେମାନେ ବ୍ରହ୍ମଲୋକରେ ଓ ବୈକୁଣ୍ଠରେ ବାସ କରନ୍ତି । ମୋର ପୂଜାର୍ଚ୍ଚନା କରିବା ଦ୍ୱାରା ସେମାନଙ୍କର ମନରେ ମୋ ପ୍ରତି ଅଚଳା ଭକ୍ତି ଜାତ ହୁଏ ଏବଂ ସେହି ଭକ୍ତି ବଳରେ ମୋତେ ସେମାନେ ଲାଭ କରିଥାନ୍ତି ।'

ଏହିପରି ବହୁ କଥା କହି ଉଦ୍ଧବଙ୍କୁ କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତି-ଯୋଗ ସମ୍ପର୍କରେ ଉପଦେଶମାନ ଭଗବାନ କୃଷ୍ଣ ପ୍ରଦାନ କରିଥିଲେ ।

ଉଦ୍ଧବ ପଚାରିଲେ, 'ହେ ଅଚ୍ୟୁତ, ଯେଉଁମାନେ ନିଜର ମନ ଓ ଇନ୍ଦ୍ରିୟକୁ ବଶୀଭୂତ କରିପାରି ନାହାନ୍ତି, ଏପରି ବ୍ୟକ୍ତି ଏହି ସଂସାରରେ ଅନେକ ଅଛନ୍ତି । ସେମାନଙ୍କ ପକ୍ଷରେ ଆପଣଙ୍କୁ ଲାଭ କରିବା ନିମନ୍ତେ ବିଭିନ୍ନ ଯୋଗାଭ୍ୟାସ କରିବା ଅତ୍ୟନ୍ତ ଦୁଷ୍କର । ସେହି ବିଷୟାସକ୍ତ ସଂସାରୀମାନଙ୍କର ସିଦ୍ଧିଲାଭ ପାଇଁ ଯଦି କିଛି ସହଜ ମାର୍ଗ ଥାଏ, ତାହା ଦୟାକରି ପ୍ରକାଶ କରନ୍ତୁ; ଯାହା ଅନୁଷ୍ଠାନକରି ଅନାୟାସରେ ସେମାନେ ଆପଣଙ୍କୁ ଲାଭ କରିପାରିବେ ।'

ଉଦ୍ଧବଙ୍କର ସେହି ପ୍ରଶ୍ନ ଶୁଣି କୃଷ୍ଣ ମନ୍ଦ ମନ୍ଦ ହାସ ପ୍ରକାଶ କରି କହିଲେ, 'ଉଦ୍ଧବ, ତୁମର ପ୍ରଶ୍ନ ଅନୁସାରେ ମୁଁ ମୋର ମଙ୍ଗଳମୟ ଭାଗବତ ଧର୍ମ ସମ୍ପର୍କରେ ଉପଦେଶ ପ୍ରଦାନ କରୁଛି ଏବଂ ତାହାକୁ ଶ୍ରଦ୍ଧାର ସହିତ ପାଳନ କଲେ ସାଧାରଣ ମନୁଷ୍ୟମାନେ ସଂସାର ରୂପକ ଦୁର୍ଜୟ ମୃତ୍ୟୁକୁ ମଧ୍ୟ ଅନାୟାସରେ ଜୟ କରିପାରିବେ । ଉଦ୍ଧବ, ଲୋକମାନେ ଯେ କୌଣସି କାର୍ଯ୍ୟ କରନ୍ତୁ ନା କାହିଁକି, ସେସବୁ କାର୍ଯ୍ୟକୁ ମୋ ପାଇଁ କରୁଅଛନ୍ତି ବୋଲି ଭାବି ମୋତେ ସ୍ମରଣ କରିବା ଉଚିତ । ଏହିପରି ଅଭ୍ୟାସ କଲେ କିଛିଦିନ ମଧ୍ୟରେ ସେମାନଙ୍କର ମନ ଓ ପ୍ରାଣ ମୋଠାରେ ଆପଣାଛାଏଁ ସମର୍ପିତ ହୋଇଯିବ ଓ ମୋ ସମ୍ପର୍କୀୟ ଚିନ୍ତାରେ ସେମାନେ ଅପାର ଆନନ୍ଦ ଲାଭ କରିବେ । ମୋର ଭକ୍ତ ଓ ସାଧୁମାନେ

ଯେଉଁ ପବିତ୍ର ସ୍ଥାନରେ ବାସକରନ୍ତି ଏବଂ ଯେଉଁ ସବୁ ଆଚରଣମାନ ପ୍ରକାଶ କରନ୍ତି, ଲୋକମାନେ ସେହିପରି ପବିତ୍ର ସ୍ଥାନରେ ବାସ କରିବା ଓ ସେହିପରି ସତ ଆଚରଣଗୁଡ଼ିକର ଅନୁସରଣ କରିବା ଉଚିତ୍ । ମୋର ପର୍ବ ଓ ଉତ୍ସବ ଦିବସରେ ସେମାନେ ଏକାକୀ କିମ୍ବା ଅନ୍ୟମାନଙ୍କ ସହିତ ମିଳିମିଶି ନୃତ୍ୟ, ଗୀତାବାଦ୍ୟ ଦ୍ୱାରା ଆଡ଼ମ୍ବର ସହକାରେ ମୋର ପୂଜା ମହୋତ୍ସବ ପାଳନ କରିବା ଉଚିତ୍ । ଯେଉଁ ବ୍ୟକ୍ତି ସବୁ ସମୟରେ ଓ ସବୁ ସ୍ଥାନରେ ମୋର ଉପସ୍ଥିତିକୁ ଉପଲବ୍ଧି କରେ; କି ବ୍ରାହ୍ମଣ କି ଚଣ୍ଡାଳ, ଏପରି କି ପଶୁ ପକ୍ଷୀ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖେ ଓ ସମସ୍ତଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରେ, ସେ ପ୍ରକୃତରେ ପଣ୍ଡିତ ଏବଂ ତାଙ୍କର ତୁଳନା ନାହିଁ । ଏହିପରି ଭାବରେ କିଛି ଦିନ ଚିନ୍ତା କଲେ ଓ ନିରନ୍ତର ମୋତେ ସ୍ମରଣ କଲେ, ମନୁଷ୍ୟର ମନରୁ ଗର୍ବ, ଈର୍ଷା ଓ ଅହଙ୍କାର ଆଦି ଦୋଷ ଦୁର୍ବଳତା ଅଚିରେ ଦୂର ହୋଇଯାଏ ଏବଂ ସେ ସମସ୍ତ ପଦାର୍ଥ ତାଙ୍କୁ ବ୍ରହ୍ମସର୍ବସ୍ୱ ପରି ପ୍ରତୀତ ହୁଏ । ନିଜର କାୟ-ମନ-ବାକ୍ୟରେ ମୋତେ ସ୍ମରଣ କରି କାର୍ଯ୍ୟ କରିବା ହିଁ ମୋତେ ଲାଭ କରିବା ନିମନ୍ତେ ସବୁଠାରୁ ଶ୍ରେଷ୍ଠ ସାଧନା । ଦୁଃଖ ଓ ଭୟ ସମୟରେ ଯେପରି ଲୋକମାନେ ମୋତେ ସ୍ମରଣ କରନ୍ତି ସେହିପରି ବିଷୟଭୋଗ ତଥା ଆନନ୍ଦ ସମୟରେ ସେମାନେ ଯଦି ନିଷ୍କାମ ଭାବରେ ମୋତେ ସ୍ମରଣ କରି ସବୁକାର୍ଯ୍ୟକୁ ମୋଠାରେ ସମର୍ପଣ କରି ଦିଅନ୍ତି, ତାହି ମୋର ପ୍ରସନ୍ନତାର କାରଣ ହେବା ସଙ୍ଗେ ସଙ୍ଗେ ସେମାନଙ୍କ ପାଇଁ ଅତୁଳନୀୟ ଧର୍ମରେ ପରିଣତ ହୋଇଯାଏ । ଉଦ୍ଧବ, ଏହାହିଁ ମୋର ପରମ ଭାଗବତ୍-ଧର୍ମ । ଯେଉଁ ମାନେ ସମସ୍ତ କର୍ମ ପରିତ୍ୟାଗ କରି ଭକ୍ତି ଚିତ୍ତରେ ମୋ ନିକଟରେ ଆତ୍ମ ସମର୍ପଣ କରନ୍ତି ସେମାନଙ୍କୁ ମୁଁ ଅମୃତତ୍ୱ ପ୍ରଦାନ କରିଥାଏ ଏବଂ ସେମାନେ ମୋର ସ୍ୱରୂପରେ ସଂଯୁକ୍ତ ହୋଇଥାନ୍ତି ।'

ଉଦ୍ଧବଙ୍କର ବିଭିନ୍ନ ପ୍ରଶ୍ନ ଅନୁସାରେ ଭଗବାନ କୃଷ୍ଣ ସାଧୁଙ୍କର ମହିମା ଓ ଲକ୍ଷଣ, ବନ୍ଧ, ମୋକ୍ଷ, ହଂସର ଇତିହାସ, ଧ୍ୟାନ ଯୋଗ, ମହାବିଭୂତି ଯୋଗ, ବିଭିନ୍ନ ସିଦ୍ଧି, ଯତିଧର୍ମ, ସାଙ୍ଖ୍ୟ ଯୋଗାଦି ବିଭିନ୍ନ ଯୋଗ, ଓ ଭିକ୍ଷୁ ଗୀତାଦି ବିଭିନ୍ନ ବିଷୟ ସମ୍ପର୍କରେ ବିସ୍ତୃତ ଉପଦେଶ-ମାନ ଉଦ୍ଧବଙ୍କ ନିକଟରେ ପ୍ରଦାନ କରିଥିଲେ ।

ଭଗବାନ କୃଷ୍ଣଙ୍କଠାରୁ ତତ୍ତ୍ୱୋପଦେଶ ଲାଭ କରୁ କରୁ ଉଦ୍ଧବଙ୍କର ନୟନଯୁଗଳ ଲୋତକାପ୍ଳୁତ ହୋଇଗଲା ଏବଂ ଭଗବାନ କୃଷ୍ଣଙ୍କ ଉଦ୍ଦେଶ୍ୟରେ ସ୍ତବଗାନ କରିବାକୁ ଅଭିଳାଷୀ ହୋଇ ଅଞ୍ଜଳିବଦ୍ଧ ହୋଇଥିଲେ ମଧ୍ୟ, ସେ ଏପରି ପ୍ରଣୟକ୍ଷୋଭିତ ହୋଇଥିଲେ ଯେ ତାଙ୍କର କଣ୍ଠ ବାଷ୍ପରୁଦ୍ଧ ହୋଇଗଲା । ବହୁ କଷ୍ଟରେ ନିଜର ବାଷ୍ପାକୁଳିତ ଆବେଗକୁ ପ୍ରତିରୋଧ କରି ନିଜର ଅବନତ ମସ୍ତକଦ୍ୱାରା କୃଷ୍ଣଙ୍କ ଚରଣକୁ ସ୍ପର୍ଶକରି ଉଦ୍ଧବ ପ୍ରଣାମ କଲେ ଏବଂ ବିନୀତ ଭାବରେ କହିଲେ, 'ହେ ଅଜ, ମୁଁ ମୋହାନ୍ଧକାରରେ ଆଚ୍ଛନ୍ନ ହୋଇ ହତବାକ୍ ହୋଇଯାଇଥିଲି ଏବଂ ଆପଣ ମୋ ପ୍ରତି କରୁଣା ପ୍ରକାଶ କରି ଏହି ଅନୁପମ ଉପଦେଶ ରୂପକ ଜ୍ଞାନାଲୋକ ପ୍ରଦାନ କରି ମୋତେ ଉଦ୍ଧାର କରିଅଛନ୍ତି । ସୂର୍ଯ୍ୟ ନିକଟରେ ଥିଲେ ଯେପରି ଅନ୍ଧକାର ଓ ଶୈତ୍ୟର କୌଣସି ପ୍ରଭାବ ନ ଥାଏ, ସେହିପରି ଆପଣଙ୍କର ଏହି ଉପଦେଶାତ୍ମକ ଅନୁପମ ଆଲୋକର ସଂସ୍ପର୍ଶରେ ଆସି ମୋର ମନରୁ ସମସ୍ତ ଅନ୍ଧକାର ଦୂର ହୋଇଅଛି । ଆପଣ ଦଶାର୍ହ, ବୃଷ୍ଣି, ଅନ୍ଧକ, ସାତ୍ୱତ ଏବଂ ଯାଦବବଂଶୀୟମାନଙ୍କୁ ସୁଦୃଢ଼ ସ୍ନେହପାଶରେ ଆବଦ୍ଧ କରି ଆମ୍ଭମାନଙ୍କ ହୃଦୟରେ ଯେଉଁ ମାୟାମମତାର ଡୋରି ପକାଇଥିଲେ, ଆଜି ଏହି ଆତ୍ମ-ଜ୍ଞାନ ରୂପକ ଶାଣିତ ଖଡ୍ଗ ଦ୍ୱାରା ତାକୁ ଛିନ୍ନ କରି ଅଛନ୍ତି । ହେ ମହାଯୋଗି, ମୁଁ ଆପଣଙ୍କୁ ପ୍ରଣାମ କରୁଛି । ଆପଣଙ୍କର ଏହି ଚରଣାରବିନ୍ଦରେ ମୋର ଯେପରି ଅତୁଟ ଭକ୍ତି ଚିରଦିନ ପାଇଁ ରହେ, ମୋତେ ଏହି ଆଶୀର୍ବାଦ ଆପଣ ପ୍ରଦାନ କରନ୍ତୁ ।' "

ଭଗବାନ କୃଷ୍ଣ କହିଲେ, 'ପ୍ରିୟ ଉଦ୍ଧବ, ତୁମେ ବର୍ତ୍ତମାନ ବଦରିକାଶ୍ରମକୁ ଯାଅ । ସେଠାରେ ମୋର ପଦଧୌତ ତୀର୍ଥ ଜଳରେ ସ୍ନାନ ଏବଂ ତାକୁ ସ୍ପର୍ଶ ଓ ସେବନ କରି ପବିତ୍ର ହେବ । ଅଳକାନନ୍ଦାକୁ ଦର୍ଶନ କଲେ ତୁମର ସକଳ କଳୁଷ ନଷ୍ଟ ହୋଇଯିବ । ସେଠାରେ ବୃକ୍ଷର ବଲ୍କଳ ପରିଧାନ କରି, ବଣର ଫଳ ମୂଳ ଆହାର କରିବ । ସେପରି କଲେ ଭୋଗପ୍ରତି ସକଳ ଆସକ୍ତି ଅଚିରେ ନଷ୍ଟ ହୋଇଯିବ ଏବଂ ତୁମେ ସେହି ପାରିପାର୍ଶ୍ୱିକ ସ୍ୱାଭାବିକ ଆରଣ୍ୟକ ପରିବେଶ ମଧ୍ୟରେ ମୋ ବିଷୟରେ ଚିନ୍ତା କରି କରି ତନ୍ମୟ ହୋଇଯିବ । ମୁଁ ତୁମକୁ ଯେଉଁସବୁ

ଉପଦେଶ ପ୍ରଦାନ କଲି, 'ସେସବୁକୁ ଏକାନ୍ତରେ ବିଚାର କରି ତା'ର ତତ୍ତ୍ୱକୁ ଅନ୍ତର ମଧ୍ୟରେ ଅନୁଭବ କରିବ ଏବଂ ମୋ କଥିତ ଭାଗବତ ଧର୍ମକୁ ନିରତ ପାଳନ କରିବ । ଏହିପରି ଜୀବନ ଯାପନ କରୁଥିବା ବେଳେ ଯଥା ସମୟରେ ତୁମେ ମୋର ସ୍ୱରୂପରେ ମିଳିତ ହେବ ।'

କୃଷ୍ଣଙ୍କଠାରୁ ଏହିପରି ଆଦେଶ ଲାଭ କରିବା ପରେ ଉଦ୍ଧବ କୃଷ୍ଣଙ୍କୁ ପ୍ରଦକ୍ଷିଣ କରି ତାଙ୍କ ଚରଣରେ ପ୍ରଣାମ କଲେ । ତାଙ୍କ ନୟନ ଯୁଗଳରୁ ଅବିରାମଗତିରେ ଆନନ୍ଦାଶ୍ରୁ ଝରିପଡୁଥିଲା; ଫଳରେ ପ୍ରଣାମ କଲାବେଳେ ଉଦ୍ଧବଙ୍କର ନୟନର ଲୋତକରେ କୃଷ୍ଣଙ୍କର ଚରଣ କମଳ ସିକ୍ତ ହୋଇଗଲା । କୃଷ୍ଣଙ୍କୁ ଛାଡ଼ି ଅନ୍ୟତ୍ର ଯିବାକୁ ଉଦ୍ଧବ ପ୍ରସ୍ତୁତ ନ ଥିଲେ । ତାଙ୍କର ହୃଦୟ ବିଚ୍ଛେଦ ଦୁଃଖରେ କାତର ହୋଇ ଉଠିଲା । ତାଙ୍କ ମନର ଅଦମ୍ୟ ଦୁଃଖର କଥା ବୁଝିପାରି କୃଷ୍ଣ ନିଜର ଚରଣ ପାଦୁକା ଦ୍ୱୟକୁ ଉଦ୍ଧବଙ୍କୁ ପ୍ରଦାନ କଲେ । ଭଗବାନଙ୍କର ସେହି ପବିତ୍ର ପାଦୁକାକୁ ନିଜର ମସ୍ତକରେ ସ୍ଥାପନ କରି ଓ କୃଷ୍ଣଙ୍କର ଚରଣ ବନ୍ଦନା କରି ଭକ୍ତିବିହ୍ୱଳ ଚିତ୍ତରେ ବଦରିକାଶ୍ରମ ଉଦ୍ଦେଶ୍ୟରେ ଉଦ୍ଧବ ବହୁ କଷ୍ଟରେ ଯାତ୍ରା କଲେ ।

ବଦରିକାଶ୍ରମରେ କୃଷ୍ଣଙ୍କ ନିର୍ଦ୍ଦେଶିତ ପଥରେ ଜୀବନ ଯାପନ ଓ ତପସ୍ୟାଚରଣ କରୁଥିବା ବେଳେ ଉଦ୍ଧବ ଯଥାକାଳରେ ବୈକୁଣ୍ଠପ୍ରାପ୍ତ ହୋଇଥିଲେ ।



# ଭଗବାନ କୃଷ୍ଣ ଓ ବଳରାମଙ୍କର ସ୍ୱଧାମ ଯାତ୍ରା

ଶୁକଦେବଙ୍କ ମୁଖରୁ ଭାଗବତ କଥା ଶୁଣୁ ଶୁଣୁ ମହାରାଜ ପରୀକ୍ଷିତ ପଚାରିଲେ, 'ହେ ମୁନିଶ୍ରେଷ୍ଠ, ମହାଭାଗବତ ଉଦ୍ଧବ ଭଗବାନଙ୍କ ଆଦେଶ ଅନୁସାରେ ବଦରିକା ଆଶ୍ରମକୁ ଯାତ୍ରା କରିବା ପରେ ଭଗବାନ କୃଷ୍ଣ କିପରି ତାଙ୍କର ଶରୀର ତ୍ୟାଗ କଲେ ? ଯାହାଙ୍କର ପରମ ସୁନ୍ଦର ଶରୀର ଉପରେ ଥରେମାତ୍ର ଦୃଷ୍ଟି ନିକ୍ଷେପ କଲେ ରମଣୀମାନେ ନିଜର ଦୃଷ୍ଟିକୁ ସହଜରେ ଫେରାଇ ଆଣି ପାରନ୍ତି ନାହିଁ । ଯାହାଙ୍କର ଶ୍ରୀଅଙ୍ଗ ବିଭୂତି ସମ୍ପର୍କରେ ବହୁ କଥା ଶୁଣି ମଧ୍ୟ ଅଧିକ ଶୁଣିବାକୁ ସାଧୁମାନଙ୍କର ଆଗ୍ରହର ସୀମା ନ ଥାଏ; ଯାହାଙ୍କର ଶରୀରର ଅନୁପମ ସୌନ୍ଦର୍ଯ୍ୟକୁ ବର୍ଣ୍ଣନା କରିବାକୁ କବିମାନେ ସତତ ଚେଷ୍ଟିତ, କୁରୁକ୍ଷେତ୍ର ସମରରେ ବୀର ଅର୍ଜୁନଙ୍କର ରଥରେ ଯେ ସାରଥିତ୍ୱ କରିଥିଲେ ଏବଂ ସମର ପ୍ରାଙ୍ଗଣରେ ଯାହାଙ୍କୁ ଦର୍ଶନ କରି ନିହତ ସୈନ୍ୟ ଓ ବୀରମାନେ ତାଙ୍କର ସୌମ୍ୟ ଶରୀରରେ ଲୀନହୋଇ ମୁକ୍ତିଲାଭ କରିଥିଲେ, ସେହି ପରମ ରମଣୀୟ କଳେବରକୁ ଭଗବାନ କୃଷ୍ଣ କିପରି ତ୍ୟାଗକଲେ, ତାହା ଜାଣିବାକୁ ମୁଁ ବିଶେଷ ଉତ୍କଣ୍ଠିତ । ଦୟାକରି ଆପଣ ତାହା ମୋ ନିକଟରେ ବର୍ଣ୍ଣନା କରନ୍ତୁ ।'

ଶୁକଦେବ କହିଲେ, 'ମହାରାଜ ଦ୍ୱାରକାପୁରରେ ନାନାବିଧ ଅଶୁଭ ସଙ୍କେତମାନ ଦିନକୁ ଦିନ ପରିଦୃଷ୍ଟ ହେବାରୁ, ଯାଦବମାନଙ୍କର ସମୂହ ବିନାଶ ନିମନ୍ତେ ପ୍ରଦତ୍ତ ବ୍ରହ୍ମଶାପର ସମୟ ଆସନ୍ନପ୍ରାୟ ବୋଲି ନିଶ୍ଚିନ୍ତ । ଭଗବାନ କୃଷ୍ଣ ଯାଦବମାନଙ୍କୁ କୁରୁକ୍ଷେତ୍ରର ପ୍ରସିଦ୍ଧ ପ୍ରଭାସ-ତୀର୍ଥକୁ ଯାତ୍ରା କରିବାକୁ ନିର୍ଦ୍ଦେଶ ଦେଲେ । କୃଷ୍ଣଙ୍କର କଥାନୁସାରେ ଯାଦବମାନେ ପ୍ରଭାସକ୍ଷେତ୍ରକୁ ଯାତ୍ରା କଲେ । ଦୈବର କି ବିଚିତ୍ର ବିଡ଼ମ୍ବନା ! ଯେଉଁ ଯାଦବମାନେ ଭଗବାନଙ୍କ ପ୍ରତି ଅତ୍ୟନ୍ତ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ପ୍ରଭାସ କ୍ଷେତ୍ରରେ ପହଞ୍ଚିବାପରେ ସେହି ସମ୍ଭ୍ରାନ୍ତ ବଂଶୋଦ୍ଭବ

କୃଷ୍ଣଭକ୍ତ ଯାଦବମାନେ ମଦ୍ୟପାନରେ ମତ୍ତ ହେଲେ ଏବଂ ସେମାନଙ୍କର ବୁଦ୍ଧିନାଶ ଘଟିଲା । ସେମାନେ ମଦମତ୍ତତାରେ ହିତାହିତ ଜ୍ଞାନଶୂନ୍ୟ ହୋଇ ପାରସ୍ପରିକ ସୌହାର୍ଦ୍ଦ୍ୟ ଓ ସମ୍ପର୍କକୁ ଭୁଲି ନିଜ ନିଜ ମଧ୍ୟରେ କଳହ କରିବାକୁ ଲାଗିଲେ, ଫଳରେ କଳହର ତିକ୍ତତା ଏପରି ସ୍ତରକୁ ଗଲା ଯେ ନିଜ ନିଜର ଅସ୍ତ୍ରଶସ୍ତ୍ର ଦ୍ୱାରା ସେମାନେ ପରସ୍ପରକୁ ଆଘାତ କଲେ ଏବଂ ସେହି ଯୁଦ୍ଧରେ ସେମାନଙ୍କର ଅସ୍ତ୍ରାଦି ନଷ୍ଟଭ୍ରଷ୍ଟ ହେବାପରେ ଆଉ କିଛି ନ ପାଇ ଋଷି ଅଭିଶାପ ପ୍ରସୂତ ଲୌହମୂଷଳର ଚୂର୍ଣ୍ଣରେ ବଢ଼ି ଉଠିଥିବା ଏରକା ନାମକ ଏକପ୍ରକାର ବଣୁଆ ଗଛଗୁଡ଼ିକୁ ପରସ୍ପରକୁ ଆଘାତ କରିବା ନିମନ୍ତେ ଉପାଡ଼ିଲେ । ବଡ଼ ଆଶ୍ଚର୍ଯ୍ୟର କଥା, ସେହି ଏରକା ଗଛଗୁଡ଼ିକ ଯାଦବମାନଙ୍କ ହାତକୁ ଆସିବା ମାତ୍ରେ ବଜ୍ରପରି କଠୋର ମୁଦ୍‌ଗରରେ ପରିଣତ ହୋଇଯାଉଥାଏ । ସେହି ଏରକା-ମୁଦଗରର ପ୍ରଚଣ୍ଡ ପ୍ରହାରରେ ଯାଦବମାନେ ମୃତ୍ୟୁ ବରଣ କରୁଥାନ୍ତି । ଏସବୁ ଦୁର୍ଘଟଣା ଦେଖି କୃଷ୍ଣ ଓ ବଳରାମ ସେହି ମଦମତ୍ତ ଉତ୍ୟକ୍ତ ଯାଦବମାନଙ୍କୁ ବାରଣ କଲେ ମଧ୍ୟ ସେମାନେ କୃଷ୍ଣ ଓ ବଳରାମଙ୍କ କଥା ଦୂରେ ଥାଉ ଓଲଟି କୃଷ୍ଣ ଓ ବଳରାମଙ୍କୁ ଆକ୍ରମଣ କରିବାରୁ, କୃଷ୍ଣ ଓ ବଳରାମ ସେହି ଏରକା ବୃକ୍ଷ ଉତ୍ପାଟିତ କରି ସେମାନଙ୍କୁ ପ୍ରତିଆକ୍ରମଣ କଲେ ଏବଂ ସେମାନଙ୍କ ପ୍ରହାରରେ ସେଠାରେ ଥିବା ଅବଶିଷ୍ଟ ଯାଦବମାନେ ଗୋଟିଏ ପରେ ଗୋଟିଏ ମୃତ୍ୟୁ ମୁଖରେ ପତିତ ହେଲେ । ନିଜ ବଂଶର ସମୂହ ବିନାଶ ସଂଘଟିତ ହୋଇଅଛି ଦେଖିବାପରେ ପୃଥିବୀର ସମସ୍ତ ଭାର ଲାଘବ ହେଲା ବୋଲି ବିଚାର କରି କୃଷ୍ଣ ପରମସନ୍ତୋଷ ଲାଭ କଲେ । ନିଜ ବଂଶର ଏପରି ବିନାଶ ଦର୍ଶନକରି ବଳରାମ ନିଜର ସେହି ଅବତାର ଗ୍ରହଣର ଆବଶ୍ୟକତା ପୂର୍ଣ୍ଣ ହୋଇଅଛି ବୋଲି ଭାବିଲେ ଏବଂ ପରେ ପରେ ସମୁଦ୍ର ବେଳାରେ ଯୋଗାସନରେ ବସି ଇହଲୋକ ତ୍ୟାଗ କଲେ । ବଳରାମଙ୍କୁ ଦେହ ତ୍ୟାଗ କରିବାର ଦେଖି କୃଷ୍ଣ ଅଦୂରସ୍ଥ ଏକ ଅଶ୍ୱତ୍ଥ ବୃକ୍ଷ ମୂଳରେ ଦିବ୍ୟ ଚତୁର୍ଭୁଜ ମୂର୍ତ୍ତି ଧାରଣ କରି ଦକ୍ଷିଣ ଜାନୁ ଉପରେ ବାମ ଚରଣ ସ୍ଥାପନ କରି ଅର୍ଦ୍ଧଶାୟିତାବସ୍ଥାରେ ଉପବେଶନ କଲେ । ଘନଶ୍ୟାମବର୍ଣ୍ଣ ବିଶିଷ୍ଟ କୃଷ୍ଣଙ୍କର ବକ୍ଷସ୍ଥଳରେ ଶ୍ରୀବତ୍ସଚିହ୍ନ, ଅଙ୍ଗରେ କୌଶେୟ ବସ୍ତ୍ର, କର୍ଣ୍ଣରେ ମକରାକୃତି କୁଣ୍ଡଳ ଯୁଗଳ, ହାସ୍ୟଯୁକ୍ତ ମୁଖମଣ୍ଡଳରେ ପରମସୁନ୍ଦର ନୟନ ଯୁଗଳ, କପୋଳ ପର୍ଯ୍ୟନ୍ତ

ଲମ୍ବମାନ ମାଳକୁଞ୍ଚିତ ଅଳକାପଂକ୍ତି, କଟିରେ କଟିସୂତ୍ର, ସ୍କନ୍ଧରେ ବ୍ରହ୍ମ-ଉପବୀତ, ମସ୍ତକରେ କିରୀଟ, ଶରୀରରେ ବିଭିନ୍ନ ଅଳଙ୍କାର, ଗଳାରେ କୌସ୍ତୁଭମଣି ଓ ବନମାଳା ଏବଂ ତାଙ୍କର ଚତୁର୍ଭୁଜରେ ଶଙ୍ଖ-ଚକ୍ର-ଗଦାଦି ଆୟୁଧମାନ ଶୋଭାପାଉଥିଲା । ତାଙ୍କ ଶରୀରର ଅନୁପମ ଦିବ୍ୟଜ୍ୟୋତିରେ ଚତୁର୍ଦ୍ଦିଗ ଉଦ୍‌ଭାସିତ ହେଉଥିଲା ।

ଋଷି ଅଭିଶାପ ସମ୍ଭୂତ ଲୌହ ମୂଷଳର ଅବଶିଷ୍ଟାଂଶରେ ନିର୍ମାଣ କରିଥିବା ଶର ଧରି ଜରା ନାମକ ଏକ ଶବର ଅରଣ୍ୟରେ ଶିକାର ଅନ୍ୱେଷଣ କରୁଥିଲା ଏବଂ ଦୂରରୁ କୃଷ୍ଣଙ୍କର ଚରଣାରବିନ୍ଦକୁ ହରିଣୀର ମସ୍ତକବୋଲି ଭ୍ରମ କରି ସେ ଶର ନିକ୍ଷେପ କଲା । ଫଳରେ ଜରାର ସେହି ନିକ୍ଷିପ୍ତ ଶର କୃଷ୍ଣଙ୍କର ଚରଣକୁ ବିଦ୍ଧ କଲା । ଶର ସନ୍ଧାନ ସଫଳ ହୋଇଅଛି ଦେଖି ଜରା ଶିକାରର ପାଖକୁ ଦୌଡ଼ି ଯେତେବେଳେ ଦେଖିଲା ଯେ ତାହା ମୃଗ ନୁହେଁ, ତାହା ଚତୁର୍ଭୁଜଧାରୀ କୃଷ୍ଣ, ସେ ନିଜର କୁକର୍ମରେ ଭୀତତ୍ରସ୍ତ ଓ ଅନୁତପ୍ତ ହୋଇ ନିଜର ମସ୍ତକରେ କୃଷ୍ଣଙ୍କର ଚରଣକୁ ସ୍ପର୍ଶ କରି ତଳେ ଲୋଟିଗଲା ।

ଅନୁତପ୍ତ ଜରା ଶବର ଧୀରେ ଧୀରେ କହିଲା, 'ହେ ମଧୁସୂଦନ, ହେ ଉତ୍ତମଶ୍ଳୋକ, ମୁଁ ଅଜ୍ଞାନତାବଶତଃ ଏହି ଭୁଲ କରିଅଛି । ମୁଁ ଜ୍ଞାନହୀନ, ନରାଧମ, ପାପୀ । ହେ ନିଷ୍ପାପ, ଆପଣ ମୋର ଅପରାଧ କ୍ଷମା କରନ୍ତୁ । ପ୍ରଭୁ, ଯାହାଙ୍କୁ ସ୍ମରଣ କରିବା ମାତ୍ରେ ମନୁଷ୍ୟର ସକଳ ଅଜ୍ଞାନତା ଦୂର ହୋଇଯାଏ, ବଡ଼ ଦୁର୍ଭାଗ୍ୟର କଥା, ସେହି ପରମ ପୁରୁଷ ଭଗବାନ ବିଷ୍ଣୁଙ୍କର ମୁଁ ଏପରି କ୍ଷତି କରି ବସିଲି ! ହାୟ, ହାୟ !! ହେ ବୈକୁଣ୍ଠନାଥ, ମୋ ପରି ମୃଗଲୁବ୍‌ଧ ନରାଧମ ଶବର ଏହିପରି ଅପରିଣାମଦର୍ଶୀ କାର୍ଯ୍ୟର ପୁନରାବୃତ୍ତି କରି ଭବିଷ୍ୟତରେ ଯେପରି ଆଉ କୌଣସି ସାଧୁପୁରୁଷଙ୍କର ଅଯଥା ଅନିଷ୍ଟ ସାଧନ ନ କରେ ସେଥିପାଇଁ ମୋତେ ଆପଣ ସଂହାର କରନ୍ତୁ । ଆପଣଙ୍କର ମାୟା ବୁଝିବା ମୋ ପକ୍ଷରେ ଆଦୌ ସମ୍ଭବ ନୁହେଁ ।'

ଭଗବାନ କୃଷ୍ଣଙ୍କର ପାଦତଳେ ପଡ଼ି ଜାରା ଶବର ନିଜର ଅପରାଧ ପାଇଁ ଉପଯୁକ୍ତ ଶାସ୍ତି ଲାଭ କରିବା ଉଦ୍ଦେଶ୍ୟରେ ଏହିପରି ନିବେଦନ କରୁଥିବା ବେଳେ ଭଗବାନ କୃଷ୍ଣ କହିଲେ, 'ଜରା ! ଉଠ,

ଭୟ କରନା, ଉଠ । ମୋର ଇଚ୍ଛାନୁସାରେ ତୁ ଏହି କାର୍ଯ୍ୟ କରିଅଛୁ, ଏଥିରେ ତୋର କୌଣସି ଦୋଷ ନାହିଁ; ତେଣୁ ଭୟ କରୁଛୁ କାହିଁକି ? ମୁଁ ତୋ ପ୍ରତି ଅତ୍ୟନ୍ତ ପ୍ରସନ୍ନ ହୋଇଅଛି; ସେଥିପାଇଁ ମୁଁ ଆଦେଶ ଦେଉଛି, ପୁଣ୍ୟକାର୍ଯ୍ୟ କରିଥିବା ଲୋକମାନଙ୍କ ପାଇଁ ଯେଉଁ ସ୍ୱର୍ଗଲୋକ ଉଦ୍ଦିଷ୍ଟ, ତୁ ସେହି ସ୍ୱର୍ଗଲୋକ ଲାଭ କରିବୁ । ତେଣୁ ଉଠ ।'

ଇଚ୍ଛାଶରୀରଧାରୀ ଭଗବାନ କୃଷ୍ଣଙ୍କ ମୁଖରୁ କଥା ସରିନାହିଁ, ଜରା ଶବରକୁ ନେଇଯିବା ପାଇଁ ଏକ ଦିବ୍ୟ ବିମାନ ସେଠାରେ ହଠାତ୍ ଆବିର୍ଭୂତ ହେଲା । ଜରା ଶବର ଭଗବାନଙ୍କୁ ତିନିଥର ପରିକ୍ରମା ଓ ନମସ୍କାର କରି ସେହି ଦିବ୍ୟ ବିମାନରେ ଆରୋହଣ କରି ସ୍ୱର୍ଗଲୋକକୁ ଯାତ୍ରା କଲା ।

କୃଷ୍ଣଙ୍କୁ ଅନ୍ୱେଷଣ କରୁ କରୁ ତୁଳସୀ ଗନ୍ଧଯୁକ୍ତ ବାୟୁକୁ ଅନୁସରଣ କରି ସାରଥି ଦାରୁକ ଭଗବାନ କୃଷ୍ଣଙ୍କ ନିକଟରେ ଆସି ପହଞ୍ଚିଲା ଏବଂ ଅଶ୍ୱତ୍ଥ ବୃକ୍ଷମୂଳରେ ଅପୂର୍ବ ଜ୍ୟୋତିସମ୍ପନ୍ନ ଦିବ୍ୟ ଆୟୁଧମାନ ଧାରଣ କରି ଚତୁର୍ଭୁଜ ସମନ୍ୱିତ କୃଷ୍ଣଙ୍କୁ ଉପବେଶନ କରିଥିବାର ସେ ଦେଖିଲା ।

ଦାରୁକର ହୃଦୟ ସ୍ନେହାପ୍ଲୁତ ହୋଇଗଲା । ସେ କୃଷ୍ଣଙ୍କ ପାଦତଳେ ପଡ଼ି କହିଲା, 'ପ୍ରଭୁ, ଚନ୍ଦ୍ର ଅସ୍ତ ଯିବାପରେ ରାତ୍ରିର ଅନ୍ଧକାରରେ ଯାତ୍ରୀର ଅବସ୍ଥା ଯାହା ହୋଇଥାଏ, ସେହିପରି ଆପଣଙ୍କ ଚରଣାମ୍ବୁଜର ଦର୍ଶନ ନ ପାଇ ମୋତେ ଚତୁର୍ଦ୍ଦିଗ ଅନ୍ଧକାରମୟ ଦେଖାଯାଉଥିଲା । ମନରେ ମୋର ଶାନ୍ତି ନ ଥିଲା । ଆପଣଙ୍କୁ ପାଇ ମୁଁ ଆଶ୍ୱସ୍ତ ହେଲି ।'

ସାରଥି ଦାରୁକ ଭଗବାନ କୃଷ୍ଣଙ୍କୁ ଏହି କଥା କହୁଥିବା ସମୟରେ କୃଷ୍ଣଙ୍କର ଗରୁଡ଼ଲାଞ୍ଛିତ ପତାକା ସମ୍ବଳିତ ରଥ ଓ ରଥର ଅଶ୍ୱଗୁଡ଼ିକ ଆକାଶରେ ଅଦୃଶ୍ୟ ହୋଇଗଲେ ଏବଂ ତା' ପଛେ ପଛେ କୃଷ୍ଣଙ୍କର ହସ୍ତସ୍ଥିତ ଆୟୁଧଗୁଡ଼ିକ ମଧ୍ୟ ତାଙ୍କର ହାତରୁ ଯାଇ ଆକାଶରେ ଅଦୃଶ୍ୟ ହୋଇଗଲା । ସେସବୁ ଦେଖି ଦାରୁକର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ।

ଦାରୁକଙ୍କୁ ସମ୍ବୋଧନ କରି ଭଗବାନ୍ କୃଷ୍ଣ କହିଲେ, 'ଦାରୁକ, ତୁମେ ବର୍ତ୍ତମାନ ଦ୍ୱାରକାକୁ ଯାଅ ଏବଂ ସେଠାରେ ଥିବା ଜ୍ଞାତିବନ୍ଧୁମାନଙ୍କୁ ଯାଦବମାନଙ୍କର ସମୂହ ବିନାଶ, ଭାଇ ବଳରାମଙ୍କର ପରମ ଗତି ଲାଭ ଏବଂ ମୁଁ ସ୍ୱଧାମକୁ ଯାତ୍ରା କରୁଥିବା କଥା ଜଣାଇ ଦିଅ । ଦ୍ୱାରକାରେ ରହିବା ତୁମ୍ଭମାନଙ୍କ ପକ୍ଷରେ ଆଉ ନିରାପଦ ନୁହେଁ; କାରଣ ମୁଁ ଦ୍ୱାରକାପୁରୀ ତ୍ୟାଗ କରିଥିବାରୁ ସାଗରର ଜଳ ଦ୍ୱାରକାକୁ ଗ୍ରାସ କରିବ । ତେଣୁ ନିଜ ନିଜର ଧନସମ୍ପତ୍ତି ଓ କୁଟୁମ୍ବ ସହ ମୋର ପିତାମାତାଙ୍କୁ ସଙ୍ଗରେ ନେଇ ଅର୍ଜ୍ଜୁନଙ୍କର ତତ୍ତ୍ୱାବଧାନରେ ପାଣ୍ଡବମାନଙ୍କର ରାଜଧାନୀ ଇନ୍ଦ୍ରପ୍ରସ୍ଥକୁ ଚାଲିଯିବ । ଦାରୁକ, ମୁଁ ଯେଉଁସବୁ ଧର୍ମ ପାଳନର କଥା କହିଅଛି, ତଦନୁସାରେ ନିଜର ଜୀବନ ନିର୍ବାହ କରି ସାଂସାରିକ ମାୟା ବନ୍ଧନରୁ ନିଜକୁ ଦୂରେଇ ନିଅ ଓ ଜ୍ଞାନନିଷ୍ଠ ହୁଅ । ଯାହାସବୁ ଘଟୁଅଛି, ସେସବୁ ମୋର ମାୟାଦ୍ୱାରା ଘଟୁଅଛି ବୋଲି ହୃଦୟଙ୍ଗମ କରି ନିଜକୁ ଶାନ୍ତ କରି ଓ ମୋ କଥାନୁସାରେ କାର୍ଯ୍ୟ କର ।'

ଭଗବାନ କୃଷ୍ଣଙ୍କଠାରୁ ସେହି ଆଦେଶ ପାଇ ସାରଥି ଦାରୁକ କୃଷ୍ଣଙ୍କୁ ବାରମ୍ବାର ପ୍ରଣାମ ଓ ପରିକ୍ରମା କରି ଦୁଃଖପୂର୍ଣ୍ଣ ଚିତ୍ତରେ ଦ୍ୱାରକାକୁ ଫେରିଗଲେ ।

ଦ୍ୱାରକା ଉଦ୍ଦେଶ୍ୟରେ ଦାରୁକ ପ୍ରସ୍ଥାନ କରିବା ପରେ ଭଗବାନ ବ୍ରହ୍ମା, ଶିବ, ପାର୍ବତୀ, ଦେବରାଜ ଇନ୍ଦ୍ର, ଗନ୍ଧର୍ବ, ଅପ୍ସରା, ଯକ୍ଷ, କିନ୍ନର, ନାଗ, ପିତୃପୁରୁଷଗଣ, ମହର୍ଷିଗଣ ଏବଂ ବ୍ରାହ୍ମଣ ପ୍ରମୁଖ ଭଗବାନ କୃଷ୍ଣଙ୍କର ପରମଧାମ ଯାତ୍ରାକୁ ସ୍ୱଚକ୍ଷୁରେ ଦର୍ଶନ କରିବା ନିମନ୍ତେ ନିଜ ନିଜର ଦିବ୍ୟ ରଥରେ ଆରୋହଣ କରି ଅତ୍ୟନ୍ତ ଉତ୍ସୁକ ଚିତ୍ତରେ ଆସି କୃଷ୍ଣ ଅବସ୍ଥାନ କରୁଥିବା ସ୍ଥାନରେ ଆବିର୍ଭୂତ ହେଲେ । ସେମାନେ ଭଗବାନ କୃଷ୍ଣଙ୍କର ଅଶେଷ ଗୁଣାବଳୀକୁ ଗାନ କରୁଥାନ୍ତି ଓ କୃଷ୍ଣଙ୍କ ଉପରେ କୁସୁମ ବୃଷ୍ଟି କରୁଥାନ୍ତି । ପିତାମହ ଭଗବାନ ବ୍ରହ୍ମା ଏବଂ ନିଜର ବିଭୂତି ସ୍ୱରୂପ ଦେବତା ପ୍ରମୁଖଙ୍କୁ ସେଠାରେ ସମବେତ ହୋଇ ଥିବାର ଦେଖି ଭଗବାନ ସ୍ୱଧାମକୁ ଯାତ୍ରା କରିବା ନିମନ୍ତେ ପ୍ରସନ୍ନ ଚିତ୍ତରେ ଆତ୍ମାରେ ଆତ୍ମାକୁ ସଂଯୋଜିତ କରି ନିଜର ପଦ୍ମନେତ୍ରକୁ ମୁଦ୍ରିତ କଲେ ଏବଂ ସେତେବେଳେ ଆଗ୍ନେୟ

ଯୋଗ ଅବଲମ୍ବନ କରିବା ଦ୍ୱାରା ନିଜର ଶରୀରକୁ ଦଗ୍ଧ ନ କରି ସ୍ୱଦେହରେ ଭଗବାନ କୃଷ୍ଣ ସ୍ୱଧାମକୁ ଯାତ୍ରା କଲେ । ଚତୁର୍ଦ୍ଦିଗରେ ସ୍ୱର୍ଗ ଦୁନ୍ଦୁଭି ବାଜୁଥାଏ ଏବଂ ଅନ୍ତରୀକ୍ଷମଣ୍ଡଳରେ ସ୍ୱର୍ଗରୁ ପୁଷ୍ପ ବୃଷ୍ଟି ହେଉଥାଏ । ଭଗବାନ କୃଷ୍ଣଙ୍କ ପଛେ ପଛେ ଭୂମଣ୍ଡଳରୁ ସତ୍ୟ, ଧର୍ମ, ଧୈର୍ଯ୍ୟ, କୀର୍ତ୍ତି ଏବଂ ଲକ୍ଷ୍ମୀ ମଧ୍ୟ ଅନ୍ତର୍ହିତ ହେଲେ ।

ମେଘମଣ୍ଡଳରୁ ପ୍ରକଟିତ ହୋଇଥିବା ବିଦ୍ୟୁତ ଅନନ୍ତ ଆକାଶରେ ଲୀନ ହୋଇଯିବା ପରି ଭଗବାନ କୃଷ୍ଣଙ୍କର ସ୍ୱଧାମ ଯାତ୍ରା ଫଳରେ ଏକ ଉଜ୍ଜ୍ୱଳ ଜ୍ୟୋତିର ଆକସ୍ମିକ ଅବସାନ ଘଟିଲା ।

ଶୁକଦେବ କହୁଥାନ୍ତି, 'ମହାରାଜ, ଅଭିନେତାମାନେ ଅଭିନୟ ପ୍ରଦର୍ଶନ କରିବା ନିମନ୍ତେ ଅନାସକ୍ତଚିତ୍ତରେ ବିଭିନ୍ନ ବେଶ ପରିବର୍ତ୍ତନ କଲାପରି ଭଗବାନ ମନୁଷ୍ୟ ରୂପରେ ଜନ୍ମଗ୍ରହଣ କରି ଓ ବିଭିନ୍ନ ଲୀଳା ପ୍ରକାଶ କରି ପରେ ଲୀଳା ସମ୍ବରଣ କରିଥାନ୍ତି । ସେସବୁ ତାଙ୍କର ଅନନ୍ତ ମାୟାର ବିଳାସ ମାତ୍ର । ଭଗବାନ ସ୍ୱୟଂ ଏହି ଜଗତକୁ ସୃଷ୍ଟି କରି ତହିଁରେ ନିଜେ ପ୍ରବେଶ କରି ବିହାର କରନ୍ତି ଏବଂ ପରେ ନିଜ ସୃଷ୍ଟ ସେହି ଜଗତର ବିଲୟ ସାଧନ କରି ନିଜର ସେହି ଅନନ୍ତ ମହିମାମୟ ସ୍ୱରୂପରେ ପୂର୍ବପରି ସ୍ଥିତ ହୁଅନ୍ତି । ଯେଉଁ ଭଗବାନ ଗୁରୁଙ୍କର ମୃତ ପୁତ୍ରମାନଙ୍କୁ ଯମପୁରୀରୁ ଜୀବନ୍ତ ଫେରାଇ ଆଣିଥିଲେ, ବ୍ରହ୍ମାସ୍ତ୍ରରେ ଆପଣଙ୍କ ଶରୀର ଦଗ୍ଧୀଭୂତ ହେଉଥିବାବେଳେ ଯେଉଁ ଭଗବାନ ଆପଣଙ୍କୁ ପୁନର୍ବାର ଜୀବିତ କରି ଦେଇଥିଲେ ଏବଂ ଯେ ମହାକାଳ ରୁଦ୍ରଦେବଙ୍କୁ ମଧ୍ୟ ଯୁଦ୍ଧରେ ପରାଜିତ କରିଥିଲେ ଏବଂ ଯେ ନିଜର ଶରୀରକୁ ଶରବିଦ୍ଧ କରିଥିବା ଅପରାଧୀ ଆତତାୟୀ ଜରାଶବରକୁ ସ୍ୱଦେହରେ ସ୍ୱର୍ଗଲୋକକୁ ଯିବା ପାଇଁ ଆଶୀର୍ବାଦ ପ୍ରଦାନ କରିଥିଲେ, ସେହି ଭଗବାନ ଚାହିଁଥିଲେ ଅନନ୍ତକାଳ ପର୍ଯ୍ୟନ୍ତ ସେହି ନର ଶରୀରରେ ଏହି ମର୍ତ୍ତ୍ୟମଣ୍ଡଳରେ ଅନାୟାସରେ ଅବସ୍ଥାନ କରିପାରିଥାନ୍ତେ । ଅଖିଳ ଜଗତର ସୃଷ୍ଟି-ସ୍ଥିତି-ଲୟକର୍ତ୍ତା ଭଗବାନ ଅସୀମଶକ୍ତିର ଅଧିକାରୀ ହୋଇଥିଲେ ମଧ୍ୟ ନିଜର ଅନୁପମ ଶରୀରକୁ ଏହି ସଂସାରରେ ଆଉ ଅଧିକ କାଳ ରଖିବାକୁ ଇଚ୍ଛା କଲେ ନାହିଁ ଏବଂ ତଦ୍ଦ୍ୱାରା ଏହି ଶରୀର ଯେ କ୍ଷଣସ୍ଥାୟୀ ଓ ଦିନେ ନା ଦିନେ ଯେ ଏହାର ପ୍ରୟୋଜନୀୟତା

ଲୋପପାଇବ ଏବଂ ଚିରକାଳକୁ ଏହାକୁ ଧରି ରଖିବାକୁ କାମନା କରିବା ଯେ ଅବିମୃଶ୍ୟକାରିତା, ଏହି ତତ୍ତ୍ୱକୁ ସେ ନିଜର ସ୍ୱଧାମ ଯାତ୍ରା ଦ୍ୱାରା ଦୃଷ୍ଟାନ୍ତ ରୂପେ ରଖି ଦେଇଗଲେ ।

ଯାଦବମାନଙ୍କର ସମ୍ପୂର୍ଣ୍ଣ ବିନାଶ ତଥା ଭଗବାନ କୃଷ୍ଣ ଓ ବଳରାମଙ୍କର ଅମରଧାମ ଯାତ୍ରାର ସମ୍ବାଦ ଦ୍ୱାରକାରେ ପହଞ୍ଚିବା ମାତ୍ରେ ସମଗ୍ର ଦ୍ୱାରକା ଶୋକୋଚ୍ଛ୍ୱାସରେ ଭାଙ୍ଗିପଡ଼ିଲା ଏବଂ କୃଷ୍ଣଙ୍କର ଜ୍ଞାତି-ବନ୍ଧୁମାନେ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ପୁତ୍ରମାନଙ୍କର ନିଧନବାର୍ତ୍ତା ଶ୍ରବଣ କରି ବସୁଦେବ, ଦେବକୀ ଓ ରୋହିଣୀ ପ୍ରମୁଖଙ୍କର ମୃତ୍ୟୁ ଘଟିଲା । ପତିସଙ୍ଗ ଲାଭ କରିବା ନିମନ୍ତେ କୃଷ୍ଣ ଓ ବଳରାମଙ୍କର ବିଧବା ପତ୍ନୀ-ମାନେ ଅଗ୍ନିରେ ପ୍ରବେଶ କରି ମୃତ୍ୟୁ ବରଣ କଲେ । ଭଗବାନ କୃଷ୍ଣ ପ୍ରମୁଖଙ୍କର ତିରୋଧାନ ସମ୍ବାଦ ପାଇ ଅର୍ଜୁନ ଦ୍ୱାରକାକୁ ଯାଇ ମୃତ-ବ୍ୟକ୍ତିଙ୍କର ପ୍ରେତକାର୍ଯ୍ୟ ସମ୍ପାଦନ କଲେ ଏବଂ ଶୂନ୍ୟ ରାଜପଦରେ ଅନିରୁଦ୍ଧଙ୍କ ପୁତ୍ର ବଜ୍ରକୁ ଅଭିଷିକ୍ତ କରି ଏବଂ ସ୍ତ୍ରୀ ଲୋକ, ବୃଦ୍ଧ ଓ ଶିଶୁ-ମାନଙ୍କୁ ସଙ୍ଗରେ ନେଇ ଇନ୍ଦ୍ରପ୍ରସ୍ଥରେ ଆଶ୍ରୟ ଦେଲେ ।

କୃଷ୍ଣଙ୍କ ତିରୋଧାନ ପରେ ପରେ ସମଗ୍ର ଦ୍ୱାରକାକୁ ସମୁଦ୍ର ଗ୍ରାସ କରିଥିଲା ।

କୃଷ୍ଣଙ୍କର ତିରୋଧାନ ସମ୍ବାଦ ପାଇବା ପରେ ଆପଣଙ୍କର ପିତାମହ ଯୁଧିଷ୍ଠିର ପ୍ରମୁଖ ଆପଣଙ୍କୁ ରାଜପଦରେ ଅଭିଷିକ୍ତ କରି ରାଜ୍ୟ ତ୍ୟାଗ କରି ମହାପ୍ରସ୍ଥାନ କରିଅଛନ୍ତି । ମହାରାଜ, ମୁଁ ଆପଣଙ୍କ ନିକଟରେ ଦେବ ଦେବ ବିଷ୍ଣୁଙ୍କର ଜନ୍ମ ଓ କର୍ମାଦି ସମସ୍ତ ଲୀଳାକୁ ଆପଣଙ୍କ ଅନୁରୋଧ କ୍ରମେ ବିସ୍ତୃତ ଭାବରେ ବର୍ଣ୍ଣନା କଲି । ଯେଉଁ ବ୍ୟକ୍ତି ଭକ୍ତବତ୍ସଳ ନିଖିଳ ଜଗତର ଅଧିପତି, ସକଳ ସୌନ୍ଦର୍ଯ୍ୟନିଧି ଭଗବାନଙ୍କର ଏହି ଅବତାର ସମ୍ବନ୍ଧୀୟ ଚରିତସମ୍ବଳିତ ଭାଗବତ ପୁରାଣକୁ ଶ୍ରଦ୍ଧାର ସହିତ ପାଠ, ଶ୍ରବଣ ଓ କୀର୍ତ୍ତନ କରିବେ ଓ ଅନ୍ୟକୁ ଶୁଣାଇବେ, ସେ ନିଶ୍ଚିତ ଭାବରେ ଅଶେଷ ପୁଣ୍ୟର ଅଧିକାରୀ ହେବେ; ଏଥିରେ ସନ୍ଦେହ ନାହିଁ ।'

## ଉପସଂହାର

ନିଜ ବକ୍ତବ୍ୟର ଉପସଂହାର କରିବାକୁ ଯାଇ ଶୁକଦେବଙ୍କ କହିଲେ, 'ମହାରାଜ, ସର୍ବଶକ୍ତିମାନ ଓ ସର୍ବବ୍ୟାପକ ଭଗବାନ୍ କୃଷ୍ଣ ତାଙ୍କର ଇହଲୀଳା ସମାପ୍ତ କରି ସ୍ୱଧାମକୁ ଯାତ୍ରା କରିବା ପରେ ଧରା-ପୃଷ୍ଠରେ କଳିଯୁଗର ଅଭ୍ୟୁଦୟ ଘଟିଲା ଏବଂ ସେହି ଦିନ ଠାରୁ ଯୁଗର ପ୍ରଭାବରେ ଧୀରେ ଧୀରେ ଲୋକମାନଙ୍କ ମନ ପାପ ଆଡ଼କୁ ଗତି କରିବାକୁ ଆରମ୍ଭ କରିଅଛି । ସତ୍ୟଯୁଗରେ ଧର୍ମର ଚାରିଗୋଟି ପାଦ ଅଟୁଟ ରହିଥିଲା ଏବଂ ସେହି ପାଦଗୁଡ଼ିକ ହେଲା—ସତ୍ୟ, ଦୟା, ତପ ଓ ଦାନ । ସେତେବେଳେ ଲୋକମାନେ ପରମ ନିଷ୍ଠାର ସହିତ ଧର୍ମ ପାଳନ କରୁଥିଲେ; ସେମାନେ ଯେପରି ଦୟାଳୁ ସେହିପରି ଶାନ୍ତ, ତୃପ୍ତ, ବନ୍ଧୁ-ବତ୍ସଳ, ଜିତେନ୍ଦ୍ରିୟ, ସମଦର୍ଶୀ, ଆତ୍ମାରାମ ଏବଂ ସ୍ୱଆତ୍ମାର ଅଭ୍ୟାସରେ ସଦା ତତ୍ପର ଥିଲେ । ସତ୍ୟ ପରେ ତ୍ରେତାଯୁଗ ଆସିବାରୁ ଅଧର୍ମର ପ୍ରଭାବରେ ଧର୍ମର ଚାରିପାଦରୁ ସତ୍ୟ ରୂପକ ପାଦର ସ୍ଖଳନ ଘଟିଲା । ତ୍ରେତାଯୁଗ ପରେ ଦ୍ୱାପର ଯୁଗ ଆସିବାରୁ ଧର୍ମର ଆଉ ଏକ ପାଦର ସ୍ଖଳନ ହେଲା; କିନ୍ତୁ ଏହି କଳିଯୁଗରେ ଧର୍ମର ଚାରିପାଦ ମଧ୍ୟରୁ ଗୋଟିଏ ମାତ୍ର ପାଦ ଯୁଗର ଆରମ୍ଭରେ ପରିଦୃଷ୍ଟ ହେଉଥିଲେ ମଧ୍ୟ ଅବଶେଷରେ ସେହି ଏକମାତ୍ର ପାଦ ମଧ୍ୟ ରହିବ ନାହିଁ । ଏହି ଯୁଗରେ ଅଧର୍ମର ପ୍ରାଦୁର୍ଭାବ ଓ ପ୍ରଭାବ ଅତ୍ୟନ୍ତ ବୃଦ୍ଧି ପାଇବ ଏବଂ ଧୀରେ ଧୀରେ ଲୋକମାନେ ଲୋଭୀ, ଦୁରାଚାରୀ, ନିର୍ଦ୍ଦୟ, କଳହପ୍ରିୟ, କାମାସକ୍ତ, କାମପରତନ୍ତ୍ର ଏବଂ ହତଭାଗ୍ୟ ହେବେ । ସ୍ତ୍ରୀଲୋକମାନେ ବ୍ୟଭିଚାରିଣୀ ଓ ଖର୍ବାଙ୍ଗୀ ହେବା ସଙ୍ଗେ ସଙ୍ଗେ ବହୁ ଆହାରିଣୀ, ବହୁ ସନ୍ତାନର ଜନନୀ ହେବେ ଏବଂ ସେମାନଙ୍କର ଆଚରଣରେ ଚୌର୍ଯ୍ୟ, କପଟତା ଓ ନିର୍ଲ୍ଲଜତା ପ୍ରକାଶ ପାଇବ । ଏହି ଯୁଗରେ ଦସ୍ୟୁମାନଙ୍କର ପ୍ରାଦୁର୍ଭାବ ଦିନକୁ ଦିନ ବୃଦ୍ଧି ପାଇବ, ଶାସକମାନେ ପ୍ରଜାମାନଙ୍କୁ ଶୋଷଣ କରିବେ, ମୂର୍ଖ ପାଷଣ୍ଡମାନେ ବେଦର ପ୍ରବକ୍ତା ସାଜି ବେଦଶାସ୍ତ୍ରର ଅମର୍ଯ୍ୟାଦା ଘଟାଇବେ, ବ୍ରହ୍ମଚାରୀଙ୍କ ଠାରେ ନିଷ୍ଠା ଓ ଆଦର୍ଶ ପରିଦୃଷ୍ଟ ହେବ ନାହିଁ, ବ୍ୟବସାୟୀମାନେ ନୀଚ ବୁଦ୍ଧି ସମ୍ପନ୍ନ ହେବେ, ପୁରୁଷ-ମାନେ ଲମ୍ପଟ ଓ ସ୍ତ୍ରୈଣ ହେବା ସଙ୍ଗେ ସଙ୍ଗେ ପିତାମାତା ଓ ଭାଇ ବନ୍ଧୁମାନଙ୍କୁ ଉପେକ୍ଷା କରି ସ୍ତ୍ରୀ, ଶ୍ୟାଳକ ଓ ଶ୍ୟାଳିକାଙ୍କ କଥାରେ

ପରିଣ୍ଟଳିତ ହେବେ, ପ୍ରଜାମାନେ ଅତ୍ୟନ୍ତ ଭୟଭୀତ ଓ ଉଦ୍‌ବିଗ୍ନ ଅବସ୍ଥାରେ କାଳାତିପାତ କରିବେ ଏବଂ ଉଦର ପୂରଣ କରିବାପାଇଁ ଆବଶ୍ୟକୀୟ ଅନ୍ନସଂସ୍ଥାନ କରିବା ସେମାନଙ୍କ ପକ୍ଷରେ କଷ୍ଟକର ହୋଇ ପଡ଼ିବ । ଏହି ଯୁଗରେ ଲୋକମାନେ ଏତେ ସ୍ୱାର୍ଥପର ହେବେ ଯେ ନିଜର ବୃଦ୍ଧ ପିତାମାତାଙ୍କର ମଧ୍ୟ ଭରଣପୋଷଣ କରିବାକୁ କୁଣ୍ଠା ବୋଧ କରିବେ; ଅନ୍ୟପକ୍ଷରେ ପିତାମାତାମାନେ ମଧ୍ୟ ନିଜର ସୁଯୋଗ୍ୟ ପୁତ୍ରମାନଙ୍କୁ ଚାହିଁବେ ନାହିଁ, ସେମାନଙ୍କଠାରୁ ଅଲଗା ରହିବେ । ଲୋକମାନେ ଭଗବାନଙ୍କ ପୂଜାରାଧନା ପ୍ରତି ବିମୁଖ ହେବେ; ଅଥଚ ଭଗବାନଙ୍କର ନାମ ଥରେ ମାତ୍ର ନେଲେ ଲୋକମାନେ ସମସ୍ତ କର୍ମବନ୍ଧନ ଛିନ୍ନ ହେବା ସଙ୍ଗେ ସଙ୍ଗେ ଉତ୍ତମ ଗତି ପ୍ରାପ୍ତ ହୁଅନ୍ତି । ଏହି କଳିଯୁଗର ବହୁଦୋଷ ରହିଛି ଏବଂ ସେସବୁ ଦୋଷର ମୂଳ ହେଉଛି ବ୍ୟକ୍ତିର ଅନ୍ତଃକରଣ । ଭଗବାନ ପୁରୁଷୋତ୍ତମ ଯେତେବେଳେ ମନୁଷ୍ୟର ଅନ୍ତଃକରଣରେ ବିରାଜିତ ହୁଅନ୍ତି ସେତେବେଳେ ତା'ର ସମୁଦାୟ ପାପ ଅଚିରେ ଦୂରୀଭୂତ ହୋଇଥାଏ । ଭଗବାନଙ୍କ ରୂପ, ଗୁଣ, ଲୀଳା ଓ ଧାମ ଆଦିକୁ ଶ୍ରବଣ, ସଂକୀର୍ତ୍ତନ, ଧ୍ୟାନ ଓ ପୂଜନ ଆଦି ନିୟମିତ କଲେ, ମନୁଷ୍ୟଙ୍କ ହୃଦୟରେ ଭଗବାନ ବିରାଜିତ ହୋଇ ଥାନ୍ତି ଏବଂ ତଦ୍ୱାରା, ପୂର୍ବ ଜନ୍ମର ପାପ ତ ସାମାନ୍ୟ କଥା, ସହସ୍ର ଜନ୍ମର ସକଳ ପାପ କ୍ଷଣକ ମଧ୍ୟରେ ଭସ୍ମୀଭୂତ ହୋଇଥାଏ । ଅଗ୍ନିର ସଂସ୍ପର୍ଶରେ ଆସିଲେ ସୁବର୍ଣ୍ଣର ସକଳ ଦୋଷ ଯେପରି ଦୂରୀଭୂତ ହୋଇ ଥାଏ, ସେହିପରି ମନୁଷ୍ୟ ହୃଦୟରେ ଭଗବାନ ବିରାଜିତ ହେଲେ ମନୁଷ୍ୟ ହୃଦୟର ସମସ୍ତ କଳୁଷତା ମଳିନତାକୁ ଚିରକାଳ ପାଇଁ ସେ ଦୂର କରି ଦିଅନ୍ତି । ଜ୍ଞାନ, ତପସ୍ୟା, ପ୍ରାଣାୟାମ, ସମଦୃଷ୍ଟି, ତୀର୍ଥସ୍ନାନ ଭ୍ରମଣ, ବ୍ରତପାଳନ ଓ ଦାନାଦି କରିବା ଦ୍ୱାରା ଯାହା ନ ହୁଏ ଭଗବାନ ହୃଦୟରେ ବିରାଜିତ ହେଲେ ଜୀବ ପକ୍ଷରେ ସେ ସବୁ ଅନାୟାସରେ ଲବ୍‌ଧ ହୋଇଥାଏ ।'

'ମହାରାଜ, ଆପଣଙ୍କର ଅନ୍ତିମକାଳ ସନ୍ନିକଟ ହୋଇଅଛି । ଆପଣ ସାବଧାନତା ଅବଲମ୍ବନ କରି ଏକାଗ୍ର ଚିତ୍ତରେ ଭଗବାନ କୃଷ୍ଣଙ୍କୁ ନିଜର ହୃଦୟ ସିଂହାସନରେ ଅଧିଷ୍ଠିତ କରାନ୍ତୁ; ତଦ୍ୱାରା ଆପଣ ପରମଗତି ଲାଭ କରିବେ । ଯେଉଁ ବ୍ୟକ୍ତିର ମୃତ୍ୟୁ ନିକଟବର୍ତ୍ତୀ ହୋଇଅଛି

ତା'ପକ୍ଷରେ ପରମ ଐଶ୍ୱର୍ଯ୍ୟଶାଳୀ ଭଗବାନଙ୍କୁ ଏକାଗ୍ର ଚିତ୍ତରେ ଧ୍ୟାନ କରିବା ହିଁ ପରମ କର୍ତ୍ତବ୍ୟ । ପ୍ରିୟ ମହାରାଜ, ତଦ୍ଦ୍ୱାରା ସର୍ବାତ୍ମା ଭଗବାନ ଧ୍ୟାନକାରୀଙ୍କୁ ନିଜର ସ୍ୱରୂପରେ ଲୀନ କରି ଦିଅନ୍ତି । ଏହି କଳିଯୁଗରେ ଏତେ ଦୁର୍ଗୁଣ ଥିଲେ ମଧ୍ୟ ତା'ର ଗୋଟିଏ ପ୍ରଧାନ ଗୁଣ ହେଉଛି ଯେ, ଏହି ଯୁଗରେ ଭଗବାନ କୃଷ୍ଣଙ୍କର କେବଳ ନାମ ସଂକୀର୍ତ୍ତନ କରିବା ମାତ୍ରେ ମନୁଷ୍ୟର ସକଳ କାମନା ବାସନା ସଙ୍ଗେ ସଙ୍ଗେ ନଷ୍ଟ ହୋଇଯାଏ ଏବଂ ସେ ପରମଗତି ଲାଭ କରିବାର ସୌଭାଗ୍ୟ ଅର୍ଜନ କରେ । ସତ୍ୟ-ଯୁଗରେ ଭଗବାନଙ୍କର ଧ୍ୟାନ କରିବା ଦ୍ୱାରା, ତ୍ରେତାଯୁଗରେ ଯଜ୍ଞ କରିବାଦ୍ୱାରା ଏବଂ ଦ୍ୱାପର ଯୁଗରେ ଭଗବାନଙ୍କର ବିଧି ଅନୁସାରେ ପୂଜା କରିବା ଦ୍ୱାରା ମନୁଷ୍ୟକୁ ଯେଉଁସବୁ ଫଳ ମିଳେ, ଏହି କଳି ଯୁଗରେ କେବଳ ଭଗବାନଙ୍କର ନାମ କୀର୍ତ୍ତନ କରିବା ଦ୍ୱାରା ସେହି ସବୁ ଫଳ ଅଚିରେ ମିଳିଥାଏ ।'

'ପ୍ରିୟ ମହାରାଜ, ଏହି 'ଭାଗବତ' ମହାପୁରାଣର ଛନ୍ଦେ ଛନ୍ଦେ ଭଗବାନ ଶ୍ରୀହରିଙ୍କର ସଂକୀର୍ତ୍ତନ ହିଁ କରାଯାଇଅଛି । ବ୍ରହ୍ମା ଓ ଶିବ ଭଗବାନ ଶ୍ରୀହରିଙ୍କଠାରୁ ଭିନ୍ନ ନୁହନ୍ତି । ସେମାନେ ଭଗବାନ ଶ୍ରୀହରି-ଙ୍କର ଯଥାକ୍ରମେ ପ୍ରସାଦଲୀଳା ଓ କ୍ରୋଧଲୀଳାର ଅଭିବ୍ୟକ୍ତି ମାତ୍ର । ନିଜର ମୃତ୍ୟୁଚିନ୍ତା ମନୁଷ୍ୟକୁ ଅବିବେକୀ କରିଦିଏ; ତେଣୁ ଆପଣ ନିଜ ମନରୁ ସେହି ମୃତ୍ୟୁଚିନ୍ତାକୁ ଦୂର କରିଦିଅନ୍ତୁ । ଶରୀର ଓ ଆତ୍ମା ଏକ ନୁହେଁ । ଏହି ଶରୀର ଆଗେ ନ ଥିଲା, ପରେ ସୃଷ୍ଟି ହେଲା ଏବଂ ପୁଣି ତାହା ଦିନେ ବିନାଶପ୍ରାପ୍ତ ହେବ; କିନ୍ତୁ ଆତ୍ମା ନିତ୍ୟ, ଅଜନ୍ମା ଓ ଅବିନାଶୀ । ଆପଣ ନିଜର ମନକୁ ଭଗବତ୍ ଚିନ୍ତାରେ ପରିପୂର୍ଣ୍ଣ କରିଦିଅନ୍ତୁ ଏବଂ ଅନ୍ତର ମଧ୍ୟରେ ପରମାତ୍ମାଙ୍କୁ ସାକ୍ଷାତ କରନ୍ତୁ । ଦେଖନ୍ତୁ, ଆପଣ ମୃତ୍ୟୁକୁ ମଧ୍ୟ ଜୟ କରିଅଛନ୍ତି, ଆପଣ ଈଶ୍ୱରଙ୍କ ଏକୀଭୂତ ହୋଇଅଛନ୍ତି ଏବଂ ବ୍ରହ୍ମଶାପ ପ୍ରେରିତ ତକ୍ଷକର କଥା ଦୂରେ ଥାଉ, ସ୍ୱୟଂ ମୃତ୍ୟୁ ମଧ୍ୟ ଆପଣଙ୍କର କୌଣସି ଅନିଷ୍ଟ କରିବାକୁ କ୍ଷମ ହେବ ନାହିଁ । ପ୍ରିୟ ମହାରାଜ, ଆପଣ ଯେଉଁ ପ୍ରଶ୍ନ ଉତ୍ଥାପନ କରିଥିଲେ ଓ ଯାହାସବୁ ଶୁଣିବାକୁ ଚାହିଁଥିଲେ ମୁଁ ତା'ର ଯଥାଯଥ ଉତ୍ତର ପ୍ରଦାନ କଲି । ମୋର ବିଶ୍ୱାସ, ଆପଣଙ୍କ ମନର ସମସ୍ତ ସନ୍ଦେହ ଓ କୌତୂହଳ ବର୍ତ୍ତମାନ ଅପନୋଦିତ ହୋଇଅଛି ।'

ଶୁକଦେବଙ୍କ କଥିତ ସମସ୍ତ ବିଷୟ ମହାରାଜ ପରୀକ୍ଷିତ ଅତ୍ୟନ୍ତ ଏକାଗ୍ରତାର ସହିତ ଶ୍ରବଣ କରୁଥିଲେ । ପରିଶେଷରେ ଶୁକଦେବ ତାଙ୍କର ବକ୍ତବ୍ୟ ସମାପ୍ତ କରିବାରୁ ମହାରାଜ ପରୀକ୍ଷିତ କୃତାଞ୍ଜଳିପୂର୍ବ ହୋଇ ବିନୀତ ଭାବରେ ଶୁକଦେବଙ୍କୁ କହିଲେ, 'ଭଗବାନ, ଆପଣ କରୁଣାର ମୂର୍ତ୍ତିମନ୍ତ ରୂପ । ଆପଣ ମୋ ପରି ହତଭାଗ୍ୟ ପ୍ରତି ଅଶେଷ କରୁଣା ପ୍ରକାଶ କରି ଭଗବାନ ଶ୍ରୀହରିଙ୍କର ଲୀଳା ଆଦି ସମ୍ପର୍କରେ ସମସ୍ତ କଥା ବିସ୍ତୃତ ଭାବରେ ପ୍ରକାଶ କରି ମୋତେ ଅନୁଗୃହୀତ କରି-ଅଛନ୍ତି । ସଂସାରରେ ପ୍ରାଣୀମାନେ ସ୍ୱାର୍ଥସର୍ବସ୍ୱ ହୋଇ ଭଗବାନଙ୍କ ସମ୍ପର୍କରେ ଆବଶ୍ୟକୀୟ ଜ୍ଞାନଲାଭ କରୁ ନ ଥିବାରୁ ଅନନ୍ତ ଦୁଃଖ ମଧ୍ୟରେ କାଳାତିପାତ କରିଥାନ୍ତି । ସେମାନଙ୍କ ପ୍ରତି ଭଗବତ୍ କୃପା ପ୍ରକାଶିତ ହେବା ଏକାନ୍ତ କାମ୍ୟ । ଏଠାରେ ସମବେତ ଥିବା ବ୍ୟକ୍ତିମାନଙ୍କ ସହିତ ମୁଁ ଆପଣଙ୍କ ମୁଖାରବିନ୍ଦରୁ ଏହି ଶ୍ରୀମଦ୍ ଭାଗବତ ମହାପୁରାଣ ଶ୍ରବଣ କରିବାର ଅପୂର୍ବ ସୌଭାଗ୍ୟ ଲାଭ କରିଅଛି । ଏହି ପବିତ୍ର ଭାଗବତ ମଧ୍ୟରେ ଭଗବାନଙ୍କର ସ୍ୱରୂପ ଓ ଲୀଳାର ବିସ୍ତୃତ ବର୍ଣ୍ଣନା ରହିଅଛି, ଯାହାକୁ ଗାନକଲେ ମନୁଷ୍ୟର ମନ ଅନନ୍ତ ଆନନ୍ଦରେ ତନ୍ମୟ ହୋଇଉଠେ । ହେ ମୁନିଶ୍ରେଷ୍ଠ, ଆପଣ ମୋ ପ୍ରତି ସଦୟ ହୋଇ ମୋତେ ଅଭୟଦାନ କରିବା ସଙ୍ଗେ ସଙ୍ଗେ ବ୍ରହ୍ମ ଓ ଆତ୍ମାର ସ୍ୱରୂପ ସହିତ ବାସ୍ତବିକ ସାକ୍ଷାତ କରାଇ ଦେଇଅଛନ୍ତି, ଯାହା ଫଳରେ ମୁଁ ଆଜି ପରମ ଶାନ୍ତ ସ୍ୱରୂପ ବ୍ରହ୍ମରେ ସ୍ଥିତ ହୋଇଅଛି । ତକ୍ଷକ କିମ୍ବା ମୃତ୍ୟୁ ପ୍ରତି ମୋ ମନରେ ସାମାନ୍ୟତମ ଭୟ ନାହିଁ । ଆପଣଙ୍କ କୃପାରୁ ମୁଁ ଆଜି ଅଭୟପଦ ଲାଭ କରିଅଛି । ହେ ମହାଯୋଗି, ମୋତେ ଦୟାକରି ଅନୁମତି ପ୍ରଦାନ କରନ୍ତୁ, ଯେପରି ମୁଁ ବାକ୍ୟାଳାପ ବନ୍ଦ କରି ମୌନବ୍ରତ ଅବଲମ୍ବନ କରେ ଏବଂ ମୋର ଚିତ୍ତକୁ ଇନ୍ଦ୍ରିୟାତୀତ ପରମାତ୍ମାଙ୍କ ସ୍ୱରୂପରେ ବିଲୀନ କରିଦେଇ ପ୍ରାଣତ୍ୟାଗ କରେ । ଆପଣଙ୍କଠାରୁ ଅମୂଲ୍ୟ ଉପଦେଶମାନ ଲାଭ କରିବା ଫଳରେ ମୋ ମନରୁ ସମସ୍ତ ମୋହ ଓ ଅଜ୍ଞାନତା ଦୂର ହୋଇଅଛି । ଆପଣ ଏହି ପରମକଲ୍ୟାଣକର ବକ୍ତବ୍ୟ ମାଧ୍ୟମରେ ମଙ୍ଗଳମୟ ଭଗବାନଙ୍କର ପରମ ଆନନ୍ଦମୟ ସ୍ୱରୂପ ସହିତ ମୋତେ ସାକ୍ଷାତ କରାଇ ଦେଇଥିବାରୁ ମୁଁ ଆପଣଙ୍କ ନିକଟରେ ମୋର ଗଭୀର କୃତଜ୍ଞତା ଅର୍ପଣ କରୁଅଛି । ଆପଣଙ୍କର ଆଶୀର୍ବାଦ ଲାଭ କଲେ ମୁଁ ନିଜକୁ କୃତାର୍ଥ ମନେ କରିବି ।'

ଏହା କହି ମହାରାଜ ପରୀକ୍ଷିତ ଅତ୍ୟନ୍ତ ଶ୍ରଦ୍ଧାର ସହିତ ଶୁକଦେବଙ୍କର ସେବା ପୂଜା କଲେ ଏବଂ ସମବେତ ଯୋଗୀଋଷିମାନଙ୍କୁ ପ୍ରଣାମ ଜଣାଇଲେ । ପରୀକ୍ଷିତଙ୍କଠାରୁ ବିଦାୟ ନେଇ ସମାଗତ ମହାତ୍ମା, ଯୋଗୀ ଓ ସନ୍ଥଙ୍କ ଗହଣରେ ଶୁକଦେବ ସେଠାରୁ ପ୍ରସ୍ଥାନ କଲା ପରେ ମହାରାଜ ପରୀକ୍ଷିତ ଧ୍ୟାନରେ ଉପବେଶନ କରି ନିଜର ଶ୍ୱାସକ୍ରିୟା ପର୍ଯ୍ୟନ୍ତ ରୁଦ୍ଧ କରି ଦେଇ ନିଜର ଆତ୍ମାକୁ ପରମାତ୍ମାଙ୍କ ସହିତ ସଂଯୁକ୍ତ କରିଦେଲେ ଏବଂ ନିଶ୍ଚଳ କାଷ୍ଠ ମୂର୍ତ୍ତି ପରି ଉପବେଶନ କରି ରହିଲେ । ସେହି ଧ୍ୟାନସ୍ଥ ଅବସ୍ଥାରେ ତାଙ୍କର ଆତ୍ମା ବ୍ରହ୍ମ ସ୍ୱରୂପରେ ଏକୀଭୂତ ହୋଇଗଲା ।

ବ୍ରହ୍ମ ଅଭିଶାପକୁ ସଫଳ କରିବା ନିମନ୍ତେ ପ୍ରେରିତ ତକ୍ଷକ ସର୍ପ ଏକ ବ୍ରାହ୍ମଣର ଛଦ୍ମବେଶ ଧାରଣ କରି ମହାରାଜ ପରୀକ୍ଷିତଙ୍କ ନିକଟରେ ଉପସ୍ଥିତ ଥିଲା । ମହାରାଜ ପରୀକ୍ଷିତଙ୍କୁ ବ୍ରହ୍ମପଦରେ ସ୍ଥିତ ହୋଇଥିବାର ଲକ୍ଷ୍ୟ କରି ତକ୍ଷକ ନିଜର ବିକଟ ରୂପ ଧାରଣ କରି ତାଙ୍କୁ ଦଂଶନ କଲା; ଫଳରେ ସ୍ତବ୍ଧ ସ୍ତବ୍ଧ ପରୀକ୍ଷିତଙ୍କର ଧ୍ୟାନମଗ୍ନ ନିଶ୍ଚଳ ଶରୀର ତକ୍ଷକର ବିଷଜ୍ୱାଳାର ତୀବ୍ରତାରେ ଭସ୍ମୀଭୂତ ହୋଇଗଲା ।

ସର୍ପାଘାତ ଓ ତା'ର ଶୋଚନୀୟ ପରିଣତି ଲକ୍ଷ୍ୟ କରି ସମବେତ ବ୍ୟକ୍ତିମାନଙ୍କର ହାହାକାରରେ ଚତୁର୍ଦ୍ଦିଗ କମ୍ପିଉଠିଲା । ମହାରାଜ ପରୀକ୍ଷିତଙ୍କର ପରମଗତି ଲାଭରେ ଆକାଶରେ ଦେବଦୁନ୍ଦୁଭି ବାଜି ଉଠିଲା । ଦେବତାମାନେ ମହାରାଜ ପରୀକ୍ଷିତଙ୍କର ଯଶଗାନ କରି କରି ଆକାଶରୁ କୁସୁମ ବୃଷ୍ଟି କରିବାକୁ ଲାଗିଲେ ।

ଦୈନନ୍ଦିନ ବ୍ୟବହାରର ଏକ ଆକସ୍ମିକ ଓ ସାମାନ୍ୟ ତ୍ରୁଟି ପାଇଁ ଗୋଟିଏ ସୁମହତ୍ ଜୀବନକୁ କପରି ଶାସ୍ତି ଓ ପରିଣତି ଲାଭ କରିବାକୁ ପଡ଼ିଲା, ସେ ସମ୍ପର୍କରେ ଧର୍ମ ପ୍ରାଣ ପରୀକ୍ଷିତଙ୍କର ଜୀବନ କାଳକାଳକୁ ଏକ ସୁନ୍ଦର ଓ ଅବିସ୍ମରଣୀୟ ଦୃଷ୍ଟାନ୍ତ ହୋଇ ରହିଗଲା ।

● ●

# ପ୍ରାସଙ୍ଗିକ ସୂଚନା

ଅକ୍ରୂର—ଯଦୁବଂଶରେ ତାଙ୍କର ଜନ୍ମ । ତାଙ୍କ ପିତାଙ୍କର ନାମ ଶ୍ୱଫଲ୍କ ଓ ମାତାଙ୍କର ନାମ ଗାନ୍ଧିନୀ । ସେ କୃଷ୍ଣଙ୍କର ପିତୃବ୍ୟ । ଉଗ୍ରସେନଙ୍କର ଏକ କନ୍ୟାକୁ ସେ ବିବାହ କରିଥିଲେ ।

ଅଗ୍ନି—ଅଗ୍ରଗଣ୍ୟ ଦେବତାମାନଙ୍କ ମଧ୍ୟରେ ସେ ଅନ୍ୟତମ । ବ୍ରହ୍ମାଙ୍କ ଔରସରେ ବସୁପତ୍ନୀଙ୍କ ଗର୍ଭରୁ ତାଙ୍କର ଜନ୍ମ । ଅନଳ, ପାବକ, ହୁତାଶନ, ବୈଶ୍ୱାନର ଏବଂ ବହ୍ନି ଆଦି ବହୁନାମରେ ସେ ପରିଚିତ ।

ଅଗ୍ନିଧ୍ର—ଜମ୍ବୁ ଦ୍ୱୀପର ଜନୈକ ରାଜା । ରାଜର୍ଷି ପ୍ରିୟବ୍ରତଙ୍କର ସେ ଜ୍ୟେଷ୍ଠପୁତ୍ର ।

ଅଘାସୁର—କଂସର ଜନୈକ ସେନାପତି । ବକାସୁର ଓ ରାକ୍ଷସୀ ପୂତନାର ସେ କନିଷ୍ଠ ଭ୍ରାତା । କୃଷ୍ଣ ପ୍ରମୁଖଙ୍କୁ ବିନାଶ କରିବା ନିମନ୍ତେ ଆସୁରି-ମାୟାକୁ ଆଶ୍ରୟ କରି ସେ ଏକ ବିଶାଳକାୟ ଅଜଗର ସର୍ପରୂପ ଧାରଣ କରିଥିଲା ଏବଂ ସେହି ଅବସ୍ଥାରେ ସେ କୃଷ୍ଣଙ୍କ ହସ୍ତରେ ମୃତ୍ୟୁ ବରଣ କରେ ।

ଅଚ୍ୟୁତ—ସ୍ୱସ୍ଥାନରୁ ଯାହାଙ୍କର କେବେ ଚ୍ୟୁତି ବା ପତନ ଘଟେ ନାହିଁ, ସେହି ଭଗବାନ ବିଷ୍ଣୁଙ୍କର ଏକ ନାମ ।

ଅଦିତି—ଦେବମାତା । ସେ ଦକ୍ଷପ୍ରଜାପତିଙ୍କର କନ୍ୟା ଓ ମହର୍ଷି କଶ୍ୟପଙ୍କର ପତ୍ନୀ । ତାଙ୍କ ଗର୍ଭରୁ ଭଗବାନ ବିଷ୍ଣୁ ବାମନ ରୂପରେ ଜନ୍ମ ହୋଇଥିଲେ । ପରଜନ୍ମରେ ଦେବକୀ ରୂପରେ ସେ ଜାତ ହୋଇ ଭଗବାନ କୃଷ୍ଣଙ୍କର ଜନନୀ ହୋଇଥିଲେ ।

ଅନନ୍ତ—ଶେଷନାଗ । ନାଗମାନଙ୍କ ମଧ୍ୟରେ ସେ ପ୍ରଧାନ । ସେ ନିଜର ମସ୍ତକରେ ପୃଥିବୀକୁ ଧାରଣ କରିଅଛନ୍ତି । ପ୍ରଳୟ ପରେ ଭଗବାନ ନାରାୟଣ ପତ୍ନୀ ଲକ୍ଷ୍ମୀଙ୍କ ସହିତ ଅନନ୍ତ ନାଗ ଉପରେ ଶୟନ କରିଥାନ୍ତି । ସେ ଅବତାର ଗ୍ରହଣକରି ବଳରାମ ରୂପରେ ଜନ୍ମ ହୋଇଥିଲେ ।

ଅପ୍‌ସରା—ସାଗର-ମନ୍ଥନ ସମୟରେ ଅପ୍ ଅର୍ଥାତ୍ ଜଳରୁ ଯେଉଁ ପରମା ସୁନ୍ଦରୀ ରମଣୀମାନେ ସୃଷ୍ଟ ହୋଇଥିଲେ ସେମାନେ ଅପ୍‌ସରା ନାମରେ ପରିଚିତ । ସେମାନେ ନୃତ୍ୟଗୀତରେ ଅତ୍ୟନ୍ତ ନିପୁଣା ଓ ସ୍ୱର୍ଗଲୋକର ସ୍ୱାଧୀନା ନାରୀ । ପୁରାଣମାନଙ୍କରେ ସେମାନଙ୍କ ଅପରୂପ ସୌନ୍ଦର୍ଯ୍ୟ ଓ ଚିତ୍ତଉଲ୍ଲାସକରି ନୃତ୍ୟ ତଥା ଯୌନ ଆବେଦନ ଆଦି କଥାର ବର୍ଣ୍ଣନା ବିଶେଷତଃ ଦେଖିବାକୁ ମିଳିଥାଏ ।

ଅବତାର—ବିଭିନ୍ନ ସମୟରେ ଦେବକାର୍ଯ୍ୟ ସମ୍ପାଦନା କରିବା ନିମନ୍ତେ ଭଗବାନ ଭିନ୍ନଭିନ୍ନ ରୂପ ଧାରଣ କରି ପୃଥିବୀପୃଷ୍ଠରେ ଅବତରଣ କରିଥାନ୍ତି, ସେହି ଅବତରଣକାଳୀନ ରୂପ ଓ ଲୀଳାକୁ ଅବତାର ବୋଲି କୁହାଯାଇଥାଏ । କୃଷ୍ଣଙ୍କୁ ଭଗବାନ ବିଷ୍ଣୁଙ୍କର ପୂର୍ଣ୍ଣ ଅବତାର ବୋଲି ସ୍ୱୀକାର କରାଯାଇଅଛି ।

ଅଭିମନ୍ୟୁ— ମଧ୍ୟମ ପାଣ୍ଡବ ଅର୍ଜୁନଙ୍କର ଔରସରେ କୃଷ୍ଣଙ୍କର ଭଗିନୀ ସୁଭଦ୍ରାଙ୍କ ଗର୍ଭରୁ ସେ ଜାତ ହୋଇଥିଲେ । ତାଙ୍କ ପୁତ୍ରର ନାମ ପରୀକ୍ଷିତ ।

ଅମ୍ବରୀଷ—ସୂର୍ଯ୍ୟବଂଶର ଜନୈକ ରାଜା । ସେ ପରମ ବିଷ୍ଣୁଭକ୍ତ ଥିଲେ । ତାଙ୍କ ପିତାଙ୍କର ନାମ ନାଭାଗ । ମନୁ ତାଙ୍କର ପିତାମହ ।

ଅମୃତ—ସମୁଦ୍ର-ମନ୍ଥନରୁ ପ୍ରସୂତ ହୋଇଥିବା ଏକ ପ୍ରକାରର ଦିବ୍ୟ-ପାନୀୟ । ତାହା ସେବନ କଲେ ସେବନକାରୀ ଅଜର, ଅମର ଏବଂ ନୀରୋଗୀ ହୋଇଥାଏ ।

ଇନ୍ଦ୍ରିୟ—ବାକ୍, ପାଣି, ପାଦ, ପାୟୁ, ଉପସ୍ଥ ଆଦି ପାଞ୍ଚଗୋଟିକୁ କର୍ମେନ୍ଦ୍ରିୟ ଏବଂ ଚକ୍ଷୁ, କର୍ଣ୍ଣ, ନାସା ଜିହ୍ୱା ଏବଂ ତ୍ୱକ୍ ଆଦି ପାଞ୍ଚଗୋଟିକୁ ଜ୍ଞାନେନ୍ଦ୍ରିୟ ବୋଲି କୁହାଯାଇଅଛି ।

ଉଗ୍ରସେନ—ଯଦୁବଂଶୀୟ ରାଜା । କଂସ ତାଙ୍କର ଜ୍ୟେଷ୍ଠପୁତ୍ର ।

ଉଦ୍ଧବ— ଯଦୁବଂଶରେ ତାଙ୍କର ଜନ୍ମ । ସେ କୃଷ୍ଣଙ୍କର ସଖା ଓ ପରମ ଭକ୍ତମାନଙ୍କ ମଧ୍ୟରେ ଅନ୍ୟତମ । ତାଙ୍କ ପିତାଙ୍କର ନାମ ସତ୍ୟକ । ବୀର ସାତ୍ୟକି ତାଙ୍କର ସହୋଦର ଭ୍ରାତା ।

ଋତ୍ୱିକ— ଯଜ୍ଞକାର୍ଯ୍ୟରେ ନିଯୋଜିତ ସହଯୋଗୀ ପୁରୋହିତ ।

ଓଁ—ବେଦମନ୍ତ୍ରର ସନାତନ ବୀଜ । ସୃଷ୍ଟିର ମୂଳ ତ୍ରିଶକ୍ତି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର, ସେମାନଙ୍କୁ ଭିତ୍ତିକରି ଅ (ବିଷ୍ଣୁ)+ଉ(ମହେଶ୍ୱର) +ମ (ବ୍ରହ୍ମା)ର ସମଷ୍ଟିରେ ଏହି ଅନୁପମ ଶବ୍ଦବ୍ରହ୍ମର ସୃଷ୍ଟି । ପ୍ରତ୍ୟେକ ପୂଜାର୍ଚ୍ଚନା ଓ ପ୍ରାର୍ଥନାର ପ୍ରାରମ୍ଭରେ ଏହି କଲ୍ୟାଣପ୍ରଦ ଶବ୍ଦ ଉଚ୍ଚାରିତ ହୋଇଥାଏ ।

କଳି—ଯୁଗପ୍ରବର୍ତ୍ତକ ଦେବତା ଏବଂ ତାଙ୍କ ନାମାନୁସାରେ ଏହି ଯୁଗର ନାମ କଳିଯୁଗ ହୋଇଅଛି । ଦ୍ୱାପର ଯୁଗର ଅବସାନ ପରେ ଭଗବାନ ବ୍ରହ୍ମାଙ୍କ ପୃଷ୍ଠଦେଶରୁ ଅଧର୍ମର ସୃଷ୍ଟି ଘଟେ । ଅଧର୍ମର ସ୍ତ୍ରୀର ନାମ ମିଥ୍ୟା । ମିଥ୍ୟାର ଗର୍ଭରୁ ଅଧର୍ମର ଔରସରେ ଦମ୍ଭ ନାମକ ଏକ ପୁତ୍ର ଓ ମାୟା ନାମକ ଏକ କନ୍ୟାର ଜନ୍ମ ଘଟେ । ଦମ୍ଭ ନିଜର ସହୋଦରା ଭଗିନୀ ମାୟାକୁ ବିବାହ କରେ ଏବଂ ସେମାନଙ୍କ ମିଳନରେ ଯେଉଁ ପୁତ୍ର ଓ କନ୍ୟା ଦୁଇଟିଙ୍କର ଜନ୍ମ ଘଟେ ସେମାନଙ୍କର ନାମ ଯଥାକ୍ରମେ ଲୋଭ ଓ ନିବୃତ୍ତି । ଲୋଭ ମଧ୍ୟ ନିଜର ଭଗିନୀ ନିବୃତ୍ତିକୁ ବିବାହ କରି କ୍ରୋଧ ନାମକ ଏକ ପୁତ୍ର ଓ ହିଂସା ନାମରେ ଏକ କନ୍ୟା ଲାଭ କରେ । କ୍ରୋଧ ନିଜର ଭଗିନୀ ହିଂସାକୁ ବିବାହ କରି ତା' ଗର୍ଭରୁ ଯେଉଁ ପୁତ୍ରସନ୍ତାନ ଲାଭ କଲେ ତାଙ୍କର ନାମ କଳି । ସେଥିପାଇଁ କଳି-ଯୁଗରେ ଅଧର୍ମ, ମିଥ୍ୟା, ଦମ୍ଭ, ମାୟା, ଲୋଭ, ନିବୃତ୍ତି, କ୍ରୋଧ ଓ ହିଂସା ଆଦିର ପ୍ରାଦୁର୍ଭାବ ଘଟିଥାଏ ।

କଶ୍ୟପ—ଜନୈକ ପ୍ରଜାପତି ଓ ଋଷି । ସେ ଦେବ ଓ ଦୈତ୍ୟ ପ୍ରମୁଖଙ୍କର ଜନକ । ତାଙ୍କ ପିତାଙ୍କ ନାମ ମରୀଚି ଓ ମାତାଙ୍କ ନାମ କଳା । ଦକ୍ଷ ପ୍ରଜାପତିଙ୍କର ଅଦିତି ପ୍ରମୁଖ ତେରୋଟି କନ୍ୟାଙ୍କୁ ସେ ବିବାହ କରିଥିଲେ । ସେ ପୂର୍ବଜନ୍ମରେ ସୁତପା ନାମଧେୟ ପ୍ରଜାପତି ଥିଲେ ଏବଂ ପରଜନ୍ମରେ ବସୁଦେବ ରୂପରେ ଜନ୍ମ ହୋଇଥିଲେ । କଠୋର ତପସ୍ୟାରେ ଭଗବାନ ବିଷ୍ଣୁଙ୍କୁ ସନ୍ତୁଷ୍ଟ କରି ଭଗବାନ ବିଷ୍ଣୁଙ୍କୁ ପୁତ୍ର ରୂପରେ ଲାଭ କରିବାକୁ କାମନା କରିଥିଲେ, ସେଥିପାଇଁ ଭଗବାନ ବିଷ୍ଣୁ ସୁତପାଙ୍କ ଔରସରୁ ପୃଶ୍ନିଗର୍ଭ, କଶ୍ୟପଙ୍କ ଔରସରୁ ବାମନ ଓ ବସୁଦେବଙ୍କ

ଶ୍ରୀଇସବରୁ କୃଷ୍ଣ ରୂପରେ ଜାତ ହୋଇ ଭକ୍ତର ମନସ୍କାମନା ପୂର୍ଣ୍ଣ କରିଥିଲେ ।

କଂସ—ଭୋଜବଂଶୀୟ ରଜା । ସେ ମଥୁରାର ରାଜା, ଉଗ୍ରସେନଙ୍କର ଜ୍ୟେଷ୍ଠପୁତ୍ର, ମଗଧରାଜ ଜରାସନ୍ଧଙ୍କର ଜାମାତା ଏବଂ କୃଷ୍ଣଙ୍କର ମାତୁଳ । ସେ ଅତ୍ୟନ୍ତ କ୍ରୂର ଓ ନୀଚ ପ୍ରକୃତିର ଥିଲେ ଏବଂ ତା'ର ଅତ୍ୟାଚାରରେ ସମଗ୍ର ପୃଥିବୀ ଅତିଷ୍ଠ ହୋଇପଡ଼ିଥିଲା ।

କମଳଯୋନି—ଭଗବାନ ବ୍ରହ୍ମାଙ୍କର ଏକ ନାମ । ଅନନ୍ତ ଜଳରାଶି ଉପରେ ଭଗବାନ ନାରାୟଣ ଶେଷନାଗ ପୃଷ୍ଠରେ ନିଦ୍ରାଭିଭୂତ ଥିବାବେଳେ ତାଙ୍କ ନାଭିଦେଶରୁ ଶତ ଯୋଜନ ବିସ୍ତୀର୍ଣ୍ଣ ଏକପଦ୍ମ ଜାତ ହୁଏ ଏବଂ ସେହି ଅପୂର୍ବ ପଦ୍ମ ମଧ୍ୟରୁ ଘଟେ ବ୍ରହ୍ମାଙ୍କର ଜନ୍ମ । କମଳ ବା ପଦ୍ମରୁ ଜାତ ବୋଲି ବ୍ରହ୍ମା କମଳଯୋନି ନାମରେ ଅଭିହିତ ହୋଇଥାନ୍ତି ।

କାତ୍ୟାୟନୀ—ଦେବୀ ଆଦ୍ୟାଶକ୍ତିଙ୍କର ଏକ ନାମ । ଦେବତାମାନଙ୍କର ନିଜ ନିଜ ଶରୀରର ବିଚ୍ଛୁରିତ ତେଜର ସମଷ୍ଟିରେ ଦେବୀଙ୍କର ସୃଷ୍ଟି ଘଟେ । ମହର୍ଷି କାତ୍ୟାୟନ ଦେବୀଙ୍କୁ ପ୍ରଥମେ ସଭକ୍ତି ପୂଜା କରିଥିବାରୁ, ସେଥିପାଇଁ ଭକ୍ତର ନାମାନୁସାରେ ଦେବୀଙ୍କର ନାମହୁଏ କାତ୍ୟାୟନୀ । ନିଜ ନିଜ ମନରେ ସୃଷ୍ଟି ହୋଇଥିବା କୃଷ୍ଣ-ସମ୍ପର୍କୀୟ କାମନାର ଆଶୁ ପରିପୂର୍ତ୍ତି ନିମନ୍ତେ ଗୋପୀ-ମାନେ ଏହି ଦେବୀଙ୍କ ଉଦ୍ଦେଶ୍ୟରେ କାତ୍ୟାୟନୀ ବ୍ରତ ପାଳନ କରିଥିଲେ ।

କାମଦେବ—ଯୌନ-ଜୀବନ ସମ୍ପର୍କୀୟ ସକଳ କାମନାର ସ୍ରଷ୍ଟା ଓ ଅଧିଷ୍ଠାତା ଦେବତା । ସେ ଅତ୍ୟନ୍ତ ସୌମ୍ୟ ଦର୍ଶନ ଓ ତାଙ୍କ ଶରୀରରୁ କୁସୁମର ସୌରଭ ବିଚ୍ଛୁରିତ ହୋଇଥାଏ । ସେ ସର୍ବଦା ପୁଷ୍ପଶୋଭିତ ଏବଂ ତାଙ୍କର ଆୟୁଧ ପୁଷ୍ପଧନୁ ଓ କୁସୁମ ଶର । ମନ୍ମଥ, ମଦନ, କନ୍ଦର୍ପ, ଅନଙ୍ଗ, ସ୍ମର ଏବଂ କୁସୁମାୟୁଧ ଆଦି ବିଭିନ୍ନ ନାମରେ ସେ ଅଭିହିତ ହୋଇଥାନ୍ତି ।

କାଳୀୟ—ଏକ ବିଷଧର ସର୍ପ ଏବଂ ସର୍ପମାନଙ୍କର ରାଜା । ଗରୁଡ଼ ସହିତ ଯୁଦ୍ଧ କରି ସେ ପରାଜିତ ହେବାରୁ ପ୍ରାଣରକ୍ଷା ନିମନ୍ତେ ନିଜର ଆବାସସ୍ଥଳୀ ସମୁଦ୍ରକୁ ତ୍ୟାଗ କରି ଯମୁନା ନଦୀର ଏକ ହ୍ରଦରେ ଆଶ୍ରୟ ନିଏ । କାଳୀୟର ସଂସ୍ପର୍ଶରେ ଆସି ଯମୁନାହ୍ରଦର ଜଳ ଅତ୍ୟନ୍ତ ବିଷାକ୍ତ ହୋଇଯାଏ । ପରେ ଭଗବାନ କୃଷ୍ଣ କାଳୀୟକୁ ନିର୍ଯାତିତ ଓ ଯମୁନାରୁ ବହିଷ୍କୃତ କରି ସେହି ବିଷାକ୍ତ ହ୍ରଦର ଜଳକୁ ବିଷମୁକ୍ତ କରନ୍ତି ।

କିନ୍ନର—ଏକ ପ୍ରକାର ଜାତି । ଭଗବାନ ବ୍ରହ୍ମାଙ୍କ ଛାୟାରୁ ଏମାନଙ୍କର ସୃଷ୍ଟି । ଏମାନଙ୍କର ଶରୀର ଅର୍ଦ୍ଧମନୁଷ୍ୟାକୃତି ଏବଂ ଅର୍ଦ୍ଧ-ଅଶ୍ୱାକୃତି । ସଙ୍ଗୀତ ଏବଂ ନୃତ୍ୟପାଇଁ ଏମାନେ ବିଶେଷ ପ୍ରସିଦ୍ଧ ।

କୁବ୍‌ଜା—ମଥୁରା ରାଜବଂଶର ଜନୈକା ପରିଚାରିକା । ତା'ର ପୃଷ୍ଠଦେଶ କୁବ୍‌ଜ ହୋଇଥିବାରୁ ସେ କୁବ୍‌ଜା ନାମରେ ପରିଚିତା । କୁବ୍‌ଜତ୍ୱ ହେତୁ ସେ ଅତ୍ୟନ୍ତ କୁତ୍ସିତଦର୍ଶନା ଥିଲା । ଭଗବାନ କୃଷ୍ଣଙ୍କର ଅଲୌକିକ କରୁଣା ଲାଭକରି ସେ ରମଣୀସୁଲଭ ସ୍ୱାଭାବିକ ସୁନ୍ଦର ରୂପଲାବଣ୍ୟ ଲାଭକଲା ।

କୂର୍ମ—ଭଗବାନ ବିଷ୍ଣୁଙ୍କର ଦ୍ୱିତୀୟ ଅବତାର । ଅମୃତ ଲାଭ ନିମନ୍ତେ ଦେବତା ଓ ଅସୁରଙ୍କ ସହଯୋଗରେ ହୋଇଥିବା ସାଗର-ମନ୍ଥନ ସମୟରେ ଭଗବାନ ବିଷ୍ଣୁ କୂର୍ମରୂପ ଧାରଣ କରି ମନ୍ଥନ ଦଣ୍ଡ ରୂପରେ ବ୍ୟବହୃତ ହୋଇଥିବା ସତତ ବିଘୂର୍ଣ୍ଣିତ ବିଶାଳ ମନ୍ଦର ପର୍ବତକୁ ନିଜ ପୃଷ୍ଠରେ ଧାରଣ କରିଥିଲେ ।

କୃଷ୍ଣ—ଭଗବାନ ବିଷ୍ଣୁଙ୍କର ଅଷ୍ଟମ ଅବତାର । ତାଙ୍କୁ ବିଷ୍ଣୁଙ୍କର ପୂର୍ଣ୍ଣ ଅବତାର ବୋଲି କଳ୍ପନା କରାଯାଇଅଛି । ତାଙ୍କର ନାମ ସ୍ମରଣ ଓ କୀର୍ତ୍ତନ କଲେ ଜୀବର ସମସ୍ତ ପାପ ନାଶ ହୋଇଥାଏ । ଭଗବାନ କୃଷ୍ଣଙ୍କର ନାମ, ଲୀଳା ଓ ମହିମାକୁ କେନ୍ଦ୍ରକରି ଭାଗବତ ଗ୍ରନ୍ଥର ସୃଷ୍ଟି ।

କେଶବ—ଭଗବାନ କୃଷ୍ଣଙ୍କର ଏକ ନାମ । କେଶୀ ନାମକ ଏକ ଅସୁରକୁ ସେ ବିନାଶ କରିଥିବାରୁ, ସେ ଏହି ନାମରେ ପରିଚିତ ।

ଖଟ୍ୱାଙ୍ଗ—ସୂର୍ଯ୍ୟବଂଶର ଜନୈକ ରାଜା । ତାଙ୍କର ଅନ୍ୟ ନାମ ଦିଲୀପ । ଦେବତା ଓ ଅସୁରମାନଙ୍କ ମଧ୍ୟରେ ଅନୁଷ୍ଠିତ ହୋଇଥିବା ଯୁଦ୍ଧରେ ସେ ଦେବତା ପକ୍ଷରେ ରହି ଅସୁରମାନଙ୍କ ବିରୁଦ୍ଧରେ ସଫଳତାର ସହିତ ଯୁଦ୍ଧ କରିଥିଲେ । ତାଙ୍କ ସାହସିକତାରେ ମୁଗ୍ଧ ହୋଇ ଦେବତାମାନେ ତାଙ୍କୁ ବର ପ୍ରଦାନ କରିବାକୁ ଚାହିଁବାରୁ, ରାଜା ଖଟ୍ୱାଙ୍ଗ ଅନ୍ୟକିଛି ବର ପ୍ରାର୍ଥନା ନ କରି କେବଳ ନିଜର ପରମାୟୁ ଆଉ କେତେ ଅଛି ବୋଲି ଜାଣିବାକୁ ଚାହିଁଥିଲେ । ତାଙ୍କର ପରମାୟୁ ଆଉ ମାତ୍ର ମୂହୂର୍ତ୍ତେ କାଳ ଅଛି ବୋଲି ଦେବତାମାନେ କହିବାରୁ, ଖଟ୍ୱାଙ୍ଗ ସଙ୍ଗେ ସଙ୍ଗେ ପରମ ଭକ୍ତିର ସହିତ ଭଗବାନ ବିଷ୍ଣୁଙ୍କୁ ଧ୍ୟାନକରି ସାଂସାରିକ ଜୀବନରୁ ମୁକ୍ତିଲାଭ କରିଥିଲେ ।

ଗଙ୍ଗା—ସୁର ନଦୀ ବିଶେଷ, ଭଗବାନ ବିଷ୍ଣୁଙ୍କର ଶରୀରରୁ ଗଙ୍ଗାଙ୍କର ଉତ୍ପତ୍ତି । ବିଷ୍ଣୁଙ୍କର ତିନି ସ୍ତ୍ରୀ: ଲକ୍ଷ୍ମୀ, ସରସ୍ୱତୀ ଏବଂ ଗଙ୍ଗା । କୌଣସି ସମୟରେ ଗଙ୍ଗାଙ୍କ ପ୍ରତି ବିଷ୍ଣୁ ବିଶେଷ ଆକୃଷ୍ଟ ହୋଇ ପଡ଼ିବାରୁ, ସରସ୍ୱତୀ ତାହା ସହ୍ୟ କରି ନ ପାରି ଈର୍ଷାରେ କ୍ରୋଧାନ୍ୱିତା ହୋଇ ସପତ୍ନୀ ଗଙ୍ଗାଙ୍କୁ ନଦୀରେ ପରିଣତ ହୋଇ ଯିବାକୁ ଅଭିଶାପ ଦେଲେ । ଗଙ୍ଗା ମଧ୍ୟ ଅନୁରୂପ ପ୍ରତିଅଭିଶାପ ଦେଇ ସରସ୍ୱତୀଙ୍କୁ ନଦୀରେ ପରିଣତ କରିଥିଲେ । ଦେବଭୂମି ଭାରତରେ ସେହି ଗଙ୍ଗା ଓ ସରସ୍ୱତୀ ନଦୀ ଦୁଇଟି ପ୍ରବାହିତା । ଗଙ୍ଗା ଜଳ ପରମ ପବିତ୍ର ।

ଗର୍ଗ୍ୟ—ବୃହସ୍ପତିଙ୍କ ବଂଶଜାତ ବିତଥ ନାମକ ଜନୈକ ମହର୍ଷିଙ୍କର ପୁତ୍ର । ସେ ଶିବଙ୍କୁ ପୂଜାରେ ସନ୍ତୁଷ୍ଟ କରି ଜ୍ୟୋତିଷଶାସ୍ତ୍ରରେ ବିଶେଷ ପାରଦର୍ଶିତା ଅର୍ଜନ କରିଥିଲେ । ସେ ଯାଦବବଂଶର କୁଳଗୁରୁ ।

ଗରୁଡ଼—ପକ୍ଷୀରାଜ । ଭଗବାନ କୃଷ୍ଣଙ୍କର ବାହନ । ଋଷି କଶ୍ୟପଙ୍କ ଔରସରେ ତାଙ୍କ ପତ୍ନୀ ବିନତାଙ୍କ ଗର୍ଭଜାତ ପୁତ୍ର । ଅର୍ଦ୍ଧ-ପକ୍ଷୀ ଓ ଅର୍ଦ୍ଧ-ମାନବ ରୂପରେ ସେ ପରିଲକ୍ଷିତ ହୋଇଥାନ୍ତି ।

ଗାୟତ୍ରୀ—ଋଗ୍ ବେଦର ଅଲୌକିକ ଶକ୍ତିସମ୍ପନ୍ନ ଛନ୍ଦମୟୀ ପବିତ୍ରତମ ମନ୍ତ୍ର । ଏହି ମନ୍ତ୍ର ଗାନକାରୀମାନଙ୍କୁ ତ୍ରାଣ କରେ ବୋଲି ତା'ର ନାମ ହୁଏ ଗାୟତ୍ରୀ ।

ଗୋକୁଳ—ମଥୁରା ନଗରୀର ପୂର୍ବ ଦକ୍ଷିଣ କୋଣରେ ଅବସ୍ଥିତ ଯମୁନା ନଦୀର ବାମତୀରସ୍ଥ ଏକ ସ୍ଥାନ । ତାହା ନନ୍ଦରାଜାଙ୍କର ବାସସ୍ଥାନ । ସେଠାରେ କୃଷ୍ଣ ଓ ବଳରାମଙ୍କର ବାଲ୍ୟକାଳ ଅତିବାହିତ ହୋଇଥିବାରୁ ବୈଷ୍ଣବମାନେ ଗୋକୁଳକୁ ପରମ ପୁଣ୍ୟତୀର୍ଥ ଭାବରେ ଗ୍ରହଣ କରିଥାନ୍ତି ।

ଗୋବର୍ଦ୍ଧନ—ବୃନ୍ଦାବନର ଏକ ପର୍ବତ ।

ଗୋଲକ—ମହାଶୂନ୍ୟରେ ପରିକଳ୍ପିତ ଭଗବାନ ବିଷ୍ଣୁଙ୍କର ନିତ୍ୟ ଆବାସସ୍ଥଳ ।

ଚତୁର୍ମୁଖ—ଭଗବାନ ବ୍ରହ୍ମାଙ୍କର ଏକ ନାମ ।

ଜନକ—ମିଥିଳାର ଅଧିପତି ଜନୈକ ରାଜର୍ଷି ।

ଜନମେଜୟ—କୁରୁବଂଶର ରାଜା ପରୀକ୍ଷିତଙ୍କର ପୁତ୍ର ।

ଜନାର୍ଦ୍ଦନ—ଭଗବାନ କୃଷ୍ଣଙ୍କର ଏକ ନାମ । ଜନ ନାମକ ଏକ ଅସୁରକୁ କୃଷ୍ଣ ସଂହାର କରିଥିବାରୁ ସେ ଜନାର୍ଦ୍ଦନ ନାମରେ ପରିଚିତ ।

ଜୟ—ଭଗବାନ ବିଷ୍ଣୁଙ୍କର ଜୟ ଏବଂ ବିଜୟ ନାମରେ ଦୁଇଜଣ ଦ୍ୱାରପାଳ ଥିଲେ । ସନକାଦି ଋଷିମାନେ ବିଷ୍ଣୁଙ୍କୁ ଦର୍ଶନ କରିବାକୁ ଆସିଥିବା ବେଳେ, ବିଷ୍ଣୁଙ୍କ ବିନାନୁମତିରେ ସେମାନଙ୍କୁ ଭିତରକୁ ପ୍ରବେଶ କରିବାକୁ ଦେବେ ନାହିଁ ବୋଲି ଜୟ ଓ ବିଜୟ କହିଲେ; କିନ୍ତୁ ବିଷ୍ଣୁଙ୍କୁ ଦର୍ଶନ କରିବା ନିମନ୍ତେ ଅନୁମତି ପ୍ରୟୋଜନ ନାହିଁ ବୋଲି ଋଷିମାନେ କହିଲେ ମଧ୍ୟ, ଜୟ ଏବଂ ବିଜୟ ତାହା ମାନିଲେ ନାହିଁ, ବରଂ ସେ ଦୁହେଁ ବିକଟାଳ ରାକ୍ଷସ ରୂପ ଧାରଣ କରି ଋଷିମାନଙ୍କୁ ଭୟ ପ୍ରଦର୍ଶନ କରି ନିବର୍ତ୍ତାଇବାକୁ ଚେଷ୍ଟା କଲେ । ଦ୍ୱାରପାଳଙ୍କ ଆଚରଣରେ କ୍ରୋଧାନ୍ୱିତ ହୋଇ ଋଷିମାନେ ସେମାନଙ୍କୁ ରାକ୍ଷସ ଜନ୍ମ ଲାଭ କରିବାକୁ ଅଭିଶାପ

ଦେଇଥିଲେ । ଋଷି ଅଭିଶାପ ଫଳରେ ଜୟ ଓ ବିଜୟ ରାକ୍ଷସ ଜନ୍ମ ଲାଭ କରିଥିଲେ । ବିଶେଷ ବିବରଣୀ ପାଇଁ ବିଜୟ ଦ୍ରଷ୍ଟବ୍ୟ ।

ତକ୍ଷକ—ପ୍ରଧାନ ନାଗମାନଙ୍କ ମଧ୍ୟରୁ ଅନ୍ୟତମ ।

ଦକ୍ଷ—ଭଗବାନ ବ୍ରହ୍ମାଙ୍କର ମାନସପୁତ୍ର । ସେ ଜନୈକ ପ୍ରଜାପତି । ବ୍ରହ୍ମାଙ୍କର ଅଙ୍ଗୁଳିରୁ ତାଙ୍କର ଜନ୍ମ ବୋଲି ତାଙ୍କର ନାମ ହୁଏ ଦକ୍ଷ । ସେ ଶିବଙ୍କର ଶ୍ୱଶୁର ଓ ଶିବ-ପତ୍ନୀ ସତୀଙ୍କର ଜନକ ।

ଦନ୍ତବକ୍ର—ଚେଦି ରାଜା ଶିଶୁପାଳଙ୍କ ଭ୍ରାତା ।

ଦାନବ—ଅସୁରବିଶେଷ । ମହର୍ଷି କଶ୍ୟପଙ୍କ ଔରସରେ ତାଙ୍କ ପତ୍ନୀ ଦନୁଙ୍କ ଗର୍ଭଜାତ ସନ୍ତାନଗଣ ଦାନବ ନାମରେ ପରିଚିତ । ସେମାନେ ସ୍ୱଭାବତ ନୃଶଂସ ଓ ଦେବଶତ୍ରୁ ଭାବରେ ପରିଚିତ ।

ଦିତି—ଦକ୍ଷ ପ୍ରଜାପତିଙ୍କର କନ୍ୟା । ସେ ମହର୍ଷି କଶ୍ୟପଙ୍କୁ ବିବାହ କରିଥିଲେ । କଶ୍ୟପଙ୍କ ଔରସରେ ତାଙ୍କ ଗର୍ଭରୁ ଜାତ ସନ୍ତାନଗଣ ଦୈତ୍ୟ ନାମରେ ପରିଚିତ ।

ଦୁର୍ବାସା—ମହର୍ଷି ଅତ୍ରିଙ୍କ ଔରସରେ ତାଙ୍କ ପତ୍ନୀ ଅନସୂୟାଙ୍କ ଗର୍ଭଜାତ ପୁତ୍ର । ସେ ମହର୍ଷି ହେଲେ ମଧ୍ୟ ଅତ୍ୟନ୍ତ କ୍ଷଣକୋପୀ ଥିଲେ ।

ଦେବକୀ—ଯଦୁବଂଶଜ ଆହୁକଙ୍କର ଦେବକ ଓ ଉଗ୍ରସେନ ନାମରେ ଥିଲେ ଦୁଇ ପୁତ୍ର । ସେହି ପୁତ୍ରଦ୍ୱୟଙ୍କ ମଧ୍ୟରୁ ଦେବକଙ୍କର ଥିଲେ ସାତ ଗୋଟି କନ୍ୟା ଏବଂ ସେହି କନ୍ୟାମାନଙ୍କ ମଧ୍ୟରେ ଦେବକୀ ଥିଲେ ଅନ୍ୟତମା । ଦେବକୀଙ୍କ ସମେତ ଦେବକଙ୍କର ସାତଗୋଟି କନ୍ୟାଙ୍କୁ ବସୁଦେବ ବିବାହ କରିଥିଲେ । ଦେବକୀଙ୍କ ଗର୍ଭରୁ ଭଗବାନ କୃଷ୍ଣଙ୍କର ଜନ୍ମ । ଦେବକୀ ପୂର୍ବ ଜନ୍ମରେ ପୃଶ୍ନି ଏବଂ ଅଦିତି ରୂପେ ଜନ୍ମ ହୋଇ ଭଗବାନ ବିଷ୍ଣୁଙ୍କ ଅବତାର ପୃଶ୍ନିଗର୍ଭ ଏବଂ ବାମନଙ୍କ ଜନନୀ ହୋଇଥିଲେ ।

ଦୈତ୍ୟ—ମହର୍ଷି କଶ୍ୟପଙ୍କ ପତ୍ନୀ ଦିତିଙ୍କ ଗର୍ଭଜାତ ପୁତ୍ରମାନେ ଦୈତ୍ୟ ନାମରେ ପରିଚିତ । ଦେବତାମାନଙ୍କ ସମ୍ପର୍କରେ ଏମାନେ ଚିରକାଳ ଦ୍ୱେଷଭାବ ପୋଷଣ କରିଥାନ୍ତି ।

ଧ୍ରୁବ—ସ୍ୱାୟମ୍ଭୁବ ମନୁଙ୍କର ପୁତ୍ର ଉତ୍ତାନପାଦ । ଉତ୍ତାନପାଦଙ୍କ ପତ୍ନୀ ସୁନୀତିଙ୍କ ଗର୍ଭରୁ ଧ୍ରୁବଙ୍କର ଜନ୍ମ । ସେ ଅନ୍ୟତମ ପରମ ବିଷ୍ଣୁଭକ୍ତ ।

ନନ୍ଦ—ଗୋକୁଳର ଅଧିପତି ଏବଂ କୃଷ୍ଣଙ୍କର ପାଳକ ପିତା ।

ନରକ— ମୃତ୍ୟୁପରେ ପାପୀମାନେ ଯେଉଁ ସ୍ଥାନରେ ଆତ୍ମକୃତ ପାପାଚରଣ ପାଇଁ ଉପଯୁକ୍ତ ଶାସ୍ତି ଓ କ୍ଲେଶ ଭୋଗ କରିଥାନ୍ତି । ଶାସ୍ତ୍ରରେ ପ୍ରକାର ଭେଦରେ ନରକର ସଂଖ୍ୟା ଏକୋଇଶ ବୋଲି ଉଲ୍ଲେଖ କରାଯାଇଅଛି; ଯଥା: ୧- ତାମିସ୍ର, ୨-ଅନ୍ଧତାମିସ୍ର, ୩- ରୌରବ, ୪-ମହା ରୌରବ, ୫-କୁମ୍ଭୀପାକ, ୬-କାଳସୂତ୍ର, ୭-ଅସିପତ୍ରବନ, ୮-ଶୂକର ମୁଖ, ୯-ଅନ୍ଧକୂପ, ୧୦-କୃମି-ଭୋଜନ, ୧୧-ସର୍ପଦଂଶ, ୧୨-ତପ୍ତକୁମ୍ଭୀ, ୧୩-ବଜ୍ରକଣ୍ଟକ, ୧୪-ବୈତରଣୀ, ୧୫-ପୂୟୋଦ, ୧୬-ପ୍ରାଣରୋଧ, ୧୭-ବିଷସନ ଅଯ୍ପାନ, ୧୮-ଲାଳଭକ୍ଷ, ୧୯-ସାରମେୟାଦନ, ୨୦-ଅବୀଚି, ୨୧-ଶାଲ୍ମଳୀ ।

ନରସିଂହ—ଭଗବାନ ବିଷ୍ଣୁଙ୍କର ଚତୁର୍ଥ ଅବତାର । ସେ ଦୈତ୍ୟରାଜ ଦେବଦ୍ରୋହୀ ହିରଣ୍ୟକଶିପୁକୁ ସଂହାର କରିଥିଲେ । ସେ ଅର୍ଦ୍ଧ-ନର ଓ ଅର୍ଦ୍ଧ-ସିଂହ ରୂପଧାରୀ, ବିରାଟ ଏବଂ ବିକଟକାୟ ।

ନାରଦ—ଭଗବାନ ବ୍ରହ୍ମାଙ୍କର ମାନସପୁତ୍ର ଏବଂ ଦେବର୍ଷି । ନାର ଶବ୍ଦର ଅର୍ଥ ଜଳ । ଅଧିକାଂଶ ସମୟରେ ତର୍ପଣ କାର୍ଯ୍ୟରେ ବ୍ୟସ୍ତରହି ଜଳଦାନ କରୁଥିବାରୁ ତାଙ୍କର ନାମ ହୁଏ ନାରଦ, ସେ ବିଷ୍ଣୁଭକ୍ତ । ବିଭିନ୍ନ ସମ୍ବାଦ ପରିବେଷଣ, ପରାମର୍ଶଦାନ, ଯୁଦ୍ଧବିଗ୍ରହ ଏବଂ ବିବାହ-ବିଚ୍ଛେଦ ସଂଘଟନରେ ବିଶେଷ ପାରଦର୍ଶୀ ।

ନୈମିଷାରଣ୍ୟ—ଗୋମତୀନଦୀର ସମୀପବର୍ତ୍ତୀ ଏକ ପବିତ୍ର ସ୍ଥାନ । ଗୌରମୁଖ ନାମକ ଜନୈକ ଋଷି ଏହି ସ୍ଥାନରେ ଅବସ୍ଥାନ କରି

ନିମିଷକାଳ ମଧ୍ୟରେ ଦେବଗଣ ଅସୁର ସୈନ୍ୟମାନଙ୍କୁ ବିନାଶ କରିଦେଇ ଥିବାରୁ, ଏହି ସ୍ଥାନର ନାମ ହୁଏ ନୈମିଷାରଣ୍ୟ । ଋଷିମାନଙ୍କ ପକ୍ଷରେ ଏହା ପବିତ୍ରତମ ତପସ୍ୟାସ୍ଥଳୀ ।

ପରଶୁରାମ—ଭଗବାନ ବିଷ୍ଣୁଙ୍କର ଷଷ୍ଠ ଅବତାର । ସେ ଋଷି ଜମଦଗ୍ନିଙ୍କ ଔରସରେ ପତ୍ନୀ ରେଣୁକାଙ୍କ ଗର୍ଭରୁ ଜନ୍ମ ହୋଇଥିଲେ ।

ପରୀକ୍ଷିତ—କୁରୁବଂଶୀୟ ଜନୈକ ରାଜା । ସେ ମହାବୀର ଅଭିମନ୍ୟୁଙ୍କର ପୁତ୍ର ଓ ଅର୍ଜୁନଙ୍କର ପୌତ୍ର । ବଂଶର ପରିକ୍ଷୟ (ବିନାଶ) କାଳରେ ତାଙ୍କର ଜନ୍ମ ହୋଇଥିବାରୁ, ତାଙ୍କର ନାମ ହୁଏ ପରୀକ୍ଷିତ । ସେ ପରମ ଧର୍ମାତ୍ମା ଓ ତାଙ୍କର ଅଭିଶପ୍ତ ଜୀବନକୁ ଉପଲକ୍ଷ୍ୟ କରି ବ୍ୟାସଦେବଙ୍କ କୃତ ସମ୍ପୂର୍ଣ୍ଣ ଭାଗବତ ଶୁକ-ଦେବଙ୍କ ଦ୍ୱାରା କଥିତ ହୋଇଅଛି ।

ପାର୍ବତୀ—ପର୍ବତର କନ୍ୟା ବୋଲି ତାଙ୍କର ନାମ ପାର୍ବତୀ । ସେ ଶିବଙ୍କର ପତ୍ନୀ । ତାଙ୍କ ପିତାଙ୍କର ନାମ ହିମାଳୟ ଓ ମାତାଙ୍କ ନାମ ମେନକା । ଦକ୍ଷକନ୍ୟା ଅଭିମାନିନୀ ସତୀ ଦକ୍ଷ ଯଜ୍ଞ ସମୟରେ ପ୍ରାଣବିସର୍ଜନ କରି ପରଜନ୍ମରେ ପାର୍ବତୀ ରୂପରେ ଜନ୍ମହୋଇ ଶିବଙ୍କୁ ପୁନର୍ବାର ସ୍ୱାମୀ ରୂପରେ ଲାଭ କରିଥିଲେ ।

ପୂତନା—ଜନୈକା ମାୟାବିନୀ ଦାନବୀ । ସେ ବକାସୁରର ଭଗିନୀ ଓ କଂସର ଅନୁଚରୀ । ଦାନବରାଜ ବଳୀଙ୍କର କନ୍ୟା 'ରତ୍ନମାଳା ପିତାଙ୍କ ଯଜ୍ଞଶାଳାରେ ଭଗବାନ ବିଷ୍ଣୁଙ୍କର ବାମନ ଅବତାର-କାଳୀନ ସୁନ୍ଦର ରୂପକୁ ଦର୍ଶନ କରି ମୁଗ୍ଧ ହୁଏ ଏବଂ ମନେ ମନେ ଭାବେ, ଏହିପରି ପରମ ସୁନ୍ଦର ପୁତ୍ରଟିଏ ମୋ କୋଳକୁ ଆସନ୍ତାକି, ତାକୁ ମୋର ସ୍ତନ୍ୟପାନ କରାଇ ତୃପ୍ତି ଲାଭ କରନ୍ତି' । ଭଗବାନ ଅନ୍ତର୍ଯ୍ୟାମୀ । ତାଙ୍କୁ ଏହି କଥା ଅଛପା ରହିଲା ନାହିଁ । ସେ ମଧ୍ୟ ମନେ ମନେ ରତ୍ନମାଳାର କାମନାକୁ ଅନୁମୋଦନ କରିଥିଲେ । ପରଜନ୍ମରେ ରତ୍ନମାଳା ପୂତନା ରୂପରେ ଜାତ ହୋଇ କଂସର ଆଜ୍ଞାରେ କୃଷ୍ଣଙ୍କୁ ସଂହାର କରିବାକୁ ଗଲାବେଳେ, କୃଷ୍ଣରୂପୀ ଭଗବାନ ବିଷ୍ଣୁ ପୂତନାକୁ

ସ୍ତନ୍ୟପାନ କରାଇବାର ସୁଯୋଗ ପ୍ରଦାନ କରି ଆସୁରୀ ଜନ୍ମରୁ ତାଙ୍କୁ ଉଦ୍ଧାର କରିଥିଲେ ।

ପୃଶ୍ନି—ସୁତପା ନାମକ ପ୍ରଜାପତିଙ୍କର ପତ୍ନୀ । ପରଜନ୍ମରେ ସେ ଅଦିତି ଓ ପରେ ଦେବକୀ ରୂପରେ ଜାତ ହୋଇଥିଲେ ।

ପ୍ରଦ୍ୟୁମ୍ନ—ଭଗବାନ କୃଷ୍ଣଙ୍କ ଔରସରେ ପତ୍ନୀ ରୁକ୍ମିଣୀଙ୍କ ଗର୍ଭଜାତ ଜ୍ୟେଷ୍ଠ ପୁତ୍ର । ଶିବଙ୍କ ଆଜ୍ଞାନୁସାରେ କାମଦେବ ପ୍ରଦ୍ୟୁମ୍ନ ରୂପରେ ଜନ୍ମ ହୋଇଥିଲେ ।

ପ୍ରଭାସ—ସରସ୍ୱତୀ ନଦୀର ତୀରବର୍ତ୍ତୀ ଏକ ପବିତ୍ର ତୀର୍ଥସ୍ଥାନ । ଶ୍ୱଶୁର ଦକ୍ଷ ପ୍ରଜାପତିଙ୍କ ଅଭିଶାପରେ ଚନ୍ଦ୍ର ଯକ୍ଷ୍ମାରୋଗରେ ଆକ୍ରାନ୍ତ ହୋଇଥିଲେ ଏବଂ ସେହି ଦୁରାରୋଗ୍ୟ ରୋଗରୁ ଉଦ୍ଧାର ଲାଭ କରିବା ନିମନ୍ତେ ପ୍ରତ୍ୟେକ ଅମାବାସ୍ୟାରେ ଚନ୍ଦ୍ର ଏହି ସ୍ଥାନରେ ସ୍ନାନ କରି ଧୀରେ ଧୀରେ ଆରୋଗ୍ୟ ଲାଭକରି ପ୍ରଭାଯୁକ୍ତ ହୋଇଥିଲେ; ସେଥିପାଇଁ ଏହି ତୀର୍ଥର ନାମ ହୁଏ ପ୍ରଭାସ ତୀର୍ଥ ବା ସୋମତୀର୍ଥ ।

ପ୍ରଳୟ—ସତ୍ୟ, ତ୍ରେତା, ଦ୍ୱାପର ଏବଂ କଳି—ଏହିପରି ଚାରି ସହସ୍ର ଯୁଗରେ ଭଗବାନ ବ୍ରହ୍ମାଙ୍କର ଗୋଟିଏ ଦିନ ହୁଏ ଏବଂ ସେହି ଗୋଟିଏ ଦିନ ଅନ୍ତେ ସମଗ୍ର ସୃଷ୍ଟି ଓ ଜଗତ ଧ୍ୱଂସପ୍ରାପ୍ତ ହୁଏ । ସେହି ସମୂହ ଧ୍ୱଂସସାଧନ ପ୍ରଳୟ ନାମରେ ପରିଚିତ ।

ପ୍ରହ୍ଲାଦ—ଦୈତ୍ୟରାଜ ହିରଣ୍ୟକଶିପୁର ଔରସରେ ପତ୍ନୀ କୟାଧୂର ଗର୍ଭଜାତ କନିଷ୍ଠ ପୁତ୍ର । ସେ ପରମ ବିଷ୍ଣୁଭକ୍ତମାନଙ୍କ ମଧ୍ୟରେ ଅନ୍ୟତମ ।

ବଦରିକାଶ୍ରମ—ହିମାଳୟର ପାଦଦେଶରେ ଅବସ୍ଥିତ ଅଳକାନନ୍ଦା ନଦୀ ତୀରବର୍ତ୍ତୀ ଏକ ପବିତ୍ର ତୀର୍ଥସ୍ଥାନ । ଏହି ସ୍ଥାନରେ ଋଷି, ସିଦ୍ଧ, ଗନ୍ଧର୍ବ ଓ ଚାରଣ ପ୍ରମୁଖ ନିତ୍ୟ ଅବସ୍ଥାନ କରିଥାନ୍ତି ।

ବରାହ—ଭଗବାନ ବିଷ୍ଣୁଙ୍କର ତୃତୀୟ ଅବତାର ।

ବଳରାମ—ଶେଷନାଗ ଅନନ୍ତ ବଳରାମ ରୂପରେ ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଥିଲେ ।

ବଳି—ଦୈତ୍ୟରାଜ । ବିଷ୍ଣୁଭକ୍ତ ପ୍ରହ୍ଲାଦଙ୍କ ପୁତ୍ର ବିରୋଚନର ପୁତ୍ର ।

ବସୁଦେବ—ଜନୈକ ଯାଦବ । ସେ କୃଷ୍ଣଙ୍କୁ ପୁତ୍ରରୂପରେ ଲାଭ କରିଥିଲେ । ପୂର୍ବଜନ୍ମରେ ସେ ସୁତପା ନାମକ ପ୍ରଜାପତି ଓ ପରେ ମହର୍ଷି କଶ୍ୟପ ରୂପରେ ଜନ୍ମ ହୋଇ ଭଗବାନ ବିଷ୍ଣୁଙ୍କୁ ମଧ୍ୟ ପୁତ୍ର ରୂପରେ ଲାଭ କରିଥିଲେ ।

ବାନପ୍ରସ୍ଥ—ମାନବ ଜୀବନକୁ ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଏବଂ ସନ୍ୟାସ, ଏହିପରି ଚାରିଗୋଟି ଆଶ୍ରମରେ ବିଭକ୍ତ କରାଯାଇଅଛି । ସେହି ବିଭକ୍ତିକରଣ ଅନୁସାରେ ବାନପ୍ରସ୍ଥ ମନୁଷ୍ୟ ଜୀବନର ତୃତୀୟ ଅବସ୍ଥା । ପ୍ରୌଢ଼ାବସ୍ଥାରେ ସାଂସାରିକ ଜୀବନ ତ୍ୟାଗ କରି ବନରେ ବାସ କରିବାକୁ ବାନପ୍ରସ୍ଥ କୁହାଯାଏ ।

ବାମନ—ଭଗବାନ ବିଷ୍ଣୁଙ୍କର ପଞ୍ଚମ ଅବତାର । ମହର୍ଷି କଶ୍ୟପଙ୍କ ଔରସରେ ଅଦିତିଙ୍କ ଗର୍ଭରୁ ଭଗବାନ ବିଷ୍ଣୁ ବାମନ ରୂପରେ ଜାତ ହୋଇଥିଲେ ।

ବାସୁଦେବ—ଭଗବାନ କୃଷ୍ଣଙ୍କର ଏକ ନାମ । ବସୁଦେବଙ୍କ ପୁତ୍ର ବୋଲି ତାଙ୍କର ନାମ ହୁଏ ବାସୁଦେବ ।

ବାସୁକୀ—ନାଗରାଜ । ଦକ୍ଷକନ୍ୟା କଦ୍ରୁଙ୍କର ଜ୍ୟେଷ୍ଠ ପୁତ୍ର । ତାଙ୍କ ପିତାଙ୍କ ନାମ କଶ୍ୟପ । ବାସୁକୀ ଶେଷ ନାଗ ଓ ଅନନ୍ତ ନାଗ ନାମରେ ମଧ୍ୟ ଅଭିହିତ ହୋଇଥାନ୍ତି । ଭଗବାନ ବ୍ରହ୍ମାଙ୍କ ଆଦେଶାନୁସାରେ ସେ ଚଞ୍ଚଳା ପୃଥିବୀକୁ ନିଜ ମସ୍ତକରେ ନିଶ୍ଚଳ ଭାବରେ ଧାରଣ କରନ୍ତି । ସେ ବଳରାମ ରୂପରେ ଜନ୍ମ ହୋଇ ଥିଲେ ।

ବିଜୟ—ଭଗବାନ ବିଷ୍ଣୁଙ୍କର ବୈକୁଣ୍ଠରେ ଜୟ ଓ ବିଜୟ ନାମରେ ଦୁଇଜଣ ବିଶ୍ୱସ୍ତ ଦ୍ୱାରପାଳ ଥିଲେ । ଥରେ ସନକପ୍ରମୁଖ ଋଷିମାନେ ଭଗବାନ ବିଷ୍ଣୁଙ୍କୁ ଦର୍ଶନ କରିବାକୁ ଆସି ବିଷ୍ଣୁ ଭବନର ଦ୍ୱାରଦେଶରେ ଉପସ୍ଥିତ ହେବାରୁ, ବିଷ୍ଣୁଙ୍କ ବିନାନୁମତିରେ ସେମାନଙ୍କୁ ଭବନ ମଧ୍ୟକୁ ପ୍ରବେଶ କରିବାକୁ ଦେବେ ନାହିଁ ବୋଲି ଦ୍ୱାରପାଳ ଦ୍ୱୟ କହିଲେ । କିନ୍ତୁ ଦ୍ୱାର-

ପାଳଙ୍କ ବାରଣ ନ ମାନ ଋଷିମାନେ ଭିତରକୁ ଯିବାକୁ ଚେଷ୍ଟା କରିବାରୁ ଜୟ ଓ ବିଜୟ, ଦୁହେଁ ବିକଟକାୟ ରାକ୍ଷସ ରୂପ ଧାରଣକରି ସେହି ଋଷିମାନଙ୍କୁ ନିବର୍ତ୍ତାଇବା ନିମନ୍ତେ ଉପସ୍ଥିତ କରିବାକୁ ଚେଷ୍ଟା କରିବାରୁ, ଦ୍ୱାରପାଳଙ୍କର ସେହି ଅସମ୍ମାନଦର୍ଶୀ ଆଚରଣରେ କ୍ରୋଧାନ୍ୱିତ ହୋଇ ସେ ଦୁହିଁଙ୍କୁ ମର୍ତ୍ତ୍ୟରେ ରାକ୍ଷସ ହୋଇ ଜନ୍ମ ହେବାକୁ ଅଭିଶାପ ଦେଲେ । ପରେ ଭଗବାନ ବିଷ୍ଣୁ ସମସ୍ତ କଥା ଅବଗତ ହୋଇ ଋଷିମାନଙ୍କୁ ଶାନ୍ତକରି ଅଭିଶାପରୁ ଦ୍ୱାରପାଳଦ୍ୱୟଙ୍କୁ ମୁକ୍ତ କରିବାକୁ ଅନୁରୋଧ କରିବାରୁ, ଋଷିମାନେ କହିଲେ, 'ଆମ୍ଭମାନଙ୍କର ଅଭିଶାପ ଅବଶ୍ୟ ଫଳିବ, ତେବେ ମର୍ତ୍ତ୍ୟରେ ଜନ୍ମ ହୋଇ ଈଶ୍ୱରଙ୍କୁ ଭକ୍ତି କଲେ ସାତ ଜନ୍ମରେ କିମ୍ବା ଈଶ୍ୱରଙ୍କ ପ୍ରତି ବୈରତା ପ୍ରକାଶ କଲେ ତିନି ଜନ୍ମରେ ସେ ଦୁହେଁ ରାକ୍ଷସ ଜନ୍ମରୁ ମୁକ୍ତ ହେବେ, ଜୟ ଓ ବିଜୟ ମର୍ତ୍ତ୍ୟରେ ରାକ୍ଷସ ଜନ୍ମ ଗ୍ରହଣ କରି ଆଶୁମୁକ୍ତି ନିମନ୍ତେ ଈଶ୍ୱରଙ୍କ ପ୍ରତି ବୈରଭାବ ପୋଷଣ କରିଥିଲେ । ଏହି ତିନିଜନ୍ମ ମଧ୍ୟରୁ ଜୟ ସତ୍ୟଯୁଗରେ ହିରଣାକ୍ଷ୍ୟ, ତ୍ରେତାରେ ରାବଣ, ଦ୍ୱାପରରେ ଶିଶୁପାଳ ନାମରେ ଏବଂ ବିଜୟ ଅନୁରୂପ ଭାବରେ ସତ୍ୟ, ତ୍ରେତା ଓ ଦ୍ୱାପରରେ ଯଥାକ୍ରମେ ହିରଣ୍ୟକଶିପୁ, କୁମ୍ଭକର୍ଣ୍ଣ ଓ ଦନ୍ତବକ୍ର ରୂପରେ ଜନ୍ମହୋଇ ଈଶ୍ୱରଦ୍ରୋହୀ ହୋଇଥିଲେ ।

ବିଦୁର—ବ୍ୟାସଦେବଙ୍କ ଔରସରେ ବିଚିତ୍ରବୀର୍ଯ୍ୟଙ୍କର ବିଧବା ପତ୍ନୀ ଅମ୍ବିକାଙ୍କର ଏକ ଧର୍ମପ୍ରାଣା ଶୂଦ୍ରା ଦାସୀର ଗର୍ଭଜାତ ପୁତ୍ର । ଋଷି ମାଣ୍ଡବ୍ୟଙ୍କ ଅଭିଶାପ ଫଳରେ ସ୍ୱୟଂ ଧର୍ମଦେବ ଧରା-ପୃଷ୍ଠରେ ବିଦୁର ରୂପରେ ଜନ୍ମ ହୋଇଥିଲେ ।

ବିଦ୍ୟାଧର—ଏକ ଜାତୀୟ ଉପଦେବତା । ସେମାନେ ସଙ୍ଗୀତ ବିଦ୍ୟାରେ ବିଶେଷ ପାରଦର୍ଶୀ ଥିଲେ ।

ବିଧାତା—ବିଧାତା ଶବ୍ଦର ଅର୍ଥ ବିଶିଷ୍ଟ ନିର୍ମାଣକର୍ତ୍ତା । ଭଗବାନ ବ୍ରହ୍ମା ଏହି ଅଖିଳ ଜଗତ ସୃଷ୍ଟି କରିଥିବାରୁ ସେ ଏହି ନାମରେ ମଧ୍ୟ ଅଭିହିତ ହୋଇଥାନ୍ତି ।

ବିନତା—ଦକ୍ଷ ପ୍ରଜାପତିଙ୍କ କନ୍ୟା ଓ ମହର୍ଷି କଶ୍ୟପଙ୍କର ଅନ୍ୟତମା ପତ୍ନୀ । ତାଙ୍କ ଗର୍ଭରୁ ସୂର୍ଯ୍ୟଙ୍କ ସାରଥି ଅରୁଣ ଓ ବିଷ୍ଣୁ ବାହନ ଗରୁଡ଼ ଜନ୍ମ ହୋଇଥିଲେ ।

ବିଶ୍ୱକର୍ମା—ଦେବଶିଳ୍ପୀ ।

ବିଷ୍ଣୁ—ବ୍ରହ୍ମାଦି ତ୍ରିମୂର୍ତ୍ତିରୁ ଅନ୍ୟତମ ଓ ସୃଷ୍ଟିର ପାଳନକର୍ତ୍ତା । ସେ ସ୍ୱୟଂ ଭଗବାନ ଏବଂ ବିଭିନ୍ନ ସମୟରେ ଧରାପୃଷ୍ଠରେ ଅବତାର ଗ୍ରହଣ କରି ଦୁଷ୍ଟମାନଙ୍କର ଦଳନ ଓ ଧର୍ମସଂସ୍ଥାପନ କରିଥାନ୍ତି । ଭଗବାନ କୃଷ୍ଣ ସେହିପରି ତାଙ୍କର ପୂର୍ଣ୍ଣ ଅବତାର ।

ବୃତ୍ର—ଏକ ପରାକ୍ରମଶାଳୀ ଅସୁର ।

ବୃନ୍ଦାବନ—ମଥୁରା ସମୀପବର୍ତ୍ତୀ ଯମୁନା ନଦୀର ବାମତଟରେ ଅବସ୍ଥିତ ପୁଷ୍ପଲତା ସମନ୍ୱିତ ଏକ ପରମ ସୁନ୍ଦର ଅରଣ୍ୟ । ଏହା ଗୋକୁଳର ସନ୍ନିକଟରେ ଅବସ୍ଥିତ ।

ବ୍ରହ୍ମ—ଅବ୍ୟୟ, ଅବ୍ୟକ୍ତ, ଚିରନ୍ତନ, ସର୍ବସୃଷ୍ଟିକର୍ତ୍ତା, ସର୍ବବ୍ୟାପକ, ସ୍ୱୟମ୍ଭୂ, ଆଦ୍ୟ, ଅନ୍ତସ୍ଥାନ ଏବଂ ସ୍ୱକୀୟ ମହିମାରେ ଅଧିଷ୍ଠିତ ।

ବ୍ରହ୍ମର୍ଷି—ସ୍ତରଭେଦରେ ଋଷିମାନଙ୍କୁ ବହୁ ବିଭାଗରେ ଶ୍ରେଣୀଭୁକ୍ତ କରାଯାଇଥାଏ; ତନ୍ମଧ୍ୟରୁ ବ୍ରହ୍ମର୍ଷି ଏକ ବିଭାଗ, ଋଷିମାନଙ୍କ ମଧ୍ୟରେ ବ୍ରହ୍ମର୍ଷି ସର୍ବଶ୍ରେଷ୍ଠ, ତାପରେ ଦେବର୍ଷି, ତା'ପରେ ରାଜର୍ଷି ଏବଂ ତା'ପରେ ଋଷି । ତପବଳରେ ଭଗବାନ ବ୍ରହ୍ମାଙ୍କ ନିକଟକୁ ଏମାନେ ସ୍ୱଚ୍ଛନ୍ଦରେ ଯାଇପାରନ୍ତି ବୋଲି, ଏମାନେ ବ୍ରହ୍ମର୍ଷି ନାମରେ ପରିଚିତ ।

ମତ୍ସ୍ୟ—ଭଗବାନ ବିଷ୍ଣୁଙ୍କର ପ୍ରଥମ ଅବତାର ।

ମଥୁରା—ଯମୁନା ନଦୀର ଦକ୍ଷିଣ ତଟରେ ଅବସ୍ଥିତ ଏକ ନଗରୀ । ମଧୁଦୈତ୍ୟ ଦ୍ୱାରା ଏହି ନଗରୀ ନିର୍ମିତ ହୋଇଥିବାରୁ ଏହାର ନାମ ମଧୁପୁରୀ ବା ମଥୁରା ହୋଇଅଛି । ତାହା କଂସର ରାଜଧାନୀ ଓ ଭଗବାନ କୃଷ୍ଣଙ୍କର ପବିତ୍ର ଜନ୍ମସ୍ଥଳୀ ।

ମନୁ—ଭଗବାନ୍ ବ୍ରହ୍ମାଙ୍କର ଶରୀରରୁ ଜାତ ପୁତ୍ର । ମନୁଙ୍କ ଦ୍ୱାରା ଜାତ ପୁତ୍ରକନ୍ୟାମାନେ ମାନବ ନାମରେ କଥିତ । ସତ୍ୟ, ତ୍ରେତା, ଦ୍ୱାପର ଓ କଳି—ଏହିପରି ଚାରି ହଜାର ଯୁଗରେ ବ୍ରହ୍ମାଙ୍କର ହୁଏ ଗୋଟିଏ ଦିନ ଏବଂ ଚାରି ହଜାର ଯୁଗରେ ସମାନ୍ୱୟରେ ଚତୁର୍ଦ୍ଦଶ ମନୁ ଜନ୍ମଗ୍ରହଣ କରି ଶାସନ କରିଥାନ୍ତି । ପ୍ରତ୍ୟେକ ମନୁଙ୍କ ଶାସନକାଳକୁ ମନ୍ୱନ୍ତର କୁହାଯାଏ । ଗୋଟିଏ ମନ୍ୱନ୍ତରର ସମସ୍ତ କାଳ ମାନବୀୟ ବର୍ଷ ହିସାବାନୁସାରେ ତିରିଶି କୋଟି ସତଷଠି ଲକ୍ଷ କୋଡ଼ିଏ ହଜାର ବର୍ଷ । ଚତୁର୍ଦ୍ଦଶ ମନୁଙ୍କର ନାମ ଯଥାକ୍ରମେ, ସ୍ୱାୟମ୍ଭୁବ, ସ୍ୱରୋଚିଷ, ଉତ୍ତମ ତାମସ, ରୈବତ, ଚାକ୍ଷୁଷ, ବୈବସ୍ୱତ (ସତ୍ୟବ୍ରତ), ସାବର୍ଣ୍ଣି, ଦକ୍ଷସାବର୍ଣ୍ଣି, ବ୍ରହ୍ମସାବର୍ଣ୍ଣି, ରୁଦ୍ରସାବର୍ଣ୍ଣି, ଦେବତା-ସାବର୍ଣ୍ଣି ଏବଂ ଇନ୍ଦ୍ରସାବର୍ଣ୍ଣି ।

ମୈତ୍ରେୟ—ଜନୈକ ଋଷି ।

ଯକ୍ଷ—ଧନାଧ୍ୟକ୍ଷ କୁବେରଙ୍କର ଅନୁଚରମାନେ ଯକ୍ଷ ନାମରେ ପରିଚିତ ।

ଯଜ୍ଞ—ଆର୍ଯ୍ୟଜାତିର ପ୍ରଧାନ ବୈଦିକ ଅନୁଷ୍ଠାନ । ଦେବତାମାନଙ୍କ ଉଦ୍ଦେଶ୍ୟରେ କୌଣସି ବସ୍ତୁର ଦାନକୁ ଯଜ୍ଞ କୁହାଯାଏ ।

ଯଶୋଦା—ନନ୍ଦରାଜାଙ୍କର ପତ୍ନୀ ଓ ଭଗବାନ କୃଷ୍ଣଙ୍କର ପାଳିକା ମାତା । ବସୁପତ୍ନୀ ତପସ୍ୱିନୀ ଧରା ଯଶୋଦା ରୂପରେ ଜନ୍ମ ହୋଇଥିଲେ ।

ଯୁଗ—ଅନନ୍ତକାଳକୁ ଚାରିଗୋଟି ଯୁଗରେ ବିଭକ୍ତ କରାଯାଇଅଛି; ଯଥା: ସତ୍ୟ, ତ୍ରେତା, ଦ୍ୱାପର ଏବଂ କଳି । ବିଭିନ୍ନ ଯୁଗର ସମୟ-ସୀମା ନିମ୍ନଲିଖିତ ମତେ ସ୍ଥିର କରାଯାଇଅଛି; ଯଥା : ସତ୍ୟଯୁଗ ୧୩,୧୭,୨୮,୦୦୦ ବର୍ଷ, ତ୍ରେତାଯୁଗ ୧୨,୯୬,୦୦୦ ବର୍ଷ, ଦ୍ୱାପର ଯୁଗ ୮,୬୪,୦୦୦ ବର୍ଷ ଏବଂ କଳିଯୁଗ ୪,୩୨,୦୦୦ ବର୍ଷ । ଏହିପରି ଚାରି ହଜାର ଯୁଗର ସମଷ୍ଟିକ୍ରମକୁ ଏକ କଳ୍ପ କୁହାଯାଏ । କଳ୍ପର ଶେଷରେ ଅଖିଳଜଗତ ମହା-ପ୍ରଳୟରେ ଲୀନହୁଏ । ଭଗବାନ ବିଷ୍ଣୁ ସତ୍ୟ ଯୁଗରେ ମତ୍ସ୍ୟ,

କୂର୍ମ, ବରାହ ଏବଂ ନୃସିଂହ ରୂପରେ, ତ୍ରେତା ଯୁଗରେ ବାମନ, ପରଶୁରାମ ଏବଂ ରାମ ରୂପରେ, ଦ୍ୱାପର ଯୁଗରେ କୃଷ୍ଣ ରୂପରେ ଏବଂ କଳି ଯୁଗରେ ବୁଦ୍ଧ ଓ କଲ୍କୀ ରୂପରେ ଅବତାର ଗ୍ରହଣ କରି ଧରାପୃଷ୍ଠରେ ଧର୍ମର ସଂସ୍ଥାପନ କରିଥାନ୍ତି । ଯୁଗମାନଙ୍କ ମଧ୍ୟରେ କଳିଯୁଗକୁ ଅଧର୍ମର ଯୁଗ ଏବଂ ସତ୍ୟଯୁଗକୁ ପୁଣ୍ୟମୟ ଓ ପାପଶୂନ୍ୟ ଯୁଗ ଭାବରେ ଶାସ୍ତ୍ରରେ ବର୍ଣ୍ଣନା କରାଯାଇଅଛି ।

ଯୁଧିଷ୍ଠିର—ପାଣ୍ଡୁଙ୍କର ଜ୍ୟେଷ୍ଠ ପୁତ୍ର । ଭଗବାନ ଧର୍ମଙ୍କ ଆଶୀର୍ବାଦରେ କୁନ୍ତୀଦେବୀଙ୍କ ଗର୍ଭରୁ ସେ ଜନ୍ମଗ୍ରହଣ କରି ଧର୍ମପରାୟଣ ଧର୍ମରାଜ ଭାବରେ ପ୍ରସିଦ୍ଧି ଲାଭ କରିଥିଲେ ।

ଯୋଗ—ପରମାତ୍ମାଙ୍କ ସହିତ ଜୀବାତ୍ମାର ମିଳନ ବା ସଂଯୋଗକୁ ଯୋଗ କୁହାଯାଏ ।

ରୁକ୍ମିଣୀ—ବିଦର୍ଭରାଜ ଭୀଷ୍ମକଙ୍କର ପରମା ସୁନ୍ଦରୀ କନ୍ୟା ଓ ଭଗବାନ କୃଷ୍ଣଙ୍କର ପତ୍ନୀ । ବିଷ୍ଣୁ-ପତ୍ନୀ ଲକ୍ଷ୍ମୀଦେବୀ ରୁକ୍ମିଣୀ ରୂପରେ ଜନ୍ମ ହୋଇଥିଲେ ।

ରୋହିଣୀ— ବସୁଦେବଙ୍କର ଅନ୍ୟତମା ପତ୍ନୀ ଏବଂ ବଳରାମଙ୍କର ମାତା ।

ଲକ୍ଷ୍ମୀ—ଭଗବାନ ବିଷ୍ଣୁଙ୍କର ପତ୍ନୀ ଏବଂ ବଳରାମଙ୍କର ମାତା ।

ଲକ୍ଷ୍ମୀ—ଭଗବାନ ବିଷ୍ଣୁଙ୍କର ପତ୍ନୀ । ମହର୍ଷି ଭୃଗୁଙ୍କ ଔରସରେ ତାଙ୍କ ପତ୍ନୀ ଦକ୍ଷକନ୍ୟା ଖ୍ୟାତିଙ୍କ ଗର୍ଭରୁ ଲକ୍ଷ୍ମୀଙ୍କର ଜନ୍ମ । ଦୁର୍ବାସାଙ୍କ ଅଭିଶାପରେ ଦେବରାଜ ଇନ୍ଦ୍ର ସ୍ୱସୌଭାଗ୍ୟରୁ ବଞ୍ଚିତ ହେବାରୁ, ସର୍ବସୌଭାଗ୍ୟର ଅଧିଷ୍ଠାତ୍ରୀ ଦେବୀ ଲକ୍ଷ୍ମୀ ସ୍ୱର୍ଗ ତ୍ୟାଗକରି ସମୁଦ୍ରରେ ପ୍ରବେଶ କରନ୍ତି । ପରେ ସମୁଦ୍ର-ମନ୍ଥନ ସମୟରେ ସେ ସାଗର ମଧ୍ୟରୁ ଉତ୍‌ଥିତ ହୁଅନ୍ତି ଏବଂ ଭଗବାନ ବିଷ୍ଣୁ ତାଙ୍କୁ ପତ୍ନୀ ରୂପରେ ଗ୍ରହଣ କରନ୍ତି । ସେ ସକଳ ଶ୍ରୀ, ସୌନ୍ଦର୍ଯ୍ୟ ଏବଂ ସୌଭାଗ୍ୟର ଅଧିଷ୍ଠାତ୍ରୀ ଦେବୀ ।

ଲୋକ—ଆଧ୍ୟାତ୍ମିକ ସ୍ତରରେ ଅଖିଳ ଜଗତକୁ ବିଭିନ୍ନ ଭାଗରେ ଶ୍ରେଣୀଭୁକ୍ତ କରାଯାଇଅଛି । ଯଥା : ସାଧାରଣ ମତ ଅନୁସାରେ— ସ୍ୱର୍ଗଲୋକ, ମର୍ତ୍ତ୍ୟଲୋକ ଏବଂ ପାତାଳ ଲୋକ; କିନ୍ତୁ ଅନ୍ୟମତ

ଅନୁସାରେ—ଭୂ, ଭୁବ, ସ୍ୱ, ମହ, ଜନ, ତପ ଏବଂ ସତ୍ୟ, ଏହିପରି ସପ୍ତଲୋକ । ସାଂଖ୍ୟ ଓ ବେଦାନ୍ତ ଦର୍ଶନାନୁସାରେ ଆଠ ଗୋଟି ଲୋକ ଅଛି; ଯଥା : ବ୍ରହ୍ମଲୋକ, ପିତୃଲୋକ, ସୋମଲୋକ, ଇନ୍ଦ୍ରଲୋକ, ଗନ୍ଧର୍ବଲୋକ, ରାକ୍ଷସଲୋକ ଯକ୍ଷଲୋକ ଏବଂ ପିଶାଚ ଲୋକ । ବିରାଟ ପୁରୁଷରୂପୀ ପରମେଶ୍ୱରଙ୍କର ଶରୀରର କଟିଠାରୁ ନିମ୍ନ ଅଙ୍ଗରେ ଅତଳ, ବିତଳ, ସୁତଳ, ତଳାତଳ, ମହାତଳ, ରସାତଳ, ପାତାଳ, ଆଦି ଅଧଲୋକ ଏବଂ କଟିଠାରୁ ଊର୍ଦ୍ଧ୍ୱାଙ୍ଗରେ ଭୂଃ, ଭୁବ, ସ୍ୱ, ମହ, ଜନ, ତପ ଏବଂ ସତ୍ୟ ଆଦି ଊର୍ଦ୍ଧ୍ୱଲୋକ ରହିଥିବାର ମଧ୍ୟ କୁହାଯାଇଅଛି ।

ଶମୀକ—ଜନୈକ ଉଦାରମନା କ୍ଷମାଶୀଳ ତପସ୍ୱୀ । ତାଙ୍କ ପୁତ୍ରର ନାମ ଶୃଙ୍ଗୀ ।

ଶାମ୍ବ—ଭଗବାନ କୃଷ୍ଣଙ୍କ ଔରସରେ ପତ୍ନୀ ଜାମ୍ବବତୀଙ୍କ ଗର୍ଭଜାତ ପୁତ୍ର ।

ଶିବ—ଜଗତର ଆଦି ତ୍ରିମୂର୍ତ୍ତି ମଧ୍ୟରୁ ଅନ୍ୟତମ । ସେ ପ୍ରଳୟକର୍ତ୍ତା । ନିଜର ବହୁବିଧ କାର୍ଯ୍ୟ ପାଇଁ ସେ ବହୁନାମରେ ପରିଚିତ, ଯଥା—ସେ ସମଗ୍ର ବିଶ୍ୱକୁ ଧ୍ୱଂସ ବା ହରଣ କରିଥାନ୍ତି ବୋଲି ହର ନାମରେ, ତାଙ୍କର ତିନୋଟି ଥିବାରୁ ତ୍ରିଲୋଚନ ବା ବିରୂପାକ୍ଷ ନାମରେ, ମୃତ୍ୟୁଜୟୀ ବୋଲି ମୃତ୍ୟୁଞ୍ଜୟ ନାମରେ, କନ୍ଦର୍ପକୁ ସଂହାର କରିଥିବାରୁ ସ୍ମରହର ନାମରେ, ତାଙ୍କର ଧନୁର ନାମ ପିନାକ ହୋଇଥିବାରୁ ପିନାକୀ ନାମରେ ଏବଂ ସାଗର-ମନ୍ଥନକାଳୀନ ଉତ୍କଟ ହଳାହଳ ବିଷକୁ ନିର୍ବିକାର ଚିତ୍ତରେ ଗଳାଧଃକରଣ କରି ନିଜର କଣ୍ଠକୁ ନୀଳବର୍ଣ୍ଣ କରିଥିବାରୁ ନୀଳକଣ୍ଠ ନାମରେ ସେ ପରିଚିତ ।

ଶିଶୁପାଳ—ଚେଦି ଦେଶର ରାଜା । ତାଙ୍କ ପିତାଙ୍କ ନାମ ଦମଘୋଷ ଏବଂ ମାତାଙ୍କ ନାମ ଶ୍ରୁତଶ୍ରବା । ଶ୍ରୁତଶ୍ରବା ବସୁଦେବଙ୍କର ଭଗିନୀ ହୋଇଥିବାରୁ ଶିଶୁପାଳ କୃଷ୍ଣଙ୍କର ପିଇସୀ-ପୁଅ ଭାଇ । ସେ ପୂର୍ବଜନ୍ମରେ ହିରଣାକ୍ଷ ଓ ରାବଣ ରୂପରେ ଜନ୍ମଗ୍ରହଣ

କରିଥିଲା । ସେ ବିଷ୍ଣୁଙ୍କର ଜନୈକ ଦ୍ୱାରପାଳ ଥିଲା ଏବଂ ସେତେବେଳେ ତାର ନାମ ଥିଲା ଜୟ ।

ଶୁକଦେବ—ବେଦର କଳ୍ପତରୁ ଫଳ ଓ ଭାଗବତ ଆଦି ପୁରାଣର ଉପସ୍ଥାପକ । ଭଗବାନ କୃଷ୍ଣଦ୍ୱୈପାୟନ ବ୍ୟାସଦେବଙ୍କର ସେ ପୁତ୍ର । ବ୍ୟାସଦେବ ଏକ ପୁତ୍ରକାମନା କରି ସୁମେରୁ ପର୍ବତରେ ଭଗବାନ ଶିବଙ୍କ ଉଦ୍ଦେଶ୍ୟରେ କଠୋର ତପସ୍ୟା ଆଚରଣ କରିଥିଲେ । ଏକଶତ ବର୍ଷ ତପସ୍ୟା କରିବା ପରେ ଭଗବାନ ଶିବ ତାଙ୍କ ସମ୍ମୁଖରେ ଆବିର୍ଭୂତ ହୋଇ କହିଲେ, 'ମୁଁ ତୁମ ପ୍ରତି ସନ୍ତୁଷ୍ଟ ଏବଂ ତୁମକୁ ବର ଦେଉଛି । ମୋର ଏହି ବରର ପ୍ରଭାବରେ ତୁମେ ଏକ ତେଜୋଦୀପ୍ତ ଯଶସ୍ୱୀ ପୁତ୍ରସନ୍ତାନ ଲାଭ କରିବ, ଏହାପରେ ବ୍ୟାସଦେବ ହୋମକାର୍ଯ୍ୟ କରିବା ନିମନ୍ତେ ଅଗ୍ନି ସଂଗ୍ରହ କରିବା ପାଇଁ ଅରଣୀ ମନ୍ଥନରେ ବ୍ୟାପୃତ ଥିବାବେଳେ ଘୃତାଚୀ ନାମ୍ନୀ ଏକ ସୁନ୍ଦରୀ ଅପ୍ସରା ସେହି ସ୍ଥାନରେ ହଠାତ୍ ଉପସ୍ଥିତ ହୁଏ । ଅପ୍ସରାର ରୂପ ଦର୍ଶନ କରି ବ୍ୟାସଦେବଙ୍କ ମନରେ ଚାଞ୍ଚଲ୍ୟ ସୃଷ୍ଟି ହୁଏ ଏବଂ ତାଙ୍କର ବୀର୍ଯ୍ୟ ସ୍ଖଳନ ଘଟେ । ସେହି ସ୍ଖଳିତ ବୀର୍ଯ୍ୟ ଅରଣୀରେ ମିଶିଯାଏ । ତାର ଆବିର୍ଭାବ ଫଳରେ ପବିତ୍ର ହୋମ କାର୍ଯ୍ୟରେ ବିଘ୍ନ ସୃଷ୍ଟି ହୋଇଅଛି ଦେଖି ଘୃତାଚୀ ଅଭିଶାପ ଭୟରେ ସେ ସ୍ଥାନରୁ ସଙ୍ଗେ ସଙ୍ଗେ ଏକ ଶୁକପକ୍ଷୀ ରୂପ ଧାରଣ କରି ପଳାୟନ କରେ । ବ୍ୟାସଙ୍କର ସେହି ସ୍ଖଳିତ ବୀର୍ଯ୍ୟଯୋଗୁଁ ନିର୍ଦ୍ଧୂମ ଅଗ୍ନି ମଧ୍ୟରୁ ଏକ ଦୀପ୍ତିମାନ ପୁତ୍ର ଜାତ ହୁଏ । ଶୁକପକ୍ଷୀ ରୂପରେ ଘୃତାଚୀ ପଳାୟନ କରିଥିବାରୁ, ସେହି ପୁତ୍ରର ନାମ ହୁଏ ଶୁକ । ସୁରନଦୀ ଗଙ୍ଗା ମୂର୍ତ୍ତିମତୀହୋଇ ସେହି ଶିଶୁର ସ୍ନାନ ସଂସ୍କାର କରନ୍ତି ଏବଂ ସ୍ୱୟଂ ଶିବ ଶିଶୁପୁତ୍ର ଶୁକଙ୍କର ଉପନୟନ କାର୍ଯ୍ୟ ସମ୍ପନ୍ନ କରନ୍ତି । ଦେବରାଜ ଇନ୍ଦ୍ର ତାଙ୍କୁ କମଣ୍ଡଳୁ ଆଦି ପ୍ରଦାନ କରିଥିଲେ । ଦେବଗୁରୁ ବୃହସ୍ପତିଙ୍କଠାରୁ ବେଦାଦି ଧର୍ମଶାସ୍ତ୍ର ସେ ଅଧ୍ୟୟନ କରନ୍ତି ଏବଂ ପରେ ନିଜର ପିତା ବ୍ୟାସଦେବ ଓ ମିଥିଳାର ରାଜା ଜନକଙ୍କଠାରୁ

ମୋକ୍ଷଧର୍ମାଦି ଶିକ୍ଷାଲାଭ କରନ୍ତି । ଦେବର୍ଷି ନାରଦଙ୍କଠାରୁ ମଧ୍ୟ ସେ ବହୁତ ଧର୍ମୋପଦେଶ ଲାଭ କରିଥିଲେ । ସେ ଥିଲେ ପରମ ବ୍ରହ୍ମଜ୍ଞ ; ଅଭିଶାପଗ୍ରସ୍ତ ମହାରାଜ ପରୀକ୍ଷିତଙ୍କ ନିକଟରେ ସେ ସ୍ୱଇଚ୍ଛାରେ ଆବିର୍ଭୂତ ହୋଇ ସମ୍ପୂର୍ଣ୍ଣ ଭାଗବତ ବର୍ଣ୍ଣନା କରିଥିଲେ ଏବଂ ତାଙ୍କୁ ଅନ୍ତିମ ଉପଦେଶ ପ୍ରଦାନ କରି ଅନ୍ତିମ ଯାତ୍ରା ନିମନ୍ତେ ପ୍ରସ୍ତୁତ କରିଥିଲେ । ଶୁକଦେବ ଯୋଗବଳରେ ଦେହତ୍ୟାଗ କରିଥିଲେ ।

ଶୃଙ୍ଗୀ—ମହର୍ଷି ଶମୀକଙ୍କର ଏକ ତେଜସ୍ୱୀ ପୁତ୍ର ।

ଶ୍ରୀମଦ୍‌ଭାଗବତ—ଅଷ୍ଟାଦଶ ପୁରାଣ ମଧ୍ୟରେ ଭାଗବତ ଅନ୍ୟତମ । ଅଠର ହଜାର ଶ୍ଳୋକବିଶିଷ୍ଟ ଏହି ଅନୁପମ ଗ୍ରନ୍ଥ ବ୍ୟାସଦେବଙ୍କ ଦ୍ୱାରା ରଚିତ ହୋଇଅଛି ଓ ଏହା ଦ୍ୱାଦଶ ସ୍କନ୍ଧରେ ବିଭକ୍ତ ଏବଂ ତହିଁରେ ବେଦ, ବେଦାନ୍ତ ପୁରାଣର ସାରକଥା ତଥା ବ୍ରହ୍ମବିଦ୍ୟା ସମ୍ପର୍କିତ ବହୁ ବିଷୟ ସହିତ ଭଗବାନ କୃଷ୍ଣଙ୍କର ଲୀଳା ଓ ମୁଖନିଃସୃତ ଉପଦେଶର କଥା ବର୍ଣ୍ଣିତ ହୋଇଅଛି । ଏହା ଅତି ପ୍ରିୟ ଭକ୍ତିଗ୍ରନ୍ଥ ଭାବରେ ଭାରତର ଘରେ ଘରେ ଶ୍ରଦ୍ଧା, ସମ୍ମାନ ଓ ଭକ୍ତିର ସହିତ ପୂଜିତ ହୋଇ ଆସୁଅଛି ।

ସତୀ—ଦକ୍ଷପ୍ରଜାପତିଙ୍କର କନ୍ୟା ଓ ଭଗବାନ ଶିବଙ୍କର ପତ୍ନୀ ।

ସପ୍ତଛନ୍ଦ—ଛନ୍ଦକୁ ସାତଗୋଟି ବିଭାଗରେ ବିଭକ୍ତ କରାଯାଇଅଛି; ଯଥା : ଗାୟତ୍ରୀ, ତ୍ରିଷ୍ଟୁପ, ଅନୁଷ୍ଟୁପ, ଉଷ୍ଣିକ, ବୃହତୀ, ପଙ୍‌କ୍ତି, ଜଗତୀ ।

ସମନ୍ତ ପଞ୍ଚକ—କୁରୁକ୍ଷେତ୍ରସ୍ଥିତ ଏକ ପବିତ୍ର ତୀର୍ଥ ସ୍ଥାନ । ପରଶୁରାମ ଏକବିଂଶତିବାର ପୃଥିବୀକୁ ନିକ୍ଷତ୍ରିୟ କରି ସେମାନଙ୍କ ରକ୍ତରେ କୁରୁକ୍ଷେତ୍ରର ଯେଉଁ ସ୍ଥାନରେ ସେ ପାଞ୍ଚଗୋଟି ହ୍ରଦ ସୃଷ୍ଟି କରି ସେହି ରକ୍ତରେ ପିତୃତର୍ପଣ କରିଥିଲେ, ସେହି ସ୍ଥାନ ସମନ୍ତପଞ୍ଚକ ନାମରେ ପରିଚିତ ।

ସାନ୍ଦୀପନ—ଜନୈକ ବିଶିଷ୍ଟ ଯୋଗୀ ଓ ସକଳଶାସ୍ତ୍ରବିତ୍ ପଣ୍ଡିତ । ସେ ଭଗବାନ କୃଷ୍ଣ ଓ ବଳରାମଙ୍କର ଗୁରୁ ।

ସ୍ୱର୍ଗ—ଦେବତାମାନଙ୍କର ନିତ୍ୟ ଆବାସସ୍ଥଳୀ । ସେଠାରେ ଜୀବର ସମସ୍ତ ଆଶା ଓ କାମନା ପୂର୍ଣ୍ଣ ହୋଇଥାଏ ।

ହରି—ଭଗବାନ ବିଷ୍ଣୁଙ୍କର ଏକ ନାମ । ସମସ୍ତ ପାପ, ତାପ, ଦୁଃଖ ଓ ଦୁର୍ଦ୍ଦଶା ହରଣ କରିଥାନ୍ତି ବୋଲି ସେ ଏହି ନାମରେ ଅଭିହିତ ।

